# ମୋ ଜୀବନ କାହାଣୀ

ଲେଖକ : ବରେନ୍ଦ୍ର କୃଷ୍ଣ ଧଳ
ପ୍ରକାଶକ : ଲୋକନୀତି,
'ପୁଣ୍ୟଭୂ', ୧୯ ଶାସ୍ତ୍ରୀ ନଗର,
ଭୁବନେଶ୍ୱର - ୭୫୧୦୦୧
ପ୍ରଥମ ସଂସ୍କରଣ - ନଭେମ୍ବର ୧୭, ୨୦୧୩
(ସ୍ୱର୍ଗତ ହରିଶ୍ଚନ୍ଦ୍ର ବକ୍ସିପାତ୍ରଙ୍କ ୮୦ ତମ ଜୟନ୍ତୀ ଅବସରରେ)
ପ୍ରଚ୍ଛଦ - ବଳଦେବ ମହାରଥୀ
ମୁଦ୍ରଣ - ଏବି ଇମେଜିଂ ଏଣ୍ଡ ପ୍ରିଣ୍ଟସ୍ ପ୍ରା.ଲି.
୬୨,୬୩ ଗଙ୍ଗାନଗର, ୟୁନିଟ୍-୬
ଭୁବନେଶ୍ୱର - ୭୫୧୦୦୧
ମୂଲ୍ୟ - ଟ. ୪୦୦/- ଙ୍କା (ଚାରିଶହ ଟଙ୍କା ମାତ୍ର)

## MO JIBAN KAHANI

Writer : Barendra Krushna Dhal
Publisher : Lokaniti,
"Punyabhu", 19 Shastri Nagar, BBSR-751001
Edition : Nov 17, 2013
(On the occasion of the 80th Birth
Celebration of Late Harishchandra Buxipatra)
Design : Sri Baladeba Maharatha
Printer : AB Imaging & Prints Pvt. Ltd.
62 & 63, Ganga Nagar, Unit-6,
Bhubaneswar - 751001
Price - Rs. 400.00 (Rupees Four hundred only)

# ଉତ୍ସର୍ଗ

## ସେଇମାନଙ୍କ ହାତରେ

ମୋର ଆତ୍ମାର ଅବିଚ୍ଛିନ୍ନ ଅଂଶ ମୋ ପରିବାର । ମୋର ଆତ୍ମଜୀବନୀ ସେଇମାନଙ୍କ ହାତରେ ଅର୍ପଣ କଲି । ମୋର ପତ୍ନୀ ଶ୍ରୀମତୀ ସ୍ନେହଲତା, ମୋର କନ୍ୟା ସଂଘମିତ୍ରା, ଜାମାତା ତୀର୍ଥଙ୍କର ଚକ୍ରବର୍ତ୍ତୀ, ନାତି ସୋନୁ ଆଉ ଓମି ମୋର ଦ୍ୱିତୀୟ କନ୍ୟା ଲୋପାମୁଦ୍ରା, ଜାମାତା- ଅମିତାଭ ଘଡ଼, ନାତି ରିଙ୍କୁଲ ଆଉ ରିସି, ପୁତ୍ର ସିଦ୍ଧାର୍ଥ, ବୋହୂ- ପ୍ରିତିଛନ୍ଦା ଓ ନାତି ଶିବମ୍ ।

ଏ ସମସ୍ତେ ମୋର ଜୀବନକୁ ରସାଣିତ କରିଛନ୍ତି । ବଞ୍ଚିବାର ପ୍ରେରଣା ଯୋଗାଇଛନ୍ତି । ସେଇମାନଙ୍କୁ ଆଜି ଏ ଆତ୍ମଜୀବନୀ ଦେଉଛି ।

ନରେନ୍ଦ୍ର କୃଷ୍ଣ ଧଳ

# ମୁଖବନ୍ଧ

## ମୋ କଥା

ଓଡିଆ ଭାଷାରେ ବହୁ ବିଶିଷ୍ଟ ବ୍ୟକ୍ତି ସେମାନଙ୍କ ଆତ୍ମଜୀବନୀ ଲେଖିଛନ୍ତି । କେତେକ ଆତ୍ମଜୀବନୀ କେନ୍ଦ୍ର ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ ହୋଇଛି । ଗୋଦାବରିଶ ମିଶ୍ରଙ୍କ ''ଅର୍ଦ୍ଧ ଶତାବ୍ଦୀର ଓଡିଶା ଏବଂ ତହିଁରେ ମୋର ସ୍ଥାନ'', କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକଙ୍କର 'କୁମ୍ଭାର ଚକ' ସେଥିମଧ୍ୟରୁ ଅନ୍ୟତମ ।

ମୁଁ ଜଣେ ସାଧାରଣ ମଣିଷ । ମୋର ଗୋଟାଏ ଆତ୍ମଜୀବନୀ ପୁଣି କଣ ? ସେ ଦିଗରେ ମୁଁ କେବେ ଚିନ୍ତା ମଧ୍ୟ କରିନଥିଲି । ମୋ ଭଳି ଏ ରାଜ୍ୟରେ ହଜାର ହଜାର ଲୋକ ଅଛନ୍ତି । ମୋର ପୁଣି ଗୋଟାଏ ଜୀବନୀ କଣ ? ଜୀବନ ଏଇମିତି ଚାଲିଥିଲା । ହଠାତ୍ ଦିନେ ଶ୍ରଦ୍ଧେୟା ଲୋପାମୁଦ୍ରା ମୋତେ କହିଲେ ମଉସା ବାପାଙ୍କର ପାକ୍ଷିକ ଖବରକାଗଜ 'ଲୋକନୀତି' ମୁଁ ପ୍ରକାଶ କରିବାକୁ ଯାଉଛି । ମୋର ଇଚ୍ଛା ଆପଣ ଏଥିରେ ଆପଣଙ୍କ ଆତ୍ମଜୀବନୀ ଲେଖନ୍ତୁ । ମୁଁ ପ୍ରଥମେ ହସରେ ଉଡେଇ ଦେଲି । କିନ୍ତୁ ସେ ମୋତେ ଏକ ପ୍ରକାର ବାଧ୍ୟ କଲେ ଏହା ଲେଖିବା ପାଇଁ ।

ଲୋପାମୁଦ୍ରା ହେଉଛନ୍ତି ବିଶିଷ୍ଟ ଜନ ନାୟକ ସ୍ୱର୍ଗତ ହରିଶ୍ଚନ୍ଦ୍ର ବକ୍ସି ପାତ୍ରଙ୍କ କନ୍ୟା । ହରିଶ୍ଚନ୍ଦ୍ର ବକ୍ସିପାତ୍ରଙ୍କୁ ମୁଁ ବକ୍ସିବାବୁ ବୋଲି ଡାକୁଥିଲି । ୧୯୫୬ ସୀମା ଆନ୍ଦୋଳନରେ ମୋର ତାଙ୍କ ସହ ସାକ୍ଷାତ ଏବଂ ତାଙ୍କର ଅଦ୍ଭୁତ ବ୍ୟକ୍ତିତ୍ୱ ମୋତେ ସେଇଦିନୁ ତାଙ୍କପ୍ରତି ଆକର୍ଷିତ କରିଥିଲା । ସେଇ ଦିନଠାରୁ ତାଙ୍କ ତିରୋଧାନ ପର୍ଯ୍ୟନ୍ତ ତାଙ୍କ ସହ ମୋର ଘନିଷ୍ଠ ସଂପର୍କ ରହିଥିଲା । ଆଜି ତାଙ୍କରି ସ୍ମୃତି ଦିବସରେ ଏହି ଆତ୍ମଜୀବନୀର ଆତ୍ମ ପ୍ରକାଶ ନିଶ୍ଚିତ ଭାବେ ମୋ ଜୀବନରେ ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା ।

ମୋର ସାମ୍ବାଦିକତା ଜୀବନ ଇତି ମଧ୍ୟରେ ତେପନ ବର୍ଷ ପୂର୍ଣ୍ଣ ହୋଇଛି । ୧୯୬୦ ଅକ୍ଟୋବର ମାସରେ ଓଡିଶାର ତତ୍ କାଳୀନ ନିର୍ଭିକ, ନିରପେକ୍ଷ ଦୈନିକ ସମ୍ବାଦପତ୍ର 'ମାତୃଭୂମି'ରେ ମୋର ସାମ୍ବାଦିକତା ଆରମ୍ଭ । ମୋର ସାମ୍ବାଦିକତା ପୂର୍ବରୁ ମୋର ସାହିତ୍ୟ ଜୀବନ । ସ୍କୁଲରେ ପାଠପଢା ବେଳୁ ପ୍ରଜାତନ୍ତ୍ର ମୀନା ବଜାରରେ ମୋର ନିୟମିତ ଗଳ୍ପ- କବିତା ପ୍ରକାଶ ପାଇଁ ଆସୁଥିଲା ।

ପରେ ପରେ ଓଡିଶାର ସାମ୍ବାଦିକତା, ସାହିତ୍ୟ ଓ ସଂସ୍କୃତି ସଂଗଠନ, କ୍ରୀଡା, ସାମ୍ବାଦିକ- ଟ୍ରେଡ ୟୁନିୟନ ଆଦି ବିଭିନ୍ନ କ୍ଷେତ୍ରରେ କାର୍ଯ୍ୟ କରିଛି । ଓଡିଶାର ପ୍ରଥମ ଭୁବନେଶ୍ୱର ପୁସ୍ତକ ମେଳା ୧୯୮୫ରେ ମୁଁ ଆରମ୍ଭ କରିବା ପରେ ଏହା ରାଜ୍ୟରେ ଏକ ଆନ୍ଦୋଳନର ରୂପ ନେଲା ।



ସାମ୍ବାଦିକତା କ୍ଷେତ୍ରରେ ମୁଁ ନ୍ୟାସନାଲ୍ ୟୁନିୟନ୍ ଅଫ୍ ଜର୍ଣ୍ଣାଲିଷ୍ଟର ସର୍ବଭାରତୀୟ ସଭାପତି ରୂପେ ହରିଦ୍ୱାର ଠାରେ ୧୯୯୦ ସେପ୍ଟେମ୍ବର ୧୩ ତାରିଖରେ ନିର୍ବାଚିତ ହେଲି । ୧୯୯୩ ରେ ଅନୁବାଦ ପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିବା ସଙ୍ଗେ ସଙ୍ଗେ ଓଡିଶା ଏବଂ ଓଡିଶା ବାହାରେ ବହୁ ଅନୁଷ୍ଠାନ ଦ୍ୱାରା ପୁରସ୍କୃତ ଓ ସମ୍ମାନିତ ଏବଂ ସମ୍ବର୍ଦ୍ଧିତ ହେବାର ସୌଭାଗ୍ୟ ଲାଭ କରିଛି ।

ମୋର ସୌଭାଗ୍ୟ ଓଡିଶାର ପ୍ରାୟ ସମସ୍ତ ମୁଖ୍ୟମନ୍ତ୍ରୀ (ନବୀନ ପଟ୍ଟନାୟକଙ୍କ ବ୍ୟତୀତ)ଙ୍କ ଘନିଷ୍ଠ ସମ୍ପର୍କରେ ଆସିଛି । ସେମାନଙ୍କ ସମୟର ରାଜନୀତି ଓ ପ୍ରଶାସନ ସଂପର୍କରେ ଅନୁଧ୍ୟାନ କରିଛି । ଓଡିଶାର ସମ୍ଭବତ ମୁଁ ଏକ ମାତ୍ର ସାମ୍ବାଦିକ ଯେ ଗତ ପଚିଶ/ ଛବିଶ ବର୍ଷ ଧରି ପ୍ରତ୍ୟେକ ସପ୍ତାହରେ ସ୍ତମ୍ଭ ରଚନା କରି ଆସୁଛି । ମୁକ୍ତ ବିଚାର- ଖୋଲା ବିଚାର ଶିରୋନାମାରେ ପ୍ରକାଶିତ ଏହି ସ୍ତମ୍ଭ ଗୁଡିକ ପ୍ରତି ବର୍ଷ ପୁସ୍ତକ ଆକାରରେ ପ୍ରକାଶ ପାଇ ଆସୁଛି ।

ପ୍ରକାଶିତ କୌଣସି ଆତ୍ମଜୀବନୀ ସ୍ୱୟଂ ସଂପୂର୍ଣ୍ଣ ନୁହେଁ । କାରଣ ଲେଖକର ଜୀବଦ୍ଦଶାରେ ତାହା ପ୍ରକାଶ ପାଇଥାଏ । ମୋର ଜନ୍ମ ୧୯୩୯ ମାର୍ଚ୍ଚ ୧୭ ତାରିଖରେ । ଏବେ ମୋର ୭୪ ବର୍ଷ ବୟସ । ଏ ଆତ୍ମଜୀବନୀ ମୋର ୭୪ ବର୍ଷର ଇତିହାସ ।

ଆଜି ଏହାର ଆତ୍ମ ପ୍ରକାଶ ମୋତେ କେବଳ ଆତ୍ମତୃପ୍ତି ଦେଇନି - ମୋର ମନ ଭିତରର ଅନେକ ଅକୁହା କଥା ପଦାକୁ ଆଣିବାରେ ସାହାଯ୍ୟ କରିଛି । ଶ୍ରଦ୍ଧେୟା ଲୋପାମୁଦ୍ରା ଏବଂ ଶ୍ରଦ୍ଧେୟ ଭୃଗୁ ବକ୍ସି ପାତ୍ରଙ୍କୁ ମୋର ଅଜସ୍ର ଶ୍ରଦ୍ଧା ଓ ଶୁଭେଚ୍ଛା । ପ୍ରଭୁ ଶ୍ରୀ ଜଗନ୍ନାଥ ସେମାନଙ୍କୁ ଆଶୀର୍ବାଦ କରନ୍ତୁ ଏବଂ ସେମାନଙ୍କ ଜୀବନ କୁସୁମିତ ହେଉ ।

ସର୍ବେ ଭବନ୍ତୁ ସୁଖୀନଃ
ସର୍ବେ ସନ୍ତୁ ନିରାମୟା
ସର୍ବେ ଭଦ୍ରାଣି ପଶ୍ୟନ୍ତୁ
ନ କଶ୍ଚିତ ଦୁଃଖ ଭାକ୍ ଭବେତ୍ ।

**ବରେନ୍ଦ୍ର କୃଷ୍ଣ ଧଳ**

# ଜୀବନର କାହାଣୀ

## -ବାଲ୍ୟ ଜୀବନ-

ଗତବର୍ଷ ଜୁନ୍ ୩ ତାରିଖରେ ମୁଁ ଏବଂ ମୋ ସ୍ତ୍ରୀ(ସ୍ନେହଲତା) ଆମେରିକାର ବୋଷ୍ଟନ ସହରକୁ ଯିବା ପାଇଁ ଫ୍ରେନ୍‌ସ ଏୟାରର ବିମାନରେ ଚଢ଼ିଲୁ । ବିମାନରେ ଆମ ନିର୍ଦ୍ଦିଷ୍ଟ ସ୍ଥାନ ଗ୍ରହଣ କରିବା ପରେ ୪୮୦ ଯାତ୍ରୀବାହୀ ବିମାନଟି ଯେତେବେଳେ ଆକାଶରେ ପକ୍ଷ ବିସ୍ତାର କରି ଉଡ଼ିଲା ଓ ମନ ଭିତରେ ପଚାଶ/ପଞ୍ଚାବନ ବର୍ଷ ପୂର୍ବର ମୋ ଗାଁ(ବାଙ୍କୀର ଚର୍ଚ୍ଚିକା ଗ୍ରାମ)ମହାନଦୀ କୂଳର ବଡ଼ ଡିମିରି ଗଛ କଥା ମନକୁ ଆସିଲା । ପିଲାଦିନେ ବିଭିନ୍ନ ବହି ପଢ଼ି ଆକାଶରେ ଉଡ଼ିବା ପାଇଁ ଆମେ କେତେଜଣ ବନ୍ଧୁ କଳ୍ପନା କରୁ । ବିରାଟ ଡିମିରି ଗଛର ବିଭିନ୍ନ ଶାଖା ପ୍ରଶାଖାରେ ବସି ଯେତେବେଳେ ଆମେ କଥା ହେଉ । ସେଥିରେ ଜଣେ ସାଙ୍ଗ ଥରେ କହୁଥିଲା ଏଭଳି ଏକ ପର ବହାରିଛି ତା' ଉପରେ ଦୁଇ କାନ୍ଧରେ ଚାପି ଦେଲେ ସେ ତୁମକୁ ଆକାଶକୁ ନେଇଯିବ । ସେହି କଥା କଳ୍ପନା କରିବା ବେଳେ ମନ ଭିତରେ ଯେଉଁ ଏକ ଅଜଣା ରୋମାଞ୍ଚ ଜାତ ହେଉଥିଲା ସେଦିନ ଫ୍ରେନ୍‌ସ ଏୟାରର ବିମାନରେ ବସି ଚିନ୍ତା କରିବା ବେଳେ ମନେ ମନେ ହସିଥିଲି ।

ଷୋଳଘଣ୍ଟା ବିମାନ ଯାତ୍ରା ପରେ ଆମେ ଯେତେବେଳେ ବୋଷ୍ଟନ ବିମାନ ଘାଟୀରେ ଅବତରଣ କଲୁ ମୁଁ ଚାରିଆଡ଼କୁ ଚାହିଁଲି । ମନେ ମନେ କଳ୍ପନା କରୁଥିଲି, କେତେ ଧନ ସମ୍ପତ୍ତି ନଥିଲେ ଏ ପ୍ରକାର ଏ ବିମାନ ଘାଟୀ ନିର୍ମାଣ ହୋଇପାରିବ । ଆଟ୍‌ଲାଣ୍ଟିକ୍ ମହାସାଗର କୂଳରେ ବୋଷ୍ଟନ ବିମାନଘାଟୀ । ବିମାନଘାଟୀରୁ ଆଟଲାଣ୍ଟିକ୍ ମହାସାଗରର ନିଳ ଜଳ ସ୍ୱଷ୍ଟ ଭାବେ ଦେଖାଯାଉଛି । ମହାସାଗରରୁ ଦମ୍‌କାଏ ଦମ୍‌କାଏ ହାଓ୍ୱା ସଞ୍ଚରିତ ହେଉଛି ସମଗ୍ର ବିମାନଘାଟୀରେ । ଆବଶ୍ୟକୀୟ ଯାଞ୍ଚକାରୀ ଅନୁଯାୟୀ ଆମେ ଯେତେବେଳେ ବିମାନଘାଟୀ ବାହାରକୁ ଆସିଲୁ ଆମକୁ ଅପେକ୍ଷା କରିଥିଲେ ଆମର କନ୍ୟା ଓ ଜାମାତା । ଆମ ଜାମାତା ଅମିତାଭ ଚାନ୍ଦ ଏକ ବିଖ୍ୟାତ ଆମେରିକୀୟ କମ୍ପାନୀର ଜଣେ ପଦସ୍ଥ ଇଞ୍ଜିନିୟର । ମୋ ଝିଅ ଲୋପାମୁଦ୍ରା 'ଆଇମାସ୍' ମେଡିକାଲ୍ ରିସର୍ଚ୍ଚ ଅନୁଷ୍ଠାନରେ ପୋଗ୍ରାମ କୋ-ଅର୍ଡିନେଟର୍ ଭାବରେ କାର୍ଯ୍ୟରତ । ଆମକୁ ନେଇ ସେମାନେ ଗଲେ ସେମାନଙ୍କ ବାସସ୍ଥାନକୁ ।

ବହୁବାର ଆମେରିକା ଯିବା ପାଇଁ ମୁଁ ସୁଯୋଗ ପାଇଥିଲେ ମଧ ଯାଇ ନଥିଲି । କାରଣ

ମୋ ମନ ଭିତରେ କେଜାଣି କେମିତି ଗୋଟିଏ ପ୍ରଶ୍ନ ବାରମ୍ବାର ଆସୁଥାଏ ଯେ ଆମେରିକା ଯାଇ ମୁଁ କ'ଣ ଦେଖିବି ? ସେ ଦେଶଗୁଡ଼ିକର ଆଭିଜାତ୍ୟ, କୌଳିକତା, ସମ୍ପତ୍ତିର ପ୍ରାଚୁର୍ଯ୍ୟ ଏବଂ ଚତୁର୍ଦ୍ଦିଗରେ ଘୂରି ବୁଲୁଥିବା ଶହ ଶହ ହଜାର ହଜାର ଗାଡ଼ି । ଏହିସବୁ ଦେଖି ଫେରି ଆସିବା ପରେ ଭାରତବର୍ଷର ଏବଂ ମୋ ଜନ୍ମମାଟି ଓଡ଼ିଶାର ହତଶ୍ରୀ ରୂପ ଦେଖି ମନ ଭିତରେ ଯେଉଁ ଦୁଃଖ ହେବ, ତା'ର ଉପଶମ କରିବି କିପରି ? ଆମେରିକାରେ ପହଞ୍ଚିଲା ପରେ ଘରଦ୍ୱାର, ରାସ୍ତାଘାଟରେ ଧନର ପ୍ରାଚୁର୍ଯ୍ୟ ଦେଖିବା ପରେ ମୋ ମନ ଫେରିଗଲା ମୋ ଜନ୍ମମାଟି ବାଙ୍କୀକୁ ।

୭୪ ବର୍ଷ ତଳେ ଯେଉଁଠି ମୁଁ ଜନ୍ମ ନେଇଥିଲି ଏବଂ ଯାହାର ପାଣି ପବନରେ ମୋ ଶରୀର ଗଢ଼ା ହୋଇଥିଲା, ବାଙ୍କୀର ମୁଖ୍ୟ ଗ୍ରାମ ଚର୍ଚ୍ଚିକା । ଆମେ ଜାତିରେ ହେଉଛୁ କ୍ଷତ୍ରୀୟ । ଏହି ଚର୍ଚ୍ଚିକା ବ୍ରାହ୍ମଣ ସାହିରେ ଆମେ ଏକମାତ୍ର କ୍ଷତ୍ରୀୟ ପରିବାର । ଛୋଟ ସହରଟିଏ ବାଙ୍କୀ । ଲୋକ ସଂଖ୍ୟା ୭/୮ ହଜାର ମଧ୍ୟରେ । କଟକ ଜିଲ୍ଲାର ଏହା ସବୁଠାରୁ ଛୋଟ ସବ୍‌ଡିଭିଜନ୍ । ଦୁଇଟି ଥାନା, ଦୁଇଟି ବ୍ଲକ୍ ଅଫିସ୍ ଓ ଗୋଟିଏ ତହସିଲ୍ ଅଫିସ୍‌କୁ ନେଇ ବାଙ୍କୀ ସବ୍‌ଡିଭିଜନ୍ । ଭୌଗୋଳିକ ପରିସୀମା ଦୃଷ୍ଟିରୁ ବାଙ୍କୀ କଟକ ଜିଲ୍ଲାର ପଶ୍ଚିମ ପଟର ଶେଷ ଅଞ୍ଚଳ । ଗୋଟିଏ ପଟେ ମହାନଦୀ ଓ ଅନ୍ୟପଟେ ଖୋରଧାର ସୀମା ରହିଛି । ଆମ ପିଲାବେଳେ ବାଙ୍କୀ ବର୍ଷାଋତୁରେ ସବୁଆଡୁ ବିଚ୍ଛିନ୍ନ ହୋଇ ରହୁଥିଲା । ସ୍ୱାଧୀନତାର ୫୭ ବର୍ଷ ପରେ ଆଜି ମଧ୍ୟ ସେହି ଅବସ୍ଥା ରହିଛି । ମହାନଦୀରେ ମଧ୍ୟମ ଧରଣର ବଢ଼ି ଆସିଲେ ବାଙ୍କୀ କଟକ, ବାଙ୍କୀ ଖୋର୍ଦ୍ଧା ରାସ୍ତା ପାଣିରେ ବୁଡ଼ିଯାଏ । ପାଣି ନଛାଡ଼ିବା ପର୍ଯ୍ୟନ୍ତ ବାଙ୍କୀ ବାହାର ଜଗତରୁ ସମ୍ପୂର୍ଣ୍ଣ ଭାବେ ବିଚ୍ଛିନ୍ନ ହୋଇ ରହି ଯାଇଥାଏ । ବାଙ୍କୀକୁ ନେଇ ମୁଁ ଗର୍ବ କରେ । କାରଣ ବାଙ୍କୀର ସଂସ୍କୃତି ଓ ଆଭିଜାତ୍ୟ ଓ ଐତିହାସିକ ଚରିତ୍ର ସମ୍ବନ୍ଧରେ ଓଡ଼ିଶାରେ ଏକ ସ୍ୱତନ୍ତ୍ରତା ଦାବୀ କରେ । ୧୮୪୧ ମସିହାରେ ବାଙ୍କୀ ରାଜାଙ୍କୁ ଇଂରେଜମାନେ ଜେଲ୍‌ଦଣ୍ଡ ଦେଇ ବାଙ୍କୀକୁ ଖାସ୍ ମାହାଲ କରିଦେଲେ । ଓଡ଼ିଶାରେ ସେତେବେଳେ ବାଙ୍କୀ ଏବଂ ଅନୁଗୁଳରେ ଇଂରେଜମାନେ ବାଧ୍ୟତାମୂଳକ ଶିକ୍ଷା ପ୍ରଚଳନ କଲେ । ତେଣୁ ବାଙ୍କୀ ସେ ସମୟରେ ପାଖଆଖ ଅନେକ ଅଞ୍ଚଳର ଶିକ୍ଷା କେନ୍ଦ୍ରରୂପେ ପରିଗଣିତ ହେଲା । ବିଭିନ୍ନ ଅଞ୍ଚଳରେ ଛାତ୍ରଛାତ୍ରୀମାନେ ଆସି ବାଙ୍କୀରେ ରହି ଶିକ୍ଷାଲାଭ କରୁଥିଲେ । ୧୯୨୧ ମସିହାରେ ବାଙ୍କୀ ହାଇସ୍କୁଲ ପ୍ରତିଷ୍ଠା ହେଲା । ତତ୍‌କାଳୀନ ଡେପୁଟି କଲେକ୍ଟର ବରେନ୍ଦ୍ର କୃଷ୍ଣ ଦାସ ଅଧିକାରୀ ଏକ ପ୍ରାସାଦ ଉପମ ଅଟ୍ଟାଳିକା ନିର୍ମାଣ କରି ବାଙ୍କୀ ଡୋମପୁରା ଉଚ୍ଚ ଇଂରାଜୀ ବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ । ସେତେବେଳେ ଗଡ଼ଜାତ ଅଞ୍ଚଳରେ ବାଙ୍କୀ ହାଇସ୍କୁଲକୁ ନେଇ ଏକ ଚମତ୍କାର କବିତା ଲୋକ ଗାଉଥିଲେ । ସେଇଟି ହେଲା-

"ବାଙ୍କୀ ଡମପଡ଼ା ହାଇସ୍କୁଲ,
ଦେଖିବାକୁ ବଡ଼ ବିଉଟିଫୁଲ୍,
ଟିଚରସ୍ ଆର୍ ଡଙ୍କି,
ଷ୍ଟୁଡେଣ୍ଟସ୍ ଆର୍ ମଙ୍କି ।"

ପିଲାଦିନେ ଆମେ ଏହି ପ୍ରବାଦ ଗିତଟି ଶୁଣୁଥିଲୁ, କିନ୍ତୁ ପରେ ବାଙ୍କୀ ହାଇସ୍କୁଲର ନାମକରଣ ହେଲା 'ବରେନ୍ଦ୍ରକୃଷ୍ଣ ବିଦ୍ୟାପୀଠ' । ପରବର୍ତ୍ତୀ ଅବସ୍ଥାରେ ଯେତେବେଳେ ମୁଁ ଭୁବନେଶ୍ୱର ଆସିଲି ଏବଂ ସାଧାରଣରେ ମୋର ଏକ ପରିଚୟ ସୃଷ୍ଟି ହେଲା, ସେତେବେଳେ ଅନେକ ବିଚାରି ଥିଲେ ଯେ ଏହି ସ୍କୁଲଟି ମୁଁ ପ୍ରତିଷ୍ଠା କରିଛି । ଥରେ ଏହାକୁ ନେଇ ମୁଁ ଏକ ଅସୁବିଧା ପରିସ୍ଥିତିରେ ମଧ୍ୟ ପଡ଼ିଥିଲି । ସୂଚନା ଭବନରେ ଗୋଟିଏ ସଭାରେ ମୁଖ୍ୟ ଅତିଥି ହୋଇ ଯୋଗ ଦେଇଥିବା ଅବସରରେ ମୋର ପରିଚୟ ଦେଉଥିବା ବନ୍ଧୁ କହୁ କହୁ ମୁଁ କିପରି ଓଡ଼ିଶାର ଅନ୍ୟତମ ଅଗ୍ରଣୀ ଶିକ୍ଷାନୁଷ୍ଠାନ ବରେନ୍ଦ୍ର କୃଷ୍ଣ ବିଦ୍ୟାପୀଠକୁ ପ୍ରତିଷ୍ଠା କରିଛି ସେ କଥା କହି ପକାଇଲେ । ଦର୍ଶକମାନେ ବିପୁଳ

କରତାଳି ଧ୍ୱନିରେ ଏହାକୁ ସ୍ୱାଗତ କଲେ । ସେତେବେଳକ ଲଜ୍ଜ୍ୟାରେ ମୋ ମୁହଁ ପୋଡ଼ିଗଲାଣି । ନାଁ ମୁଁ ପ୍ରତିବାଦ କରିପାରୁଛି, ନାଁ ମୁଁ ସମର୍ଥନ କରପାରୁଛି । ଶେଷରେ ମୋ ଭାଷଣ ବେଳେ ମୁଁ ଏହାକୁ ଖଣ୍ଡନ କରି ମୋ ପ୍ରତି ଅନୁପ ଶ୍ରଦ୍ଧା ସମ୍ଭବତେ ଏହା କହିବାକୁ ତାଙ୍କୁ ପ୍ରେରଣା ଦେଇଛି ବୋଲି କହିଥିଲି ।

ବାଙ୍କୀରେ ମୋ ଅନେକ ସ୍ମୃତି ଜଡ଼ିତ ରହିଛି । ସେହି ହାଇସ୍କୁଲରେ ମୁଁ ଶିକ୍ଷା କରିଥିଲି ଯେ କୌଣସି କାର୍ଯ୍ୟର ସଫଳତା ପାଇଁ, ଭାଙ୍ଗି ନପଡ଼ି ଉଦ୍ୟମ ଜାରି ରଖିବା ପାଇଁ । ସେହିଠି ମୁଁ ଶିକ୍ଷା କରିଥିଲି ନିର୍ଭିକ ହେବାପାଇଁ ଏବଂ ଯେତେ ଯାହା ବିପଦ ଆସିଲେ ମଧ ସତ୍ୟ କହିବା ପାଇଁ । ମହାନଦୀ ସଭ୍ୟତାରେ ଆମେ ସବୁ ନିଜକୁ ଗଢ଼ି ତୋଳିଥିଲୁ । ମହାନଦୀ ଆମକୁ ଅନେକ ସମୟରେ କହିଛି, ଯେତେବେଳେ ମୁଁ ଉଗ୍ରରୂପ ଧାରଣ କରେ ସେତେବେଳେ ମୁଁ କାହାକୁ ଖାତିର କରେ ନାହିଁ । କିନ୍ତୁ ମୋ ଶାନ୍ତ ସରଳ ରୂପ ସମଷ୍ଟିଙ୍କୁ ବଞ୍ଚାଇ ରଖେ । ଚାଷଠାରୁ ଆରମ୍ଭ କରି ବ୍ୟବସାୟ ବାଣିଜ୍ୟ ସବୁ କ୍ଷେତ୍ରରେ ମୋରି ଉପରେ ମୋ ସନ୍ତାନମାନେ ନିର୍ଭର କରନ୍ତି । ସେହି ସଭ୍ୟତା ଆହୁରି ଅନେକ କଥା ଆମକୁ ଶିକ୍ଷା ଦେଇଛି । ମହାନଦୀ ଆମ ପିଲାବେଳେ ଥିଲା ମୁକ୍ତକେଶୀ । ୩୬୫ ଦିନ ମହାନଦୀରେ ଥିଲା ନିଳ ଜଳର ଅସୁମାରୀ ଆକର୍ଷଣ । ବଡ଼ ବଡ଼ ଚାଳ ଡଙ୍ଗା, ବାଉଁଶ ଘୋଡ଼ା ଶହ ଶହ ସଂଖ୍ୟାରେ ମହାନଦୀରେ ଆସେ । ସେତେବେଳେ ଚର୍ଚ୍ଚିକା ହାଟ ଥିଲା ଓଡ଼ିଶାର ବିଖ୍ୟାତ ହାଟ । କେବଳ ଗୋରୁ ଗାଈ ଓ ବାପା ମା'ଙ୍କୁ ଛାଡ଼ିଦେଲେ ଚର୍ଚ୍ଚିକା ହାଟରେ ସବୁକିଛି ମିଳୁଥିଲା । ୨ କି.ମି. ବ୍ୟାସାର୍ଦ୍ଧରେ ହାଟ ବସୁଥିଲା ମଙ୍ଗଳବାର ଓ ଶନିବାର । ହାଟ ଦିନ ଆମ ପାଇଁ ଥିଲା ଏକ ଉତ୍ସବ ଦିନ । ସ୍କୁଲରୁ ଫେରିଆସି ଆମେ ଘେରାଏ ଘେରାଏ ହାଟରୁ ଘୂରିଆସୁ । ଶନିବାର ହାଫ୍ ଛୁଟି ପରେ ଯାହା ଗଣ୍ଡେ ପାଟିରେ ଦେଇ ଆମେ ହାଟକୁ ଧାଉଁ । ମୋର କେମିତି ମନେହୁଏ ଚର୍ଚ୍ଚିକା ହାଟ ହେଉଛି ଏକ କ୍ଷୁଦ୍ର ଓଡ଼ିଶା । କେତେ ଅଞ୍ଚଳରୁ କେତେ ଲୋକ ଆସିଥାନ୍ତି । ତୈଳବୀଜ ଠାରୁ ଆରମ୍ଭ କରି ପନିପରିବା, ଗୁଡ଼, ବେତ, ବାଉଁସିଆ, ମାଛ, ମାଂସ ଏବଂ ବିଭିନ୍ନ ଅଞ୍ଚଳର ବିଭିନ୍ନ କିସମର ଚିନି, ଗୁଡ଼ ଓ ମିଠା ଏଠି ମିଳୁଥିଲା । ଗ୍ରାହକଙ୍କୁ ଆକୃଷ୍ଟ କରିବା ପାଇଁ ବିଭିନ୍ନ ପ୍ରକାର ଛାଞ୍ଚରେ ସଫା ହଳଦିଆ ଗୁଡ଼ ମିଳୁଥିଲା । ଗୁଡ଼ ହାଟ, ବିରି, ଚାଉଳ, କୋଳଥ, ମାଣ୍ଡିଆ, ଆଦି ତୈଳବୀଜ ହାଟ, ପରିବା ହାଟ, ବାଉଁଶ ତିଆରି ବିଭିନ୍ନ ଦ୍ରବ୍ୟର ହାଟ । ସେତେବେଳେ ବାରଙ୍ଗ କାଚ କାରଖାନାରେ ତିଆରି ହେଉଥିଲା ଗିଲାସ ଏବଂ ଅନ୍ୟାନ୍ୟ କାଚ ଜିନିଷ । ଏହିଭଳି ବହୁ ପ୍ରକାର ଦ୍ରବ୍ୟର ସମାବେଶ ହୋଇଥିଲା ଚର୍ଚ୍ଚିକା ହାଟ । ଆଜି ସେହି କଥା ଚିନ୍ତା କଲାବେଳେ ମନ ଭିତରେ ଏକ ଅଜଣା ରୋମାଞ୍ଚ ଜାତ ହୁଏ । ହାଟ ମଝିରେ ଚାରୋଟି କୂଅ ଥାଏ । ଉଦୁଉଦୁଆରେ ଖରାଦିନେ ମଧ କୂଅଗୁଡ଼ିକ ପାଣିରେ ଭର୍ତ୍ତିହୋଇଥାଏ । ଲୋକେ କୁହନ୍ତି ସବୁ କୂଅଗୁଡ଼ିକରେ ମହାନଦୀର ଝର ଫିଟିଛି ।

ବାଙ୍କୀର ଅଧିଷ୍ଠାତ୍ରୀ ଦେବୀ ହେଉଛନ୍ତି ମା' ଚର୍ଚ୍ଚିକା । ରୂଚିକଗୀରୀ ପାହାଡ଼ ଉପରେ ମା'ଙ୍କ ଆସ୍ଥାନ । ମା'ଙ୍କ ପାଖକୁ ଯିବାପାଇଁ ଚଉଡ଼ା ପଥରର ପାହାଚ । ନାଟ ମଣ୍ଡପ ଛାତ ତଳେ କାଛରେ ଖୋଦାଇ ହୋଇଛି ଗୋପୀ ବଲ୍ଲଭ ରସିକ ଚୂଡ଼ାମଣି ବା ଯୋଗେଶ୍ୱର ହରୀ ଶ୍ରୀକୃଷ୍ଣଙ୍କର ବାଲ୍ୟକାଳରୁ ଆରମ୍ଭ କରି ଦେହତ୍ୟାଗ ପର୍ଯ୍ୟନ୍ତ । ସମ୍ଭବତ ଓଡ଼ିଶାରେ କାଠରେ ଏଭଳି କାରୁକାର୍ଯ୍ୟ ପ୍ରାୟ ନାହିଁ । ସନ୍ଧ୍ୟାବେଳେ ମୁଁ ପ୍ରାୟ ଯାଉଥିଲି ମା'ଙ୍କ ମନ୍ଦିରକୁ । ଗାଁର ଉପରେ ମନ୍ଦିର ବେଢ଼ାରେ ଥରେ ବୁଲି ଆସିଲେ ମନ ପ୍ରାଣରେ ଆନନ୍ଦର ଜୁଆର ଖେଳି ଯାଉଥିଲା । ରାଜ୍ୟର ବହୁ ସ୍ଥାନରୁ ଦର୍ଶନ କରିବା ପାଇଁ ବହୁଲୋକ ଆସୁଥିଲେ । ପ୍ରତିଦିନ ବହୁଲୋକ ଅଧିଆ ପଡୁଥିଲେ ନିଜର ମନସ୍କାମନା ପୂରଣ ପାଇଁ । ଚର୍ଚ୍ଚିକା ମନ୍ଦିରର ବେଢ଼ାରେ ମା'ଙ୍କ ଆର୍ବିଭାବ ସ୍ଥାନ ଚିହ୍ନିତ ଅଛି । ଏକ ଆଙ୍କୁକୋଳି ଗଛରେ ମା' ଆବିର୍ଭୁତ ହୋଇଥିଲେ ।

ବାଙ୍କୀ ବରେନ୍ଦ୍ର କୃଷ୍ଣ ବିଦ୍ୟାପୀଠରେ ମୁଁ ଚତୁର୍ଥ ଶ୍ରେଣୀରୁ ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ ଅଧୟନ କରୁଥିଲି ।

ସେତେବେଳେ ବାଙ୍କୀ ହାଇସ୍କୁଲର ପ୍ରଧାନ ଶିକ୍ଷକ ଥିଲେ ବାବୁ ଫକୀର ମୋହନ ପଟ୍ଟନାୟକ । ଫକୀର ବାବୁ ଲମ୍ବା ଚଉଡ଼ା ମଣିଷ, ଗୋରା ତକତକ ଚେହେରା ଏବଂ ସବୁବେଳେ ସେ ସ୍କୁଲର ଉନ୍ନତି ପାଇଁ ଚିନ୍ତା କରୁଥିଲେ । ଶୀତଦିନେ ଫକୀର ବାବୁ ସୁଟ୍, ଟାଇ ପିନ୍ଧି ଯେତେବେଳେ ସ୍କୁଲକୁ ଆସନ୍ତି ସେତେବେଳେ ତାଙ୍କୁ ଜାଣିନଥିବା ଲୋକ ଯଦି ଦେଖେ ତାଙ୍କୁ ହେଡ୍‌ମାଷ୍ଟର ନଭାବି ଶିକ୍ଷା ବିଭାଗର ଜଣେ ସର୍ବୋଚ୍ଚ କର୍ତ୍ତା ବୋଲି ବିଚାର କରେ । ବାଙ୍କୀ ହାଇସ୍କୁଲର ଉନ୍ନତି ପାଇଁ ଫକୀର ବାବୁଙ୍କ ଅବଦାନ ବହୁତ ଅଧିକ । ମୋର ମନେ ହୁଏ ପ୍ରତ୍ୟେକ ଶିକ୍ଷାନୁଷ୍ଠାନର ମୁଖ୍ୟ ଭାବେ ଫକୀର ବାବୁଙ୍କ ଭଳି ଲୋକ ଯଦି ରହୁଥାନ୍ତେ ତେବେ ଆଜି ଶିକ୍ଷାକ୍ଷେତ୍ରରେ ଯେଉଁ ଅବ୍ୟବସ୍ଥା ଦେଖାଦେଇଛି ତାହା ଅନେକାଂଶରେ ଦୂରିଭୂତ ହୋଇଯାଆନ୍ତା ।

ମୁଁ ପଢ଼ିଲାବେଳେ ଆମ ସ୍କୁଲରେ ଅଢ଼େଇଶହ ପିଲା ପଢୁଥିଲେ । ବାଙ୍କୀ, ବଡ଼ମ୍ବା, ତିଗିରିଆ, ଆଠଗଡ଼, ଖଣ୍ଡପଡ଼ା, ବୋଲଗଡ଼ ଏବଂ ଖୋର୍ଦ୍ଧା ଅଞ୍ଚଳର ଅନେକ ପିଲା ବାଙ୍କୀ ସ୍କୁଲକୁ ପଢ଼ିବାକୁ ଆସୁଥିଲେ । ହାଇସ୍କୁଲର ହଷ୍ଟେଲରେ ଦେଢ଼ଶହ ପିଲା ରହିବା ପାଇଁ ବ୍ୟବସ୍ଥା ଥିଲା । ଯେତେବେଳେ ଅଧିକ ପିଲା ପଢ଼ିବା ପାଇଁ ସ୍କୁଲକୁ ଆସିଲେ ସେତେବେଳେ ମୂଳ କୋଠାରେ ସ୍ଥାନ ଅକୁଳାନ ହେବାରୁ ବାମପାର୍ଶ୍ୱରେ ଫକୀର ବାବୁ ଉଚ୍ଚ କର୍ତ୍ତୃପକ୍ଷଙ୍କୁ ପ୍ରଭାବିତ କରାଇ ଲମ୍ବା ଆଜବେଷ୍ଟସ୍ ହଲ୍ ତିଆରି କରାଇଥିଲେ । ଅଷ୍ଟମ ଶ୍ରେଣୀରୁ ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ ସମସ୍ତ ଶ୍ରେଣୀରେ ଦୁଇଟିରୁ ତିନୋଟି ସେକ୍ସନ୍ ରହିଥାଏ । ମହାନଦୀ କୂଳରେ ବରେନ୍ଦ୍ର କୃଷ୍ଣ ବିଦ୍ୟାପୀଠ ଅବସ୍ଥିତ । ଏହି ସ୍କୁଲର ସ୍ମୃତି ଏବେ ମଧ୍ୟ ମୋ ମନରେ ଜାଗରୁକ ହୋଇ ରହିଛି ।

ବାଙ୍କୀର ରାଜବଂଶ ୧୮୪୧ ମସିହାରେ ଗାଦିଚ୍ୟୁତ ହେବାପରେ ବାଙ୍କୀକୁ ବ୍ରିଟିଶ ସରକାର ଖାସମାଲରେ ପରିଣତ କରିଥିଲେ ଏବଂ ବାଙ୍କୀରେ ବାଧ୍ୟତାମୂଳକ ଶିକ୍ଷାବ୍ୟବସ୍ଥା ପ୍ରଚଳନ କରିଥିଲେ । ଫଳରେ ବାଙ୍କୀ ସମଗ୍ର ରାଜ୍ୟରେ ସେତେବେଳେ ଶିକ୍ଷାର ଆଲୋକବର୍ତ୍ତିକା ରୂପେ ଉଭା ହୋଇଥିଲା ।

ପିଲାଦିନେ ଆମେ ଶୁଣିଥିଲୁ ଓଡ଼ିଶାର ପ୍ରଥମ ଆୟକର କମିଶନର ରୂପେ ବାଙ୍କୀ ଗଡ଼ର ହରମୋହନ ପଟ୍ଟନାୟକ ବମ୍ବେଠାରେ କାର୍ଯ୍ୟ କରୁଥିଲେ । ଓଡ଼ିଶାରେ ଦ୍ୱିତୀୟ ଆୟକର କମିଶନର ମଧ୍ୟ ବାଙ୍କୀ ସାହାଡ଼ାପଦା ଗ୍ରାମର ଶ୍ରୀ ସୂର୍ଯ୍ୟମଣି ପଟ୍ଟନାୟକ । ସେ ମଧ୍ୟ ବମ୍ବେ କଲିକତା ଆଦି ସହରରେ ଆୟକର କମିଶନର ରୂପେ କାର୍ଯ୍ୟ କରିଥିଲେ । ଏ ଦୁଇ କୃତବିଦ୍ୟ ସନ୍ତାନଙ୍କ ବ୍ୟତୀତ କଟକ ମେଡିକାଲ୍ ସ୍କୁଲର ଅଧକ୍ଷ ଭାବେ ଡଃ. ବନବିହାରୀ ପଟ୍ଟନାୟକ(ସାହାଡ଼ାପଦା ଗ୍ରାମର) ଓଡ଼ିଶାର ଅଳ୍ପ କେଇଜଣ ଡାକ୍ତରଙ୍କ ମଧ୍ୟରେ ଅନ୍ୟତମ । ସୂର୍ଯ୍ୟମଣି ପଟ୍ଟନାୟକଙ୍କର ସାନଭାଇ ରଘୁମଣି ପଟ୍ଟନାୟକ ସୁପ୍ରିମକୋର୍ଟରେ ଓଡ଼ିଶାର ପ୍ରଥମ ଓଡ଼ିଆ ବାରିଷ୍ଟର । ସେ ଲଣ୍ଡନରୁ ବାର୍‌ଏଟ୍ ଲ' ପାଶ୍ କରି ଭାରତ ଆସିଥିଲେ ଏବଂ ବ୍ରିଟିଶ ସରକାରଙ୍କ ସମୟରେ ଡେପୁଟି କଲେକ୍ଟର ରୂପେ କାର୍ଯ୍ୟ କରିଥିଲେ । ମୁଜାଫରପୁରରେ ସେ ଡେପୁଟି କଲେକ୍ଟର ଥିବାବେଳେ ନେତାଜୀ ସୁବାସ ବୋଷ ତାଙ୍କ ଘରେ କିଛିଦିନ ପାଇଁ ଲୁଚି ରହିଥିଲେ । ଏକଥା ଜଣାପଡ଼ିବା ପରେ ତାଙ୍କୁ ଚାକିରି ହରାଇବାକୁ ପଡ଼ିଥିଲା ଏବଂ ସେ ସୁପ୍ରିମକୋର୍ଟରେ ବାରିଷ୍ଟର ରୂପେ କାର୍ଯ୍ୟ ଆରମ୍ଭ କରିଥିଲେ । ଦିଲ୍ଲୀର ଅଭିଜାତ ମହଲରେ ତାଙ୍କର ବେଶ୍ ଗତାଗତ ଥିଲା । ଏପରିକି ଦିଲ୍ଲୀର ବିଖ୍ୟାତ ଜିମ୍‌ଖାନା କ୍ଲବର ସେ ଅତ୍ୟନ୍ତ ପ୍ରଭାବଶାଳୀ ସଦସ୍ୟ ରହିଥିଲେ ।

## -ଆମ ପରିବାର ଓ ବଂଶ କ୍ରମ-

ପାଠକ ବନ୍ଧୁଗଣ ଆମେ ଆମ ଆତ୍ମଜୀବନୀ ଲେଖିବାକୁ ଯାଇ ବାଙ୍କୀର ବିଶିଷ୍ଟ ବ୍ୟକ୍ତିମାନଙ୍କ ସମ୍ପର୍କରେ ଏତେ ବଖାଣିବାର କାରଣ ହେଲା ଯେଉଁ ଅଞ୍ଚଳରୁ ଆମେ ଆସିଚୁ ସେ ଅଞ୍ଚଳର ଐତୀହ୍ୟ, ବ୍ୟକ୍ତିତ୍ୱ, ସଂସ୍କୃତି ଓ ସାମାଜିକ ପରିସ୍ଥିତି ଓ ପରମ୍ପରା ସମ୍ପର୍କରେ ସାଧାରଣ ତଥ୍ୟ ଦେବା ଆବଶ୍ୟକ । କାରଣ ପରବର୍ତ୍ତୀ ସମୟରେ ବାଙ୍କୀର ଉତ୍ତର ପୁରୁଷମାନଙ୍କୁ ଏଇ ବିଖ୍ୟାତ ମନିଷୀମାନଙ୍କର କାର୍ଯ୍ୟ ଓ କୃତି ଉଦ୍‌ବୁଦ୍ଧ କରିଥାଏ । ଆମେ ନିଜେ ମଧ ଏମାନଙ୍କ ଦ୍ୱାରା ଅନେକାଂଶରେ ଅନୁପ୍ରାଣୀତ ହୋଇଥିଲୁ ।

ଏକ ସମୟରେ ଓଡ଼ିଶାରେ ବଡ଼ ବଡ଼ ଡାକ୍ତରମାନଙ୍କ ନାଁ ପଡ଼ିଲେ ବାଙ୍କୀ କଥା ପ୍ରଥମେ ମନକୁ ଆସେ । ଡଃ. ବନବିହାରୀ ପଟ୍ଟନାୟକଙ୍କ ପରେ ଆଉ ଯେଉଁ ତିନିଜଣ ଡାକ୍ତର ଓଡ଼ିଶାର ମୁଖ ଉଜ୍ଜ୍ୱଳ କରିଥିଲେ ସେମାନେ ହେଲେ ଆମ ଗାଁ ଚର୍ଚ୍ଚିକାର ଡାକ୍ତର ମହେନ୍ଦ୍ର ଚନ୍ଦ୍ର ମିଶ୍ର । ସେ ଓଡ଼ିଶାର ପ୍ରଥମ ଚକ୍ଷୁ ବିଶେଷଜ୍ଞ ରୂପେ କଟକ ମେଡ଼ିକାଲ୍ କଲେଜର ପ୍ରଫେସର ଭାବେ କାର୍ଯ୍ୟ କରିଥିଲେ । ପରେ ସୁପରିଟେଣ୍ଡେଣ୍ଟ ହୋଇ ଅବସର ନେଇଥିଲେ । ତାଙ୍କ ସାନଭାଇ ଡାକ୍ତର ଶରତ ଚନ୍ଦ୍ର ମିଶ୍ର ଓଡ଼ିଶାର ସବୁଠାରୁ ଜନପ୍ରିୟ ଡାକ୍ତର । କଟକ ମେଡିକାଲ କଲେଜର ମେଡିସିନ୍ ବିଭାଗର ପ୍ରଫେସର ରୂପେ କାର୍ଯ୍ୟ କରିଥିଲେ । ରୋଗୀମାନେ କୁହନ୍ତି ଶରତ ବାବୁଙ୍କ କଥାବାର୍ତ୍ତାରେ ଅଧେରୋଗ ଭଲ ହୋଇଯାଏ । ପିଲାଦିନେ ଆମେ ଦେଖିଛୁ ଏ ଦୁଇଭାଇ ଯେତେବେଳେ ଆମ ଗାଁକୁ ଆସନ୍ତି ଲୋକେ ଲମ୍ବା ଲାଇନ୍ କରି ସେମାନଙ୍କ ସ୍ୱାସ୍ଥ୍ୟ ସମ୍ପର୍କରେ ପଚାରିବା ପାଇଁ ଅପେକ୍ଷା କରି ରହିଥାନ୍ତି । ଆମ ଘର ସହ ମହେନ୍ଦ୍ର ବାବୁ, ଶରତ ବାବୁଙ୍କ ପରିବାରର ଅତ୍ୟନ୍ତ ଘନିଷ୍ଠ ସମ୍ପର୍କ ଥିଲା । ମୁଁ ମୋ ଦଦେଇ(କ୍ଷତ୍ରୀୟ ପରିବାରରେ ବାପାଙ୍କୁ ଦଦେଇ ବୋଲି ସମ୍ବୋଧନ କରାଯାଇ ଥାଏ)ଙ୍କ ସହ ଯେତେବେଳେ କଟକ ଯାଉଥିଲି ସେତେବେଳେ ମେଡ଼ିକାଲ୍ କଲେଜ କ୍ୟାମ୍ପୋସ୍‌ରେ ଥିବା ମହେନ୍ଦ୍ର ବାବୁଙ୍କ ଘରେ ରହୁଥିଲି । ପିଲାଦିନୁ ମୁଁ ମହେନ୍ଦ୍ର ବାବୁ, ଶରତ ବାବୁ ଏବଂ ରଘୁମଣି ପଟ୍ଟନାୟକଙ୍କ ସଂସ୍ପର୍ଶରେ ଆସିଥିଲି । ମନ ଭିତରେ ସେତେବେଳେ ଅନେକ ସମୟରେ ଭାବନା ଆସୁଥିଲା ଯେ, ବଡ଼ ହେଲେ ମୁଁ ଏଇମାନଙ୍କ ଭଳି ହେବି । କିନ୍ତୁ ଏ ଜନ୍ମରେ ଆଉ ତା' ସମ୍ଭବ ହେଲା ନାହିଁ । ପୁନଃଜନ୍ମରେ ମୁଁ ବିଶ୍ୱାସ ରଖେ । କାରଣ ଶ୍ରୀମଦ୍ ଭଗବଦ୍ ଗୀତା ପଢ଼ିବା ବେଳେ ଆତ୍ମା ଗୋଟିଏ ଦେହ ଛାଡ଼ି ଆଉ ଗୋଟିଏ ଦେହରେ ପ୍ରବେଶ କରେ ବୋଲି ଭଗବାନ ଶ୍ରୀକୃଷ୍ଣଙ୍କ ମୁଖ ନିସୃତ ବାଣୀ ଯାହା ରହିଛି, ତାହା ଯଦି ସତ ହୋଇଥାଏ ତେବେ କେଜାଣୀ ଆରଜନ୍ମକୁ ଲୋକମାନଙ୍କ ସେବା ପାଇଁ ସୁଯୋଗ ମିଳିପାରେ ।

ବାଙ୍କୀର ଆଉଜଣେ ବିଖ୍ୟାତ ଡାକ୍ତର ହେଲେ ସୁବର୍ଣ୍ଣପୁରର ଡାକ୍ତର ବିଭୂତି ଭୂଷଣ ତ୍ରିପାଠୀ । ଆହୁରି ଅନେକ ଡାକ୍ତର ଓଡ଼ିଶାର ତିନୋଟି ଯାକ ମେଡ଼ିକାଲ୍ କଲେଜରେ ପ୍ରଫେସର ଭାବେ କାର୍ଯ୍ୟ କରି ଅବସର ନେଇଛନ୍ତି । ସମସ୍ତଙ୍କ ନାଁ ଦେଲେ ଏକ ଲମ୍ବା ତାଲିକା ହୋଇଯିବ । ଶିକ୍ଷା କ୍ଷେତ୍ରରେ ଓଡ଼ିଶାରେ ଯେଉଁ ଦୁଇଜଣଙ୍କ ନାମ ସର୍ବାଗ୍ରେ ମନକୁ ଆସେ ସେ ଦୁହେଁ ହେଉଛନ୍ତି ଓଡ଼ିଶାର ଅର୍ଥନୀତିର ପ୍ରବାଦ ପୁରୁଷ ଡଃ. ଦେବେନ୍ଦ୍ର ଚନ୍ଦ୍ର ମିଶ୍ର ଏବଂ ଓଡ଼ିଆ ସାହିତ୍ୟର ତପସ୍ୱୀ ସାଧକ ପ୍ରଫେସର ଡଃ. କୁଞ୍ଜ ବିହାରୀ ତ୍ରିପାଠୀ । ତୃତୀୟ ବ୍ୟକ୍ତି ଜଣକ ହେଲେ ପ୍ରଫେସର ପ୍ରାଣବନ୍ଧୁ କର । ଡଃ ଦେବେନ୍ଦ୍ର ମିଶ୍ର ପୃଥିବୀର ବିଖ୍ୟାତ ହାଓ୍ୱାଡ୍ ବିଶ୍ୱବିଦ୍ୟାଳୟରୁ ପିଏଚ୍‌ଡି ଡିଗ୍ରୀ ପାଇବାରେ ପ୍ରଥମ ଓଡ଼ିଆ । ସେ ହେଉଛନ୍ତି ମହେନ୍ଦ୍ର ବାବୁ ଓ ଶରତ ବାବୁଙ୍କର ସାନଭାଇ । ଡଃ ତ୍ରିପାଠୀ ଲଣ୍ଡନ ବିଶ୍ୱବିଦ୍ୟାଳୟରୁ ଭାଷାତତ୍ତ୍ୱରେ ପିଏଚ୍‌ଡି ଡିଗ୍ରୀ ଲାଭ କରିଥିଲେ । ଅଧ୍ୟାପକ ପ୍ରାଣବନ୍ଧୁ କରଙ୍କୁ ଓଡ଼ିଆ ଏକାଙ୍କୀକା

ଜଗତର ସମ୍ରାଟ ବୋଲି କୁହାଯାଇଥାଏ । ବାଙ୍କୀ ଏହି ବରପୁତ୍ରମାନଙ୍କୁ ନେଇ ଗର୍ବିତ ।

ବାଙ୍କୀରେ ଆମର ଉଜ୍ଜ୍ୱଳ ପରମ୍ପରା ଓ ବୀରତ୍ୱର ପ୍ରତୀକ ହେଉଛନ୍ତି ରାଣୀ ଶୁକଦେଇ । ଅସାମାନ୍ୟ ସୌନ୍ଦର୍ଯ୍ୟର ଅଧିକାରିଣୀ ରାଣୀ ଶୁକଦେଇ ଗଜପତି ମହାରାଜାଙ୍କୁ ଯୁଦ୍ଧରେ ପରାସ୍ତ କରି ବନ୍ଦୀ କରିଥିଲେ । ବାଙ୍କୀ, ଖୋର୍ଦ୍ଧା ଦୋସମାଳୀ ଗୋଟିଏପଟେ ତୁଳସୀପୁର ଓ ଅନ୍ୟପଟେ ଲଣ୍ଡା ଦେଉଳ ଏହାର ପ୍ରତୀକି ହୋଇ ରହିଛନ୍ତି । ବାଙ୍କୀ ରାଜବଂଶର ଏହି ବୀରା ରମଣୀ ସମଗ୍ର ଦେଶରେ ପରିଚିତା । ଆମେ ବାଙ୍କୀବାସୀ ତାଙ୍କୁ ନେଇ ଗର୍ବ କରୁ । ଆଜି ପରିଣତ ବୟସରେ ମୁଁ ଯେତେବେଳେ ମୋ ବାଲ୍ୟକାଳର ସ୍ମୃତି ରୋମନ୍ଥନ କରୁଛି ମୋ ଆଖି ଆଗକୁ ପୁଣି ଚାଲି ଆସୁଛନ୍ତି ଓଡ଼ିଶାର ପ୍ରଥମ ସାମ୍ବାଦିକ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ଅନ୍ୟତମ ବିନ୍ଧାଣୀ ବୈଦେଶ୍ୱରର ପଣ୍ଡିତ ନୀଳମଣି ବିଦ୍ୟାରତ୍ନ । ସମ୍ଭବତଃ ଓଡ଼ିଶାରେ ସ୍ୱାଧୀନତା ପୂର୍ବରୁ ସେ ଏକମାତ୍ର ବ୍ୟକ୍ତିତ୍ୱ ଯିଏ ବାମଣ୍ଡାରୁ ପ୍ରକାଶ ପାଉଥିବା ସମ୍ବଲପୁର ହିତୈଷିଣୀ ଜରିଆରେ ସମ୍ବଲପୁର ଅଞ୍ଚଳରୁ ସରକାରୀ ସ୍ତରରେ ହିନ୍ଦୀ ଭାଷା ବଦଳରେ ଓଡ଼ିଆ ଭାଷା ପ୍ରଚଳନ ପାଇଁ ଆନ୍ଦୋଳନ କରି ସଫଳ ହୋଇଥିଲେ । ବିଦ୍ୟାରତ୍ନ ହିତୈଷିଣୀ ଛାଡ଼ି ଗଞ୍ଜାମ ଆସି 'ପ୍ରଜାବନ୍ଧୁ' ଓ 'ଗଞ୍ଜାମ ଗୁଣଦର୍ପଣ' ପତ୍ରିକାର ସମ୍ପାଦନା କରିବା ସଙ୍ଗେ ସଙ୍ଗେ ମାଡ୍ରାସ ପ୍ରେସିଡେନ୍‌ସୀରୁ ଗଞ୍ଜାମକୁ ବିଚ୍ଛିନ୍ନ କରାଇ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ଦିଗରେ ଆନ୍ଦୋଳନ ଆରମ୍ଭ କରିଥିଲେ ।




ଖଲିକୋଟ ରାଜାଙ୍କ ସହାୟତାରେ ୧୯୦୩ ମସିହା ଏପ୍ରିଲ୍ ମାସରେ ଗଞ୍ଜାମ ସମ୍ମିଳନୀ ଆୟୋଜନ କରିଥିଲେ । ଉତ୍କଳ ଗୌରବ ମଧୁସୂଦନ ଏହି ସମ୍ମିଳନୀରେ ଯୋଗଦେଇ ବିଦ୍ୟାରତ୍ନଙ୍କର ସଂଗଠନ ଶକ୍ତିର ପରିଚୟ ପାଇଥିଲେ ଏବଂ ସେହିବର୍ଷ ଡିସେମ୍ବର ମାସରେ କଟକ ଠାରେ ଆୟୋଜିତ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନରେ ଯୋଗ ଦେବା ପାଇଁ ବିଦ୍ୟାରତ୍ନଙ୍କୁ ସ୍ୱତନ୍ତ୍ର ଭାବେ ନିମନ୍ତ୍ରଣ କରିଥିଲେ । ପିଲାଦିନୁ ଆମ କାନରେ ଏହି କୃତବିଦ୍ୟ ବ୍ୟକ୍ତିମାନଙ୍କର ଗୌରବଦିପ୍ତ ଜୀବନୀ ଅହରହ ବାଜି ଉଠୁଥିଲା ଏବଂ ତାହାହିଁ ଆମକୁ ଭବିଷ୍ୟତର ପଥ ଦେଖାଉଥିଲା ।

ଆଉ ଦୁଇଜଣଙ୍କ ମହିମା ଗାନ ନକଲେ ମନ ସନ୍ତୁଷ୍ଟ ହେବନାହିଁ । ଜଣେ ହେଲେ ବ୍ରିଟିଶ ସମୟର ପ୍ରଧାନ ସମାଲୋଚକ ଏବଂ ସଂଗଠକ ପଣ୍ଡିତ ଗୋବିନ୍ଦ ରଥ । ଆଉଜଣେ ହେଲେ ଓଡ଼ିଆ ଜାତିର, ଓଡ଼ିଆ ନାଟ୍ୟ ସାହିତ୍ୟର,

ଓଡ଼ିଆ ଥିଏଟର ଆନ୍ଦୋଳନର ପ୍ରଥିତଯଶା ନାୟକ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ । ଏମାନଙ୍କ ସମ୍ପର୍କରେ ଆରଥରକୁ ବର୍ଣ୍ଣନା କରିବା ।

ବାଙ୍କୀର ଗୋବିନ୍ଦରଥ ଇଂରେଜମାନଙ୍କ ବିରୋଧରେ ବିଶେଷ କରି ବାଙ୍କୀକୁ ଯାଉଥିବା ଡେପୁଟି କଲେକ୍ଟରମାନଙ୍କର କାର୍ଯ୍ୟ ସମ୍ପର୍କରେ ଛୋଟିଆ ଛୋଟିଆ କବିତାମାନ ରଚନା କରି ତାକୁ ଛାପୁଥିଲେ ଏବଂ ତା'ର ଦାମ୍ ଅଣାଟିଏ(ଏବେକାର ଚାରି ପଇସା) ରଖୁଥିଲେ । ଏହି ବହିଗୁଡ଼ିକୁ ସେତେବେଳେ ଅଣିକିଆ କବିତା ବୋଲି କୁହାଯାଉଥିଲା । ଗୋବିନ୍ଦ ରଥ କଟକରେ ପ୍ୟାରୀମୋହନ ଆଚାର୍ଯ୍ୟଙ୍କ ସହ ମିଶି ପ୍ୟାରୀମୋହନ ଏକାଡେମୀ ପ୍ରତିଷ୍ଠା ଦିଗରେ କାର୍ଯ୍ୟ କରିଥିଲେ । ପ୍ୟାରୀମୋହନ ଆଚାର୍ଯ୍ୟ ଏଥିପାଇଁ ଗୋବିନ୍ଦ ରଥଙ୍କୁ ଉଚ୍ଚ ପ୍ରଶଂସା କରି ତାଙ୍କ ଯୋଗୁଁ ଏହି ହାଇସ୍କୁଲ ପ୍ରତିଷ୍ଠା ସମ୍ଭବ ହେଲା ବୋଲି ମତ ଦେଇଥିଲେ । କଟକ ସହରର ନିମଚୌଡ଼ି ଠାରେ ଗୋବିନ୍ଦ ରଥ ଗୋଟିଏ ମେସ୍ ପ୍ରତିଷ୍ଠା କରିଥିଲେ । ଏହି ମେସ୍ ଗୋବିନ୍ଦ ରଥ ମେସ୍ ନାମରେ ପରିଚିତ ହୋଇଥିଲା । ବହୁ ବର୍ଷ ଧରି ଏହି ମେସ୍‌ଟି ଚାଲୁ ରହିଥିଲା । ବାଙ୍କୀ ଏବଂ ଆଖପାଖ ମଫସଲରୁ ଯେଉଁମାନେ କଟକ ପଢ଼ିବାକୁ ଯାଉଥିଲେ ସେମାନେ ଏହି ମେସ୍‌ରେ ରହୁଥିଲେ । ଗୋବିନ୍ଦ ରଥଙ୍କ ଘର ବାଙ୍କୀର ପାଟପୁର ଗ୍ରାମରେ ଥିଲା ।

ବାଙ୍କୀ ଖମାରଙ୍ଗ ଗ୍ରାମ ହେଉଛି ଓଡ଼ିଶାର ନାଟ୍ୟ ସମ୍ରାଟ କବିଚନ୍ଦ୍ର କାଳିଚରଣ ପଟ୍ଟନାୟକଙ୍କ ଗ୍ରାମ । କବିଚନ୍ଦ୍ରଙ୍କ ବାପା ବଡ଼ମ୍ବା ରାଜାଙ୍କ ଅଧିନରେ ଚାକିରୀ କରୁଥିବାରୁ କବିଚନ୍ଦ୍ର ସେହିଠାରେ ଜନ୍ମ ହୋଇଥିଲେ । ତେଣୁ କେତେକ ତାଙ୍କୁ ବଡ଼ମ୍ବାର ବୋଲି କୁହନ୍ତି । ମାତ୍ର ପ୍ରକୃତ ପକ୍ଷରେ ତାଙ୍କ ଘର ଖମାରଙ୍ଗରେ । କବିଚନ୍ଦ୍ର ତାଙ୍କ ଆତ୍ମଜୀବନୀ କୁମ୍ଭାରଚକରେ ତାଙ୍କର ସାମଗ୍ରିକ ଜୀବନ ସମ୍ପର୍କରେ ବର୍ଣ୍ଣନା କରିଛନ୍ତି । ତାଙ୍କ ସମ୍ପର୍କରେ ଅଧିକ ଲେଖିବା ଧୃଷ୍ଟତା ଛଡ଼ା ଆଉ କିଛି ହେବନାହିଁ ।

ଆମେ ଆମ ଆତ୍ମଜୀବନୀ ଲେଖିଲାବେଳେ ଆମ ପରିବାର ଓ ଆମ ପୂର୍ବ ପୁରୁଷଙ୍କର ସାମାନ୍ୟତମ ପରିଚୟ ଦେବା ଆବଶ୍ୟକ ମନେ କରୁଛୁ । ଆମ ପରିବାରର ଏକ ହାତଲେଖା ନଥିରୁ ଯାହା ପାଇଛୁ ତାହା ଏଠାରେ ଉଲ୍ଲେଖ କରୁଛୁ । ପ୍ରାୟ ୧୭୧୫ ମସିହାରେ ବାଙ୍କୀ ଚର୍ଚ୍ଚିକା ଗ୍ରାମ ନିବାସୀ ଧଳ ବଂଶର ପ୍ରଥମ ସ୍ଥାପୟିତା ଥିଲେ ରଣଜିତ୍ ଧଳ ପ୍ରତାପ ସିଂ ନାମକ ଜନୈକ ପ୍ରତାପୀ କ୍ଷେତ୍ରୀୟ ଯୋଦ୍ଧା । ଧଳଭୂମି(ଅଧୁନା ଝାଡ଼ଖଣ୍ଡ ରାଜ୍ୟ ଅନ୍ତର୍ଗତ) ରାଜାଙ୍କ ସହ କୌଣସି କାରଣରୁ ମନୋମାଳିନ୍ୟ ଘଟିବାରୁ ସେ ତାଙ୍କର ଦୁଇଟି ନାବାଳକ ପୁତ୍ର ଧର୍ମବାଦୀ ଓ ସତ୍ୟବାଦୀଙ୍କୁ ସାଙ୍ଗରେ ନେଇ ପଳାଇ ଆସି ବାଙ୍କୀ ଗଡ଼ରେ ରାଜାଙ୍କ ନିକଟରେ ପହଞ୍ଚିଲେ । କାରଣ ବାଙ୍କୀ ରାଣୀ ଓ ଡମପଡ଼ା ରାଣୀ ତାଙ୍କର ନିକଟ ସମ୍ପର୍କୀୟ ଭଉଣୀ ଥିଲେ । ଭଉଣୀମାନେ ଭାଇଙ୍କର ଏହି ବିପନ୍ନ ଅବସ୍ଥା ଦେଖି ସାହାଯ୍ୟ କରିବା ପାଇଁ ଆଗେଇ ଆସିଥିଲେ । ବାଙ୍କୀ ରାଣୀ ରଣଜିତଙ୍କୁ ବାଙ୍କୀର ରାଜଧାନୀ ଚର୍ଚ୍ଚିକା ଗ୍ରାମରେ ଆଶ୍ରୟ ଦେଇଥିଲେ । ଦୁଇ ପୁତ୍ରରା ଧର୍ମବାଦୀ ଓ ସତ୍ୟବାଦୀ ବଡ଼ ହୋଇଯିବା ପରେ ଜଣେ ଚର୍ଚ୍ଚିକାରେ ଏବଂ ଆଉଜଣେ ଡମପଡ଼ାରେ ସ୍ଥାୟୀଭାବେ ବସବାସ କରିଥିଲେ । ଚର୍ଚ୍ଚିକା ଧଳ ବଂଶ ମଞ୍ଚ ପରିକ୍ରମା ଆମେ ଏଥିସହିତ ଦେଲୁ ।

ଏବେ ଆମେ ଫେରି ଆସିବା ଆମର ବାଲ୍ୟଜୀବନକୁ । ପୂର୍ବରୁ କହିଛୁ ଆମ ବାଲ୍ୟଶିକ୍ଷା ଆରମ୍ଭ ହୋଇଥିଲା ବାଙ୍କୀ ଡମପଡ଼ା ହାଇସ୍କୁଲରୁ । ଆମେ ଏକାଦଶ ଶ୍ରେଣୀ ପାସ୍ କରିଥିଲୁ ପରିବର୍ତ୍ତିତ ନାମକରଣ ହୋଇଥିବା ବରେନ୍ଦ୍ର କୃଷ୍ଣ ବିଦ୍ୟାପୀଠରୁ । ଶିଶୁଠାରୁ ତୃତୀୟ ଶ୍ରେଣୀ ପର୍ଯ୍ୟନ୍ତ ଆମେ ଶିକ୍ଷାଲାଭ କରିଥିଲୁ ଚର୍ଚ୍ଚିକା ନିମ୍ନ ପ୍ରାଥମିକ

ବିଦ୍ୟାଳୟରୁ ।

## -ମୋର ଲେଖକ ଜୀବନର ଅୟମାରମ୍ଭ-

ହାଇସ୍କୁଲରେ ପଢ଼ିଲାବେଳେ ଆମ ଜୀବନର ବହୁ ଅଧ୍ୟାୟ ଆରମ୍ଭ ହୋଇଥିଲା । ସେତେବେଳେ ପ୍ରଜାତନ୍ତ୍ରରେ ମିନା ବଜାର ନାମକ ଏକ ଅନୁଷ୍ଠାନ ଗଢ଼ା ହୋଇଥିଲା । ପ୍ରତି ଗୁରୁବାର ଦିନ ମୀନା ବଜାରରେ ଗପ, କବିତା ଆଦି ପ୍ରକାଶ ପାଉଥିଲା । ସପ୍ତମ ଶ୍ରେଣୀରେ ମୁଁ ମୋର କେତେଜଣ ସାଙ୍ଗଙ୍କୁ ନେଇ 'ଚର୍ଚ୍ଚିକା ମୀନାମଣ୍ଡଳୀ' ଗଠନ କରିଥିଲୁ । ୧୯୫୪ ମସିହାରେ ଯେତେବେଳେ ମୁଁ ଅଷ୍ଟମ ଶ୍ରେଣୀରେ ପଢୁଥିଲି ଆମେ ସବୁ ମିଶି ଏକ ହାତଲେଖା ପତ୍ରିକା ପ୍ରକାଶ କଲୁ । ସେହି ପତ୍ରିକାରେ ମୁଁ 'ବିଲୁଆର ବୁଦ୍ଧି' ଏବଂ 'ଅଗଷ୍ଟ ପନ୍ଦର' ନାମରେ ଗୋଟିଏ ଗପ ଓ ଗୋଟିଏ କବିତା ଲେଖିଥିଲି । ପରେ ଏହି ପତ୍ରିକାଟିକୁ ଆମେ ଜହୁରୀ ଭାଇ(ଶ୍ରୀ ରାମ ପ୍ରସାଦ ମହାନ୍ତି)ଙ୍କ ନିକଟକୁ ତାଙ୍କ ମତାମତ ପାଇଁ ପଠାଇଥିଲୁ । ଜହୁରୀ ଭାଇ ତାଙ୍କର ମତାମତ ଦେଇ ମୋର ଗପ ଓ କବିତାକୁ ପ୍ରଶଂସା କରିଥିଲେ ।

ମାସକ ପରେ ସମ୍ଭବତଃ ଜୁନ୍ ମାସ ହେବ ହଠାତ୍ ମୋର ଦୁଇଜଣ ସାଙ୍ଗ ଦଉଡ଼ି ଦଉଡ଼ି ଆମ ଘରକୁ ଆସି ମତେ କୁଣ୍ଢେଇ ପକେଇ କହିଲେ ମୀନା ବଜାରରେ ତୋ ବିଲୁଆର ବୁଦ୍ଧି ଗପ ଆଜି ପ୍ରକାଶ ପାଇଛି । ମୁଁ ସେମାନଙ୍କ କଥା ଶୁଣି ଆଶ୍ଚର୍ଯ୍ୟ ହୋଇଗଲି । ସାଙ୍ଗେ ସାଙ୍ଗେ ପୋଷ୍ଟ ଅଫିସ୍‌କୁ ଧାଇଁଲି । ସେତେବେଳେ ପ୍ରତାତନ୍ତ୍ର ବଣ୍ଡଲ କଟକ-ବାଙ୍କୀ ବସ୍‌ରେ ବାରଙ୍ଗ ଦେଇ ଆସୁଥିଲା । ମାଧବ ଚନ୍ଦ୍ର ମିଶ୍ର ନାମରେ ଜଣେ ଅବସରପ୍ରାପ୍ତ ବ୍ୟକ୍ତି ଏହାର ଏଜେଣ୍ଟ ଥିଲେ । ମୁଁ ତାଙ୍କ ପାଖରୁ ଗୋଟିଏ ପ୍ରଜାତନ୍ତ୍ର କାଗଜ କିଣି ଆଣିଲି । ସେତେବେଳେ ପ୍ରଜାତନ୍ତ୍ର କାଗଜର ଦାମ୍ ଥିଲା ଏକ ଅଣା ।

ଓଡ଼ିଶାରେ ସେତେବେଳେ ତିନୋଟି ଦୈନିକ ସମ୍ବାଦପତ୍ର ପ୍ରକାଶ ପାଉଥିଲା । ସବୁଗୁଡ଼ିକ କଟକ ସହରରୁ ପ୍ରକାଶିତ ହେଉଥିଲା । ସେଗୁଡ଼ିକ ହେଲା ସମାଜ(ସମ୍ପାଦକ- ରାଧାନାଥ ରଥ), ପ୍ରଜାତନ୍ତ୍ର(ସମ୍ପାଦକ- ଜାନକୀ ବଲ୍ଲଭ ପଟ୍ଟନାୟକ) ଓ ମାତୃଭୂମି(ସମ୍ପାଦକ- ବାଳକୃଷ୍ଣ କର) । ପ୍ରଜାତନ୍ତ୍ରରେ ମୋର ଲେଖା ପ୍ରକାଶ ପାଇଛି ବୋଲି ସେଦିନ ସହରସାରା ପ୍ରଚାର ହୋଇଗଲା । ବହୁ ବଡ଼ ବଡ଼ ଲୋକ ମତେ ଅଭିନନ୍ଦନ ଜଣାଇଲେ । ତା' ପରଦିନ ସ୍କୁଲରେ ଆମ ହେଡ୍ ମାଷ୍ଟର ଫକୀର ମୋହନ ପଟ୍ଟନାୟକ ମତେ ଭାରି ପ୍ରଶଂସା କଲେ । ଅନ୍ୟ ଶିକ୍ଷକମାନେ ମଧ ଉକ୍ତ ଲେଖା ପଢ଼ି ମୋ ପିଠିରେ ହାତ ବାଡ଼େଇ ମତେ ବାହାବାଃ ଦେଲେ । ଜୀବନରେ ଏତେ ଆନନ୍ଦ ଆସେ ସେହିଦିନ ପ୍ରଥମଥର ପାଇଁ ମୁଁ ଅନୁଭବ କଲି । ପରେ ପରେ ମୀନା ମଣ୍ଡଳୀକୁ ଅଧିକ ମଜବୁତ କରିବା ପାଇଁ ମୁଁ ଲାଗି ପଡ଼ିଲି । ସମୟ ଗଡ଼ି ଚାଲିଲା ।

ସେହିବର୍ଷ ଅଗଷ୍ଟ ୧୪ ତାରିରେ ହଠାତ୍ ମୋ ପାଇଁ ଆଉ ଏକ ବିସ୍ମୟ ଅପେକ୍ଷା କରିଥିଲା । ଅଗଷ୍ଟ ୧୪ ଗୁରୁବାର ପଡୁଥିବାରୁ ଅଗଷ୍ଟ ୧୫ ସ୍ୱାଧୀନତା ଦିବସ ପାଇଁ ମୀନାବଜାର ପ୍ରକାଶ ପାଇଥିଲା । ସେହି ସଂଖ୍ୟା ମୀନା ବଜାରରେ ମୋର ଅଗଷ୍ଟ ପନ୍ଦର କବିତାଟି ଜାତୀୟ ପତାକା ଛବିତଳେ ବଡ଼ ବଡ଼ ହେଡ଼ିଂରେ ପ୍ରକାଶ ପାଇଥିଲା । ମୁଁ ଯେଉଁ ଆନନ୍ଦ ଜୁନ୍ ମାସରେ ପାଇଥିଲି ତା'ଠାରୁ ଆହୁରି ଅଧିକ ଖୁସି ମତେ ଲାଗିଲା ଅଗଷ୍ଟ ପନ୍ଦର କବିତାଟି ଦେଖି । ବାଙ୍କୀର ଚାରିଆଡ଼େ ଏହା ଉପରେ ରୀତିମତ ଚର୍ଚ୍ଚା ଚାଲିଲା । ତା' ପରଦିନ ଆମ ହାଇସ୍କୁଲରେ ଜାତୀୟ ସଂଗୀତ ଗାନ କରାଯାଇ ପତାକା ଉତ୍ତୋଳନ ହେବା ପରେ ଆମ ହେଡ୍‌ମାଷ୍ଟର ମୋତେ ମୋର ଅଗଷ୍ଟ ପନ୍ଦର କବିତାଟିକୁ ଆବୃତି କରିବା ପାଇଁ କହିଥିଲେ । ଆଜି ଏତେଦିନ ପରେ ଏକଥା ଲେଖିଲା ବେଳକୁ ବାଲ୍ୟକାଳର ସେ ସ୍ମୃତି

ଯେତେବେଳେ ମନରେ ଆସିଲା ମନଟା ରୋମାଞ୍ଚିତ ହୋଇ ଉଠିଲା । ମନେ ହେଲା ମୁଁ ସେଇ ଦିନକୁ ଫେରି ଯାଇଛି ।

ଆଜି ଜୀବନରେ ବହୁ ସମ୍ମାନ, ସମ୍ବର୍ଦ୍ଧନା ପାଇଥିଲେ ମଧ ସେଦିନ ପ୍ରଜାତନ୍ତ୍ରର ସେହି ଦୁଇଟି ଲେଖା ବାଙ୍କୀ ସହରରେ ମତେ ଯେମିତି ଏକ ହୀରୋ ବନେଇ ଦେଇଥିଲା । ଆଜି ଭାବିଲେ ମନରେ ଏକ ଅଦ୍ଭୁତ ଅନୁଭୂତି ଜାତି ହୁଏ। ସେହି ଦୁଇଟି ଲେଖା ମତେ ଆକୃଷ୍ଟ କରିଥିଲା ଓଡ଼ିଆ ସାହିତ୍ୟ ପ୍ରତି । ମୁଁ କ୍ରମାଗତ ଭାବେ ସେତେବେଳେ ଲେଖି ଚାଲିଲି ଏବଂ ମୋର ଲେଖା ନିୟମିତ ବ୍ୟବଧାନରେ ମୀନାବଜାରରେ ପ୍ରକାଶ ପାଇଲା ।

୧୯୫୫ ମସିହାରେ ମୁଁ ନବମ ଶ୍ରେଣୀରେ ପଢୁଥିଲା ବେଳେ ଜଟଣୀର କୁଦିଆରୀ ଠାରେ ରାଜ୍ୟସ୍ତରୀୟ ମୀନାମେଳା ଅନୁଷ୍ଠିତ ହେଲା । ଠିକ୍ ସମୟ ବା ତାରିଖ ଆଜି ମନେ ପଡୁନାହିଁ । ଡଃ ମହତାବ ସେତେବେଳେ ବମ୍ବେରେ ରାଜ୍ୟପାଳ ଥିଲେ । ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିଲେ ନବକୃଷ୍ଣ ଚୌଧୁରୀ । ଏହି ମୀନାମେଳାକୁ ଉଦ୍‌ଘାଟନ କରିଥିଲେ ଭାରତର ତତ୍କାଳୀନ ଅର୍ଥମନ୍ତ୍ରୀ ଶ୍ରୀ ସି.ଡି. ଦେଶମୁଖ ଏବଂ ମୁଖ୍ୟ ଅତିଥି ରୂପେ ଯୋଗ ଦେଇଥିଲେ ତାଙ୍କ ପତ୍ନୀ ତଥା ଭାରତ ସମାଜ ମଙ୍ଗଳ ବୋର୍ଡ଼ର ସଭାନେତ୍ରୀ ଶ୍ରୀମତୀ ଦୁର୍ଗାବାଇ ଦେଶମୁଖ । ଏଇଠି ଆମେ ସବୁ ରହିବା ପାଇଁ ତମ୍ବୁ ଟଣା ଯାଇଥିଲା । ଏଇଠି ମୋର ଦେଖା ହୋଇଥିଲେ ନିରଞ୍ଜନ ପଟ୍ଟନାୟକ(କେଉଁଝର, ପରବର୍ତ୍ତୀ ସମୟରେ ଓଡ଼ିଶାର ମନ୍ତ୍ରୀ), ଜିତେନ୍ଦ୍ର ନାରାୟଣ ପଟ୍ଟନାୟକ(ଇଂରାଜୀ ପ୍ରଫେସର ହୋଇ ଅବସର ନେଲେଣି), ନାରାୟଣ ପୃଷେଠ(ପଶ୍ଚିମ ଓଡ଼ିଶାର ବିଶିଷ୍ଟ ଶିକ୍ଷାବିତ୍) ପ୍ରଭୃତିଙ୍କ ସହିତ । ସେହିଦିନ ଠାରୁ ଆମେ ସମସ୍ତେ ବର୍ତ୍ତମାନ ପର୍ଯ୍ୟନ୍ତ ଘନିଷ୍ଠ ବନ୍ଧୁ ହୋଇ ରହି ଆସିଛୁ । ସେହି ମୀନାମେଳାରେ ମୁଁ ପ୍ରବନ୍ଧ, କବିତା ଆବୃତ୍ତିରେ ପ୍ରଥମ ସ୍ଥାନ ଅଧିକାର କରିଥିଲି । ଆଜି ଅତୀତ ପୁଣିଥରେ ଆଖି ଆଗକୁ ଆସି ଯାଉଛି । ଆଉଥରେ ପୁଣି ମନ ହେଉଛି ଫେରିଯିବି କି ସେହି ଅତୀତକୁ ।

ମୀନା ବଜାର ମୋତେ ବହୁ ଭାବରେ ପ୍ରଭାବିତ କରିଥିଲା । ଛୋଟ ବୟସରୁ ମୋର ନିୟମିତ ଭାବେ ଲେଖା ପ୍ରକାଶ ପାଇବା ଫଳରେ ବାଙ୍କୀରେ ମୁଁ ବେଶ୍ ଜଣାଶୁଣା ହୋଇ ପଡ଼ିଥିଲି । ନବମ ଶ୍ରେଣୀ ପଢୁଥିବା ବେଳେ ଅର୍ଥାତ ୧୯୫୫ ମସିହାରେ ମହାନଦୀରେ ବଡ଼ ବଢ଼ି ଆସିଥିଲା । ଏହି ବଢ଼ିରେ ବାଙ୍କୀ ସଂପୂର୍ଣ୍ଣ ଭାବେ କଟକ ଓ ଖୋର୍ଦ୍ଧାରୁ ବିଚ୍ଛିନ୍ନ ହୋଇ ପଡ଼ିଥିଲା । ଏପରିକି ବାଙ୍କୀର ପଶ୍ଚିମପଟେ ଥିବା ବୈଦେଶ୍ୱର ମଧ ବଢ଼ିରେ ବାଙ୍କୀରୁ ବିଚ୍ଛିନ୍ନ ହୋଇଥିଲା । ଅନେକ ଅଞ୍ଚଳରେ ପାଣି ପଶିଯିବା ଫଳରେ ସେସବୁ ଗ୍ରାମମାନଙ୍କରେ ଥିବା ଲୋକ ଗ୍ରାମଛାଡ଼ି ଉଚ୍ଚ ଜାଗା ଓ ପାହାଡ଼ ଉପରେ ଆଶ୍ରୟ ନେଇଥିଲେ । ବାଙ୍କୀର ପୂର୍ବପଟେ କଟକ ରାସ୍ତାରେ ରଣଶଙ୍ଖ ନାମରେ ଏକ ଛୋଟ ପୋଲ ଥିଲା । ବାଙ୍କୀ ଖାସ୍‌ମାଲ୍ ହେବା ପରେ ପରେ ସାହେବ(ବ୍ରିଟିଶ ହାକିମ)ମାନଙ୍କ ବାଙ୍କୀକୁ ଯିବା ଆସିବା ପାଇଁ ରଣନଦୀ ଉପରେ ଏହି ପୋଲ ୧୮୬୦ ମସିହାରୁ ନିର୍ମିତ ହୋଇଥିଲା । ଆଜି ଅଢ଼େଇ ଶହ ବର୍ଷ ପରେ ଏହି ପୋଲ ସେହିପରି ରହିଛି ଏବଂ ଏହି ଲୁହାରେ ଏବେ ମଧ କଳଙ୍କି ଲାଗି ନାହିଁ । ଏହାକୁ ଦେଖିଲେ ମନ ଭିତରେ ବ୍ରିଟିଶ କାରିଗରି ବିଦ୍ୟା ପ୍ରତି ଶ୍ରଦ୍ଧା ଜାତ ହୁଏ । ଏହା ସେତେବେଳେ ଅଣ ଓସାରିଆ ହୋଇ ନିର୍ମିତ ହୋଇଥିଲା । ଗୋଟିଏ ବସ୍ ବା ଟ୍ରକ୍ ଏହା ଉପରେ ଗଲେ ଅପର ଦିଗରୁ ଆସୁଥିବା ଗାଡ଼ିକୁ ଅପେକ୍ଷା କରିବାକୁ ପଡ଼େ । ସେତେବେଳେ ବାଙ୍କୀରୁ ବାରଙ୍ଗକୁ ଦୁଇଟି ଗାଡ଼ି ଚାଲୁଥିଲା । ଗୋଟିଏ ପାଣୁ ମଙ୍ଗରାଜଙ୍କର ଏବଂ ଅନ୍ୟଟି ଫଗୁ ଦାସଙ୍କର । ଫଗୁ ଦାସ ନିଜ ବସ୍ ନିଜେ ଚଲାଉଥିବାରୁ ତାହାକୁ ଫଗୁ ଡ୍ରାଇଭର ଗାଡ଼ି ବୋଲି କୁହାଯାଏ । ଏ ଦୁଇଟିଯାକ ଗାଡ଼ି ଦୁଇଘଣ୍ଟା ବ୍ୟବଧାନରେ ବାରଙ୍ଗ ଯାଏ । କଟକରୁ ବାଙ୍କୀ ଯାତ୍ରୀମାନେ ଟ୍ରେନ୍‌ରେ ଆସି ଏହି ବସ୍‌ରେ ବାଙ୍କୀ ଆସନ୍ତି । ଖରାଦିନେ

ତ୍ରିଶୁଳିଆ ଠାରୁ କାଜି ପାଟଣା ପର୍ଯ୍ୟନ୍ତ କୁଆଖାଇ ନଦୀରେ ଖରାଦିନିଆ ରାସ୍ତା ତିଆରି ହେବା ପରେ ବାଙ୍କୀରୁ କଟକ ସିଧାସଳଖ ଯାଇ ହୁଏ । ଏବେ ଅବଶ୍ୟ କୁଆଖାଇ ନଦୀରେ ପୋଲ ହୋଇଯିବା ଫଳରେ ବା ୀ-କଟକ ମଧ୍ୟରେ ସବୁଦିନିଆ ଯୋଗାଯୋଗ ସମ୍ଭବ ହୋଇଛି ।

ଆମର ମୂଳ ଆଲୋଚନା ଥିଲା ବନ୍ୟା । ୫୫ ମସିହା ବନ୍ୟାରେ ବହୁ ଲୋକ ବାସଚ୍ୟୁତ ହୋଇଥିଲେ । ସେହିବର୍ଷ ଦଳେଇ ଘାଇ ଭାଙ୍ଗିଥିଲା । ବାଙ୍କୀରୁ ଯେଉଁମାନଙ୍କ ଘର ପାଣିରେ ବୁଡ଼ିଥିଲା ସେମାନଙ୍କୁ ରିଲିଫ୍ ଦେବାପାଇଁ ଆମ ସ୍କୁଲ୍ ହେଡ୍ ମାଷ୍ଟର ଫକୀର ବାବୁ ଆମମାନଙ୍କୁ ସଂଗଠିତ କରି କିଛି ରିଲିଫ୍ ଚାଉଳ, ଡାଲି ନେଇ ଲୋକମାନଙ୍କ ପାଖକୁ ପଠାଇଲେ । ଆମେ ଡଙ୍ଗାରେ ଯାଇ ସେମାନଙ୍କୁ ରିଲିଫ୍ ଦେଉଥିଲୁ । ରିଲିଫ୍ ସାମଗ୍ରୀ ଯୋଗାଡ଼ ପାଇଁ ଆମେ ବାଙ୍କୀ ଡେପୁଟୀ କଲେକ୍ଟରଙ୍କୁ ସାକ୍ଷାତ କରିଥିଲୁ । ଆମେ ରିଲିଫ୍ ଦେଉଥିବା ଶୁଣି ସେ ଖୁସି ହେଲେ ଏବଂ ପାଞ୍ଚ ବସ୍ତା ଚୂଡ଼ା, ବସ୍ତାଏ ଗୁଡ଼ ଓ ଅଧବସ୍ତେ ଲୁଣ ଆମକୁ ଦେଲେ । ଆମେ ଗୋଟିଏ ଶଗଡ଼ରେ ଏହି ଜିନିଷ ସବୁ ଲଦି ସ୍କୁଲକୁ ଆଣିଲୁ । ବାଙ୍କୀ ଟାଉନ୍‌ରୁ ବେପାରୀମାନଙ୍କ ଠାରୁ ମହମବତୀ, ଦିଆସିଲି, ଦୀପ, ଜଡ଼ାତେଲ, ସଳିତା ଆଦି ସଂଗ୍ରହ କଲୁ । ଏହାକୁ ଡଙ୍ଗାରେ ନେଇ ଆମେ ବିଭିନ୍ନ ଜାଗାକୁ ଦେବାକୁ ଗଲାବେଳେ କିଛି ଭୋକିଲା ଲୋକ ଆମଠାରୁ ତାହା ଛଡ଼ାଇ ନେବାପାଇଁ ଉଦ୍ୟମ କରିବାରେ ମୁଁ ଆମ ପିଲାଙ୍କୁ ଡଙ୍ଗା ଫେରାଇ ନେବାକୁ କହିଲି । ସେତେବେଳେ ସେମାନେ ସେଥିରୁ ନିବୃତ୍ତ ହୋଇ ଧାଡ଼ିବାନ୍ଧି ଠିଆ ହେଲେ ଏବଂ ଆମେ ସୁରୁଖୁରୁରେ ରିଲିଫ୍ ବାଣ୍ଟି ଘରକୁ ଫେରିଥିଲୁ । ଏହିସବୁ ଘଟଣାରେ ମୁଁ ପ୍ରାୟ ନେତୃତ୍ୱ ନେଉଥିଲି । ସେଥର ବଢ଼ି ପାଣି ପ୍ରାୟ ୧୬/୧୭ ଦିନ ବାଙ୍କୀରେ ରହିଲା । ଆମ ରିଲିଫ୍ ଦେବା କାର୍ଯ୍ୟକୁ ବାଙ୍କୀ ଡେପୁଟୀ କଲେକ୍ଟର ଉଚ୍ଚ ପ୍ରଶଂସା କରିଥିଲେ । ଆମ ହେଡ୍‌ମାଷ୍ଟର ମତେ ଏଥିପାଇଁ ହାଇସ୍କୁଲ ପୁରସ୍କାର ବିତରଣୀ ସଭାରେ ଏକ ସ୍ୱତନ୍ତ୍ର ପୁରସ୍କାର ଏକ କପ୍ ଦେଇଥିଲେ । ଏହି ଘଟଣା ପରେ ସାମାଜିକ କ୍ଷେତ୍ରରେ କାର୍ଯ୍ୟ କରିବା ପାଇଁ ମୋର ମନରେ ଏକ ଉତ୍ସାହ ଓ ବିଶ୍ୱାସ ଜନ୍ମିଲା ଏବଂ ଏହା ମୋତେ ସାହସ ମଧ ଯୋଗାଇଲା ।

## -ସୀମା ଆନ୍ଦୋଳନ-

୧୯୫୬ ମସିହା ମୋ ଜୀବନର ଏକ ଅବିସ୍ମରଣୀୟ ସମୟ । ଏହି ବର୍ଷ ଓଡ଼ିଶାରେ ସୀମା ଆନ୍ଦୋଳନ ଆରମ୍ଭ ହୋଇଥିଲା । ସୀମା ପୁନଃଗଠନ କମିଶନ କେନ୍ଦ୍ରରେ ଗଢ଼ା ହେବା ପରେ ବିହାରରେ ଥିବା ଓଡ଼ିଶାର ଦୁଇ ଗଡ଼ଜାତ ଷଢ଼େଇକଳା ଓ ଖରସୁଆଁ ଓଡ଼ିଶାରେ ପୁର୍ନମିଶ୍ରଣ କରିବା ପାଇଁ ଆନ୍ଦୋଳନ ଆରମ୍ଭ ହେଲା । ସେତେବେଳେ ଓଡ଼ିଶାରେ ମୁଖ୍ୟମନ୍ତ୍ରୀ ଥିଲେ ନବକୃଷ୍ଣ ଚୌଧୁରୀ । ଚାରିଆଡ଼େ ଏହି ଆନ୍ଦୋଳନ ପାଇଁ ଡାକରା ଦିଆଗଲା । ବାଙ୍କୀରେ ସେତେବେଳେ ଏମ୍‌ଏଲ୍‌ଏ ଥିଲେ ପ୍ରଜା ସୋସାଲିଷ୍ଟ ଦଳର ବିଶିଷ୍ଟ ନେତା ଶ୍ରୀ ଗୋକୁଳାନନ୍ଦ ପ୍ରହରାଜ । ଆନ୍ଦୋଳନର ସେ ନେତୃତ୍ୱ ନେଇଥିଲେ । ମୁଁ ଛାତ୍ରମାନଙ୍କର ନେତୃତ୍ୱ ନେଇଥିଲି । ସେହି ଆନ୍ଦୋଳନରେ ମୁଁ ଜୀବନରେ ପ୍ରଥମେ ସଭାରେ ଭାଷଣ ଦେଲି । ବାଙ୍କୀ ବଜାରରେ ଏଥିପାଇଁ ହୋଇଥିବା ସଭା ଗୋକୁଳାନନ୍ଦ ବାବୁ ପରିଚାଳନା କରୁଥିଲେ । ସେ ମତେ ଛାତ୍ରମାନଙ୍କ ପକ୍ଷରୁ କହିବା ପାଇଁ ଆହ୍ୱାନ କଲେ । ମୁଁ କେତେ ମିନିଟ୍ ଭାଷଣ ଦେଇଥିଲି ଆଜି ତାହା ମନେ ନାହିଁ । କିନ୍ତୁ ସଭା ଶେଷ ହେବା ପରେ ମୋର କେତେକ ବନ୍ଧୁ ମୋତେ ପ୍ରଶଂସା କରି କହିଲେ, 'ତୁ ଏବେ ନେତା ହୋଇଗଲୁ ।'

ସୀମା ଆନ୍ଦୋଳନ ମୋ ଜୀବନରେ ଏକ ମାଇଲି ଖୁଣ୍ଟ କହିଲେ ଅତ୍ୟୁକ୍ତି ହେବ ନାହିଁ । ମୋତେ ଏହି ଆନ୍ଦୋଳନ

ଓଡ଼ିଶାର ରାଜନୀତି, ସାମାଜିକ ସ୍ଥିତି ଏବଂ ନେତୃତ୍ୱ ପାଇଁ ଏକ ନିର୍ଦ୍ଦିଷ୍ଟ ଦିଗ୍‌ଦର୍ଶନ ଦେଇଥିଲା । ସେତେବେଳେ ବାଙ୍କୀରୁ ଜଟଣୀକୁ ଏବଂ କଟକକୁ ଚାଲୁଥିବା ବସ୍ ଆମେ ବନ୍ଦ କରି ଦେଇଥିଲୁ । କଟକ ସୀମା ଆନ୍ଦୋଳନର ମୁଖ୍ୟସ୍ଥଳୀ ଥିଲା । ବାଙ୍କୀରେ ଏଥିପାଇଁ ଗୋକୁଳି ବାବୁଙ୍କ ନେତୃତ୍ୱରେ ଏକ କମିଟି ଗଠନ କରା ଯାଇଥିଲା । ମୁଁ ଜଣେ ଲେଖାଏଁ ବନ୍ଧୁଙ୍କୁ ନେଇ ସାଇକେଲ୍‌ରେ ଦିନେ ଛାଡ଼ି ଦିନେ କଟକ ଯାଉଥିଲି । ସେଠାରେ ସୀମା ଆନ୍ଦୋଳନର ନେତୃବୃନ୍ଦମାନଙ୍କୁ ଭେଟି ଗୋକୁଳି ବାବୁଙ୍କ ପତ୍ର ନେଇ ସେମାନଙ୍କୁ ଦେଉଥିଲି ଏବଂ ସେମାନଙ୍କର ନିର୍ଦ୍ଦେଶ ଚିଠା ଆଣି ବାଙ୍କୀ ଆସୁଥିଲି । ସେତେବେଳେ ମୋର ସୀମା ଆନ୍ଦୋଳନର ନେତୃବର୍ଗଙ୍କ ସମ୍ପର୍କରେ ଏତେ ଧାରଣା ନଥିଲା । ତେଣୁ ଏମାନଙ୍କର ନେତା କିଏ ଜାଣିବା ସମ୍ଭବ ହୋଇ ନଥିଲା । ପରେ ମୁଁ ଯାହା ଜାଣିଲି ସୀମା ଆନ୍ଦୋଳନ ପାଇଁ ତିନୋଟି ଗୋଷ୍ଠୀ କାର୍ଯ୍ୟ କରୁଥିଲେ । ଏମାନଙ୍କ ମଧ୍ୟରୁ ଗୋଟିଏ ଗୋଷ୍ଠୀ ହେଲା ରାଜେନ୍ଦ୍ର ନାରାୟଣ ସିଂ ଦେଓଙ୍କ ନେତୃତ୍ୱାଧୀନ ଗୋଷ୍ଠୀ । ନିମଚଉଡ଼ି ଠାରେ ଆଡ଼ଭୋକେଟ୍ ମଧୁ ମହାନ୍ତିଙ୍କ ବାସଭବନରେ କାର୍ଯ୍ୟ କରୁଥିଲା । ଦ୍ୱିତୀୟ ଗୋଷ୍ଠୀ ପ୍ରଜା ସୋସାଲିଷ୍ଟ ଦଳର ନେତା ବିଶ୍ୱନାଥ ପଣ୍ଡିତ, ବାଙ୍କ ବିହାରୀ ଦାସ, ପ୍ରଦୀପ୍ତ ଦାସ ଓ ନିଶାମଣି ଖୁଣ୍ଟିଆଙ୍କ ନେତୃତ୍ୱରେ କାର୍ଯ୍ୟ କରୁଥିଲେ ।

ସୀମା ଆନ୍ଦୋଳନର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ନେତା ଥିଲେ ରେଭେନ୍ସା କଲେଜ ଛାତ୍ର ସଂସଦର ସଭାପତି ହରିଶ୍ଚନ୍ଦ୍ର ବକ୍ସିପାତ୍ର । ବସ୍ତୁତଃ ତାଙ୍କରି ନେତୃତ୍ୱକୁ ଓଡ଼ିଶାର ଛାତ୍ର ସମାଜ ମାନି ନେଇଥିଲେ । ମୋର ଏକ ବିଚିତ୍ର ପରିସ୍ଥିତିରେ ବକ୍ସିବାବୁ(ତାଙ୍କୁ ଏହି ନାମରେ ଅଧିକାଂଶ ଡାକୁଥିଲେ)ଙ୍କ ସହ ଦେଖା ହୋଇଥିଲା । ପ୍ରଥମେ ଯେଉଁଦିନ ମୁଁ ଏବଂ ମୋର ଜଣେ ବନ୍ଧୁ ଚକ୍ରଧର ମହାନ୍ତି ସାଇକେଲ୍‌ରେ କଟକ ଯାଇ ପହଞ୍ଚିଲୁ ଆମେ କାହାକୁ ଭେଟିବୁ ଜାଣିପାରି ନଥିଲୁ । କଲେଜ ଛକ ପାଖରେ ଆମ ଗାଁର ଜଣେ ପିଲା ଦେଖା ହେଲେ । ସେ ସେତେବେଳେ ମଧୁସୂଦନ ଆଇନ୍ କଲେଜରେ ପଢୁଥିଲେ । ଆମେ ତାଙ୍କୁ ଦେଖି ଆମ ଆସିବା ଉଦ୍ଦେଶ୍ୟ କହିଲୁ । ସେ ଆମକୁ କହିଲେ ୱେଷ୍ଟ ହଷ୍ଟେଲ୍‌ରେ ହରିଶ୍ ବକ୍ସିପାତ୍ରଙ୍କୁ ଦେଖା କର । ସେ ହେଉଛନ୍ତି ଏହି ଆନ୍ଦୋଳନର ନେତା । ଆମେ ୱେଷ୍ଟ ହଷ୍ଟେଲ କେଉଁଠି ତାହା ମଧ ଜାଣି ନଥିଲୁ । ସେ ଆମକୁ ନେଇଯାଇ ୱେଷ୍ଟ ହଷ୍ଟେଲ ସିଡ଼ି ପାଖରେ ଛାଡ଼ିଦେଲେ ଏବଂ ଉପର ମହଲାରେ ବକ୍ସିପାତ୍ରଙ୍କୁ ଦେଖା କରିବାକୁ କହିଲେ । ଆମେ ଉପର ମହଲାକୁ ଗଲୁ । ଉପର ମହଲାର ବାରଣ୍ଡାରେ ଲମ୍ବା ଲମ୍ବା ବେଞ୍ଚ୍ ସାମନା ସାମନି ହୋଇ ପଡ଼ିଥିଲା । ଆମେ ଗୋଟିଏ ବେଞ୍ଚରେ ବସିଲୁ ।

ଆମେ ବସିବା ଦେଖି କେଇଜଣ ଛାତ୍ର ଆମ ଆଡ଼କୁ ମାଡ଼ି ଆସିଲେ । ଆମେ ମନ ଭିତରେ ଭୟ ପାଇଗଲୁ । ଜଣେ ଆମକୁ ପଚାରିଲେ, 'ତମେ ସବୁ କିଏ ? ଏଠାକୁ କାହିଁକି ଆସିଛ ?' ମୁଁ ଠିଆ ହୋଇ ପଡ଼ିଲି । କହିଲି, 'ଆମେ ବାଙ୍କୀରୁ ଆସିଛୁ ହରିଶ୍ଚନ୍ଦ୍ର ବକ୍ସିପାତ୍ରଙ୍କୁ ଦେଖା କରିବା ପାଇଁ । ସେମାନଙ୍କ ମଧ୍ୟରୁ ଆଉଜଣେ ପଚାରିଲେ, 'ତାଙ୍କ ପାଖରେ ତୁମର କ'ଣ କାମ ?' ମୁଁ କହିଲି, 'ବାଙ୍କୀରେ ସୀମା ଆନ୍ଦୋଳନ ଆମେ ଆରମ୍ଭ କରିଛୁ । ସେଥିପାଇଁ ଗୋକୁଳି ବାବୁଙ୍କ ଚିଠି ଧରି ଆସିଛୁ ।' ସେମାନଙ୍କ ମଧ୍ୟରୁ ଜଣେ ବ୍ୟଙ୍ଗକରି କହିଲେ, 'ବାଙ୍କୀରେ କରିଛ ?' ଆଉ ଜଣେ ତାଙ୍କ କଥା ଶୁଣି ହସିଲେ । ଆମେ ଦୁହେଁ ସ୍କୁଲ ପିଲା । କିଛି କହି ପାରିଲୁ ନାହିଁ । କିନ୍ତୁ ଭାରି ଖରାପ ଲାଗିଲା । ସେମାନେ ଆଉ କ'ଣ କିଛି କହିଥାନ୍ତେ । ମାତ୍ର ସାମ୍‌ନା ପଟୁ ଜଣେ ହୃଷ୍ଟପୁଷ୍ଟ ଗୋରା ତକ୍‌ତକ୍ ଯୁବକ ଆସୁଥିବାର ଦେଖି ସମସ୍ତେ ଚୁପ୍ ହୋଇଗଲେ । ମୁଁ ସିଆଡ଼କୁ ଚାହିଁଲି । ଦେଖିଲି ଯୁବକ ଜଣକ ଖାକି ଫୁଲ୍‌ପ୍ୟାଣ୍ଟ ପିନ୍ଧିଛନ୍ତି । ଫୁଲ୍‌ପ୍ୟାଣ୍ଟର ତଳୁ ଦୁଇଭାଙ୍ଗ କରି ଦେଇଛନ୍ତି ଏବଂ ଗୋଟିଏ ଧଳା ହାପ୍ ସାର୍ଟ ପିନ୍ଧିଛନ୍ତି । ଆଖିରେ ମୋଟା ଫ୍ରେମ୍‌ର ଚଷମା ପିନ୍ଧିଛନ୍ତି । ମୁଁ ଆଶ୍ଚର୍ଯ୍ୟ ହେଲି । ଇଏ କିଏ ?

ଆମେ ଦୁହେଁ ଆଗନ୍ତୁକଙ୍କୁ ଦେଖୁଥିଲୁ । ସେ ପାଖକୁ ଆସିବା ଦେଖି ସବୁ ଛାତ୍ର ଠିଆ ହୋଇ ପଡ଼ିଲେ । ଆମେ ମଧ ଠିଆ ହୋଇ ପଡ଼ିଲୁ । ପାଖକୁ ଆସି ସେହି ସୌମ୍ୟ ଦର୍ଶନ ଯୁବକ ଆମ ପାଖରେ ଠିଆ ହେଲେ । ଆମେ କିଛି ନଜାଣି ତାଙ୍କୁ ନମସ୍କାର କଲୁ । ସେ ଆଗକୁ ଚାଲିଯିବା ବେଳେ ହଠାତ୍ ଅଟକି ଗଲେ । ଆମକୁ ପଚାରିଲେ ତୁମେ ଦୁହେଁ ରେଭେନ୍ସା କଲେଜ ଛାତ୍ର ? ଆମେ ମନା କଲୁ । କହିଲୁ, 'ଆମେ ବାଙ୍କୀ ବରେନ୍ଦ୍ର କୃଷ୍ଣ ବିଦ୍ୟାପୀଠର ଛାତ୍ର । ବାଙ୍କୀରେ ସୀମା ଆନ୍ଦୋଳନ ଆରମ୍ଭ ହୋଇଛି । ଆମ ଏମ୍‌ଏଲ୍‌ଏ ଗୋକୁଳାନନ୍ଦ ପ୍ରହରାଜ ଏହାର ନେତୃତ୍ୱ ନେଇଛନ୍ତି । ଆମେ ଆସିଛୁ ହରିଶ୍ଚନ୍ଦ୍ର ବକ୍ସିପାତ୍ରଙ୍କୁ ଭେଟିବାପାଇଁ । କାରଣ ଆନ୍ଦୋଳନର ପରବର୍ତ୍ତୀ ପର୍ଯ୍ୟାୟ କ'ଣ ହେବ ତାହା ବୁଝିବାପାଇଁ ।' ସେ ଆମ କଥା ଶୁଣି ହସିଲେ । କହିଲେ, 'ମୁଁ ହେଉଛି ହରିଶ୍ଚନ୍ଦ୍ର ବକ୍ସିପାତ୍ର । ଆମେ ଘାବରେଇ ଗଲୁ ଏତେବଡ଼ ଆନ୍ଦୋଳନର ସର୍ବୋଚ୍ଚ ଛାତ୍ରନେତାଙ୍କୁ ଦେଖି । ସେ ଆମକୁ ପଚାରିଲେ, 'ତୁମେମାନେ ଆସିଛ କିପରି ?' ଆମେ କହିଲୁ, 'ସକାଳୁ ସାଇକେଲ୍‌ରେ ବାହାରି ସିଧା ଆପଣଙ୍କ ପାଖକୁ ଆସୁଛୁ ।' ସେ ପାଖରେ ଠିଆ ହୋଇଥିବା ଛାତ୍ରମାନଙ୍କ ମଧରୁ ଜଣକୁ କହିଲେ, 'ଏ ଦୁଇଜଣଙ୍କୁ ଖାଲିଥିବା କାହା ରୁମ୍‌କୁ ନେଇଯାଅ । ସେମାନେ ଗାଧୁଆ ପାଧୁଆ ସାରିଲେ ମେସ୍‌ରେ ନେଇ ଖୁଆଇଦବ ।' ଆମକୁ କହିଲେ, 'ତୁମେ ଦୁହେଁ ଖାଇସାରିବା ପରେ ମତେ ଦେଖାକର ।' ଆମେ ଏତେଟା ଉଦାରତା ଆଶା କରୁ ନଥିଲୁ । ମୋର ମନେ ହେଉଥିଲା ଜଣେ ଭଲନେତା ତା' କର୍ମୀମାନଙ୍କର ସୁବିଧା ଅସୁବିଧା ଦେଖିବା ଯେପରି ପ୍ରଥମ କର୍ତ୍ତବ୍ୟ ବକ୍ସିବାବୁ ତାହା ହିଁ କାର୍ଯ୍ୟରେ ଦେଖାଇଛନ୍ତି । ସେହି ମୁହୂର୍ତ୍ତରୁ କେଜାଣି କାହିଁକି ମୋର ବକ୍ସିବାବୁଙ୍କ ପ୍ରତି କେମିତି ଏକ ଆନୁଗତ୍ୟ ଓ ଶ୍ରଦ୍ଧା ଜାତ ହୋଇଥିଲା ଏବଂ ତାହା ତାଙ୍କ ଜୀବନର ଶେଷ ପର୍ଯ୍ୟନ୍ତ ଅବିଚ୍ଛିନ୍ନ ହୋଇ ରହିଥିଲା । ଆଜି ସେ ଜୀବିତ ନାହାନ୍ତି । କିନ୍ତୁ ମୋ ମନ ଭିତରେ ତାଙ୍କ ପ୍ରତି ସେହି ଶ୍ରଦ୍ଧା ଓ ସମ୍ମାନ ଏବେ ମଧ ରହିଛି ।

ଆମେ ୱେଷ୍ଟ ହଷ୍ଟେଲର ଗୋଟିଏ ଖାଲି ରୁମ୍‌ରେ ପହଞ୍ଚିଲୁ । ସାଙ୍ଗରେ ତଉଲିଆ ନେଇଥିଲୁ । ଗାଧୁଆ ପାଧୁଆ ସାରି ପ୍ୟାଣ୍ଟ ସାର୍ଟ ପିନ୍ଧି ତଳେ ଆସି ମେସ୍‌ରେ ଭାତ, ଡାଲି, ଛୋଟ ଚିଙ୍ଗୁଡ଼ି ପକା ଘାଣ୍ଟିଆ ତରକାରୀ ଖାଇଲୁ । ଖାଇ ସାରିଲା ପରେ ମନଟା ପୂର୍ତ୍ତିହେଲା । ଯେଉଁ ଛାତ୍ରମାନେ ଆମକୁ ମେସ୍‌କୁ ନେଇଥିଲେ ସେମାନଙ୍କୁ ନେଇ ବକ୍ସିବାବୁଙ୍କ ପାଖକୁ ଗଲୁ । ବକ୍ସିବାବୁ ତାଙ୍କ ରୁମ୍‌ରେ ଥିଲେ । ଆମେ ଯାଇ ଠିଆ ହେଲୁ । ସେ ଆମକୁ ପାଖରେ ଥିବା ଦୁଇଟି ଚେୟାରରେ ବସିବାକୁ କହିଲେ । ବାଙ୍କୀ ସମ୍ପର୍କରେ ଅନେକ କଥା ପଚାରିଲେ । ବସ୍ ବନ୍ଦ ହେବା କଥା, କୋର୍ଟ କଚେରୀ ବନ୍ଦ କରିବା କଥା, ପ୍ରତୀକ ଭାବେ ବଜାର ବନ୍ଦ ହେବା କଥା ଆଦି ବୁଝିଲା ପରେ ମତେ ଏହା ଉପରେ ଏକ ସମ୍ବାଦ ଲେଖିବା ପାଇଁ କହିଲେ । ମୁଁ ତାଙ୍କ ଠାରୁ କାଗଜ ଆଣି 'ବାଙ୍କୀରେ ସୀମା ଆନ୍ଦୋଳନ ତେଜିଲା' ଶୀର୍ଷକ ଗୋଟିଏ ସମ୍ବାଦ ଲେଖିଲି । ସେ ସମ୍ବାଦଟି ପଢ଼ି ମୋ ହାତ ଅକ୍ଷରକୁ ପ୍ରଶଂସା କଲେ ଏବଂ ତା'ର ଆଉ ଦୁଇଟି କପି କରିବାକୁ କହିଲେ । 'ସମାଜ', 'ପ୍ରଜାତନ୍ତ୍ର' ଓ 'ମାତୃଭୂମି'ରେ ଏହି ସମ୍ବାଦ ଦେବା ପାଇଁ ତଳେ ଦସ୍ତଖତ ଦେଇ ଜଣେ ପିଲା ହାତରେ ପଠେଇ ଦେଲେ । ସେତେବେଳେ ସବୁଠାରୁ ବେଶୀ ପ୍ରସାର ଥିଲା 'ମାତୃଭୂମି'ର । ସୀମା ଆନ୍ଦୋଳନର ମୁଖପତ୍ର ରୂପେ 'ମାତୃଭୂମି' କାର୍ଯ୍ୟ କରୁଥିଲା । 'ମାତୃଭୂମି' ହକର କାଗଜ ନେବା ମାତ୍ରେ ବିକ୍ରୀ ହୋଇ ଯାଉଥିଲା । ଆମେ ବକ୍ସିବାବୁଙ୍କୁ ଦେଖାକରି ନିମଚଉଡ଼ି ଠାରେ ଥିବା ଚର୍ଚ୍ଚିକା ହୋଟେଲକୁ ଆସିଲୁ । ଚର୍ଚ୍ଚିକା ହୋଟେଲ୍‌ଟି ପୂର୍ବରୁ ଗୋବିନ୍ଦ ରଥ ମେସ୍ ଥିଲା । ପରେ ଆମ ଗାଁ ଚର୍ଚ୍ଚିକାର ବିଚି ଭାଇ(ବିଚିତ୍ରାନନ୍ଦ ମହାପାତ୍ର) ସେଠାରେ ଚର୍ଚ୍ଚିକା ହୋଟେଲ୍ ଖୋଲିଥିଲେ । ମତେ ଦେଖି ବିଚିଭାଇ ଭାରି ଖୁସି ହୋଇଥିଲେ ଏବଂ ସେଦିନ ହୋଟେଲ୍‌ରେ ରହିବା ପାଇଁ ଆମକୁ କହିଥିଲେ ।

ସେଦିନ ସନ୍ଧ୍ୟାବେଳକୁ ଆମେ ଅପେକ୍ଷା କରିଥିଲୁ । ବକ୍ସିବାବୁଙ୍କ ଦସ୍ତଖତରେ 'ବାଙ୍କୀ ସୀମା ଆନ୍ଦୋଳନ' ସମ୍ବାଦ ସବୁ କାଗଜକୁ ଯାଇଥିଲା । ବିଚିଭାଇଙ୍କୁ କହିଲୁ । ସେ କହିଲେ ଆମ ହୋଟେଲ୍‌କୁ ସବୁ କାଗଜ ଆସେ । ଆମେ ସେହି ମୁହୂର୍ତ୍ତକୁ ଅପେକ୍ଷା କଲୁ । ପ୍ରତି ମୁହୂର୍ତ୍ତ ଆମକୁ ଗୋଟିଏ ଯୁଗ ପରି ମନେ ହେଉଥାଏ । ସନ୍ଧ୍ୟା ସାଢ଼େ ଛଅଟା ବେଳକୁ ପ୍ରଥମେ ପ୍ରଜାତନ୍ତ୍ର ଦେଲା । ମୁଁ କାଗଜ ଝାମ୍ପି ନେଇ ସବୁ ପୃଷ୍ଠା ଓଲଟାଇଲି । ତୃତୀୟ ପୃଷ୍ଠାରେ ଆମ ସମ୍ବାଦ ପ୍ରକାଶ ପାଇଥିଲା । ମୋ ନାଁ ପଛରେ ଛାତ୍ରନେତା ବୋଲି ଲେଖା ଯାଇଥିଲା । ବକ୍ସିବାବୁ ମୋ ନାଁ ପଛରେ ଛାତ୍ରନେତା ବୋଲି ତାଙ୍କ ହାତ ଅକ୍ଷରରେ ଲେଖି ଯୋଡ଼ି ଦେଇଥିଲେ । ବିଚିଭାଇ କହିଲେ, 'ମାତୃଭୂମି'ରେ ଯଦି ବାହାରି ଥିବ ତେବେ ଚାରିଆଡ଼େ ଲୋକ ଜାଣିବେ । ସାତଟା ବେଳକୁ ମାତୃଭୂମି ଆସିଲା । ଦ୍ୱିତୀୟ ପୃଷ୍ଠାରେ 'ବାଙ୍କୀ ସୀମା ଆନ୍ଦେଳନ ତେଜିଲା' ସମ୍ବାଦ ପ୍ରକାଶ ପାଇଥିଲା । ବିଚି ଭାଇଙ୍କି ସବୁ କାଗଜରୁ ଦୁଇଟି ଲେଖାଏଁ କପି କିଣିଦେବାକୁ ଆମେ କହିଲୁ ।  କାରଣ ବାଙ୍କୀକୁ ବସ୍ ଯିବା ବନ୍ଦ ହୋଇ ଥିବାରୁ ଖବର କାଗଜ ଯାଉନଥିଲା । ବିଚି ଭାଇ ତାଙ୍କ ଲୋକ ପଠାଇ ସବୁ କାଗଜରୁ ଦୁଇଟି ଲେଖାଏଁ କପି ନେଇ ଆସିଲେ । ଆମେ ପରଦିନ ସକାଳୁ ସକାଳୁ ସାଇକେଲ୍‌ରେ ବାଙ୍କୀ ବାହାରିଲୁ । ସେତେବେଳେ ମୁଁ ଚା' ପିଉ ନଥିଲି । କୋଡ଼ିଏ କିଲୋମିଟର ପରେ ଆମେ ଦୁହେଁ ମହାନଦୀ କୂଳରେ କରଞ୍ଜ ଗଛରୁ ଖଣ୍ଡେ ଡାଳ ଭାଙ୍ଗି ଦାନ୍ତକାଠି କରି ଦାନ୍ତ ଘଷିଲୁ । ମୁହଁ ଧୋଇ ସାଇକେଲ୍‌ରେ ବସି ଭଗିପୁର ପାଖରେ ପହଞ୍ଚି ଜଳଖିଆ ଦୋକାନରେ ଗରମ ଗରମ ବରା-ତର୍କାରୀ ଖାଇଲୁ । ଦେହରେ ବଳ ଲାଗିଲା । ଟିକେ ବସି ବାଙ୍କୀ ବାହାରିଲୁ ।

ଦିନ ପ୍ରାୟ ସାଢ଼େ ଦଶଟା ବେଳକୁ ଗାଁରେ ପହଞ୍ଚିଲୁ । ମତେ ଦେଖି ମୋ ସାଙ୍ଗମାନେ ବେଢ଼ିଗଲେ । କଟକ କଥା ପଚାରିଲେ । ମୁଁ ସେଇଠୁ ଘରକୁ ଯାଇ ପ୍ୟାଣ୍ଟ ସାର୍ଟ ବଦଳି ଭଲ ପ୍ୟାଣ୍ଟ ସାର୍ଟ ପିନ୍ଧି ବଜାରକୁ ଗଲି । ଗୋକୁଳି ବାବୁ ବାଙ୍କୀ ବଜାରରେ ଗୋଲକ ମିଶ୍ର ହୋଟେଲ୍‌ରେ ରହୁଥାନ୍ତି । ସବୁ ଖବର କାଗଜରୁ ଗୋଟିଏ ଲେଖାଏଁ କପି ନେଇ ତାଙ୍କୁ ଦେଲି । ସମ୍ବାଦ ପଢ଼ି ସେ ଭାରି ଖୁସି ହୋଇଗଲେ । ମୋ ପିଠି ଥାପୁଡ଼େଇ କହିଲେ, ତୁ ପ୍ରକୃତରେ ବାଙ୍କୀର ଯୋଗ୍ୟ ପୁଅ ।

ସେହିଦିନ ସନ୍ଧ୍ୟାବେଳେ ବାଙ୍କୀ ବଜାରରେ ଏକ ସଭା ଡକା ହେଲା । ପ୍ରାୟ ଦୁଇଶହ ପର୍ଯ୍ୟନ୍ତ ଲୋକ ସଭାରେ ଥିଲେ । ମୁଁ କଟକ ସୀମା ଆନ୍ଦୋଳନର ସ୍ଥିତି, ପରିସ୍ଥିତି, ହରିଶ୍ଚନ୍ଦ୍ର ବକ୍ସିପାତ୍ରଙ୍କ ସହ ସାକ୍ଷାତ ଏବଂ ଖବର କାଗଜରେ ବାଙ୍କୀ ଆନ୍ଦୋଳନ ସମ୍ପର୍କରେ ପ୍ରକାଶ ପାଇଥିବା ସମ୍ବାଦ କଥା କହିଲି । ଗୋକୁଳି ବାବୁ ସବୁ କାଗଜରେ ବାଙ୍କୀ କଥା ବାହାରି ଥିବାରୁ ବାଙ୍କୀ ଆନ୍ଦୋଳନ ଓଡ଼ିଶାର ଦୃଷ୍ଟି ଆକର୍ଷଣ କରିଛି ବୋଲି ମତ ଦେଇ ସେଥିପାଇଁ ମୋ ଉଦ୍ୟମକୁ ପ୍ରଶଂସା କରିଥିଲେ ।

ଖବର କାଗଜର ସମ୍ବାଦକୁ ଗୋକୁଳି ବାବୁ ବଡ଼ ପାଟିରେ ପାଠ କରିଥିଲେ । ସୀମା ଆନ୍ଦୋଳ ସାରା ବାଙ୍କୀରେ ଜୋରଦାର କରିବା ପାଇଁ ସଭାରେ ବିଭିନ୍ନ ବକ୍ତା ମତ ଦେଇଥିଲେ । ତା' ପରେ ବାଙ୍କୀରେ ମୋର ଏକ ଅଲଗା ପରିଚୟ ସୃଷ୍ଟି ହୋଇଥିଲା ।

ସୀମା ଆନ୍ଦୋଳନ ପ୍ରାୟ ଦୁଇମାସ ଧରି ଚାଲିଲା । ମୋର ସୌଭାଗ୍ୟ ଏହି ଆନ୍ଦୋଳନ ସମୟରେ ବାଙ୍କୀରୁ ନିୟମିତ କଟକ ଯାଇ ଓଡ଼ିଶାର ବହୁ ମାନ୍ୟଗନ୍ୟ ବ୍ୟକ୍ତିଙ୍କ ସହ ମୋର ସାକ୍ଷାତ ହୋଇଥିଲା । ଦଶମ ଶ୍ରେଣୀରେ ପଢୁଥିବା ବେଳେ ଜଣେ ଛାତ୍ର ସହ ଏହି ପ୍ରମୁଖ ନେତାମାନଙ୍କର ସମ୍ପର୍କ ମୋତେ କେଜାଣି କେମିତି ଅଲଗା ଅଲଗା ମନେ ହେଉଥିଲା ।

ସୀମା ଆନ୍ଦୋଳନ ଶେଷ ହେଲା । ଯେଉଁ ଉଦ୍ଦେଶ୍ୟରେ ଏତେ ବଡ଼ ଆନ୍ଦୋଳନ ହୋଇଥିଲା ତା'ର କିଛି ସୁଫଳ ଓଡ଼ିଶାକୁ ମିଳିଲା ନାହିଁ । କେନ୍ଦ୍ର ସ୍ୱରାଷ୍ଟ୍ର ମନ୍ତ୍ରୀ ଗୋବିନ୍ଦ ବଲ୍ଲଭ ପନ୍ଥ ଓଡ଼ିଶା ଆସି ଓଡ଼ିଆଙ୍କ ପିଠି ଥାପୁଡ଼େଇ କହିଲେ ବୁଝିବା- ଓଡ଼ିଶା ପ୍ରତି ନ୍ୟାୟ କରାଯିବ । ବାସ୍ ସେତିକି । ତା'ପରେ ଏ ଆନ୍ଦୋଳନ ଫସର ଫାଟିଗଲା । ତେବେ ଏ ଆନ୍ଦୋଳନ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀଙ୍କୁ ମୁଖ୍ୟମନ୍ତ୍ରୀତ୍ୱ ପଦରୁ ଇସ୍ତଫା ଦେବାକୁ ବାଧ କରିଥିଲା । ଡଃ ହରେକୃଷ୍ଣ ମହତାବ ବମ୍ବେ ରାଜ୍ୟପାଳ ପଦରୁ ଇସ୍ତଫା ଦେଇ ଓଡ଼ିଶା ଆସିଲେ ଏବଂ ମୁଖ୍ୟମନ୍ତ୍ରୀ ହେଲେ ୧୯.୧୦.୧୯୫୬ ତାରିଖରେ ।

ଆମେ ପାଠପଢ଼ାରେ ମନ ଦେଲୁ । ଆଠମାସ ପରେ ମାଟ୍ରିକ୍ ପରୀକ୍ଷା । ଏତିକିବେଳେ ପୁଣି ମୋ ଜୀବନରେ ଆଉ ଏକ ଘଟଣା ଘଟିଲା । ଆମ ହାଇସ୍କୁଲରେ ଖେଳ ପଡ଼ିଆ ଥିଲା କଚେରୀ ପଡ଼ିଆ । ବାଙ୍କୀରେ ସେତେବେଳେ ସବୁ ଫୁଟବଲ୍ ଖେଳ ଆର୍ଥଲେଟିକ୍ସ ସଭା-ସମିତି ସବୁ କଚେରୀ ପଡ଼ିଆରେ ହେଉଥିଲା । ହଠାତ୍ ଆମେ ଶୁଣିଲୁ କଚେରୀ ପଡ଼ିଆରେ ବ୍ଲକ୍ ଅଫିସ୍ ଓ ଷ୍ଟାଫ୍ କ୍ୱାର୍ଟର ହେବ । ମୁଁ ସେତେବେଳେ ବାଙ୍କୀ ହାଇସ୍କୁଲ ଫୁଟବଲ୍ ଟିମ୍‌ର କ୍ୟାପଟେନ୍ ଥିଲି । ଆମର ଖେଳ ଶିକ୍ଷକ ଥିଲେ ଭୁବନେଶ୍ୱର ମଙ୍ଗରାଜ । ଲୋକେ ତାଙ୍କୁ ଭୁବନି ବାବୁ ବୋଲି ଡାକୁଥିଲେ । ଆମ ପ୍ରଧାନ ଶିକ୍ଷକ ଥିଲେ ଫକୀର ମୋହନ ପଟ୍ଟନାୟକ । ବାଙ୍କୀର ଡେପୁଟି କଲେକ୍ଟର ଇନ୍‌ଚାର୍ଜ ଥିଲେ ଜି.ପି. ସ୍ୱାମୀ ନାମରେ ଜଣେ ବ୍ୟକ୍ତି । ଇଏ କିରାନିରୁ ଉଠି ଡେପୁଟି କଲେକ୍ଟର ହୋଇଥିଲେ । ସେ ଆତ୍ମଗର୍ବିଓ ତାଙ୍କ ଅଧସ୍ତନ କର୍ମଚାରୀମାନଙ୍କ ପ୍ରତି ଅତ୍ୟନ୍ତ ଅପମାନଜନକ ବ୍ୟବହାର କରୁଥିଲେ । ଆମ ହେଡ଼ମାଷ୍ଟର ଓ ଭୁବନି ବାବୁ ମୋତେ ଡାକି କହିଲେ ପିଲାଙ୍କୁ ନେଇ ଡେପୁଟି କଲେକ୍ଟରଙ୍କ ସହ ଦେଖା କରିବା ପାଇଁ । ଇଏ ୧୯୫୭ ମସିହାର ଫେବୃଆରୀ ମାସର କଥା । ଆମେ ପ୍ରାୟ ପଚାଶ ଜଣ ପିଲା ଡେପୁଟି କଲେକ୍ଟର ଜି.ପି. ସ୍ୱାମୀଙ୍କ ନିକଟକୁ ଗଲୁ । ତାଙ୍କ କ୍ୱାର୍ଟରରେ ଦେଖା କଲୁ । ସେ ପ୍ରଥମେ ଦେଖା ଦେଉ ନଥିଲେ । ମାତ୍ର ଆମେ ଦେଖା ନକଲେ ଯିବୁ ନାହିଁ ବୋଲି କହିବାରେ ସେ ପ୍ରାୟ ଘଣ୍ଟାକ ପରେ ଆସିଲେ । ଆମକୁ ଦେଖି ଖିଙ୍କାରି ହେଲାଭଳି କହିଲେ ପାଠ-ଶାଠ ଛାଡ଼ି ଏଠି ଆସି କାହିଁ ବସିଛ ? ମୁଁ ତାଙ୍କୁ ଆମ ଆସିବା କଥା କହିଲି । ସେ ମତେ ଦେଖି କହିଲେ ତୁ କିଏ ? ତୋ ବାପ କ'ଣ କରେ ? ତାଙ୍କ କଥା ଶୁଣି ମୁଁ ଦବିଗଲି । ତେବେ ସୀମା ଆନ୍ଦୋଳନ ମୋତେ ଅନେକ କିଛି ଶିକ୍ଷା ଦେଇଥିଲା । ତା' ଭିତରେ ଗୋଟିଏ ଥିଲା ସାହସିକତା । ମୁଁ ନିର୍ଭୟରେ କହିଲି ମୁଁ କିଏ ମୋ ବାପା କିଏ ଜାଣି ଆପଣ କ'ଣ କରିବେ ? ଆମେ ଯେଉଁ କାମରେ ଆସିଛୁ ସେ କଥା ଶୁଣନ୍ତୁ । ସେ ସାଙ୍ଗେ ସାଙ୍ଗେ କହିଲେ ତୁ ସେ ସୁରେନ୍ଦ୍ର ଶ୍ରୀଚନ୍ଦନ ପୁଅ ତ ? ତୋ ବାପା ମୋ ପାଖରେ ରେଭିନ୍ୟୁ ଇନ୍‌ସପେକ୍ଟର ଅଛି ତ ? ବହୁତ ବଡ଼ ବଡ଼ କଥା କହୁଛୁ । ଯା ପଳା- ନହେଲେ ଦେଖିବ କ'ଣ କରିବି ? ମୁଁ ସେତେବେଳକୁ ବଡ଼ ଅପମାନିତ ବୋଧ କଲିଣି । କହିଲି କ'ଣ କରିବ । ମାରିବ- ଜେଲ୍ ଦେବ କ'ଣ କରିବ ? ସେଇଭଳି ସେ ଖିଙ୍କାରି ହୋଇ କହିଲେ- ଆବେ କିଏ ଅଛ ସେ ଟୋକା ସବ୍‌ଇନ୍‌ସପେକ୍ଟରଙ୍କୁ ଡାକ । ଏ ଟୋକାକୁ ଧରିନେଇ ଥାନାରେ ରଖିଦେବ । ମୁଁ ଦେଖିବି କେତେ ତାକତ୍ । ଆମେ ପଳାଇ ଆସିଲୁ । ଆସିବା ପୂର୍ବରୁ ମୁଁ କହିଲି ରହରେ ଶଳା- ଦେଖିବୁ କ'ଣ କରିବି ? ସେ ଆମ ଆଡ଼କୁ ଉହୁଙ୍କି ଆସିବାରୁ ଆମେ ପଳାଇ ଆସିଲୁ ।

ସ୍କୁଲକୁ ଆସି ହେଡ଼ମାଷ୍ଟରଙ୍କୁ ସବୁକଥା କହିଲୁ । ସେ କହିଲେ ବଡ଼ ଅଡୁଆ ହୋଇଗଲା । ସେ ବଦ୍‌ମାସ ଲୋକ । ତମେ ସବୁ ତାକୁ ଆହୁରି ବିଗିଡ଼େଇ ଦେଲ । ମୁଁ କହିଲି ସାର୍ ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ । ମୁଁ ଆଜି କଟକ ଯାଉଛି । ସେଠି ଜହୁରୀ ଭାଇ (ପ୍ରଜାତନ୍ତ୍ର ମୀନାବଜାରର ମୁଖ୍ୟ)ଙ୍କୁ ଭେଟି ସବୁକଥା କହିବି । ପ୍ରତିଦିନ ମୁଖ୍ୟମନ୍ତ୍ରୀ ଡଃ ମହତାବ ସେଠିକି ଆସନ୍ତି । ହେଡ଼ମାଷ୍ଟର ଜାଣିଥିଲେ ମୋର ମୀନା ବଜାର ଜହୁରୀଭାଇଙ୍କ ସହ ଖୁବ୍ ଘନିଷ୍ଠ ସମ୍ପର୍କ ।

ସେ ମୋତେ ସ୍କୁଲ ପାଣ୍ଠିରୁ କୋଡ଼ିଏ ଟଙ୍କା ଦେଲେ । ସେଇଦିନ ମୁଁ ବସ୍‌ରେ କଟକ ଆସି ଗଣେଶ ଘାଟ ଧର୍ମଶାଳାରେ ରହିଲି । ତା' ପରଦିନ ସାଢ଼େ ଦଶଟା ବେଳେ ପ୍ରଜାତନ୍ତ୍ର ଅଫିସ୍ ଗଲି । ମୀନା ବଜାର ଅଫିସରେ ବସିଲି । ଜହୁରୀ ଭାଇ ରାମ ପ୍ରସାଦ ମହାନ୍ତି ଆସି ନଥା'ନ୍ତି । ଦଶମିନିଟ୍ ପରେ ଆସିଲେ । ମତେ ଦେଖି ଖୁବ୍ ଖୁସି ହୋଇଗଲେ । କହିଲେ ବରେନ୍ଦ୍ର କେବେ ଆସିଛୁ ? ଆଜି ତୋ ଗପ ବାହାରିଛି । ସେତେବେଳେ ସନ୍ଧ୍ୟାବେଳେ ସବୁ କାଗଜ ପ୍ରକାଶ ପାଉଥିଲା । ତେବେ ମୀନା ବଜାର କ୍ରୋଡ଼ପତ୍ର ଦିନକ ପୂର୍ବରୁ ପ୍ରକାଶ ପାଉଥିଲା । ସେଦିନର ସନ୍ଧ୍ୟା ପ୍ରଜାତନ୍ତ୍ର ସହ ଯିବ । ଜହୁରୀ ଭାଇ ଖଣ୍ଡେ ମୀନାବଜାର ଆଣି ମୋତେ ଦେଲେ । ମୋ ଗପ ପ୍ରକାଶ ପାଇଥିଲା ।

ମୋର ସେଦିନ ଗପ ବାହାରିଲା ବୋଲି ଆଜି ମଧ୍ୟ ମନେ ଅଛି । କାରଣ ସନ୍ଧ୍ୟାରେ ଜହୁରୀ ଭାଇ ଡଃ ମହତାବଙ୍କ ସହ ମୋର ପରିଚୟ କରାଇ ଦେଲାବେଳେ ସେଦିନ ମୀନା ବଜାରରେ ମୋର ଗଳ୍ପ ତାଙ୍କୁ ଦେଖାଇଥିଲେ । ମୁଁ ଜହୁରୀଭାଇଙ୍କୁ ସବୁକଥା କହିଥିଲି । ସେ ମୋତେ ଆଶ୍ୱାସନା ଦେଇଥିଲେ ସନ୍ଧ୍ୟାରେ ମୁଖ୍ୟମନ୍ତ୍ରୀଙ୍କୁ ସବୁ କହିଦେବେ ବୋଲି । ସନ୍ଧ୍ୟା ୮ଟା ସାଢ଼େ ୮ଟା ବେଳକୁ ମୁଖ୍ୟମନ୍ତ୍ରୀ ଡଃ ମହତାବ ଆସିଲେ । ମୁଁ ସନ୍ଧ୍ୟା ୬ଟାରୁ ସେଇଠି ଥିଲି । ମୀନା ବଜାର ଅଫିସ୍ ଉପରେ ଛୋଟ ହଲ୍ ଭଳି ଏକ ଘର ଥାଏ । ସେଇଠି ଡଃ ମହତାବଙ୍କ ସାନ୍ଧ୍ୟଆସର ଜମେ । ପ୍ରଜାତନ୍ତ୍ରର ସାମ୍ବାଦିକ, ସଂପାଦକ(ଜାନକୀ ବଲ୍ଲଭ ପଟ୍ଟନାୟକ), ସହରର କିଛି କିଛି ବିଶିଷ୍ଟ ଲୋକ ସେଠିକୁ ଆସନ୍ତି । ଜହୁରୀ ଭାଇ ଡଃ ମହତାବ ଆସିବା ପୂର୍ବରୁ ପହଞ୍ଚିଲେ । ମୋତେ ଉପରକୁ ନେଇଗଲେ ।

ଡଃ ମହତାବଙ୍କ ଆସର ଜମିବା ପୂର୍ବରୁ ମୋତେ ପରିଚୟ କରାଇ ଦେଲେ । ମହତାବ ବାବୁ ମତେ ଚାହିଁଲେ । ତା'ପରେ ହସି ହସି ପଚାରିଲେ ତୁମ ଚଢ଼ିକା ମୀନାମଣ୍ଡଳୀରେ କେତେ ପିଲା । ମୁଁ କହିଲି ଶହେରୁ ଅଧିକ । ତା'ପରେ ଜହୁରୀ ଭାଇ ମୁଁ ଯେଉଁଥିପାଇଁ ଆସିଛି ସେକଥା କହିଲେ । ମୁଁ କହିଲି ସାର୍ ସାରା ବାଙ୍କୀ ସେଇ ପଡ଼ିଆ ଉପରେ ନିର୍ଭର କରେ । ଆମ ସ୍କୁଲର ଆଉ ଖେଳ ପଡ଼ିଆ ନାହିଁ । ବାଙ୍କୀରେ ସବୁ ମ୍ୟାଚ୍ ସେଇଠି ହୁଏ । ସଭା-ସମିତି ସବୁ ସେଇଠି ହୁଏ । ମହତାବବାବୁ ମୋ କଥା ସବୁ ଶୁଣୁଥା'ନ୍ତି । ତା'ପରେ କିଛିସମୟ କ'ଣ ଭାବି ତାଙ୍କ ପାଖରେ ଥିବା କୈଳାସ ବୋଷ ନାମକ ଜଣେ ବ୍ୟକ୍ତିଙ୍କୁ କଟକ କଲେକ୍ଟରଙ୍କୁ ଫୋନ୍ କରିବା ପାଇଁ କହିଲେ । ଫୋନ୍ ଲଗା ହେଲା । ସେପଟୁ କଲେକ୍ଟର ଫୋନ୍ ଧରିବା ପରେ କୈଳାସ ବାବୁ ଫୋନ୍ ରିସିଭର୍ ମହତାବ ବାବୁଙ୍କୁ ଦେଲେ । ମହତାବ ବାବୁ ପ୍ରାରମ୍ଭିକ କଥା କହି ତା'ପରେ କହିଲେ ବାଙ୍କୀ ଡେପୁଟି କଲେକ୍ଟରଙ୍କୁ ଖବର ଦିଅ କଚେରୀ ପଡ଼ିଆରେ ସେ ଯେଉଁ ବ୍ଲକ ଅଫିସ୍ ଓ ଷ୍ଟାଫ୍ କ୍ୱାର୍ଟର କରିବା ପାଇଁ ପ୍ରସ୍ତାବ କରିଛନ୍ତି ତାକୁ ବନ୍ଦ କରିବେ । ସେ ପଡ଼ିଆ ସେଇମିତି ରହିବ । କାଲି ତୁମେ ଏକଥା ତାଙ୍କୁ ଜଣାଇ ଦିଅ । ଫୋନ୍ ଥୋଇବା ପରେ ମୋତେ କହିଲେ ଯାଅ- ତୁମ କଥା ହୋଇଗଲା । ମୁଁ ସାହସ କରି କହିଲି ଆପଣ ବାଙ୍କୀ ଗଲେ ଆମେ ମୀନାମେଳା କରନ୍ତୁ । ସେ ହସିଲେ । କହିଲେ ଆଚ୍ଛା- ତୁମେ ଯାଇ ଯୋଗେଶ(ଡଃ ଯୋଗେଶ ଚନ୍ଦ୍ର ରାଉତ)କୁ କୁହ ମତେ ଦେଖା କରିବ ।

ଆଜି ଏତେବର୍ଷ ପରେ ମୋର ସେକଥା ମନକୁ ଆସିଲେ ମନ ରୋମାଞ୍ଚିତ ହୁଏ । କାରଣ ଆଜି ମଧ୍ୟ ସେଇ କଚେରୀ ପଡ଼ିଆ ଅଛି । ଆଜି ମଧ୍ୟ ସେଇଠି ଫୁଟବଲ୍ ଖେଳ ହେଉଛି । ଏଥିପାଇଁ ଡଃ ମହତାବ ଆମ ପାଖରେ ଚିର ସ୍ମରଣୀୟ । ମୁଁ ରାମ ଭାଇ(ଜହୁରୀ ଭାଇ)କୁ ପଚାରିଲି କଲେକ୍ଟର ଠିକ୍ କହିବେ ତ ? ରାମ ଭାଇ ମତେ କହିଲେ ତା' ବାବା ଯିଏ କହିବ । ତୁ ବାଙ୍କୀ କାଲି ପଳା । ସେଠି ଏକଥା କହିବୁ । ଆଉ ଯୋଗେଶ ବାବୁଙ୍କୁ କହି ଶୀଘ୍ର ମହତାବ ବାବୁଙ୍କୁ ଦେଖା କରିବାକୁ କହିବୁ । ମୋ ମନ ଆନନ୍ଦରେ ଭରିଗଲା । ବାଙ୍କୀ ପାଇଁ ମୁଁ କିଛି କରିଛି ବୋଲି ମୋର ଆତ୍ମତୃପ୍ତି ଅନୁଭବ କଲି ।

ପରଦିନ ଚାନ୍ଦିନିଚୌକ ଆସି ବାଙ୍କୀ ବସ୍ ଧରିଲି । ବାଙ୍କୀରୁ ସେତେବେଳେ ଓ.ଆର୍.ଟି. କମ୍ପାନିର ବସ୍ ଚାଲୁଥିଲା । ସକାଳ ଏଗାରଟା ବେଳକୁ ବାଙ୍କୀରେ ପହଞ୍ଚି ସ୍କୁଲକୁ ଆସିଲି । ହେଡ୍‌ମାଷ୍ଟରଙ୍କୁ ଦେଖା କଲି । ସବୁକଥା କହିଲି । ହେଡ୍‌ମାଷ୍ଟର ସବୁ ଶୁଣି ମୋତେ କହିଲେ ତୁ ହେଉଛୁ ବାଙ୍କୀର ପ୍ରକୃତ ପୁଅ । କିନ୍ତୁ ମୋ ପାଇଁ ଏକ ଦୁଃସମ୍ବାଦ ଅପେକ୍ଷା କରିଥିଲା । ଡେପୁଟି କଲେକ୍ଟର ଜି.ପି. ସ୍ୱାମୀ ପୋଲିସ୍‌କୁ ମୋତେ ଆରେଷ୍ଟ କରିବାପାଇଁ ଅର୍ଡ଼ର ଦେଇଛି । ପୋଲିସ୍ ମତେ ଖୋଜୁଛି । ସେତେବେଳେ ବାଙ୍କୀ ହାଇସ୍କୁଲର ପରିଚାଳନା ବୋର୍ଡ଼ର ସଭାପତି ଡେପୁଟି କଲେକ୍ଟର । ମୋତେ ସ୍କୁଲରୁ ବାଧ୍ୟତା ମୂଳକ ଟି.ସି. ଦେବାପାଇଁ ମଧ୍ୟ ଏକ ଅର୍ଡ଼ର ହେଡ୍‌ମାଷ୍ଟରଙ୍କୁ ଦେଇଛି । ହେଡ୍‌ମାଷ୍ଟର ଫକୀର ବାବୁ ମୋତେ ଏକଥା କହିଲେ । ମୋତେ କହିଲେ ଯା' ଘରେ ଖାଇ ପିଇ ପୁଣି କଟକ ପଳା । ଏଠିକା କଥା ମୁଁ ବୁଝୁଛି ।

ଏଣୁଅ ଦୌଡ଼ି ଦୌଡ଼ି ସିଜୁବୁଦା ମୂଳକୁ ଭଳି ଆମେ ଚାଲିଲୁ କଟକ । ସନ୍ଧ୍ୟାରେ ସେଇ ଗଣେଷ ଘାଟ ଧର୍ମଶାଳା । ସୀମା ଆନ୍ଦୋଳନ ବେଳେ ଚାରି/ପାଞ୍ଚଥର ମୁଁ ଏବଂ ମୋର ବନ୍ଧୁ ବାଙ୍କୀରୁ ଯାଇ ସେଇ ଧର୍ମଶାଳାରେ ରହିଥିଲୁ । ମ୍ୟାନେଜରଙ୍କ ସହ ଚିହ୍ନା ପରିଚୟ ହୋଇ ଯାଇଥାଏ । ତେଣୁ ଯେତେବେଳେ ଗଲେ ସେଠି ରୁମ୍ ମିଳି ଯାଉଥିଲା । ରାତିରେ ସେଠି ରହି ସକାଳୁ ନିତ୍ୟକର୍ମ ଶେଷକରି ଏଗାରଟା ବେଳକୁ ଗଲି ମୀନା ବଜାର ଅଫିସ୍‌କୁ । ଜହୁରୀ ଭାଇ ଆସି ଯାଇଥା'ନ୍ତି । ମତେ ଦେଖି ପଚାରିଲେ ପୁଣି କୁଆଡ଼େ ? ମୁଁ ତାଙ୍କ ସାମନାରେ ବସି ସବୁ କଥା କହିଲି । କଚେରୀ ପଡ଼ିଆରେ ବ୍ଲକ୍ ଅଫିସ୍/ ଷ୍ଟାଫ୍ କ୍ୱାର୍ଟର ନକରିବାକୁ କଲେକ୍ଟରଙ୍କ ଚିଠି ପାଇ ବାଙ୍କୀ ଡେପୁଟୀ କଲେକ୍ଟର ରାଗି କରି ମୋ ବିରୁଦ୍ଧରେ ଏହି ପଦକ୍ଷେପ ନେଇଛି ବୋଲି ମୁଁ କହିଲି । ଜହୁରୀ ଭାଇ ସବୁ ଶୁଣିବା ପରେ ମହତାବ ବାବୁଙ୍କ ପି.ଏ. କୈଳାଶ ବୋଷଙ୍କୁ ଫୋନ୍ କଲେ । ସବୁକଥା କହିଲେ । ସେ କହିଲେ ସେ ପିଲାକୁ ମୋ ଘରକୁ ପଠାଇ ଦିଅ । ଜହୁରୀ ଭାଇ ମତେ କହିଲେ ବରେନ୍ଦ୍ର କୈଳାଶ ବାବୁଙ୍କ ଘରକୁ ଯାଇପାରିବୁ ? ମୁଁ କହିଲି ରାମଭାଇ(ଜହୁରୀ ଭାଇଙ୍କ ନାମ) କଟକରେ ତାଙ୍କ ଘର ମତେ ଜଣାନାହିଁ । ତା' ଛଡ଼ା ଆପଣ ସାଙ୍ଗରେ ନଗଲେ ମୁଁ ଏକା ଯାଇ କ'ଣ କରିବି ? ରାମଭାଇ କ'ଣ ଭାବିଲେ- କହିଲେ ଆଚ୍ଛା ଚାଲ । ଆଜି ଏକଥା ଲେଖିଲା ବେଳେ ମନରେ ସେ ଦିନର ଘଟଣା ଛବିଭଳି ଉଙ୍କି ମାରୁଛି । ମୀନାବଜାର ସଂଗଠନ ଯୋଗୁଁ ମୁଁ ମୀନା ବଜାରରେ କାମ କରୁଥିବା ଜଣେ ବାବୁଙ୍କ ସାଇକେଲ୍ ନେଇ କୈଳାଶ ବାବୁଙ୍କ ଘରକୁ ଗଲୁ । କୈଳାଶ ବାବୁ ତାଙ୍କ ଦାଣ୍ଡଘରେ ବସି କ'ଣ ଫାଇଲ୍ ଦେଖୁଥିଲେ । ମହତାବ ବାବୁ ଦିଲ୍ଲୀ ଯାଇଥିବାରୁ ସେ ଅଫିସ୍ ଯାଇ ନଥିଲେ । ତାଙ୍କ ଘର କଟକର କେଉଁ ସାଇରେ ନା ବଜାରରେ ସେ କଥା ଏବେ ମନେ ନାହିଁ । ତେବେ ଆମ ଦୁହିଁଙ୍କୁ ଦେଖି କହିଲେ ବସ- ବସ । ମୋଠୁ ସବୁ ଶୁଣିବା ପରେ ସେ ଆମ ହେଡ୍‌ମାଷ୍ଟରଙ୍କୁ ଗୋଟିଏ ଚିଠି ଲେଖିଦେଲେ- ବରେନ୍ଦ୍ର କୃଷ୍ଣ ଧଳ ବିରୁଦ୍ଧରେ କୌଣସି କାର୍ଯ୍ୟାନୁଷ୍ଠାନ ଗ୍ରହଣ ନକରି ମାଟ୍ରିକ ପରୀକ୍ଷା ଦେବା ପାଇଁ ଆବଶ୍ୟକୀୟ ବ୍ୟବସ୍ଥା କରିବ । ଏ ଚିଠିର ଏକ କପି ସ୍କୁଲ ଇନ୍ସପେକ୍ଟରଙ୍କ ପାଖକୁ ମଧ୍ୟ ପଠାଗଲା । ସେ ଚିଠି ଧରି ମୁଁ ବାଙ୍କୀ ଫେରି ଆସିଲି । ହେଡ୍‌ମାଷ୍ଟରଙ୍କୁ ଚିଠି ଦେଲି । ସେ ଚିଠିଟି ଦେଖି କହିଲେ ତୁ ଠିକ୍ ମାଡ଼ ଦେଇଛୁ । ଚିଠିକୁ ଡେପୁଟି କଲେକ୍ଟରଙ୍କ ପାଖକୁ ପଠାଇ ଦେଲେ । ମାତ୍ର ମୁଁ ଫାଇନାଲ୍ ପାଇଁ ଟେଷ୍ଟ ପରୀକ୍ଷା ଦେଇପାରିଲି ନାହିଁ । କାରଣ ସେତେବେଳକୁ ଦୁଇଦିନ ହେଲା ପରୀକ୍ଷା ହେଲାଣି । ତେଣୁ ଫାଇନାଲ୍‌ରେ ବସି ପାରିଲି ନାହିଁ । ଅଗତ୍ୟା ସପ୍ଲିମେଣ୍ଟାରୀ ପରୀକ୍ଷା ପାଇଁ ଅପେକ୍ଷା କଲି ।

## -ମାଟ୍ରିକ୍ ପାଶ୍-

ଆମ ହାଇସ୍କୁଲର ମାଟ୍ରିକ ପରୀକ୍ଷା ସେଣ୍ଟର୍ କଟକର ରେଭେନ୍ସା କଲିଜିଏଟ୍ ସ୍କୁଲ୍‌ରେ ହେଉଥାଏ । ସପ୍ଲିମେଣ୍ଟାରୀ ପରୀକ୍ଷାରେ ସେବର୍ଷ ଆମ ସ୍କୁଲ୍‌ରୁ ମୋଟ ଅଠର ଜଣ ପରୀକ୍ଷା ଦେବାକୁ କଟକ ଗଲୁ । ରେଭେନ୍ସା କଲିଜିଏଟ୍‌ର ହଷ୍ଟେଲରେ ରହି ଆମେ ପରୀକ୍ଷା ଦେଲୁ । ପରୀକ୍ଷା ଦେଇ ଫେରିଲୁ ବାଙ୍କୀ । ଆଜି ମୋର ସ୍ପଷ୍ଟ ମନେ ଅଛି ଅଗଷ୍ଟ ୧୫

ତାରିଖ ଦିନ ଖବର କାଗଜରେ ପରୀକ୍ଷା ଫଳ ପ୍ରକାଶ ପାଇଥିଲା । ମୁଁ ନଈରୁ ଗାଧୋଇ ଫେରୁଛି- ମୋତେ କଚେରୀ ପାଖରେ ଜଣେ କହିଲେ ବରି(ମୋ ଡାକ ନାମ) କଂଗ୍ରାଚୁଲେସନ୍- ମୁଁ କହିଲି କ'ଣ ପାଇଁ ? ସେ କହିଲେ ମାଟ୍ରିକ୍ ରେଜଲ୍ଟ ଆଜି ବାହାରିଛି । ବାଙ୍କୀ ହାଇସ୍କୁଲରୁ ତୁ ସେକେଣ୍ଡ ଡିଭିଜନରେ ପାଶ୍ କରିଛୁ । ବାକି ଆଠଜଣ ଥାର୍ଡ଼ ଡିଭିଜନ । ମୁଁ କହିଲି କାଗଜ କେଉଁଠି ଅଛି ? ସେ କହିଲେ, ବସ୍‌ରେ ଆସିଥିଲା । ଥାନାରେ ଅଛି । ମୁଁ ସେଇ ଓଦା ହାଫ୍ ପ୍ୟାଣ୍ଟ୍ ଓ ଖୋର୍ଦ୍ଧା ଗାମୁଛା ଦେହରେ ପକାଇ ଥାନାକୁ ଦୌଡ଼ିଲି । ମୋ ସାଙ୍ଗରେ ଯେଉଁ ତିନିଜଣ ସାଙ୍ଗ ଗାଧେଇ କରି ଆସୁଥିଲେ ସେମାନେ ମଧ୍ୟ ଥାନାକୁ ଆସିଲେ । ଥାନା ବାରଣ୍ଡାରେ ଟେବୁଲ୍ ଉପରେ 'ମାତୃଭୂମି' ଖବର କାଗଜ ଥିଲା । ଚାରି ପୃଷ୍ଠାର କାଗଜ । ମୁଁ ଭିତର ପୃଷ୍ଠାରେ ମାଟ୍ରିକ ରେଜଲ୍ଟ ତର ତର ହୋଇ ଦେଖିଗଲି । ବାଙ୍କୀ ବରେନ୍ଦ୍ର କୃଷ୍ଣ ବିଦ୍ୟାପୀଠ ସ୍ଥାନରେ ପଢ଼ିଲି । ୨ୟ ଶ୍ରେଣୀ- ବରେନ୍ଦ୍ର କୃଷ୍ଣ ଧଳ । ମୁଁ ଜଣେ ମାତ୍ର ଦ୍ୱିତୀୟ ଶ୍ରେଣୀରେ ପାଶ୍ କରିଥିଲି । ଆମେ ମୋଟ ୧୮ଜଣଙ୍କ ମଧ୍ୟରୁ ମୋତେ ମିଶାଇ ୯ଜଣ ପାଶ୍ କରିଥିଲୁ । ବାକି ୯ଜଣ ଫେଲ୍ ହୋଇଥିଲେ । ଇଏ ୧୯୫୭ ମସିହା ଅଗଷ୍ଟ ୧୫ ତାରିଖ । ମୋ ଜୀବନର ଏକ ଅଧ୍ୟାୟ ଶେଷ ହେଲା । ଜୀବନରେ ମାଟ୍ରିକ୍ ହେଉଛି ପ୍ରଥମ ପରୀକ୍ଷା । ତା'ପରେ ଜୀବନର ଦ୍ୱିତୀୟ ଅଧ୍ୟାୟ ।

ମାଟ୍ରିକ୍ ପରୀକ୍ଷା ସେତେବେଳେ ଏକାଦଶ ଶ୍ରେଣୀଠାରେ ହେଉଥିଲା । ମୁଁ ହେଉଛି ମାଧ୍ୟମିକ ଶିକ୍ଷା ବୋର୍ଡ଼ (Board of Secondary Education)ର ଦ୍ୱିତୀୟ ବର୍ଷର ପରୀକ୍ଷାର୍ଥୀ । ୧୯୫୬ ମସିହାରେ ମାଧ୍ୟମିକ ଶିକ୍ଷା ବୋର୍ଡ଼ ପ୍ରଥମେ ସ୍ଥାପିତ ହେଲା । ପୂର୍ବରୁ ଉତ୍କଳ ବିଶ୍ୱବିଦ୍ୟାଳୟ ମାଟ୍ରିକ ପରୀକ୍ଷା ପରିଚାଳନା କରୁଥିଲା ।

ମୁଁ କଟକ ଯାଇ ରେଭେନ୍ସା ହେଉ ବା ଅନ୍ୟ କୌଣସି କଲେଜରେ ନାମ ଲେଖାଇବା ପାଇଁ ମୋ ଦଦେଇ(ମୋ ବାପା- ପୂର୍ବରୁ କହିଛି କ୍ଷତ୍ରୀୟ ଘରେ ବାପାଙ୍କୁ ଦଦେଇ ବୋଲି ଡାକୁ) କହିଲେ, ଦେବେନ୍ଦ୍ର ବାବୁ(ପ୍ରଫେସର ଦେବେନ୍ଦ୍ର ଚନ୍ଦ୍ର ମିଶ୍ର- ଅର୍ଥନୀତି ପ୍ରଫେସର)ଙ୍କୁ ଚିଠି ଲେଖି ଦେଉଛି ତୁମେ ଯାଇ ତାଙ୍କୁ ଦେଖାକଲେ ସେ ରେଭେନ୍ସାରେ ତୁମ ନାମ ଲେଖାଇ ଦେବେ । ମୁଁ କିଛି କହିଲି ନାହିଁ । ତେବେ ଦଦେଇ କାଳେ ଖରାପ ଭାବିବେ, ସେଥିପାଇଁ ତାଙ୍କ ଠାରୁ ଚିଠି ନେଇ କଟକ ଗଲି । ମାର୍କସିଟ୍ ଏବଂ ଅନ୍ୟାନ୍ୟ ସାର୍ଟିଫିକେଟ୍ ପାଇ ଯାଉ ଯାଉ ସେପ୍ଟେମ୍ବର ମାସ ଅଧା ଉପରେ ହୋଇଗଲା । ରେଭେନ୍ସାରେ ଆମ ଗାଁର ଦୁଇ/ତିନିଜଣ ପିଲା ପଢୁଥା'ନ୍ତି । ସେମାନଙ୍କ ପାଖକୁ ଗଲି । ସେମାନଙ୍କ ସାଙ୍ଗରେ ଦେଖାହେବା ପରେ ସେମାନେ କହିଲେ, ଏଇନେ ଅଧା ପାଠ ପଢ଼ା ହୋଇ ସାରିଲାଣି । ତୁ ଆଡ଼୍‌ମିଶନ୍ ନେଲେ ପାରିବୁ ତ ? ଆଉ ତିନିମାସ ପରେ କ୍ଲାସ୍ ପରୀକ୍ଷା ହେବ । ବରଂ ଆସନ୍ତା ବର୍ଷ ମୂଳରୁ ଆଡ଼୍‌ମିଶନ ନେ । ମୁଁ ବାଙ୍କୀ ଫେରି ଆସିଲି । ଘରେ ଦଦେଇଙ୍କି ସେକଥା କହିଲି । ସେ କହିଲେ ପରିଶ୍ରମ କରିଥିଲେ ହୋଇଥା'ନ୍ତା । ଦେଖ- କ'ଣ କରିବ ।

କ'ଣ କରିବି ଭାବୁଛି- ଏହି ସମୟରେ ଆମ ଗାଁର (ଚର୍ଚ୍ଚିକା) ମୋର ଦି'ବର୍ଷ ସିନିୟର ଶ୍ରୀନି ଭାଇନା ଆମ ଘରକୁ ଆସିଲେ । କହିଲେ, ବରି ତୋତେ ଆମ ହେଡ଼୍‌ମାଷ୍ଟର ଡକାଇଛନ୍ତି । ମୁଁ କହିଲି କାହିଁକି ? ଶ୍ରୀନି ଭାଇନା(ଶ୍ରୀନିବାସ ମିଶ୍ର) ଗୋଡ଼ିସାହି(ବାଙ୍କୀ-କଟକ ରାସ୍ତାରେ) ସ୍କୁଲରେ ଥା'ନ୍ତି । ମୋତେ କହିଲେ ଆମ ସ୍କୁଲରେ ଜଣେ ଶିକ୍ଷକ ଦରକାର । ମୁଁ ତୋ କଥା କହିଲି । ତୁ ସେକେଣ୍ଡ ଡିଭିଜନରେ ୫୭ ପରସେଣ୍ଟ ରଖି ମାଟ୍ରିକ ପାଶ୍ କରିଛୁ ଶୁଣି ତୋତେ ସାଙ୍ଗେ ସାଙ୍ଗେ ନେଇ ଆସିବାକୁ ମୋତେ କହିଲେ । ତୁ ତ ଏଇନେ ଘରେ ବସିଛୁ । ଆରବର୍ଷ ଆଡ଼୍‌ମିଶନ୍ ନେବା ପର୍ଯ୍ୟନ୍ତ ତୁ ଆସି ସ୍କୁଲରେ ରହ । ମୁଁ କ'ଣ କରିବି ଭାବି ପାରିଲି ନାହିଁ । ତା' ପରଦିନ ଶ୍ରୀନି ଭାଇନା ପୁଣି

ଆସିଲେ । କହିଲେ କ'ଣ ସ୍ଥିର କଲୁ ? ମୁଁ କିହଲି ଭାଇନା- କ'ଣ କରିବି ଜାଣି ପାରୁ ନାହିଁ । ସେ ମତେ ପୁଣି କହିଲେ ଘରେ ବସି ବଜାରରେ ବୁଲି ସମୟ କଟାଇବା ଅପେକ୍ଷା ତୁ ବରଂ ମୋ କଥା ମାନ । କାଲି ସକାଳୁ ଚା ଯିବା । ମୁଁ ଅଗତ୍ୟା ତାଙ୍କ ପ୍ରସ୍ତାବରେ ରାଜି ହେଲି । ପରଦିନ ତାଙ୍କ ସାଙ୍ଗରେ ସାଇକେଲ୍‌ରେ ଗଲି । ମୁଁ ମୋ ସାଇକେଲ୍ ନେଇଗଲି । ସେ କହିଲେ ଗୋଟେ କାମ କର । ରାତିରେ ଶୋଇବା ପାଇଁ ବେଡିଂଟେ ଧର । ମୁଁ ଗୋଟେ ସତରଞ୍ଚରେ ଦି'ଟା ଚାଦର ଗୋଟେ ତକିଆ ଗୁଡ଼େଇ ସାଇକେଲ୍ ପଛ କ୍ୟାରିୟରରେ ବାନ୍ଧି ନେଲି । ଜୀବନରେ ଏଭଳି ଏକ ମୁହୂର୍ତ୍ତ ଆସିବ ସେ ବିଷୟ ଜାଣି ନଥିଲି ।

ଆମେ ଦୁହେଁ ସକାଳ ୯ଟା ସୁଦ୍ଧା ଗୋଡ଼ିସାହି ସ୍କୁଲ୍‌ରେ ପହଞ୍ଚିଲୁ । ବାଙ୍କୀ ଟାଉନ୍‌ରୁ ଗୋଡ଼ିସାହି ଠିକ୍ କୋଡ଼ିଏ କିଲୋମିଟର । ସ୍କୁଲର ପ୍ରଧାନ ଶିକ୍ଷକ ଥିଲେ ରାଧେଶ୍ୟାମ ପଟ୍ଟନାୟକ । ବୁଢ଼ା ଲୋକ । ମୋତେ ଦେଖି ଭାରି ଖୁସି ହେଲେ । କହିଲେ ଯାହା ହେଉ ସ୍କୁଲର ଭାଗ୍ୟ ତୁମଭଳି ଜଣେ ଶିକ୍ଷକ ପାଇଲି । ମୋତେ କହିଲେ ତୁମେ ତ ଭଲ ଷ୍ଟୁଡେଣ୍ଟ । ଏଠି ପ୍ରମୋଦ ଥିଲା । ପ୍ରମୋଦ କିଏ ବୋଲି ପଚାରିବାରୁ ସେ କହିଲେ ପ୍ରମୋଦ ପଟ୍ଟନାୟକ । ମୋର ପୁତୁରା ହେବ । ଏଇଠି ରହି ଗତବର୍ଷ ଜୁଲାଇ ମାସରେ ତା' ଦରମା ଟଙ୍କା ନେଇ କଟକରେ ପଢୁଛି । ତୁମେ ଆସନ୍ତା ଜୁଲାଇ ପର୍ଯ୍ୟନ୍ତ ରହି କଟକରେ ଆଡ଼ମିଶନ ନେବ । ମାସକୁ ୬୫ (ପଅଁଷଠି) ଟଙ୍କା ଦରମା । ଏଠି ମେସ୍‌ରେ ଖାଇବ । ଆମର ଯାହା ରୋଷେଇ ହୋଇଥିବ । ତୁମେ ରହ । ଦେଖିବ ଭଲ ଲାଗିବ । ଗୋଡ଼ିସାହି ମାଇନର ସ୍କୁଲରେ ଆଖପାଖ ବାର/ଚଉଦ ଖଣ୍ଡ ଗାଁରୁ ପିଲା ଆସି ପଢୁଥିଲେ । ସେତେବେଳେ ମୁଣ୍ଡଳୀ ବ୍ୟାରେଜ କାମ ଆରମ୍ଭ ହେଉଥିଲା । ମୁଣ୍ଡଳୀରେ ବହୁ ଇଞ୍ଜିନିୟର ଓ ଅନ୍ୟାନ୍ୟ କର୍ମଚାରୀ ରହୁଥିଲେ । ସେମାନଙ୍କ ପୁଅ-ଝିଅ ମଧ୍ୟ ଗୋଡ଼ିସାହିରେ ପଢୁଥିଲେ । ଚତୁର୍ଥ ଶ୍ରେଣୀରୁ ସପ୍ତମ ପର୍ଯ୍ୟନ୍ତ କ୍ଲାସ୍ ଥିଲା ।

(ପ୍ରମୋଦ ପଟ୍ଟନାୟକ କଟକରେ ଏମ୍.ଏ. କରି କୌଣସିମତେ ଧରାଧରି କରି ଆମେରିକା ଚାଲିଗଲେ । ସେଠି ରହି ପି.ଏଚ୍.ଡି. କରି ଗୋଟିଏ କଲେଜ୍‌ରେ ଅଧ୍ୟାପକ ହେଲେ । ପରେ ଆମେରିକାରେ ଓଡ଼ିଆ ସମାଜ ତାଙ୍କରି ଉଦ୍ୟମରେ ଗଢ଼ା ହୋଇଥିଲା । ମାତ୍ର ଦୁର୍ଭାଗ୍ୟ ବଶତଃ ୧୯୯୬ରେ ତାଙ୍କର ଅକାଳ ବିୟୋଗ ଘଟି ଯାଇଛି ।)

ଆରମ୍ଭରୁ ଆରମ୍ଭରୁ ମୋତେ କିପରି ଅଖାଡୁଆ ଲାଗିଲା । ମାତ୍ର ଶ୍ରୀନି ଭାଇନା ଏବଂ ପ୍ରଧାନ ଶିକ୍ଷକ ରାଧେଶ୍ୟାମ ପଟ୍ଟନାୟକ ମୋତେ କହିଲେ ତମେ ସପ୍ତାହକ ପାଇଁ ପ୍ରଥମେ ବସି ଷଷ୍ଠ, ସପ୍ତମ ଶ୍ରେଣୀର ଇଂରାଜୀ, ଓଡ଼ିଆ ପାଠ୍ୟକ୍ରମରେ ଥିବା ବହି ଦେଖ । ଏହି ଦୁଇ କ୍ଲାସରେ ତୁମେ ଇଂରାଜୀ ଓ ଓଡ଼ିଆ ପଢ଼ାଇବ । କ'ଣ କରିବି । ଯଦି ମାଷ୍ଟର ଚାକିରି କରିବି ତେବେ କଷ୍ଟ କରିବାକୁ ପଡ଼ିବ । ସ୍କୁଲରେ ପଢୁଥିବା ବେଳେ ମୋର ଇଂରାଜୀ, ଅଙ୍କ ଭଲ ହେଉନଥିଲା । ଦଦେଇ ମୋତେ ନେଇ ଆମ ହାଇସ୍କୁଲରେ ଅଙ୍କ, ଇଂରାଜୀ ପଢ଼ାଉଥିବା ସ୍କୁଲ ପାଖ ବେଦପୁର ଗ୍ରାମର ମଧୁସୂଦନ ଦିକ୍ଷିତଙ୍କ ପାଖରେ ଟ୍ୟୁସନ ହେବା ପାଇଁ ଛାଡ଼ିଲେ । ମଧୁବାବୁ ଖୁବ୍ ଦକ୍ଷ ଶିକ୍ଷକ । ଆଜି ସେ ଆଉ ଇହଧାମରେ ନାହାନ୍ତି । ମାତ୍ର ମୋର ମନେ ହୁଏ ଓଡ଼ିଶାରେ ତାଙ୍କ ଭଳି ଦକ୍ଷ ଶିକ୍ଷକ ଖୁବ୍ କମ୍ ଥିଲେ । ତାଙ୍କ ପାଖରେ ମୁଁ ବର୍ଷେ ଟ୍ୟୁସନ ହୋଇଛି । ଏକାଦଶ ଶ୍ରେଣୀରେ ତାଙ୍କ ପାଖରେ ମୁଁ ଟ୍ୟୁସନ ହୋଇଥିଲି । କିନ୍ତୁ ସେଇ ଗୋଟିଏ ବର୍ଷରେ ଅଙ୍କ ଆଉ ଇଂରାଜୀରେ ମୋର ଯେତେ ଦୁର୍ବଳତା ଥିଲା ତାକୁ ସେ ଦୂର କରି ଦେଇଥିଲେ । ମୋର ଅପ୍‌ସନାଲରେ କିନ୍ତୁ ଅଙ୍କ ନଥିଲା । ଥିଲା ଫିଜିଓଲୋଜି-ହାଇଜିନ୍ । ମୋତେ କେତେକ ଶିକ୍ଷକ ଅପ୍‌ସନାଲ୍‌ରେ ମାଥମେଟିକ୍ସ ନେବାପାଇଁ କହିଥିଲେ । କହିଲେ ମାଟ୍ରିକ ପରୀକ୍ଷାରେ ଏହା ନମ୍ବର ବଢ଼ାଇବାରେ ସାହାଯ୍ୟ କରିବ ।

ମାତ୍ର କେଜାଣି କେମିତି ମୁଁ ମାଥମେଟିକ୍ସ ନେଇ ନଥିଲି । କିନ୍ତୁ ମାଟ୍ରିକ ପରୀକ୍ଷାରେ ଅବ୍‌ସନାଲ୍‌ରେ ମୋର ଅଠସ୍ତରି ନମ୍ବର ଥିଲା । ତେଣୁ ବିଶେଷ କିଛି ଫରକ୍ ପଡ଼ିନଥିଲା । ତେବେ ଅବ୍‌ସନାଲ୍ ମାଥମେଟିକ୍ ନଥିଲେ ଇଣ୍ଟର ମିଡିଏଟ୍‌ରେ ସାଇନ୍ସ ନେଇ ପଢ଼ି ହେବ ନାହିଁ । ମୋର ସାଇନ୍ସ ନେଇ ପଢ଼ିବାର ମୂଳରୁ ମଧ ଇଚ୍ଛା ନଥିଲା ।

ମଧୁବାବୁଙ୍କ ଠାରୁ ଇଂରାଜୀ ଓ ଅଙ୍କ ପଢ଼ି ମୋର ଏହି ଉଭୟ ବିଷୟ ଉପରେ ଏକ ପରିଷ୍କାର ଧାରଣା ହୋଇ ଯାଇଥିଲା ଏବଂ ମାଟ୍ରିକ ପରୀକ୍ଷାରେ ମୋତେ ଏହା ଖୁବ୍ ସାହାଯ୍ୟ କରିଥିଲା । ଆଉ ଗୋଟିଏ କଥା କହି ରଖେ । ପିଲାଦିନେ ମୋର ଜିଭ ଟିକେ ଲାଗୁଥିଲା । ମୋର ଜିଭ ତଳ ଭାଗରେ ସରୁ ସୂତାଭଳି ଏକ ଛୋଟ ମାଂସଖଣ୍ଡ ଲାଗିଥିଲା । ମୁଁ ସପ୍ତମ ଶ୍ରେଣୀରେ ପଢୁଥିଲା ବେଳେ ଦଦେଇ ମୋତେ ଆଣି କଟକ ଆସିଲେ । ସେତେବେଳେ କଟକ ମେଡ଼ିକାଲ୍ କଲେଜରେ ଆମ ପଡ଼ୋଶୀ ଡଃ ମହେନ୍ଦ୍ର ଚନ୍ଦ୍ର ମିଶ୍ର ଚକ୍ଷୁ ବିଭାଗର ପ୍ରଫେସର ଥା'ନ୍ତି । ତାଙ୍କ ପରିବାର ଆମ ପରିବାର ଅତ୍ୟନ୍ତ ଘନିଷ୍ଠ ଥିଲେ । ମହେନ୍ଦ୍ର ବାବୁ ଆମକୁ ଦେଖି ଖୁବ୍ ଖୁସି ହୋଇଗଲେ । ତାଙ୍କ ଘର ସାମନାରେ ସର୍ଜରି ବିଭାଗର ପ୍ରଫେସର ଡାକ୍ତର ଗିରିଜାଶଙ୍କର ଦାସ ମହାପାତ୍ର ରହୁଥିଲେ । ଆମେ ମହେନ୍ଦ୍ର ବାବୁଙ୍କ ଘରେ ରହିଲୁ । ତା' ପରଦିନ ସକାଳୁ ମହେନ୍ଦ୍ର ବାବୁ ମୋତେ ନେଇ ଗିରିଜା ବାବୁଙ୍କ ଘରକୁ ଗଲେ । ଗିରିଜା ବାବୁଙ୍କୁ ମୋ କଥା କହିଲେ । ଗିରିଜା ବାବୁ ମୋ ଜିଭ ଦେଖିଲେ । ତା'ପରେ କହିଲେ ଠିକ୍ ଅଛି ଆଜି କରିଦେବା । ମାଇନର ଅପରେସନ୍ । ସେଇଦିନ ମୋର ଜିଭ ତଳ ମାଂସ ସୂତାଟିକୁ ଗିରିଜା ବାବୁ କାଟି ସଫା କରିଦେଲେ । ମହେନ୍ଦ୍ର ବାବୁ ମୋ ଦଦେଇଙ୍କୁ କହିଲେ ସୁର- ତୁ ତ ଅନେକ ଦିନ ପରେ ଆସିଛୁ । ତିନି/ ଚାରିଦିନ ରହ । ତୋ ପୁଅକୁ କଟକ ବୁଲାଇ ଦେଖା ।

ସେତେବେଳେ ମୋର ଜୋତା ନଥିଲା । ଦଦେଇ ମୋତେ ନେଇ ରାଣିହାଟର ଏକ ଜୋତା ଦୋକାନରୁ ହଣ୍ଟେ କାନ୍‌ଭାସ୍ ହାଫ୍ ସୁ କିଣିଦେଲେ । ସେ ଦିନ ମୋର ଯେଉଁ ଆନନ୍ଦ ହୋଇଥିଲା ଆଜି ତାହା ମନେ ପକାଇଲେ ହସ ମାଡ଼େ । କେବଳ ସେତିକି ନୁହେଁ ଆମେ ସେଦିନ ରାତିରେ ହିନ୍ଦ୍ ସିନେମାରେ ସିନେମା ଦେଖିବା ପାଇଁ ଗଲୁ । ଆଜି ପରିଷ୍କାର ମନେ ଅଛି ସେ ଛବିର ନାଁ ଥିଲା ନାଗପଞ୍ଚମୀ । ମୋ ଜୀବନର ସିଏ ପ୍ରଥମ ସିନେମା ଦେଖା । ମୁଁ ହିନ୍ଦୀ ବୁଝୁଥିଲି । କାରଣ ସ୍କୁଲରେ ଚତୁର୍ଥ ଶ୍ରେଣୀରୁ ଆମର ହିନ୍ଦୀ ପଢ଼ା ହେଉଥିଲା । ହିନ୍ଦ୍ ସିନେମା ପଛପଟେ କିଛି ବାଟରେ ମହେନ୍ଦ୍ର ବାବୁଙ୍କ କ୍ୱାଟର । ସିନେମା ହଲ୍ କଡ଼େ କଡ଼େ ଏକ ରାସ୍ତା ପଡ଼ିଥାଏ ମହେନ୍ଦ୍ର ବାବୁଙ୍କ ଘର ପାଖକୁ । ଆଜି ଏତେ ବର୍ଷ ପରେ ଏକଥା ମନେ ପଡ଼ିଲା ବେଳେ କଟକର ଆକର୍ଷଣ ସେତେବେଳେ ଆମମାନଙ୍କ ପାଇଁ କେତେ ଥିଲା ତାହା ମନ ଭିତରକୁ ଆସୁଛି । ଆମେ ଯେଉଁମାନେ ବାଙ୍କୀରେ ରହୁଥିଲୁ ସେତେବେଳେ କଟକ ଥିଲା ଆମ ପାଇଁ ଏକ ସ୍ୱପ୍ନର ସହର । ତେଣୁ ମୁଁ ଯେତେବେଳେ ଗାଁକୁ ଫେରିଗଲି ମୋତେ ମୋ ସାଙ୍ଗମାନେ ଘେରିଗଲେ । ସମସ୍ତେ ଚାହିଁଲେ କଟକ ସହର କଥା ଶୁଣିବା ପାଇଁ । କଟକରେ ମୋର ଆଉ ଏକ ପ୍ରିୟ ଦ୍ରବ୍ୟ ହେଲା କମଳା । ଆମେ ରାଣିହାଟରୁ କଟକ ଷ୍ଟେସନ୍ ଆସିବା ବେଳେ ଷ୍ଟେସନ ବାହାରେ କମଳା ଲେମ୍ବୁ ବଡ଼ ବଡ଼ ବୋଝରେ ରଖି ଲୋକେ ବିକ୍ରି କରୁଥିଲେ । କମଳାଗୁଡ଼ାକୁ ଦେଖିଲେ ପାଟିରୁ ଲାଳ ବୋହି ପଡ଼ିବ । ଦଦେଇ ସେଥିରୁ ଡଜନେ କମଳା ଆଣିଲେ । ଆମେ ଟ୍ରେନ୍‌ରେ ବାରଙ୍ଗ ଆସି ସେଠାରୁ ଫଗୁ ଡ୍ରାଇଭର ବସ୍‌ରେ ବାଙ୍କୀ ଆସିଲୁ । ବାଙ୍କୀରୁ ସେତେବେଳେ ଫଗୁ ଚରଣ ଦାସ ଓ ପ୍ରାଣକୃଷ୍ଣ ମଙ୍ଗରାଜଙ୍କ ଦୁଇଟି ବସ୍ କଟକ ଯାଉଥିଲା । ଫଗୁବାବୁ ନିଜେ ବସ୍ ଚଳାଉଥିବାରୁ ତାଙ୍କ ବସ୍‌କୁ ଫଗୁ ଡ୍ରାଇଭର ବସ୍ କୁହାଯାଉଥିଲା । ମଙ୍ଗରାଜଙ୍କ ବସ୍ ଡ୍ରାଇଭର ଚଳାଏ ।

ମୁଁ ଗାଁରେ ମୋ ସାଙ୍ଗମାନଙ୍କୁ କଟକ କଥା କହିଲି । ନାଗ ପଞ୍ଚମୀ ସିନେମା କଥା କହିଲି । ସମସ୍ତେ ଆଁ କରି

ଚାହିଁଥା'ନ୍ତି । ମତେ ପଚାରିଲେ ଆମ ବାଙ୍କୀ ଟାଉନ୍ ଅପେକ୍ଷା କଟକ କେତେ ବଡ଼ । ମୁଁ କହିଲି ଆମେ ଯେଉଁଠି ଥିଲୁ ସେ ଅଞ୍ଚଳକୁ ରାଣୀହାଟ କୁହନ୍ତି । କେବଳ ରାଣୀହାଟରେ ବାଙ୍କୀ ଭଳି ଦଶ/ ପନ୍ଦରଟା ଗଳି ଯିବ କି ବେଶୀ ହେବ । ସମସ୍ତେ ଶୁଣୁଥା'ନ୍ତି । ସେଦିନକୁ ଲଗେଇ ଅନ୍ତତଃ ଚାରିଦିନ ପର୍ଯ୍ୟନ୍ତ କଟକ କଥା ମୁଁ ସମସ୍ତଙ୍କୁ କହିଲି । ରେଭେନ୍ସା କଲେଜ, କଲେଜ ଛକ, ହିନ୍ଦ୍ ସିନେମା, କଟକ ବଡ଼ ମେଡିକାଲ୍, ଜୋବ୍ରା ଆନିକଟ୍, କାଳିଆ ବୋଦା ପ୍ରଭୃତି ଅଞ୍ଚଳ ସମ୍ପର୍କରେ କହିଲି । ଦଦେଇ ମତେ ଏ ସବୁ ଅଞ୍ଚଳ ବୁଲେଇ ନେଇଥିଲେ । ଦଦେଇ ପ୍ରଥମେ ଜୀବନରେ କଟକ ଲଞ୍ଚ ଆସୋସିଏସନ୍‌ରେ ଚାକିରି କରୁଥିଲେ । ତେଣୁ କଟକ ସହର ଚାରିଆଡ଼ ସେ ଦେଖିଥିଲେ । ସେତେବେଳେ କଟକରୁ ଲଞ୍ଚରେ ଚୌଦ୍ୱାର, ଜଗତପୁର, ଧବଳେଶ୍ୱର ଆଦି ଲୋକେ ଯାଉଥିଲେ । ମହାନଦୀ ବା କାଠଯୋଡ଼ି ନଦୀ ଉପରେ ପୋଲ ହୋଇ ନଥିଲା । କଟକରେ ତିନୋଟି ସିନେମା ହଲ୍ ଥିଲା । ରାଣୀହାଟରେ ହିନ୍ଦ୍ ସିନେମା, ପଟାପୋଲ ଅଞ୍ଚଳ ବା ବକ୍ସି ବଜାରରେ ପ୍ରଭାତ ସିନେମା ଏବଂ ତିନିକୋଣିଆ ବଗିଚାରେ କ୍ୟାପିଟାଲ୍ ସିନେମା ଥିଲା । ପ୍ରଭାତ ସିନେମାର ଅଳ୍ପ ଦୂରରେ ଅନ୍ନପୂର୍ଣ୍ଣା ଥିଏଟର ଥିଲା । ଦଦେଇ ମୁଁ ଥିଏଟର ଯିବା ପାଇଁ ବାହାରିଥିଲୁ । ମାତ୍ର କ'ଣ ପାଇଁ ଗଲୁନାହିଁ ଏବେ ତା' ମନେ ନାହିଁ ।

ସ୍କୁଲରେ ପଢ଼ିବାବେଳେ ମୋର ପ୍ରିୟ ଜଳଖିଆ ଥିଲା ବାଙ୍କୀ ସହରର ନାଥ ପୃଷ୍ଟି ମିଠା ଦୋକାନର ନଗଦ ଛଣା ହେଉଥିବା କାକରା ଓ ରସଗୋଲା କିମ୍ୱା ଗୋଲାପ ଜାମୁ । ଦୁଇଟି କାକରା ଓ ଗୋଟିଏ ରାଜଭୋଗ କିମ୍ୱା ଗୋଲାପ ଜାମୁର ଦାମ୍ ଥିଲା ଚାରଣା । ମଝିରେ ମଝିରେ ଘରୁ ପଇସା ଚୋରେଇ ନେଇ ମୁଁ ଯାଇ ନାଥପୃଷ୍ଟି ଦୋକାନରେ ଖାଉଥିଲି । ଦଦେଇଙ୍କି ମଝିରେ ଥରେ ନାଥ ପୃଷ୍ଟି ଏକଥା କହିଦେଲା । ଘରକୁ ଆସି ଦଦେଇ ମତେ ଏକଥା ପଚାରିଲେ । ତୁମେ ପଇସା କେଉଁଠୁ ପାଉଛ ? ମୁଁ ମାନି ଯାଇଥିଲି ଚୋରି କରି ନେଇଥିଲି ବୋଲି । ଦଦେଇ ଆଉ କିଛି କହିଲେନି । ବୋଉକୁ କହିଲେ ତାକୁ ଜଗ ।

ଏବେ ଗୋଡ଼ିସାହି ମାଇନର ସ୍କୁଲରେ ମାସକୁ ୬୫ ଟଙ୍କା ଦରମାରେ ଶିକ୍ଷକ ଚାରିକି କରିବା ପାଇଁ ଆସି ପହଞ୍ଚିବା ବେଳେ ସେଇ ସ୍ମୃତି ମନରେ ଆସିଲା । ଅବଶ୍ୟ ନବମ ଶ୍ରେଣୀ ଶେଷ ବେଳକୁ ମୁଁ ନିଜେ ରୋଜଗାର ଆରମ୍ଭ କଲି । ସେତେବେଳେ ଆମ ସ୍କୁଲର ବିଜ୍ଞାନ ଶିକ୍ଷକ ଥିଲେ ଗୌରଚନ୍ଦ୍ର ପାତ୍ର । ପାରଳାଖେମୁଣ୍ଡିର ଲୋକ । ଆମ ଗାଁରେ ଆମ ପଡ଼ିଶା ଘରେ ଭଡ଼ାରେ ରହୁଥିଲେ । ବିଜ୍ଞାନ ଶ୍ରେଣୀରେ ସେତେବେଳେ ଫଟୋଗ୍ରାଫି ପଢ଼ା ଯାଉଥିଲା । ସେଥିପାଇଁ ସ୍କୁଲ୍ ପକ୍ଷରୁ ଏକ କ୍ୟାମେରା କିଣା ଯାଇଥିଲା । ମତେ ସାର୍ ଫଟୋଗ୍ରାଫି ଶିକ୍ଷା ଦେଉଥିଲେ । କିପରି ଫଟୋ ଉଠାଇବାକୁ ହେବ । କିପରି ବେଶୀ ଲୋକ ଥିଲେ କ୍ୟାମେରାରେ ଚଉଡ଼ା ସାଇଡ୍ ଫଟୋ ଏବଂ ଜଣେ ବା ଦୁଇଜଣ ଥିଲେ ଫୁଲ୍ ଫଟୋ କିପରି ଉଠାଯିବ, ହାଫ୍ ଫଟୋ କିପରି ଉଠାଯିବ, ପାସ୍‌ପୋର୍ଟ ଫଟୋ କିପରି ଉଠାଯିବ ସେ ସମ୍ପର୍କରେ ସବୁ କଥା ଶିଖାଇ ଥିଲେ । ସେତେବେଳେ ଗୋଟିଏ ରିଲ୍‌ରେ ଆଠୋଟି ଫଟୋ ଉଠାଇବା ପାଇଁ ବ୍ୟବସ୍ଥା ଥିଲା । ରିଲ୍ ଏବଂ ଗୋଟିଏ ଗୋଟିଏ କପି ପାଇଁ ଛ'ଟଙ୍କା ଖର୍ଚ୍ଚ ହେଉଥିଲା । ପ୍ରଥମେ ମୁଁ ଏବଂ ସାର୍ ଆମ ଗାଁରେ କେତେକ ଲୋକଙ୍କ ଫଟୋ ଉଠାଇଲୁ । କଟକ ହାଇକୋର୍ଟ ଛକରେ ମିତ୍ରାଳୟ ନାମରେ ଏକ ଫଟୋ ଷ୍ଟୁଡିଓ ଥିଲା । ଆମେ ଫଟୋ ଉଠାଇ ତାକୁ ଧୋଇବା ପାଇଁ ଏବଂ ପ୍ରିଣ୍ଟ କରିବା ପାଇଁ ପଠାଉ । ସେତେବେଳେ ବାଙ୍କୀରେ ଫଟୋ ଦୋକାନ ନଥିଲା । କାଁ ଭାଁ କିଏ ବାହାରୁ ଆସି ଫଟୋ ଉଠାଉଥିଲେ । ଆମେ ଫଟୋ ଉଠାଇବା କଥା ପ୍ରଚାର ହୋଇଯିବାରେ ବିଭିନ୍ନ ଗ୍ରାମରୁ କିଛି ବିଶିଷ୍ଟ ପରିବାର ଆମକୁ ଫଟୋ ଉଠାଇବା ପାଇଁ ଡାକିଲେ । ଆମେ ଗୋଟିଏ ପ୍ରିଣ୍ଟ୍ ପାଇଁ ଟଙ୍କାଟିଏ ନେଲୁ । ରବିବାର ଓ ଛୁଟିଦିନ ଏହି କାରବାର ଚାଲିଲା । ମାସରେ ଦଶ/ବାରୋଟି ରିଲ୍ ଶେଷ ହେଉଥାଏ । ସେହି କ୍ରମରେ ମାସକୁ ଆମେ କୋଡ଼ିଏ/ ଚବିଶ ଟଙ୍କା ପାଉଥିଲୁ । ମୋର ଖର୍ଚ୍ଚ ଆରାମରେ ଚାଲୁଥାଏ ।

ଆଉ ଘରୁ ପଇସା ଚୋରିକରି ଜଳଖିଆ ଖାଇବା ଦରକାର ପଡ଼ିଲା ନାହିଁ । ଖରାଦିନେ ସେତେବେଳେ ବାଙ୍କୀ ବସ୍ କୁଆଖାଇ ନଦୀରେ ହୋଇଥିବା ଖରାଦିନିଆ ରାସ୍ତାରେ କଟକ ଚାନ୍ଦିନୀଚୌକ ଯାଉଥିଲା । ସେଇ ବସ୍‌ରେ କଣ୍ଡକ୍ଟରଙ୍କୁ ଆମେ ଫଟୋ ଉଠା ହୋଇଥିବା ରିଲ୍ ପଠାଇ ଦେଉ । ଦିନକ ପରେ ଫଟୋ ଓ ନେଗେଟିଭ୍ ଆମେ ପାଇଯାଉ । ବର୍ଷାଦିନେ ମୁଁ ନିଜେ ମଝିରେ ମଝିରେ ଯାଇ ରିଲ୍ ଦିଏ ଏବଂ ପରଦିନ ଫଟୋ ଓ ନେଗେଟିଭ୍ ଆଣି କରି ବାଙ୍କୀ ଆସେ ।

ହଁ କହିରଖେ ବାଙ୍କୀରୁ କଟକ ଓ ଜଟଣୀକୁ ୧୯୫୫ରୁ ଓ.ଆର୍.ଟି.(ଓଡ଼ିଶା ରୋଡ଼୍ ଟ୍ରାନ୍ସପୋର୍ଟ) କମ୍ପାନୀ ନୀଳ ଗାଡ଼ି ଚାଲିଲା । ସେଇ ବସ୍ ବର୍ଷାଦିନେ ବାରଙ୍ଗ ପର୍ଯ୍ୟନ୍ତ ଯାଏ । ସେଠାରୁ ଟ୍ରେନ୍‌ରେ ଲୋକେ କଟକ ଯା'ନ୍ତି । ଆଉ କେହି କେହି ତ୍ରିଶୁଳିଆରେ ଓହ୍ଲାଇ ଡଙ୍ଗାରେ କୁଆଖାଇ ପାର ହୋଇ ଗଣେଷ ଘାଟରେ ଉଠନ୍ତି । ତେବେ ଅଧିକାଂଶ ଟ୍ରେନ୍‌ରେ ଯିବାକୁ ପସନ୍ଦ କରନ୍ତି । କୁଆଖାଇ ନଦୀ ଉପରେ ପୋଲ ହେବା ପରେ ଏବେ ବାଙ୍କୀ-କଟକ ମଧ୍ୟରେ ସବୁଦିନିଆ ବସ୍ ଚଳାଚଳ ହୋଇ ପାରୁଛି । ଗୋଡ଼ିସାହି ମାଇନର ସ୍କୁଲ୍‌ରେ ଶିକ୍ଷକ ହେବା ପରେ କଟକ ଯିବା ଆସିବା ସୁବିଧା ହେଲା । କାରଣ ଗୋଡ଼ି ସାହିରୁ କଟକ ସତର/ ଅଠର କିଲୋମିଟର ।

ମାଟ୍ରିକ ପାଶ୍ କଲା ବେଳକୁ ଫଟୋଗ୍ରାଫିରେ ମୁଁ ଏକ ପ୍ରକାର ଦୋରସ୍ତ ହୋଇ ଯାଇଥିଲି । ମୋ ମନ ଭିତରେ ସେତେବେଳେ କେଜାଣି କାହିଁକି ଫଟୋଗ୍ରାଫର ବିଶେଷକରି ପ୍ରଫେସନାଲ୍ ଫଟୋଗ୍ରାଫର ହେବାର ଖିଆଲ ଜୁଟିଥିଲା । ଥରେ କଟକ ଯାଇ ହାଇକୋର୍ଟ ଛକରେ ଥିବା ମିତ୍ରାଳୟରେ ରିଲ୍ ଦେଇ ଗୋଟିଏ କ୍ୟାମେରା କିଣିବା ମୋର ସାଧ ବାହାରେ ବୋଲି ମନେକରି ଫଟୋଗ୍ରାଫର ହେବାର ନିଶା ମନରୁ ତ୍ୟାଗ କଲି । ମୋର ଯାହା ମନେ ଅଛି ମିତ୍ରାଳୟ ମାଲିକ ଏକ କ୍ୟାମେରା ଦେଖାଇ କହିଥିଲେ ଏହା ସବୁଠାରୁ କମ୍ ଦାମ୍‌ର । ଏହାର ଦାମ୍ ହେଉଛି ଛ'ଶହ ଟଙ୍କା । ମୁଁ ସେ କ୍ୟାମେରା ଦେଖି ଆମ ସ୍କୁଲରେ ଥିବା କ୍ୟାମେରା ନାମ ତାଙ୍କୁ କହିବାରେ ଓଃ- ସେ କ୍ୟାମେରା ତିନି ହଜାର ଟଙ୍କା ହେବ । ତୁମେ ସେଇ କ୍ୟାମେରାରେ ଫଟୋ ଉଠାଉଛ ? ମୁଁ ହଁ କହିଲି । ସେ କହିଲେ ସେଇଥିପାଇଁ ଏ ଫଟୋ ସବୁ ଏତେ ସ୍ପଷ୍ଟ ଆଉ ସଫା ହେଉଛି ।

ସ୍କୁଲରେ ପଢ଼ିବା ବେଳେ ବାଙ୍କୀ କ୍ଲବ୍ ପେଣ୍ଡାଲ୍‌ରେ ଅନେକ ନାଟକ ମଞ୍ଚସ୍ଥ ହେଉଥିଲା । ଏ ନାଟକର ନିର୍ଦ୍ଦେଶନା ଦେଉଥିଲେ ରାଧାଶ୍ୟାମ ଦାସ ଏବଂ କବିଚନ୍ଦ୍ର କାଳୀଚରଣଙ୍କ ସାନ ଭାଇ ପାର୍ବତୀ ଚରଣ ପଟ୍ଟନାୟକ ନାରୀ ଭୂମିକାରେ ଓ ଗୋପାଳ ଚନ୍ଦ୍ର ସାହୁ କମେଡ଼ି ଭୂମିକାରେ ଅଭିନୟ କରୁଥିଲେ । ପାର୍ବତୀ ବାବୁ ବାଙ୍କୀ ସବ୍‌ରେଜିଷ୍ଟ୍ରାର ଅଫିସର କିରାଣି ଥିଲେ । ଗୋପାଳ ବାବୁ ହୋମିଓ ପାଥିକ୍ ଡାକ୍ତର ଥିଲେ । ତାଙ୍କର ବାଙ୍କୀ ବଜାରରେ ଏକ ହୋମିଓପାଥିକ୍ ଡାକ୍ତରଖାନା ଥିଲା । ଡାକ୍ତରଖାନା କହିଲେ ଗୋଟିଏ ଛୋଟ ଚାଳଘର । ପାର୍ବତୀବାବୁ ମ୍ୟୁଜିକ୍ ଡାଇରେକ୍ଟର ଥିଲେ । ଭଲ ହାରମୋନିୟମ୍ ବଜାଉ ଥିଲେ । ଏମାନଙ୍କ ସହ ଆଉ ଜଣେ ନାଟୁଆ ଥିଲେ ରାଧେଶ୍ୟାମ ଦାସ । ତାଙ୍କ ଘର ଆମ ଗାଁ ପାଖ ଖମାରଙ୍ଗ । ସେ ନାଟକ ନିର୍ଦ୍ଦେଶନା ମଧ୍ୟ ଦେଉଥିଲେ । ସଙ୍ଗୀତ ମଧ୍ୟ ଦେଉଥିଲେ । ରାଧାଶ୍ୟାମ ବାବୁ ହେଉଛନ୍ତି ଆଜିର ପ୍ରଖ୍ୟାତ ଅଭିନେତା ହେମନ୍ତ ଦାସଙ୍କ ବାପା । ଏମାନଙ୍କ ସହ ନାଟକର ହିରୋ ହେଉଥିଲେ ଆମ ସ୍କୁଲର ଖେଳ ଶିକ୍ଷକ ଭୁବନେଶ୍ୱର ମଙ୍ଗରାଜ । ତାଙ୍କୁ ଲୋକେ ଶ୍ରଦ୍ଧାରେ ଡାକନ୍ତି ଭୁବନି ବାବୁ । ଭୁବନି ବାବୁ ହେଉଛନ୍ତି ବିଖ୍ୟାତ କମ୍ୟୁନିଷ୍ଟ ନେତା ଗଙ୍ଗାଧର ପାଇକରାୟଙ୍କ ବଡ଼ ଭାଇ । ସେତେବେଳେ ବାଙ୍କୀରେ ନାଟକ ଖୁବ୍ ଜମୁଥିଲା । ଏ ସବୁ ନାଟକରେ ସ୍କ୍ରିନ୍ ଟଙ୍ଗା ହୋଇ ବିଭିନ୍ନ ଦୃଶ୍ୟ ମଞ୍ଚସ୍ଥ ହେଉଥିଲା । ମେକ୍‌ଅପ୍ କରୁଥିଲେ କଟକର ଜଣେ ହାବୁଦା ବନାମ ହାବୁ ସରକାର । ତାଙ୍କ ଘର କଟକ ମହମଦିଆ ବଜାର ରୋଭର୍ସ ଷ୍ଟ୍ରିଟ୍‌ରେ । ଆଉ

ଜଣେ ସେତେବେଳେ ବିଖ୍ୟାତ ମେକ୍‌ଅପ୍ ମ୍ୟାନ୍ ଥିଲେ ପୁରୀର କୃଷ୍ଣ ମୁଖାର୍ଜୀ । ସେ ବର୍ତ୍ତମାନର ନାମକରା ଶିଳ୍ପୀ ଅସୀତ ମୁଖାର୍ଜୀଙ୍କ ବାପା । ବାଙ୍କୀ ପେଣ୍ଡାଲରେ କାଳୀବାବୁଙ୍କ ଚକ୍ରୀ, ଅଭିଯାନ, ରକ୍ତମାଟି ଓ ଭାତ ନାଟକ ଏମାନେ ମଞ୍ଚସ୍ଥ କରିଥିଲେ । ଆମର ଏକାଦଶ ଶ୍ରେଣୀ ବେଳେ ଆମ ସ୍କୁଲରେ କେବଳ ଝିଅମାନଙ୍କ ଦ୍ୱାରା ଜୟଦେବ ନାଟକ ମଞ୍ଚସ୍ଥ ହୋଇଥିଲା । ଏହା ଖୁବ୍ ସଫଳ ହୋଇଥିଲା । ବାଙ୍କୀରେ ଏକ ବାଳିକା ହାଇସ୍କୁଲ କରିବା ପାଇଁ ଏହି ନାଟକ ଜରିଆରେ ପାଣ୍ଠି ସଂଗ୍ରହ କରାଯାଇଥିଲା । ସେଥିପାଇଁ ସ୍କୁଲ ପଛପଟେ ଏକ ଷ୍ଟେଜ୍ ତିଆରି ହୋଇଥିଲା । ଏହି ନାଟକରୁ ମୋର ଯାହା ମନେ ଅଛି ପ୍ରାୟ କୋଡ଼ିଏ ହଜାର ଟଙ୍କା ଉଠା ଯାଇଥିଲା ଏବଂ ନାଟକ ପରେ ବାଙ୍କୀ ବାଳିକା ହାଇସ୍କୁଲ କାମ ଆରମ୍ଭ ହୋଇଥିଲା । ଆମ ଘର ପଛପଟେ ଆମ ବାଡ଼ିକୁ ଲାଗି ଏହି ସ୍କୁଲ ତିଆରି ହୋଇଥିଲା । ବାଙ୍କୀ ହାଇସ୍କୁଲରେ ଆଉ ଗୋଟିଏ ନାଟକ ଅତି ସଫଳତାର ସହ ମଞ୍ଚସ୍ଥ ହୋଇଥିଲା । ତା' ହେଲା ବକ୍ସି ଜଗବନ୍ଧୁ । ଏହାର ମୁଖ୍ୟ ଭୂମିକାରେ ଅଭିନୟ କରିଥିଲେ ଆମ ସ୍କୁଲର ଗଣିତ ଶିକ୍ଷକ ବୈରାଗୀ ଚରଣ ଦାସ । ସଂଗୀତ ଦେଇଥିଲେ ଇଂରାଜୀ ଶିକ୍ଷକ ରାମଚନ୍ଦ୍ର ତ୍ରିପାଠୀ ।

ରାଧାଶ୍ୟାମ ବାବୁ- ଭୁବନୀ ବାବୁଙ୍କ ବ୍ୟାଚ୍ ପରେ ହେମନ୍ତ ଦାସ, ଜତୀନ୍ଦ୍ର ମିଶ୍ର, ଗୋପୀନାଥ ମିଶ୍ର, ପ୍ରଫୁଲ୍ଲ ମିଶ୍ର, ପତିତପାବନ ଦାଶ ଏବଂ ଆଉ କେତେଜଣ ମିଶି ପ୍ରଥମେ ମାଟିର ମଣିଷ ନାଟକ ମଞ୍ଚସ୍ଥ କରିଥିଲେ । ପ୍ରଥମ ଥର ପାଇଁ ସେତେବେଳେ ଗ୍ଲୋରିଆ ରାଉତ, ରିତା ପାଲିତ, ଆଲି, କୃଷ୍ଣା ପ୍ରଭୃତି ଅଭିନେତ୍ରୀ ମାନେ ବାଙ୍କୀ ଯାଇଥିଲେ । ଇଯେ ୧୯୫୪-୫୫ ମସିହା କଥା । ସେତେବେଳେ ଆମ ଗାଁରେ ବାପୁଜୀ ସେବାସଂଘ ଓ ଚର୍ଚ୍ଚିକା ପାଠାଗାର ନାମରେ ଏକ ବିଖ୍ୟାତ ଅନୁଷ୍ଠାନ ଥିଲା । ୧୯୪୫ ମସିହାରେ ଏହା ସ୍ଥାପିତ ହୋଇଥିଲା । ମୁଁ ନବମଶ୍ରେଣୀରେ ପଢ଼ିବା ବେଳେ ଏହାର ସମ୍ପାଦକ ହେଲି । ଗାଁ ମଝିରେ ଥିବା ଭାଗବତ ଘରେ ଏହା ରହିଥିଲା । ପରେ ଆମ ଦାଣ୍ଡ ଘରେ ଏହା କାର୍ଯ୍ୟ କଲା ।

ଆଜି ଏତେଦିନ ପରେ ସେଦିନ କଥା ମନେ ପକାଇବା ବେଳେ ମନରେ ରୋମାଞ୍ଚ ଜାତ ହେଉଛି । ହେମନ୍ତ ବାବୁ ତାଙ୍କ ବନ୍ଧୁମାନେ ମାଟ୍ରିକ୍ ପାଶ୍ କରି କଟକ ଚାଲିଗଲା ପରେ ବାଙ୍କୀର ପରବର୍ତ୍ତିପିଢ଼ିରେ ଆମେ ସବୁ ଅର୍ଥାତ୍ ମୁଁ, ବାବାଜୀ ଭାଇନା(କିଶୋର ଚନ୍ଦ୍ର ମିଶ୍ର), ସଚ୍ଚିଭାଇନା, ଶ୍ରୀନିଭାଇନା, ପ୍ରଭାତ ଭାଇନା, ହରେନ୍ଦ୍ର ଦାସ ପ୍ରଭୃତି ନାଟକ ଠାରୁ ଆରମ୍ଭ କରି ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମର ଦାୟିତ୍ୱ ନେଲୁ । ବାଙ୍କୀ କ୍ଲବ ପେଣ୍ଡାଲରେ ଆମେ ମଞ୍ଚସ୍ଥ କଲୁ ନାଟକ 'ଚାକିରି', 'ପରିଶୋଧ', 'ଶେଷଶ୍ରାବଣ' । ହରେନ୍ଦ୍ର ଦାସ ଏହାର ନିର୍ଦ୍ଦେଶନା ଦେଉଥିଲେ । ପୂର୍ବରୁ କହିଛି ସ୍କୁଲ ଫୁଟବଲ୍ ଟିମ୍‌ର ମୁଁ କ୍ୟାପଟେନ୍ ଥିଲି । ମୁଁ କ୍ୟାପଟେନ୍ ଥିବା ବେଳେ (ଦଶମ ଶ୍ରେଣୀ) ବେଗୁନିଆ ହାଇସ୍କୁଲ, ଖୋର୍ଦ୍ଧା ହାଇସ୍କୁଲ, ବଡ଼ମ୍ବା ହାଇସ୍କୁଲ, ଆଠଗଡ଼ ଓ ନରସିଂହ ହାଇସ୍କୁଲ ସହ ଖେଳିବାକୁ ଯାଇଥିଲୁ । ଆଠଗଡ଼, ବଡ଼ମ୍ବା ଓ ନରସିଂହପୁରକୁ ବଡ଼ ଡଙ୍ଗାରେ ମହାନଦୀ ପାରହୋଇ ଯାଇଥିଲୁ । ଖୋର୍ଦ୍ଧା ଓ ବେଗୁନିଆକୁ ମଙ୍ଗରାଜଙ୍କ ବସ୍ ନେଇ ଯାଇଥିଲୁ । ଏସବୁ ଖେଳ ଭାରି ମଜା ହୁଏ । ବେଗୁନିଆକୁ ଆମେ ଦୁଇଟି ଗୋଲ୍ ଦେଇ ହରାଇବା ପରେ ସେଠାକାର କିଛି ଟୋକା ଆମ ବସ୍‌କୁ ଟେକାମାଡ଼ କଲେ । ଯାହାହେଉ କାହାର କିଛି କ୍ଷତି ହୋଇ ନଥିଲା । ହାଇସ୍କୁଲରୁ ପାଶ୍ କରିବା ପରେ ମୁଁ ବାଙ୍କୀ ଟାଉନ୍ ଟିମ୍‌ର କ୍ୟାପଟେନ୍ ହୋଇଥିଲି ।

ବାଙ୍କୀରେ ମୋର ଦୁଇଟି ବ୍ୟାଚ୍ ଉପରେ ପଢୁଥିଲେ ବନ ବିହାରୀ ପଣ୍ଡା ଓ ଦୁଇଟି ବ୍ୟାଚ୍ ତଳେ ପଢୁଥିଲେ ବାଉରିବନ୍ଧୁ ନନ୍ଦ । ଦୁହେଁ ଆଇ.ପି.ଏସ୍. ପାଇ ପୋଲିସ୍ ବିଭାଗରେ ସର୍ବୋଚ୍ଚ ପଦ (ଡି.ଜି. ପୋଲିସ) ଅଧିକାର

କରିଥିଲେ । ସ୍କୁଲ ଜୀବନ ଏବଂ ପରବର୍ତ୍ତିସମୟ ଯେତିକି ମୁଁ ବାଙ୍କୀରେ କଟାଇଛି ତାହା ମୋ ଜୀବନରେ ଏକ ଅଭୁଲା ଅଧ୍ୟାୟ । ବାଙ୍କୀ ସହ ମୁଁ ଓତଃପ୍ରୋତଃ ଭାବେ ଜଡ଼ିତ ଥିଲି । ଆଉ ଏକ ଅଧ୍ୟାୟ ହେଉଛି ଚର୍ଚ୍ଚିକା ମୀନାମଣ୍ଡଳୀ । ବାଙ୍କୀରେ ୧୯୫୭ ମସିହାରେ ମୁଁ ଏକ ବିରାଟ ମୀନାମେଳା କରିଥିଲି । ପ୍ରଥମଥର ପାଇଁ ସେ ମେଳାକୁ ରାଜେନ୍ଦ୍ର ନାରାୟଣ ସିଂହଦେଓ ମୁଖ୍ୟ ଅତିଥି ହୋଇ ଯାଇଥିଲେ । ବାଙ୍କୀ କ୍ଲବ ପେଣ୍ଡାଲ୍‌ରେ ଏହା ଅନୁଷ୍ଠିତ ହୋଇଥିଲା । ସ୍କୁଲରେ ପଢୁଥିବା ଆମ ଗାଁ, ପାଟପୁର, ଖମାରଙ୍ଗ ଗାଁର ଝିଅମାନେ ସ୍ୱାଗତ ସଂଗୀତ ଗାଇଥିଲେ । ଝିଅମାନେ ସ୍ୱାଗତ ସଂଗୀତ ଗାଇବା ବାଙ୍କୀରେ ସେଇ ପ୍ରଥମ । ଗୋପୀ କୃଷ୍ଣ ବେହେରା (ଆଜିର ବିଖ୍ୟାତ କଳାକାର) ଏହାକୁ ଶିଖାଇ ଥିଲେ । ରାଣୀ ଶୁକଦେଇଙ୍କ ଜୀବନୀକୁ ନେଇ ଏହି ସ୍ୱାଗତ ସଂଗୀତ ରଚନା କରାଯାଇଥିଲା । ଆଜି ମୋର ମନେ ଅଛି ରାଜେନ୍ଦ୍ର ନାରାୟଣ ସିଂହଦେଓ ଏହି ସଂଗୀତ ଶୁଣି ବାଙ୍କୀ ରାଜବଂଶ ଉପରେ କିଛି ଲେଖା ଅଛି କି ନାହିଁ ବୋଲି ପଚାରି ଥିଲେ । ସେତେବେଳେ ପାଟପୁରର ନୀଳକଣ୍ଠ ରଥ ଶର୍ମା ଲେଖିଥିବା ବାଙ୍କୀ ଇତିହାସର ଗୋଟିଏ କପି ଆମ ଚର୍ଚ୍ଚିକା ପାଠାଗାରରୁ ଆଣି ତାଙ୍କୁ ଦେଇଥିଲୁ । ଏହି ବହିଟି ୧୯୩୫ ମସିହାରେ ପ୍ରକାଶ ପାଇଥିଲା । ଆମେ ଅତି ବାହାଦୁରି ଦେଖାଇ ବହିଟି ଦେଇ ଦେଲୁ । ମାତ୍ର ତା'ପରେ ଆଉ ଗୋଟିଏ ବହି ଖୋଜି ଖୋଜି ପାଇଲୁ ନାହିଁ । ପୂର୍ବରୁ କହିଛି ଚର୍ଚ୍ଚିକା ମୀନା ମଣ୍ଡଳୀ ଦ୍ୱାରା ମୁଁ ଅନେକ ଉପକୃତ ହୋଇଛି । ଏହି ମୀନା ମଣ୍ଡଳୀ ମୋତେ ନେତୃତ୍ୱ ଦେବା ଓ ଲେଖାଲେଖି କରିବା ଶିକ୍ଷା ଦେବା ଠାରୁ ଆରମ୍ଭ କରି ଏକ ନିର୍ଭିକତା ମଧ୍ୟ ମୋ ଭିତରେ ସୃଷ୍ଟି କରିଥିଲା । ଡଃ ହରେକୃଷ୍ଣ ମହତାବଙ୍କ ଏହି ପରିକଳ୍ପନା ତାଙ୍କୁ ଓଡ଼ିଶାର ଘରେ ଘରେ ପରିଚିତ ଓ ଶ୍ରଦ୍ଧେୟ କରିଥିଲା ।

ଗୋଡ଼ିସାହୀ ସ୍କୁଲରେ ମୁଁ ମୋଟ ଆଠମାସ ରହିଥିଲି । ଏ ସ୍କୁଲରେ ଆଖପାଖ ଆଠ/ଦଶଟି ଗ୍ରାମର ପୁଅ ଝିଅ ପଢୁଥିଲେ । ମୁଣ୍ଡଳୀ ଡ୍ୟାମ ଡିଭିଜନର ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର/ ଆସିଷ୍ଟାଣ୍ଟ ଇଞ୍ଜିନିୟର ଏବଂ ଅନ୍ୟାନ୍ୟ କର୍ମଚାରୀଙ୍କ ପିଲାମାନେ ମଧ୍ୟ ଏ ସ୍କୁଲରେ ପଢୁଥିଲେ । ସେମାନେ ତିନି/ଚାରୋଟି ଜିପ୍‌ରେ ଆସୁଥିଲେ ଏବଂ ସ୍କୁଲ ଛୁଟି ହେବା ବେଳକୁ ଜିପ୍ ଆସି ନେଇ ଯାଉଥିଲା । ଗୋଡ଼ିସାହୀ ସ୍କୁଲଟି ଗୋଡ଼ିସାହୀ ଗ୍ରାମଠାରୁ ଫର୍ଲଙ୍ଗେ/ ଦେଢ଼ ଫର୍ଲଙ୍ଗ ଦୂରରେ ବାଙ୍କୀ ଆଡ଼କୁ । ସେତେବେଳେ ସ୍କୁଲ ପାଖରେ ଜନବସତି ପ୍ରାୟ ନଥିଲା । ସ୍କୁଲରେ ଆଦିବାସୀ ଛାତ୍ରମାନଙ୍କ ପାଇଁ ପାଞ୍ଚ ବଖରା ଘର ହଷ୍ଟେଲ ହୋଇଥାଏ । ଗୋଟିଏ ବଖରାରେ ଛ'ଜଣ ପିଲା ରହୁଥାନ୍ତି । ମୋତେ ମିଶାଇ ଚାରିଜଣ ଶିକ୍ଷକ ଥିଲେ ଏବଂ ପ୍ରଧାନ ଶିକ୍ଷକ ଥିଲେ । ଆମେ ମୁଁ, ଶ୍ରୀନିଭାଇନା ଗୋଟିଏ ବଖରାରେ ରହୁଥିଲୁ । ଦୁଇଟି ବଡ଼ ବଡ଼ ବେଞ୍ଚକୁ ଏକାଠି ମିଶାଇ ଦୁଇଟି ବେଡ଼୍ ହୋଇଥାଏ । ଆଉ ଜଣେ ଶିକ୍ଷକ ହେଡ଼ମାଷ୍ଟରଙ୍କ ପୁତୁରା । ମୋରି ବୟସର । ବେଶ୍ ଦୀର୍ଘକାୟ ଓ ସୁନ୍ଦର ଚେହେରା । ସେ ହେଡ୍ ମାଷ୍ଟର ରହୁଥିବା କୋଠରୀରେ ରହୁଥିଲେ । ତାଙ୍କ ନାଁ ମନେ ପଡୁନି । ବୋଧେ ଲଳିତ ପଟ୍ଟନାୟକ । ବାକି ଜଣେ ଶିକ୍ଷକ ଗୋଡ଼ିସାହୀ ଗାଁର । ଗୋବର୍ଦ୍ଧନ ବାବୁ । ବୟସ୍କ ଲୋକ । ଗାଁରେ ତାଙ୍କର ଗୋଟିଏ ଡାଲି-ଚାଉଳ ଦୋକାନ ଥିଲା ।

ଛୁଟି ହେବା ପରେ ଆମେ ତିନିଜଣ ବୁଲାବୁଲି କରି ତାଙ୍କ ଦୋକାନ ସାମ୍ନା ପଡ଼ିଆ ବେଞ୍ଚରେ କିଛି ସମୟ ବସି କଥାବାର୍ତ୍ତା ହୋଇ ହଷ୍ଟେଲକୁ ଫେରୁ । ଶ୍ରୀନିଭାଇନାଙ୍କୁ ଛାଡ଼ି ଦେଲେ ଆମେ ଦି'ଜଣ ଚା' ଫା କିଛି ଖାଉ ନଥିଲୁ । ହଷ୍ଟେଲ୍‌ରେ ରୋଷେଇ ହେଉଥିଲା । ଭାତ-ପାଣି ଡାଲି, ଘାଣ୍ଟିଆ ତରକାରୀ ଆଉ କିଛି ଭଜାଭଜି । ଶୀତଦିନେ ସେ ଅଞ୍ଚଳରେ ଭଲ ପରିବା ହୁଏ । କୋବି, ଆଳୁ, ପିଆଜ, ଛୁଇଁ, ବିଲାତି ବାଇଗଣ, ବାଇଗଣ, ଝୁଡ଼ଙ୍ଗ, ଶିମ୍ବ ଆଦି ସବୁ ପରିବା ହୁଏ । ସ୍କୁଲ ପଛ ପଟେ ସ୍କୁଲର ଦୁଇ ଏକର ଜମିରେ ଏ ସବୁ ପରିବା ହୁଏ । ସାମନା ବଗିଚାରେ ମଧ୍ୟ ପରିବା ହୁଏ । ଶୀତଦିନେ ଖାଇବା ପିଇବା ବଢ଼ିଆ ହୁଏ । ସ୍କୁଲ ସାମନାରେ ବୁଦୁବୁଦିଆ ଜଙ୍ଗଲ ଆଉ ପାହାଡ଼ । ସ୍କୁଲ ଆଉ

ପାହାଡ଼ ମଝିରେ ବାଙ୍କୀ- କଟକ ରାସ୍ତା । ମଝିରେ ଥରେ ଛୁଟିଦିନ ଖରାବେଳେ ମୁଁ ସାମନା ପାହାଡ଼ ଉପରକୁ ଗଲି । ଉପରକୁ କିଛିବାଟ ଗଲା ପରେ ଦେଖିଲି ବେଶ୍ ପ୍ରଶସ୍ତ ଜାଗା । ବିରାଟ ଏକ ପଥର । ସମ୍ଭବତଃ କୋଡ଼ିଏ ପଚିଶ ଫୁଟ ଚଉଡ଼ାରେ ପଚାଶ ଫୁଟ ଲମ୍ବା ହେବ । ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ଏତେବଡ଼ ଗୋଟେ ସମତଳ ପଥର ପାହାଡ଼ ଉପରେ କିପରି ସୃଷ୍ଟି ହୋଇଛି ଚିନ୍ତା କଲି । ପଥର ଚଟାଣ ଉପରକୁ ଯିବାକୁ ପାହାଚ ମଧ୍ୟ ରହିଛି । କିଛି ବୁଝି ପାରିଲି ନାହିଁ । କିଛି ସମୟ ସେଇ ପଥର ଚଟାଣ ଉପରେ ବୁଲିଲି । ଫେରି ଆସି ସେଦିନ ଆମ ସ୍କୁଲର ଶିକ୍ଷକ ଗୋବର୍ଦ୍ଧନ ବାବୁଙ୍କୁ ଏକଥା ପଚାରିଲି । ସେ ସ୍ଥାନୀୟ ଲୋକ । ଆମେ ତିନିଜଣ ଶିକ୍ଷକ ତାଙ୍କ ଦୋକାନ ବେଞ୍ଚରେ ବସିଥିଲୁ ।

ତାଙ୍କୁ ଏକଥା କହିବା ପରେ ସେ କହିଲେ ଆପଣ ସେଠିକି କାହିଁକି ଯାଇଥିଲେ ? ମୁଁ କହିଲି ଏଇମିତି ଯାଉ ଯାଉ ସେଠି ପହଞ୍ଚିଗଲି । କିନ୍ତୁ ଆପଣ କାହିଁକି ଏକଥା ପଚାରିଲେ ? ସେ କହିଲେ ଆମେ ପିଲା ଦିନେ ୭/୮ଜଣ ସେଠିକୁ ଯାଉଥିଲୁ । କିନ୍ତୁ ଥରେ ଯାଇ ଫେରିଲା ବେଳକୁ ତଳେ ଦେଖିଲୁ ଆମ ଭିତରୁ ଜଣେ ନାହିଁ । ଆମେ ତା' ନାଁ ଧରି ଡାକିଲୁ । କିନ୍ତୁ କିଛି ଜବାବ୍ ପାଇଲୁ ନାହିଁ । ସମସ୍ତେ ଭୟ ପାଇଗଲୁ । ସେତେବେଳେ ଏ ସ୍କୁଲ ମଧ୍ୟ ନଥିଲା । ସମସ୍ତେ ଗାଁକୁ ଦୌଡ଼ିଲୁ । ଗାଁରୁ ଦଳେ ଲୋକ ଠେଙ୍ଗାବାଡ଼ି ଧରି ପାହାଡ଼ ଉପରକୁ ଚଢ଼ିଲେ । କିନ୍ତୁ ସେ ପିଲାର କିଛି ସୋର୍ ଶବ୍ଦ ନାହିଁ । ପାହାଡ଼ ଉପରେ ସେ ପଥର ଚଟାଣ ଉଠି ଲୋକେ ପାହାଡ଼ ଆରପଟକୁ ଗଲେ । କିଛି ସମୟ ପରେ ସେମାନେ ଫେରି ଆସିଲେ । ଆମେ ତଳେ ଠିଆ ହୋଇଥାଉ । କାହାରି ମୁହଁରେ କିଛି କଥା ନାହିଁ । ତଳକୁ ସମସ୍ତେ ଆସିବା ପରେ ଦେଖିଲୁ ସେ ପିଲାକୁ ତା' ବାପା କାନ୍ଧରେ ପକାଇ ଆସୁଛି । ସେଠି ଠିଆ ହୋଇଥିବା ସ୍ତ୍ରୀଲୋକେ କାନ୍ଦ ବୋବାଳି ପକାଇଲେ । ଆମେ କାଠଭୂତ ମୁରାରୀ ହୋଇ ଠିଆ ହୋଇଛୁ । ସେ ପିଲା ଅଚେତ ହୋଇ ପଡ଼ିଛି ବୋଲି ଶୁଣିଲୁ । ଆମ ମନ ଭିତରେ ଭୀଷଣ ଭୟ । ତା'ପରେ ସେ ପିଲାକୁ ନେଇ ଗଲେ ବାରଙ୍ଗ । ସେଠି କାଚ କାରଖାନା ନୂଆ ନୂଆ ହେଉଥାଏ । ସେଇ କାରଖାନାକୁ କଟକରୁ ଜଣେ ଡାକ୍ତର ଆସୁଥା'ନ୍ତି । ସେଦିନ ଗଲା । ତା' ପରଦିନ ସକାଳ ନ'ଟା ବେଳକୁ ତାକୁ ଆଣି ସେମାନେ ଆସିଲେ । ତାକୁ ସମସ୍ତେ ପଚାରିଲେ ତୁ ପାହାଡ଼ ସେପଟକୁ ଗଲୁ କିପରି ? ସେ କିଛି କହି ପାରୁ ନଥାଏ । ଦଶ/ବାର ଦିନ ପରେ ସେ ସ୍ୱାଭାବିକ ହେଲା । ଆମେ ଯେତେବେଳେ ତାକୁ କଥା ପ୍ରସଙ୍ଗରେ ଏକଥା ପଚାରିଲୁ ସେ କହିଲା ମୁଁ କିଛି ଜାଣିନି । ତମ ପଛରେ ପଛରେ ମୁଁ ଆସୁଥିଲି । ହଠାତ୍ ମୋତେ କିଏ ଶୂନ୍ୟକୁ ଟେକି ନେଲା । ମୁଁ ତୁମକୁ ସବୁ ଡାକିଲି । କିନ୍ତୁ ତୁମେ କେହି ମତେ ଶୁଣିଲ ନାହିଁ । ତା'ପରେ କ'ଣ ହୋଇଛି ମୁଁ ଜାଣେନି । ଆମେ ସମସ୍ତେ ଭୀଷଣ ଭୟ ପାଇଗଲୁ । ଆଉ ଥରେ ମୋ ବାପା ବାଙ୍କୀରୁ ଫେରୁଥିବା ବେଳେ ରାତି ପ୍ରାୟ ଅଧେ ହୋଇଗଲାଣି । ବାପା ଶଗଡ଼ରେ ଆସୁଥିଲେ । ଉପରୁ ଶବ୍ଦ ଶୁଣି ଅନେଇଲେ । ଦେଖିଲେ ସେ ଚଟାଣଟା ଉପରେ ଆଲୁଅ ପଡୁଛି । କେଉଁଠୁ ଆଲୁଅ ଆସୁଛି ବାପା ଜାଣି ପାରିଲେ ନାହିଁ । ସେଠି ଝୁମ୍‌ଝାମ୍ ଶବ୍ଦ ହେଉଛି । ବାପା ଭୟରେ ବେଗ୍ ବେଗ୍ ଶଗଡ଼ ନେଇ ପଳାଇ ଆସିଲେ । ରାତିରେ ବାପାଙ୍କୁ ଜର । ସକାଳୁ ଅବଶ୍ୟ ଜର ଛାଡ଼ିଗଲା । ସେ ଘରେ ଏକଥା କହିଲେ । ଆମ ସାହୀ ଲୋକେ ଶୁଣିଲେ । ସେଇ ଦିନଠୁ ସେ ପାହାଡ଼ ଉପରକୁ କେହି ଭୟରେ ଯା'ନ୍ତି ନାହିଁ । ସନ୍ଧ୍ୟା ହେଲେ ଗାଁ ଲୋକେ ମାଇପିଏ ପାହାଡ଼ ତଳକୁ ଝାଡ଼ା ଯା'ନ୍ତି । କିନ୍ତୁ ଏ ଘଟଣା ପରେ ଆଉ କେହି ସିଆଡ଼େ ଯାଇ ନାହାନ୍ତି ।

ଆମେ ସମସ୍ତେ ଗୋବର୍ଦ୍ଧନ ବାବୁଙ୍କ କଥା ଶୁଣୁଥିଲୁ । ମୁଁ କହିଲି କିନ୍ତୁ ଗୋବର୍ଦ୍ଧନ ବାବୁ ଆଜି ତ ମୁଁ ସେ ପଥର ଚଟାଣ ଉପରେ ପାଖାପାଖି ଏମୁଣ୍ଡରୁ ସେମୁଣ୍ଡ ଅଧଘଣ୍ଟାଏ ପର୍ଯ୍ୟନ୍ତ ଘୁରିଛି । କାହିଁ ସେମିତି ତ କିଛି ମୋର ଅନୁଭୂତି ହେଲା ନାହିଁ । ସେ ଭଳି କୌଣସି ଭୌତିକ ଦୃଶ୍ୟ ମଧ୍ୟ ଦେଖିଲି ନାହିଁ । ଗୋବର୍ଦ୍ଧନ ବାବୁ କହିଲେ ଆପଣଙ୍କ ଭାଗ୍ୟ

ଭଲ । ଆପଣ ବଞ୍ଚିକରି ଆସିଛନ୍ତି । ମୁଁ ଆଉ କିଛି କହିଲି ନାହିଁ । ଶ୍ରୀନିଭାଇନା କହିଲେ ବରି ତୁ ଆଉ ସେ ସାହାସ ଦେଖାନି । ଅଜାଣତରେ ଯାହା ହୋଇଗଲା ହୋଇଗଲା । ଏଣିକି ସବୁ ଜାଣିବା ପରେ ଆଉ ସିଆଡ଼େ ମୁଣ୍ଡ ଖେଳାନି । ଏବେ ସେ ପାହାଡ଼ ତଳେ କେନ୍ଦ୍ରୀୟ ଶିଳ୍ପ ନିରାପତ୍ତା ବାହିନୀର ବିରାଟ ତାଲିମ କେନ୍ଦ୍ର ପ୍ରତିଷ୍ଠା ହୋଇଛି । ପ୍ରାୟ ପାଞ୍ଚଶହ ସିପାହୀ ସେଠି ତାଲିମ୍ ନେଉଛନ୍ତି । ମୁଁ ଜାଣେନା ପାହାଡ଼ ଉପରେ ସେ ପଥର ଚଟାଣ ଏବେ ଅଛି କି ନାହିଁ । ବାଙ୍କୀ ବରେନ୍ଦ୍ର କୃଷ୍ଣ ବିଦ୍ୟାପୀଠରେ ମୋର ଦୁଇବର୍ଷ ତଳେ ପଢୁଥିବା ଡମପଡ଼ା ଗଡ଼ର ବାଉରୀବନ୍ଧୁ ନନ୍ଦ ଭାରତୀୟ ଶିଳ୍ପ ନିରାପତ୍ତା ବାହିନୀର ଡାଇରେକ୍ଟର ଜେନେରାଲ୍ ଥିବା ସମୟରେ ଏଠାରେ ଏହି କେନ୍ଦ୍ର ପ୍ରତିଷ୍ଠା ନିଷ୍ପତ୍ତି କରିଥିଲେ ଏବଂ ତାଙ୍କ କାର୍ଯ୍ୟକାଳ ସମୟରେ ଏହା ପୂର୍ଣ୍ଣାଙ୍ଗ ହୋଇଥିଲା । ଏବେ ଏଠାରେ କିଛି ଦୋକାନ ଖୋଲା ଯାଇଛି ।

ଗୋଡ଼ିସାହୀର ଶିକ୍ଷକ ଜୀବନ ବେଶ୍ ରୋମାଞ୍ଚକର । ତିରିଶ ଜଣ ଆଦିବାସୀ ପିଲା ହଷ୍ଟେଲରେ ରହୁଥିଲେ । ସେଇମାନଙ୍କ ମଧ୍ୟରୁ ପାଳିକରି କିଛି ପିଲା ଆମ ପ୍ୟାଣ୍ଟ-ସାର୍ଟ ସଫା କରି ଦେଉଥିଲେ । ସ୍କୁଲ ସାମନାରେ ବେଶ୍ କୂଅ ଥିଲା । ଚାରିପଟେ ପ୍ରଶସ୍ତ ସିମେଣ୍ଟ ଚଟାଣ । ଏକା ସାଙ୍ଗରେ କୂଅରୁ ପାଣି କାଢ଼ି ଦଶ/ବାର ଜଣ ପିଲା ଗାଧୋଉ ଥିଲେ । ଆମେ ସମସ୍ତେ ମଧ୍ୟ ସେଇଠି ଗାଧୋଉ ଥିଲୁ । ଗୋଡ଼ିସାହୀରୁ ପାଞ୍ଚ କିଲୋମିଟର ଦୂରରେ ନରାଜ ଆନିକଟ୍ । ନରାଜରୁ ପ୍ରାୟ ଦଶ/ବାର ଜଣ ପିଲା ପଢୁଥିଲେ । ନରାଜରେ ଭଲ ମାଛ ମରା ହୁଏ । ପ୍ରଧାନ ଶିକ୍ଷକ ଏଇ ପିଲାଙ୍କ ହାତରେ କିଛି ଟଙ୍କା ଦେଉଥିଲେ । ସ୍କୁଲକୁ ଆସିବା ବେଳକୁ ମାଛ ଆଣିବା ପାଇଁ । ସପ୍ତାହରେ ହଷ୍ଟେଲରେ ତିନି/ ଚାରିଦିନ ମାଛ ତରକାରୀ ହୁଏ । ଶୀତଦିନେ କୋବି, ଆଳୁ, ପିଆଜ, ବିଲାତି ବାଇଗଣ, ବାଇଗଣ, ଛୁଇଁ, ଝୁଡ଼ଙ୍ଗ ସ୍କୁଲ ପଛ କିଆରିରୁ ତୋଳି ତରକାରୀ/ ସନ୍ତୁଳା ହୁଏ । କେଜାଣି କାହିଁକି ସେ ସବୁ ବେଶ୍ ତୃପ୍ତିକର ଲାଗେ । ଭୋକ ହୁଏ । ସନ୍ଧ୍ୟା ୮ଟା ସାଢ଼େ ୮ଟା ସୁଦ୍ଧା ଖିଆପିଆ ଶେଷ କରି ଶୋଇବାକୁ ଯାଉ । ସେତେବେଳେ ବିଜୁଳି ଆଲୁଅ ନଥିଲା । ଲଣ୍ଠନ ଆଲୁଅରେ ପାଠପଢ଼ା ହେଉଥିଲା । ଶୋଇବା ପୂର୍ବରୁ ମୁଁ ଯାହାହେଲେ କିଛି ପଢ଼େ । ପଢୁ ପଢୁ ନିଦ ହୋଇଯାଏ । ମୋର ମନେ ଅଛି ମୁଁ କାହ୍ନୁ ଚରଣଙ୍କ ବାଲିରାଜା ବହି କଟକରୁ କିଣି ଆଣିଥିଲି । ପ୍ରତିଦିନ ଆଠ/ଦଶ ପୃଷ୍ଠା ପଢ଼ି ଶୋଇଯାଏ । ସକାଳୁ ସକାଳୁ ନିଦ ଭାଙ୍ଗେ ।

(ଗତ ଦୁଇଟି ନିବନ୍ଧରେ କଟକ ହାଇକୋର୍ଟ ଛକ ଫଟୋ ଷ୍ଟୁଡିଓ ନାମ ଚିତ୍ରାଳୟ ବୋଲି ପ୍ରକାଶ ପାଇଛି । ଏହାର ପ୍ରକୃତ ନାମ ମିତ୍ରାଳୟ ।)

ଗୋଡ଼ିସାହୀରେ ରହିବା ଭିତରେ ମଝିରେ ମଝିରେ ନରାଜ ଆନିକଟକୁ ଆମେ ଯାଉ । ବିଶେଷ କରି ସକାଳୁ ସକାଳୁ ଯାଇ ଆନିକଟ ପାଖରେ ବସି ମାଛ ମାରୁ । ଟିକେ ତଳକୁ ଓହ୍ଲାଇ ଗଲେ ଆନିକଟ ଦେଇ ଆସୁଥିବା ପାଣିରେ ଗାମୁଛାଟାଏ ଦେଖାଇ ଦେଲେ ମେଞ୍ଚେ ମେଞ୍ଚେ ଛୋଟ ଛୋଟ ମାଛ ପଡ଼ନ୍ତି । ଏ ମାଛକୁ ନେଉଳି ମାଛ କୁହନ୍ତି । ଆମେ ମଝିରେ ମଝିରେ ଯାଇ ନେଉଳି ମାଛ ଆଣି ମେସ୍ ନନାଙ୍କୁ ରୋଷେଇ ପାଇଁ ଦେଉ । ଚୁନି ଚୁନି ଆଳୁ, ପିଆଜ, ଶିମ୍ବ ସହ ନେଉଳି ମାଛ ପଡ଼ି ତରକାରୀ ହୁଏ । ଭାରି ଭଲ ଲାଗେ । ଶନିବାର ସନ୍ଧ୍ୟାରେ ମୁଁ ଆଉ ଶ୍ରୀନି ଭାଇନା ସାଇକେଲ୍‌ରେ ବାଙ୍କୀ ଆସୁ । ସୋମବାର ଦିନ ସକାଳୁ ସକାଳୁ ପୁଣି ଗୋଡ଼ିସାହୀ ଯାଉ । ଇଏ ୧୯୫୭ ମସିହା ଘଟଣା । ସେତେବେଳେ ବାଙ୍କୀ କଟକ ରାସ୍ତାର ଗୋଟିଏ ପଟେ ମହାନଦୀ ଏବଂ ଅନ୍ୟପଟେ ପାହାଡ଼, ଘଞ୍ଚ ଜଙ୍ଗଲ, ମଝିରେ ମଝିରେ ବିସ୍ତୃତ ଧାନ କ୍ଷେତ । ଶୀତଦିନେ ରାସ୍ତା କଡ଼ରେ ଅନେକ ସ୍ଥାନରେ ପନିପରିବା ଫସଲ ହୋଇଥାଏ ।

ବାଙ୍କୀରୁ ଛାତ ମୁଣ୍ଡିଆ ଯିବା ବାଟରେ ରଣ ନଦୀ । ରଣ ମହାନଦୀର ଏକ ଶାଖା ନଦୀ । ଏହା ନିଷ୍ଠିପୁରଠାରୁ ଖୋର୍ଦ୍ଧା ପାଖ ଘାରୁଅ ପର୍ଯ୍ୟନ୍ତ ଯାଇଥାଏ । ଏହା ମହାନଦୀରେ ପଡ଼ିଥାଏ । ଅଣଓସାରିଆ । ଚଉଡ଼ା ଏଇ ଧରନ୍ତୁ ଶହେଫୁଟ ହେବ । ଏବେ ଅବଶ୍ୟ ଦୁଇ ଧାର ମାଟି ଧସ ଖସି ଆଉ ଅଧିକ ଚଉଡ଼ା ହୋଇଯାଇଚି । ଛାତ ମୁଣ୍ଡିଆରୁ ଗୋଡ଼ିସାହୀ ପର୍ଯ୍ୟନ୍ତ ରାସ୍ତାର ଡାହାଣ ପଟେ ପର୍ବତମାଳା । ତାରି ତଳେ ମଝିରେ ମଝିରେ ଗ୍ରାମ ପୁଞ୍ଜ । ଘାସିପୁଟ, ପାଥପୁର, କୁଶୁପଙ୍ଗି, କାଳିକା ପ୍ରସାଦ, ଭଗିପୁର, ଗୟଳବାଙ୍କ, ବାଆଁରା, ରାମଚନ୍ଦ୍ର ପୁର ପ୍ରଭୃତି ଗ୍ରାମ ଥାଏ । ଚକୁଳେଶ୍ୱର ଗ୍ରାମର ଅନ୍ୟ ଦିଗରେ କାଳିକା ପ୍ରସାଦ । ଏଠି ମହାନଦୀ ବଙ୍କେଇ ଯାଇଛି । ମଝିରେ ଏକ ଦ୍ୱୀପ ଭଳି ଏକ ଅଞ୍ଚଳ ବାହାରି ପଡ଼ିଛି । ଏଇ ଅଞ୍ଚଳରେ ଡମପଡ଼ା ରାଜା ଏକ ପ୍ରାସାଦ ନିର୍ମାଣ କରିଥିଲେ । ପ୍ରାୟ ପନ୍ଦର ଏକର ବ୍ୟାପି ଏହି ପ୍ରାସାଦ ସମ୍ମୁଖରେ ସୈନ୍ୟବାହିନୀ ପାଇଁ କୋଠରୀ ନିର୍ମାଣ ହୋଇଛି । ରାଜାଙ୍କ ଦରବାର, ଉଆସ, ରାଣୀ ହଂସପୁର ଆଦି ଏହି ପ୍ରାସାଦ ମଧରେ ନିର୍ମିତ ହୋଇଛି । ରାଜାଙ୍କ ଦରବାର, ଉଆସ, ରାଣୀ ହଂସପୁର ଆଦି ଏହି ପ୍ରାସାଦ ମଧରେ ନିର୍ମିତ ହୋଇଥିଲା । ଏହା ରାଜାଙ୍କ ରହିବା ପାଇଁ ବ୍ୟବହୃତ ହେଉଥିବା ବେଳେ ଡମପଡ଼ା ଗଡ଼ରେ ରାଜାଙ୍କ କଚେରି ରହିଥିଲା । ଆଧୁନିକ ଓଡ଼ିଆ ଭାବସାହିତ୍ୟର ଜନକ ଫକିର ମୋହନ ଏହି ଡମପଡ଼ା ରାଜାଙ୍କ ନିକଟରେ ଦେବାନ ରୂପେ କାର୍ଯ୍ୟ କରୁଥିଲେ । ଡମପଡ଼ାକୁ ନେଇ ଫକୀର ମୋହନ ତାଙ୍କ ଆତ୍ମଜୀବନୀରେ ବିସ୍ତୃତ ଆଲୋଚନା କରିଛନ୍ତି । ବାଙ୍କୀରୁ ଗଲେ ଛାତ ମୁଣ୍ଡିଆ ପାହାଡ଼ ନିକଟରୁ ଡାହାଣ ପଟେ ତିନି କିଲୋମିଟର ପରେ ଡମପଡ଼ା ଗଡ଼ । ଏଠାରେ ରାଜାଙ୍କ କଚେରୀ ଓ ଉଆସ ଏବେ ମଧ ଅଛି । କଚେରୀରେ ଡମପଡ଼ା ରାଣୀଙ୍କ ନାମାନୁସାରେ ପ୍ରୀତମ କୁମାରୀ ବିଦ୍ୟାଳୟ ସ୍ଥାପିତ ହୋଇଛି । ଡମପଡ଼ା ରାଜବଂଶର ଶେଷରାଜା ବିବୁଧେନ୍ଦ୍ର ମାନସିଂହ ଭ୍ରମରବର ରାୟ ଅବିବାହିତ ଅବସ୍ଥାରେ ପ୍ରାଣ ହରାଇଥିଲେ । କୁହାଯାଏ ରାଜା ଅତ୍ୟନ୍ତ ସୁପୁରୁଷ ଥିଲେ । ପ୍ରତିଦିନ କାଳିକା ପ୍ରାସାଦ କୋଠୀରୁ ମହାନଦୀକୁ ଡେଇଁ ମାଇଲିଏ ପହଁରିବା ତାଙ୍କର ଅଭ୍ୟାସ ଥିଲା । ଦିନେ କାଳିକା ପ୍ରାସାଦ ଗଣ୍ଡରେ ଗୋଟିଏ କୁମ୍ଭୀର କେଉଁଆଡୁ ଆସି ପହଞ୍ଚିଥିଲା । ରାଜା ଜଳକୁ ଝାମ୍ପଦେବା ପରେ କୁମ୍ଭୀର ତାଙ୍କୁ ଆକ୍ରମଣ କରିଥିଲା । ଶେଷରେ ରାଜା ସେହି କୁମ୍ଭୀର ମୁହଁରେ ପ୍ରାଣ ହରାଇଥିଲେ । ତାଙ୍କ ମୃତ୍ୟୁପରେ ରାଜମାତା ଢେଙ୍କାନାଳ ରାଜା ଶଙ୍କର ପ୍ରତାପ ମହେନ୍ଦ୍ର ବାହାଦୂରଙ୍କ ସାନଭାଇ ଅମରେନ୍ଦ୍ରଙ୍କୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କରିଥିଲେ । ଅମରେନ୍ଦ୍ରଙ୍କ ନାମ ହେଲା ଅମରେନ୍ଦ୍ର ମାନସିଂହ ଭ୍ରମରବର ରାୟ । ତାଙ୍କରି ବେଳେ ଡମପଡ଼ା ଇଷ୍ଟେଟ ଆବୋଲିସନ ବା ଜମିଦାରୀ ଉଚ୍ଛେଦ ଆଇନ୍‌ରେ ସରକାରଙ୍କ ହାତକୁ ଗଲା ।

ଏଠି ବାଙ୍କୀ- ଡମପଡ଼ା- ସରଣ୍ଡା ରାଜବଂଶ ସଂପର୍କରେ ସମ୍ୟକ ସୂଚନା ଦେଉଛୁ । କପିଳେନ୍ଦ୍ର ଦେବଙ୍କ ଶାସନ କାଳରେ ବାଙ୍କୀ ରାଜ୍ୟ ବଳଭଦ୍ର ଧଳଙ୍କ ଦ୍ୱାରା ଶାସିତ ହେଉଥିଲା । ବଳଭଦ୍ର ପଶ୍ଚିମାଞ୍ଚଳର ଧଳଭୂମି ରାଜ୍ୟରୁ ଆସିଥିଲେ । ମା’ ଚର୍ଚ୍ଚିକାଙ୍କ ଆଜ୍ଞାରୁ ଗଜପତିଙ୍କ ନିକଟରୁ ବାଙ୍କୀ ରାଜ୍ୟର ସନନ୍ଦ ପାଇ ରାଜା ହେଲେ । ୧୬୫୫ ମସିହା ବେଳକୁ ବାଙ୍କୀ ରାଜା ଗମେଇଁ ଧଳଙ୍କ ମଧମପୁତ୍ର ନରସିଂହ ସାମନ୍ତରାୟ ଡମପଡ଼ା ରାଜ୍ୟର ରାଜା ହୋଇଥିଲେ । ନରସିଂହଙ୍କ ମଧମ ପୁତ୍ର ତ୍ରିଲୋଚନ ଗଜେନ୍ଦ୍ର ସରଣ୍ଡା ରାଜ୍ୟର ରାଜା ହୋଇଥିଲେ । ତାଙ୍କ ରାଜ୍ୟ ସରଣ୍ଡାରେ ଅଶୁଂପା ହ୍ରଦ ସମେତ ଅନେକ ବଡ଼ ବଡ଼ ଗ୍ରାମ ଥିଲା । ବାଙ୍କୀ-ଡମପଡ଼ା ଓ ସରଣ୍ଡା ତିନି ରାଜ୍ୟର ରାଜା ବାଙ୍କୀ ଧଳ ବଂଶର ସନ୍ତାନ ଥିଲେ ।

ଆମେ ନିଜ କଥା ବଖାଣୁ ବଖାଣୁ ବାଟ ହୁଡ଼ି ଢେଙ୍କାନାଳରୁ ଢେଙ୍କିଶାଳ ଚାଲିଗଲୁ । ତେବେ ଆମେ ମନେକରୁ ଯେଉଁ ସ୍ଥାନରୁ ଆମର ଉତ୍ପତ୍ତି, ଯେଉଁ ବଂଶର ରକ୍ତ ଆମ ଶୀରାରେ ପ୍ରବାହିତ ହେଉଛି ସେ ସମ୍ପର୍କରେ

ସାମାନ୍ୟ ସୂଚନା ଦେବା ଅପ୍ରାସଙ୍ଗିକ ହେବ ନାହିଁ । ଆମେ ଶନିବାର ରବିବାର ବାଙ୍କୀରେ ରହୁ । ଘରକୁ ଗଲେ ସ୍ୱାଭାବିକ ଭାବେ ସାଙ୍ଗ ସାଥି ଜୁଟନ୍ତି । ବଜାରରେ ଆଡ୍ଡା ହୁଏ । ବାଙ୍କୀରେ ବଡ଼ିଆ ବରା ହୁଏ । ବରା, ମୁଢ଼ି ମଗାଯାଏ । ଗପସପ ହୋଇ କେମିତି ସମୟ ଚାଲିଯାଏ ଜାଣିହୁଏ ନାହିଁ । ବାଙ୍କୀରେ ଥରେ ଆମ ହେଡ଼ମାଷ୍ଟର ଫକିର ବାବୁ ଦେଖା ହୋଇଗଲେ । ତାଙ୍କୁ ମୁଁ ଗୋଡ଼ିସାହୀ ମାଇନର ସ୍କୁଲରେ ରହିବା କଥା କହିନଥିଲି । ମୋ ସାଙ୍ଗରେ ଦେଖା ହେଲା ପରେ ସେ କହିଲେ ତୁ ରେଭେନ୍ସାରେ ଆଡ଼୍‌ମିଶନ ନନେଇ ଏ ପାଲା କ'ଣ କରୁଛୁ । ମୁଁ ତାଙ୍କୁ କେଉଁ ପରିସ୍ଥିତିରେ ଆଡ଼୍‌ମିସନ୍ ନେଲି ନାହିଁ ସେକଥା କହିବାରେ ସେ କହିଲେ ସେ ଟୋକା ତତେ ମିସ୍‌ଗାଇଡ଼ କରିଛି । ସପ୍ଲିମେଣ୍ଟାରୀ ପରୀକ୍ଷାରେ ପାଶ୍ କରିଥିବା ପିଲାଙ୍କ ପାଇଁ ସବୁ କଲେଜରେ କିଛି ସିଟ୍ ରଖା ଯାଇଥାଏ । ତେବେ ସେ ଯାହା ହେବାର ତ ହେଲାଣି । ତୁ ଯାଇ ଆସନ୍ତା ବର୍ଷ ଯେପରି ହେଲେ ଆଡ଼ମିସନ୍ ନେ । ତୋର ଯେତିକି ମାର୍କ ଅଛି ସେଥିରେ ତୁ ଇଚ୍ଛିଲି ରେଭେନ୍ସାରେ ପାଇଯିବୁ । ଏଇ ମାଷ୍ଟ୍ର ଚାକିରିରେ କାହିଁକି ପଶିଲୁ ମୁଁ ଜାଣି ପାରୁନାହିଁ । କାରଣ ଥରେ ଚାକିରି ମୋହରେ ପଡ଼ିଗଲେ ଆଉ ପଢ଼ିବାକୁ ଇଚ୍ଛା ହେବ ନାହିଁ । ତାଙ୍କୁ ମୁଁ ପ୍ରତିଶ୍ରୁତି ଦେଲି ପରବର୍ଷ ନିଶ୍ଚିତ ଭାବେ କଲେଜରେ ଆଡ଼୍‌ମିସନ୍ ନେବି ।

ଗୋଡ଼ିସାହୀରେ ଥିବାବେଳେ ଆଉ ସେଭଳି କିଛି ଉଲ୍ଲେଖଯୋଗ୍ୟ ଘଟଣା ଘଟିନାହିଁ । ତେବେ ଥରେ ଆମେ ବାଙ୍କୀ ଆସିବା ବେଳେ ବାଟରେ ଭୟଙ୍କର ବିପଦର ସମ୍ମୁଖୀନ ହୋଇଥିଲୁ । ଆଜି ସେକଥା ସ୍ମରଣ କରିବା ବେଳେ ମନରେ ଭିତି ସଞ୍ଚାର ହୁଏ । ସେଦିନ ଠିକ୍ କେତେ ତାରିଖ ମନେ ନଥିଲେ ମଧ୍ୟ ଶୁକ୍ରବାର ଥିଲା । ସ୍କୁଲର ପୁରସ୍କାର ବିତରଣ ଉତ୍ସବ ହେଉଥିଲା । ବାଙ୍କୀ ଏମ୍.ଏଲ୍.ଏ. ଡାକ୍ତର ଯୋଗେଶ ଚନ୍ଦ୍ର ରାଉତ ମୁଖ୍ୟ ଅତିଥି ରୂପେ ଯୋଗ ଦେଇଥିଲେ । ମୋତେ ଆମ ହେଡ଼୍‌ମାଷ୍ଟର ରାଧେଶ୍ୟାମ ପଟ୍ଟନାୟକ ପୁରସ୍କାର ବିତରଣୀ ଉତ୍ସବ ଦାୟିତ୍ୱ ଦେଇଥିଲେ । ସ୍କୁଲର ସେକ୍ରେଟାରୀ ଥିଲେ ମୁଣ୍ଡଲୀ ଗ୍ରାମର ପ୍ରଫୁଲ ରାୟ । ପିଲାଙ୍କୁ ଲଗାଇ ମଞ୍ଚ ତିଆରି ହେଲା । ବାଙ୍କୀରୁ ସିନ୍ ସିନେରି ସବୁ ଆସିଲା । ଆମ ସ୍କୁଲର ସୁନ୍ଦର ସୁନ୍ଦର ଝିଅମାନଙ୍କୁ ବାଛି ପ୍ରାରମ୍ଭିକ ସଂଗୀତ ଏବଂ ହେମହରିଣୀ ନୃତ୍ୟନାଟିକା ପ୍ରସ୍ତୁତ କରାଯାଇଥିଲା । ଜହ୍ନ ପକ୍ଷ । ସମ୍ଭବତଃ ପୂର୍ଣ୍ଣମି ହେବାକୁ ଆଉ ଦୁଇ/ ତିନିଦିନ ବାକି ଥିଲା । ପୁରସ୍କାର ବିତରଣୀ ଉତ୍ସବରେ ଯୋଗେଶ ବାବୁ ମୋତେ ଭାରି ପ୍ରଶଂସା କଲେ ଏବଂ ମୁଁ ବାଙ୍କୀର ଭବିଷ୍ୟତ ବୋଲି ମଧ୍ୟ କହିବାକୁ ପଛେଇ ନଥିଲେ । ଏପରିକି ମୋର ମହତାବଙ୍କ ସହ ବ୍ୟକ୍ତିଗତ ପରିଚୟ ସଂପର୍କରେ କହିବାକୁ ମଧ୍ୟ ଭୁଲି ନଥିଲେ । ମୋ ସମ୍ପର୍କରେ ଏତେ କଥା ଶୁଣିବା ପରେ ପ୍ରଫୁଲ ରାୟ ହେଡ଼୍‌ମାଷ୍ଟରଙ୍କୁ ପଚାରିଲେ ଇଏ ଏଠି କେବେଠୁ ରହିଲେଣି ? ସେ ରହିବେ ନା ପଳେଇବେ ? କେମିତି ପାଠ ପଢ଼ାଉଛନ୍ତି ? ହେଡ଼ମାଷ୍ଟର କହିଲେ ସିଏ ହାଇଅର ସେକେଣ୍ଡ ଡିଭିଜନରେ ମାଟ୍ରିକ୍ ପାଶ୍ କରିଛନ୍ତି । ବୋଧେ ଆସନ୍ତା ବର୍ଷ ଆଇ.ଏ.ରେ ଆଡ଼୍‌ମିଶନ୍ ନେବେ । ପ୍ରଫୁଲ ବାବୁ କହିଲେ ତାଙ୍କୁ କହ ମୁଖ୍ୟମନ୍ତ୍ରୀଙ୍କୁ ଆମ ସ୍କୁଲକୁ ଆଣିବା ପାଇଁ ଚେଷ୍ଟା କରିବେ ।

ଛୁଟି ପରେ ଆମ ହେଡ଼୍‌ମାଷ୍ଟର ମୋତେ ଏକଥା କହିଥିଲେ । ମୁଁ କହିଲି ଯୋଗେଶ ବାବୁ ଟିକେ ମୋ ସଂପର୍କରେ ବଢ଼େଇ କରି କହିଦେଲେ । ମୀନା ବଜାର ଜରିଆରେ ଡଃ ମହତାବ ମୋତେ ଜାଣିଛନ୍ତି । ମାତ୍ର ସେ ପରିଚୟ ଏତେ ଘନିଷ୍ଠ ନୁହେଁ, ଯେଉଁଥିରେ ତାଙ୍କୁ ମୁଁ ଗୋଡ଼ିସାହୀ ନେଇଆସି ପାରିବି । ତେବେ ଜହୁରୀ ଭାଇଙ୍କୁ କହି ଚେଷ୍ଟା କରିବି । ସ୍କୁଲମାନଙ୍କରେ ସେତେବେଳେ ବ୍ୟବସ୍ଥା ଥାଏ ଯେ ବାର୍ଷିକ ପୁରସ୍କାର ବିତରଣ ଉତ୍ସବ ପରଦିନ ସ୍କୁଲ ଛୁଟି ହୁଏ । ତେଣୁ ସେହିଦିନ ସନ୍ଧ୍ୟା ସାଢ଼େ ସାତଟା ବେଳେ ମୁଁ ଓ ଶ୍ରୀନିଭାଇନା ବାଙ୍କୀ ବାହାରିଲୁ । ହେଡ଼ମାଷ୍ଟର ମନା କଲେ । କହିଲେ ରାତିରେ କାହିଁକି ଯିବେ ? କାଉଚି ଜଙ୍ଗଲରୁ ବାଘ ଆଉ ହାତୀ ରାତିରେ ବାହାରି ମହାନଦୀକୁ ପାଣି

ପିଇବାକୁ ଆସିବେ । ତେଣୁ କାଲି ସକାଳୁ ସକାଳୁ ଯାଅ । ମାତ୍ର ଆମେ କହିଲୁ ରାତି ସାଢ଼େ ୮ଟା ସୁଦ୍ଧା ଆମେ କାଉଚି ଜଙ୍ଗଲ ପାର ହୋଇଯିବୁ । ସେତେବେଳକୁ କିଛି ବିପଦ ନଥିବ । ତା'ଛଡ଼ା ଜହ୍ନରାତି, ଅସୁବିଧା ହେବ ନାହିଁ । ଦୁହେଁ ପ୍ରଧାନ ଶିକ୍ଷକଙ୍କ ଠାରୁ ଅନୁମତି ନେଇ ବାଙ୍କୀ ବାହାରି ଆସିଲୁ ।

କଥାରେ ଅଛି ବଡ଼ମାନଙ୍କ କଥା ମାନିବା ଉଚିତ୍ । ଆମକୁ ସନ୍ଧ୍ୟା ସାଢ଼େ ସାତଟାରେ ବାଙ୍କୀ ଯିବା ପାଇଁ ହେଡ୍‌ମାଷ୍ଟର ବାରଣ କରିଥିଲେ । ମାତ୍ର ତାଙ୍କ ବାରଣ ନମାନି ଆମେ ବାହାରି ପଡ଼ିଲୁ । ସ୍କୁଲରୁ ବାହାରି ଶହେ ମିଟର ଯାଇଛୁ କି ନାହିଁ ଶ୍ରୀନି ଭାଇନାଙ୍କ ସାଇକେଲ୍ ପଙ୍କଚର୍ ହୋଇଗଲା । ଆଗ ଚକ । ବାଧହୋଇ ଗୋଡ଼ିସାହୀ ବଜାରକୁ ଚାଲି ଚାଲି ଫେରିଲୁ । ଗୋଡ଼ିସାହୀ ବଜାରରେ ସାଇକେଲ ମରାମତି ଦୋକାନ ଗୋଟିଏ ଥାଏ । ଆମେ ତା' ଦୋକାନରେ ପହଞ୍ଚିଲା ବେଳକୁ ସେ ଦୋକାନ ବନ୍ଦ କରିବାକୁ ଯାଉଛି । ଆମମାନଙ୍କୁ ଦେଖି କହିଲା କ'ଣ ପମ୍ପ ଦେବେ ? ଶ୍ରୀନି ଭାଇନା କହିଲେ ଆଗଚକ ପଙ୍କଚର ହୋଇଛି । ପ୍ୟାଚ୍ ପକା । ଯାହା ହେଉ ସେ ପୁଣି ଡିବି ଜାଳି ପ୍ୟାଚ୍ ପକାଇ ପମ୍ପ ଦେଲା । ମୋ ସାଇକେଲ ପମ୍ପ ମଧ ଚେକ୍ କରି ନେଲି । ସେତେବେଳକୁ ଆଠଟା ପନ୍ଦର ମିନିଟ୍ ହୋଇ ଗଲାଣି । ମୁଁ ଶ୍ରୀନିଭାଇନାଙ୍କୁ କହିଲି କ'ଣ ଏଇନେ ଯିବା ନା କାଲି ସକାଳୁ ସକାଳୁ ଯିବା ? ସେ ମୋ ମୁହଁକୁ ଚାହିଁଲେ, କହିଲେ, ବୁଢ଼ା(ହେଡ୍‌ମାଷ୍ଟର) କଥାରେ ଡରି ଗଲୁଣି କି ? ଦେଖୁନୁ କେତେ ତୋଫା ଜହ୍ନ ପଡ଼ିଛି । ଚାରିଆଡ଼େ ଦିନଭଳି ଆଲୁଅ । ସାଇକେଲ୍‌ରେ ଗଲେ ଶୀତ ଜଣା ପଡ଼ିବ ନାହିଁ । କାହିଁକି କୁନ୍ଥୁ କୁନ୍ଥୁ ହେଉଛୁ । ତା' ବାହାରିଲେଣି ତ ଆଉ ରହିବା କାହିଁକି ? ରାତି ସାଢ଼େ ଦଶଟା- ଏଗାରଟା ବେଳକୁ ଘରେ ପହଞ୍ଚିଯିବା । ମୋର ଏଇମିତି ଭୟ କିଛି ନଥିଲା । ତା'ଛଡ଼ା ସାଇକେଲ୍‌ରେ ଯିବା ଏକ ପ୍ରକାର ଅଭ୍ୟାସରେ ପରିଣତ ହୋଇଗଲାଣି । ଘଣ୍ଟାରେ ଚଉଦ ପନ୍ଦର କିଲୋମିଟର ସାଇକେଲ୍‌ରେ ଯିବା ପ୍ରାୟ ମୋର ଗତରେ ପଡ଼ି ଯାଇଥାଏ । ଶ୍ରୀନି ଭାଇନା ଟିକେ ମାନ୍ଦା । ତେବେ ଦରକାର ପଡ଼ିଲେ ବେଶ୍ ଜୋର୍‌ରେ ଚଳାନ୍ତି । କଥାବାର୍ତ୍ତା ହୋଇ ହୋଇ ଚାଲିଲୁ । ମୀନା ବଜାରରେ ମୋର ନିୟମିତ ଗପ- କବିତା ବାହାରୁ ଥାଏ । ଗୋଡ଼ି ସାହୀରେ ରହିବା ଭିତରେ ମୁଁ 'ପରିବର୍ତ୍ତନ' ବୋଲି ଗୋଟିଏ ଗପ ଲେଖି ରବିବାର ପ୍ରଜାତନ୍ତ୍ର ପାଇଁ ଦେଇଥିଲି । ସେତେବେଳେ ରବିବାର ପ୍ରଜାତନ୍ତ୍ର ଦାୟିତ୍ୱରେ ଥା'ନ୍ତି ଗୋପାଳ ମିଶ୍ର । ଆଜି ଏତେବର୍ଷ ପରେ ମଧ ଗୋପାଳ ବାବୁ ସାମ୍ବାଦିକ ରୂପେ ସୁଖ୍ୟାତିର କାର୍ଯ୍ୟ କରୁଛନ୍ତି । ଗତବର୍ଷ ତାଙ୍କ ସାମ୍ବାଦିକ ଜୀବନର ପଚାଶ ବର୍ଷ ପୂର୍ତ୍ତିଉତ୍ସବ ଭୁବନେଶ୍ୱରରେ ଅନୁଷ୍ଠିତ ହୋଇଥିଲା । ଯାହା ହେଉ କଟକ ଯାଇ ପ୍ରଜାତନ୍ତ୍ର ଅଫିସରେ ଗୋପାଳ ବାବୁଙ୍କୁ ଗପଟି ଛାପିବା ପାଇଁ ଅନୁରୋଧ କରି ଫେରିଲି । ମାତ୍ର ମନରେ ଆଦୌ ଆଶା ନଥିଲା ଗପଟି ପ୍ରକାଶ ପାଇବ । ଗଳ୍ପ ତଳେ ମୋର ଠିକଣା ମଧ ଇଂରାଜୀ ବିଦ୍ୟାଳୟ, ଗୋଡ଼ିସାହୀ, କଟକ ଦେଇଥାଏ । ମାସକ ତଳୁ ଗପଟି ଦେଇଥିଲେ ମଧ ତାହା ପ୍ରକାଶ ପାଇନଥାଏ । ସେ ଗଳ୍ପ ଆଉ ପ୍ରକାଶ ପାଇବ ନାହିଁ ବୋଲି ମୁଁ ଏକ ପ୍ରକାର ଧରି ନେଇଥାଏ ।

ଗପ କଥା ଭାବୁ ଭାବୁ ଟିକେ ଅନ୍ୟମନସ୍କ ହୋଇ ଯାଇଥିଲି । ହଠାତ୍ ଶ୍ରୀନି ଭାଇନାଙ୍କ ଡାକରେ ଆଗକୁ ଚାହିଁଲି । ଶ୍ରୀନି ଭାଇନା ଟିକେ ଆଗେଇ ଯାଇଥା'ନ୍ତି । ମୁଁ ସାଇକେଲରେ ସ୍ପିଡ୍ ଦେଲି । ଶ୍ରୀନିଭାଇନା କହିଲେ ଯୁଦ୍ଧ ବେଳେ ଏମିତି ମାନ୍ଦା କାହିଁକି ହୋଇ ପଡୁଛ ? ବେଗାବେଗି ପେଡ଼ାଲ ମାର୍ । ଆମେ ପାଖେଇ ଆସିଲେଣି ଗଳୟ ବାଙ୍କ ଯାଏ । ମୁଁ ଘଣ୍ଟାକୁ ଦେଖିଲି । ନ'ଟା ବାଜିଲା । ଆଉ ଗୋଟେ ଫର୍ଲଙ୍ଗ ପରେ ଦେବୀ ଦ୍ୱାର । ଏଠି ମହାନଦୀ କୂଳରେ ରାସ୍ତାକଡ଼ରେ ମା' ମଙ୍ଗଳାଙ୍କ ମନ୍ଦିର । ମନ୍ଦିର ପଛପଟେ ପାହାଡ଼ । ମନ୍ଦିର ସାମନାରେ ରାସ୍ତା ଟିକେ ଅଣ ଓସାରିଆ । ମହାନଦୀ ପାଣି ଶୀତ ଦିନେ ରାସ୍ତା ପାଖରୁ ପଚାଶ ଫୁଟ ଦୂରରେ ଥାଏ । କୂଳରେ ବିରାଟ ବିରାଟ ଚଉଡ଼ା

ପଥରର ଚଟାଣ । ଖରାଦିନେ ଏଠି ମଧ୍ୟ ପାଣିଥାଏ । ରାତିରେ ମନ୍ଦିର ପଛ ପାହାଡ଼ ଉପରେ ଘଞ୍ଚ କାଉଚି ଜଙ୍ଗଲ । ଚନ୍ଦକା ଜଙ୍ଗଲ ପର୍ଯ୍ୟନ୍ତ ଏହା ବ୍ୟାପିଥାଏ । ଶୀତ ଦିନେ ଆଉ ଖରାଦିନେ ରାତିରେ ଏ ଜଙ୍ଗଲରୁ ହାତୀ ପଲ ଛୁଆମାନଙ୍କୁ ଧରି ଆଉ ମହାବଳ ବାଘ ତା ଛୁଆମାନଙ୍କୁ ଧରି ପାହାଡ଼ରୁ ତଳକୁ ଆସି ନଈରେ ପାଣି ପିଅନ୍ତି । ପାଣି ପିଇ କିଛି ସମୟ ମସ୍ତିକରି ପୁଣି ପାହାଡ଼କୁ ଉଠନ୍ତି । ହଠାତ୍ ମୋ ମନରେ ଛନ୍‌କା ପଶିଲା । ମୁଁ ଶ୍ରୀନି ଭାଇନାଙ୍କୁ ପଚାରିଲି, ଭାଇନା ସାବଧାନ । ହାତୀ- ବାଘ ଗତ୍ରୁ ନାହାନ୍ତି ତ ? ନ'ଟା ବାଜି ଗଲାଣି । ଶ୍ରୀନି ଭାଇନା କହିଲେ ରାତି ଏଗାରଟା ବାରଟା ପୂର୍ବରୁ ଜନ୍ତୁ ଜାନ୍ତା ପାଣି ପିଇବାକୁ ଆସିବେ ନାହିଁ । ଜଲ୍‌ଦି ଜଲ୍‌ଦି ଚାଲ୍ । କିନ୍ତୁ ଦେବୀ ଦ୍ୱାର ପାଖ ହେଲାବେଳକୁ ପ୍ରବଳ ଗନ୍ଧ ନାକରେ ବାଜିଲା । ଶ୍ରୀନି ଭାଇନା କହିଲେ ବରି ଆଗରେ ବିପଦ । ଏଇଠି ଟିକେ ଅଟକି ଯା' । ଆଉ କୋଡ଼ିଏ ହାତ ଦୂରରେ ମନ୍ଦିର । ଦେଖିଲୁ ଭିତରେ ଦୀପ ଜଳୁଛି । ମୋର ମନେ ହେଲା ମନ୍ଦିର ପୂଜାରୀ ସମ୍ଭବତଃ ଭିତରେ ଅଛନ୍ତି । ସାଇକେଲ୍ ଦି'ଟାକୁ ଗୋଟାଏ ଗଛରେ ଡେରି ଦେଇ ଆସ୍ତେ ଆସ୍ତେ ମନ୍ଦିର ପାଖକୁ ଗଲୁ । ଆମେ ଧୀରେ ଧୀରେ ଡାକିଲୁ ନନା- ଟିକେ କବାଟ ଖୋଲ । ସେ ଭିତରୁ ପଚାରିଲେ କିଏ ତମେ ? ଆମେ କହିଲୁ ଗୋଡ଼ି ସାହୀ ସ୍କୁଲର ମାଷ୍ଟର । ସେ କବାଟ ଖୋଲିଲେ । ଚପଲ ବାହାରେ ଥୋଇ ଆମେ ଭିତରକୁ ଯିବା ମାତ୍ରେ ନନା ଦ୍ୱାର ବନ୍ଦ କରି ଦେଲେ । କହିଲେ, ବାଘ, ବାଘୁଣୀ ଆଉ ତାଙ୍କର ଦି'ଟା ପିଲା ନଈରେ ପାଣି ପିଉଛନ୍ତି । ତୁମେ ସବୁ ଏତେ ରାତିରେ କୁଆଡ଼େ ଯାଉଥିଲ ? ଶ୍ରୀନି ଭାଇନା ସବୁ କହିଲେ । ସାମନାରେ ମା'ଙ୍କ ଅଭୟ ରୂପ । ଦୁହେଁ ମୁଣ୍ଡିଆ ମାରିଲୁ । ମନ୍ଦିର କବାଟ ଫାଙ୍କ ଦେଇ ନଈକୁ ଚାହିଁଲି । ଦେଖିଲି ପଥର ଉପରେ ବାଘ-ବାଘୁଣୀ ବସିଛନ୍ତି । ଟୋପା ଜହ୍ନ ଆଲୁଅରେ ସବୁ ଦିନ ଭଳି ଦେଖା ଯାଉଥାଏ । ନନାଙ୍କ ଘର ମନ୍ଦିରଠାରୁ ଗୋଟେ ମାଇଲି । ସେ ସନ୍ଧ୍ୟା ସାତଟା- ସାଢ଼େ ସାତଟାରୁ ପଳାନ୍ତି । ମାତ୍ର ସେଦିନ ପାଖ ଗାଁର କାହାର ପୂଜା ସରୁ ସରୁ ଡେରି ହୋଇଗଲା । ସବୁ କାମ ସାରି କବାଟ ଦେବା ବେଳକୁ ବାଘ ଗନ୍ଧ ଆସିଲା । ଅଦ୍‌ରଛରେ ଭିତରେ ପଶି କବାଟ ଦେଇ ବସିଛନ୍ତି । ଆଜି ଆଉ ଘରକୁ ଯାଇ ହେବ ନାହିଁ । ମନ୍ଦିର ଭିତରେ ରହିବାକୁ ପଡ଼ିବ । ମୁଁ କିନ୍ତୁ ବାଘ-ବାଘୁଣୀଙ୍କ ଖେଳ ଦେଖୁଥାଏ । ବାଘ-ବାଘୁଣୀ ସେମାନଙ୍କ ପିଲା ଯେତେବେଳେ ଉଠିଲେ ବାଘ ଗୋଟେ ରଡ଼ି ଦେଲା । ଆଖ-ପାଖ କମ୍ପିଗଲା । ଧୀରେ ଧୀରେ ବାଘ ପରିବାର ପାହାଡ଼ ଆଡ଼କୁ ଗଲେ । ମୁଁ ଘଣ୍ଟାକୁ ଚାହିଁଲି । ଦଶଟା ପଇଚାଳିଶ ମିନିଟ୍ । ବାଙ୍କୀ ଯିବା କଥା ମନରୁ ପୋଛି ଦେଲୁ । ସେଇଠି ତିନିଜଣ ଯାକ ବସି ଗପ ସପ ହେଉ ହେଉ କାନ୍ଥକୁ ଲାଗି ଶୋଇ ପଡ଼ିଛୁ । ନିଦ ଭାଙ୍ଗିଲା ବେଳକୁ ପାହାନ୍ତିଆ ପାଞ୍ଚଟା । ଧଡ଼୍ ଧାଡ଼୍ ହୋଇ ଉଠି ବସିଲୁ । ନନା ମନ୍ଦିର ଦ୍ୱାର ଖୋଲିଲେ ନାହିଁ । କହିଲେ ଆଉ ଦଶ/ପନ୍ଦର ମିନିଟ୍ ଯାଉ । ଟିକେ ଫର୍ଚ୍ଚା ହୋଇଯାଉ ବାହାରିବା । ପୁଣି କିଛି ସମୟ ବସିଲୁ । ମା'ଙ୍କୁ ଚାହିଁଲୁ । ମୁଣ୍ଡିଆ ମାରିଲୁ । କେବଳ ମା'ଙ୍କ ଦୟାରେ ବଞ୍ଚିଗଲୁ । ଦିହମୁଣ୍ଡ ବେଶ୍ ହାଲ୍‌କା ଲାଗୁଥିଲା । ମା'ଙ୍କ ଆଶୀର୍ବାଦ । ସାଢ଼େ ପାଞ୍ଚଟାରେ ମନ୍ଦିର ଦ୍ୱାର ଖୋଲିଲା । ତଳକୁ ଯାଇ ନଈ ପାଣିରେ ମୁହଁ ଧୋଇ ସାଇକେଲ୍ ପାଖକୁ ଆସିଲୁ । ରାତିରେ ଏଇ ଯାନ ଦୁଇଟି ପ୍ରକୃତି ଶୋଭା ଉପଭୋଗ କରି ମଧ୍ୟ ଶୋଇ ଯାଇଥିଲେ । ସିଟ୍‌ରୁ କାକର ପୋଛି ମା'ଙ୍କ ଉଦ୍ଦେଶ୍ୟରେ ପ୍ରଣାମ କରି ବାଙ୍କୀ ଚାଲିଲୁ । ବାଟରେ ଜଣେ ଜଣେ ଲୋକ ନଈ ଆଡ଼କୁ ଯାଉଥା'ନ୍ତି । ଝାଡ଼ାଝପଟ କରି ଗାଧୋଇ ଘରକୁ ଫେରିବେ । ଇଏ ନିତ୍ୟନୈମିତିକ କାର୍ଯ୍ୟ । ନଈକୂଳ ହେଉଛି ଗାଁ ଲୋକଙ୍କ ପାଇଖାନା । ଆମେ ଧୀରେ ଧୀରେ ସାଇକେଲ୍ ଚଳାଇ ଘରେ ପହଞ୍ଚିଲା ବେଳକୁ ସକାଳ ସାତଟା । ଏତେ ସକାଳୁ ମୋତେ ଦେଖି ବୋଉ କହିଲା କେତେବେଳୁ ବାହାରିଲୁଣି । ରାତି ନପାହୁଣୁ ବୋଧେ ବାହାରିଛୁ । ଦାନ୍ତ ଘଷିଦେ । କ'ଣ ଦି'ଟା ଖାଇଦେ । ମୁଁ କୂଅମୂଳେ ଦାନ୍ତଘଷି ଆସିଲି । ପୂର୍ବଦିନ ମାଣବସା ଗୁରୁବାର ପାଇଁ ଘରେ ଆରିଷା, କାକରା ହୋଇଥିଲା । ବୋଉ ମୁଢ଼ି- ଆରିଷା ପିଠା ଦେଲା । ଦଦେଇ ପାହାନ୍ତିଆରୁ ବିଲଆଡ଼େ ଚାଲି ଯାଇଥିଲେ । ଆମର ପାଞ୍ଚ ଛ' ଏକର ଜମି ବାଙ୍କୀ ଟାଉନ୍ ତଳେ ଥାଏ । ସେଇଠି ଜମି ହୁଡ଼ାରେ ଦଦେଇ ଫୁଲଗଛ ଲଗାଇ ଥା'ନ୍ତି । ସକାଳୁ ସିଆଡ଼େ ଯାଇ ଫୁଲ

ତୋଳି ସାତଟା- ସାଢ଼େ ସାତଟା ବେଳକୁ ଫେରନ୍ତି । ଚର୍ଚ୍ଚିକା ଗାଁର ବ୍ରାହ୍ମଣ ସାହୀରେ ଆମ ଘର । ଆମେ ଜାତିରେ କ୍ଷତ୍ରୀୟ । ଗାଁରେ ଆମକୁ ସାଆନ୍ତ ସାଆନ୍ତ ବୋଲି ଡାକନ୍ତି । ସାମନ୍ତର ଅପଭ୍ରଂଶ । ସକାଳୁ ଦଦେଇ ଗାମୁଛାରେ ଗାମୁଛାଏ ଫୁଲ ଧରି ଆସନ୍ତି । ସକାଳୁ ଘର ବାରଣ୍ଡାରେ ବସି ଖରା ପୁଆଁଉଥିବା ବୁଢ଼ା ବ୍ରାହ୍ମଣମାନେ ଦଦେଇଙ୍କୁ ସମ୍ଭବତଃ ଚାହିଁ ବସିଥାନ୍ତି । ସମସ୍ତଙ୍କୁ ଆଞ୍ଜୁଳାଏ ଆଞ୍ଜୁଳାଏ ଫୁଲ ଦେଇ ଦଦେଇ ଘରକୁ ଫେରି ଆମ ଘରେ ଏକ ବଡ଼ ଫୁଲ ଚାଙ୍ଗୁଡ଼ାରେ ଫୁଲ ରଖି ଅଗଣାରେ ଖରାରେ ବସି ମୁଣ୍ଡରେ ଦିହରେ ରାଶିତେଲ ଲଗାନ୍ତି । ତା'ପରେ ଗୋଟେ ପିତଳ ଗରା ଧରି ନଈକୁ ଯା'ନ୍ତି ଗାଧୋଇବା ପାଇଁ । ଆମ ଘର ବାଙ୍କୀ କଚେରୀ ପାଖରେ । କଚେରୀ ତୋଠରେ ଆମେ ସମସ୍ତେ ଗାଧୋଉ । ପିଲାବେଳେ ଆମ ତୋଠରେ ବିରାଟ ପଥର ବ୍ୟାରେଜ ତିଆରି ହେଲା । ନଈ ବଢ଼ିରୁ ବାଙ୍କୀ ସହରକୁ ରକ୍ଷା କରିବା ପାଇଁ ଏ ବ୍ୟବସ୍ଥା ବୋଲି କୁହାଗଲା । ବ୍ୟାରେଜ ହେବା ଫଳରେ ତୁଠରେ ପାଣିର ସ୍ରୋତ କମିଗଲା । କିନ୍ତୁ ବ୍ୟାରେଜ ପାଖରେ ପ୍ରବଳ ସ୍ରୋତ । ତେଣୁ ଆମେ ଯେଉଁମାନେ ପହଁରା ଜାଣିଥାଉ ସେମାନେ ଯାଇଁ ବ୍ୟାରେଜ୍ ପାଖରେ ଗାଧୋଉ । ନଈ କୂଳରୁ ପ୍ରାୟ ଶହେଫୁଟ ପର୍ଯ୍ୟନ୍ତ ପାଣି ଭିତରେ ବଡ଼ ବଡ଼ ପଥର ପକାଇ ବ୍ୟାରେଜ ତିଆରି ହୋଇଥାଏ । ସେଦିନ ମୁଁ ଗାଧୁଆ- ପାଧୁଆ ସାରି ଖାଇଦେଇ ବଜାରରେ ଆମ ଖଟିକୁ ଗଲି । ସେଠି ରାତିର ସେ ଅଭିଜ୍ଞତା କଥା କହିଲି । ଜୀବନରେ ଇଏ ଏକ ଏଭଳି ଅଭିଜ୍ଞତା ଯାହା କେବେ ମନରୁ ଲିଭିବ ନାହିଁ ।

ସୋମବାର ସକାଳୁ ସକାଳୁ ଗୋଡ଼ିସାହୀ ବାହାରି ପଡ଼ିଲୁ । ସ୍କୁଲ ଖୋଲିବା ପୂର୍ବରୁ ପହଞ୍ଚିଗଲୁ । ହେଡ୍‌ମାଷ୍ଟରଙ୍କୁ ଖେଳ ଛୁଟି ବେଳେ ସବୁ କହିଲୁ । ସେ କହିଲେ ସବୁ କଥା ବୁଝି ବିଚାରି କରିବା ଆବଶ୍ୟକ । ଅନାବଶ୍ୟକ ଭାବେ କୌଣସି ରିସ୍କ ନେବା ଉଚିତ୍ ନୁହେଁ । ଗୋଡ଼ିସାହୀରେ ହସ ଖୁସିରେ ଦିନ କଟିଗଲା । ଫେବୃଆରୀ ମାସରେ ଶ୍ରୀନିଭାଇନା ସ୍କୁଲ ଛାଡ଼ି ଫାର୍ମାସିଷ୍ଟ ଟ୍ରେନିଂ ନେବାକୁ କଟକ ଚାଲିଗଲେ । ତାଙ୍କ ସ୍ଥାନରେ ହେଡ୍‌ମାଷ୍ଟର ତାଙ୍କ ଗାଁ ପାଖରୁ ଜଣେ ପିଲାକୁ ଆଣି ନିଯୁକ୍ତି ଦେଲେ । ଶ୍ରୀନିଭାଇନା ଚାଲିଗଲା ପରେ ମୋର ଘରକୁ ପ୍ରତି ଶନିବାର ଯିବା ପାଇଁ ଇଚ୍ଛା ହେଲା ନାହିଁ । ତେବେ ଗୋଡ଼ିସାହୀରେ ଦୁଇଦିନ ବୋରିଂ ହେବା ଅପେକ୍ଷା ବାଧ ହୋଇ ବାଙ୍କୀ ଯାଏ । ଶନିବାର ସକାଳୁଆ ସ୍କୁଲ । ବାରଟା ବେଳକୁ ଛୁଟି ହୋଇଯାଏ । ଗୋଟାଏ ବେଳେ ହଷ୍ଟେଲରେ ଖାଇଦେଇ ବାଙ୍କୀ ବାହାରିଯାଏ ।

## - କଟକ ଜୀବନ - ଗାଁ ଘର ପୋଡି -

ଜୁନ୍‌ମାସରେ ମୁଁ ସ୍କୁଲରୁ ଇସ୍ତଫା ଦେଇ କଟକ ଆସିଲି । ପ୍ରଥମ ଶ୍ରୀନିଭାଇନା ଏବଂ ତାଙ୍କର ଆଉ ଦୁଇଜଣ ବନ୍ଧୁ ରହୁଥିବା ଘରେ ଡେରା ପକାଇଲି । ମୋର ବେଡ଼ିଂ ଓ ସତରଞ୍ଜି ନେଇ ଆସିଥାଏ । ମହ୍ଲାସାହୀରେ ଶ୍ରୀନିଭାଇନା ଓ ତାଙ୍କ ଦୁଇ ସାଙ୍ଗ ଗୋଟିଏ ଦି'ବଖୁରିଆ ଘର ନେଇଥାନ୍ତି । ସାମନା ବାରଣ୍ଡାରେ ଗୋଟିଏ କଡ଼ରେ ରୋଷେଇ କରିବା ପାଇଁ ଛୋଟ ଚାଳିଆ ଥାଏ । ମୋଟ ଭଡ଼ା ଦଶଟଙ୍କା ମାସକୁ । ମୁଁ ସେଇଠି ରହିଲି । ସକାଳ ନିତ୍ୟକର୍ମ ମହାନଦୀ କୂଳରେ । ଆମ ବାଙ୍କୀ ଭଳିଆ ପରିବେଶ । ମହ୍ଲାସାହୀ କଟକ ମେଡିକାଲ ପାଖରେ । ତିନି/ଚାରୋଟି 'ସ'ମିଲ୍ ବା କରତ କଳ ଥାଏ । ବିରାଟ ବିରାଟ କାଠ ସବୁ ଜମା ହୋଇ ରହିଥାଏ । ସେଠି ରହି ମୁଁ ରେଭେନ୍ସାରେ ଆର୍ଟସରେ ଆଡ଼ମିସନ୍ ନେଲି । ଆଇ.ଏ. ଫାଷ୍ଟ ଇଅରରେ । ମହ୍ଲା ସାହୀରୁ ରେଭେନ୍ସା ପାଖ । ମାତ୍ର ମୁଁ ରେଭେନ୍ସାରେ ପାଠ ପଢ଼ି ପାରିଲିନି । କାରଣ ଠିକ୍ ସେତିକି ବେଳେ ବାଙ୍କୀରେ ଆମ ଘର ପୁରା ପୋଡ଼ିଗଲା । କଥାରେ କୁହନ୍ତି ଘରପୋଡ଼ି ଠାରୁ ବିପତ୍ତି ନାହିଁ- ଘୋଡ଼ାଚଢ଼ା ଠାରୁ ସମ୍ପତ୍ତି ନାହିଁ । ମୁଁ ଖବର ପାଇଲି ବାଙ୍କୀ ବସ୍ କଣ୍ଡକ୍ଟରଙ୍କ ଠାରୁ । ସେତେବେଳେ ମୋର ଆଉ ଶ୍ରୀନିଭାଇନାଙ୍କର ଘର ସାଙ୍ଗରେ ଯୋଗାଯୋଗ ଏଇ ବାଙ୍କୀ ବସ୍ । ବାଙ୍କୀରୁ

ଓ.ଆର୍.ଟି.(ଓଡ଼ିଶା ରୋଡ୍ ଟ୍ରାନ୍ସପୋର୍ଟ) କମ୍ପାନିର ନେଳି ବସ୍ ସକାଳ-ଉପର ଓଳି ଯିବା ଆସିବା କରୁଥାଏ । କଟକ ଚାନ୍ଦିନୀ ଚୌକ ଥିଲା ବସ୍‌ଷ୍ଟାଣ୍ଡ । ସେତେବେଳେ ଲିଙ୍କ୍ ରୋଡ୍ ବାଦାମବାଡ଼ି ରାସ୍ତା ନଥାଏ । ସେଠି ପଡ଼ିଆ ଥାଏ । ବସ୍ ଚାନ୍ଦିନୀ ଚୌକରୁ କଲେଜ ଛକ ଷ୍ଟେସନ ଦେଇ ଯିବା ଆସିବା କରୁଥାଏ । ବସ୍ କଣ୍ଡକ୍ଟର ଆମ ଗାଁର । ମୁଁ ଆଉ ଶ୍ରୀନିଭାଇନା ରହୁଥିବା ଘର ମଲ୍ଲାସାହୀରେ ଆସି ସେ ଥରେ ଦେଖି ଯାଇଥିଲେ । ସେଦିନ ଆମେ ନଥିବା ବେଳେ ସେ ଖଣ୍ଡେ ଚିଠି ଲେଖି ଆମ ରୁମ୍‌ରେ ଗଳାଇ ଦେଇ ଯାଇଥିଲେ । କଲେଜରୁ ଫେରି ଚିଠି ପଢ଼ି ମୁଁ ରିତିମତ୍ କାନ୍ଦି ପକାଇଲି । ଆମ ଦଶ/ ବାର ବଖରା ଆଟୁ ଘର ଥିଲା । ଉପରେ ଚାଳ ଛିଆଣି । ଘରେ ଖାଲି ବୋଉ ଓ ମୋ ସାନ ଭଉଣୀ ଥିଲେ । ଦଦେଇ ଯାଇଥିଲେ ଡମପଡ଼ା । ମୋ ସାନ ଭାଇ ଧୀର(ଧୀରେନ୍ଦ୍ର ନାଥ ଶ୍ରୀଚନ୍ଦନ) ସ୍କୁଲକୁ ଯାଇଥିଲା । ସେଦିନ ପ୍ରବଳ ଖରା । ଆମ ଘର ପାଖରୁ ଚାରିଘର ଛାଡ଼ି ଆଠଗଡ଼ିଆ ବ୍ରାହ୍ମଣ ଘର । ତାଙ୍କ ଘରେ ଆଖୁ ପତୁରି ଜାଳି ଧାନ ଉଷୋଉଁ ଥିଲେ । ବାରିପଟେ । ବଡ଼ ଚୁଲିରେ ହଣ୍ଡା ବସିଥିଲା । ଧାନ ଭର୍ତ୍ତିହୋଇଥିଲା । ନିଆଁ ହୁତୁ ହୁତୁ ହୋଇ ଜଳୁଥିଲା । ପରିବାରର ବୋହୂ ଯୁବତୀ । ନିଆଁ ଧରେଇ ଦେଇ ଘରେ ବସୁ ବସୁ ଘୁମେଇ ପଡ଼ିଛି । ପବନରେ କେତେବେଳେ ନିଆଁ ଚାଳକୁ ଧରିଲାଣି ସେଥିପ୍ରତି କାହାରି ନିଘା ନାହିଁ । ଯେତେବେଳେ ଚାଳ ହୁତୁ ହୁତୁ ହୋଇ ଜଳିଲା ନିଆଁ ନିଆଁ ବୋଲି ଚାରିଆଡ଼େ ପାଟି ହେଲା । ଗାଁରେ ସମସ୍ତଙ୍କ ଘର ଲଗାଲଗି । ଗୋଟିଏ ଚାଳରେ ନିଆଁ ଲାଗିଲେ ଦି'ପଟ ଚାଳକୁ ବ୍ୟାପିଯାଏ । ଯାହା ଘରେ ପୁରୁଷ ଲୋକ ଥିଲେ ସେମାନେ କିଛି କିଛି ଜିନିଷ ବାହାର କରି ଆଣିଲେ । ମାତ୍ର ଆମ ଘରେ କେହି ପୁରୁଷ ଲୋକ ନଥିବାରୁ ଆମ ଘର ସମ୍ପୂର୍ଣ୍ଣ ଜଳିଗଲା । ଖଟ, ପଲଙ୍କ, ଦୁଇଟା ଟେବୁଲ, ୬ଟା ଚେୟାର, ତିନିଟା ଆଲମିରା, ବାକ୍ସ, ପେଟେରା ଭିତରେ ଥିବା ଟଙ୍କା ସୁନା ଶାଢ଼ୀ ସବୁ ପୋଡ଼ିଗଲା । ମୋ ସାନ ଭଉଣୀ ଆଉ ବୋଉ ଖାଲି ଠାକୁରଙ୍କ ଖଟୁଲି, ଗୋଟେ ପେଟେରା ଏବଂ ଦଦେଇ ପଇସା ରଖୁଥିବା ଏକ କାଠ ବାକ୍ସ ଧରି ବାରିପଟକୁ ପଳାଇ ଆସିଲେ । ବାରିପଟେ ଖଳାରେ ତାକୁ ରଖି ଦେଲେ । ପଡ଼ିଶା ଘରର କିଏ ସବୁ ଆସି ଗୋଟେ ବଡ଼ ସିନ୍ଦୁକକୁ ବାହାରକୁ ଟାଣି ନେଇ ଆସିଥିଲେ । ଶେଯ ଓ ସପ ମଧ ନେଇ ଆଣିଥିଲେ । ଆମ ଘରେ ଡ଼ମପଡ଼ା ଜଙ୍ଗଲରୁ ଶିଶୁ କାଠ ଆଣି ଖଟ-ପଲଙ୍କ, ଆଲମିରା ଆଦି ତିଆରି ହୋଇଥିଲା । ଅଧିକାଂଶ କବାଟ ପିଆଶାଳ କାଠରେ ହୋଇଥିଲା ।

ମୁଁ ଆଉ ଶ୍ରୀନିଭାଇନା ସନ୍ଧ୍ୟା ବସ୍‌ରେ ବାଙ୍କୀ ଆସିଲୁ । ଘରକୁ ଦେଖି ମୋ ଆଖିରୁ ଧାର ଧାର ହୋଇ ଲୁହ ଗଡ଼ି ପଡ଼ିଲା । ଖାଲି କାନ୍ଥ ଗୁଡ଼ା ଅଛି । ଚାରି ବଖରା ଘରର ଆଟୁ ଫାଟି ଯାଇଛି । ବାକିସବୁ ଘର ପୋଡ଼ି ଯାଇଛି । ଦଦେଇ ଡମପଡ଼ାରୁ ଆସି ଯାଇଥିଲେ । ରାତିରେ ଆମେ ସେଇ ପୋଡ଼ି ଯାଇଥିବା ଘରେ ସପ ପକାଇ ଶୋଇଲୁ । ଆମ ସାଇ ଗୋଟାଯାକଙ୍କର ସେଇ ଏକା ଅବସ୍ଥା । ଘରେ ଧାନ, ଚାଉଳ, ମୁଗ, ବିରି ସବୁ ପୋଡ଼ି ଯାଇଥିଲା । ସକାଳୁ ଦଦେଇ ବଜାରରୁ ଡେକ୍‌ଚି, କଡ଼େଇ, ହାଣ୍ଡି, ଚାଉଳ, ଡାଲି, ପରିବା କିଣି କରି ଆଣିଲେ । ଯେଉଁ ଚାରିବଖରା ଆଟୁ ଫାଟି ଯାଇଥିଲା ଲୋକ ଲଗାଇ ମାଟି ଲିପି ତାକୁ ଠିକ୍ କରାଗଲା । ଦଦେଇ ଡମପଡ଼ା ଯାଇ ତିନି/ଚାରିଦିନ ମଧରେ ଶାଳ, ପିଆଶାଳ ଶେଣି, ଖୁଣ୍ଟ, ପଟା ଶଗଡ଼ରେ ଲଦି ପଠାଇଲେ । ମୋର ମନେ ଅଛି ବଡ଼ ବଡ଼ ବଳଦ ଯୋଚା ହୋଇଥିବା ଚାରୋଟି ଶଗଡ଼ ସକାଳୁ ସକାଳୁ ଆସି ଆମ ଘର ପାଖରେ ପହଞ୍ଚିଲା । ତା'ପରେ ତିଆରି ହେଲା ଘର । ଆମ ତଳପଟ ଘରକୁ ମୋଟା ପଟାରେ ଛାତ କରି ଦୋମହଲା କରାଗଲା । ଉପରେ ଚାଳ । ମଝିରେ ପଟା ଛାତ । ପଟା ଉପରେ ଚାରି ଇଞ୍ଚ ମୋଟାର ମାଟି ଲଦି ଲିପାହେଲା । ତଳ ପକ୍କାହେଲା । ଅର୍ଥାତ୍ ସିମେଣ୍ଟ ଚଟାଣ ହେଲା । ଦୋମହଲା ଉପରକୁ ଯିବା ପାଇଁ ମୋଟା କାଠ ଶିଡ଼ି ହେଲା । ଦୋମହଲାରେ ଠାକୁର ଘର ଓ ଗୋଟିଏ ଶୋଇବା ଘର ଥିଲା । ସେତେବେଳେ ଆମ ଗାଁରେ ଏହା ପ୍ରଥମ ଦୋମହଲା । ଚାଳ ଦୋମହଲା ଦେଖିବା ପାଇଁ ସେତେବେଳେ କିଛି ଲୋକ

ମଧ ଆସୁଥିଲେ । ସେଇ କାମରେ ମୁଁ ଗାଁରେ ପ୍ରାୟ କୋଡ଼ିଏ ଦିନ ରହିଗଲି । ତା'ପରେ ଦଦେଇ ମୋତେ କଟକ ପଠାଇ ଦେଲେ । ଘରର ଅବସ୍ଥା ଦେଖି ମୁଁ କଟକରେ ନିଜ ଖର୍ଚ୍ଚ କିପରି ତୁଲେଇବି ସେ କଥା ଚିନ୍ତା କଲି । ମୁଁ ଯାଇ ପ୍ରଜାତନ୍ତ୍ର ଜହୁରୀ ଭାଇଙ୍କୁ ଦେଖା କଲି । ତାଙ୍କୁ ସବୁ କହିଲି । ସେ କହିଲେ ମୀନା ବଜାରରେ ଜଣେ ଆସିଷ୍ଟାଣ୍ଟ ଦରକାର । ଯିଏ ଥିଲେ ସେ ସମ୍ବଲପୁରକୁ ପ୍ରଜାତନ୍ତ୍ର ସାମ୍ବାଦିକ ହୋଇ ଚାଲିଯାଇଛନ୍ତି । ତମେ ସମୟ ଦେଇ ପାରିବ ତ ? ମୁଁ କହିଲି କ'ଣ କରିବି ବୁଝି ପାରୁନାହିଁ । ରେଭେନ୍ସାରେ ପଢ଼ିଲେ ପ୍ରତିଦିନ ଦଶଟା ବେଳେ ଆସି ଚାରିଟା ପର୍ଯ୍ୟନ୍ତ କାମ କରିବା ସମ୍ଭବ ନୁହେଁ । ଜହୁରୀ ଭାଇ କହିଲେ ତମେ ଚିନ୍ତାକର । ଯଦି ଖ୍ରୀଷ୍ଟ କଲେଜରେ ପଢ଼ିବ ତେବେ ଏଠି କାମ କରିବା ଅସୁବିଧା ହେବନାହିଁ । ମୁଁ ବସାକୁ ଫେରି ଆସିଲି । ଶ୍ରୀନିଭାଇନାଙ୍କୁ ସବୁ କଥା କହିଲି । ରେଭେନ୍ସାରେ ମୁଁ ଆଡ୍‌ମିସନ୍ ନେଇଥିବାରୁ ଦଦେଇ ଭାରି ଖୁସି ଥିଲେ । ମୁଁ ଆଡ୍‌ମିସନ୍ ପାଇଁ ଘରୁ କୌଣସି ଟଙ୍କା ଆଣି ନଥିଲି । ସ୍କୁଲ ଛାଡ଼ିବା ବେଳେ ହେଡ୍‌ମାଷ୍ଟର ରାଧେଶ୍ୟାମ ବାବୁ ମୋ ହାତରେ ସାଢ଼େ ପାଞ୍ଚଶହ ଟଙ୍କା ଦେଲେ । କହିଲେ ତୁମ ବାକିଆ ଦରମା । ସେତେବେଳେ ସାଢ଼େ ପାଞ୍ଚଶହ ଟଙ୍କା କମ୍ ନୁହେଁ । ଆଡ୍‌ମିସନ ପାଇଁ ସବୁ ମିଶି ଶହେଟଙ୍କା ପଡ଼ିଲା । ବାକି ଟଙ୍କା ମୋ ପାଖରେ ଥାଏ । ଘରପୋଡ଼ି ପରେ ଗାଁରେ ମୁଁ ଦଦେଇଙ୍କୁ ତିନିଶହ ଟଙ୍କା ଦେଲି । ଆଜି ପଚାଶ ବର୍ଷ ପରେ ଦଦେଇଙ୍କ ମୁହଁ ମୋ ଆଖି ଆଗରେ ନାଚି ଯାଉଛି । ଏତେ ଟଙ୍କା ଦେଖି ସେ ଆଶ୍ଚର୍ଯ୍ୟ ହୋଇଗଲେ । ପଚାରିଲେ ଏତେ ଟଙ୍କା ଆଣିଲ କେଉଁଠୁ ? ମୁଁ ସବୁ କହିଲି । ସବୁ ଶୁଣିବା ପରେ କେଜାଣି କାହିଁକି ତାଙ୍କ ଆଖି ଦି'ଟା କେମିତି ଛଳଛଳ ହୋଇଗଲା ଭଳି ଲାଗିଲା । ଦଦେଇ ଏଇମିତି ବେଶୀ କଥା କହନ୍ତି ନାହିଁ । କିନ୍ତୁ ପୁଅର ଏଇ ରୋଜଗାର ଅର୍ଥ ପ୍ରଥମଥର ପାଇଁ ହାତରେ ଧରି ସମ୍ଭବତଃ ଈଶ୍ୱରଙ୍କ ଉଦ୍ଦେଶ୍ୟରେ ପ୍ରଣାମ କଲେ । ତା'ପରେ ଧୀରେ ଧୀରେ ସେଇ ଟଙ୍କାକୁ ମୋତେ ଫେରେଇ ଦେଇ କହିଲେ ତମେ କଟକ ଯିବ । ଏ ଟଙ୍କା ରଖିଥା । ହଠାତ୍ ମୁଁ ଦେଇ ନପାରିଲେ ଖର୍ଚ୍ଚ କରିବ । ମୋର ଆଣିବାକୁ ଇଚ୍ଛା ନଥିଲା । ମୁଁ କହିଲି ଆପଣ ରଖନ୍ତୁ ଏଇନେ ଅନେକ ଦରକାର ହେବ । ସେ ମୋ ମୁଣ୍ଡରେ ହାତ ବୁଲାଇ ଦେଇ କହିଲେ ରଖିଥା । ଯଦି ଦରକାର ହୁଏ ମୁଁ ମାଗିନେବି । କିନ୍ତୁ ଦଦେଇ ମୋ'ଠୁ ଟଙ୍କା ଆଉ ମାଗି ନଥିଲେ । ସମ୍ଭବତଃ ସେଦିନ ସେ ମୋ'ଠୁ ଟଙ୍କା ନେଇ ନିଜର ଅକ୍ଷମତା ପ୍ରକାଶ କରିବା ପାଇଁ ଚାହିଁ ନଥିଲେ । ସେ ମୋତେ ପରୋକ୍ଷରେ କହି ଦେଇଥିଲେ ତୋ ଦଦେଇ ଏବେ ମଧ ନିଜର କାମ କରିବାକୁ ଶକ୍ତି ରଖିଛି । ତୋଠୁ ଟଙ୍କା ନେବାର ବେଳ ଆସିନି । ମୁଁ ଟଙ୍କା ରଖିଲି । ମୋର ଏବେ ମନେ ପଡୁନି- ସମ୍ଭବତଃ ବୋଉକୁ ସେଥିରୁ ଶହେଟଙ୍କା ଦେଇଥିଲି ।

ଜହୁରୀ ଭାଇଙ୍କ କଥା ଚିନ୍ତା କଲି । ଶ୍ରୀନିଭାଇନା କହିଲେ ତୁ ଯଦି ଘରୁ ଟଙ୍କା ନଆଣି ପଢ଼ିବା ପାଇଁ ମନସ୍ଥ କରିଛୁ ଜହୁରୀ ଭାଇଙ୍କ ପ୍ରସ୍ତାବ ଗ୍ରହଣ କର । ତା' ନହେଲେ ଟ୍ୟୁସନ କରି ପଢ଼ । ମୋର କିନ୍ତୁ ଟ୍ୟୁସନ୍ କରିବା ପାଇଁ ଇଚ୍ଛା ନଥିଲା । ଅଗତ୍ୟା ସେଇଆ କଲି । ରେଭେନ୍ସାରୁ ନାଁ କାଟି ଖ୍ରୀଷ୍ଟ କଲେଜରେ ନାଁ ଲେଖାଇଲି । ଜହୁରୀ ଭାଇଙ୍କୁ ଯାଇ ସବୁ କହିଲି । ସେ ମୋତେ ଜାନକୀବାବୁ (ଜାନକୀ ବଲ୍ଲଭ ପଟ୍ଟନାୟକ)ଙ୍କ ପାଖକୁ ନେଇଗଲେ । ଜାନକୀବାବୁ ସେତେବେଳେ ପ୍ରଜାତନ୍ତ୍ରର ସମ୍ପାଦକ ଥା'ନ୍ତି । ସେ ସବୁ ଶୁଣି ମୋ ଦରଖାସ୍ତ ଉପରେ ଲେଖିଦେଲେ 'ଲାଲା ବାବୁ, ବରେନ୍ଦ୍ର ମୀନାବଜାରର ସହକାରୀ ରୂପେ କାର୍ଯ୍ୟ କରିବ । ତାକୁ ମାସିକ ସତୁରୀ ଟଙ୍କା ଦେବ ।' ଜା.ବ. ପଟ୍ଟନାୟକ । ଲାଲା ବାବୁ ଥିଲେ ପ୍ରଜାତନ୍ତ୍ରର ଆକାଉଣ୍ଟାଣ୍ଟ । ମୁଁ ଖୁସି ହୋଇ ଫେରି ଆସିଲି । ମୋର ଆରମ୍ଭ ହେଲା ଏକ ନୂଆ ଜୀବନ । ପିଲାଦିନୁ ସାମ୍ବାଦିକ ହେବି ବୋଲି ଯେଉଁ ଇଚ୍ଛା ଓ ଆକାଂକ୍ଷା ମନରେ ଥିଲା ଏହା ତା'ର ଅୟମାରମ୍ଭ । ମୀନା ବଜାର ମୋତେ କଟକର ବହୁ ପୁଅ-ଝିଅଙ୍କ ସହ ପରିଚିତ କରାଇ ଦେଲା ।

ଖ୍ରୀଷ୍ଟ କଲେଜରେ ନାଁ ଲେଖାଇବା ଏବଂ ପ୍ରଜାତନ୍ତ୍ର ମୀନା ବଜାରରେ ସହକାରୀ ଭାବେ ଯୋଗ ଦେବା

ପରେ ମହ୍ଲାସାହୀରେ ନରହି ଶେଖ ବଜାର/ ମହମଦିଆ ବଜାର ଅଞ୍ଚଳରେ କୌଣସି ମେସ୍‌ରେ ରହିବା ପାଇଁ ମନ କଲି । ଜଣାଶୁଣା କେତେଜଣ ବନ୍ଧୁଙ୍କୁ କହିଲି ମୋ ପାଇଁ କୌଣସି ମେସ୍ ଠିକ୍ କରିଦେବା ପାଇଁ । ଶେଷରେ ମାସକ ପରେ ଖବର ପାଇଲି ମହମଦିଆ ବଜାର ଚୈତନ୍ୟ ମଠ ପାଖରେ ଭାରତୀ ମେସ୍‌ରେ ଜାଗା ଅଛି । ସେଠି ପହଞ୍ଚି ଦେଖିଲି ଘର ମାଲିକଙ୍କ ଭାଇ ବ୍ରଜବନ୍ଧୁ ଦାଶ ମୋର ପୂର୍ବରୁ ଜଣାଶୁଣା । ବାଙ୍କୀରେ ତାଙ୍କ ଭାଇ ହେଡ୍‌କ୍ଲର୍କ ଥିଲେ ଏବଂ ତାଙ୍କ ଭଉଣୀ ଆମ ଗାଁରେ ବିବାହ କରିଥିଲେ । ସେ ମୋତେ ଦେଖି ଖୁବ୍ ଖୁସି ହେଲେ । ଘରଟି ଦି/ ତିନିବର୍ଷ ପୂର୍ବରୁ ତିଆରି ହୋଇଥିଲା । ମୋ ପାଇଁ ସେ ଗୋଟିଏ ରୁମ୍ ଦେଲେ । ମାସକୁ ଭଡ଼ା ଦଶଟଙ୍କା । ରୁମ୍‌ରେ ଗୋଟିଏ ଖଟ ଥିଲା । ଆଲେଣାଟିଏ ମଧ୍ୟ ଥିଲା । କାଛ ଆଲମାରି ଥିଲା । ମତେ ରୁମ୍‌ଟି ଭାରି ପସନ୍ଦ ହେଲା । ମୁଁ ସାଙ୍ଗେ ସାଙ୍ଗେ ବ୍ରଜବାବୁଙ୍କୁ ଅଗ୍ରୀମ ତିରିଶ ଟଙ୍କା ଦେଇ ରୁମ୍‌ଟି ଭଡ଼ା ନେଇଗଲି ।

ମହ୍ଲାସାହୀ ଫେରି ଯାଇ ଶ୍ରୀନି ଭାଇନାଙ୍କୁ ସବୁ କହିଲି । ସେ କହିଲେ ଭଲ ହେଲା । ତୋର କଲେଜ ଆଉ ପ୍ରଜାତନ୍ତ୍ର ଅଫିସ୍ ପାଖ ହୋଇଗଲା । ଭାରତୀ ମେସ୍‌ରେ ମୋଟ ଆମେ ନ'ଜଣ ରହୁଥିଲୁ । ଆମ ଗାଁ ପାଖ ହରିରାଜପୁରର କୁଳମଣି ରଥ ନାମରେ ଜଣେ ରହୁଥିଲେ । ସେ ମୋ ଠାରୁ ଚାରି/ପାଞ୍ଚବର୍ଷ ବଡ଼ ହେବେ । ତୁଳସୀପୁର ପୋଲିସ୍ ହାଇସ୍କୁଲରେ ଶିକ୍ଷକ ଥିଲେ । ବାକି ଲୋକେ ସେକ୍ରେଟେରିଏଟ୍‌ର କିରାଣି ଥିଲେ । ସେତେବେଳେ ସେକ୍ରେଟେରିଏଟ୍ ଯଦିଓ ଭୁବନେଶ୍ୱର ଉଠି ଯାଇଥିଲା ମାତ୍ର ଅଧା ଅଫିସ୍ କଟକରେ ହେଉଥିଲା । କାରଣ ଭୁବନେଶ୍ୱରରେ ସବୁ ବିଭାଗ ପାଇଁ ଜାଗା ନଥିଲା । ମୋର ଯାହା ମନେ ପଡୁଛି ଯୋଗାଣ ବିଭାଗ, କୃଷି ବିଭାଗ, ସ୍ୱାସ୍ଥ୍ୟ ବିଭାଗ ଓ ଶିକ୍ଷା ବିଭାଗ ଆଦି କଟକ କିଲା ମଇଦାନରେ ଥିବା ଓଲ୍ଡ ସେକ୍ରେଟେରିଏଟ୍ ବିଲଡିଂରେ ଥିଲା । ବିଲିଡିଂମାନେ ଏ ସବୁ ଆଜ୍‌ବେଷ୍ଟସ୍ ଛାଉଣୀ ଘର ଥିଲା । ଆମ ମେସ୍‌ରେ ହରିବାବୁ, ନୀରବାବୁ ଏବଂ ଆଉ ତିନିଜଣ ଓଲ୍ଡ ସେକ୍ରେଟେରିଏଟ୍‌ର କିରାଣି ଥିଲେ ।

## -ମାନସ ଦା-

କିନ୍ତୁମେସ୍‌ରେ ଆଉଜଣେ ଏଭଳି ବ୍ୟକ୍ତି ଥିଲେ ଯାହାଙ୍କୁ ମୁଁ ମନେକଲି ଏକ ସ୍ୱତନ୍ତ୍ର ଚରିତ୍ର । ସେ ଗୋଟିଏ ରୁମ୍ ନେଇ ରହୁଥିଲେ । ତାଙ୍କ ନାଁ ମାନସ ଦାସ । ହଁ ମୁଁ ଏଠି କହିରଖେ ମୁଁ, ମାନସ ବାବୁ ଓ ମାଲିକଙ୍କ ଭାଇ ବ୍ରଜବାବୁ ଗୋଟିଏ ଲେଖାଏଁ ରୁମ୍ ନେଇ ରହୁଥିଲୁ । ଅନ୍ୟମାନେ ଗୋଟିଏ ରୁମ୍‌ରେ ଦୁଇଜଣ କରି ରହୁଥିଲେ । ମେସ୍‌ରେ ଜଣେ ପୂଜାରୀ ଥିଲେ । ସେ ରୋଷେଇ କରନ୍ତି ଏବଂ ଆଉ ଜଣେ ଚାକର ଥିଲା ଯିଏ ସଫା ସଫି କରେ । ଆମ ଖାଇବା ବାସନ ଆମେ ନିଜେ ନିଜେ କଳ ତଳେ ସଫାକରୁ । ମେସ୍‌ରେ ସାମନାରେ କିଛି ଜାଗା ଥିଲା ଏବଂ ବଡ଼ ପାଚେରୀ ଥିଲା । ପାଚେରୀ କଡ଼ରେ ଏକ ପାଣିକଳ ଥିଲା । ମ୍ୟୁନ୍‌ସିପାଲଟି ପାଣି ସପ୍ଲାଇ କରୁଥିଲା । ମୂଳ କୋଠାର ସାମନାରେ ପାଚେରୀ ପାଖକୁ ଲାଗି ଆଜବେଷ୍ଟସ ଛାଉଣୀ ବଡ଼ ରୋଷେଇ ଘର ଥିଲା । ପାଣି କଳ ତଳକୁ ତିନି/ଚାରିଜଣ ବସି ଗାଧୋଇ ହେବା ଭଳି ଚଟାଣ ଥିଲା । ସେଇଠି ସକାଳୁ ଗାଧୁଆ ପାଧୁଆ ହେଉଥିଲା । ମେସ୍‌ରେ ସମସ୍ତେ ବିଭିନ୍ନ କାମରେ ଦଶଟା ସୁଦ୍ଧା ଖାଇ-ପିଇ ବାହାରି ଯା'ନ୍ତି । ମାତ୍ର ମାନସବାବୁ ମେସ୍‌ରେ ଖାଉ ନଥିଲେ । ମୁଁ ଯେତେବେଳର କଥା କହୁଛି ଅର୍ଥାତ୍ ୧୯୫୮ ମସିହା ବେଳକୁ ତାଙ୍କ ବୟସ ବୋଧେ ଚାଳିଶ ବର୍ଷ ହେବ । ତାଙ୍କୁ ସମସ୍ତେ ମାନସ ଦା' ବୋଲି ସମ୍ବୋଧନ କରୁଥିଲେ । ସେ ତାଙ୍କ ରୁମ୍‌ରେ ଗୋଟିଏ ଷ୍ଟୋଭ୍ ରଖିଥାନ୍ତି । ସେଇଥିରେ ସେ ରୋଷେଇ କରନ୍ତି । ତାଙ୍କ ରୋଷେଇ ମଧ୍ୟ ବିଚିତ୍ର । ମୁଁ ମେସ୍‌ରେ ଦି'ମାସ ରହିବା ଭିତରେ ତାଙ୍କ ସହ ବନ୍ଧୁତା ହୋଇଗଲା । ତାଙ୍କର ଦୈନନ୍ଦିନ ସୂଚୀ ଏହିଭଳି । ସକାଳୁ ନିତ୍ୟକର୍ମ ଶେଷକରି ଷ୍ଟେଟସମ୍ୟାନ୍ ଖବରକାଗଜ ଧରି ବସିଯା'ନ୍ତି । ଦଶଟା-

ସାଢ଼େ ଦଶଟା ବେଳକୁ ଷ୍ଟୋଭ୍ ଲଗାନ୍ତି । ଗୋଟିଏ ମଧ୍ୟମ ଧରଣର ଡେକ୍‌ଚିରେ ଦୁଧ ଏକ ଲିଟର ପ୍ରଥମେ ସିଝାନ୍ତି । କିଛି ସମୟ ପରେ ସେଇ ଦୁଧରେ ସରୁ ଅରୁଆ ଚାଉଳ, ସେଓ, ପାଚିଲା କଦଳି, କିସ୍‌ମିସ୍, କାଜୁ, ଅଳ୍ପ ଗୁଆଘିଅ, ଆଳୁ( ଚୋପା ଛଡ଼ାଇ ) ଏବଂ ସାମାନ୍ୟ ଚିନି ଓ ଲୁଣ ପକାଇ ଘୋଡ଼େଇ ଦିଅନ୍ତି । ପ୍ରାୟ ଅଧଘଣ୍ଟାକ ପରେ ଷ୍ଟୋଭ୍ ଲିଭାଇ ଦିଅନ୍ତି । ଥଣ୍ଡା ହେବା ପରେ ସେଥିରୁ ଅଳ୍ପ ଅଳ୍ପ ଆଣି ଖା'ନ୍ତି । ଦିନେ ରବିବାର ମୁଁ ତାଙ୍କୁ ପଚାରିଲି ସାର୍ ଆପଣ ଏଇଆ ଖାଇ ଦିନ ସାରା ରୁହନ୍ତି । ସେ ମତେ କହିଲେ ଆଜି ତ ତମେ ଖାଇ ସାରିଲଣି । ଆସନ୍ତା ରବିବାର ମେସ୍‌ରେ ନଖାଇ ମୋ ସାଙ୍ଗରେ ଖାଇବ । ଦେଖିବ ଆଉ ଦିନ ସାରା ଖାଇବା ପାଇଁ ଇଚ୍ଛା ହେବ ନାହିଁ । ସେଇଆ ହେଲା ।

ମୁଁ ପର ରବିବାର ପୂଜାରୀଙ୍କୁ ମୋ ମିଲ୍ ନପକାଇବାକୁ କହିଲି । ମାନସବାବୁଙ୍କ ଖାଦ୍ୟ ଖାଇବା ପାଇଁ ଅପେକ୍ଷା କଲି । ସେଦିନ ତାଙ୍କର ଆଉଜଣେ ବନ୍ଧୁ ମଧ୍ୟ ଆସିଥା'ନ୍ତି । ଦିନ ପ୍ରାୟ ବାରଟା ବେଳକୁ ଆମେ ତିନିଜଣ ଖାଇଲୁ । ଆଜି ପାଖାପାଖି ବର୍ଷ ପରେ ମୋର ମନେ ହୁଏ ଏତେ ସୁସ୍ୱାଦୁ ଖାଦ୍ୟ ମୁଁ ଖାଇନାହିଁ । ଜୀବନର ଦୀର୍ଘ ପଥରେ ମୁଁ ଭାରତ ବର୍ଷର ଅନେକ ବଡ଼ ବଡ଼ ସହରର ଫାଇଭଷ୍ଟାର୍ ହୋଟେଲ୍ ବା ଡିଲକ୍ସ ଫାଇଭ୍‌ଷ୍ଟାର୍ ହୋଟେଲ୍‌ରେ ରହିଛି- ଖାଇଛି । କିନ୍ତୁ ମୋର ମନେ ହୁଏ ମାନସବାବୁଙ୍କର ସେ ଖାଦ୍ୟର ତୁଳନା ହୁଏନି । ପରବର୍ତ୍ତିସମୟରେ ଥରେ- ଦି'ଥର ମୁଁ ସେଇଭଳି ଖାଦ୍ୟ ପ୍ରସ୍ତୁତ ପାଇଁ ଚେଷ୍ଟା କରିଥିଲି । ମାତ୍ର କେଜାଣି କାହିଁକି ମାନସ ବାବୁଙ୍କ ପ୍ରିପାରେସନ ଭଳି ହୋଇ ନଥିଲା । ଯେପରି ପୁରୀ ମନ୍ଦିରର ମହାପ୍ରସାଦ ରୋଷେଇ କରୁଥିବା ପଣ୍ଡା ଅନ୍ୟତ୍ର ଯାଇ ସେଇଭଳି ମହାପ୍ରସାଦ ତିଆରି କରିବା ସମ୍ଭବ ହୁଏ ନାହିଁ- ମାନସ ବାବୁଙ୍କ ଖାଦ୍ୟ ମଧ୍ୟ ସେହିଭଳି ମୋ ହାତରେ ହେଲା ନାହିଁ ।

ବାଟ ହୁଡ଼ିଗଲି । ମାନସ ବାବୁ ଖାଇସାରି ପୁଣି ଷ୍ଟେଟସ୍‌ମ୍ୟାନ୍ ଧରି ବସନ୍ତି । ପ୍ରତ୍ୟେକ ପୃଷ୍ଠା ପଢ଼ନ୍ତି । ମଝିରେ ମଝିରେ କେତେକ ନିଉଜ୍ ଓ ଆର୍ଟିକିଲ୍‌ରେ କିଛି ଅଣ୍ଡର ଲାଇନ୍ କରନ୍ତି । ମୁଁ ଦିନେ ପଚାରିଲି ଦାଦା ଷ୍ଟେଟସ୍‌ମ୍ୟାନ୍ କାଗଜକୁ ଏତେ ଟିକିନିଖି କାହିଁକି ପଢ଼ନ୍ତି । ସେ କହିଲେ ଇଂରେଜୀ ଜାଣିବାକୁ ହେଲେ ଷ୍ଟେଟସ୍‌ମ୍ୟାନ୍ ପଢ଼ିବାକୁ ହେବ । ମୋତେ ସେ ଷ୍ଟେଟସ୍‌ମ୍ୟାନ୍ ପଢ଼ିବାକୁ ପରାମର୍ଶ ଦେଲେ । ମୋର ସେତେବେଳେ ଏତେ ଇଂରାଜୀ ଜ୍ଞାନ ନଥିଲା । କିନ୍ତୁ ପ୍ରାୟ ପ୍ରତିଦିନ ସନ୍ଧ୍ୟାବେଳେ ମୁଁ ତାଙ୍କ ରୁମ୍‌କୁ ଯାଇ ଷ୍ଟେଟ୍‌ସମ୍ୟାନ ପଢ଼ିଲି । ଯାହା ବୁଝି ନପାରିଲି ତାଙ୍କୁ ପଚାରିଲି । ପରିସ୍ଥିତି ଏଭଳି ହେଲା ଛ' ଆଠମାସ ପରେ ମୁଁ ଷ୍ଟେଟସ୍‌ମ୍ୟାନ୍ ନପଢ଼ିଲେ ମନ ସନ୍ତୁଷ୍ଟ ହେଲା ନାହିଁ । ଅନେକ ଶବ୍ଦ ଯାହା ମୁଁ ବୁଝିପାରେ ନାହିଁ ଏବଂ ବାକ୍ୟରେ ତା'ର ଅନ୍ତର୍ଭୁକ୍ତି ମୋତେ ଅଖାଡୁଆ ଲାଗେ ସେ ସବୁ ମୁଁ ଅଣ୍ଡର ଲାଇନ୍ କରି ପରେ ମାନସବାବୁଙ୍କୁ ପଚାରୁଥାଏ । ସେ ସେସବୁକୁ ମୋତେ ବୁଝାଇ ଦିଅନ୍ତି । ମୁଁ କେତେକ ଇଂରାଜୀ ଶବ୍ଦକୁ ଲେଖି ତା'ର ଅର୍ଥ ମଧ୍ୟ ଏକ ଖାତାରେ ଲେଖି ରଖିଥାଏ । ମୋର ଜୀବନର ଏକ ସନ୍ଧିକ୍ଷଣରେ ମାନସବାବୁଙ୍କ ସାହାଯ୍ୟ ମୋ ଇଂରାଜୀ ଜ୍ଞାନ ବୃଦ୍ଧି କରିବାରେ ଏତେ ସହାୟକ ହୋଇଥିଲା ତାହା ଆଜି ସ୍ୱୀକାର କରିବାରେ ବାଧା ନାହିଁ । ଯେତେବେଳେ ବି.ଏ. ପାଶ୍ କରି ପିଲାମାନେ ଇଂରାଜୀ କାଗଜ ପଢ଼ିବାକୁ ସାହସ କରୁ ନଥିଲେ ମୁଁ ଫାଷ୍ଟଇୟର୍‌ରୁ ଷ୍ଟେଟସ୍‌ମ୍ୟାନ୍ କାଗଜ ନିୟମିତ ପଢୁଥିଲି ।

ବର୍ଷଟିଏ କଟିଗଲା, ମୀନା ବଜାରକୁ ମୁଁ କଲେଜରୁ ଫେରି ସାଢ଼େ ଦଶଟା ବା ଏଗାରଟାରେ ଯାଉଥିଲି । କଲେଜରୁ ଫେରି ମେସ୍‌ରେ ଖାଇ ଦେଇ ମୁଁ ମୀନା ବଜାରକୁ ଯାଏ । ସେଠି ପ୍ରତିଦିନ କଟକ ସହରରୁ ଏବଂ ବାହାରୁ ଅନେକ ପିଲା ଆସନ୍ତି । ଆଜି ଦେଶରେ ଏବଂ ରାଜ୍ୟରେ ବିଖ୍ୟାତ ହୋଇଥିବା ଅନେକ ବ୍ୟକ୍ତି ମୀନା ବଜାରର ସଭ୍ୟ

ଥିଲେ । ମୋର ମନେ ଅଛି ମୁଁ ମୀନା ବଜାରରେ ଯୋଗ ଦେବା ପରେ ଦେବଦାସ ଛୋଟରାୟ(ଅଧୁନା ଭାରତ ସରକାରଙ୍କର ସ୍ୱରାଷ୍ଟ୍ର ବିଭାଗ ଅନ୍ତର୍ଗତ ଭାଷା ବିଭାଗର ସଚିବ), ଗୋପାଳ ଚନ୍ଦ୍ର କର(କଟକ ମେଡିକାଲ୍ କଲେଜର ଅବସରପ୍ରାପ୍ତ ଅଧ୍ୟକ୍ଷ ଓ ବିଖ୍ୟାତ ଚିକିତ୍ସକ) ଓ ଆହୁରି ଅନେକ ଆସୁଥିଲେ । ଏମାନେ ଲେଖା ଆଣି ଆସୁଥିଲେ । ଅନେକ ବିଶିଷ୍ଟ ବ୍ୟକ୍ତିଙ୍କ ପୁଅଝିଅ ପ୍ରାୟ ଆସୁଥିଲେ । ମୋର ଏମାନଙ୍କ ସହ ଗଳ୍ପ କରି ଏବଂ ଲେଖା ପଢ଼ି ସମୟ କଟି ଯାଉଥିଲା । ମୁଁ ସେତେବେଳକୁ ରବିବାର ପ୍ରଜାତନ୍ତ୍ର ଓ ଅନ୍ୟାନ୍ୟ ପତ୍ର ପତ୍ରିକାରେ ଲେଖା ଦେଉଥାଏ । ସମାଜର ଶିଶୁ ରାଇଜ, ଆସନ୍ତାକାଲିର କିଶୋର ସଂସାର ଓ ମାତୃଭୂମିର କିଶୋର ଫୌଜରେ ମୋର ଲେଖା ପ୍ରକାଶ ପାଉଥାଏ । ଖବର କାଗଜ ପଢୁଥିବା ଲୋକଙ୍କ ପାଖରେ ମୁଁ ପ୍ରାୟ ପରିଚିତ ହୋଇଥାଏ । ସମୟଟା ପ୍ରକୃତରେ ହସଖୁସି ଭଳି ଚାଲି ଯାଉଥାଏ । ପ୍ରଜାତନ୍ତ୍ରରୁ କିନ୍ତୁ ଥରକରେ ମୁଁ ସତୁରୀ ଟଙ୍କା ପାଉ ନଥାଏ । ଲାଲା ବାବୁଙ୍କ ପାଖକୁ ସତୁରୀ ଟଙ୍କା ପାଇବା ପାଇଁ ଚାରିପାଞ୍ଚଥର ଯିବାକୁ ପଡ଼େ । କୋଡ଼ିଏ ଟଙ୍କା, ପନ୍ଦର ଟଙ୍କା, ପଚିଶ ଟଙ୍କା ଏଇମିତି କରି ଚାରି-ପାଞ୍ଚ ଚେକରେ ସତୁରୀ ଟଙ୍କା ମିଳେ । ସେଇଥିରେ ମୋ ସମୟ କଟୁଥାଏ । ମଝିରେ ମେସ୍ ପୂଜାରୀ ଆଠ- ଦଶଦିନ ପାଇଁ ଗାଁକୁ ପଳାଏ । ହୋଟେଲରେ ଖାଇବାକୁ ହୁଏ । ପାଖରେ ଟଙ୍କା ନଥିଲେ ବାକିରେ ଖାଇବାକୁ ପଡ଼େ । ଚାନ୍ଦିନୀଚୌକ ଛକରେ ଓ୍ୱେଷ୍ଟର୍ଣ୍ଣ ହୋଟେଲ ନାମରେ ଏକ ହୋଟେଲ ଥାଏ । ସେଇଥିରେ ମୁଁ ଖାଏ । ହୋଟେଲ ମାଲିକ ଶ୍ୟାମ ସାହୁ ଗୋଡିସାହୀର ଲୋକ । ମୋର ପରିଚୟ ପାଇବା ପରେ ଖାଇବାକୁ ଟିକେ ସୁବିଧା କରି ଦିଅନ୍ତି । ଏଇମିତି ସମୟ କଟୁଥାଏ । ମନ୍ଦ ଲାଗୁନଥାଏ ।

## -ନାରଣ ମଉସା-

ଜୀବନ ଏକ ଭିନ୍ନ ବାଟରେ ଚାଲିଥିଲା । ଅନେକ କ୍ଷେତ୍ରରେ ବାଟ ଚାଲୁ ଚାଲୁ ସିଧା ବାଟରେ ନଯାଇ ବଙ୍କା ପଥରେ ମଧ୍ୟ ପାଦ ପଡ଼ିଯାଏ । ମାତ୍ର ନିଜ ଭୁଲ୍ ବୁଝିପାରି ପୁଣି ସିଧା ବାଟକୁ ଆସିଥାଏ । ପ୍ରଜାତନ୍ତ୍ର ମୀନା ବଜାରରେ କାମ କରୁ କରୁ ଅନେକଙ୍କ ସହ ବନ୍ଧୁତା ହେଲା । ଅନେକ ସୁନ୍ଦରୀ ତରୁଣୀ ଆସନ୍ତି । କିଏ ଲେଖା ନେଇ, କିଏ ସାଙ୍ଗମାନଙ୍କ ସାଙ୍ଗରେ ଆସିଥା'ନ୍ତି । କଥାବାର୍ତ୍ତା, ହସ ଖୁସିରେ ଅନେକ ନିମନ୍ତ୍ରଣ ମିଳେ ଘରକୁ ଯିବାପାଇଁ । ଅନେକ ବିଶିଷ୍ଟ ବ୍ୟକ୍ତିଙ୍କ ପୁଅ ଝିଅ ଆସନ୍ତି । କେତେକ ଲେଖା ଛାପିବା ପାଇଁ ଏପରି ବ୍ୟାକୁଳ ହୋଇ ପଡ଼ନ୍ତି ଯେ ସେମାନଙ୍କୁ ଯାହା କହିବ ସେଥିରେ ରାଜି ହୋଇ ଯା'ନ୍ତି । ଅନେକ ଲେଖା ସାଙ୍ଗରେ ମିଠା ପ୍ୟାକେଟ ଆଣି ଆସିଥା'ନ୍ତି । ମୋର ସମୟ କଟି ଯାଉଥାଏ । ପଢ଼ା ପାଇଁ ଏକେ ଗୁରୁତ୍ୱ ନଦେଲେ ମଧ୍ୟ ମଝିରେ ମଝିରେ ଯାଇ କ୍ଲାସ ଆଟେଣ୍ଡ କରି ଆସେ । ସେଇ କ୍ଲାସ୍‌ରେ ପଢୁଥାନ୍ତି ଚାଳିଶ ବର୍ଷର ନାରଣ ମଉସା । ତାଙ୍କୁ ଅନେକ ମଉସା ଡାକନ୍ତି । ସେ କଲେକ୍ଟୋରେଟରେ କିରାଣି ଥିଲେ । ଦିନେ ଆମେ କଲେଜରୁ ଫେରିବା ବେଳେ ସେ ମୋତେ କହିଲେ କେମିତି ଖର୍ଚ୍ଚ ତୁଲାଉଛ ? ମୁଁ ମୀନା ବଜାର କଥା କହିଲି । ସେ ସବୁ ଶୁଣି କହିଲେ ସକାଳୁଆ କଲେଜ । କଟକ କଲେକ୍ଟୋରେଟ ବା ରେଭିନ୍ୟୁ ବୋର୍ଡ଼ରେ କିରାଣି ଚାକିରି କରୁନ । ସବୁ ମିଶି ମାସକୁ ପଞ୍ଚାଅଶୀ ଟଙ୍କା ପାଇବ । ଟଙ୍କାରେ ମଳିଧୂଳି ନାହିଁ । ଆରାମରେ ଚଳିବ । ଏବେ ବୋର୍ଡ଼ ଅଫ୍ ରେଭିନ୍ୟୁ ଅଫିସ୍‌ରେ ଇଷ୍ଟେଟ ଆବୋଲିସନ ଅଫିସ୍ ପାଇଁ ଚାରି/ପାଞ୍ଚୋଟି କିରାଣି ଚାକିରି ଖାଲିଥିବା ନୋଟିସ୍ ବୋର୍ଡ଼ରେ ବାହାରିଛି । ଆପ୍ଲାଇ କରିଦିଅ । ତମର ମାଟ୍ରିକ ସେକେଣ୍ଡ ଡିଭିଜନ । ପାଇଯିବ । ମୁଁ କହିଲି କାହିଁକି କିରାଣି ଚାକିରି କରିବି ? ଏଇମିତି ଚଳି ଯାଉଛି । ସାମାନ୍ୟ ଅସୁବିଧା ହେଲେ ମଧ୍ୟ ଚାଲିଛି ।

ନାରଣ ମଉସା ବେଶ୍ ଇଣ୍ଟେରିଷ୍ଟିଙ୍ଗ ଲୋକ । ମୁଣ୍ଡ ବେଶ୍ ଚନ୍ଦା । ପେଟ ବାହାରିଛି । ଧୋତି ଆଉ ଫୁଲ୍ ସାର୍ଟ ପିନ୍ଧନ୍ତି । ଅବିବାହିତ । ଦିନେ ପଚାରିଲି ମଉସା ସରକାରୀ ଚାକିରି କରୁଛ । ବାହା ହେଲନି କାହିଁକି ? ନାରଣ ମଉସା

ଏଇମିତି ସଦାବେଳେ ହସନ୍ତି । ପାନ ଖା'ନ୍ତି । ସିଗାରେଟ ଖା'ନ୍ତି ନାହିଁ । ମୋ ପ୍ରଶ୍ନ ଶୁଣି ଟିକେ ରହିଲେ । ତା'ପରେ କହିଲେ ଯାହାକୁ ବାହା ହୋଇଥା'ନ୍ତି ସିଏ ଆଉଜଣକୁ ବାହା ହୋଇଗଲା । ଟୋକାବେଳେ ମୋ ଚେହେରା ବେଶ୍ ଭଲ ଥିଲା । ଥରେ ତାଙ୍କୁ ବଜାରରେ ଏକା ଦେଖି ପଚାରିଲି ମୋର କ'ଣ ଏମିତି ଖରାପ ଦେଖିଲ ଯେ ମୋତେ ଛାଡ଼ି ଦେଲ । ଯେତେବେଳେ ପାରି ସେତେବେଳେ ମୋଠୁଁ ସବୁ ନେଲ । ତୁମେ ଯଦି ଚାହୁଁନଥିଲ ମୋତେ ସିଧା ସିଧା ନକହି ଏ ପ୍ରକାର ବ୍ୟବହାର କାହିଁକି କଲ ? ତୁମ ଭଳି ଝିଅ କେବେ ସୁଖରେ ରହିବ ନାହିଁ । ସେ କହିଲା ତୁମକୁ ମୁଁ କେବେ ଚାହିଁ ନଥିଲି । ତୁମେ ମୋ ପିଛା ଲାଗିଥିଲ । ବାପା ତାଙ୍କ ସହ ପ୍ରସ୍ତାବ ପକାଇଲେ । ସେ ରାଜି ହେଲେ । ତା'ପରେ ସେ ସବ୍‌ଡେପୁଟି । ତୁମେ କିରାଣି । ତା' ମୁହଁରୁ ଏତେ ସବୁ ଠୋସ୍ ଠାସ୍ କଥା ଶୁଣି ମୋ ମୁଣ୍ଡ ଗରମ ହୋଇଗଲା । ସେଇ ଦିନଠୁ ମୁଁ ବ୍ରତ କଲି ଆଉ ବାହା ହେବି ନାହିଁ । ନାରଣ ମଉସାଙ୍କ କଥା ଶୁଣି ମୋ ମନରେ ଦୁଃଖ ହେଲା । ନାରଣ ମଉସାଙ୍କ ମନରେ ଯେ ଦୁଃଖ, କ୍ଷୋଭ ନାହିଁ ତା' ନୁହେଁ । କିନ୍ତୁ ସେ ତାକୁ କେବେ ପରିପ୍ରକାଶ କରିନାହାନ୍ତି । ସବୁ ଦୁଃଖ, ଯାତନା, ମନସ୍ତାପକୁ ନୀଳକଣ୍ଠଙ୍କ ପରି ଗିଳି ଦେଇଛନ୍ତି । ଏଭଳି ଲୋକ ପ୍ରକୃତରେ ବିରଳ । ନାରଣ ମଉସାଙ୍କ ପ୍ରତି ମୋର ଶ୍ରଦ୍ଧା ବଢ଼ିଗଲା । ସଦାବେଳେ ହସ ହସ ମୁହଁ । ଦୁଃଖର ଚିହ୍ନବର୍ଣ୍ଣ ନାହିଁ । ସେଇ ନାରଣ ମଉସା କହିଲେ ବରେନ୍ଦ୍ର ବାବୁ ତୁମେ ସରକାରୀ ଚାକିରୀ କର । ସକାଳୁଆ କଲେଜ । ଆସିଲେ ଆସ- ନହେଲେ ନାହିଁ । ପ୍ରକ୍ସି ପକାଇବା ପାଇଁ ଅନେକ ପିଲା ମିଳିବେ । ଘରୁ ଟଙ୍କା ଆଣିବ ନାହିଁ ବୋଲି ଯାହା କହିଲ ଖୁବ୍ କମ୍ ପିଲାଙ୍କୁ ମୁଁ ଦେଖିଛି ସେଭଳି ଦୃଢ଼ ହୋଇ ରହିବା । ମୋର ଆଶା ତୁମେ ଇଣ୍ଟରଭ୍ୟୁ ଦେଲେ ନିଶ୍ଚୟ ପାଇଯିବ । ମୁଁ ମନ ସ୍ଥିର କରି ପାରୁ ନଥାଏ । ମୋର ଲକ୍ଷ୍ୟ ଥିଲା ସାମ୍ବାଦିକ ହେବି । ପ୍ରଜାତନ୍ତ୍ରରେ ଗୋପାଳ ମିଶ୍ର, ଦେବେନ୍ଦ୍ର ମହାନ୍ତି, ନଗେନ ବେଉରିଆ ଆଦିଙ୍କୁ ଦେଖି ମନ ଭିତରେ କେମିତି କେଜାଣି ସାମ୍ବାଦିକ ହେବାପାଇଁ ଭାରି ଇଚ୍ଛା ଥିଲା । ମାନସଦାଙ୍କ ପ୍ରେରଣାରେ ପ୍ରତିଦିନ ଷ୍ଟେଟ୍‌ସମ୍ୟାନ ପଢ଼ି ମୋର ଇଂରାଜୀ ଜ୍ଞାନ ବଢ଼ାଇବା ପାଇଁ ଉଦ୍ୟମ କଲି । ଅନେକ ଶବ୍ଦ ଗୋଟିଏ ଖାତାରେ ଲେଖି ତା'ର ଅର୍ଥ ଏବଂ ତା'ର ବାକ୍ୟରେ ବ୍ୟବହାର ସମ୍ପର୍କରେ ଶିଖିଲି ।

## -ସାମ୍ବାଦିକତାର ଅୟମାରମ୍ଭ-

ପ୍ରତି ସପ୍ତାହରେ ମୁଁ ବାଙ୍କୀ ଯାଉଥାଏ । ମଝିରେ ବାଙ୍କୀରେ ପ୍ରବଳ ବଢ଼ି ହୋଇ ବହୁ ଅଞ୍ଚଳ ବୁଡ଼ିଗଲା । କଟକ-ବାଙ୍କୀ, ଖୋରଧା-ବାଙ୍କୀ ରାସ୍ତା ବନ୍ଦ ହୋଇ ବାହାର ସହ ସବୁ କନେକ୍ସନ ଛିନ୍ନ ହୋଇଗଲା । ଆମେ କେତେଜଣ ପିଲା ମିଶି ସରକାରୀ ରିଲିଫ୍ ଡଙ୍ଗାରେ ଧରି କିଛି ଅଗମ୍ୟ ଅଞ୍ଚଳକୁ ଯାଇ ଲୋକଙ୍କୁ ଦେଲୁ । ପ୍ରାୟ ପନ୍ଦର ଦିନ ପରେ ବଢ଼ି ଛାଡ଼ିଲା ଓ ରାସ୍ତା ଯୋଗାଯୋଗ ହେଲା । ମୁଁ ବାଙ୍କୀରୁ ଆସି ବନ୍ୟା ଖବର ଓ କ୍ଷୟକ୍ଷତି ସମ୍ପର୍କରେ ସମାଜ, ପ୍ରଜାତନ୍ତ୍ର, ମାତୃଭୂମି ଏବଂ ଅମୃତ ବଜାର ପତ୍ରିକାକୁ ଦେଲି । ବେଶ୍ ବଡ଼ ଆକାରରେ ଲେଖି ଦେଲି । ବନ୍ୟାରେ ପାଞ୍ଚଜଣ ଲୋକ ଭାସିଯାଇ ପ୍ରାଣ ହରାଇବା ସହ ପଚାଶ ହଜାର ଏକର ଜମି ଜଳମଗ୍ନ ହେବା ଏବଂ ବାଙ୍କୀ ବାହାର ଜଗତରୁ ସମ୍ପୂର୍ଣ୍ଣ ବିଚ୍ଛିନ୍ନ ହୋଇ ରହିବା ସମ୍ପର୍କରେ ସମ୍ବାଦ ଲେଖି ଦେଲି । ଇଂରାଜୀରେ ଲେଖି ମାନସଦାଙ୍କୁ ତାକୁ ଦେଖାଇ ସଂଶୋଧନ କରି ଆଉଥରେ ଭଲଭାବେ ଲେଖି ଅମୃତ ବଜାର ପତ୍ରିକା ଅଫିସକୁ ଗଲି । ସେତେବେଳେ ଶେଖ୍ ବଜାରରେ ଅମୃତ ବଜାର ଅଫିସ୍ ଥିଲା । ଦି'ମହଲା କୋଠା । ସଚ୍ଚିନ୍ ଦତ୍ତ ନାମରେ ଜଣେ ବୟସ୍କ ଲୋକ ଅମୃତ ବଜାରର ପ୍ରତିନିଧି ଥିଲେ । ତାଙ୍କୁ ଭେଟି ଖବରଟି ଦେଲି । ମୋତେ ସାମନା ଚେୟାରରେ ବସିବାକୁ କହି ସେ ମୋ ସମ୍ବାଦଟି ପଢ଼ିଲେ । ତା'ପରେ ମୋତେ କହିଲେ ତୁମେ ଏ ସମ୍ବାଦ ଲେଖିଛ ? ମୁଁ ହଁ କଲି । ଗୋଟିଏ ଦୁଇଟି ସଂଶୋଧନ କରି ସେ କହିଲେ ଏତେ ବଡ଼ ନିଉଜ ବାହାରିବ ନାହିଁ । ଏହା ଛୋଟ କରି ଲେଖ । ମୁଁ

କହିଲି ସାର୍ ମୁଁ ଯାହା ଠିକ୍ ମନେ କଲି ତା' ଲେଖିଛି । ସେ କହିଲେ ତୁମେ କ'ଣ କରୁଛ ? ମୁଁ କହିଲି ଖ୍ରୀଷ୍ଟ କଲେଜରେ ପଢୁଛି ଏବଂ ପ୍ରଜାତନ୍ତ୍ରରେ ସାମ୍ବାଦିକତା କରୁଛି । ସେ ମୋତେ ଆଉଥରେ ଚାହିଁଲେ । କ'ଣ ଭାବିଲେ- ତା'ପରେ କହିଲେ ଯଦି ସାମ୍ବାଦିକତା କରୁଛ ତେବେ ତୁମେ ଲେଖିଥିବା ସମ୍ବାଦକୁ ନିଜେ ଏଡିଟ୍ କରି ଛୋଟ କରି ଲେଖ । ଅଗତ୍ୟା ମୁଁ ମୋ ସମ୍ବାଦଟି ଧରି ଉଠୁଥିଲି । ମାତ୍ର ସେ ମତେ କହିଲେ ଉଠୁଛ କୁଆଡ଼େ- ଏଇଠି ବସି ଲେଖ । ବଡ଼ ଅସୁବିଧାରେ ପଡ଼ିଲି । ଜଣେ ଶିକ୍ଷକ ଭଳି ସେ ମତେ ପରୀକ୍ଷା କଲେ । ମୁଁ ଆଉଥରେ ସମ୍ବାଦଟି ଲେଖିଲି । ଏଥର ଜମିବୁଡ଼ିଥିବା ପାରାଗ୍ରାଫଟି ଛୋଟ କରିଦେଲି ଏବଂ ଯେଉଁ ରାସ୍ତାଗୁଡ଼ିକ ବଢ଼ି ପାଣିରେ ବୁଡ଼ିଯାଇ ଥିଲା ତାକୁ ଗୋଟିଏ ପାରାଗ୍ରାଫ ବଦଳରେ ତିନୋଟି ବାକ୍ୟରେ ଲେଖିଲି । ମୂଳ ସମ୍ବାଦ ଅପେକ୍ଷା ଏ ସମ୍ବାଦଟି ପ୍ରାୟ ୪୦ ଭାଗ କମିଗଲା । ସଚ୍ଚିନ ବାବୁ ସମ୍ବାଦଟି ପଢ଼ିଲେ । ଦୁଇ ତିନୋଟି ସ୍ଥାନରେ ସାମାନ୍ୟ ସଂଶୋଧନ କଲେ । ତା'ପରେ ମୋତେ ଚାହିଁ କହିଲେ ତୁମେ ରହୁଛ କେଉଁଠି ? ମୁଁ ମୋ ମେସ୍ କଥା କହିଲି । ସେ କହିଲେ ତୁମର ତ ଇଂରାଜୀ ଲେଖା ଓ ଅକ୍ଷର ଭଲ । ଯେଉଁ ଖବର ପାଇବ ମତେ ଲେଖିକରି ଦିଅ । ମୁଁ ବିସ୍ମିତ ହେଲି । ଓଡ଼ିଆ କାଗଜରେ ସାମ୍ବାଦିକ ହେବା ପୂର୍ବରୁ ଇଂରାଜୀ ଖବର କାଗଜ ପାଇଁ ଲେଖିବା ପାଇଁ ପ୍ରସ୍ତାବ ଶୁଣି ମନଟା ଆନନ୍ଦରେ ନାଚି ଉଠିଲା । ମୁଁ ଚେଷ୍ଟା କରିବି ବୋଲି କହି ବିଦାୟ ନେଲି । ସେ କହିଲେ କାଲି କାଗଜରେ ତୁମ ଖବର ପ୍ରକାଶ ପାଇବ ଦେଖିବ ।

ପରଦିନ ଅମୃତ ବଜାର ପତ୍ରିକାରେ ମୋ ଖବରଟି ପ୍ରକାଶ ପାଇଥିଲା । ଜୀବନରେ ପ୍ରଥମ ଥର ପାଇଁ ଏକ ଇଂରାଜୀ ସମ୍ବାଦପତ୍ରରେ ମୋର ଖବର ପ୍ରକାଶ ପାଇବାର ସେ ଯେଉଁ ଅନୁଭୂତି ଆଜି ଏଇ ଅବସରରେ ପ୍ରକାଶ କରିବା ସମ୍ଭବ ନୁହେଁ । ଖବରଟି ବାଙ୍କୀ ଡେଟ୍‌ଲାଇନ୍‌ରେ ଫ୍ରମ ଏ କରେସ୍‌ପଣ୍ଡେଣ୍ଟ ବୋଲି ପ୍ରକାଶ ପାଇଥିଲା । ଜୀବନର ସେଇ ପ୍ରଥମ ଇଂରାଜୀ ଖବରଟିକୁ ଅନେକ ବନ୍ଧୁଙ୍କୁ ଦେଖାଇଥିଲି । ଛ' ସାତଟି କାଗଜ କିଣି ସେଥିମଧ୍ୟରୁ ଗୋଟିଏ ବାଙ୍କୀକୁ ପଠାଇଥିଲି । କହିବା ବାହୁଲ୍ୟ ସବୁ ଓଡ଼ିଆ ଖବର କାଗଜରେ ବଡ଼ ଆକାରରେ ବାଙ୍କୀ ଖବର ପ୍ରକାଶ ପାଇଥିଲା ।

ଏହି ଘଟଣା ପରେ ମନ ଭିତରେ କେଜାଣି କାହିଁକି ସାମ୍ବାଦିକ ହେବାପାଇଁ ପ୍ରବଳ ଝୁଙ୍କ୍ ହେଲା । ଜହ୍ନୁରୀ ଭାଇଙ୍କୁ ପଚାରିଲି । ସେ କହିଲେ ପଢ଼ା ଶେଷକରି ଏ ଲାଇନ୍‌କୁ ଆସ । ତାଙ୍କୁ ଇଂରାଜୀ ଖବରଟି ଦେଖାଇଲି । ସେ ପଢ଼ି କହିଲେ ବରେନ୍ଦ୍ର ତୋର ଇଂରାଜୀ ଜ୍ଞାନ ତ ଭଲ । ଏ ଅଭ୍ୟାସ ରଖିଥା । ପଢ଼ା ସହ ଲେଖାଲେଖି ଜାରି ରଖିଥା । ସାମ୍ବାଦିକ ହେବାପାଇଁ ସେଇ ପ୍ରଥମ ଅଭିଳାଷ ଚରିତାର୍ଥ କରିବା ପାଇଁ ମୁଁ ଲାଗିପଡ଼ିଲି । ଭଗବାନଙ୍କ ପାଖରେ ନିବେଦନ କଲି ପ୍ରଭୁ ମୋତେ ସହାୟ ହୁଅ ।

ବାଙ୍କୀ ବନ୍ୟା ଖବରଟି ପ୍ରକାଶ ପାଇବା ପରେ ଚାରିଆଡ଼େ ବେଶ୍ ଆଲୋଚନା ହୋଇଥିଲା । ବିଶେଷକରି ବାଙ୍କୀରେ । କାରଣ ସେତେବେଳେ ଇଂରାଜୀ ଖବର କାଗଜରେ ବାଙ୍କୀ ଖବର ପ୍ରକାଶ ପାଇବା ଏହି ପ୍ରଥମ । ସେତେବେଳେ କଲିକତାରୁ ହିନ୍ଦୁସ୍ଥାନ ଷ୍ଟାଣ୍ଡାର୍ଡ ନାମରେ ଏକ ଇଂରାଜୀ ଖବର କାଗଜ ମଧ କଟକ ଆସୁଥିଲା । ମୋର ଝୁଙ୍କ ହେଲା ସେ ଖବରଟି ହିନ୍ଦୁସ୍ଥାନ ଷ୍ଟାଣ୍ଡାର୍ଡରେ ଦେବାପାଇଁ । ସାଙ୍ଗେ ସାଙ୍ଗେ ଖବରଟିକୁ ଟିକିଏ ଏପଟ ସେପଟ କରି ଭଲଭାବେ ଖବରଟିକୁ ଲେଖି ରାଣୀହାଟ ଛକ ବାଦଲ ସେନ୍‌ଙ୍କ ଘରକୁ ଗଲି । ସେଠି ଷ୍ଟାର୍ଣ୍ଣଡ ଅଫିସ୍ ଥିଲା । ସେ କାଗଜର ପ୍ରତିନିଧି ଥିଲେ ବିଶିଷ୍ଟ ବାମପନ୍ଥୀ ନେତା ମନମୋହନ ମିଶ୍ର । ସୀମା ଆନ୍ଦୋଳନ ବେଳେ ସେ ମୋତେ ଜାଣିଥିଲେ । ଖବରଟି ନେଇ ତାଙ୍କ ଅଫିସ୍‌ରେ ପଶିଲି । ସେ ନଥିଲେ । ମାତ୍ର ସେଇ ଅଫିସ୍‌ରେ ଯିଏ ଟାଇପ୍ କରୁଥିଲେ

ସେ ମୋର ବାଙ୍କୀରୁ ଚିହ୍ନା । ଆମ ବାଙ୍କୀ ସ୍କୁଲ ହେଡ୍ ମାଷ୍ଟରଙ୍କ ପୁତୁରା । ଭଲ ଫୁଟବଲ୍ ଖେଳୁଥିଲେ । ଆଠଗଡ଼ ହାଇସ୍କୁଲ୍‌ରେ ପଢୁଥିଲେ ମଧ । ମଝିରେ ମଝିରେ ବାଙ୍କୀ ଯା'ନ୍ତି । ତାଙ୍କ ନାଁ ସ୍ମୃତି ରଞ୍ଜନ ପଟ୍ଟନାୟକ । ଆମେ ତାଙ୍କୁ ସୁରିତ ଭାଇ ବୋଲି ଡାକୁଥିଲୁ । ସେ ମୋତେ ଦେଖି ଭାରି ଖୁସି ହୋଇ ଗଲେ । ତାଙ୍କ ସାମ୍‌ନା ଚେୟାରରେ ବସାଇ କାହିଁକି ଆସିଛି ବୋଲି ପଚାରିଲେ । ମୁଁ ସବୁକଥା କହିବା ପରେ ମୋତେ ଖବରଟି ଦେବାକୁ କହିଲେ । ଏହି ସମୟରେ ମନମୋହନ ବାବୁ ଆସିଥିଲେ । ମୁଁ ତାଙ୍କୁ ନମସ୍କାର କରି ଖବରଟି ଦେଲି । ମତେ ସାଙ୍ଗେ ସାଙ୍ଗେ ଯଦିଓ ଚିହ୍ନି ପାରିଲେନି କିନ୍ତୁ ସୀମା ଆନ୍ଦୋଳନ ଓ ବଙ୍କି ବାବୁଙ୍କ ସାଙ୍ଗରେ ତାଙ୍କ ପାଖକୁ ଆସିବା କଥା ଶୁଣିବା ପରେ ମନେ ପଡ଼ିଲା । ସେ ଯାହା ହେଉ ଖବରଟି ଦେଲି । ତା'ପରେ ସୁରିତ ଭାଇଙ୍କ ସହ ବେଶ୍ ବନ୍ଧୁତା ଜମିଗଲା । ଦିନେ ସମ୍ଭବତଃ ୧୯୫୯ ନଭେମ୍ବର ମାସ ହେବ ବୋଧେ ଗୌରୀ ଶଙ୍କର ପାର୍କରେ ମୋତେ ସୁରିତ ଭାଇ କହିଲେ ବରି, ମୁଁ ମାତୃଭୂମିରେ ଜଏନ କଲି । ଷ୍ଟାଫ୍ ରିପୋର୍ଟର ଭାବେ । ଏଣିକି ଯାହା ପାରିବି ଲେଖିବି । ମୁଁ ସୁରିତ ଭାଇଙ୍କ କଥା ଶୁଣି ନିଜକୁ ମଧ ଭବିଷ୍ୟତରେ ଷ୍ଟାଫ୍ ରିପୋର୍ଟର କରି ପାରିବି ସେ ସମ୍ପର୍କରେ ଚିନ୍ତାକଲି । ମନକଥା ମନରେ ରଖିଲି ।

## -ସରକାରୀ ଅଫିସ୍‌ରେ କିରାଣି-

ଏଣେ କିନ୍ତୁ ନାରଣ ମାଉସା ମୋ ପିଛା ଲାଗିଥା'ନ୍ତି । ମୋତେ ନେଇ ଇଣ୍ଟରଭ୍ୟୁ କେଉଁଠି ହେବ କିଏ କରିବ ତା' ଦେଖାଇ ଦେଇ ନିଜେ ମୋ ପାଇଁ ଦରଖାସ୍ତ ଟାଇପ୍ କରିଦେଲେ । ପରେ ଇଣ୍ଟରଭ୍ୟୁ ଡାକ ଆସିଲା । ମୁଁ ଗଲି । ମୋ ଜୀବନର ସେଇ ପ୍ରଥମ ଓ ଶେଷ ସରକାରୀ ଚାକିରି ପାଇଁ ଇଣ୍ଟରଭ୍ୟୁ । ପନ୍ଦର ଦିନ ପରେ ଫଳ ବାହାରିଲା । ମୁଁ ମନୋନୀତ ହୋଇଥିଲି । ନିଯୁକ୍ତି ପତ୍ର ପାଇଲି । ମାସକୁ ଦରମା ସବୁମିଶି ୮୫ ଟଙ୍କା । ଜୀବନର ଏହା ଏକ ନୂଆ ଅଧ୍ୟାୟ । ପ୍ରତିଦିନ ସକାଳ ସାଢ଼େ ଦଶଟାରେ ଅଫିସ୍- ଫେରିଲା ପାଞ୍ଚାଟା । ଏ ଅଫିସ୍‌ଟି କାଳିଗଳିରେ ଥିଲା । ଆମ ମେସ୍ ପାଖରୁ ଖୁବ୍ କମ୍ ବାଟ । ଚାଲି ଚାଲି ଯାଏ । କଲେଜ କ୍ଲାସ ଆର୍ଟେଣ୍ଡ କରିବା ଟିକେ ଢିଲା ହୋଇଗଲା । କୌଣସିମତେ ଯାଇ କ୍ଲାସ୍ କରି ପଳାଇ ଆସେ । କିନ୍ତୁ ଅନ୍ୟ ଦିଗରେ ଏକ ସ୍ଥାୟୀ ଆୟର ପନ୍ଥା ଅନ୍ତତଃ ହୋଇ ଯିବାରେ ଆଶ୍ୱସ୍ତ ହେଲି । ମେସ୍‌ରେ ଅନେକ ସମୟରେ ରୋଷେଇ ହୁଏ ନାହିଁ । ତେଣୁ ମୁଁ ଚାନ୍ଦିନୀଚୌକ ଛକ ଓ୍ୱେଷ୍ଟର୍ଣ୍ଣ ହୋଟେଲ୍‌ରେ ଖିଆପିଆ କରୁଥିଲି । ଦୁଇଓଳି ମିଲ୍ ପଇଁତିରିଶ ଟଙ୍କାରୁ ଚାଳିଶ ଟଙ୍କା । ଘରଭଡ଼ା ଦଶଟଙ୍କା । ବାକି ଟଙ୍କାରେ ମଝିରେ ମଝିରେ ଭଲ ପ୍ୟାଣ୍ଟ-ସାର୍ଟ କରେ । ସେତେବେଳେ ମୋର ଡ୍ରେସ୍ ପ୍ରତି ଅନେକ ଦୁର୍ବଳତା ଥିଲା । ତେଣୁ ତିନି/ଚାରିମାସ ପରେ ଟଙ୍କା ଜମାଇ ଭଲ ଭଲ ଡ୍ରେସ୍ କରେ । ଡ୍ରେସ ମାନେ ପ୍ୟାଣ୍ଟ-ସାର୍ଟ ।

ଜୀବନଟା ଗଡ଼ି ଯାଉଥିଲା । ମହମଦିଆ ବଜାରରୁ ଖ୍ରୀଷ୍ଟ କଲେଜ ଏବଂ ପରେ କାଳିଗଳି ଇଷ୍ଟେଟ ଆବୋଲିସନ ଅଫିସ୍ । ଏଇ ଗତାନୁଗତିକ ଜୀବନରେ ବେଶ୍ କିଛି ପରିଚୟ ଆଉ ବନ୍ଧୁ ସୃଷ୍ଟି ହେଲେ । ହାଇକୋର୍ଟ ସାମନାରେ ସ୍ପୋର୍ଟସ ଏଣ୍ଡ ଗେମସ୍, ଅପ୍‌ଟିକୋ ଦୋକାନରେ ମାଲିକ ଗୋକୁଳି ଚୌଧୁରୀ ଆଉ ରାଧାଗୋବିନ୍ଦ ଚୌଧୁରୀ, ପରେ ରାଧାଗୋବିନ୍ଦ ଚୌଧୁରୀ ଭୁବନେଶ୍ୱର ଅଶୋକ ନଗରରେ ଅତ୍ୟାଧୁନିକ 'ଅପ୍ଟିକୋ' ଦୋକାନ ଓ ସୋ'ରୁମ୍ ଖୋଲିଲେ । ସେହିଦିନଠୁ ତାଙ୍କ ସହ ବନ୍ଧୁତା ପୁଣି ଜମି ଉଠିଲା ।

ଏଇ ଗତାନୁଗତିକ ଜୀବନରେ ମୋର ଲେଖା ଚାଲିଥାଏ । ଗଳ୍ପ, କବିତା ନିୟମିତ ପ୍ରକାଶ ପାଉଥାଏ । ମଝିରେ ମଝିରେ ମୀନା ବଜାର ଯାଇ ଲେଖା ମନୋନୟନ ମଧ କରୁଥାଏ । ବେଶ୍ ଖୁସିରେ ଖୁସିରେ ସମୟ ଗଡ଼ି ଚାଲିଥାଏ । କିନ୍ତୁ ମନ ଭିତରେ ସାମ୍ବାଦିକ ହେବାର ନିଶା ମୋର ଆହୁରି ଅଧିକ ହୋଇଯାଏ । ଥରେ ପ୍ରଜାତନ୍ତ୍ରରେ ସହ

ସମ୍ପାଦକ ହେବା ପାଇଁ ଦରଖାସ୍ତ ଦେଲି । ଆଶା କରି ବସିଥାଏ । କାରଣ ଜାନକୀ ବାବୁଙ୍କ ଠାରୁ ଆରମ୍ଭ କରି ସମସ୍ତେ ମୋତେ ଜାଣିଥା'ନ୍ତି । ରାମ ଭାଇଙ୍କୁ କହିଥାଏ । ସେ ମଧ ମୋ ପାଇଁ ଜାନକୀ ବାବୁଙ୍କୁ କହିଥା'ନ୍ତି । ସବୁ ବ୍ୟବସ୍ଥା ହୋଇଯା'ଏ । ଯେ କୌଣସି ମୁହୂର୍ତ୍ତରେ ମୁଁ ଡାକରା ପାଇବି ବୋଲି ଆଶା କରି ବସିଥାଏ । ପ୍ରତି ମୁହୂର୍ତ୍ତରେ ମୋ ପାଇଁ ଯୁଗଟିଏ ଭଳି ଲାଗୁଥାଏ । ସେତେବେଳେ ସୁରିତ ଭାଇଙ୍କ ନୟାସଡ଼କ ଓ ଚୌଧୁରୀ ବାରରେ ଅଖଣ୍ଡ ପ୍ରତାପ । ପ୍ରତିଦିନ ତାଙ୍କ ସାଙ୍ଗରେ ମୁଁ ମୋ ସାଇକେଲ ଧରି ବୁଲେ । ସେ ଗୋଟିଏ ଗୋଟିଏ ମାରୁଓ୍ବାଡ଼ି ଦୋକାନର ବାରଣ୍ଡାରେ ଗୋଡ଼ ଲଗାଇ ଡାକ ଦିଅନ୍ତି । ସେ ପଟୁ ଜଣେ ବାହାରି ଆସି ଖଣ୍ଡେ କ୍ୟାପଷ୍ଟେନ ସିଗାରେଟ ଓ ଦିଆସିଲି ବଢ଼େଇ ଦିଏ । ପ୍ରତିଦିନ ସୁରିତ ଭାଇ କମ୍‌ସେ କମ୍ ପନ୍ଦର ଖଣ୍ଡ ସିଗାରେଟ ଓ ସାତ/ ଆଠଟା ଦିଆସିଲି ଘରକୁ ଆଣେ । ମୁଁ ଦିନେ ପଚାରିଲି ଆଚ୍ଛା ସୁରିତ ଭାଇ ଏତେ ସିଗାରେଟ ଆଣି କ'ଣ କର ? ସେତେବେଳେ ମୁଁ ସିଗାରେଟ ଟାଣୁ ନଥାଏ । ଏପରିକି ଚା' ମଧ ପିଉ ନଥାଏ । ମୋର ଚା' ପିଆର ମଧ ଏକ ଗଳ୍ପ ରହିଛି । ତେବେ ସୁରିତ ଭାଇ ମୋତେ କହିଲେ ଆରେ କ୍ୟାପଷ୍ଟେନ ଦାମୀ ସିଗାରେଟ । ପ୍ୟାକେଟ ଟଙ୍କାଏ ଅଶୀ ପଇସା । କେତେ ଲୋକ ଏହାକୁ କିଣି ଖାଇବେ ? ତେଣୁ ମୋ ପାଖରେ ଏ ସବୁ ମୁଁ ରଖିଥାଏ । ପ୍ରତିଦିନ ନହେଲେ ମଧ ଗାଁରୁ ଅନେକ ବନ୍ଧୁ ଆସନ୍ତି । ଏପରିକି କଟକରୁ ମଧ ବନ୍ଧୁମାନେ ଆସନ୍ତି । କ୍ୟାପଷ୍ଟେନ୍ ସିଗାରେଟ ଦେଖି ସେମାନଙ୍କ ମିଜାଜ୍ ଖୁସ୍ ହୋଇଯାଏ । ତୁ ଜାଣୁନା ଥାନା ବଡ଼ବାବୁ ଆଉ ସେକେଣ୍ଡ ବାବୁଙ୍କୁ ଖଣ୍ଡେ ଖଣ୍ଡେ କ୍ୟାପଷ୍ଟେନ ଧରେଇ ଦେଲେ ଅନେକ ଖବର ମିଳେ । ଦାମୀ ସିଗାରେଟର ଲୋଭ ଅନେକଙ୍କର ଥାଏ, ବିଶେଷ କରି ଯେଉଁମାନେ ସିଗାରେଟ ଟାଣନ୍ତି । ସେ ମୋତେ କହିଲେ ଆମ କାଗଜ ମାନଙ୍କରେ ଥାନା ଖବର ବେଶୀ ଥାଏ । ତେଣୁ ଥାନାବାବୁମାନଙ୍କୁ ଖୁସି କରିବା ଦରକାର ।

ସୁରିତ ଭାଇ ପାଖରୁ ଏକଥା ଶୁଣି ବିସ୍ମିତ ହେଲି । ଖବର ପାଇବାର ଗୁଢ଼ ରହସ୍ୟ । ମୁଁ ପଚାରିଲି ତେବେ କେହି କେହି ତ ମଦ ଚାହୁଁଥିବେ ? ସେ କହିଲେ ସିଏ ଆଉ ନୂଆ କଥା କ'ଣ ? ମଝିରେ ମଝିରେ ଯେତେବେଳେ ମୁଁ ପାଏ ଦୁଇ/ ତିନିଜଣଙ୍କୁ ଡାକି ବସାଏ । ଖାଇବା ପାଇଁ ଜଣେ ଜାଣ ଯୋଗାଡ଼ ହୋଇଥାଏ । ମୁଁ ପଚାରିଲି ତୁମେ କ'ଣ ମଦ ପିଅ ? ସେ କହିଲେ ମୁଁ ପିଇବା କ'ଣ ଦରକାର । ଯାହାକୁ ଡାକିଥାଏ ସେମାନେ ପିଇ ମସ୍‌ଗୁଲ । ତା'ପରେ କିଛିଦିନ ବହୁ ଭିତିରିଆ ଖବର ଥାନାରୁ ମିଳେ । ମଝିରେ ଏଭଳି ଖବର ମିଳେ ଯାହା ପୁରାପୁରି ମାତୃଭୂମିର ଏକ୍ସକ୍ଲୁସିଭ୍ । ପରେ ପ୍ରଜାତନ୍ତ୍ର, ସମାଜରେ ପାଟିତୁଣ୍ଡ ହୁଏ- ଏ ଖବର ପାଇଁ । ସୁରିତ ଭାଇଙ୍କ ସଙ୍ଗେ ଅନ୍ତରଙ୍ଗ ହେଲା ପରେ ମଧ ମୁଁ କେବେ ମାତୃଭୂମି ଅଫିସ୍‌କୁ ଯାଇ ନଥିଲି । କାରଣ ମୋ ମନ ଲାଗିଥାଏ ପ୍ରଜାତନ୍ତ୍ରରେ ସାମ୍ବାଦିକ ହେବାପାଇଁ । ମାତ୍ର ସମୟ ଯେତିକି ଗଡ଼ି ଚାଲିଥାଏ ମୋ ମନରେ ପ୍ରଜାତନ୍ତ୍ରର ସାମ୍ବାଦିକ ହେବାର ନିଶା ମଉଳି ଯାଉଥାଏ । କିନ୍ତୁ ପୁରାପୁରି ନିରାଶ ନହୋଇ ସମୟକୁ ଅପେକ୍ଷା କରିଥାଏ ।

ଆର୍ଥିକ ଦୃଷ୍ଟିରୁ ସରକାରୀ ଚାକିରି ନିରାପତ୍ତା ପ୍ରଦାନ କଲେ ମଧ ମୋ ମନରେ ସେ ଚାକିରି ପାଇଁ ସେତେ ଆଗ୍ରହ ନଥିଲା । ମୁଁ ଯେନତେନ ଉପାୟରେ ସାମ୍ବାଦିକ ହେବି ବୋଲି ଚାହୁଁଥିଲି । ଧୀରେ ଧୀରେ କେତେକ ସମ୍ବାଦ ମଧ ବିଭିନ୍ନ କାଗଜକୁ ଦେଉଥାଏ । ସେ ସବୁ ମଧ ପ୍ରକାଶ ପାଉଥାଏ । ଫଳରେ ମୋ ମନରେ ସାମ୍ବାଦିକତା ପ୍ରତି ବେଶ୍ ଝୁଙ୍କ୍ ଆସିଲା । ଏଣେ ଚାକିରି ତେଣେ ଗପ-କବିତା ଲେଖି ମୁଁ ସବୁ କାଗଜର ସାପ୍ତାହିକ ସଂଖ୍ୟାକୁ ପଠାଉଥିଲି । ତା' ମଧ ପ୍ରକାଶ ପାଉଥାଏ । ସେତେବେଳେ ପୂଜା ବେଳେ ମାତୃଭୂମି କାଗଜର ଏକ ସ୍ୱତନ୍ତ୍ର ସଂଖ୍ୟା ପୁସ୍ତକ ଆକାରରେ ପ୍ରକାଶ ପାଉଥାଏ । ମୁଁ ଗୋଟିଏ ଗଳ୍ପ ଲେଖି ମାତୃଭୂମିକୁ ପଠାଇଲି । ଇତି ମଧ ବିଜୁ ପଟ୍ଟନାୟକ କଳିଙ୍ଗ ନାମରେ ଏକ ଖବର କାଗଜ ପ୍ରକାଶ କଲେ । କଳିଙ୍ଗରେ ସାମ୍ବାଦିକ ରୂପେ ଯୋଗ ଦେବାପାଇଁ ଏକ ପ୍ରକାର ପ୍ରତିଯୋଗିତା ଚାଲିଲା ।

ସମାଜ, ପ୍ରଜାତନ୍ତ୍ର ଓ ମାତୃଭୂମି ଅପେକ୍ଷା ପାଖାପାଖି ଦି'ଗୁଣ ଦରମା କଳିଙ୍ଗ କାଗଜ ଦେଲା । ମୋର ଯାହା ମନେ ପଡୁଛି ସେତେବେଳେ ସମାଜରେ ସବ୍ ଏଡିଟରମାନଙ୍କର ଦୁଇଶହରୁ ଅଢ଼େଇଶହ, ପ୍ରଜାତନ୍ତ୍ରରେ ଦୁଇଶହ ଏବଂ ମାତୃଭୂମିରେ ଶହେ ପଞ୍ଚସ୍ତରୀ ଟଙ୍କା ଦରମା ଥାଏ । ମାତ୍ର କଳିଙ୍ଗ କାଗଜ ସାଢ଼େ ତିନିଶହ ଟଙ୍କା ଦରମା ଦେଲା । ପୁରୁଣା ସାମ୍ବାଦିକମାନଙ୍କୁ ପାଞ୍ଚଶହ, ଛଅଶହ ଟଙ୍କା ଦରମା ଦେଲା । ତେଣୁ ସବୁ କାଗଜର ସାମ୍ବାଦିକଙ୍କ ମଧ୍ୟରେ ପ୍ରତିଯୋଗିତା ଚାଲିଲା । ମାତୃଭୂମିରୁ ରବିବାର ମାତୃଭୂମି ଦାୟିତ୍ୱରେ ଥିବା ଭାନୁଜୀ ରାଓ, ଷ୍ଟାଫ୍ ରିପୋର୍ଟର ସୁରିତ ଭାଇ ଓ ଖେଳ ସାମ୍ବାଦିକ ଗୋଲକ ଦାସ କଳିଙ୍ଗରେ ଯୋଗ ଦେଲେ । ସବୁ ପୁରୁଣା କାଗଜରେ ଊଣା ଅଧିକେ ଅନେକ ସାମ୍ବାଦିକ ପଦ ଖାଲି ରହିଥିଲା ।

୧୯୬୦ ପୂଜା ସଂଖ୍ୟା ପାଇଁ ମୋ ଗଳ୍ପ ମାତୃଭୂମିକୁ ପଠାଇଥିଲି । ପୂଜା ପୂର୍ବରୁ ଦିନେ ମାତୃଭୂମି ଅଫିସ୍‌କୁ ଗଲି ମୋର ଗଳ୍ପଟି ପ୍ରକାଶ ପାଇଛି କି ନାହିଁ ବୁଝିବା ପାଇଁ । ସେତେବେଳେ ମାତୃଭୂମିର ସଂପାଦକ ଥିଲେ ଗୌରଚନ୍ଦ୍ର ରାଉତ । ଦୀର୍ଘକାୟ ଓ ତମ୍ବା ବର୍ଣ୍ଣର ବେଶ୍ ଶକ୍ତିଶାଳୀ ବ୍ୟକ୍ତିତ୍ୱ । ଯୁଗ୍ମ ସମ୍ପାଦକ ଥିଲେ ବିଚିତ୍ରାନନ୍ଦ କର । ମାତୃଭୂମି ପ୍ରତିଷ୍ଠାତା ବାଳକୃଷ୍ଣ କରଙ୍କ ଜ୍ୟେଷ୍ଠପୁତ୍ର । ସେ ହିଁ ମାତୃଭୂମି ମାଲିକ । ମୁଁ ମାତୃଭୂମିରେ କାହାରିକୁ ଚିହ୍ନି ନଥିଲି । ଦରଘା ବଜାର ଜେଲ୍ ରୋଡ଼ରେ ମାତୃଭୂମି ଅଫିସ୍ । ବେଶ୍ ଲମ୍ବା କୋଠା । ସମ୍ଭବତଃ ସେତେବେଳେ କଟକର ସବୁଠୁ ଲମ୍ବା କୋଠା । ଏବେ ମଧ୍ୟ ଏତେ ବଡ଼ କୋଠା କାହାର ଅଛି ମୋର ମନେ ହୁଏ ନାହିଁ ।

ମୁଁ ମାତୃଭୂମିରେ କାହାରିକୁ ଚିହ୍ନି ନଥିଲି । ଗୌର ବାବୁ, ବିଚି ବାବୁଙ୍କ ନାଁ ଶୁଣିଥିଲି । ମାତ୍ର ସେତେବେଳ ପର୍ଯ୍ୟନ୍ତ ଦେଖିବାର ବା ପରିଚୟ ହେବାର ସୁଯୋଗ ନଥିଲା । ଲେଖା ପ୍ରକାଶ ପାଇଛି ନାହିଁ ଜାଣିବାକୁ ମୁଁ ଡରି ଡରି ମାତୃଭୂମି ଉପର ମହଲାକୁ ଗଲି । ମାତୃଭୂମି ଉପର ମହଲାରେ କମ୍ପୋଜଖାନା, ସମ୍ପାଦକୀୟ ସହ, ସମ୍ପାଦକ ମ୍ୟାନେଜରଙ୍କ ଅଫିସ୍ ଥିଲା । ମୁଁ ଅଫିସରୁ ଫେରି ସାଢ଼େ ପାଞ୍ଚଟା ବେଳକୁ ମାତୃଭୂମି ଗଲି । ଉପର ମହଲାର ପ୍ରଥମ କୋଠରୀ ମ୍ୟାନେଜରଙ୍କର ଏବଂ ଦ୍ୱିତୀୟ କୋଠରୀଟି ସମ୍ପାଦକୀୟ ବିଭାଗ । ଗୋଟିଏ ବଡ଼ ହଲ୍‌କୁ କାଠପଟାରେ ଦୁଇଭାଗ କରି ମ୍ୟାନେଜମେଣ୍ଟ ଓ ସମ୍ପାଦକୀୟ ବିଭାଗ ଥାଏ । ମଝିରେ ପଟାକୁ କାଟି ଟେଲିଫୋନ୍ ରଖା ଯାଇଥାଏ । ମ୍ୟାନେଜର ଓ ଏଡିଟର ବା ଜଏଣ୍ଟ ଏଡିଟର ସେଇ ଗୋଟିଏ ଫୋନ୍‌ରେ କାମ ଚଳାନ୍ତି । ମୁଁ ଦ୍ୱିତୀୟ କୋଠରୀ ଭିତରକୁ ଯାଇ ଦେଖିଲି ଜଣେ ବାବୁ କ'ଣ ଲେଖୁଥିଲେ । ମୋତେ ଦେଖି ଆଖି ଟେକି ଚାହିଁଲେ । ମୁଁ ନମସ୍କାର କଲି । କହିଲି ବିଚିତ୍ରାନନ୍ଦ ବାବୁଙ୍କୁ ଖୋଜୁଛି । ସେ ହସିଲେ କହିଲେ ମୁଁ ବିଚିତ୍ରାନନ୍ଦ କର । ମୁଁ ଆଉ ଥରେ ନମସ୍କାର କଲି । ସେ କହିଲେ ଆପଣ.. । ମୁଁ ମୋ ନାଁ କହିଲି ଏବଂ ମୋ ଗଳ୍ପଟି ପ୍ରକାଶ ପାଇଛି କି ନାହିଁ ସେ ସମ୍ପର୍କରେ ଧୀରେ ଧୀରେ ପଚାରିଲି । ସେ ମୋ କଥା ଶୁଣିଲେ କି ନାହିଁ ଜଣାନାହିଁ । ପଚାରିଲେ ଆପଣ କ'ଣ କରୁଛନ୍ତି ? ମୁଁ ଖ୍ରୀଷ୍ଟ କଲେଜ ଓ ଇଷ୍ଟେଟ୍ ଆବୋଲିସନ୍ ଅଫିସ୍ କଥା କହିଲି । ସେ କହିଲେ ଆପଣ ପ୍ରଜାତନ୍ତ୍ରରେ ଥିଲେ ବୋଲି ମୋତେ କିଏ କହୁଥିଲା । ମୁଁ କହିଲି ନାଁ ମୁଁ ଜହୁରୀ ଭାଇଙ୍କ ଆସିଷ୍ଟାଣ୍ଟ ଭାବେ କିଛିଦିନ କାମ କରୁଥିଲି । ମଝିରେ ମଝିରେ ପି.ଟି.ଆଇ. ସମ୍ବାଦର ଅନୁବାଦ କରୁଥିଲି । ବିଚି ବାବୁ ମୋତେ ବସିବାକୁ କହିଲେ । ମୁଁ ବସିଲି । ସେ ହଠାତ୍ ମୋତେ ପଚାରିଲେ ଆପଣଙ୍କର ତ ଅନେକ ଲେଖା ପ୍ରକାଶ ପାଉଛି । ଆପଣଙ୍କ ଭାଷା ତ ବେଶ୍ ଭଲ । ସାମ୍ବାଦିକତା କରୁନାହାନ୍ତି । ମୁଁ ଆଶ୍ଚର୍ଯ୍ୟ ହୋଇ ବିଚିବାବୁଙ୍କ ମୁହଁକୁ ଚାହିଁଲି । କହିଲି ସୁଯୋଗ ପାଇଲେ କରିବି । ସେ ପଚାରିଲେ ମାତୃଭୂମିରେ ଯୋଗଦେବେ ? ମୁଁ ବୋକା ବନିଗଲି । ବିଶ୍ୱାସ କରି ପାରିଲି ନାହିଁ । ଜୀବନରେ ଯେଉଁଥିପାଇଁ ମୁଁ ଈଶ୍ୱରଙ୍କ ପାଖରେ ମୋର ନିବେଦନ କରୁଥିଲି ତାହା ମୋ ହାତ ମୁଠାକୁ ଏଭଳି ଭାବେ ଆସିବ ମୋ କଳ୍ପନାରେ ନଥିଲା । ମୁଁ କହିଲି ଆପଣ ଚାହିଁଲେ ମୁଁ ଯୋଗ ଦେବି । ବିଚି ବାବୁ କହିଲେ ଆପଣ କାଲିଠାରୁ ଆସି ଯୋଗ ଦିଅନ୍ତୁ । ମୁଁ

କହିଲି ଚାକିରିରୁ ମୁଁ ଇସ୍ତଫା ଦେବାକୁ ପଡ଼ିବ । ତେଣୁ ସମୟ ଦରକାର । ପୂଜାଛୁଟି ପରେ ମୁଁ ଆସି ଯୋଗଦେବି । ସେ କହିଲେ ଠିକ୍ ଅଛି । ମୁଁ ବିଚି ବାବୁଙ୍କ କଥାରେ ଏଭଳି ବିଭୋର ହୋଇ ଯାଇଥିଲି ଯେ ମୋର ଗଳ୍ପ ପ୍ରକାଶ ପାଇଛି କି ନାହିଁ ସେ କଥା ପଚାରିବାକୁ ପୁରାପୁରି ଭୁଲିଗଲି । କିନ୍ତୁ ମୁଁ ଫେରିବାକୁ ବୁଲି ପଡ଼ିଲା ବେଳକୁ ବିଚିବାବୁ ଡାକିଲେ ବରେନ୍ଦ୍ର ବାବୁ ଆପଣଙ୍କ ଗଳ୍ପ ଦେଖିବେ ନାହିଁ । ମୁଁ ସଂବିତ୍ ଫେରି ପାଇଲି । ଯେଉଁଥିପାଇଁ ଆସିଥିଲି ସେ କଥା ଭୁଲି ଯାଇଥିଲି । ବିଚି ବାବୁ ତାଙ୍କ ଡ୍ର' ଖୋଲି 'ମାତୃଭୂମି'ର ଖଣ୍ଡିଏ ପୂଜାସଂଖ୍ୟା ମୋ ହାତକୁ ବଢ଼ାଇ ଦେଲେ । କହିଲେ ଆଜି ପ୍ରକାଶ ପାଇଲା । ଆପଣ ପ୍ରଥମ କପି ପାଇଲେ । ଆପଣଙ୍କ ଗଳ୍ପଟି ପ୍ରକାଶ ପାଇଛି । ଭଲ ହୋଇଛି । କଂଗ୍ରାଚୁଲେସନ୍ । ମୁଁ ମାତୃଭୂମି ପୂଜା ସଂଖ୍ୟାଟି ପାଇ କୃତକୃତ୍ୟ ହୋଇଗଲି । ଜୀବନରେ ସେଦିନର ଆନନ୍ଦ ସମ୍ଭବତଃ ଖୁବ୍ କମ୍ ପାଇଛି । ଆଜି ଯେତେବେଳେ ସେ ଦିନର କଥା ମନକୁ ଆସେ ଏବେ ମଧ ଦେହରେ ଶିହରଣ ଖେଳିଯାଏ । ହଠାତ୍ ସମ୍ପତ୍ତି ସହ ଭାର୍ଯ୍ୟାଲାଭ ଭଳି ଘଟଣା । ମାତୃଭୂମିରେ ସହ ସମ୍ପାଦକ ଚାକିରି ସାଙ୍ଗକୁ ପୂଜା ସଂଖ୍ୟାରେ ମୋ ଗଳ୍ପ ପ୍ରକାଶ ପାଇବା ମୋ ଜୀବନରେ ଏକ ନୂତନ ଅଧାୟର ସୂତ୍ରପାତ । ତେବେ ମାତୃଭୂମିରେ ପ୍ରକୃତରେ ମୋତେ ନିଯୁକ୍ତି ମିଳିବ କି ନାହିଁ ସେ ସମ୍ପର୍କରେ ସନ୍ଦିହାନ ଥିଲି । ଭାବିଲି ଭୁଲ୍ କରିଦେଲି କି ? କାଲି ଯୋଗ ଦେଇଥିଲେ ଭଲ ହୋଇଥା'ନ୍ତା । ମାତ୍ର ପକାଇଲା ଛେପ ଚୋକିବାକୁ ମନ ହେଲା ନାହିଁ । ଅଗତ୍ୟା ପୂଜା ଛୁଟି ପରକୁ ଅପେକ୍ଷା କରିବାକୁ ହେଲା ।

ଜୀବନରେ ଯେଉଁ ଅଭିଳାଷ ଥିଲା, ଯେଉଁଥିପାଇଁ ମୁଁ ମନେ ମନେ ଠାକୁରଙ୍କୁ ସଦାବେଳେ ପ୍ରାର୍ଥନା କରୁଥିଲି ତା' ଏତେଶୀଘ୍ର ଯେ ହାତ ପାହାନ୍ତାରେ ପାଇଯିବି ତାହା ମୋର କଳ୍ପନାରେ ମଧ ନଥିଲା । ସେଦିନ ସେଇ କୋଠରୀରେ ବିଚିବାବୁଙ୍କ ସହ ଆଉ ଦୁଇଜଣ ବ୍ୟକ୍ତି ଥିଲେ । ଜଣେ ମାତୃଭୂମିର ସମ୍ପାଦକ ଗୌରଚନ୍ଦ୍ର ରାଉତ ଏବଂ ଆଉଜଣେ ଶୀର୍ଣ୍ଣକାୟ, ମୁହଁରେ ଅଯନ୍ତ ବର୍ଦ୍ଧିତ ପାଚିଲା ଦାଢ଼ି ଓ କେଶରାଜି, ପରିଧାନରେ ଖଦଡ଼ ମୋଟା ଧୋତି ଓ ପଞ୍ଜାବି ପରିହୀତ ବ୍ୟକ୍ତି । ବିଚିବାବୁ ପରିଚୟ କରାଇ ଦେଲେ ଆମ ସମ୍ପାଦକ ଗୌରଚନ୍ଦ୍ର ରାଉତ ଏବଂ ନିଉଜ ଏଡିଟର ଯୋଗେନ୍ ବୋଷ । ସମସ୍ତଙ୍କୁ ଆମେ ପ୍ରଣାମ କଲୁ । ବିଚିବାବୁ ଗୌରବାବୁଙ୍କୁ କହିଲେ ଇଏ ବରେନ୍ଦ୍ର କୃଷ୍ଣ ଧଳ । ଏଥର ଆମ ପୂଜାସଂଖ୍ୟାରେ ତାଙ୍କ ଗଳ୍ପ ଛପା ହୋଇଛି । ବିଭିନ୍ନ ପତ୍ର-ପତ୍ରିକାରେ ତାଙ୍କର ଗଳ୍ପ- କବିତା ଛପା ହେଉଛି । ଭାଷା ଭଲ । ଆମ କାଗଜରେ ତାଙ୍କୁ ସାମ୍ବାଦିକତା କରିବା ପାଇଁ କହିଛି । ଗୌରବାବୁ ବିଚିବାବୁଙ୍କ କଥା ଶୁଣି ମୁହଁ ଟେକି ଚଷମା ତଳୁ ଆମକୁ କିଛି ସମୟ ନିରୀକ୍ଷଣ କଲେ । ତା'ପରେ ପଚାରିଲେ ଆପଣଙ୍କ ଘର କେଉଁଠି ? ମୁଁ କହିଲି ବାଙ୍କୀ ଚର୍ଚ୍ଚିକାରେ । ସେତିକି ମାତ୍ର ଇଣ୍ଟରଭ୍ୟୁ । ବିଚିବାବୁ ଆମ ଠାରେ କ'ଣ ଦେଖିଲେ ଏବେ ମଧ ଆମେ ଜାଣିନୁ । କିନ୍ତୁ ତାହାହିଁ ଆମକୁ ମାତୃଭୂମିର ସହ ସମ୍ପାଦକ ଓ ରିପୋର୍ଟର ଭାବେ ନିଯୁକ୍ତି ଦେଇଥିଲା ।

ପୂଜା ପରେ ଆମେ ମାତୃଭୂମିରେ ଯୋଗ ଦେବା ପାଇଁ ବିଚିବାବୁଙ୍କୁ କହି ଫେରିଲୁ । ମାତୃଭୂମି ଖବର କାଗଜ ସେତେବେଳେ ଏକମାତ୍ର ଅଣରାଜନୀତିକ ଟାଣୁଆ କାଗଜ । ମାତୃଭୂମିର ଗୋଟିଏ ଗୋଟିଏ ସମ୍ବାଦ, ସମ୍ପାଦକୀୟ ଓ ସ୍ତମ୍ଭ ରାଜ୍ୟରେ ଚହଳ ପକାଇ ଦେଉଥାଏ । ମହିଷାମର୍ଦ୍ଦିନୀ ମା' ଦୁର୍ଗାଙ୍କ ଶାରଦୀୟ ଉତ୍ସବର ଅବ୍ୟବହିତ ପରେ ସାମ୍ବାଦିକତାରେ ଆମର ଖଡ଼ିଛୁଆଁ ହୋଇଗଲା । ଆଜି ଆମ ସାମ୍ବାଦିକତା ଜୀବନର ପଚାଶ ବର୍ଷ ପାର କରି ଆସିଲୁଣି । ଆମେ ଜାଣୁନା ସାମ୍ବାଦିକ ରୂପେ ଆମେ କେତେଦୂର ସଫଳ ହୋଇଛୁ ? ତେବେ ଏତିକି ସନ୍ତୋଷ ଯେ ଜୀବନର ଏହି ଦୀର୍ଘ ସାଢ଼େ ପାଞ୍ଚଦଶନ୍ଧି ମଧରେ ଆମେ ଜଣେ ନିଚ୍ଛକ ସାମ୍ବାଦିକ ରୂପେ କାର୍ଯ୍ୟ କରି ଆସିଛୁ । ଏହି ଦୀର୍ଘ ପଥରେ ଆମେ ଠାକୁର ଆଉ ଆମ ପିତା-ମାତାଙ୍କ ବ୍ୟତୀତ ଆଉ କାହାରି ପାଖରେ ମୁଣ୍ଡ ନୁଆଁଇଁ ନାହୁଁ କିମ୍ବା

ହାତ ପତାଇ ନାହୁଁ । ତାହାହିଁ ଆମକୁ ସାହସ ଦେଇଛି ନିରପେକ୍ଷ ଏବଂ ବିନାଭୟରେ ନିଜ କର୍ତ୍ତବ୍ୟ ସମ୍ପାଦନ କରିବା ପାଇଁ । ଆମେ ମାତୃଭୂମିରେ ଯୋଗ ଦେଲୁ ଅକ୍ଟୋବର ୧୮ ତାରିଖ ୧୯୬୦ ମସିହା । ସେତେବେଳେ ସାଙ୍ଗେ ସାଙ୍ଗେ ସ୍ଥାୟୀ ନିଯୁକ୍ତି ମିଳୁ ନଥିଲା । ବର୍ଷକ ପାଇଁ ଅସ୍ଥାୟୀ ଭାବେ କାର୍ଯ୍ୟ କରିବାକୁ ପଡୁଥିଲା । ବର୍ଷକ ପରେ ସ୍ଥାୟୀ ନିଯୁକ୍ତି ଦିଆଯାଉଥିଲା । ଆମେ ୧୯୬୨ ମସିହା ଅକ୍ଟୋବର ୧୮ ତାରିଖରେ ସ୍ଥାୟୀ ନିଯୁକ୍ତି ପାଇଲୁ । ଏହି ନିଯୁକ୍ତିର ଏକକିତା ନକଲ ଏଠି ସନ୍ନିବେଶିତ କଲୁ ।

ମାତୃଭୂମି ସହ ମୋ ସମ୍ପର୍କ ଦୀର୍ଘ ପଚିଶ ବର୍ଷର । ୧୯୮୬ ମସିହା ମାର୍ଚ୍ଚ ୧ ତାରିଖ ଦିନ ମୁଁ ଭୁବନେଶ୍ୱରରୁ ପ୍ରକାଶ ପାଉଥିବା ସ୍ୱରାଜ୍ୟ ଖବର କାଗଜର ସମ୍ପାଦକ ରୂପେ ଏକ ପ୍ରକାର ବାଧ ହୋଇ ଯୋଗ ଦେଲି । ମୁଁ ଯୋଗଦେବା ସମୟରେ ମାତୃଭୂମି ସେତେବେଳର ଏକ ଟାଣୁଆ ଖବର କାଗଜ ରୂପେ ଜଣାଶୁଣା ଥିଲା । ତିନିବର୍ଷ ପୂର୍ବେ ସୁରିତ ଭାଇ ମାତୃଭୂମିର ଷ୍ଟାଫ୍ ରିପୋର୍ଟର ରୂପେ ଯୋଗ ଦେବା ପରେ ଗୌରୀଶଙ୍କର ପାର୍କରେ ମୋତେ ଯାହା କହିଥିଲେ ତାହା ମନେ ପଡ଼ିଲା । ଏବେ ମୁଁ କଟକ ସହରରେ ତାଙ୍କ ସ୍ଥାନରେ ସେଇ ମାତୃଭୂମିର ଷ୍ଟାଫ୍ ପ୍ରତିନିଧି ।

ମାତୃଭୂମିର ପ୍ରତିଷ୍ଠାତା ଥିଲେ ବାଳକୃଷ୍ଣ କର । ସାଲେପୁରର ଢିଗ୍ନିପୁର ଠାରେ ୧୮୮୭ ମସିହାରେ ଜନ୍ମଗ୍ରହଣ କରିଥିବା ବାଳକୃଷ୍ଣ କର ଓଡ଼ିଆ ସାମ୍ବାଦିକତା କ୍ଷେତ୍ରରେ ଏକ ନୂତନ ଯୁଗ ସୃଷ୍ଟି କରିଥିଲେ । ସେତେବେଳେ ସାମ୍ବାଦିକତା କ୍ଷେତ୍ରରେ ମାତୃଭୂମି ଥିଲା ଏକମାତ୍ର ନିର୍ଭିକ, ନିରପେକ୍ଷ ଖବର କାଗଜ । ସମ୍ବାଦପତ୍ର ମାଧ୍ୟମରେ ବାଳକୃଷ୍ଣ ଓଡ଼ିଶାକୁ ଏକ ନୂତନ ମାର୍ଗର ସନ୍ଧାନ ଦେଇଥିଲେ । ତାଙ୍କ ସମୟରେ ପ୍ରକାଶ ପାଉଥିବା ସମାଜ ଓ ପ୍ରଜାତନ୍ତ୍ର କଂଗ୍ରେସ ଦଳ ନେତାମାନଙ୍କର କାଗଜ ଥିଲା । ପରେ ୧୯୫୬ରେ ଗଣତନ୍ତ୍ର ଖବର କାଗଜ ଗଣତନ୍ତ୍ର ପରିଷଦ ଦଳ ପକ୍ଷରୁ ପ୍ରକାଶ ପାଇଲା । ବାଳକୃଷ୍ଣ କର ଜୀବନ ସୀମା ଥିଲା ୧୮୮୭ରୁ ୧୯୫୭ । ମୋଟ ସତୁରି ବର୍ଷ । ତାଙ୍କର ଏହି ଜୀବନକାଳ ମଧ୍ୟରେ ସେ ଓଡ଼ିଶାରେ ଜଣେ ଯୁଗପୁରୁଷ ରୂପେ ରହି ଯାଇଛନ୍ତି । ବାଳକୃଷ୍ଣ କରଙ୍କର ଜ୍ୟେଷ୍ଠପୁତ୍ର ଥିଲେ ବିଚିତ୍ରାନନ୍ଦ କର । ପିତାଙ୍କ ମୃତ୍ୟୁପରେ ସେ ମାତୃଭୂମିର ଦାୟିତ୍ୱ ନେଇଥିଲେ । ବିଚିବାବୁଙ୍କ ଜୀବନକାଳ ହେଉଛି ୧୯୨୯ରୁ ୧୯୮୭ । ମୋଟ ୬୮ ବର୍ଷ । ଯଦି ବିଚିବାବୁ 'ମାତୃଭୂମି'ର କେବଳ ସଂପାଦକ ରୂପେ ସ୍ୱାଧୀନ ଭାବେ କାର୍ଯ୍ୟକରି ଥା'ନ୍ତେ ତେବେ ସେ ତାଙ୍କ ପିତାଙ୍କ ଅପେକ୍ଷା ଆହୁରି ଶକ୍ତିଶାଳୀ ସାମ୍ବାଦିକ ହୋଇ ପାରିଥା'ନ୍ତେ । ମାତ୍ର ଖବର କାଗଜ ଚଳାଇବା ପାଇଁ ଯେଉଁ ଅର୍ଥ ଆବଶ୍ୟକ ସେ ଅର୍ଥ ଯୋଗାଡ଼ କରିବାକୁ ଯାଇ ତାଙ୍କୁ ସାମ୍ବାଦିକତା ସହ ରାଜନୀତିର ଆଶ୍ରୟ ନେବାକୁ ପଡ଼ିଲା । ଯାହା ତାଙ୍କୁ ତାଙ୍କ ପଥରୁ ବିଚ୍ୟୁତ କରିଥିଲା । ୧୯୭୪ରେ ସେ ନନ୍ଦିନୀ ଶତପଥୀଙ୍କ ଡାକରାରେ କଟକ ସହରରୁ କଂଗ୍ରେସ ଦଳ ସମର୍ଥନରେ ପ୍ରାର୍ଥୀ ହୋଇଥିଲେ । ମାତ୍ର ଜିତି ପାରିନଥିଲେ । ତାଙ୍କୁ ତାହାହିଁ ପଛକୁ ଟାଣିନେଲା ।

ମୁଁ ଏତେସବୁ କଥା ବର୍ଣ୍ଣନା କରିବାର ଏକମାତ୍ର କାରଣ ହେଲା ଯେଉଁ କାଗଜରୁ ମୁଁ ନିର୍ଭିକତା, ନିରପେକ୍ଷତା ଓ ପେଷାପ୍ରତି ସାଧୁଭାବ ରହିବାର ଶିକ୍ଷା ଲାଭ କରିଥିଲି ସେ କାଗଜ ଶେଷରେ ସେ ପନ୍ଥାରୁ ବିଚ୍ୟୁତ ହେଲା । ମାତୃଭୂମିରେ ମୁଁ ଯୋଗଦେବା ପରେ ମୋର ମାସିକ ଦରମା ଥିଲା ୧୭୫ ଟଙ୍କା । ସେତେବେଳେ ଜଣେ ବ୍ୟାଚଲର ବା ଅବିବାହିତ ବ୍ୟକ୍ତି ପକ୍ଷରେ ଏହା ଯଥେଷ୍ଟ ଥିଲା । ପ୍ରଥମ ଦିନ ମାତୃଭୂମିରେ ଯୋଗ ଦେବା ପରେ ଯାହାଙ୍କ ସହ ମୋର ପରିଚୟ ହେଲା ସେ ଥିଲେ କୃଷ୍ଣ ପ୍ରସାଦ ପଟ୍ଟନାୟକ । ମୋତେ ଦେଖି ପଚାରିଲେ ଆପଣ ବାଙ୍କୀର । ମୁଁ ହଁ କଲି । ସେ କହିଲେ ଆମଘର ବାଙ୍କୀ ପଥୁରିପଡ଼ା । ତେବେ ଗାଁ ସହ ଆଉ ସମ୍ପର୍କ ନାହିଁ । କୃଷ୍ଣ ବାବୁ ସାଧାରଣ ଉଚ୍ଚତାର

ଗୋରା ତକ୍ ତକ୍ ମଣିଷ । ସରୁ ଧଳା ଫିନ୍ ଫିନ୍ ଧୋବ ଧୋତି ସହ ଗିଲ୍ କରା ପତଳା ଧଳା ପଞ୍ଜାବୀ ପିନ୍ଧନ୍ତି । ତାଙ୍କର ସମୟ ଜ୍ଞାନ ନଦେଖିଲେ କେହି ବିଶ୍ୱାସ କରି ପାରିବ ନାହିଁ । ରିକ୍ସାରୁ ଓହ୍ଲାଇ ମାତୃଭୂମି ବାରଣ୍ଡାରେ ପାଦ ଦେଲେ ଅକ୍ଲେଶରେ ଯେ କେହି ଘଣ୍ଟାରେ ଆଠଟା ବାଜିଛି ବୋଲି ଜାଣିବ । ଠିକ୍ ସେହିଭଳି ଫେରିବା ବେଳେ ସେଇ ବାରଣ୍ଡାରେ ପହଞ୍ଚିବା ପରେ ଘଣ୍ଟାରେ ସାଢ଼େ ବାରଟା ବାଜିଥିବ । ପାଟନା ବିଶ୍ୱ ବିଦ୍ୟାଳୟରୁ ଇତିହାସରେ ପ୍ରଥମ ଶ୍ରେଣୀରେ ଏମ୍.ଏ. ପାଶ୍ କରି ସେ କଟକ ଆସିଥିଲେ । ମାତ୍ର ତାଙ୍କ ବାମପନ୍ଥୀ ନୀତି ଯୋଗୁ ସରକାରୀ କଲେଜରେ ଚାକିରି ନପାଇ ଖ୍ରୀଷ୍ଟ କଲେଜରେ ଅଧ୍ୟାପକ ଥିଲେ । ସେତେବେଳେ କମ୍ୟୁନିଷ୍ଟ ଆନ୍ଦୋଳନରେ ଯୋଗ ଦେବାରୁ ତାଙ୍କ ନାମରେ ଓ୍ୱାରେଣ୍ଟ ବାହାରିଲା । ସେ ଅଣ୍ଡରଗ୍ରାଉଣ୍ଡକୁ ଚାଲିଗଲେ । ଫେରିଲା ବେଳକୁ ଖ୍ରୀଷ୍ଟ କଲେଜରେ ଆଉ ଚାକିରି ନଥିଲା । ଶେଷରେ ମାତୃଭୂମିରେ ଯୋଗ ଦେଲେ । ମୁଁ ସକାଳ ଆଠଟାରେ ବା ତା' ପୂର୍ବରୁ ଅଫିସ୍ ଯାଉଥିଲି । ମୋ ଉପରେ ବିଚିବାବୁ ତିନୋଟି ଦାୟିତ୍ୱ ନ୍ୟସ୍ତ କରିଥିଲେ । କାଗଜର ଷ୍ଟାଫ୍ ରିପୋର୍ଟର, ଖେଳ ରିପୋର୍ଟର ଓ ରବିବାର ମାତୃଭୂମିର ଦାୟିତ୍ୱ । ତେଣୁ ପୂର୍ବଦିନର ସଭା-ସମିତି, ବାରବାଟି ଷ୍ଟାଡିୟମରେ ହେଉଥିବା ଖେଳର ରିପୋର୍ଟ ମୁଁ ସକାଳୁ ସକାଳୁ ଯାଇ ଲେଖେ ।

କୃଷ୍ଣବାବୁ ଅଫିସ୍‌କୁ ଆସି ପ୍ରଥମେ ସବୁ ଇଂରାଜୀ ଓ ଓଡ଼ିଆ କାଗଜ ପଢ଼ିବେ । ତା'ପରେ ଯୋଗେନ ବାବୁଙ୍କୁ ପି.ଟି.ଆଇ. କପି ମାଗିବେ । ପଚାରିବେ ଆଜି କେତେ କଲମ ପାଠ ଦରକାର । ଯୋଗେନ୍ ବାବୁ ପାଞ୍ଚ କଲମ ବା ଛ' କଲମ ଯାହା କହିବେ କୃଷ୍ଣବାବୁ ସେଇ ଅନୁସାରେ ଲେଖନ୍ତି । କୃଷ୍ଣବାବୁଙ୍କ କାମ କରିବାର ଢଙ୍ଗ ଥିଲା ଭିନ୍ନ । ଯୋଗେନ ବାବୁ ଦେଇଥିବା ପି.ଟି.ଆଇ.ର ସମ୍ବାଦ ଉପରେ ଥରେ ଆଖି ବୁଲାଇ ଆଣନ୍ତି । ତା'ପରେ ଲେଖି ଚାଲନ୍ତି । ଚମତ୍କାର ଓଡ଼ିଆ ଭାଷା । ମାତୃଭୂମିରେ ପି.ଟି.ଆଇ. ଖବରର ଓଡ଼ିଆ ଅନୁବାଦ ଦେଖିଲେ ମନେ ହେଉଥିଲା ଓଡ଼ିଆଟା ଅରିଜିନାଲ୍ ଆଉ ପି.ଟି.ଆଇ. ଯାରି କପି । ଓଡ଼ିଆ ଭାଷାର ମୌଳିକ ଶବ୍ଦ ପ୍ରୟୋଗରେ କୃଷ୍ଣବାବୁ ଥିଲେ ଅଦ୍ଭୁତ କରିତ୍‌କର୍ମା ସାମ୍ବାଦିକ । ଆମେ ଦେଖିଥିବା ସାମ୍ବାଦିକମାନଙ୍କ ମଧ୍ୟରେ ବିଶେଷ କରି ଡେସ୍କ ସାମ୍ବାଦିକମାନଙ୍କ ମଧ୍ୟରେ କୃଷ୍ଣବାବୁ ଥିଲେ ଅନ୍ୟତମ ଶ୍ରେଷ୍ଠ ।

ମୁଁ ପୂର୍ବରୁ କହିଛି ମାତୃଭୂମିରେ ମୋର ତିନୋଟି ଦାୟିତ୍ୱ ଥିଲା । ପ୍ରଥମତଃ ଷ୍ଟାଫ୍ ରିପୋର୍ଟର, ଦ୍ୱିତୀୟରେ ସ୍ପୋର୍ଟସ ରିପୋର୍ଟର ଓ ତୃତୀୟରେ ରବିବାର ମାତୃଭୂମି ସମ୍ପାଦନା । ଖେଳ ରିପୋର୍ଟିଂ ପାଇଁ ମାସକୁ ୧୫ଟଙ୍କା ଏବଂ ରବିବାର ପାଇଁ ୨୫ଟଙ୍କା ମୁଁ ଅଧିକା ପାଏ । ତେଣୁ ମୋ ଦରମା ଥାଏ ମାସିକ ୨୧୫ଟଙ୍କା ।

ରବିବାର ମାତୃଭୂମିରେ ପ୍ରତି ସପ୍ତାହରେ ବିଶ୍ୱବିଖ୍ୟାତ କଥା ସାହିତ୍ୟ ଶିରୋନାମାରେ ପୃଥିବୀର ବିଶିଷ୍ଟ ଲେଖକମାନଙ୍କର ଗୋଟିଏ ଗୋଟିଏ ଗଳ୍ପ ଓଡ଼ିଆରେ ଅନୁବାଦ ହୋଇ ପ୍ରକାଶ ପାଏ । କୃଷ୍ଣ ପ୍ରସାଦ ପଟ୍ଟନାୟକ ଏହି ଅନୁବାଦ ଗଳ୍ପ ଦିଅନ୍ତି । ଆମେ ଜାଣିବାରେ ସେ ସମ୍ଭବତଃ ଚାଳିଶ ପଚାଶଟି ଦେଶର ଗଳ୍ପ ଅନୁବାଦ କରି ଏଥିରେ ଦେଇଥିଲେ । ତାଙ୍କର ବ୍ୟକ୍ତିଗତ ବିରାଟ ଲାଇବ୍ରେରୀ ଥିଲା । ବିଭିନ୍ନ ଦେଶର ଗଳ୍ପ ବହି ପାଇବା ପାଇଁ ସେ ବିଭିନ୍ନ ଦେଶର ସମ୍ବାଦମାନଙ୍କୁ ପତ୍ର ଲେଖୁଥିଲେ । କିମ୍ବା ବିଭିନ୍ନ ଦେଶର ଗଳ୍ପ ଇଂରାଜୀରେ ଅନୁବାଦ ହୋଇ ମିଳୁଥିବା ବହିରୁ ସେ ଏହି ଗଳ୍ପ ଅନୁବାଦ କରୁଥିଲେ । କୃଷ୍ଣବାବୁଙ୍କର ଓଡ଼ିଆ ଭାଷା ସାହିତ୍ୟ ଉପରେ ଅସମ୍ଭବ ଦଖଲ ଥିଲା । ତେଣୁ ତାଙ୍କର ଅନୁବାଦ ଯେପରି ସାବଲିଳ ସେହିପରି ସୁଖପାଠ୍ୟ ମଧ୍ୟ ହେଉଥିଲା । ରବିବାର ମାତୃଭୂମିରେ ବିଶ୍ୱବିଖ୍ୟାତ କଥାସାହିତ୍ୟ ଏକ ବଳିଷ୍ଠ ସଂଯୋଜନ । ମୋର କାମ ଥିଲା କିଛି ମୁଖରୋଚକ ବିଖ୍ୟାତ ଗୁପ୍ତଚର କାହାଣୀ ବିଶେଷ କରି ପ୍ରଥମ ଓ ଦ୍ୱିତୀୟ ବିଶ୍ୱଯୁଦ୍ଧର ମହିଳା ଗୁପ୍ତଚରମାନଙ୍କ ଜୀବନୀ କାହାଣୀ ଅନୁବାଦ କରି ପ୍ରକାଶ କରିବା । ସେହି

କ୍ରମରେ ମୁଁ ମାତାହାରୀଙ୍କ ଠାରୁ ଆରମ୍ଭ କରି ଅନେକ ମହିଳା ଗୁପ୍ତଚରଙ୍କ ରୋମାଞ୍ଚକର ଜୀବନୀ ଇଂରାଜୀରୁ ଅନୁବାଦ କରି ପ୍ରକାଶ କରୁଥିଲି । ସେତେବେଳେ ଅନ୍ୟ ଖବର କାଗଜ ଭଳି ମାତୃଭୂମିର ରବିବାର ସଂଖ୍ୟାରେ ସାଧାରଣ ଗପ, କବିତା ଛପା ଯାଉନଥିଲା । ଗୋଟିଏ ପୃଷ୍ଠା ପିଲାଙ୍କ ପାଇଁ କିଶୋର ଫଉଜ ନାମରେ ପ୍ରକାଶ ପାଉଥିଲା । ମୁଁ ମୀନା ବଜାରରେ ପିଲାଙ୍କ ଲେଖା ବାଛି ସଂପାଦନା କରି ପ୍ରକାଶ କରୁଥିବା କଥା ବିଚିବାବୁ ଜାଣିଥିଲେ। ତେଣୁ ମୋତେ କିଶୋର ଫଉଜ ପୃଷ୍ଠାର ଦାୟିତ୍ୱ ସ୍ୱାଧୀନ ଭାବେ କରିବାକୁ ଦେଇଥିଲେ । ସେତେବେଳେ ମାତୃଭୂମି ଅଫିସକୁ ବହୁ ବିଶିଷ୍ଟ ବ୍ୟକ୍ତି ନିୟମିତ ଆସୁଥିଲେ । ସେମାନଙ୍କ ମଧ୍ୟରେ ଗୋଦାବରିଶ ମହାପାତ୍ର, ସରଳା ଦେବୀ, ଯଦୁମଣି ମଙ୍ଗରାଜ, ଆଡ୍‌ଭୋକେଟ୍ ମଧୁ ମହାନ୍ତି, ଅନନ୍ତ ପ୍ରସାଦ ପଣ୍ଡା ଅନ୍ୟତମ । ଏମାନଙ୍କ ସହ ମୋର କ୍ରମେ ପରିଚୟ ହେଲା । ଏମାନଙ୍କ ବ୍ୟତୀତ ଅନନ୍ତ ପଟ୍ଟନାୟକ, ଗୁରୁ ଚରଣ ପଟ୍ଟନାୟକ, ଶରତ ପଟ୍ଟନାୟକ, ବୈଷ୍ଣବ ପଟ୍ଟନାୟକ, ନନ୍ଦ କିଶୋର ପଟ୍ଟନାୟକ ପ୍ରମୁଖ କମ୍ୟୁନିଷ୍ଟ ନେତାମାନେ ମଧ୍ୟ ଆସୁଥିଲେ। ଏମାନଙ୍କ ସହ ମୋର କିଛି ସମୟ ମଧ୍ୟରେ ବେଶ୍ ଘନିଷ୍ଠ ପରିଚୟ ହେଲା ଏବଂ ଅନେକ ସମୟରେ ଏମାନଙ୍କ ନିକଟରୁ ମୁଁ କିଛି କିଛି ସମ୍ବାଦ ମଧ୍ୟ ପାଉଥିଲି । ତେବେ ଏହି ବିଶିଷ୍ଟ ବ୍ୟକ୍ତିମାନଙ୍କ ଠାରୁ କିଶୋର ଉପଯୋଗୀ କିଛି ଲେଖା ଏବଂ ସେମାନଙ୍କ ପିଲାଦିନର କାହାଣୀ ଆଦି ପ୍ରକାଶ କରିବା ପାଇଁ ଇଚ୍ଛା କଲି ।

ସେତେବେଳେ କିଶୋର ଫଉଜରେ କେବଳ ପିଲାଙ୍କ ଲେଖା ପ୍ରକାଶ ପାଉଥାଏ । ମୁଁ ମୋର ପରିକଳ୍ପନା କଥା ବିଚିବାବୁଙ୍କୁ କହିଲି । ସେ ସବୁ ଶୁଣି ଗୌରବାବୁଙ୍କ ସହ ଆଲୋଚନା କଲେ । କିଶୋର ଫଉଜ ପୃଷ୍ଠାକୁ ଅଧିକ ଆକର୍ଷଣୀୟ କରିବା ପାଇଁ ବଡ଼ ବଡ଼ ଲେଖକମାନଙ୍କ ନିକଟରୁ ଲେଖା ଆଣି ଛାପିବା ମୋର ଉଦ୍ଦେଶ୍ୟ ଥିଲା । ଏହା ବ୍ୟତିତ ସୋଭିଏତ୍ ଋଷ ଦୂତାବାସରୁ ଆସିଥିବା କିଛି ବିଜ୍ଞାନ ଭିତ୍ତିକ ନିବନ୍ଧ ପ୍ରତି ସପ୍ତାହରେ ଯାଉଥିଲା । ତା' ପ୍ରାୟ ଦୁଇ/ ତିନି କଲମ ସ୍ଥାନ ମାଡ଼ି ବସୁଥିଲା । ଓଡ଼ିଆ ସାହିତ୍ୟ, ଭାଷା ସମ୍ପର୍କରେ ସେପରି କୌଣସି ଚିନ୍ତା ଉଦ୍ରେକକାରୀ ବୌଦ୍ଧିକ ନିବନ୍ଧ ପ୍ରକାଶ ପାଉନଥିଲା । ମୁଁ ଏ ସମ୍ପର୍କରେ ବିଚିବାବୁଙ୍କୁ କହିଲି । ସେ କହିଲେ ଆପଣ ବ୍ୟକ୍ତିଗତ ଭାବେ ଯାଇ ରତ୍ନାକର ପତି, ବିପିନ ବିହାରୀ ରାୟ, ଗୋଲକ ବିହାରୀ ଧଳ, କୁଞ୍ଜ ବିହାରୀ ତ୍ରିପାଠୀ, ଆର୍ତ୍ତବଲ୍ଲଭ ମହାନ୍ତି ପ୍ରଭୃତିଙ୍କୁ ଦେଖାକରନ୍ତୁ । ଗୌରବାବୁଙ୍କ ପତ୍ର ନେଇ ତାଙ୍କୁ ଦେବେ ଆଉ ଲେଖା ପାଇଁ ଅନୁରୋଧ କରିବେ । ମୁଁ ମୋ କାମରେ ଲାଗି ପଡ଼ିଲି । କିଶୋର ଫଉଜରେ ଗୋଦାବରିଶ ମହାପାତ୍ର, ଯଦୁମଣି ମହାପାତ୍ର, ସରଳା ଦେବୀ, ଅନନ୍ତ ପଟ୍ଟନାୟକ ଓ ବୈଷ୍ଣବ ପଟ୍ଟନାୟକଙ୍କ ନିକଟରୁ ଲେଖା ପାଇଲି । ପ୍ରତି ସଂଖ୍ୟାରେ ଏମାନଙ୍କ ମଧ୍ୟରୁ ଜଣକର ଲେଖା ପ୍ରକାଶ ପାଏ । ଫଳରେ ପାଠକମାନଙ୍କର ଆଗ୍ରହ ସୃଷ୍ଟି ହେଲା । କିନ୍ତୁ ରତ୍ନାକର ପତି, ବିପିନ ବିହାରୀ ରାୟ, ଆର୍ତ୍ତବଲ୍ଲଭ ମହାନ୍ତି ପ୍ରମୁଖଙ୍କ ପାଖକୁ ଗୌରବାବୁଙ୍କ ପତ୍ର ନେଇ ଦେବାରେ ସେମାନେ କହିଲେ ତୁମେ ଆସି ଆମ ପାଖରୁ ଲେଖି ନେବ ଯଦି ତେବେ ଲେଖା ପାଇବ । ଅଗତ୍ୟା ମୁଁ କାଗଜ କଲମ ନେଇ ଏମାନଙ୍କ ପାଖକୁ ଯାଏ । ଆଜି ଏତେ ବର୍ଷ ପରେ ଏକଥା ମନେକରିବା ବେଳେ ମନ ରୋମାଞ୍ଚିତ ହୁଏ । ମୋର ଅଶେଷ ଭାଗ୍ୟ ଯେ ଏଭଳି ବିଖ୍ୟାତ ବିଦ୍ୱାନମାନଙ୍କ ପାଦ ପାଖରେ ବସି ସେମାନଙ୍କ ଠାରୁ ଡିକ୍ଟେସନ୍ ନେଉଥିଲି । ରତ୍ନାକର ପତି ଗୋରା ଟକ୍‌ଟକ୍ ପତଳା ଚେହେରାର ବ୍ୟକ୍ତି । ଅଧିକାଂଶ ସମୟରେ ମଠା ଲୁଗା ପଞ୍ଜାବୀ ପିନ୍ଧି କଠଉ ମାଡ଼ି ଆସନ୍ତି । ମୁଁ ତାଙ୍କ ଦାଣ୍ଡଘରେ ବସି ସେ ଡାକୁଥିବା ବିଷୟ ଲେଖେ । ବିପିନ ବିହାରୀ ରାୟ ଦର୍ଶନ ବିଭାଗ ପ୍ରଫେସର ଥିଲେ ମଧ୍ୟ ଓଡ଼ିଆରେ ତାଙ୍କର ଅଦ୍ଭୁତ ପାରଦର୍ଶୀତା ଥିଲା । ତାଙ୍କ ନିବନ୍ଧ ସେତେବେଳେ ଓଡ଼ିଶାର ଅଳ୍ପ କେତେଜଣଙ୍କ ମଧ୍ୟରେ ଶ୍ରେଷ୍ଠତ୍ୱ ଦାବି କରୁଥିଲା । ମୋର ଅକ୍ଷର ଏଇମିତି ଭଲ । ମୁଁ ଲେଖିସାରିବା ପରେ ଉଭୟେ ମୋ ଲେଖାକୁ ନେଇ ପଢ଼ନ୍ତି ଏବଂ ସଂଶୋଧନ କରନ୍ତି । କେତେକ ସ୍ଥଳରେ ବନାନ୍ ଅଶୁଦ୍ଧିକୁ ଶୁଦ୍ଧ କରି ବର୍ଣ୍ଣବୋଧ ପଢ଼ିବା ପାଇଁ କୁହନ୍ତି ।

ଆର୍ତ୍ତବଲ୍ଲଭ ମହାନ୍ତି କିନ୍ତୁ ଭିନ୍ନ ବ୍ୟକ୍ତିତ୍ୱ । ମୋର ମନେ ଅଛି ପ୍ରଥମ ଦିନ ଯେଉଁ ଦିନ ମୁଁ ଗୌରବାବୁଙ୍କ ପତ୍ର ନେଇ ତାଙ୍କ ପାଖକୁ ଗଲି ସେ ପତ୍ରଟି ପଢ଼ି ମୁହଁ ଟେକି ଚଷମା ଟିକିଏ ତଳକୁ କରି ମୋତେ ଅନାଇଲେ । ତା'ପରେ କହିଲେ କେଉଁ ବିଷୟରେ ପ୍ରବନ୍ଧ ଚାହୁଁଛ ? ତମ ଦୈନିକ କାଗଜରେ ପାଠକ ମୋ ପ୍ରବନ୍ଧକୁ ପଢ଼ିବେ ତ ? ମୁଁ ନମ୍ର ଭାବରେ କହିଲି ରବିବାର ମାତୃଭୂମିର ପ୍ରସାର ଅଧିକ । ବିଭିନ୍ନ ଶ୍ରେଣୀର ବହୁ ଲୋକ ଏହାକୁ ନିଅନ୍ତି । ପ୍ରଫେସର ରତ୍ନାକର ପତି, ବିପିନ ବିହାରୀ ରାୟ ପ୍ରମୁଖ ମଧ ଲେଖା ଦେଇଛନ୍ତି । ସେ କହିଲେ ମୁଁ ତ ତୁମ କାଗଜପତ୍ର ପାଉନାହିଁ । ତାଙ୍କ ଲେଖା ଯେଉଁ ଦିନ ବାହାରିଛି ସେ କାଗଜ ଆଣି ମୋତେ ଟିକେ ଦିଅ । ପାଞ୍ଚ/ ଛ'ଦିନ ପରେ ଆସ । ହଁ ରତ୍ନାକର ବାବୁ ଓ ବିପିନ ବାବୁଙ୍କ ଲେଖା ଆଜି ଆଣି ମୋତେ ଦେବ । ଅଗତ୍ୟା ଅଫିସ୍‌କୁ ଫେରିଆସି ପୁରୁଣା ଫାଇଲ୍‌ରୁ ରବିବାର ମାତୃଭୂମିର ଦୁଇଟି କପି ନେଇ ପୁଣି ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଘରକୁ ଗଲି । ତାଙ୍କୁ ସେ ଦୁଇଟି କାଗଜ ଦେଲି । ସେ ଆଖି ବୁଲେଇ ନେଇ ମୋତେ କହିଲେ ଆଚ୍ଛା ତୁମେ ପାଞ୍ଚ/ଛ'ଦିନ ପରେ ଆସ । ଲେଖା ନେଇଯିବ ।

ଏହିଭଳି ଭାବେ ଅନେକ ବିଖ୍ୟାତ ମନୀଷୀମାନଙ୍କ ନିକଟରୁ ରବିବାର ମାତୃଭୂମି ପାଇଁ ଲେଖା ଯୋଗାଡ଼ କରି ପ୍ରକାଶ କରାଯାଇଥିଲା । ସେତେବେଳେ 'ରବିବାର ମାତୃଭୂମି' ଆଠ ପୃଷ୍ଠା ଥିଲା । ସମାଜ, ପ୍ରଜାତନ୍ତ୍ର ଓ କଳିଙ୍ଗର ରବିବାର ସଂଖ୍ୟା ଚାରିପୃଷ୍ଠା ଥିଲା । ତେଣୁ ରବିବାର ମାତୃଭୂମିର ପ୍ରସାର ସଂଖ୍ୟା ଅଧିକ ଥିଲା । ମାତୃଭୂମିରେ ଆଉ ଏକ ବିଭାଗ ଥିଲା ବୁଲା ଫକିରର ଝୁଲାମୁଣି । ଗୌରବାବୁ ଏହାକୁ ଲେଖୁଥିଲେ । ସେହିଭଳି ଆଉ ଦୁଇ ତିନୋଟି ସ୍ତମ୍ଭ ଥିଲା । ତା'ର ଶିରୋନାମା ଆଉ ମନେ ପଡୁନାହିଁ । ସେ ସବୁ ଗୌରବାବୁ ଓ ବିଚିବାବୁ ଲେଖୁଥିଲେ ।

ଆଜି ଏତେବର୍ଷ ପରେ ସେଦିନର କଥା ଭାବିବା ବେଳକୁ ମନରେ ଏକ ଉନ୍ମାଦନା ଜାତ ହୁଏ । ସକାଳ ଛ'ଟାରୁ ଉଠି ଗାଧୁଆ ପାଧୁଆ ସାରି ସାତଟା ବେଳେ ଚୌଧୁରୀ ବଜାର ବୟେ ଟେଲର ଗଳି ସାଉଥ୍ ଇଣ୍ଡିଆନ୍ କ୍ୟାଣ୍ଟିନ୍‌ରେ ଇଡ୍‌ଲି-ଦୋଷା ଖାଇ ଆଠଟା ପୂର୍ବରୁ ଅଫିସ୍‌ରେ ପହଞ୍ଚୁ ଥିଲି । ଗତ ରାତିର ମିଟିଂ, ବାରବାଟି ଷ୍ଟାଡିୟମରେ ହୋଇଥିବା ଖେଳ ଏବଂ ଅନ୍ୟ ଯାହା ଖବର ପାଖରେ ଥାଏ ତାକୁ ଲେଖେ ଏବଂ ଦିନ ସାଢ଼େ ଦଶଟା ବେଳକୁ ତାକୁ ଯୋଗେନ ବାବୁଙ୍କୁ ଦେଇଦିଏ । ସାଢ଼େ ଦଶଟା ପରେ ଅଫିସରୁ ବିଭିନ୍ନ ଥାନାକୁ ଫୋନ୍ କରି ବୁଝେ ସେଦିନ କ'ଣ କିଛି କ୍ରାଇମ୍ ନିଉଜ ଅଛି କି ନାହିଁ । ଯଦି କିଛି ଗୁରୁତ୍ୱପୂର୍ଣ୍ଣ ଥାଏ ତେବେ ସାଇକେଲ ଧରି ଥାନା ଇନ୍ସପେକ୍ଟରଙ୍କ ପାଖକୁ ଯାଏ । ସେତେବେଳେ କଟକରେ ତିନୋଟି ମୁଖ୍ୟ ଥାନା ଥାଏ । ଚାନ୍ଦିନୀଚୌକରେ ଲାଲ୍‌ବାଗ୍ ଥାନା, ମଙ୍ଗଳାବାଗ ଛକରେ ମଙ୍ଗଳାବାଗ ଥାନା ଏବଂ ନୂଆ ବଜାରରେ ସଦର ଥାନା । ତେବେ ପ୍ରତିଦିନ ଖବର କାଗଜରେ ଥାନା ଖବର ନିଶ୍ଚୟ ଥାଏ । ତେଣୁ ସବୁ ରିପୋର୍ଟରଙ୍କ ପାଇଁ ଥାନା ଥାଏ ଗୁରୁତ୍ୱପୂର୍ଣ୍ଣ ।

ଗୋଟିଏ ଦିନର କାମ ସାରି ମୁଁ ମେସ୍‌କୁ ଫେରେ ରାତି ଦଶଟା ଏଗାରଟା ବେଳକୁ । ଦ୍ୱିପ୍ରହରରେ ଚାନ୍ଦିନୀଚୌକ ଓ୍ୱେଷ୍ଟର୍ଣ୍ଣ ହୋଟେଲରେ ଲଞ୍ଚ । ମାସକୁ ୨୧୫ ଟଙ୍କା ମୋ ପାଇଁ ବହୁତ ଟଙ୍କା । ପ୍ରତିଦିନ ଭାତ ଡାଲି, ସାଧା ତରକାରୀ ଆଉ କଲିଜା ଭଜା । ରାତିରେ ରୁଟି ଆଉ ତରକାରୀ । ମଝିରେ ମଝିରେ ଗାଁରୁ ମୋ ସାନଭାଇ ଧୀର(ଧୀରେନ୍ଦ୍ର ନାଥ ଶ୍ରୀଚନ୍ଦନ) ତାର ବନ୍ଧୁ ଜ୍ଞାନ(ଜ୍ଞାନେନ୍ଦ୍ର ମୋହନ ମିଶ୍ର), ନିଶାମଣି(ନିଶାମଣି ପୃଷ୍ଟି) ଓ ଆଉ ଜଣେ ଦୁଇଜଣ ମେସ୍‌କୁ ଆସନ୍ତି । ଗାଧୁଆ-ପାଧୁଆ ସାରି ଓ୍ୱେଷ୍ଟର୍ଣ୍ଣ ହୋଟେଲରେ ସେମାନେ ଖାଇ ମୋ ଖାତାରେ ପକାଇ ଦିଅନ୍ତି । ଆମ ଗାଁ ବାଙ୍କୀ ଚର୍ଚ୍ଚିକାରୁ ଖରାଦିନେ ସିଧା ସଳଖ ବସ୍ ଚାନ୍ଦିନୀଚୌକ ଆସୁଥିଲା । ବର୍ଷାଦିନେ ବାରଙ୍ଗ ପର୍ଯ୍ୟନ୍ତ ଆସେ । ସେଠୁ ଟ୍ରେନରେ କଟକ ଆସିବାକୁ ହୁଏ । ଆମ ମେସ୍‌ର ଅନ୍ୟମାନେ ସେଇ ହୋଟେଲରେ

ଖାଉଥିଲେ । ସେମାନଙ୍କ ମାସିକ ବିଲ୍ ୩୫/୪୦ଟଙ୍କା ହେଲା ବେଳେ ମୋର ମାସିକିଆ ବିଲ୍ ୭୦/୭୫ଟଙ୍କା ହୁଏ ।

## -କବିଚନ୍ଦ୍ର କାଳୀ ଚରଣ-

ମାତୃଭୂମିରେ କାର୍ଯ୍ୟ କରିବାର ବର୍ଷକ ପରେ ଏକ ବିପତ୍ତି ଦେଖା ଦେଲା । ମୁଁ ରହୁଥିବା ଭାରତୀ ମେସ୍‌ର ମାଲିକ ଡାକ୍ତର ଦୀନବନ୍ଧୁ ଦାଶଙ୍କର କଟକ ବଦଳି ହେଲା । ସେ ସେଇ ଘରେ ରହିବା ପାଇଁ ସ୍ଥିର କଲେ । ଆମ ସମସ୍ତଙ୍କୁ ନୋଟିସ୍ ହେଲା ମାସକ ମଧ୍ୟରେ ଘର ଛାଡ଼ିବା ପାଇଁ । ମୁଁ କେଉଁଠିକୁ ଯିବି କିଛି ସ୍ଥିର କରି ପାରିଲି ନାହିଁ । ଏହି ସମୟରେ ଆମ ଗାଁର ଜଣେ ଲୋକ ଖବର ଦେଲେ କବିଚନ୍ଦ୍ର ମୋତେ କହିଛନ୍ତି ଦେଖା କରିବା ପାଇଁ । ମୁଁ ଆଶ୍ଚର୍ଯ୍ୟ ହେଲି । ଏଠି କହିରଖେ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ ଆମ ଗାଁର । ମୋ ଦଦେଇ(ବାପା)ଙ୍କୁ ସେ ଜାଣିଥିଲେ । ମୁଁ ଖବର ପାଇ ତାଙ୍କ ଘରକୁ ଗଲି । କବିଚନ୍ଦ୍ର ରହୁଥା'ନ୍ତି ଜଗନ୍ନାଥ ବଲ୍ଲଭରେ । ମୁଁ ରହୁଥିବା ଭାରତୀ ମେସ୍‌ରୁ ଦୁଇ ମିନିଟ୍‌ର ବାଟ । ମୁଁ ସାଇକେଲ ତାଙ୍କ ଦାଣ୍ଡ ବାରଣ୍ଡାରେ ରଖି ଭିତରକୁ ଗଲି । କବିଚନ୍ଦ୍ର ତାଙ୍କ ଖଟ ଉପରେ ଗୋଟିଏ ତକିଆ କୋଳରେ ଧରି ବସିଥିଲେ । ତାଙ୍କ ସାମ୍ନାରେ ବସିଥା'ନ୍ତି ଦୁଇଜଣ ବୟସ୍କ ବ୍ୟକ୍ତି । ମୁଁ ନମସ୍କାର କରି ଠିଆ ହେଲି । ମତେ ଦେଖି ହଠାତ୍ କହିଲେ ବରି, ଏଇଠି ଅଛ, ଅଥଚ ମୋ ପାଖକୁ ଆସୁନ । ତୁମେ ଜାଣ ତମର ଆମର ସମ୍ପର୍କ କ'ଣ ? ତା'ପରେ ତାଙ୍କ ସାମ୍ନାରେ ବସିଥିବା ଜଣେ ବ୍ୟକ୍ତିଙ୍କୁ କହିଲେ ବୁଝିଲ ଦଳବେହେରାଏ, ବରି ହେଉଛି ଆମ ଗାଁର । ବରେନ୍ଦ୍ର କୃଷ୍ଣ ଧଳ ସାମନ୍ତ । ଏମାନେ ବାଙ୍କୀ ରାଜାଙ୍କ ମୂଳ କୁଟୁମ୍ବ । ଏମାନଙ୍କର ଆଉ ଆମ ପରିବାରର ସମ୍ପର୍କ ହେଉଛି ଦୁଃଖର ବନ୍ଧୁ । ମାନେ ଆମ ଦୁଇ ପରିବାର ପରସ୍ପରର ମଡ଼ାସାଙ୍ଗିଆ । ଆମ ଘରୁ କିଏ ଗଲେ ଏମାନେ ଆସି କାନ୍ଧ ଦେବେ ଆଉ ୟାଙ୍କ ଘରୁ କିଏ ଗଲେ ଆମେ ଯାଇ କାନ୍ଧ ଦେବୁ । ମୁଁ କାଳୀବାବୁଙ୍କ ମୁହଁରୁ ଏକଥା ଶୁଣି ହତ୍‌ବାକ୍ ହୋଇଗଲି । ଏ ପୁରୁଣା ସମ୍ପର୍କ କଥା ମୋତେ ଜଣା ନଥିଲା । ତା'ପରେ ସେ କହିଲେ ଶୁଣିଲି ଯେଉଁ ମେସ୍‌ରେ ଅଛ ସେ ମେସ୍ ଭାଙ୍ଗିଗଲା । ତୁମକୁ ନୋଟିସ୍ ଦିଆଯାଇଛି । ଘର ଖୋଜୁଛ । କାଲି ସକାଳୁ ଜିନିଷପତ୍ର ନେଇ ଏଇଠିକୁ ଚାଲି ଆସ । ତଳେ ଦି'ବଖରା ଘର ଅଛି । ଯେଉଁ ଘରେ ରହିବା କଥା ରୁହ । ସେତେବେଳେ କାଳୀବାବୁଙ୍କ ଘରେ ଅଙ୍ଗୁରବାଳା ରାୟ ନାମରେ ଜଣେ ତରୁଣୀ ରହୁଥିଲେ । ପରେ ଅଙ୍ଗୁରବାଳା ବିଖ୍ୟାତ ବଂଶୀବାଦକ ହରିପ୍ରସାଦ ଚୌରାସିଆଙ୍କ ପତ୍ନୀ ରୂପେ ପରିଚିତ ହେଲେ । କାଳୀବାବୁ ତାଙ୍କ ସାମ୍ନାରେ ବସିଥିବା ଦୁଇ ବ୍ୟକ୍ତିଙ୍କର ପରିଚୟ କରାଇ ଦେଲେ । ଜଣେ ସାଧୁ ଚରଣ ଦଳବେହେରା ଏବଂ ଆଉ ଜଣେ ଶ୍ୟାମ ସୁନ୍ଦର ଧୀର୍ । ଦୁହେଁ ଶାସ୍ତ୍ରୀୟ ସଂଗୀତ ଗୁରୁ । କାଳୀବାବୁଙ୍କ ଘରେ ଦୁଇଟି ଅଗଣା । ପ୍ରଥମ ଦ୍ୱାର ପାର ହେଲେ ଡାହାଣ ପଟେ ଏକ ଆଜବେଷ୍ଟସ୍ କୋଠରି । ବେଶ୍ ବଡ଼ କୋଠରି । ବୋଧେ ବାରଫୁଟରେ ଦଶଫୁଟ ହେବ । ଆଜବେଷ୍ଟସ୍ ତଳେ ପଟା ଭାଡ଼ି କରାଯାଇଛି । ପକ୍କା କାନ୍ଥ ଆଉ ନାଲି ସିମେଣ୍ଟ ଚଟାଣ । ରାସ୍ତାପଟକୁ ଝରକା ଏବଂ ତା' ସାମ୍ନାରେ ଭିତର ପଟକୁ ଝରକା । ଭଲ ଦୁଆର ବନ୍ଧ ଓ କବାଟ । ମୁଁ ସେଇ ଘରେ ରହିବି ବୋଲି କହିଲି । ସେଇ କୋଠରି ପଛପଟେ ପାଇଖାନା । ସେତେବେଳେ କଟକରେ ମେହେନ୍ତର ପ୍ରତିଦିନ ପାଇଖାନାରୁ ମଇଳା କାଢ଼ି ସଫା କରୁଥିଲେ ।

ସେଇ ଅଗଣାରେ ବାମ ପଟରେ ଦୁଇ ବଖରା ଚାଳଘର । ଗୋଟିଏ ବଢ଼େଇ ତା' ପରିବାର ନେଇ ରହୁଥାଏ । ସେମାନଙ୍କ ପାଇଁ ଅଲଗା ଛୋଟ ପାଇଖାନା ଅଗଣାର ଶେଷ ଆଡ଼କୁ ଥିଲା । ବଡ଼ ପାଇଖାନା ଦୁଆରରେ ତାଲା ପଡ଼ିଥିଲା । ପାଇଖାନା ଉପରକୁ ଯିବା ପାଇଁ ପାଞ୍ଚୋଟି ପାହାଚ ଥିଲା । ପ୍ରଥମ ଅଗଣା ପାର ହେଲେ କାଳୀ ବାବୁଙ୍କ ଘର । କୋଠାଘର । ଉପର ମହଲାରେ ଗୋଟିଏ ବଡ଼ ହଲ୍ ଘର ଭଳି ଥାଏ । ଚାଳ ଛପର । ଉପରେ ଅଙ୍ଗୁରବାଳା

ରିଆଜ କରୁଥା'ନ୍ତି । ଅଙ୍କୁରବାଳା ସେ ସମୟରେ କଟକ ରେଡିଓ ଷ୍ଟେସନରେ ଗୀତ ଗାଉଥିଲେ । ମୁଁ କାଳୀବାବୁଙ୍କ ଘରକୁ ଗଲାବେଳେ ସେ ଶୈଳବାଳା ମହିଳା କଲେଜର ତୃତୀୟ ବାର୍ଷିକ ଛାତ୍ରୀ ଥିଲେ । ମୁଁ କାଳୀବାବୁଙ୍କ ଘର ବୁଲି ଦେଖିବା ପରେ ପ୍ରଥମ ଦ୍ୱାର ନିକଟରେ ଥିବା ଆଜ୍‌ବେଷ୍ଟସ ରୁମ୍‌ରେ ରହିବି ବୋଲି କହିଲି । କାଳୀବାବୁ କିନ୍ତୁ ଚାହୁଁଥିଲେ ମୁଁ ତାଙ୍କ ପାଖ ରୁମ୍‌ରେ ରହିବା ପାଇଁ । ତେବେ ମୁଁ କହିଲି ମିଟିଂ ଫିଟିଂ ଶେଷକରି ଆସିବା ବେଳକୁ ମୋର ବିଳମ୍ବ ହେଉଛି । ରାତି ଏଗାରଟା ବାରଟା ବେଳେ ଆପଣଙ୍କୁ ଉଠାଇବାକୁ ମୁଁ ଚାହୁଁନାହିଁ । କାଳୀବାବୁ ଅଗତ୍ୟା ରାଜି ହେଲେ । ମୋର ଖଟ ନଥିଲା । ମୁଁ ଗୋଟିଏ ଖଟିଆ କିଣି ନେଇ ପ୍ରଥମେ କାମ ଚଳାଇଲି । ଶହେ ଟଙ୍କା ଦେଇ ଏକ ଉଷା ଟେବୁଲ ଫ୍ୟାନ୍ କିଣିଲି । ତେବେ ଅଗଣା ଚାଳଘରେ ଥିବା ବଢ଼େଇ ମାସକ ମଧ୍ୟରେ ମୋ ପାଇଁ ଭଲ ଖଟଟିଏ କରି ଦେଲା । କାଳୀବାବୁ ତାଙ୍କର ଏକ ଶିଶୁ କାଠ ଚେୟାର ଓ ଟେବୁଲ୍ ଦେଲେ । (ଚେୟାରଟି ମୁଁ ଆଜି ପର୍ଯ୍ୟନ୍ତ ରଖିଛି । ଟେବୁଲ୍‌ଟି ଭାଙ୍ଗିଗଲାଣି) ବେଶ୍ ଆରାମ୍‌ରେ ମୁଁ ସେଠି ରହିଲି । ଅଗଣାରେ ନଳକୂଅ ଥିଲା । ସେଇଠି ରହିଲି । ସବୁଦିନ ନହେଲେ ମଧ୍ୟ ମଝିରେ ମଝିରେ କାଳୀବାବୁଙ୍କ ସହ ଦେଖା ହୁଏ ।

## -ମିନତି ଦାସ-

ଦିନେ ସନ୍ଧ୍ୟାରେ ମୁଁ ରୁମ୍‌କୁ ଫେରିଥାଏ । କାଳୀବାବୁ ମୋତେ ଡାକି ପଠାଇଲେ । ମୁଁ ତାଙ୍କ ରୁମ୍‌କୁ ଗଲି । ସେଠି ଦେଖିଲି ଜଣେ ଯୁବତୀ ଓଡ଼ିଶୀ ଭଙ୍ଗୀରେ ଠିଆ ହୋଇଛନ୍ତି । ପତଳା- ଗୋରା ଏବଂ ସାଧାରଣ ଉଚ୍ଚତା । କିନ୍ତୁ ବେଶ୍ ଆକର୍ଷଣୀୟ । କାଳୀବାବୁ ମୋତେ ପରିଚୟ କରାଇ ଦେଲେ । ବରି, ଇଏ ହେଉଛି ମିନୁ । ଜର୍ମାନରେ ରୁହେ । ଜର୍ମାନରେ ରୁହେ ଶୁଣି କହିଲି ଡକ୍ଟର ମିନତି ଦାସ ତ ? ମିନତି ଦେବୀ ମୋ କଥା ଶୁଣି କହିଲେ ମୋତେ ଆପଣ ଜାଣନ୍ତି ? ମୁଁ କହିଲି ନା- ବ୍ୟକ୍ତିଗତ ଭାବେ ତ ଜାଣିନି । କିନ୍ତୁ ବିଚିବାବୁ ମୋତେ ଆପଣଙ୍କ କଥା କହୁଥିଲେ । ଆପଣଙ୍କର ଏକ ଇଣ୍ଟରଭିୟୁ ନେବାପାଇଁ ମୋତେ କହୁଥିଲେ । ସେ ପଚାରିଲେ ବିଚିବାବୁ ମାନେ ମାତୃଭୂମିର ବିଚି କରଙ୍କ କଥା କହୁଛନ୍ତି ? ଏତିକି ବେଳେ କାଳୀବାବୁ କହିଲେ ବରି ମାନେ ବରେନ୍ଦ୍ର କୃଷ୍ଣ ଧଳ ମାତୃଭୂମିର ଷ୍ଟାଫ୍ ରିପୋର୍ଟର ଏବଂ ରବିବାର ମାତୃଭୂମି ଦାୟିତ୍ୱରେ ଅଛି । ତୋ ପାଖକୁ କେବେ ଯିବ ଇଣ୍ଟରଭ୍ୟୁ ପାଇଁ ? ମିନତୀ ଦେବୀ କହିଲେ ଏଇମିତି ମୁଁ ସକାଳୁ ଫ୍ରି । ଆପଣ କାଲି ସକାଳୁ ସାଢ଼େ ଆଠଟା/ ନ'ଟା ଭିତରେ ଆସନ୍ତୁ । ସେତେବେଳେ ମିନତି ଦାସ ଓଡ଼ିଶାରେ ରିତିମତ୍ ଫେମସ୍ । ଜର୍ମାନରୁ ସଂସ୍କୃତରେ ପି.ଏଚ୍.ଡି. କରିଥା'ନ୍ତି । ଭରତ ନାଟ୍ୟ ଶାସ୍ତ୍ର ଠାରୁ ଆରମ୍ଭ କରି ଅନେକ କ୍ଷେତ୍ରରେ ତାଙ୍କର ପ୍ରବେଶ ଥିବା କଥା ପ୍ରଚାର ହୋଇଥାଏ । କଟକ ପ୍ୟାରୀ ମୋହନ ଏକାଡେମୀର ବିଖ୍ୟାତ ହେଡ୍ ମାଷ୍ଟର ବସନ୍ତ କୁମାର ଦାସଙ୍କ କନ୍ୟା । ତିନିକୋଣିଆ ବଗିଚାରେ ତାଙ୍କ ବାପାଙ୍କ ଘର । ମିନତି ଦାସ ସେତେବେଳେ କଟକର ଜଣେ ସେଲିବ୍ରିଟି । ତାଙ୍କ ସହ ପ୍ରଥମ ଦେଖାରେ ଏଭଳି ଅନ୍ତରଙ୍ଗ ସାକ୍ଷାତ ହେବ ମୋ କଳ୍ପନାରେ ମଧ୍ୟ ନଥିଲା । ମିନତୀ ଦେବୀ କାଳୀବାବୁଙ୍କ ନିକଟରୁ ଓଡ଼ିଶୀ ନୃତ୍ୟ ଶିକ୍ଷା କରୁଥିଲେ । କାଳୀବାବୁ ସେଇମିତି ଖଟରେ ବସି ବସି ଶାସ୍ତ୍ର ଅନୁସାରେ ତାଙ୍କୁ ଓଡ଼ିଶୀ ନୃତ୍ୟ ଶିକ୍ଷା ଦେଉଥିଲେ ।

ପରଦିନ ସକାଳେ ଆଠଟା ବେଳେ ଅଫିସ୍‌ରେ ବିଚିବାବୁଙ୍କୁ ସବୁ କଥା କହିଲି । ସେ ପଚାରିଲେ ମୋତେ ଚିହ୍ନି ପାରିଲା ? ମୁଁ କହିଲି ସେ ବେଶ୍ ଭଲଭାବେ ଆପଣଙ୍କୁ ମନେ ରଖିଛନ୍ତି । ବିଚିବାବୁ କହିଲେ ଆମେ ଦୁହେଁ କ୍ଲାସ୍‌ମେଟ୍ ଥିଲୁ । ଭଲ ହେଲା ଆପଣ ଆଜି ଯା'ନ୍ତୁ । ମୁଁ ସାଢ଼େ ଆଠଟାରେ ଅଫିସ୍‌ରୁ ବାହାରିଲି । ପାଞ୍ଚମିନିଟ୍‌ରେ ମିନତି ଦାସଙ୍କ ଘରେ ପହଞ୍ଚି ଖବର ଦେଲି ମୁଁ ଆସିଛି ବୋଲି ।

ମାତୃଭୂମିରେ ଖଟଣି ପଡୁଥିଲା । କିନ୍ତୁ କେଜାଣି କାହିଁକି ଅଧିକରୁ ଅଧିକ କାମ କରିବା ପାଇଁ ମନରେ ସ୍ପୃହା ମଧ୍ୟ ସୃଷ୍ଟି ହେଉଥିଲା । ପୂର୍ବରୁ କହିଛି ମୁଁ ଏକସଙ୍ଗରେ ଷ୍ଟାଫ୍ ରିପୋର୍ଟର, ସବ୍-ଏଡିଟର, ସ୍ପୋର୍ଟସ ରିପୋର୍ଟର ଓ ସାହିତ୍ୟ- ସଂସ୍କୃତି ବିଭାଗ ଦାୟିତ୍ୱରେ ରହିଥିଲି । ସେତେବେଳେ ଓଡ଼ିଆ ଖବର କାଗଜରେ ଜଣେ ଜଣେ ସାମ୍ବାଦିକ ବିଭିନ୍ନ ବିଭାଗର କାର୍ଯ୍ୟ କରୁଥିଲେ । ଆଜିକାଲିକା ଭଳି Specialisation ନଥିଲା । ତେଣୁ ଆମେ ଜଣେ ଜଣେ ସାମ୍ବାଦିକ ସାଂସ୍କୃତିକ କ୍ଷେତ୍ରରେ ଯେପରି ରିପୋର୍ଟିଂ କରୁଥିଲୁ, ଖେଳ, ଟାଉନ୍ ରିପୋର୍ଟିଂରେ ଅନୁରୂପ ପାରଦର୍ଶିତା ଲାଭ କରିବା ପାଇଁ ଉଦ୍ୟମ କରୁଥିଲୁ । ସେ କ୍ଷେତ୍ରରେ ମୋର ସାମାନ୍ୟ ସୁବିଧା ଥିଲା । କବିଚନ୍ଦ୍ରଙ୍କ ଘରେ ରହିବା ଫଳରେ ସାହିତ୍ୟ, ସଂସ୍କୃତି, ନୃତ୍ୟ, ସଂଗୀତ ଓ ଥିଏଟର ସମ୍ପର୍କରେ ଅଳ୍ପ ଅଳ୍ପ କଥା ଜାଣିଲି । ନିଜେ ଫୁଟବଲ୍, କ୍ରିକେଟ ଖେଳୁଥିବାରୁ ଖେଳ ସଂପର୍କରେ ସମ୍ୟକ୍ ଜ୍ଞାନ ଥିଲା । ତେଣୁ ଅନ୍ୟମାନଙ୍କ ତୁଳନାରେ ମୁଁ ଏ କ୍ଷେତ୍ରରେ ସେତେବେଳେ ବିଭିନ୍ନ କ୍ଷେତ୍ରରେ ଅନେକ ଲୋକଙ୍କୁ ଜାଣୁଥିଲି ଓ ସମ୍ପର୍କ ସୃଷ୍ଟି ହୋଇଥିଲା ।

କିନ୍ତୁ ମୋର ଗୋଟିଏ ଅସୁବିଧା ହୋଇଥିଲା ଚାରୋଟିଯାକ କାଗଜର ଏ ବିଭାଗ ଗୁଡ଼ିକରେ କାର୍ଯ୍ୟ କରୁଥିବା ସାମ୍ବାଦିକଙ୍କ ମଧ୍ୟରେ ମୁଁ ବୟସରେ ସମସ୍ତଙ୍କ ଠାରୁ କନିଷ୍ଠ ଥିଲି । ସମାଜର ଅଦ୍ୱୈତ ବଲ୍ଲଭ ରାୟ, ପ୍ରଜାତନ୍ତ୍ରର ନଗେନ ବେଉରିଆ, କଳିଙ୍ଗର ସୁରିତ୍ ପଟ୍ଟନାୟକ ଏବଂ ମାତୃଭୂମିର ମୁଁ ଆମେ ସମସ୍ତେ ରିପୋର୍ଟିଂ ଲାଇନର । ତେଣୁ ଅନେକ ସମୟରେ ସେମାନେ ମୋତେ ଟେଲିଫୋନ୍ କରୁଥିଲେ ବିଭିନ୍ନ ସଭା ସମିତି ବା ଅନ୍ୟାନ୍ୟ ଖବର ପାଇଁ । ସେମାନଙ୍କ ମଧ୍ୟରୁ ଯେଉଁମାନେ ଯେଉଁ ସଭାକୁ ବା ଅନୁଷ୍ଠାନକୁ ଯାଉନଥିଲେ ସେ ଖବର ପାଇଁ ମୋତେ ଫୋନ୍ କରୁଥିଲେ । ଫଳରେ ମୁଁ ଅଫିସରେ ଥିଲେ ଫୋନ୍ ଅନେକ ସମୟରେ ଏନ୍‌ଗେଜଡ ରହେ । ଆମ ଅଫିସ୍‌ର ମ୍ୟାନେଜର ନଟବାବୁ ଭାରି କଡ଼ା ଲୋକ । ମତେମଝିରେ ମଝିରେ କୁହନ୍ତି, ଆପଣ ଆମ ସାମ୍ବାଦିକ । ସେମାନଙ୍କୁ ଯଦି ସବୁବେଳେ ଏଇମିତି ଖବର ଦେବ ତେବେ ସେମାନଙ୍କ କାଗଜ ଓ ଆମ କାଗଜ ଭିତରେ ପ୍ରଭେଦ କ'ଣ ରହିବ ? ସବୁ ଖବର ଏକା ହୋଇଯିବ । ତା'ପରେ ଏତେ ସମୟ ଧରି ଟେଲିଫୋନ୍ ଏନ୍‌ଗେଜଡ୍ ରହିଲେ ଆମର ଅସୁବିଧା ହେବ । ମୁଁ ମଧ୍ୟ ଏକଥା ଅନୁଭବ କଲି । ତେଣୁ ପରେ ଅନ୍ୟ କୌଶଳ ଅବଲମ୍ବନ କଲି । ଏକଥା ସତ୍ୟ ସବୁ ରିପୋର୍ଟର ନିଜ ନିଜ କାଗଜ ପାଇଁ ଏକ୍ସକ୍ଲୁସିଭ୍ ବା ସ୍ୱତନ୍ତ୍ର ଖବର ସଂଗ୍ରହ କରିବା ପାଇଁ ଆଗ୍ରହୀ ।

ମୁଁ ଗତ ସଂଖ୍ୟାର ପରବର୍ତ୍ତୀ ଘଟଣା ଦେବାକୁ ଯାଇ ବାଟଭାଙ୍ଗି ଅନ୍ୟଆଡ଼େ ଢୁକି ଗଲି । କଥା ପଡ଼ିଥିଲା ଡଃ. ମିନତି ଦାସଙ୍କୁ ନେଇ । ଡଃ. ମିନତି ମିଶ୍ର ମୂଳତଃ ଦାସ ଥିଲେ । ପରେ ସୁଇଜରଲ୍ୟାଣ୍ଡରେ ରହୁଥିବା ନିତ୍ୟାନନ୍ଦ ମିଶ୍ର ନାମକ ଜଣେ ବ୍ୟକ୍ତିଙ୍କୁ ବିବାହ କରି ମିଶ୍ର ହେଲେ ।

କବିଚନ୍ଦ୍ରଙ୍କ ଜଗନ୍ନାଥ ବଲ୍ଲଭ ବାସଭବନରେ ଡଃ ମିନତି ଦାସଙ୍କ ସହ ଦେଖା ହେବା ପରେ ତାଙ୍କର ଓଡ଼ିଶୀ ନୃତ୍ୟ ସମ୍ପର୍କରେ ଏକ ମତାମତ ନେବାକୁ (ସାକ୍ଷାତକାର ଆକାରରେ) ବିଚିବାବୁ ମୋତେ କହିଲେ । କବିଚନ୍ଦ୍ରଙ୍କ ଘରେ ଏଥିପାଇଁ ଆଲୋଚନା ହେଲା । ଡଃ ମିନତି ଦାସ ମଧ୍ୟ ତାଙ୍କ ସମ୍ମତି ଜଣାଇଲେ । ରବିବାର ମାତୃଭୂମି ପାଇଁ ତାଙ୍କର ସାକ୍ଷାତକାର ନେବୁ ବୋଲି ସ୍ଥିର ହେଲା । ସେ ମୋତେ ସେଥିପାଇଁ ପରଦିନ ସକାଳ ୯ଟାରେ ସମୟ ଦେଲେ । ମିନତି ଦାସ ସେତେବେଳେ ଓଡ଼ିଶାରେ ବେଶ୍ ନାଁ କମାଇଥା'ନ୍ତି । ଜର୍ମାନରେ ସଂସ୍କୃତ ଭାଷାରେ ଡକ୍ଟରେଟ ଲାଭ କରିଥା'ନ୍ତି । ଭାରି ହାଇ-ଫାଇ ସ୍ୱଭାବର ବୋଲି ପ୍ରଚାର ହୋଇଥାଏ । ସେ ପ୍ରଥମେ ଭାରତ ନାଟ୍ୟମ୍ ଶିକ୍ଷା କରିଥିଲେ । ଓଡ଼ିଶା ଫେରିବା ପରେ ଓଡ଼ିଶୀ ନୃତ୍ୟ ଶିକ୍ଷା କରୁଥିଲେ । ତାଙ୍କୁ ଅନେକ ସଭା-ସମିତିକୁ ଡକା ହେଉଥିଲା । ସେଠି ଲୋକେ ତାଙ୍କୁ ଦେଖିବାକୁ ଆଗ୍ରହ ପ୍ରକାଶ କରୁଥିଲେ । ଭାରତୀୟ ଶାସ୍ତ୍ରୀୟ ନୃତ୍ୟ ସଂପର୍କରେ ତାଙ୍କର ବେଶ୍ ଜ୍ଞାନ ଥିଲା ।

ସେ ଯାହା ହେଉ ମୁଁ ନିର୍ଦ୍ଦିଷ୍ଟ ଦିନ ତାଙ୍କ ତିନି କୋଣିଆ ବଗିଚା ଘରକୁ ଗଲି । ତଳେ ଥିବା ଏକ ବୈଠକଖାନାରେ ବସିଲି । ଖବର ଦେଲି । ପ୍ରାୟ ପନ୍ଦର/କୋଡ଼ିଏ ମିନିଟ୍ ପରେ ସେ ଆସିଲେ । ତାଙ୍କ ଚେହେରା ଦେଖି ମନେ ହେଲା ସେ ସଦ୍ୟ ନିଦରୁ ଉଠି ଆସିଛନ୍ତି । ଘର ଚାକର ଦୁଇକପ୍ ଚା' ଦେଇଗଲା । ସେ ଗୋଟିଏ କପ୍ ଉଠାଇ ନେଇ ଅନ୍ୟକପ୍‌ଟି ମୋତେ ଦେଲେ । ମାତ୍ର ମୁଁ ବିନୟତାର ସହ କହିଲି ମୁଁ ଚା'ପିଏ ନାହିଁ । ସେ କେମିତି ଆଶ୍ଚର୍ଯ୍ୟ ହୋଇ ମତେ ଚାହିଁଲେ । ସେ ଚା' ପିଇ ସାରିଲା ପରେ ମୁଁ କାଗଜ- କଲମ ଧରି ତାଙ୍କୁ ପ୍ରଶ୍ନ କରିବା ପାଇଁ ପ୍ରସ୍ତୁତ ହେଲି । କ'ଣ ପଚାରିବି ତା'ର ଏକ ପ୍ରଶ୍ନମାଳା ତିଆରି କରି ନେଇଥାଏ ।

ଭାରତୀୟ ନୃତ୍ୟ, ଓଡ଼ିଶୀ ନୃତ୍ୟ ଏବଂ ଓଡ଼ିଶାରେ ଏହାର ବର୍ତ୍ତମାନର ସ୍ଥିତି ଆଦି ମୂଳତଃ ମୋର ପ୍ରଶ୍ନ ଥିଲା । ଓଡ଼ିଶୀ ନୃତ୍ୟଗୁରୁମାନଙ୍କ ମଧ୍ୟରୁ ସେ କାହାକୁ ପସନ୍ଦ କରନ୍ତି ? ଇତ୍ୟାଦି ଇତ୍ୟାଦି । ସେ ପ୍ରଶ୍ନର ଉତ୍ତର ଦେଇ ଚାଲିଲେ । ଓଡ଼ିଶୀ ଗୁରୁମାନଙ୍କ ସଂପର୍କରେ ପ୍ରଶ୍ନ କରିବାରେ ସେ କହିଲେ କେବଳ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ ଓଡ଼ିଶୀ ନୃତ୍ୟ ସମ୍ପର୍କରେ ଜାଣିଛନ୍ତି । ବାକି ଯେଉଁମାନେ ଶିଖାଉଛନ୍ତି ସେମାନେ ସମସ୍ତେ ଓଡ଼ିଶୀ ନୃତ୍ୟ ବା ଏହା ବ୍ୟାକରଣ ସଂପର୍କରେ କିଛି ଜାଣି ନାହାନ୍ତି । ଖାଲି ଶିଖୁ ଶିଖୁ ଶିଖିଛନ୍ତି । ଯେତିକି ଶିଖିଛନ୍ତି ତାକୁଇ ଶିଖାଉଛନ୍ତି । ତେଣୁ ବସ୍ତୁତଃ ନୃତ୍ୟର ଶାସ୍ତ୍ରୀୟତା ସଂପର୍କରେ ଏମାନଙ୍କର ଜ୍ଞାନ ନାହିଁ । କେବଳ ପ୍ରାକ୍ଟିକାଲ ସମ୍ପର୍କରେ ଯେତିକି ଜାଣିଛନ୍ତି । ମୁଁ ତାଙ୍କ ଉତ୍ତର ଶୁଣି ପଚାରିଲି ଆପଣଙ୍କ ଏହି ଉତ୍ତର ପଛରେ କି କାରଣ ରହିଛି । ସେ କହିଲେ ଓଡ଼ିଶୀ ନୃତ୍ୟ ଶିଖାଉଥିବା ଅଧିକାଂଶ ଗୁରୁଙ୍କର ସାମାନ୍ୟ ଶିକ୍ଷା-ଦୀକ୍ଷା ନାହିଁ । ତେଣୁ ଯାହା ହେବା କଥା ତା' ହେଉଛି । ପିଲାମାନେ ଉଚ୍ଚତର ଗବେଷଣା ପାଇଁ କ'ଣ କରିବେ ? କେବଳ ବଟୁ, ପଲ୍ଲବୀ, ଅଭିନୟ ଶିକ୍ଷା କରିବେ ସେଇ ଗତାନୁଗତିକତାର ଗଣ୍ଡିଭିତରେ । ତା'ପରେ କ'ଣ କରିବେ ? ମୁଁ ଏସବୁ ଲେଖି ତାଙ୍କୁ ମୋର ପ୍ରଶ୍ନ-ଉତ୍ତର ସବୁ ପଢ଼ାଇ ଦେଲି । ସେ ପଢ଼ିଲେ । ତା'ପରେ ଠିକ୍ ଅଛି କହି ଭିତରକୁ ଚାଲିଗଲେ ।

କହିରଖେ ସେତେବେଳେ ଟେପ୍ ରେକର୍ଡ଼ର ନଥିଲା । ବଡ଼ ବଡ଼ ଟେପ୍ ରେକର୍ଡ଼ର ଥିଲା । କିନ୍ତୁ ଛୋଟ ଟେପ୍ ନଥିଲା । ତେଣୁ ହାତରେ ଲେଖି ଆମେ ଖବର ଦେଉଥିଲୁ । ସେଥିରେ ଭୁଲ୍ ଠିକ୍ ଯାହା ଥାଏ ଲେଖିବା ବେଳେ ତାକୁ ସଂଶୋଧନ କରୁଥିଲୁ ।

ରବିବାର ମାତୃଭୂମିରେ ଡଃ ମିନତି ଦାସଙ୍କ ସାକ୍ଷାତକାର ତାଙ୍କର ଗୋଟିଏ ନୃତ୍ୟମୁଦ୍ରା ସହ ଏବଂ ଆଉ ଗୋଟିଏ ପାସ୍‌ପୋର୍ଟ ସାଇଜ୍ ଫଟୋ ସହ ବେଶ୍ ବଡ଼ ଆକାରରେ ପ୍ରକାଶ ପାଇଲା । ସେତେବେଳେ ରବିବାର ମାତୃଭୂମି ଆଠପୃଷ୍ଠା ପ୍ରକାଶ ପାଉଥିଲା । ଦୈନିକ ମାତୃଭୂମି ଚାରିପୃଷ୍ଠା ସହ ମୋଟ ବାରପୃଷ୍ଠା କାଗଜ ପ୍ରକାଶ ପାଉଥିଲା । ତେଣୁ ରବିବାର ସଂଖ୍ୟା ଅନ୍ୟଦିନ ଅପେକ୍ଷା ଅଧିକ ବିକ୍ରି ହେଉଥିଲା । ମିନତି ଦାସଙ୍କ ସାକ୍ଷାତକାର ଲୋକେ ଆଗ୍ରହର ସହ ପଢ଼ିଲେ । ସିଏ ଥିଲା ମିନତି ଦାସଙ୍କର ଓଡ଼ିଶାରେ ପ୍ରଥମ ସାକ୍ଷାତକାର । ତଳେ ମୋ ନାଁ ପ୍ରକାଶ ପାଇଥିଲା ।

ମାତ୍ର ଏହି ସାକ୍ଷାତକାର ଓଡ଼ିଶୀ ଗୁରୁମାନଙ୍କ ମଧ୍ୟରେ ତୀବ୍ର ପ୍ରତିକ୍ରିୟା ସୃଷ୍ଟି କରିଥିଲା । ମୁଁ କବିଚନ୍ଦ୍ରଙ୍କ ଘରେ ରହିବା ପରେ ଏହି ଓଡ଼ିଶୀ ଗୁରୁମାନଙ୍କ ସହ ପରିଚୟ ହୋଇଥିଲା । କାରଣ ଅଧିକାଂଶ ସମୟରେ ଏମାନେ କବିଚନ୍ଦ୍ରଙ୍କ ପାଖକୁ ଆସୁଥିଲେ । ପଙ୍କଜ ଦାସ, କେଳୁ ଚରଣ ମହାପାତ୍ର, ଗୋପୀକୃଷ୍ଣ ବେହେରା, ମାୟାଧର ରାଉତ, ଦେବ ପ୍ରସାଦ ଦାସ, ମହାଦେବ ରାଉତ, ରଘୁ ଦତ୍ତ ବିଭିନ୍ନ ସମୟରେ ପ୍ରାୟ ସମସ୍ତେ ଆସନ୍ତି । ଆଲୋଚନା କରନ୍ତି । ଓଡ଼ିଶୀର ନୂଆ ବ୍ୟାକରଣ ସଂପର୍କରେ ବୁଝନ୍ତି । କାଳୀବାବୁ ଓଡ଼ିଶୀ ନୃତ୍ୟ ଆଉ ସଂଗୀତ ଉପରେ ସେତେବେଳେ ତିନି/ଚାରିଖଣ୍ଡି ବହି ଲେଖିଥିଲେ । ଯିଏ ଯାହା ବୁଝିବାକୁ ଆସେ ତାକୁ ବୁଝାନ୍ତି ।

ମିନତି ଦାସଙ୍କ ସାକ୍ଷାତକାର ବିରୁଦ୍ଧରେ ଏହି ଓଡ଼ିଶୀଗୁରୁମାନେ ମାତୃଭୂମିକୁ ଯାଇ ପ୍ରତିବାଦ କଲେ । ମିନତି ଦାସଙ୍କ ଓଡ଼ିଶୀ ଜ୍ଞାନ ଅଭାବ ଏବଂ କିଛି ନଜାଣି ପ୍ରୌଢ଼ି ଦେଖାଇଛନ୍ତି ଇତ୍ୟାଦି ନାନା ପ୍ରକାର କଥା କହିଲେ । ସୋମବାର ସେମାନେ କାଳୀବାବୁଙ୍କ ପାଖକୁ ଆସି ଅନୁରୂପ ଅଭିଯୋଗ କଲେ । କାଳୀବାବୁ ଆମକୁ ଖୋଜିଲେ । ଆମେ ସକାଳୁ ଗାଧୋଇ ପାଧୋଇ ବାହାରି ଗଲାପରେ ଫେରୁ ଦିନ ତିନିଟା- ସାଢ଼େ ତିନିଟା ବେଳେ । ତା'ପରେ ଗୋଡ଼ ହାତ ଧୋଇ କିଛି ସମୟ ବିଶ୍ରାମ କରି ଚାରିଟା ପୂର୍ବରୁ ବାରବାଟି ଷ୍ଟାଡିୟମ୍‌କୁ ବାହାରୁ । କାରଣ ଖେଳ ଆରମ୍ଭ ହୁଏ ଚାରିଟାରେ । ବାରବାଟି ଷ୍ଟାଡିୟମ୍‌ରେ କ୍ଲବହାଉସ ଉପର ମହଲାରେ ବସି ଆମେ ଖେଳ ଦେଖୁ ଏବଂ ଆବଶ୍ୟକୀୟ ନୋଟ୍ କରୁ । ସେ କଥାକୁ ପରେ ଆସୁଛି ।

ସେଦିନ ତିନିଟାରେ ଘରେ ପହଞ୍ଚିବା ବେଳକୁ ଆମ ସାମନା ଘରେ ରହୁଥିବା ବଢ଼େଇ ଆମକୁ କହିଲା ବାବୁ ଆପଣଙ୍କୁ ଦୁଇ/ତିନିଥର ଖୋଜିଲେଣି । ଆପଣଙ୍କୁ ଅପେକ୍ଷା କରି ବସିଛନ୍ତି । ମୁଁ ପଚାରିଲି କାହିଁକି ? ସେ କଥା ମୁଁ କିପରି କହିବି ? ମୁଁ ମୁହଁ ହାତ ଧୋଇ ଗଲି । ଦେଖିଲି କବିଚନ୍ଦ୍ର ଖଟରେ ବସିଛନ୍ତି । କୋଳରେ ଗୋଲ୍ ତକିଆ ରଖି କ'ଣ ଲେଖୁଛନ୍ତି । ମୁଁ ପହଞ୍ଚି ନମସ୍କାର କଲାରୁ ମୁହଁ ଟେକି ମୋତେ ଚାହିଁଲେ । କହିଲେ ବରି ବସ । ମୁଁ ବସିଲି । ପଚାରିଲେ ଖାଇଛ ? ମୁଁ ହଁ କଲି । ତା'ପରେ ଟିକେ ଗମ୍ଭୀର ହୋଇ କହିଲେ ମିନତିର ଯେଉଁ ସାକ୍ଷାତକାର ଛାପିଛ ସେସବୁ ବିଶେଷକରି ଓଡ଼ିଶୀ ଗୁରୁମାନଙ୍କ ସଂପର୍କରେ ଯାହା ବାହାରିଛି ସେ କଥା କିଏ କହିଥିଲା । ମୁଁ ଆଶ୍ଚର୍ଯ୍ୟ ହୋଇ ପଚାରିଲି ମାନେ ? ମାନେ କ'ଣ ବର୍ତ୍ତମାନ କେଳୁ, ପଙ୍କଜ, ମାୟାଧର ସମସ୍ତେ ତାକୁ ଯା'ଛା ତା' କରି ଶୋଧୁଛନ୍ତି । ସିଏ କହୁଛି ମୁଁ ଏସବୁ କହିନି । କବିଚନ୍ଦ୍ରଙ୍କ କଥାଶୁଣି ମୁଁ ପୁରାପୁରି ଆଶ୍ଚର୍ଯ୍ୟ ହୋଇଗଲି । କହିଲି ସିଏ କହି ନାହାନ୍ତି- ମୁଁ ମନରୁ ଛାପି ଦେଇଛି ? ସେ ମୋତେ ତାଙ୍କ ଉତ୍ତର ଡାକି ଦେବା ପରେ ମୁଁ ସବୁ ଲେଖି ତାଙ୍କୁ ଦେଖାଇଥିଲି । ସେ ମନଯୋଗ ଦେଇ ସବୁ ପଢ଼ିଲେ । ତା'ପରେ ମତେ କହିଲେ ଠିକ୍ ଅଛି । ସେ ମଧ ଗୋଟିଏ ଦୁଇଟି ସ୍ଥାନରେ ସଂଶୋଧନ କରିଛନ୍ତି । କବିଚନ୍ଦ୍ର କହିଲେ ତମେ ପ୍ରେସ୍‌କୁ ଦେବା ପୂର୍ବରୁ ମୋତେ ଟିକେ ଦେଖେଇ ଦେଲନି । ମୁଁ କହିଲି ଆପଣ ସେଦିନ ମତେ ସେ କଥା କହିଥିଲେ ମୁଁ ଆପଣଙ୍କୁ ମୋର କପି ଦେଖାଇ ଦେଇଥା'ନ୍ତି । ତା'ପରେ ସେ କହିଲେ ବିଦେଶରୁ ଏତେ ଦିନ ପରେ ଆସିଛି । ଟିକେ ଦେଖି ରଖି କହିବା କଥା । ତମେ ଦେଖ ଆଉ କ'ଣ କରିପାରିବ । ମୁଁ ଜାଣୁଛି ସେ ନିଶ୍ଚେ କହିଥିବ । ଏଇନେ ମାଡ଼ ପଡ଼ିଲା ବେଳକୁ ଭୟ ଖାଇ ଯାଉଛି । ଆଚ୍ଛା ତୁମେ ଯାଅ । ମୁଁ ଫେରିଆସି ଷ୍ଟାଡିୟମ୍ ଗଲି ।

ତା' ପରଦିନ ସକାଳୁ ଯେତେବେଳେ ପ୍ରେସ୍‌କୁ ଗଲି ମୋ ଉପରେ ପ୍ରଥମେ ଆକ୍ରମଣ କଲେ ଆମ ମ୍ୟାନେଜର ନଟବାବୁ । କହିଲେ କ'ଣ ଏଣୁତେଣୁ ମନକୁ ମନ ଲେଖୁଛନ୍ତି, କାଗଜକୁ ଆପଣ ବଦ୍‌ନାମ କରି ଦେବେ । ମୁଁ ପଚାରିଲି କ'ଣ ଲେଖିଛି ? ସେ କହିଲେ କିଛି ଜାଣିନାହାନ୍ତି ? ବିଚିବାବୁ ଆସନ୍ତୁ ସବୁ ବୁଝାଇ ଦେବେ । ମୁଁ ତାଙ୍କୁ କିଛି ନକହି ରବିବାର ମାତୃଭୂମି ପ୍ରୁଫ୍ କପି ସହ ମୋ ହାତ ଲେଖା କପି କମ୍ପୋଜ ଖାନାରୁ ଆଣି ପାଖରେ ରଖିଲି । ଅଧଘଣ୍ଟାଏ ପରେ ବିଚିବାବୁ ଆସିଲେ । ପ୍ରଥମେ ଏଣୁ ତେଣୁ କଥା ହୋଇ ପଚାରିଲେ ମିନତି ଲମ୍ବା ଅଭିଯୋଗ କରିଛି ଯେ ସେ ଯାହା କହିନି ଆପଣ ତାହା ଲେଖିଛନ୍ତି । ମୁଁ କିଛି ଉତ୍ତର ନଦେଇ ମୋ ଲେଖା କପି ଯେଉଁଥିରେ ମିନତି ଦାସ ତାଙ୍କ ହାତରେ ସଂଶୋଧନ କରି ମୂର୍ଖ ଶବ୍ଦ ଲେଖିଥିଲେ ତାହା ବିଚିବାବୁଙ୍କୁ ବଢ଼ାଇ ଦେଇ ସେ ଯାଗାଟିକୁ ଦେଖାଇ ଦେଲି । ବିଚିବାବୁ ପଢ଼ିଲେ । ମିନତି ଦାସ ଲେଖିକରି ଦେଇଥିବା ଚିଠି ମଧ ଦେଖିଲେ । ଦୁଇ ଅକ୍ଷର ମିଳାଇଲେ । ତା'ପରେ ଗମ୍ଭୀର ହୋଇ କିଛି ସମୟ ବସିଲେ । ମୁଁ କହିଲି ସାକ୍ଷାତକାର ବେଳେ ଏଭଳି କଥା ନକହିବା ପାଇଁ

କହିଥିଲି । ମାତ୍ର ସେ କହିଲେ ଯାହା ସତ ସେକଥା କହିବାକୁ ମୁଁ ଭୟ କରେନି । ବିଚିବାବୁ ହସିଲେ । କହିଲେ ବିଦେଶରୁ ଆସିଛି । ତେଣୁ ଭାବୁଛି ସିଏ ଯାହା ଇଚ୍ଛା ତା' କହିବ । ସେତିକି ବେଳକୁ ନଟବାବୁ ପଚାରିଲେ ବିଚିବାବୁ କ'ଣ ହେଲା । ବିଚିବାବୁ କହିଲେ ବରେନ୍ଦ୍ର ବାବୁ ଠିକ୍ ଲେଖିଛନ୍ତି । ଓଡ଼ିଶୀ ଗୁରୁଙ୍କ ଭୟରେ ହଡ଼ବଡ଼େଇ ଯାଇ ମିନତି ଏଇନେ ମିଛ କଥା କହୁଛି ସେ ଏସବୁ କିଛି କହିନି ବୋଲି । ନଟବାବୁ ଚୁପ୍ ହୋଇଗଲେ ।

ସେ ଯାତ୍ରା ମୁଁ ଠାକୁରଙ୍କ ଦୟାରୁ ପାର ହୋଇଗଲି । ତା' ପର ଦିନ କଳା ବିକାଶ କେନ୍ଦ୍ରକୁ ଗଲି । ସେଠି କେଳୁ ବାବୁ, ରଘୁଦତ୍ତ ଓ ମାୟାଧର ରାଉତ ଦେଖା ହେଲେ । ସମସ୍ତେ ମୋତେ ଘେରିଯାଇ ମିନତି ଦାସଙ୍କ ସାକ୍ଷାତକାର କଥା ପଚାରିଲେ । ମୁଁ ସବୁ କହିଲି । ସେମାନେ ତା'ପରେ କହିଲେ ହଉ ହଉ ଦେଖିବା କେତେ ବାଟ ସିଏ ଯାଉଛି । ଦେଖିଲି ସାକ୍ଷାତକାରଟି ସାଂସ୍କୃତିକ ମହଲରେ ବେଶ୍ ପ୍ରଭାବ ପକାଇଛି । ମନେ ମନେ ଆତ୍ମପ୍ରସାଦ ଅନୁଭବ କଲି । କାରଣ ସାମ୍ବାଦିକ ଜୀବନ ଆରମ୍ଭ ହେବା ସମୟରେ ଏ ପ୍ରକାର ଏକ ବିବାଦ ମୋତେ ପ୍ରଥମେ ଯେତିକି ଭୟଭୀତ କରିଥିଲା ପରେ ତାହା ମୋର ଆତ୍ମ ପ୍ରତ୍ୟୟକୁ ବୃଦ୍ଧି କରିଥିଲା ।

**କ୍ରୀଡ଼ାପ୍ରେମୀ ସଂଘ, କଟକ**

୧୯୬୩ ମସିହାରେ କେତେଜଣ ଖେଳପ୍ରେମୀଙ୍କ ଉତ୍ସାହରେ ଏ ଅନୁଷ୍ଠାନଟି ଜନ୍ମଗ୍ରହଣ କରିଛି । ଏ ଅନୁଷ୍ଠାନର ଉଦ୍ଦେଶ୍ୟ ହେଉଛି ଖେଳ ଜଗତରେ ଖେଳର ମାନ ରକ୍ଷା କରିଥିବା ଖେଳାଳୀମାନଙ୍କୁ ଉତ୍ସାହିତ କରି ଦର୍ଶକ ଓ ଖେଳାଳୀଙ୍କ ମଧ୍ୟରେ ଯୋଗସୂତ୍ର ସ୍ଥାପନ କରିବା ଓ ଦର୍ଶକମାନଙ୍କର ଖେଳପ୍ରତି ସ୍ପୃହା ବଢ଼ାଇବା ଏବଂ ସେମାନଙ୍କର ସୁବିଧା ପ୍ରତି ଦୃଷ୍ଟିଦେବା । ଗତ ଏକବର୍ଷ ମଧ୍ୟରେ ସଂଘର କାର୍ଯ୍ୟ ଆଶାନୁରୂପ ଆଗେଇ ପାରିନାହିଁ । କେବଳମାତ୍ର ସଂଘର ନିୟମାବଳୀ ପ୍ରସ୍ତୁତ ହୋଇସାରିଛି । ଏଥିମଧ୍ୟରେ ସଭ୍ୟ ଗ୍ରହଣ ଆରମ୍ଭ ହୋଇଛି । ନିକଟରେ ରେଜେଷ୍ଟ୍ରି କାର୍ଯ୍ୟ ଶେଷ ହୋଇଯିବ ବୋଲି ଆଶା ପୋଷଣ କରୁଛି । ଆମର ଆଶା ପ୍ରତ୍ୟେକ ଖେଳପ୍ରେମୀ ଏହି ସଂଘର ସଭ୍ୟ ହୋଇ ଆମମାନଙ୍କୁ ଉତ୍ସାହିତ କରିବେ ।

ଗତବର୍ଷ କଟକ ଫୁଟବଲ୍ ଲିଗ୍ ଖେଳର ଖେଳାଳୀମାନଙ୍କ ମଧ୍ୟରୁ ଜଣେ ଗୋଲ୍ ରକ୍ଷକ, ଜଣେ ପୁରୋଭାଗ ଓ ଜଣେ ରକ୍ଷଣଭାଗ ଖେଳାଳୀଙ୍କୁ ଉତ୍ସାହିତ କରିବା ପାଇଁ ୬-୧୧-୬୩ରେ ନାରୀସଂଘ ସଦନରେ ଗୋଟିଏ ଉତ୍ସବର ଆୟୋଜନ କରାଯାଇଥିଲା । ଉକ୍ତ ଉତ୍ସବରେ ପ୍ରତ୍ୟେକ ଖେଳାଳୀଙ୍କୁ ଗୋଟିଏ ଲେଖାଏଁ ବ୍ଲେଜର ଉପହାର ଦିଆଯାଇଥିଲା । ସର୍ବଶ୍ରେଷ୍ଠ ଖେଳାଳୀଙ୍କୁ ସଂଘର ରନିଂ କପ୍ ମଧ୍ୟ ଦିଆଯାଇଥିଲା । ଚଳିତବର୍ଷ ଗତବର୍ଷ ପରି ଖେଳାଳୀ ମନୋନୟନ ପାଇଁ ପ୍ରାୟ ଶତାଧିକ ଖେଳପ୍ରେମୀଙ୍କୁ ସେମାନଙ୍କର ମତାମତ ଦେବାକୁ ପତ୍ର ଲେଖାଯାଇଥିଲା । ସେଥିମଧ୍ୟରୁ ୬୩ଜଣ ମତାମତ ପଠାଇଥିଲେ । ଉକ୍ତ ମତାମତଗୁଡ଼ିକ ତନଖି କରି ଖେଳାଳୀ ମନୋନୀତ କରିବା ପାଇଁ ସର୍ବଶ୍ରୀ ଶ୍ରୀରାମଚନ୍ଦ୍ର ମହାନ୍ତି, ତାରେଖ ହୋସେନ୍, ପରମେଶ୍ୱର ଦାସ, ରାମଚନ୍ଦ୍ର କର ଓ ବରେନ୍ଦ୍ରକୃଷ୍ଣ ଧଳଙ୍କୁ ନେଇ ଗୋଟିଏ ସବ୍‌କମିଟି ଗଢ଼ାଯାଇଥିଲା । ଉକ୍ତ ସବ୍‌କମିଟି ୯-୧୦-୬୪ ତାରିଖରେ ଶ୍ରୀଯୁକ୍ତ ଶ୍ରୀରାମଚନ୍ଦ୍ର ମହାନ୍ତିଙ୍କ ବାଭବନରେ ବସିଥିଲା ଓ ବିଶେଷ ନିମନ୍ତ୍ରଣକ୍ରମେ ସର୍ବଶ୍ରୀ ପ୍ରଣବକୁମାର ମିତ୍ର, ହୃଷିକେଶ ମହାପାତ୍ର, ଏମ୍.ଏସ୍. ବେଗ, ଜଗତଲାଲ ମିଶ୍ର ଓ ଶାରଦାଚରଣ ମହାନ୍ତି ଯୋଗ ଦେଇଥିଲେ । ବିଭିନ୍ନ ଖେଳପ୍ରେମୀମାନଙ୍କ ଠାରୁ ଆସିଥିବା ଉତ୍ତରଗୁଡ଼ିକ ଯାଞ୍ଚ କରାଯାଇ ନିମ୍ନଲିଖିତ ଖେଳାଳୀମାନଙ୍କୁ ଚଳିତବର୍ଷ ଲିଗ୍ ଫୁଟ୍‌ବଲ୍ ଖେଳର ଶ୍ରେଷ୍ଠ ଖେଳାଳୀ ରୂପେ ବିବେଚନା କରାଯାଇଥିଲା । ଗୋଲରକ୍ଷକ- ଶ୍ରୀ ରବି କାନୁନଗୋ(ଓ.ଟି.ଏମ୍. କ୍ଲବ), ରକ୍ଷଣଭାଗ- ଶ୍ରୀ ରାଜରତନମ୍(ଓ.ଟି.ଏମ୍.କ୍ଲବ୍) ଓ ପୁରୋଭାଗ- ଶ୍ରୀ ସୁଦାମ ଚରଣ ସାହୁ(ଜୟଦୁର୍ଗା କ୍ଲବ) । ଶ୍ରୀ ରାଜରତନମ୍ ସର୍ବ ସମ୍ମତିକ୍ରମେ ଚଳିତବର୍ଷର ସର୍ବଶ୍ରେଷ୍ଠ ଖେଳାଳୀ ରୂପେ ମନୋନୀତ ହୋଇଛନ୍ତି । ଏ ସଂଘ ତରଫରୁ ସେମାନଙ୍କୁ ଅଭିନନ୍ଦନ କରିବା ସଙ୍ଗେ ସଙ୍ଗେ ଆମେ ଆଶାକରୁ ଯେ ଓଡ଼ିଶାର ଖେଳାଳୀମାନେ ଉନ୍ନତ ଖେଳ ପ୍ରଦର୍ଶନ କରି ଓଡ଼ିଶାର ଖେଳରମାନ ଅନ୍ୟାନ୍ୟ ରାଜ୍ୟମାନଙ୍କ ସମକକ୍ଷ କରିବାକୁ ଆପ୍ରାଣ ଉଦ୍ୟମ କରିବେ ।

## -ଡେଭଲପମେଣ୍ଟ ରିପୋର୍ଟିଂ-

ଏ ଘଟଣା ପରେ ଦିନେ ମୋତେ କୃଷ୍ଣ ବାବୁ(କୃଷ୍ଣପ୍ରସାଦ ପଟ୍ଟନାୟକ) କହିଲେ ବରେନ୍ଦ୍ର, ତୁମେ ଖାଲି ଏଇ ଥାନା ଆଉ ସଭାସମିତି ଖବର ନଦେଇ ଡେଭେଲପମେଣ୍ଟ ରିପୋର୍ଟିଂ କର । କଲେକ୍ଟର, ବୋର୍ଡ଼ ଅଫ୍ ରେଭିନ୍ୟୁ

ମେୟର, ଆଇ.ଡି.ପି. ଭଳି ବଡ଼ ବଡ଼ ଅଫିସରଙ୍କୁ ସାକ୍ଷାତ କରି ରାଜ୍ୟର କି କି ଉନ୍ନୟନ କାମ ଚାଲିଛି ଏବଂ କେଉଁଠି କେଉଁଠି ଚାଲିଛି- ଭୂସଂସ୍କାର ଆଦି କିପରି ଚାଲିଛି ସେ ସଂପର୍କରେ ଖବର ନେଇ ସେମାନଙ୍କୁ ସାକ୍ଷାତ କରି ସେମାନଙ୍କ ମତାମତ ଆଣ । ସେ ପ୍ରକାର ରିପୋର୍ଟ ତମ ଓଜନ ବଢ଼ାଇବ । ମୋର ସେତେବେଳେ ସେତେ ଜ୍ଞାନ ନଥାଏ । ତେବେ ଇଷ୍ଟେଟ ଆବୋଲିସନ୍ ଅଫିସ୍‌ରେ ଯେଉଁ କେତେଦିନ କାମ କରିଥିଲି ସେଥିରେ ଜମିଦାରୀ ଉଚ୍ଛେଦ ପରେ ଯେଉଁ ସମସ୍ୟା ଉପୁଜିଥିଲା ଏବଂ ଜମିଦାରୀରେ କାମ କରୁଥିବା ଲୋକଙ୍କୁ ସରକାରଙ୍କ ବିଭିନ୍ନ ଚାକିରିରେ ନିଯୁକ୍ତି ଦେବାରେ ଯେଉଁ ଅସୁବିଧା ହୋଇଥିଲା ସେ କଥା ମୁଁ ଜାଣିଥିଲି । ତେଣୁ ପ୍ରଥମେ ତା'ରି ଉପରେ ଏକ ପ୍ରଶ୍ନାବଳୀ ପ୍ରସ୍ତୁତ କରିବାକୁ ସ୍ଥିର କଲି ।

ଜୀବନର ଗତି ଅତି ବିଚିତ୍ର । ଶ୍ରେଣୀ ଗୃହରେ ପୁସ୍ତକ ମଧ୍ୟରେ ଯେତିକି ଶିକ୍ଷା ଲାଭ ହୁଏ ବାସ୍ତବ ଜୀବନରେ ତା'ର ଉପଯୋଗ ଅପେକ୍ଷା କର୍ମକ୍ଷେତ୍ରରେ ତା' ଅପେକ୍ଷା ଆହୁରି ଅଧିକ ଶିକ୍ଷାଲାଭ ହୁଏ । ମଣିଷ ଠିକିଲେ ଶିଖେ । ସମାଜରେ ଅନେକ ଏଭଳି ଲୋକ ଅଛନ୍ତି ଯେଉଁମାନଙ୍କୁ ଦେଖି ହଠାତ୍ ଜାଣିହୁଏ ନାହିଁ ସେମାନଙ୍କର ପ୍ରକୃତ ଉଦ୍ଦେଶ୍ୟ ଆଉ ଚରିତ୍ର । ଉପରକୁ ଏମାନେ ଯାହା ଭିତରେ ସେଇଆ ନୁହନ୍ତି । ସାଧାରଣ ଲୋକେ ଏମାନଙ୍କୁ ଜାଣିବା ସମ୍ଭବ ହୁଏ ନାହିଁ । ସାମ୍ବାଦିକତାରେ ଯୋଗ ଦେବା ପରେ ମୁଁ ଏଭଳି ଅନେକ ଚରିତ୍ରଙ୍କ ସଂସ୍ପର୍ଶରେ ଆସିଲି ଯେଉଁମାନଙ୍କୁ ମୁଁ ପୂର୍ବରୁ ଭିନ୍ନ ରୂପରେ ଦେଖିଥିଲି । ସାମ୍ବାଦିକତାର ବିସ୍ତୃତ ପରିଧି ମଧ୍ୟରେ ସମାଜର ବିଭିନ୍ନ ଶ୍ରେଣୀ ବହୁ ଧରଣର ଲୋକଙ୍କ ସହ ପରିଚୟ ହୁଏ । ଅନେକଙ୍କୁ ଦେଖି ମନରେ ଶ୍ରଦ୍ଧାଜାତ ହୁଏ । ସେମାନଙ୍କ ନିଷ୍ଠା, କର୍ମତତ୍ପରତା ଆଉ ସାମାଜିକ ଜୀବନରେ ନିଜକୁ ଅଯଥା ଦେଖାଇ ହେବାରୁ ବିରତ ରହିବାର କ୍ରିୟାରୁ । ଏମାନେ ନିରଳସ କର୍ମୀ ।

## -କ୍ରୀଡା ସାମ୍ବାଦିକତା-

ପୂର୍ବରୁ ମୁଁ କହିଛି ମାତୃଭୂମି ପାଇଁ ମୁଁ କ୍ରୀଡ଼ା ସାମ୍ବାଦିକ ରୂପେ ମଧ କାର୍ଯ୍ୟ କରୁଥିଲି । ସେତେବେଳେ କଟକରେ ଥିବା ଚାରୋଟି ଖବର କାଗଜ ସମାଜ, ପ୍ରଜାତନ୍ତ୍ର, ମାତୃଭୂମି ଆଉ କଳିଙ୍ଗ ପାଇଁ କ୍ରୀଡ଼ା ସାମ୍ବାଦିକ ରୂପେ ଯଥାକ୍ରମେ ଶ୍ୟାମକାନ୍ତ ପଟ୍ଟନାୟକ ଓରଫ୍ କାଲୁ, ରାମ ପ୍ରସାଦ ମହାନ୍ତ ଓରଫ୍ ଜହୁରୀ ଭାଇ, ମୁଁ ବରେନ୍ଦ୍ର କୃଷ୍ଣ ଧଳ ଓ ଗୋଲକ ଦାସ । ଶ୍ୟାମକାନ୍ତ ନିଜେ ଜଣେ ବିଖ୍ୟାତ କ୍ରୀଡ଼ା ବ୍ୟକ୍ତିତ୍ୱ ଥିଲେ । ସେ ଓଡ଼ିଶା ରଞ୍ଜୀଟ୍ରଫି କ୍ରିକେଟ ଦଳ ଫାଷ୍ଟବୋଲର୍ ରୂପେ ଖେଳୁଥିଲେ । ଓଡ଼ିଶାର ସେ ପ୍ରଥମ କ୍ରିକେଟ ଖେଳାଳି ରୂପେ ଭାରତୀୟ ସ୍କୁଲ କ୍ରିକେଟ ଦଳରେ ମନୋନୀତ ହୋଇ ଶ୍ରୀଲଙ୍କା ଖେଳିବାକୁ ଯାଇଥିଲେ । ପରେ କ୍ରିକେଟ୍ ଛାଡ଼ିଦେଇ ଫୁଟବଲ୍ ରେଫରୀ ରୂପେ ବହୁ ଖ୍ୟାତି ଅର୍ଜନ କରିଥିଲେ । ସମ୍ଭବତଃ ସେ ଶୈଳେନ୍ ରାୟଙ୍କ ପରେ ଓଡ଼ିଶାର ଦ୍ୱିତୀୟ ରେଫରୀ ଯିଏ ସନ୍ତୋଷଟ୍ରଫି ଫୁଟବଲ୍ ମ୍ୟାଚ୍ ପରିଚାଳନା କରିଥିଲେ । ବାରବାଟି ଷ୍ଟାଡିୟମ୍‌ରେ ମୋର ଶ୍ୟାମକାନ୍ତ ଓରଫ୍ କାଲୁ ସହ ପରିଚୟ ଏବଂ ଘନିଷ୍ଠ ବନ୍ଧୁତା ହୋଇଥିଲା ଏବଂ ଆମ ବନ୍ଧୁତା ଏବେ ସୁଦ୍ଧା ଅକ୍ଷୁର୍ଣ୍ଣ ରହିଛି ।

ସେତେବେଳେ କଟକରେ ଫୁଟବଲ ଖେଳ ବେଶ୍ ଜାକ୍‌ଜମକରେ ହେଉଥିଲା, ବାରବାଟି ଷ୍ଟାଡିୟମରେ ଫୁଟବଲ୍ ସିଜନ୍‌ରେ ପ୍ରତିଦିନ କଟକ ଫୁଟବଲ୍ ଲିଗ୍ ଖେଳ ହେଉଥିଲା । ମୁଁ କ୍ଲବ ହାଉସର ଉପର ମହଲାରେ ବସି ଖେଳ ଦେଖି ରିପୋର୍ଟିଂ କରୁଥିଲି । ବେଳେବେଳେ ପଡ଼ିଆରେ ବସି ମଧ ଖେଳ ଦେଖୁଥିଲି । ଓଡ଼ିଶା ଫୁଟବଲ୍ ଆସୋସିଏସନ୍‌ର ସେତେବେଳେ ସର୍ବମୟ କର୍ତ୍ତା ଥିଲେ ଭୈରବ ମହାନ୍ତି । ସେ ଫୁଟବଲ୍ ଆସୋସିଏସନ୍‌ର ସଭାପତି ଥିବାବେଳେ ଓଡ଼ିଶା କ୍ରିକେଟ ଆସୋସିଏସନ୍ ଓ ଓଡ଼ିଶା ଅଲମ୍ପିକ ଆସୋସିଏସନ୍‌ର ସମ୍ପାଦକ ଥିଲେ । ଫୁଟବଲ୍ ଆସୋସିଏସନ୍‌ର ସମ୍ପାଦକ ଥିଲେ ନନ୍ଦନନ୍ଦନ ମହାପାତ୍ର ଓରଫ୍ ଫେଲୁ ମହାପାତ୍ର । ସହକାରୀ ସମ୍ପାଦକ

ଥିଲେ ଅମଳ ରାୟ, ବିଭୂତି ଦାସ । ମୁଁ ଯେଉଁ ସମୟର କଥା କହୁଛି ତା' ୧୯୬୨ ମସିହା । ମଝିରେ ବିଭୂତି ଦାସଙ୍କୁ ହରାଇ ବିପିନ୍ ସିଂହ ସହକାରୀ ସମ୍ପାଦକ ହୋଇଥିଲେ । ପରେ ବିଭୂତି ଦାସ ଫୁଟବଲ୍ ଆସୋସିଏସନ୍ ଛାଡ଼ି ଦେଇ ଓଡ଼ିଶା କ୍ରିକେଟ୍ ଆସୋସିଏସନ୍‌ର ସହକାରୀ ସମ୍ପାଦକ ହେଲେ ।

କଟକର ସବୁଠୁ ଜନପ୍ରିୟ ଖେଳ ଥିଲା ଫୁଟବଲ୍ । ସେତେବେଳେ ବାରବାଟି ଷ୍ଟାଡିୟମରେ ଦୁଇଟି ଗ୍ୟାଲେରୀ ନିର୍ମିତ ହୋଇଥିଲା କ୍ଲବ ହାଉସ୍‌ର ଦୁଇପଟେ । ଉପରେ ଆଜ୍‌ବେଷ୍ଟସ୍ ଛାତ ଥିଲା । ଫୁଟବଲ୍ ସିଜନ୍‌ରେ ଏ ଦୁଇ ଗ୍ୟାଲେରୀ ପ୍ରାୟ ଦର୍ଶକରେ ଭର୍ତ୍ତିହୋଇ ଯାଉଥିଲା । ତେବେ ଖେଳ ଓ ଦଳ ଦେଖି ସେତେବେଳେ ସିନିୟର ଡିଭିଜନ୍‌ରେ ମୋଟ ଆଠୋଟି ଦଳ ପ୍ରତିଯୋଗିତା କରୁଥିଲେ । ଏଗୁଡ଼ିକ ହେଲେ ୧)କଳିଙ୍ଗ ଟ୍ୟୁବସ୍, ୨)ଓ.ଟି.ଏମ୍., ୩)ଓଡ଼ିଶା ଗଭର୍ଣ୍ଣମେଣ୍ଟ ପ୍ରେସ୍, ୪)ଓଡ଼ିଶା ପୋଲିସ୍, ୫)ଜୟଦୁର୍ଗା, ୬)ରାଇଜିଂ ଷ୍ଟାର୍, ୭)ରେଭର୍ସ ଓ ୮)ସନ୍‌ରାଇଜ୍ । ତେବେ ସବୁଠାରୁ ପ୍ରତିଦ୍ୱନ୍ଦ୍ୱିତା ମୂଳକ ଖେଳ ହେଉଥିଲା କଳିଙ୍ଗ ଟ୍ୟୁବ୍‌ସ ଓ ଓ.ଟି.ଏମ୍., ପ୍ରେସ୍ ଓ ପୋଲିସ୍ ଏବଂ ଜୟଦୁର୍ଗା ଓ ରାଇଜିଂ ଷ୍ଟାର । ଏହି ତିନି ଯୋଡ଼ାଙ୍କର ମ୍ୟାଚ୍ ଯେଉଁଦିନ ଥାଏ ସେଦିନ ଷ୍ଟାଡିୟମ୍ ଦର୍ଶକରେ ଭରପୂର ଥାଏ ।

ବାରବାଟି ଷ୍ଟାଡିୟମକୁ ଖେଳ ରିପୋର୍ଟିଂ କରିବା ପାଇଁ ଯାଇ ମୁଁ ଆଉ କିଛି ଲୋକଙ୍କ ସହ ପରିଚିତ ହେଲି । ସେମାନଙ୍କ ମଧ୍ୟରେ ଶୈଳେନ ରାୟ ଅନ୍ୟତମ । ଶୈଳେନ ରାୟଙ୍କ ଘର କଟକ ସହରର ବାଖରାବାଦରେ । ସେତେବେଳେ ସେ ଜାତୀୟ ସ୍ତରର ରେଫରୀ । ଓଡ଼ିଶାର ସେ ପ୍ରଥମ ରେଫରୀ ଯିଏ ସନ୍ତୋଷ ଟ୍ରଫି ଫୁଟବଲ୍ ମ୍ୟାଚ୍ ପରିଚାଳନା କରିଥିଲେ । ଶୈଳେନ ରାୟଙ୍କୁ ସମସ୍ତେ ଶୈଳେନ ଦା ବୋଲି ଡାକୁଥିଲେ । ବେଶ୍ ହସଖୁସିଆ ମଣିଷ । ସେ ଓଡ଼ିଶା ୱେଟ ଲିଫ୍‌ଟିଂ ଆସୋସିଏସନ୍ ବା ଭାରୋତ୍ତୋଳନ ସଂଘର ସଭାପତି ଥିଲେ । ମୋ ସହ ପରିଚୟ ହେବାପରେ ମୋତେ ଭାରି ଶ୍ରଦ୍ଧା କରୁଥିଲେ ।

କ୍ଲବ ହାଉସ୍ ଉପର ମହଲାରେ ମୁଁ ବସୁଥିବା ସ୍ଥାନ ପାଖରେ ଆଉ ଚାରିଜଣ ବ୍ୟକ୍ତି ବସୁଥିଲେ । ଏମାନଙ୍କ ବୟସ ସେତେବେଳେ ଷାଠିଏରୁ ସତୁରୀ ବାସ୍ତରୀ ବୟସ । ଜଣେ ହେଲେ ବଙ୍କିମ ଚନ୍ଦ୍ର ପଟ୍ଟନାୟକ ଓଡ଼ିଶା ଲୋକସେବା ଆୟୋଗ ବା ପବ୍ଲିକ୍ ସର୍ଭିସ୍ କମିଶନର ଚେୟାରମ୍ୟାନ(ବୟସ-୬୨), ଆଉଜଣେ ହେଲେ ଆଡ଼ଭୋକେଟ୍ ରୁଦ୍ର ଚରଣ ମହାନ୍ତି (ବୟସ- ୭୨, ଘର- ଚୌଧୁରୀ ବଜାର), ତୃତୀୟ ଜଣ ହେଲେ ପରମେଶ୍ୱର ଦାସ(ବୟସ-୭୦) ଏବଂ ଚତୁର୍ଥ ଜଣକ ହେଲେ କ୍ୟାପଟେନ୍ ନୀଳମଣି ମହାନ୍ତି (ବୟସ- ୬୨) । ଏମାନଙ୍କ ମଧ୍ୟରୁ କେବଳ ରୁଦ୍ରବାବୁଙ୍କୁ ଛାଡ଼ିଦେଲେ ଅନ୍ୟ ସମସ୍ତେ ଅତୀତରେ ଓଡ଼ିଶା ଫୁଟବଲ୍ ଦଳର ଖେଳାଳି ଥିଲେ । ସେମାନଙ୍କ ସମୟ କଥା ଏମାନଙ୍କ ମୁହଁରୁ ଶୁଣିବା ବେଳେ ଭାରି ଭଲଲାଗେ । ରୁଦ୍ର ଚରଣ ମହାନ୍ତି ଥିଲେ ଆଡ଼୍‌ଭୋକେଟ୍ । ଖବର କାଗଜରେ ସଂପାଦକଙ୍କୁ ପତ୍ର ସ୍ତମ୍ଭରେ ତାଙ୍କ ପତ୍ର ପ୍ରତିଦିନ ପ୍ରକାଶ ପାଉଥାଏ । କଟକ ସହରର ବିଭିନ୍ନ ସମସ୍ୟା ନେଇ ସେ ଲେଖନ୍ତି । ସମ୍ଭବତଃ ଭାରତବର୍ଷରେ ଏତେ ପତ୍ର କୌଣସି ବ୍ୟକ୍ତିଙ୍କର କେବେ ବାହାରି ନଥିବ । ବଙ୍କିମ୍ ବାବୁ ଷ୍ଟାଡିୟମ ପାଖରେ ସରକାରୀ କ୍ୱାଟରରେ ରହୁଥିଲେ । କ୍ୟାପ୍‌ଟେନ୍ ନୀଳମଣି ମହାନ୍ତି ସେତେବେଳେ କଟକ ଉନ୍ନୟନ ବୋର୍ଡ଼ ଚେୟାରମ୍ୟାନ୍ ରୂପେ କଟକ ମ୍ୟୁନିସ୍‌ପାଲିଟି ପାଖ ଶହିଦ ଭବନର ଉପର ମହଲାରେ ରହୁଥିଲେ । ପରମେଶ୍ୱର ବାବୁ ରାଣିହାଟରୁ ଆସୁଥିଲେ । ଏହି ଦୁଇ ବ୍ୟକ୍ତି ରୁଦ୍ରଚରଣ ମହାନ୍ତି ଓ ପରମେଶ୍ୱର ଦାସ ସାଇକେଲ୍‌ରେ ଆସୁଥିଲେ । ପ୍ରତିଦିନ ଚାରିଟା ପୂର୍ବରୁ ଏମାନେ ଆସି ନିଜ ନିଜ ସ୍ଥାନରେ ବସି ଯାଉଥିଲେ ।

୧୯୬୨ ମସିହା ବାରବାଟି ଷ୍ଟାଡିୟମ ପାଇଁ ଏକ ସ୍ମରଣୀୟ ବର୍ଷ । ସେ ବର୍ଷ ସନ୍ତୋଷ ଟ୍ରଫି ଫୁଟବଲ୍

ପ୍ରତିଯୋଗିତା କଟକରେ ଅନୁଷ୍ଠିତ ହୋଇଥିଲା । ଓଡ଼ିଶା ଫୁଟବଲ୍ ଦଳକୁ କୋଚିଂ ଦେବା ପାଇଁ କଲିକତାର ସେତେବେଳକାର ବିଖ୍ୟାତ କୋଚ୍ ଅମଲ୍ ଦତ୍ତ କଟକ ଆସିଥିଲେ । ଓଡ଼ିଶା ଦଳକୁ ସେ କୋଚିଂ ଦେଇ ଏକ ଶକ୍ତିଶାଳୀ ଦଳରେ ପରିଣତ କରିଥିଲେ । ମୋର ଯାହା ମନେ ଅଛି ଓଡ଼ିଶା ସେ ବର୍ଷ ପ୍ରଥମଥର ପାଇଁ ସେମିଫାଇନାଲ୍ ରାଉଣ୍ଡକୁ ଯାଇଥିଲା । ସ୍ୱାଭାବିକ ଭାବେ ଏ କୃତିତ୍ୱ ଅମଲ ଦତ୍ତଙ୍କର ପ୍ରାପ୍ୟ ।

୧୯୬୩ ମସିହାରେ କଟକର କିଛି ବିଶିଷ୍ଟ କ୍ରୀଡ଼ାପ୍ରେମୀଙ୍କ ଉତ୍ସାହରେ 'କ୍ରୀଡ଼ାପ୍ରେମୀ ସଂଘ' ନାମରେ ଏକ ଅନୁଷ୍ଠାନ ଗଠନ କରାଗଲା । ସେତେବେଳକୁ ମୁଁ ବାରବାଟି ଷ୍ଟାଡିୟମରେ ବେଶ୍ ଜଣାଶୁଣା ହୋଇ ସାରିଥିଲି । କ୍ରୀଡ଼ାପ୍ରେମୀ ସଂଘର କର୍ମକର୍ତ୍ତାମାନେ ମୋତେ ଏହି ସଂଘର ଅନ୍ୟତମ କର୍ମକର୍ତ୍ତା ରୂପେ ମନୋନୀତ କରିଥିଲେ । ଏହି ଅନୁଷ୍ଠାନ ପକ୍ଷରୁ ୧୯୬୪ ମସିହା ଡିସେମ୍ବର ୬ ତାରିଖରେ ଯେଉଁ ମୂଳ ଆବେଦନଟି ପ୍ରକାଶ ପାଇଥିଲା ତା'ର ଏକ ନକଲ ଏଠି ପ୍ରକାଶ କରୁଛି ।

## -ଅନ୍ନପୂର୍ଣ୍ଣା ଥିଏଟର ଓ ବାବି ବାବୁ -

ସେତେବେଳେ କଟକ ସହର ଓଡ଼ିଶାର ସାଂସ୍କୃତିକ ପ୍ରାଣ କେନ୍ଦ୍ର । ପ୍ରତିଦିନ କଟକରେ ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍, ଜନତା ଥିଏଟରରେ ନାଟକ ପ୍ରଦର୍ଶନ ହେଉଥିଲା । ମୁଁ ମାତୃଭୂମିର ରିପୋର୍ଟର ରୂପେ ପ୍ରତ୍ୟେକ ନାଟକର ପ୍ରଥମ ରାତ୍ରୀର ଅଭିନୟ ଦେଖିବାକୁ ଯାଉଥିଲି । ସେ ନାଟକର ରିଭ୍ୟୁ ପରବର୍ତ୍ତିରବିବାର ମାତୃଭୂମିର ସିନେମା-ଥିଏଟର ସ୍ତମ୍ଭରେ ପ୍ରକାଶ କରାଯାଉଥାଏ । ମୋର ମନେ ଅଛି ସେତେବେଳେ ଅନ୍ନପୂର୍ଣ୍ଣା 'ବି' ଗ୍ରୁପରେ ଗୋଟିଏ ନାଟକର ନିର୍ଦ୍ଦେଶନା ବାବିବାବୁ(ସାମୁଏଲ ସାହୁ) ଦେଉଥିବା ବେଳେ ପରବର୍ତ୍ତିନାଟକର ନିର୍ଦ୍ଦେଶନା ପୀରବାବୁ (ପ୍ରିୟନାଥ ମିଶ୍ର) ଦେଉଥିଲେ । ବାବିବାବୁ ଭାରି ହସଖୁସିଆ ମଣିଷ । ମାତ୍ର ପୀରବାବୁ ଗମ୍ଭୀର ପ୍ରକୃତିର ଲୋକ । ନାଟକ ଶେଷରେ ଆମେ ତିନି/ଚାରିଜଣ ସାମ୍ବାଦିକ ଅନ୍ନପୂର୍ଣ୍ଣା ଥିଏଟର ଅଫିସ୍‌ରେ ବସି କଥାବାର୍ତ୍ତା ହେଉଥିବା ବେଳେ ବାବିବାବୁ ପଶି ଆସି କହିବେ ଆହେ ଟୋକା ସାମ୍ବାଦିକ ଲେଖିବ ନାଟକ ଭଲ ହୋଇଛି । ଏଣୁ ତେଣୁ କିଛି ଲେଖି ଆମ ପେଟରେ ନାତ୍ ମାରିବନି । ଆମେ ଏଇଥିରୁ ଖାଇ ପିଇ ବଞ୍ଚୁଛୁ । ବାବିବାବୁଙ୍କ କଥା କହିବାର ଭଙ୍ଗିରେ ସମସ୍ତେ ହସନ୍ତି । ପ୍ରଭାତ ସିନେମା କଡ଼ ଦୋକାନରୁ ଗରମ ଗରମ ବରା ଆସେ । ସମସ୍ତେ ଖା'ନ୍ତି । ବାବିବାବୁ ମଧ ଖା'ନ୍ତି । ଅନ୍ନପୂର୍ଣ୍ଣା ଥିଏଟର ମାଲିକ ସୋମନାଥ ନନ୍ଦ । ସେ ସେଇଠି ଥା'ନ୍ତି । ଥରେ ମୁଁ ପଚାରିଲି ଆଜ୍ଞା ଆପଣ ଯେଉଁ ନାଟକ ନିର୍ଦ୍ଦେଶନା ଦେଉଛନ୍ତି ତାହାର ପ୍ରଥମ ଅଭିନୟ ଶେଷ ହେବା ପରେ ଏଇ ଯେମିତି ଆସି ଆମ ସାଙ୍ଗରେ ବସି ବରା ଖାଇ କଥାବାର୍ତ୍ତା ହେଉଛନ୍ତି କାହିଁ ପୀରବାବୁ ତ କେବେ ଆସନ୍ତି ନାହିଁ । ପ୍ରଶ୍ନ ଶୁଣି ବାବିବାବୁ ଟିକେ ଗୁମ୍ ମାରି ଯାଇ କହିଲେ ପୀରବାବୁ ଅଲଗା କିସମର ଲୋକ । ସେ ଆମ ତୁମ ଭଳି ଲୋକ ନୁହନ୍ତି । ଟିକେ ସୁଛିଆ ଲୋକ । ଏଇନେ ତାଙ୍କ ଘର ବାରଣ୍ଡାରେ ବସି ସେ ଭାଉଜଙ୍କ ସାନିଧିରେ ଚା' ଖାଇ ତାଙ୍କ ଅଭିନୟର ଆଲୋଚନା କରୁଥିବେ । ହେଲା ଏଥର ଯେଉଁ ନାଟକ ପୀର ଭାଇନା ନିର୍ଦ୍ଦେଶନା ଦେଇଥିବେ ଆମେ ତାଙ୍କ ପକ୍ଷରୁ ତୁମମାନଙ୍କୁ କଟକି ବରା ଖୁଆଇବୁ । ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍‌ରେ ବାବିବାବୁଙ୍କ ଅଭିନୟ କିନ୍ତୁ ସମସ୍ତଙ୍କର ଆକର୍ଷଣର କେନ୍ଦ୍ରବିନ୍ଦୁ ଥାଏ । ପୀର ବାବୁ ମଧ ଭଲ ଅଭିନେତା । କିନ୍ତୁ ଦୁହିଁଙ୍କ ମଧରେ ବାବିବାବୁଙ୍କ ପ୍ରତି ସାଧାରଣ ଦର୍ଶକଙ୍କର ଅଧିକ ପସନ୍ଦ ଥାଏ । ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍ କ୍ୟାପିଟାଲ ସିନେମା ଓ ପ୍ରଭାତ ସିନେମା ମଝିରେ ଥାଏ । ଏବେ ଆଉ କ୍ୟାପିଟାଲ୍ ସିନେମା, ଅନ୍ନପୂର୍ଣ୍ଣା ଥିଏଟର ବା ପ୍ରଭାତ ସିନେମା କୌଣସିଟି ନାହିଁ । ସମୟ ସ୍ରୋତରେ ଏ ସମସ୍ତ ଅନୁଷ୍ଠାନ ଦୀର୍ଘଦିନ ହେଲା ବନ୍ଦ ହୋଇଗଲାଣି । ଆଜି ସେଦିନର କଥା ମନେ ପଡ଼ିଲେ ଦୁଃଖ ଆସେ । ଏ ସମସ୍ତ ଅନୁଷ୍ଠାନ କଟକକୁ ଚଳଚଞ୍ଚଳ କରି ରଖିଥିଲେ ।

କ୍ୟାପିଟାଲ ସିନେମା କଟକର ପ୍ରଥମ ସିନେମା ହଲ୍ । ତା'ପରେ ପ୍ରଭାତ ସିନେମା ଏବଂ ଶେଷରେ ରାଣୀହାଟରେ ହେଲା ହିନ୍ଦ୍ ସିନେମା । ଆଜି ଏଇ ତିନୋଟିଯାକ ସିନେମାହଲ୍ ବନ୍ଦ ହୋଇଯାଇଛି । ମୁଁ ଆଉ କାଳୁ (ଶ୍ୟାମାକାନ୍ତ ପଟ୍ଟନାୟକ) ଷ୍ଟାଡିୟମ୍‌ରେ ଖେଳ ପରେ ପ୍ରଥମେ ପଢ଼ିଥିବା ସିନେମାର ଦ୍ୱିତୀୟ ସୋ' ସିନେମା ଦେଖିବାକୁ ଯାଉ । ସେତେବେଳେ ମୁଁ ଚାନ୍ଦିନି ଚୌକର ଉଏଷ୍ଟର୍ଣ୍ଣ ହୋଟେଲ୍‌ରେ ଖାଉଥିଲି ।

ହଁ ଆଉ ଗୋଟିଏ କଥା କହି ରଖେ । ମୁଁ ୧୯୬୩ ଫେବୃୟାରୀ ମାସ ବେଳକୁ କବିଚନ୍ଦ୍ରଙ୍କ ଘର ଛାଡ଼ି ରାଜାବଗିଚା ଲେବର କଲୋନିରେ ଗୋଟିଏ କ୍ୱାଟରରେ ଆସି ରହିଲି । ସେତେବେଳେ ସାମ୍ବାଦିକ ଓ ପ୍ରେସ୍ ୱାର୍କରଙ୍କ ପାଇଁ ରାଜା ବଗିଚା ଲେବର କଲୋନି ହୋଇଥିଲା । ମୋ ନାମରେ ପି-୧୩ ନମ୍ବର ଘରଟି ଆଲଟ୍‌ମେଣ୍ଟ ହୋଇଥିଲା । ମାସିକ ଭଡ଼ା ଦଶଟଙ୍କା । ଏହି କ୍ୱାର୍ଟରରେ ଦୁଇଟି କୋଠରୀ ଏବଂ ପଛପଟେ ଉଠା ପାଇଖାନା । ସେତେବେଳେ କଟକରେ ସବୁ ଉଠା ପାଇଖାନା ଥାଏ । ପଛପଟେ ଗୋଟିଏ ପାଣି ଟ୍ୟାପ ଥାଏ । ମୁଁ ସେଠି ରହିବା ପରେ ସେଇ ପ୍ରଥମଥର ପାଇଁ ମୋ ନିଜର ଘର ବୋଲି କିଛି ଅନୁଭବ କଲି । ସେଠି କାଳୀବାବୁଙ୍କ ଘରେ ବଢ଼େଇ କରିଥିବା ଖଟ, କାଳୀବାବୁ ମତେ ଗୋଟିଏ ଟେବୁଲ୍ ଓ ଚେୟାର ଦେଇଥିଲେ । ସେ ଘରେ ସେତିକି ମୋର ସମ୍ପତ୍ତି । ଗୋଟିଏ ଆଲଣା କିଣି ସେଥିରେ ପ୍ୟାଣ୍ଟସାର୍ଟ ଟଙ୍ଗାଇ ଥାଏ । ସକାଳୁ ଉଠି ଘରଭିତରେ ନିତ୍ୟକର୍ମ ସାରି ସାଢ଼େ ଛ'ଟା ବେଳକୁ ସାଇକେଲ ଧରି ବାହାରିପଡ଼େ ।

ଏଥର ଆସନ୍ତୁ ଯିବା ଥିଏଟର ଆନ୍ଦୋଳନକୁ । କଟକର ବାଙ୍କା ବଜାରରେ ଥାଏ ଜନତା ରଙ୍ଗମଞ୍ଚ । ଏହା କଳାକାରମାନଙ୍କର ଏକ ମିଳିତ ଅନୁଷ୍ଠାନ । ବିଭିନ୍ନ ସମୟରେ ରାଜ୍ୟର ବିଶିଷ୍ଟ ବ୍ୟକ୍ତିମାନେ ଏହାର ସଭାପତି ଦାୟିତ୍ୱ ନେଇଥିଲେ । ଏଥିରେ ମଞ୍ଚସ୍ଥ ହେଉଥିବା ନାଟକର ନିର୍ଦ୍ଦେଶନା ଦାୟିତ୍ୱ ନେଉଥିଲେ ନଟବର ସେଣ, ନିରଞ୍ଜନ ଶତପଥୀ ଓ ଭୋଳାନାଥ ଦାସ । ଏହା ବ୍ୟତୀତ ଆଉ ଗୋଟିଏ ମଞ୍ଚ ଗଢ଼ି ଉଠିଥିଲା ଲିଙ୍କ୍ ରୋଡ୍ ଛକରେ । ତା' ନାଁ କଳାଶ୍ରୀ ଥିଏଟର । ଏହା ଏକ ଚାଳ ଘରେ ହେଉଥିଲା । ସେତେବେଳେ କଟକରେ ସାଧାରଣ ଲୋକଙ୍କ ମନୋରଞ୍ଜନ ପାଇଁ ଏତେ ସବୁ ଉପାଦାନ ଥିଲା ଯେ ଲୋକେ ସିନେମା ନହେଲେ ଥିଏଟର ଯାଉଥିଲେ । ମୋର ସୌଭାଗ୍ୟ ଯେ ମୁଁ ସାମ୍ବାଦିକ ଭାବେ ସେତେବେଳେ ଏହି ସଂସ୍କୃତି କ୍ଷେତ୍ରରେ ନିଜକୁ ଜଡ଼ିତ କରି ଦେଇଥିଲି । ଚୌଧୁରୀ ବଜାରରେ ସେତେବେଳେ ଗୋଟିଏ ଅନୁଷ୍ଠାନର ମୋତେ ସଭାପତି କରାଯାଇଥିଲା । ଆମେ କେତେଜଣ ସମବୟସ୍କ ବନ୍ଧୁ ମିଶି ଏହି ଅନୁଷ୍ଠାନ ଗଢ଼ିଥିଲୁ । ସେଥିରେ 'ଚାକିରି' ନାମରେ ଏକ ନାଟକ ମଞ୍ଚସ୍ଥ ପାଇଁ ସ୍ଥିର କରିଥିଲୁ । କଟକ ରେଡିଓ ଷ୍ଟେସନର ବିଖ୍ୟାତ ଗୀତିକାର ନରସିଂହ ମହାପାତ୍ର ଏହାର ନିର୍ଦ୍ଦେଶନା ଦାୟିତ୍ୱ ନେଇଥିଲେ । ମୋର ଯାହା ମନେ ପଡୁଛି ଝରଣା ଦାସ ଏହାର ନାୟିକା ଭୂମିକାରେ ଅଭିନୟ କରିବାପାଇଁ ଚୁକ୍ତିବଦ୍ଧ ହୋଇ ରିହରସାଲ୍‌କୁ ଆସୁଥିଲେ । ମାତ୍ର ଚୌଧୁରୀ ବଜାରର କିଛି ଯୁବକଙ୍କ ଟାହି ଟାପରା ଯୋଗୁ ସେ ମଝିରୁ ଆସିବା ବନ୍ଦ କରି ଦେଲେ । ଫଳରେ ନାଟକ ମଧ ବନ୍ଦ ହୋଇଗଲା ।

କଟକରେ ପାରମ୍ପରିକ ନାଟକ ଗୋଟିଏ ପଟେ ଚାଲିଥିବା ବେଳେ ଅନ୍ୟ ଦିଗରେ କେତେଜଣ ବିଖ୍ୟାତ କଳାକାର ନବନାଟ୍ୟ ଆନ୍ଦୋଳନ ଆରମ୍ଭ କରିଥିଲେ । ଏହି ସଂସ୍ଥାର ନାମ ଦିଆଯାଇଥିଲା 'ସୃଜନୀ' । ଏଥିରେ ସର୍ବଶ୍ରୀ ଗୋବିନ୍ଦ ତେଜ, ଅନନ୍ତ ମହାପାତ୍ର, ହେମନ୍ତ ଦାସ, ବିଶ୍ୱଜିତ୍ ଦାସ, ମନୋରଞ୍ଜନ ଦାସ, ସଚ୍ଚି ଦାସ(ରେଡିଓ), ସୁରେନ୍ଦ୍ର ମହାନ୍ତି, ବ୍ୟୋମକେଶ ତ୍ରିପାଠୀ, ଡାକ୍ତର ସୁଖଲତା ଦାସ, ଉର୍ବଶୀ ତ୍ରିପାଠୀ(ପରେ ଯୋଶୀ ହେଲେ), ସୁଷମା ମିଶ୍ର ପ୍ରମୁଖ ବହୁ ବିଖ୍ୟାତ କଳାକାର ଅଭିନୟ କରୁଥିଲେ । ଏମାନଙ୍କର ନିଜର ସ୍ୱତନ୍ତ୍ର

ପ୍ରେକ୍ଷାଳୟ ନଥିଲା । ତେଣୁ ସପ୍ତାହରେ ତିନିଦିନ ଏମାନେ କଟକ ନାରୀ ସଂଘ ସଦନରେ ସେମାନଙ୍କର ନାଟକ ମଞ୍ଚସ୍ଥ କରୁଥିଲେ । ଏହି ଅନୁଷ୍ଠାନ ସେତେବେଳେ ଓଡ଼ିଶାରେ ବେଶ୍ ଚହଳ ପକାଇଥିଲା । ମନୋରଞ୍ଜନ ଦାସ ଓ ବିଶ୍ୱଜିତ୍ ଦାସଙ୍କ ନାଟକ ମୁଖ୍ୟତଃ ଏମାନେ ମଞ୍ଚସ୍ଥ କରୁଥିଲେ । ଅନେକ ନାଟକ ସବୁ ବିଦେଶୀ ନାଟକର ଛାୟାରେ ଲେଖା ହୋଇଥିବାରୁ ସାଧାରଣ ଦର୍ଶକଙ୍କୁ ଏହା ଆକୃଷ୍ଟ ନକଲେ ମଧ କଟକର ବହୁ ସଂଭ୍ରାନ୍ତ ପରିବାର ଓ ବୁଦ୍ଧିଜୀବିଙ୍କୁ ଏହା ଆକୃଷ୍ଟ କରିଥିଲା । ଆଧୁନିକ କବିତା ଭଳି ଅନେକ ସମୟରେ ଏହି ନାଟକ ଦୁର୍ବୋଧ ମନେ ହେଉଥିଲା । ତଥାପି କିଛି ଦର୍ଶକ ଏହାର ଥିଲେ ।

ମୁଁ ସାମ୍ବାଦିକ ରୂପେ କଟକରେ ନିଜର ଆସ୍ଥାନ ଧୀରେ ଧୀରେ ଜମାଇ ଦେଇଥିଲି । ପୂର୍ବରୁ କହିଛି 'ମାତୃଭୂମି'ରେ ସେତେବେଳେ କୃଷ୍ଣ ପ୍ରସାଦ ପଟ୍ଟନାୟକ ନାମରେ ଜଣେ ବିଖ୍ୟାତ ସାମ୍ବାଦିକ କାର୍ଯ୍ୟ କରୁଥିଲେ । ମୋତେ ସେ ଖୁବ୍ ଶ୍ରଦ୍ଧା କରୁଥିଲେ । ଥରେ ମତେ ସେ କଲେକ୍ଟର, ଆଇ.ଡି.ସି. ରେଭିନ୍ୟୁ ବୋର୍ଡ଼ ସଦସ୍ୟ ଆଦିଙ୍କୁ ଭେଟି ଉନ୍ନୟନ କାର୍ଯ୍ୟକ୍ରମ ସମ୍ପର୍କରେ ରିପୋର୍ଟ କରିବାକୁ ପରାମର୍ଶ ଦେଇଥିଲେ । କଟକ ଜିଲ୍ଲା ସେତେବେଳେ ଲୋକସଂଖ୍ୟା ଓ ଆୟତନରେ ସର୍ବବୃହତ୍ତ ଜିଲ୍ଲା ଥିଲା । ଆମ ନିଜ ଘର ମଧ କଟକ ଜିଲ୍ଲା ବାଙ୍କୀରେ । ପ୍ରତିବର୍ଷ ବନ୍ୟା ସମୟରେ ବାଙ୍କୀ କଟକରୁ ଦଶ/ପନ୍ଦର ଦିନ ପାଇଁ ବିଛିନ୍ନ ହୋଇ ରହୁଥିଲା । ୧୯୬୩ ବନ୍ୟା ସମୟରେ ମୁଁ ବାଙ୍କୀ ଯାଇ ପାରି ନଥିଲି । କାରଣ ବାଙ୍କୀ-କଟକ ରାସ୍ତାରେ ତିନିଜାଗାରେ ବଢ଼ିପାଣି ଚାଲିଥିଲା । ଶୁଣିଲି ବହୁ କ୍ଷୟକ୍ଷତି ହୋଇଛି । ସେତେବେଳେ କଟକର କଲେକ୍ଟର ଥା'ନ୍ତି ଜ୍ଞାନ ଚାନ୍ଦ । ଆଜି ଯେପରି ମୁଖ୍ୟ ସଚିବଙ୍କ କ୍ଷମତା ଏବଂ ପ୍ରତିପତ୍ତି ସେତେବେଳେ କଲେକ୍ଟରଙ୍କର ସେହିଭଳି ପ୍ରତିପତ୍ତି । ବିଶେଷକରି ଡାଇରେକ୍ଟ ଆଇ.ଏ.ଏସ୍. କଲେକ୍ଟରଙ୍କ ଭାରି ଇଜ୍ଜତ ।

କଟକ କଲେକ୍ଟୋରେଟର ନୂଆ କୋଠା ସେତେବେଳେ ତିଆରି ହୋଇ ନଥାଏ । କଲେକ୍ଟର ପୁରୁଣା କୋଠାର ଶେଷ କୋଠରୀରେ ବସୁଥା'ନ୍ତି । ବିରାଟ କୋଠରୀ । କୋଠରୀ କହିଲେ ଭୁଲ୍ ହେବ- ଏକ ହଲ୍ । ସେଇ କୋଠରୀ ଭିତରେ କଲେକ୍ଟରଙ୍କର କନ୍‌ଫରେନ୍ସ ବ୍ୟବସ୍ଥା ମଧ ଥାଏ । ମୁଁ କଲେକ୍ଟରଙ୍କୁ ଦେଖା କରିବାକୁ ଗଲି । ଉର୍ଦ୍ଦିପିନ୍ଧା ପିଅନକୁ ମୋ ପରିଚୟ ଦେଇ କଲେକ୍ଟର ସାହେବଙ୍କୁ ଦେଖା କରିବା କଥା କହିଲି । ସେ ମୋ ମୁହଁକୁ ଟିକେ ଚାହିଁଲା । ତା'ପରେ କହିଲା ଲେଖିକରି ଦିଅନ୍ତୁ । କଲେକ୍ଟର କହିଲେ ଡାକିବି । ମୁଁ ମୋ ନାଁ ଖବର କାଗଜ ନାଁ ଏବଂ ଦେଖା କରିବାର ଅଭିପ୍ରାୟ ମଧ ଲେଖିଲି । ପିଅନ ମୋ ସ୍ଲିପ୍ ନେଇ ଭିତରକୁ ଗଲା । ଦୁଇ ମିନିଟ୍ ମଧରେ ହଠାତ୍ ଦେଖିଲି ଜ୍ଞାନଚାନ୍ଦ ସାହେବ ବ୍ୟସ୍ତ ବିବ୍ରତ ହୋଇ ବାହାରକୁ ଆସି ଚାରିଆଡ଼କୁ ଚାହିଁ ଡଃ ମହତାବ କେଉଁଠି ବୋଲି ପଚାରିଲେ । ପିଅନ କିଛି ବୁଝି ନପାରି ମୋ ଆଡ଼କୁ ହାତ ବଢ଼ାଇ ଦେଲା ।  ମତେ ଦେଖି ଜ୍ଞାନଚାନ୍ଦ ସାହେବ ପଚାରିଲେ ହ୍ୱାଟ୍ସ ଇଜ୍ ୟୋର୍ ନେମ୍ ? ମୁଁ ମୋ ନାଁ କହିଲି ଏବଂ ମାତୃଭୂମି ଖବର କାଗର ରିପୋର୍ଟର ବୋଲି କହିଲି ।

ଜ୍ଞାନଚାନ୍ଦ ସାହେବ ବାହାରକୁ ଆସି ଡଃ ମହତାବଙ୍କୁ ଖୋଜିବାରେ ମୁଁ ଆଶ୍ଚର୍ଯ୍ୟ ହେଲି । କାରଣ ଡଃ ମହତାବ ସେଠି ନଥିଲେ । ତା'ଛଡ଼ା ଡଃ ମହତାବଙ୍କ ଭଳି ବ୍ୟକ୍ତିତ୍ୱ ଜ୍ଞାନଚାନ୍ଦ ସାହେବଙ୍କୁ ଭେଟିବାକୁ ସ୍ଲିପ୍ ପଠାଇବେ ଏକଥା ଚିନ୍ତା କରାଯାଇ ନପାରେ । ତା'ପରେ ଜ୍ଞାନଚାନ୍ଦ ସାହେବ ତାଙ୍କ ଅର୍ଡ଼ରଲିକୁ ପଚାରିଲେ ତୁମକୁ ଏ ସ୍ଲିପ୍ କିଏ ଦେଲା ? ଅର୍ଡ଼ରଲି କିଛି ଦୂରରେ ଧୋତି ଆଉ ଫୁଲ୍ ସାର୍ଟ ପିନ୍ଧି ଠିଆ ହୋଇଥିବା ଜଣେ ବ୍ୟକ୍ତିଙ୍କୁ ଅଙ୍ଗୁଳି ନିର୍ଦ୍ଦେଶ କଲା । ତାଙ୍କୁ ଡାକିଦେବା ପାଇଁ ଜ୍ଞାନଚାନ୍ଦ ସାହେବ ଗୋଟିଏ ସ୍ଲିପ୍ ତାଙ୍କୁ ଦେଖାଇ କହିଲେ ଏ ସ୍ଲିପ୍ ଆପଣ ଦେଇଥିଲେ ?

ଭଦ୍ରବ୍ୟକ୍ତି ମୁଣ୍ଡ ଟୁଙ୍ଗାରିଲେ । ଆପଣ ଡଃ ମହତାବଙ୍କ ନାମ କାହିଁକି ଲେଖିଥିଲେ । ଭଦ୍ରବ୍ୟକ୍ତିଙ୍କ ବୟସ ପଚାଶ ପାଖାପାଖି ହେବ । ସେ ଅତି ସ୍ପଷ୍ଟ ଗଳାରେ କହିଲେ ଆଜ୍ଞା ମୁଁ ତ ମୋ ନାଁ ଲେଖିଛି । ଜ୍ଞାନଚାନ୍ଦ ପଚାରିଲେ ଆପଣଙ୍କ ନାଁ କ'ଣ ଡଃ ହରେକୃଷ୍ଣ ମହତାବ । ଭଦ୍ରବ୍ୟକ୍ତି କହିଲେ କଲେକ୍ଟର ସାହେବ ମୁଁ କେବଳ ହରେକୃଷ୍ଣ ମହତାବ- ଡାକ୍ତର ନୁହେଁ । ଆପଣ ସ୍ଲିପ୍‌କୁ ପଢ଼ନ୍ତୁ । ମୁଁ କେବଳ ହରେକୃଷ୍ଣ ମହତାବ ଲେଖିଛି । ଜ୍ଞାନଚାନ୍ଦ ସ୍ୱଗତୋକ୍ତି କଲାଭଳି କହିଲେ ଏଠାରେ ଆଉଜଣେ ହରେକୃଷ୍ଣ ମହତାବ ମଧ୍ୟ ଅଛନ୍ତି । ମୁଁ ନିଜେ ମଧ୍ୟ ଜାଣି ନଥିଲି ଆଉଜଣେ ହରେକୃଷ୍ଣ ମହତାବ ନାମଧାରୀ ବ୍ୟକ୍ତି ଥିବା କଥା । ଜ୍ଞାନଚାନ୍ଦ ଆମ ଦୁହିଁଙ୍କୁ ଭିତରକୁ ଡାକିଲେ । ହରେକୃଷ୍ଣ ମହତାବ ହେଉଛନ୍ତି କଟକ ଲଞ୍ଚ ଆସୋସିଏସନ୍‌ର ସଭାପତି । ନଈ ବଢ଼ି ଯୋଗୁଁ ଲଞ୍ଚ ଚଳାଚଳ ପାଇଁ ପୋଲିସ୍ ସୁରକ୍ଷା ଏବଂ ଆବଶ୍ୟକ ସ୍ଥଳେ ଅଗ୍ନିସମସେବା ବ୍ୟବସ୍ଥା ନଈକୂଳରେ ପ୍ରସ୍ତୁତ ରଖିବା ପାଇଁ ଆବଶ୍ୟକ ବ୍ୟବସ୍ଥା ପାଇଁ ଅନୁରୋଧ କଲେ । କାରଣ ବହୁଲୋକ ଏକ ସମୟରେ ଯିବାପାଇଁ ଚଢୁଥିବାରୁ ଦୁର୍ଘଟଣାର ସମ୍ଭାବନା ଏଡ଼ାଇ ଦେଇ ହେବ ନାହିଁ । ସେ ଜ୍ଞାନଚାନ୍ଦ ସାହେବଙ୍କୁ ଏକ ଦରଖାସ୍ତ ମଧ୍ୟ ବଢ଼ାଇ ଦେଲେ । ତାଙ୍କୁ ବିଦା କରିସାରି ଜ୍ଞାନଚାନ୍ଦ ସାହେବ ମୁଁ କାହିଁକି ଆସିଛି ଜାଣିବାକୁ ଚାହିଁଲେ । ମୁଁ ତାଙ୍କୁ ବାଙ୍କୀ କଥା ପଚାରିବା ସଙ୍ଗେ ସଙ୍ଗେ କଟକ ଜିଲ୍ଲାର କ୍ଷୟକ୍ଷତି ସମ୍ପର୍କରେ ଜାଣିବାକୁ ଚାହିଁଲି । ସେ ମତେ କିଛି କହିଲେ । ତେବେ ବନ୍ୟା ଦାୟିତ୍ୱରେ ଥିବା ଜଣେ ଅଫିସରଙ୍କୁ ଡକାଇ ପଠାଇଲେ । କିଛି ସମୟ ପରେ ଯେଉଁ ଅଫିସର ଆସିଲେ ତାଙ୍କୁ ଦେଖି ମୁଁ ମନେ ମନେ ଏକ ପ୍ରକାର ଆନନ୍ଦିତ ହେଲି । ସେ କିନ୍ତୁ ମତେ କଲେକ୍ଟର ସାହେବଙ୍କ ପାଖରେ ଏଭଳି ବସି କଥା କହୁଥିବା ଏବଂ ବିଭିନ୍ନ ପ୍ରଶ୍ନ କରୁଥିବା କେବେ ଆଶା କରି ନଥିଲେ । ଜ୍ଞାନଚାନ୍ଦ ସାହେବ କହିଲେ ଆପଣ ବନ୍ୟା ଦାୟିତ୍ୱରେ ଅଛନ୍ତି ? ସେ ହଁ କଲେ । ତା'ପରେ କହିଲେ ମିଃ ଧଳ ଜଣେ ରିପୋର୍ଟର । ତାଙ୍କୁ କ୍ଷୟକ୍ଷତି ଓ ସରକାରୀ ସାହାଯ୍ୟ ସମ୍ପର୍କରେ ସବୁ ଡିଟେଲ ଦେଇଦେବେ । ତାଙ୍କୁ ନେଇ ଆପଣଙ୍କ ରୁମ୍‌କୁ ଯା'ନ୍ତୁ । ଯେଉଁ ଅଫିସର ମୋତେ ସବୁ ବିବରଣୀ ଦେବାକୁ ତାଙ୍କ ରୁମ୍‌କୁ ନେଲେ ସେ ଥିଲେ ଚୟିନୀ ବାବୁ । ମୁଁ ଇଷ୍ଟେଟ ଆବୋଲିସନ୍ ଅଫିସ୍‌ରେ କିରାଣୀ ଚାକିରି ଯେଉଁ ଆଠ ଦଶମାସ କରିଥିଲି ସେ ଥିଲେ ମୋ ଅଫିସର । ମୁଁ ଯେଉଁଦିନ କଲେଜରୁ ୬ଷ୍ଠ ପିରିଅର୍ଡ଼ ପରେ ଆସେ ସ୍ୱାଭାବିକ ବିଳମ୍ବ ହୁଏ । ସିଏ ସେଦିନ ମୋତେ କେବଳ ନାଲି ଆଖି ଦେଖାନ୍ତିନି । ମୋର ଉପସ୍ଥାନରେ ଛକ ଲଗାଇ ଦିଅନ୍ତି । ତାଙ୍କୁ ଯୋଗୁ ମୋର ମାସର ଚାରି/ପାଞ୍ଚଦିନର ଦରମା କଟିଯାଇଛି ବେଳେବେଳେ । ସେଇ ଅଫିସର ମୋତେ କଲେକ୍ଟରଙ୍କ ସହ ଚା'ଖାଇ ଗପ କରୁଥିବାର ଦେଖି ବଡ଼ ଦ୍ୱନ୍ଦରେ ପଡ଼ିଲେ । ବାଧ ହୋଇ କଲେକ୍ଟରଙ୍କ କଥାରେ ମୋତେ ତାଙ୍କ ରୁମ୍‌କୁ ନେଇ ବସାଇଲେ । ମୁଁ ତାଙ୍କ ଠାରୁ ସବୁ ବିବରଣୀ ଯାହା ତାଙ୍କ ପାଖରେ ଥିଲା ସବୁ ଆଣିଲି । ପ୍ରାୟ ଚାଳିଶ ମିନିଟ୍ ପରେ ମୁଁ ଉଠିଲି । ସେ କହିଲେ ବରେନ୍ଦ୍ର ବାବୁ- ପଛକଥା ଭୁଲିଯିବ । ଦରକାର ହେଲେ ଆସିବ । ଆଉ ଏଣୁ ତେଣୁ କିଛି ପଚାରି ସେ ମୋତେ ବିଦାୟ ଦେଲେ । ଆସିଲା ପରେ ମୁଁ ଯାହା ଖବର ପାଇଥିଲି ସେଦିନ ତାକୁ ଗୋଟିଏ ବଡ଼ ଷ୍ଟୋରି କରି ପ୍ରଥମ ପୃଷ୍ଠାରେ ଦେଲି । ତା' ସାଙ୍ଗରେ ହରେକୃଷ୍ଣ ମହତାବ ଉପାଖ୍ୟାନ ମଧ୍ୟ ଦେଲି । କଟକ ଜିଲ୍ଲାର ବନ୍ୟା କ୍ଷୟକ୍ଷତି ସାଙ୍ଗକୁ ବାଙ୍କୀ କିପରି ଗତ ଦଶଦିନ ହେବ ବାହ୍ୟ ଜଗତରୁ ବିଚ୍ଛିନ୍ନ ଏବଂ ସାହାଯ୍ୟ ପହଞ୍ଚିବା ଅସୁବିଧା ସବୁ କଥା ବର୍ଣ୍ଣନା କରିଦେଲି । ସେ ଦିନ ସନ୍ଧ୍ୟାରେ ସେ ଖବର ପ୍ରକାଶ ପାଇଲା । ବେଶ୍ ବଡ଼ ଖବର । କଟକରେ ଥିବା ବିଭିନ୍ନ ଅଞ୍ଚଳର ଲୋକେ ସେ ଖବର ପଢ଼ିବା ପରେ ପରଦିନ ସେମାନଙ୍କ ଅଞ୍ଚଳ କଥା ଜାଣିବାକୁ ମାତୃଭୂମିକୁ ଅନବରତ ଫୋନ୍ କଲେ । ବିଚିବାବୁ ଏତେ ଫୋନ୍ କଲ୍ ଦେଖି ଖୁସି ହୋଇ ମୋତେ କହିଲେ ଯିଏ ଯେଉଁ ଅଞ୍ଚଳ କଥା କହୁଛି ତାକୁ ଟିପି ଆଉ ଗୋଟିଏ ଷ୍ଟୋରି ଆଜି କରନ୍ତୁ । ଆପଣ ତ ଆଜି କମାଲ୍ କରିଦେଲେ । କୃଷ୍ଣବାବୁ ବିଚିବାବୁଙ୍କ କଥା ଶୁଣି ମୁରୁକି ମୁରୁକି ହସୁଥିଲେ । ମୁଁ ପୁଣି ଚୟିନୀବାବୁଙ୍କ ପାଖକୁ ଗଲି । ଚୟିନୀବାବୁ ଥିଲେ । ତାଙ୍କ ପାଖରେ ଆଉଜଣେ ଅଫିସର ମହାପାତ୍ରବାବୁ

ବସିଥିଲେ । ମହାପାତ୍ରବାବୁ ମୋର ପୂର୍ବରୁ ପରିଚିତ । ମତେ ଦେଖି କହିଲେ ବରେନ୍ଦ୍ର ବାବୁ ବସନ୍ତୁ ବସନ୍ତୁ । ଏଇନେ ଆପଣଙ୍କ କଥା ପଡ଼ିଥିଲା । ଚୟିନୀବାବୁ କିଛି କହିବା ପୂର୍ବରୁ ମହାପାତ୍ର ବାବୁ ବେଲ୍ ବଜାଇ ପିଅନକୁ ଡାକିଲେ- କହିଲେ ଯା' ବରା- ଆଉ ଚା' ଆଣ । ଆଜି ମେଘୁଆ ପାଗରେ ବରା- ଚା' ଖାଇବା । ଚୟିନୀବାବୁ ସମ୍ଭବତଃ ଏତେଟା ଆଶା କରି ନଥିଲେ । କାରଣ ଏକଦା ତାଙ୍କ ଅଧିନରେ କାର୍ଯ୍ୟ କରିଥିବା ଜଣେ କିରାଣିକୁ ସେ ନିଜର ସମାନସ୍କନ୍ଧ ବୋଲି ବିଚାର କରିବାକୁ ସମ୍ଭବତଃ ପ୍ରସ୍ତୁତ ନଥିଲେ । ମହାପାତ୍ର ବାବୁ ଚୟିନୀବାବୁଙ୍କୁ କହିଲେ ଚୟିନୀବାବୁ- ବରେନ୍ଦ୍ର ବାବୁ ଆମ ଏଠିକାର ବଡ଼ ବଡ଼ିଆଙ୍କ ସାଙ୍ଗରେ ଏତେ ପରିଚିତ ଆପଣ ଜାଣିଲେ ଆଶ୍ଚର୍ଯ୍ୟ ହେବେ । ବରେନ୍ଦ୍ର ବାବୁ ଏଠି ବସିଛନ୍ତି ବୋଲି ମୁଁ କହୁନାହିଁ । ମୋର ବନ୍ଧୁ ରମାକାନ୍ତ ସାମନ୍ତରାୟଙ୍କୁ ଆପଣ ଜାଣିଥିବେ । ଆମର ପୂର୍ବରୁ ଏଠି ଯିଏ ଏଷ୍ଟାବ୍ଲିଶମେଣ୍ଟ ଅଫିସର ଥିଲେ ତାଙ୍କର ଏଡିଏମ୍ ପ୍ରମୋଶନ ଫାଇଲ୍ ପବ୍ଲିକ୍ ସର୍ଭିସ୍ କମିଶନ ଅଫିସରେ ଛ'ମାସ ଧରି ଅଟକି ଥିଲା । ସେ କେଉଁ ସୂତ୍ରରୁ ଖବର ପାଇଲେ ବରେନ୍ଦ୍ର ବାବୁ ପି.ଏସ୍.ସି. ଚେୟାରମ୍ୟାନ୍ ବଙ୍କିମ ଚନ୍ଦ୍ର ପଟ୍ଟନାୟକଙ୍କ ସହ ଖୁବ୍ ଘନିଷ୍ଠ । ସେ ବରେନ୍ଦ୍ର ବାବୁଙ୍କୁ ବିଚିବାବୁଙ୍କ ଜରିଆରେ ଆପ୍ରୋଚ କରିଥିଲେ । ବିଚିବାବୁ ତାଙ୍କୁ ବରେନ୍ଦ୍ର ବାବୁଙ୍କ ସହ ପରିଚୟ କରାଇ ତାଙ୍କୁ ସାହାଯ୍ୟ କରିବା ପାଇଁ କହିଥିଲେ । ରମାକାନ୍ତ ବାବୁ ବିଚିବାବୁ ଦୁହେଁ କ୍ଲାସମେଟ୍ । ସପ୍ତାହକ ମଧ୍ୟରେ ଫାଇଲ ଆପ୍ରୁଭ୍ ହୋଇ ଚାଲି ଆସିଲା । ତାଙ୍କ ସି.ସି.ଆର୍.ର ଯେଉଁ ଦୁଇଟି ବିରୋଧ ମନ୍ତବ୍ୟ ଯୋଗୁ ଫାଇଲ୍ ଅଟକି ଥିଲା ପି.ଏସ୍.ସି. ତାକୁ ଠିକ୍ କରିଦେଲେ । କ'ଣ ବରେନ୍ଦ୍ର ବାବୁ ମୁଁ ଠିକ୍ କହୁଛି ନା । ମୋତେ ରମାକାନ୍ତ ବାବୁ ନିଜେ ଏକଥା କହୁଥିଲେ । ଚୟିନୀବାବୁ ଏକଥା ଶୁଣି ମୋତେ ଚାହିଁଲେ । କହିଲେ ବରେନ୍ଦ୍ର ବାବୁ- ଆପଣଙ୍କ ଉନ୍ନତିରେ ମୁଁ ଭାରି ଖୁସି । ମୁଁ କହିଲି ସାର୍ ଆପଣ ମୋତେ ବରେନ୍ଦ୍ର ଡାକୁଥିଲେ । ବୟସରେ ଆପଣ ମୋ ଠାରୁ ବହୁତ ବଡ଼ । ମୋତେ ସେଇ ବରେନ୍ଦ୍ର ଡାକିଲେ ମୁଁ ଖୁସି ହେବି । ମୁଁ ନିଜକୁ କେବେ ବଡ଼ ବୋଲି ବିଚାର କରିନି । ଚୟିନୀବାବୁ ମୋ କଥା ଶୁଣି ଭାରି ଖୁସି ହୋଇଗଲେ । ମହାପାତ୍ର ବାବୁଙ୍କ ମହାନୁଭବତା- ସେ ମୋ କଥା ଏମିତି କହିବେ ମୁଁ ଆଶା କରିନଥିଲି । ମହାପାତ୍ର ବାବୁ ହୋ- ହୋ କରି ହସିଲେ- କହିଲେ ବରେନ୍ଦ୍ର ବାବୁ ମୁଁ ବିନା ମତଲବରେ କିଛି କହିନି । ମୋର ଦରକାର ହେଲେ ମୁଁ ଯାଇ ଆପଣଙ୍କ ପାଖରେ ପହଞ୍ଚିବି । ତା'ପରେ ସେ ଜାଣିବାକୁ ଚାହିଁଲେ ମୁଁ ବଙ୍କିମ ଚନ୍ଦ୍ର ପଟ୍ଟନାୟକଙ୍କର ଏତେ ଘନିଷ୍ଠ ହେଲି କିପରି ? ତାଙ୍କ ଘର କଳାହାଣ୍ଡି ଭବାନିପାଟଣା- ଆପଣଙ୍କ ଘର ବାଙ୍କୀ । ମୁଁ ଖୋଲ କଥା କିଛି ନକହି କେବଳ କହିଲି ତାଙ୍କ ପୁଅ ମୋର ଘନିଷ୍ଠ ବନ୍ଧୁ । ଇତି ମଧ୍ୟରେ ଗରମ ବରା-ଚା' ଆସିଥିଲା । ତା'ର ସଦ୍‌ବ୍ୟବହାର ହେଲା । ମହାପାତ୍ର ବାବୁ ବିଦାୟ ନେଲେ । ତା'ପରେ ମୁଁ ଯେଉଁ ପଏଣ୍ଟଗୁଡ଼ିକ ଟିପି ନେଇଥିଲି ଏବଂ କେଉଁ ଅଞ୍ଚଳରେ କ'ଣ କ'ଣ କ୍ଷତି ଘଟିଛି ତା'ର ବିସ୍ତୃତ ବିବରଣୀ ଚୟିନୀ ବାବୁଙ୍କ ପାଖରୁ ଜାଣିବାକୁ ଚାହିଁଲି । ଚୟିନୀବାବୁ ପୁରା ଫାଇଲ ମୋତେ ଦେଇଦେଲେ । ମୁଁ ମୋର ଆବଶ୍ୟକ ତଥ୍ୟ ସବୁ ଟିପି ଆଣିଲି । ସେଇଦିନ ସେ ସମସ୍ତ ତଥ୍ୟ ଦେଇ ଏକ ଲମ୍ବା ଷ୍ଟୋରି ମାତୃଭୂମିରେ ପ୍ରକାଶ ପାଇଲା ।

## -ବିରେନ୍ ଦା-

ସେତେବେଳେ ବିଜୁ ପଟ୍ଟନାୟକ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଏବଂ ବୀରେନ୍ ମିତ୍ର ଉପମୁଖ୍ୟମନ୍ତ୍ରୀ ଥିଲେ । ବୀରେନ୍ ଦା କଟକର ଭାରି ଲୋକପ୍ରିୟ ନେତା । ପ୍ରତିଦିନ ତାଙ୍କ ଘରେ ଲୋକ ଭିଡ଼ ହୁଏ । ସାଧାରଣ ଗରିବ ଲୋକେ ଟଙ୍କା ସାହାଯ୍ୟ ପାଇଁ ଭିଡ଼ କରିଥା'ନ୍ତି । ବୀରେନ୍ ଦା ରହୁଥା'ନ୍ତି ପ୍ରଜାତନ୍ତ୍ର ଖବର କାଗଜ ହତାରେ । ପ୍ରଜାତନ୍ତ୍ର ସେତେବେଳେ ଅଳ୍ପ ସ୍ଥାନ ଦଖଲ କରିଥାଏ । ଆଜି ଯେଉଁଠି ସୁରଜ ଟକିଜ୍( ତା' ମଧ୍ୟ ବନ୍ଦ ହୋଇଛି ) କୋଠା ଅଛି

ସେଇଠି ଏକ ଦୁଇମହଲା ଘରେ ବୀରେନ୍ ମିତ୍ର ରହୁଥିଲେ । ସେ ସମଗ୍ର ଅଞ୍ଚଳଟି ମୋତିଲାଲ ପଣ୍ଡିତ ନାମରେ ଜଣେ ଜମିଦାରଙ୍କର ଥିଲା । ମୋତିଲାଲ ପଣ୍ଡିତ ପୁରା ଚାନ୍ଦିନୀଚୌକ ଅଞ୍ଚଳର ବହୁ ଅଟ୍ଟାଳିକା ଓ ଯାଗାର ମାଲିକ ଥିଲେ । ଥରେ ମୋତେ ବିଚିବାବୁ ବୀରେନ୍ ମିତ୍ରଙ୍କ ଘରକୁ ପଠାଇଲେ ଦେଖିବା ପାଇଁ ପ୍ରକୃତରେ କେତେ ଲୋକ ବୀରେନ୍ ମିତ୍ରଙ୍କ ପାଖକୁ ଆସୁଛନ୍ତି ଏବଂ ସେମାନେ କେଉଁ ଶ୍ରେଣୀର ? ମୁଁ ଯାଇ ଦାଦାଙ୍କ ଘରେ ସକାଳୁ ସକାଳୁ ପହଞ୍ଚିଲି । ଦେଖିଲି ପ୍ରାୟ ୩୦/୩୫ ଜଣ ଲୋକ ଜମା ହୋଇଛନ୍ତି । ସେମାନଙ୍କ ମଧ୍ୟରେ କେତେକ ରିଟାୟାର୍ଡ ସରକାରୀ କର୍ମଚାରୀ ମଧ୍ୟ ଥିଲେ । ସେମାନଙ୍କ ପେନ୍‌ସନ୍ ଫାଇନାଲ୍ ହୋଇ ନଥାଏ । ଆଉ କେତେକ ଲୋକ ଝିଅ ବାହାଘର, ପୁଅ ପାଠପଢ଼ା ପାଇଁ ସାହାଯ୍ୟ ଆଶାରେ ଆସିଥିଲେ । ଦାଦା ପି.ଏ. କେଫାୟତ ମିଆଁ ସମସ୍ତଙ୍କ ପାଖକୁ ଯାଇ କେଉଁ ଉଦ୍ଦେଶ୍ୟରେ କିଏ ଆସିଛି ସେ କଥା ଗୋଟେ କାଗଜରେ ଟିପୁଥା'ନ୍ତି । ମତେ ଦେଖି କହିଲେ ତମେ କିଏ- କ'ଣ ପାଇଁ ଆସିଛ ?

ଦିନ ୯(ନଅ)ଟା ବେଳକୁ ଦାଦା (ବୀରେନ୍ ମିତ୍ର) ଆସିଲେ । ଦାଦା ସେତେବେଳେ ଓଡ଼ିଶାର ଉପ ମୁଖ୍ୟମନ୍ତ୍ରୀ ଥିଲେ । ବିଜୁ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ଥିଲେ । ଇଏ ସମ୍ଭବତଃ ୭ କି ୮ ତାରିଖ ଫେବୃଆରୀ ମାସ ୧୯୬୩ ମସିହାର କଥା । ଦାଦା କଟକ ମାଲ୍‌ଗୋଦାମ, ଛତ୍ରବଜାର, ବକ୍ସି ବଜାର, ଚୌଧୁରୀ ବଜାର ଆଦି ଅଞ୍ଚଳର ବଡ଼ ବଡ଼ ବେପାରୀମାନଙ୍କ ଠାରୁ ଟଙ୍କା ଆଦାୟ କରି ଦରିଦ୍ର ଓ ଅଭାବି ତଥା ବିଭିନ୍ନ ସାହାଯ୍ୟ ପାଇବା ପାଇଁ ଆସୁଥିବା ବ୍ୟକ୍ତିଙ୍କୁ ଦେଇଥା'ନ୍ତି । ସେ ସମୟରେ ଦୈନିକ ଦୁଇ ହଜାରରୁ ପାଞ୍ଚହଜାର ଟଙ୍କା ପର୍ଯ୍ୟନ୍ତ ସେ ଦେଉଥିଲେ । ଆମେ ପୂର୍ବରୁ କହିଛୁ ସେତେବେଳେ କଲେକ୍ଟୋରେଟର ଜଣେ କିରାଣି ମାସକୁ ନବେ ଟଙ୍କା ବେତନ ପାଉଥା'ନ୍ତି । ସେଦିନ ଆମେ ଯାହା ଦେଖିଲୁ ଏବଂ ଯେଉଁ ଶ୍ରେଣୀର ଲୋକେ ଟଙ୍କା ନେଲେ ତା'ର ଏକ ତାଲିକା ଆଣିଲୁ । ଝିଅ ବାହାଘର ପାଇଁ ଆସିଥିବା ଜଣେ ଲୋକକୁ ଦାଦା ପାଞ୍ଚଶହ ଟଙ୍କା ଦେଲେ । ସେ ଲୋକ ଢେଙ୍କାନାଳ ପାଖ ଏକ ଗାଁରୁ ଆସିଥିଲେ । ବନ୍ୟାରେ ତାଙ୍କର ଜମି-ବାଡ଼ି ବାଲିଚର ହୋଇ ଯାଇଥିଲା । ସବୁ କହିବା ପରେ ଦାଦା ଆଉ ପାଞ୍ଚଶହ ଟଙ୍କା ଦେଲେ । କଟକର ଜଣେ ଗଉଡ଼ ଦାଦାଙ୍କ ଗୋଡ଼ ଧରି ପକାଇ କହିଲା- ଦାଦା- ମୋର ଦି'ଟା ଦୁଧ ଦେଉଥିବା ଗାଈ ବସନ୍ତରେ ମରିଗଲେ । ମୋର ଘରେ ଖାଇବାକୁ ନାହିଁ । ସାତ ପ୍ରାଣୀ କୁଟୁମ୍ବ । ଚଳିବି କିପରି ? ଦାଦା ପଚାରିଲେ ଦୁଧ ଦେଉଥିବା ଗାଈ କିଣିବାକୁ କେତେ ପଡ଼ିବ ? ସେ କହିଲା ତିନି/ଚାରିଶହରୁ କମ୍ ପଡ଼ିବ ନାହିଁ । ଦାଦା ତାକୁ ତିନିଶହ ଟଙ୍କା ଦେଲେ । ସେଦିନ ମୁଁ ଯାହା ଦେଖିଲି ଆଉ ହିସାବ କଲି ପାଖାପାଖି ୬/୭ ହଜାର ଟଙ୍କା ବଣ୍ଟା ହେଲା । ମୋତେ ଦାଦା ପଚାରିଲେ ତୁ କାହିଁକି ଆସିଥିଲୁ? ମୁଁ କହିଲି ନାଇଁ ଏଇମିତି, ଗୋଟେ ଷ୍ଟୋରି କରିବି ଭାବୁଛି- ଇଏ କ'ଣ ମୋ ଟଙ୍କା ନା ମୁଁ ମୋ ଜମି ବିକି ସାହାଯ୍ୟ ଦେଉଛି ? ଏଥିରେ ମୋର କିଛି ବାହାଦୂରୀ ନାହିଁ । ମୁଁ କହିଲି ଦାଦା- ଟଙ୍କା କ'ଣ ଅନ୍ୟଲୋକ ଆଦାୟ କରୁନାହାନ୍ତି । କିନ୍ତୁ କେତେ ଲୋକ ଅନ୍ୟକୁ ସେଥିରୁ ସାହାଯ୍ୟ କରୁଛନ୍ତି ? ଦାଦା ମୋ ଉତ୍ତରରେ ଖୁସି ହୋଇଗଲେ । କହିଲେ ହଉ ତୁ ଯା- ମୁଁ ଭୁବନେଶ୍ୱର ଯିବି । ଆଉ କେତେବେଳେ ଆସ । ମୁଁ 'ମାତୃଭୂମି' ଅଫିସ୍‌କୁ ଆସି ବିଚିବାବୁଙ୍କୁ କହିଲି । ଅବଶ୍ୟ ଟିକେ କଥା ଜୋଡ଼ି କହିଲି ଦାଦା ଆପଣଙ୍କ କଥା ପଚାରୁଥିଲେ । ବିଚିବାବୁ ଉତ୍ସାହିତ ହୋଇ ପଚାରିଲେ, କ'ଣ କହୁଥିଲେ ? ମୁଁ କହିଲି ଦାଦା ପଚାରିଲେ ବିଚି କ'ଣ କରୁଛି ? କାଗଜକୁ ଆଉଟିକେ ବଡ଼ କରୁନି ? ବିଚିବାବୁ ହସିଲେ ! କହିଲେ ସବୁ ମିଶାଇ ଟିକେ ରସରସିଆ ଷ୍ଟୋରି କରନ୍ତୁ । ' ହଁ ଭୁଲିଗଲି- ବୀରେନ୍ ଦାଙ୍କ ଘରକୁ ଆମ ସହ 'ମାତୃଭୂମି' ପାଇଁ ଫଟୋ ଉଠାଉଥିବା ପ୍ରଭାତ ସିନେମା ପାଖ କିଙ୍ଗ ଫଟୋ ଷ୍ଟୁଡିଓର ମାଲିକ ସେକ୍ କମରୁଦ୍ଦିନ ଖାଁ ଯାଇଥିଲେ । କମରୁଦ୍ଦିନ୍ କଟକରେ ବେଶ୍ ଜନପ୍ରିୟ ଫଟୋଗ୍ରାଫର୍ ଥିଲେ । ତାଙ୍କୁ ସମସ୍ତେ କମରୁ ମିଆଁ ବୋଲି ଡାକୁଥିଲେ । ସେ ସେଦିନ ଫଟୋ ଦି'ଘଣ୍ଟା ମଧ୍ୟରେ ଆଣି ଦେଇ ଦେଇଥିଲେ ।

ସନ୍ଧ୍ୟାରେ ବୀରେନ୍ ଦାଙ୍କ ଲୋକଙ୍କୁ ଦେଉଥିବା ସାହାଯ୍ୟ ବିବରଣୀ ସହ ଫଟୋ ବାହାରିଥିଲା । ଅନେକ ଲୋକ ଏଇ ଷ୍ଟୋରି ପଢ଼ିବା ପାଇଁ କାଗଜ ନେଇଥିଲେ । ସେଦିନ କାଗଜ ଖୁବ୍ କମ୍‌ରେ କଟରେ ଆଉ ହଜାରେ କପି ଅଧିକ ବିକ୍ରି ହୋଇଥିଲା । ଗୋଟିଏ କଥା ଏଠି ମୁଁ କହି ରଖେ । କାଗଜରେ କ'ଣ ଗଲେ ପାଠକଙ୍କୁ ଆକୃଷ୍ଟ କରିବ ବିଚିବାବୁଙ୍କୁ ସେକଥା ଜଣାଥିଲା । ମୋର ଏବେସୁଦ୍ଧା ମତ ଯଦି ବିଚିବାବୁ କାଗଜର ପରିଚାଳନା ଭାର ନନେଇ କେବଳ ସାମ୍ବାଦିକତା କରିଥା'ନ୍ତେ ଏବଂ କାଗଜରେ ଆର୍ଥିକ ଦିଗ ଅନ୍ୟ ଭାଇଙ୍କୁ ଦେଇଥା'ନ୍ତେ ତେବେ ସମ୍ଭବତଃ ଓଡ଼ିଶାରେ ସେ ଜଣେ ଖ୍ୟାତନାମା ସାମ୍ବାଦିକର ଭୂମିକା ନେଇଥା'ନ୍ତେ । ଏପରିକି ତାଙ୍କ ବାପା( ବାଳକୃଷ୍ଣ କର )ଙ୍କୁ ମଧ ଟପି ଯାଇଥା'ନ୍ତେ ।

ଆଉ ଗୋଟିଏ ଉଦାହରଣ ଦେଲେ ଭାବୁଛି ଭଲ ହେବ । ପ୍ରତିଦିନ ମାତୃଭୂମିରେ ଦୁଇ କଲମ ବା ଦୁଇଟି ସ୍ତମ୍ଭ ଖେଳ ସମ୍ବାଦ ଯାଏ । ଫୁଟବଲ୍ ସିଜିନ୍‌ରେ 'ମାତୃଭୂମି'କଟକରେ ବେଶ୍ ଲୋକପ୍ରିୟ । ଖେଳ ଖବର ତୃତୀୟ ପୃଷ୍ଠାରେ ଯାଏ । ଥରେ ମତେ ବିଚିବାବୁ କହିଲେ, ଖେଳ ଖବର ଏଥର ପଛ ପୃଷ୍ଠାରେ ଦେବା । ଏବଂ ପ୍ରତିଦିନ ଯିଏ ଗୋଲ୍ ଦେଇଥିବ ତା'ର ଫଟୋ ତା' ଭିତରେ ଛାପିବା । ମୁଁ ବିଚିବାବୁଙ୍କ କଥାଶୁଣି କହିଲି ସାଙ୍ଗେ ସାଙ୍ଗେ ସନ୍ଧ୍ୟାରେ ଫଟୋ ଉଠାଇ ତା' ପରଦିନ ଦେଲେ ହେବ । ସେ କହିଲେ କମରୁଦ୍ଦିନ୍‌କୁ ନେଇ ଭଲ ଖେଳାଳିମାନଙ୍କର ପାସପୋର୍ଟ ସାଇଜ୍ ଫଟୋ ଆଗେ ଉଠାଇ ନିଅନ୍ତୁ । ସେମାନଙ୍କ ବ୍ୟତୀତ ଯଦି ଆଉ କିଏ ଗୋଲ୍ ଦିଏ ବା ଅନ୍ୟ ପୋଜିସନ୍‌ରେ ଭଲ ଖେଳେ ତେବେ କମରୁଦ୍ଦିନ୍‌କୁ ଡାକି ଦେଲେ ସେ ସନ୍ଧ୍ୟାରେ ଯାଇ ଫଟୋ ଉଠାଇ ଦେବ । ସେଇଆ ହେଲା । ପରଦିନ ଠାରୁ ଖେଳ ଖବର ପଛ ପୃଷ୍ଠାରେ ଫଟୋ ସହିତ ଛପା ହେଲା । ମୋର ମନେ ଅଛି ସପ୍ତାହେ/ ଦି'ସପ୍ତାହ ମଧରେ କେବଳ ଖେଳ ଖବର ପଢ଼ିବା ପାଇଁ ମାତୃଭୂମିର ଚାହିଦା କଟକରେ ଏଭଳି ବଢ଼ିଗଲା ଯେ ଫୁଟବଲ୍ ଖେଳାଳିମାନେ କେବଳ ନୁହନ୍ତି ଫୁଟବଲ୍ କ୍ଲବର କର୍ମକର୍ତ୍ତାମାନେ ଅଫିସ୍‌କୁ ଆସି ଫଟୋ ଛାପିବା ପାଇଁ ଭିଡ଼ ଜମାଇଲେ । ୧୯୬୩/୬୪ ବେଳକୁ କଟକରେ ବ୍ଲକ୍ ତିଆରି ବ୍ୟବସ୍ଥା କେବଳ ମାତୃଭୂମିରେ ଥିଲା । ସେତେବେଳେ ଅଫ୍‌ସେଟ୍ ମେସିନ୍ ବ୍ୟବସ୍ଥା ନଥିଲା କିମ୍ବା ଡି.ଟି.ପି. ଓଡ଼ିଶା ଆସିନଥିଲା । ହାତରେ କମ୍ପୋଜ୍ ହୋଇ ଫ୍ଲାଟ୍ ମେସିନ୍‌ରେ ଛପା ହେଉଥିଲା । 'ସମାଜ'ରେ ପ୍ରଥମ ରୋଟାରି ମେସିନ୍ ଆସିଲା । ପରେ ପରେ ମାତୃଭୂମିକୁ ବିରାଟ ରୋଟାରୀ ମେସିନ୍ ଆସିଥିଲା । ଏ ମେସିନ୍‌ଟି କଲିକତାରେ ପ୍ରକାଶ ପାଉଥିବା 'ସ୍ୱାଧୀନତା' ନାମକ ଏକ ଖବର କାଗଜର । 'ସ୍ୱାଧୀନତା' ଖବର କାଗଜ କମ୍ୟୁନିଷ୍ଟ ଦଳର କାଗଜ । ରୁଷ୍ ସରକାର ପଶ୍ଚିମବଙ୍ଗ କମ୍ୟୁନିଷ୍ଟ ଦଳ ପାଇଁ ଏହି ମେସିନ୍‌କୁ ୧୯୬୦ରେ ଯୋଗାଇ ଦେଇଥିଲେ । ୧୯୬୩ରେ କମ୍ୟୁନିଷ୍ଟମାନଙ୍କ ମଧରେ ବିବାଦ ହୋଇ ବର୍ଷକ ପରେ ଏହା ଦୁଇଭାଗ ହୋଇଗଲା । ମାତୃଭୂମି ସେତେବେଳେ ବାମପନ୍ଥୀମାନଙ୍କର ସମର୍ଥନ ଓଡ଼ିଶାରେ ପାଉଥିଲା । କଲିକତାରେ ସ୍ୱାଧୀନତା କାଗଜ ବନ୍ଦ ହୋଇଗଲା ଏବଂ ପଶ୍ଚିମବଙ୍ଗ କମ୍ୟୁନିଷ୍ଟ ଦଳ ନିକଟରୁ ମାତୃଭୂମି ମାଲିକ ଏକଲକ୍ଷ ଟଙ୍କାରେ ଏହି ବିରାଟ ରୋଟାରୀ ମେସିନ୍‌କୁ କିଣି ଆଣିଥିଲେ । 'ମାତୃଭୂମି' ସେତେବେଳେ ଦୈନିକ ଚଉଦ ହଜାରରୁ ପନ୍ଦର ହଜାର କପି ଛପା ହେଉଥିଲା । ଦୁଇଟି ଫ୍ଲାଟ୍ ମେସିନ୍‌ରେ ଏହା ଛପା ହେଉଥିଲା । ପନ୍ଦର ହଜାର କପି ଛାପିବା ପାଇଁ ପ୍ରାୟ ଚାରିଘଣ୍ଟାରୁ ପାଞ୍ଚଘଣ୍ଟା ସମୟ ଲାଗୁଥିଲା । କିନ୍ତୁ ରୋଟାରୀ ମେସିନ୍‌ରେ ଘଣ୍ଟାକ ମଧରେ ପନ୍ଦର ହଜାର କପି ଛପା ହୋଇ ଯାଉଥିଲା । ତେଣୁ ପୂର୍ବରୁ ଦିନ ଦୁଇଟା ମଧରେ ଆମର କପି କ୍ଲୋଜ୍ ହେଉଥିଲା । କାରଣ ସନ୍ଧ୍ୟା ଛ'ଟା ସୁଦ୍ଧା କଟକରେ କାଗଜ ବିକ୍ରି କରିବା ପାଇଁ ହକରମାନେ ଆସି ଜମା ହେଉଥିଲେ । ମାତ୍ର ରୋଟାରୀ ମେସିନ୍ ଆସିବା ପରେ ସନ୍ଧ୍ୟା ଚାରିଟା-ପାଞ୍ଚଟା ସୁଦ୍ଧା ଖବର ଯିବାରେ ଅସୁବିଧା ହେଲା ନାହିଁ । ତେଣୁ ସର୍ବଶେଷ ଖବର ଦେବାରେ ମାତୃଭୂମି ଆଗୁଆ ହୋଇ ରହିଗଲା ।

ସେ ସମୟରେ ବୀରେନ୍ ମିତ୍ର ଆଉ ବିଜୁ ପଟ୍ଟନାୟକଙ୍କ ବିରୁଦ୍ଧରେ ଦୁର୍ନୀତିକୁ ନେଇ ହରେକୃଷ୍ଣ ମହତାବ ଓ ତାଙ୍କ 'ପ୍ରଜାତନ୍ତ୍ର', ରାଧାନାଥ ରଥ 'ସମାଜ' ଏବଂ ପ୍ରଜା ସମାଜବାଦୀ ନେତା ସୁରେନ୍ଦ୍ରନାଥ ଦ୍ୱିବେଦୀ ବେଶ୍ ଶତମୁଖ ହୋଇଥିଲେ । ଭୁବନେଶ୍ୱରରେ 'ମାତୃଭୂମି'ର ପ୍ରତିନିଧି ବାଳକୃଷ୍ଣ କାନୁନ୍‌ଗୋ ଜଣେ ପ୍ରବୀଣ ସାମ୍ବାଦିକ ଥିଲେ । ବାଳକୃଷ୍ଣ ବାବୁଙ୍କ ସମ୍ବାଦ ପରିବେଷଣ ବେଶ୍ ଶକ୍ତିଶାଳୀ ଥିଲା । ସେ ଗୋଟିଏ ସମ୍ବାଦକୁ ମୂଳ ଅର୍ଥରୁ ଏଭଳି ଘୂରାଇ ଦେଉଥିଲେ(ଯାହାକୁ ଇଂରେଜୀରେ ଟୁଇଷ୍ଟ୍ ବୋଲି କୁହନ୍ତି) ଯେ ସମ୍ବାଦଟି ପଢ଼ିଲେ ତାହା ଠିକ୍ ବୋଲି ପାଠକ ମନେ କରିବ । ବାଳକୃଷ୍ଣ ବାବୁ ବୀରେନ୍ ଦାଙ୍କ ବେଶ୍ ପ୍ରିୟଲୋକ ଥିଲେ । ଫଳରେ ବୀରେନ୍ ମିତ୍ରଙ୍କ ପତ୍ନୀ ଈଶ୍ୱରାମ୍ମା ମିତ୍ରଙ୍କ ନାମରେ 'ଓଡ଼ିଶା ଏଜେଣ୍ଟ' ନାମରେ ଏକ କମ୍ପାନି ସରକାରଙ୍କ ସହ କେତେକ ବ୍ୟବସାୟ କରି ଷୋଳଲକ୍ଷ ଟଙ୍କା ଲାଭ କରିଛନ୍ତି ଏବଂ ଓଡ଼ିଶା ସରକାରଙ୍କ ବିଭିନ୍ନ ସଂସ୍ଥା ଉପରେ ପ୍ରଭାବ ବିସ୍ତାର କରି ବହୁ ଅର୍ଥ ବେଆଇନ୍ ଭାବେ ନେଇଥିବା କଥା ଯେତେବେଳେ ବିଜୁ-ବୀରେନ୍‌ଙ୍କ ବିରୋଧୀ ଗୋଷ୍ଠି (ମହତାବ, ରାଧାନାଥ ରଥ ଓ ସୁରେନ୍ଦ୍ର ଦ୍ୱିବେଦୀ) ଅଭିଯୋଗ କଲେ ତାକୁ ବାଳକୃଷ୍ଣ ବାବୁ ବୁଲେଇ ବଙ୍କେଇ ଦାଦାଙ୍କୁ ସୁହାଇଲା ଭଳି ଗୋଟିଏ ସମ୍ବାଦ ପଠାଇଲେ । ସେ ସମ୍ବାଦଟି ପ୍ରକାଶ ପାଇବା ପରେ ପରେ ଦ୍ୱିବେଦୀ ବିଚିବାବୁଙ୍କୁ ଫୋନ୍ କରି ପଚାରିଲେ, ବିଚି ତୁମେ କ'ଣ ବୀରେନ୍‌ର ପେ ରୋଲ୍‌ରେ ରହିଲଣି ? ବିଚିବାବୁ କ'ଣ ଘଟଣା ବୋଲି ପଚାରିବାରେ ସେ ଓଡ଼ିଶା ଏଜେଣ୍ଟ ଓ ସରକାରୀ କାରବାର କଥା କହିଲେ । ବିଚିବାବୁ ଏକଥା ଶୁଣି ମୋତେ ଦ୍ୱିବେଦୀଙ୍କ ପାଖକୁ ପଠାଇଲେ ଘଟଣା ବୁଝିବା ପାଇଁ । ସେତେବେଳେ ପ୍ରଜା ସୋସିଆଲିଷ୍ଟ ପାର୍ଟିଅଫିସ୍ ଓଡ଼ିଆ ବଜାରରେ ଥାଏ । ରେଭେନ୍ସା ବାଳିକା ବିଦ୍ୟାଳୟ ସାଇଡ୍‌ରେ ଥିବା ରାସ୍ତା ଗଙ୍ଗା ମନ୍ଦିର ଦେଇ କାଜିପାଟଣା ବାଟେ ଯାଇଥାଏ । ମୁଁ ସାଇକେଲ୍ ନେଇ ପ୍ରଜା ସୋସିଆଲିଷ୍ଟ ଦଳ ଅଫିସ୍‌ରେ ପହଞ୍ଚିଲି । ସେଠି ଦ୍ୱିବେଦୀଙ୍କ ସହ ବାଙ୍କବିହାରୀ ଦାସ, ନିଶାମଣି ଖୁଣ୍ଟିଆ, ବିଶ୍ୱନାଥ ପଣ୍ଡିତ ପ୍ରମୁଖ ୭/୮ଜଣ ନେତା ଥା'ନ୍ତି । ମୁଁ ସମସ୍ତଙ୍କୁ ନମସ୍କାର କରି ଗୋଟିଏ ଚଉକିରେ ବସିଲି । ତା'ପରେ ଦ୍ୱିବେଦୀଙ୍କୁ ବିଚିବାବୁ ମୋତେ ପଠାଇଥିବା ଏବଂ ଓଡ଼ିଶା ଏଜେଣ୍ଟ ସମ୍ପର୍କରେ ତାଙ୍କ ବକ୍ତବ୍ୟ ମୋତେ ଡାକି ଦେବା ପାଇଁ କହିଲି । ସେ ମୋତେ ଚାହିଁଲେ, କହିଲେ ମୁଁ ଯାହା କହିବି ଠିକ୍ ଠିକ୍ ବାହାରିବ ତ ?

ସୁରେନ୍ଦ୍ର ନାଥ ଦ୍ୱିବେଦୀ ମୋତେ ବୀରେନ୍ ମିତ୍ରଙ୍କ ପତ୍ନୀ ଈଶ୍ୱରାମ୍ମା ମିତ୍ରଙ୍କ ନାମରେ ଥିବା ଓଡ଼ିଶା ଏଜେଣ୍ଟ ଅଳ୍ପ ଦିନ ମଧ୍ୟରେ ଷୋଳଲକ୍ଷ ଟଙ୍କା ଲାଭ କରିଥିବା ବିଷୟ ବର୍ଣ୍ଣନା କରି କିପରି ବିଜୁ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ହିସାବରେ ଏଥିରେ ସାହାଯ୍ୟ କରିଛନ୍ତି ସେ ସମ୍ପର୍କରେ ଏକ ଦୀର୍ଘ ବିବୃତ୍ତି ଦେଲେ । ଇଏ ୧୯୬୩ ମସିହା ଜୁଲାଇ ପ୍ରଥମ ସପ୍ତାହର ଘଟଣା । ଏହା ପୂର୍ବରୁ ଅବଶ୍ୟ ଜୁନ୍ ୨୮ ତାରିଖରେ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ଏକ ସାମ୍ବାଦିକ ସମ୍ମିଳନୀରେ ବୀରେନ୍ ମିତ୍ରଙ୍କ ସ୍ତ୍ରୀଙ୍କ ନାମରେ ଥିବା ଓଡ଼ିଶା ଏଜେଣ୍ଟ କିପରି ଷୋଳ ଲକ୍ଷ ଟଙ୍କା ବ୍ୟବସାୟରୁ ଲାଭ କଲା ତା'ର ଏକ ବିବରଣୀ ଦେଇଥିଲେ । ସେଥିରେ ସେ ସିରାଜଉଦ୍ଦୀନ କମ୍ପାନୀ ସହ ବ୍ୟବସାୟ ଏବଂ ଅନ୍ୟ ସଂସ୍ଥା ସହ ବ୍ୟବସାୟ କରି ଏହି ଅର୍ଥ ମିଳିଛି ଏବଂ ଏହା ବୀରେନ କ୍ଷମତାକୁ ଆସିବା ପୂର୍ବରୁ କଣ୍ଟ୍ରାକ୍ଟ ବୋଲି କହିଥିଲେ । ବିଜୁ ବାବୁଙ୍କ ଏହି ସ୍ପଷ୍ଟିକରଣକୁ ଦ୍ୱିବେଦୀ ଭିନ୍ନ ଅର୍ଥ କରିଥିଲେ । ସେ କହିଥିଲେ କ୍ଷମତାକୁ ଆସିବା ପୂର୍ବରୁ ବୀରେନ୍ ବାବୁଙ୍କୁ ଏତେ ଟଙ୍କାର ବ୍ୟବସାୟ କିଏ ଦେବ । ଏବେ ଓଡ଼ିଶା ସରକାରଙ୍କ ବିଭିନ୍ନ ସଂସ୍ଥାକୁ ବାଜେ ମାଲ୍ ଯୋଗାଇ ଭଲ ମାଲ୍‌ର ଅର୍ଥ ବିଲ୍ କରି ଓଡ଼ିଶା ଏଜେଣ୍ଟ ମାଲାମାଲ୍ ହୋଇଛି । ଏହି ଅର୍ଥରେ ବିଜୁ ପଟ୍ଟନାୟକଙ୍କର ମଧ ଭାଗ ରହିଛି । ସେ ପୁଣି ଦର୍ଶାଇ ଥିଲେ ବିଜୁ ପଟ୍ଟନାୟକ ତାଙ୍କ ବଡ଼ବିଲ୍‌ସ୍ଥିତ କଳିଙ୍ଗ ଲୁହା କାରଖାନାକୁ ଅତ୍ୟଧିକ ଦରରେ ଓଡ଼ିଶା ସରକାରଙ୍କୁ ବିକ୍ରୟ କରି ଦୁର୍ନୀତି ଉପାୟରେ ଏବଂ ମୁଖ୍ୟମନ୍ତ୍ରୀ ରୂପେ ପ୍ରଭାବ ଖଟେଇ ପ୍ରଚୁର ଅର୍ଥ ଲାଭ କରିଛନ୍ତି ଏବଂ ଓଡ଼ିଶା ସରକାରଙ୍କୁ ବହୁ କ୍ଷତିର ସମ୍ମୁଖୀନ ହେବାକୁ ପଡ଼ିଛି । ଏଥିରେ କେତେଜଣ ଆଇ.ଏ.ଏସ୍. ଅଫିସର୍ ଓ

ଚିଫ୍ ସେକ୍ରେଟାରୀ ସାହାଯ୍ୟ କରିଥିବା ସେ ସନ୍ଦେହ କରୁଛନ୍ତି । ଦ୍ୱିବେଦୀ ଯାହା କହିଲେ ମୁଁ ଅକ୍ଷରେ ଅକ୍ଷରେ ତାହା ଟିପି ନେଲି । ତା'ପରେ ତାଙ୍କୁ ମୋ କପି ଦେଖାଇଲି । ସେ ପଢ଼ିଲେ । କହିଲେ ବାଃ ତୁମ ଅକ୍ଷର ତ ଖୁବ୍ ଭଲ । ଠିକ୍ ଅଛି । ଯାକୁ ଆଜି ଦେଇଦିଅ । ମୁଁ କହିଲି ସାର୍ ଆପଣ ଏଠି ଟିକେ ଦସ୍ତଖତ କରି ଦିଅନ୍ତୁ । ଦସ୍ତଖତ କଥା ଶୁଣି ସେ କହିଲେ ମୁଁ କାହିଁକି ଦସ୍ତଖତ କରିବି । ସାମ୍ବାଦିକ ସମ୍ମିଳନୀରେ କ'ଣ ସମସ୍ତେ ଦସ୍ତଖତ ମାଗନ୍ତି ? ମୁଁ କହିଲି ସାର୍ ଯେ ମୁଖ୍ୟମନ୍ତ୍ରୀ ଉପମୁଖ୍ୟମନ୍ତ୍ରୀଙ୍କ ବିରୁଦ୍ଧରେ ସିଧାସଳଖ ଅଭିଯୋଗ । ତା'ଛଡ଼ା ଆଇ.ଏ.ଏସ୍. ଚିଫ୍ ସେକ୍ରେଟାରୀଙ୍କ କଥା କହିଛନ୍ତି । ଆପଣ ତ ଦେଖିଲେ ଯାହା ଡାକିଛନ୍ତି ସବୁ ଠିକ୍ ଠିକ୍ ମୁଁ ଲେଖିଛି । ତେଣୁ ଦସ୍ତଖତ କରିଦେଲେ ଭଲ ହେବ । ମାତ୍ର ଦ୍ୱିବେଦୀ ମନା କଲେ । କହିଲେ ମୁଁ ବିଚିକୁ କହି ଦେଉଛି ତୁମେ ମୋତେ ଦସ୍ତଖତ ମାଗୁଛି ବୋଲି । ତୁମେ ଯାଅ । ମୁଁ ଫେରି ଆସି ବିଚିବାବୁଙ୍କୁ ତାହା ଦେଖାଇ କହିଲି ଏଭଳି ଅଭିଯୋଗର କୌଣସି ପ୍ରମାଣ ସେ ଦେଲେ ନାହିଁ । କହିଲେ ତୁମେ ଯାଅ ମୁଁ ବିଚିକୁ କହି ଦେଉଛି । ବିଚିବାବୁ ମୁଁ ଯାହା ଟିପି କରି ଆଣିଥିଲି ତାକୁ ପଢ଼ିଲେ । ତା'ପରେ କହିଲେ ସିଧା ସଳଖ ଏପରି ଅଭିଯୋଗ ନଛାପି ପ୍ରକାରାନ୍ତରେ ଅଳ୍ପ ଟିକେ ଲେଖି ଦେଇ ଦିଅନ୍ତୁ । ମୁଁ ସେଇଆ କଲି । ସେଥିରୁ ଅଫିସରମାନଙ୍କ ନାଁ କାଟି ଦେଲି ।

## -ବିଜୁ - ବିରେନ୍ ଉପାଖ୍ୟାନ-

୧୯୬୩ ମସିହାରେ ମୁଁ ପୂର୍ବରୁ କହିଛି ଓଡ଼ିଶାରେ ଚାରୋଟି ଦୈନିକ ଖବର କାଗଜ ଥିଲା । ସେଥିରୁ ତିନୋଟି କଂଗ୍ରେସ ନେତାଙ୍କ ପରିଚାଳନାଧୀନ ଏବଂ କେବଳ ମାତୃଭୂମି ନିରପେକ୍ଷ ଖବର କାଗଜ ରୂପେ ପରିଗଣିତ ହେଉଥିଲା । କିନ୍ତୁ ତିନୋଟି ଯାକ କଂଗ୍ରେସ ନେତୃତ୍ୱରେ ପରିଚାଳିତ ଖବରକାଗଜ ରାଧାନାଥ ରଥଙ୍କ ପରିଚାଳନାଧିନ ସମାଜ । ଡଃ ହରେକୃଷ୍ଣ ମହତାବଙ୍କ ପ୍ରଜାତନ୍ତ୍ର ଏବଂ ବିଜୁ ପଟ୍ଟନାୟକଙ୍କ ମାଲିକାନାଧୀନ କଳିଙ୍ଗର ଚରିତ୍ର ଭିନ୍ନ ଭିନ୍ନ ଥିଲା । ରାଧାନାଥ ରଥ ବିଜୁ ପଟ୍ଟନାୟକଙ୍କ ସରକାରକୁ ବିଶେଷ କରି ବିଜୁ ପଟ୍ଟନାୟକଙ୍କୁ ବିରୋଧ କରୁଥିବା ବେଳେ ଡଃ ମହତାବଙ୍କୁ ମଧ୍ୟ ବିରୋଧ କରୁଥିଲେ । ଡଃ ମହତାବ ବିଜୁ ପଟ୍ଟନାୟକ ଓ ବୀରେନ ମିତ୍ରଙ୍କୁ ତୀବ୍ର ବିରୋଧ କରୁଥିଲେ ଏବଂ ତାଙ୍କ କାଗଜରେ ଏ ଦୁହିଁଙ୍କ ବିରୁଦ୍ଧରେ ନାନା ପ୍ରକାର ଦୁର୍ନୀତି ଓ କୁତ୍ସାମୂଳକ ଅଭିଯୋଗ ଆଣୁଥିଲେ । କଳିଙ୍ଗ ଖବର କାଗଜ ଏକମାତ୍ର ବିଜୁ ପଟ୍ଟନାୟକଙ୍କ ସରକାରଙ୍କୁ ସମର୍ଥନ କରୁଥିଲା । ମାତୃଭୂମି ଖବରକାଗଜ ପରିସ୍ଥିତି ଖବରର ଗୁରୁତ୍ୱ ଓ ସ୍ଥିତିକୁ ବିଚାର କରି ଖବର ଦେଉଥିଲା । ତେଣୁ ମୋତେ କୁହାଯାଇଥିଲା ରାଜନୀତିକୁ ବୁଝି ବିଚାରି ସମ୍ବାଦ ଦେବାକୁ । ୧୯୬୩ ମସିହା ଓଡ଼ିଶା ପାଇଁ ଏକ ଅତି ଗୁରୁତ୍ୱପୂର୍ଣ୍ଣ ଓ ଘଟଣାବହୁଳ ବର୍ଷ ଥିଲା ।

ଯେତେବେଳେ ପଣ୍ଡିତ ନେହେରୁଙ୍କ ହାତମୁଠା ଟାଣ କରିବା ପାଇଁ କେନ୍ଦ୍ର ମନ୍ତ୍ରିମଣ୍ଡଳ ଓ କେତେକ ରାଜ୍ୟର ମୁଖ୍ୟମନ୍ତ୍ରୀଙ୍କୁ ହଟାଇବା ପାଇଁ ୧୯୬୩ ଅଗଷ୍ଟ ୨୪ ତାରିଖରେ ମାନ୍ଦ୍ରାଜର ମୁଖ୍ୟମନ୍ତ୍ରୀ କେ. କାମରାଜ ନାଦର ଏକ ଯୋଜନା ନେହେରୁଙ୍କୁ ଦେଇଥିଲେ । ନେହେରୁଙ୍କ ମନକୁ ଏହା ପାଇଥିଲା । ଫଳରେ କେନ୍ଦ୍ର କ୍ୟାବିନେଟ୍‌ରୁ ଲାଲ ବାହାଦୂର ଶାସ୍ତ୍ରୀ, ମୋରାରଜୀ ଦେଶାଇଙ୍କ ସମେତ ଛ'ଜଣ ମନ୍ତ୍ରୀ ଏବଂ କାମରାଜଙ୍କ ସମେତ ଛ' ଜଣ ମୁଖ୍ୟମନ୍ତ୍ରୀ ସ୍ୱେଚ୍ଛାରେ ଇସ୍ତଫା ଦେଇଥିଲେ । ଏହି ଛ'ଜଣ ମୁଖ୍ୟମନ୍ତ୍ରୀଙ୍କ ମଧ୍ୟରେ ବିଜୁ ପଟ୍ଟନାୟକ ଅନ୍ୟତମ । ଏହା ସେତେବେଳେ ଚାରିଆଡ଼େ ଚହଳ ପକାଇଥିଲା । ବିଜୁବାବୁ ୧୯୬୩ ମସିହା ଅଗଷ୍ଟ ମାସରେ ଇସ୍ତଫା ଦେଲେ । ବିଜୁବାବୁଙ୍କ ଇସ୍ତଫା ଖବର ଶୁଣି ଚାରିଆଡ଼େ ବିଷର୍ଣ୍ଣ ଭାବ ଖେଳି ଯାଇଥିଲା । ବିଜୁବାବୁ ତାଙ୍କ ଉତ୍ତରାଧିକାରୀ ଭାବେ ବୀରେନ୍ ମିତ୍ରଙ୍କ ନାମ ଘୋଷଣା କରିଥିଲେ । ମାତ୍ର ଏହାକୁ ପବିତ୍ର ମୋହନ ପ୍ରଧାନ ଓ ତାଙ୍କ ଗୋଷ୍ଠି ବିରୋଧ

କରିଥିଲେ । ଏକଥା କହି ରଖେ ୧୯୬୧ ଉପ ନିର୍ବାଚନ(ଜୁନ୍ ୬ ତାରିଖ)ରେ ବିଜୁ ପଟ୍ଟନାୟକଙ୍କ ନେତୃତ୍ୱରେ ୮୨ ଜଣ, କଂଗ୍ରେସ ପ୍ରାର୍ଥୀ ବିଧାନସଭାକୁ ନିର୍ବାଚିତ ହୋଇଥିଲେ । ପୂର୍ବରୁ ଏତେ ସଂଖ୍ୟକ କଂଗ୍ରେସ ସଦସ୍ୟ ବିଧାନସଭାରେ କେବେ ନଥିଲେ । ତେଣୁ ବିଜୁ ବାବୁଙ୍କ ଖୁବ୍ ପ୍ରଭାବ ରହିଥିଲା । ତେଣୁ ବିଜୁ ବାବୁ ତାଙ୍କ ପଦରୁ ଇସ୍ତଫା ଦେଇ ଉପ ମୁଖ୍ୟମନ୍ତ୍ରୀ ବୀରେନ୍ ମିତ୍ର ପରବର୍ତ୍ତିମୁଖ୍ୟମନ୍ତ୍ରୀ ହେବେ ବୋଲି ଘୋଷଣା କଲେ । ତେଣୁ ତାଙ୍କର କେହି ବିରୋଧ କରିବେ ସେ କଳ୍ପନା ମଧ ତାଙ୍କର ନଥିଲା ।

ତେବେ କଂଗ୍ରେସରେ ମହତାବ ଗୋଷ୍ଠି ତାଙ୍କୁ ବିରୋଧ କରି ଆସୁଥିଲେ । ମହତାବଙ୍କ ଗୋଷ୍ଠି ପକ୍ଷରୁ ବିଜୁ ବାବୁଙ୍କ ଏହି ଘୋଷଣାକୁ ବିରୋଧ କରି ପବିତ୍ର ମୋହନ ପ୍ରଧାନଙ୍କୁ ପ୍ରାର୍ଥୀ କରାଯାଇଥିଲା । ଫଳରେ କଂଗ୍ରେସ ଦଳ ନେତୃତ୍ୱ ପାଇଁ ନିର୍ବାଚନ କରିବାକୁ ହେଲା । ମୋତେ ବିଚି ବାବୁ ଏହି ନିର୍ବାଚନ ଖବର ସଂଗ୍ରହ ପାଇଁ ପଠାଇଥିଲେ । ଯଦିଓ ଆମର ଭୁବନେଶ୍ୱର ପ୍ରତିନିଧି ବାଳକୃଷ୍ଣ କାନୁନଗୋ ଥିଲେ ମୋତେ ବିଚିବାବୁ ସ୍ୱତନ୍ତ୍ର ଷ୍ଟୋରି କରିବା ପାଇଁ କହିଥିଲେ । ଏହି ସଭା ଏମ୍.ଏଲ୍.ଏ. କଲୋନୀରେ ବିଜୁବାବୁଙ୍କ ଘର ଲନ୍‌ରେ ସ୍ୱତନ୍ତ୍ର ସାମିଆନା ଟଣା ଯାଇ ଅନୁଷ୍ଠିତ ହୋଇଥିଲା । କଂଗ୍ରେସ ଦଳ ନିର୍ବାଚନରେ ଯଦିଓ ୮୨ ସ୍ଥାନ ଦଖଲ କରିଥିଲା ପରେ ଚାରିଜଣ ସ୍ୱାଧୀନ ସଦସ୍ୟ କଂଗ୍ରେସରେ ଯୋଗ ଦେଇଥିଲେ । ସେତେବେଳେ ଆମ ବାଙ୍କୀର ବିଧାୟକ ଗୋକୁଳାନନ୍ଦ ପ୍ରହରାଜ ପ୍ରଜା ସୋସାଲିଷ୍ଟ ପାର୍ଟି ପକ୍ଷରୁ ନିର୍ବାଚିତ ହୋଇଥିଲେ ମାତ୍ର କେତେଗୁଡ଼ିଏ ମୋକଦମାରେ ପଡ଼ି ପ୍ରଜା ସୋସାଲିଷ୍ଟ ଦଳରୁ ଇସ୍ତଫା ଦେଇ କଂଗ୍ରେସ ଦଳରେ ଯୋଗ ଦେଇଥିଲେ । ଗୋକୁଳାନନ୍ଦ ପ୍ରହରାଜଙ୍କ ସହ ପ୍ରଜା ସୋସାଲିଷ୍ଟ ଦଳର ଧ୍ରୁବ ଚରଣ ସାହୁ ଏବଂ ସ୍ୱତନ୍ତ୍ର ଦଳର ରାମ ପ୍ରସାଦ ମିଶ୍ର ଓ ନବକୁମାରୀ ଦେବୀ କଂଗ୍ରେସ ଦଳରେ ଯୋଗ ଦେଇଥିଲେ । ୧୯୬୩ ବେଳକୁ କଂଗ୍ରେସର ସଦସ୍ୟ ସଂଖ୍ୟା ୮୬ ଥିଲା । ସେଥିରୁ ଏହି ନେତା ନିର୍ବାଚନରେ ମୋଟ ୮୩ଜଣ ଯୋଗ ଦେଇଥିଲେ । ୧୯୬୩ ମସିହା ସେପ୍ଟେମ୍ବର ୨୪ ତାରିଖରେ ଏହି ନେତା ନିର୍ବାଚନ ଅନୁଷ୍ଠିତ ହୋଇଥିଲା । ମୁଁ ଗୋକୁଳିବାବୁ (ଗୋକୁଳାନନ୍ଦ ପ୍ରହରାଜ)ଙ୍କୁ କହିଥିଲି ଯଦି ବୀରେନ୍ ମିତ୍ରଙ୍କୁ ପ୍ରକୃତରେ ପବିତ୍ରବାବୁ ବିରୋଧ କରି ପ୍ରତିଦ୍ୱନ୍ଦ୍ୱିତା କରନ୍ତି ତେବେ କେଉଁମାନେ ତାଙ୍କୁ ଭୋଟଦେଲେ ତାକୁ ଟିକେ ଟିପି କରି ଆଣିଥିବେ । ସେ ମତେ କହିଥିଲେ ତାହା ଗୋପନ ଭୋଟ ହେବ ତଥାପି ସେ ଚେଷ୍ଟା କରିବେ । ଏହି ସଭାରେ ନିଖିଳ ଭାରତ କଂଗ୍ରେସ କମିଟି ପକ୍ଷରୁ ପର୍ଯ୍ୟବେକ୍ଷକ ରୂପେ ହାଫିଜ୍ ମହମ୍ମଦ ଇବ୍ରାହିମ୍ ଯୋଗ ଦେଇଥିଲେ । ପ୍ରଥମେ ପବିତ୍ର ବାବୁଙ୍କୁ ପ୍ରତିଦ୍ୱନ୍ଦ୍ୱିତାରୁ ଓହରିଯିବାକୁ ବିଜୁବାବୁ କହିଥିଲେ । ମାତ୍ର ପବିତ୍ରବାବୁ ଶୁଣି ନଥିଲେ । ଫଳରେ ଗୋପନୀୟ ଭୋଟ ହୋଇଥିଲା । ଭୋଟରେ ବୀରେନ ମିତ୍ରଙ୍କ ସପକ୍ଷରେ ୬୮ଜଣ ଓ ପବିତ୍ର ବାବୁଙ୍କ ସପକ୍ଷରେ ୧୫ଜଣ ବିଧାୟକ ଭୋଟ ଦେଇଥିଲେ ।

ଯଦିଓ ଏହି ଭୋଟ ଗୋପନୀୟ ହୋଇଥିଲା ମୋତେ କିନ୍ତୁ ଗୋକୁଳିବାବୁ ପନ୍ଦରଜଣ ବିଧାୟକଙ୍କ ମଧ୍ୟରୁ ତେରଜଣଙ୍କ ନାମ ଦେଇଥିଲେ । ସେମାନେ ହେଲେ ୧)ପବିତ୍ର ମୋହନ ପ୍ରଧାନ, ୨)ବନମାଳି ପଟ୍ଟନାୟକ, ୩)ହିମାଂଶୁ ଶେଖର ପାଢ଼ୀ, ୪)ମୁରଲିଧର ଜେନା, ୫)ଉପେନ୍ଦ୍ର ମହାନ୍ତି, ୬)ସୁନାରାମ ସୋରେନ୍, ୭)କୁମୁଦ ଚନ୍ଦ୍ର ସିଂହ, ୮)ସୁରେନ୍ଦ୍ର ନାଥ ପଟ୍ଟନାୟକ, ୯)ଶାନ୍ତନୁ କୁମାର ଦାସ, ୧୦)ବୀର ବିକ୍ରମାଦିତ୍ୟ ସିଂହ ବରିହା, ୧୧)ମନମୋହନ ଟୁଡ୍ଡୁ, ୧୨)ଅନୁପ ସିଂହଦେଓ, ୧୩)ମୁରଲିଧର କୁଅଁର । ଆଉ ଦୁଇଜଣଙ୍କ ନାମ ଯଦିଓ ସେ ମୋତେ ସନ୍ଦେହରେ କହିଥିଲେ ତେବେ ତାକୁ ନଦେବାପାଇଁ ମୋତେ ବାରମ୍ବାର ତାଗିଦ କରି ଦେଇଥିଲେ । ସେମାନଙ୍କ ମଧ୍ୟରୁ ଜଣେ ବିଜୁବାବୁଙ୍କ ଅତି ଘନିଷ୍ଠ ଏବଂ ସେ ନିଜେ ମୁଖ୍ୟମନ୍ତ୍ରୀ ହେବାକୁ ଆଶାୟୀ ଥିଲେ । ସେ ବୀରେନବାବୁଙ୍କୁ ଖୋଲାଖୋଲି ନହେଲେ ମଧ ଗୋପନରେ ପ୍ରବଳ ବିରୋଧ କରୁଥିଲେ । ଆଉ ଜଣଙ୍କ ନାମ ସେ କହିଥିଲେ । ସେ ୧୯୫୭-୬୦ ମନ୍ତ୍ରିମଣ୍ଡଳରେ କ୍ୟାବିନେଟ୍ ମନ୍ତ୍ରୀ ଥିଲେ । ମାତ୍ର ବିଜୁବାବୁ ତାଙ୍କୁ ତାଙ୍କ

ମନ୍ତ୍ରିମଣ୍ଡଳରେ ଉପମନ୍ତ୍ରୀ ପାହ୍ୟାକୁ ଖସାଇ ଦେଇଥିଲେ । ଗୋକୁଳିବାବୁ ତାଙ୍କ ନାଁ କେଉଁଠି ପ୍ରକାଶ ନକରିବା ପାଇଁ ମୋତେ କହିଥିଲେ ।

ମୁଁ ମୋର ରିପୋର୍ଟରେ ଗୋକୁଳି ବାବୁ ଦେଇଥିବା ନାଁ ସହିତ କିଏ କ'ଣ କହୁଥିଲେ ଏବଂ ବିଜୁବାବୁ, ବୀରେନ ବାବୁ, ନୀଳମଣି ବାବୁ କ'ଣ କଥା ହେଉଥିଲେ ଯାହା ଯା' ତା'ଠୁ ଶୁଣିଲି ତାକୁ ଦେଇଥିଲି । ବିଶେଷ କରି ନୀଳମଣି ବାବୁ ବୀରେନ ମିତ୍ର ମୁଖ୍ୟମନ୍ତ୍ରୀ ହେବାରେ ଖୁସି ନୁହଁନ୍ତି ବୋଲି ମୋତେ ଗୋକୁଳିବାବୁ କହିଲେ । ମୁଁ ପଚାରିଲି ଆପଣ ଏକଥା କିପରି ଜାଣିଲେ ? ସେ କହିଲେ ନୀଳମଣି ବାବୁ ଏକଥା ପାଞ୍ଚ ସାତଜଣ ଏମ୍.ଏଲ୍.ଏ.ଙ୍କୁ କହିବାର ସେ ଶୁଣିଛନ୍ତି । ମୋ ରିପୋର୍ଟରେ ମୁଁ ଗୋକୁଳିବାବୁଙ୍କ ନାଁ ନଦେଇ ତିନି/ଚାରି ଜଣ ଏମ୍.ଏଲ୍.ଏ. ଏହା କଥାବାର୍ତ୍ତା ହେଉଥିଲେ ବୋଲି ଲେଖି ରିପୋର୍ଟଟି ଦେଲି । ବାଳକୃଷ୍ଣ ବାବୁ କିନ୍ତୁ ବୀରେନ ମିତ୍ରଙ୍କୁ ଅକୁଣ୍ଠ ସମର୍ଥନ ଏବଂ ଅନ୍ୟ କେତେକ ବିବରଣୀ ବିଶେଷ କରି ବୀରେନ ଦା'ଙ୍କ ଗରିବଙ୍କ ପ୍ରତି ସହାନୁଭୂତି ଆଦି ଲେଖି ଷ୍ଟୋରି କରିଥିଲେ । ମୋ ଷ୍ଟୋରିରେ ନାଁ ସବୁ ବାହାରିଯିବା ଫଳରେ ତା' ପରଦିନ ବେଶ୍ ଆଲୋଡ଼ନ ସୃଷ୍ଟି ହୋଇଥିଲା । କିଛି ବନ୍ଧୁ ମୋତେ ଅଭିନନ୍ଦନ ଜଣାଇଥିଲେ ଏବଂ ଏସବୁ ନାଁ କେଉଁଠୁ ପାଇଲ ବୋଲି ଅନେକ ପଚାରିଥିଲେ । ମୁଁ ବିଚିବାବୁଙ୍କୁ ଯଦିଓ ଗୋକୁଳିବାବୁଙ୍କ କଥା କହିଥିଲି- ତାଙ୍କୁ ବାରମ୍ବାର ଅନୁରୋଧ କରିଥିଲି ତାଙ୍କ ନାଁ ପ୍ରକାଶ ନ କରିବା ପାଇଁ । ଅନୁସନ୍ଧାନମୂଳକ ସାମ୍ବାଦିକତା ଠିକ୍ କ'ଣ ସେତେବେଳ ପର୍ଯ୍ୟନ୍ତ ମୁଁ ବୁଝି ନଥିଲେ ମଧ ମତେ ପରେ ଜଣେ ପୁରୁଖା ସାମ୍ବାଦିକ ଅଭିନନ୍ଦନ ଜଣାଇ କହିଥିଲେ ବରେନ୍ଦ୍ର ତୁ ଓଡ଼ିଶାରେ ଖୁବ୍ କମ୍ ଦିନରେ ନାଁ କରିଯିବୁ ।

ମାତୃଭୂମିରେ ମୁଖ୍ୟମନ୍ତ୍ରୀ ପ୍ରତିଯୋଗିତାର ବିରୋଧୀ ସଭ୍ୟଙ୍କ ନାମ ଓ ସଂଖ୍ୟା ପ୍ରକାଶ ପାଇବା ପରେ ଗୋଟିଏ କଥା ସ୍ପଷ୍ଟ ହେଲା ବିଜୁ ବାବୁଙ୍କ ସପକ୍ଷରେ ପୁରା ଦଳ ନାହାନ୍ତି । ଦଳରେ ବିଜୁବାବୁଙ୍କର ଯଦିଓ ସଂଖ୍ୟା ଗରିଷ୍ଠତା ରହିଛି କିନ୍ତୁ ସେ ସର୍ବମୟ କର୍ତ୍ତା ନୁହନ୍ତି । ମୋ ରିପୋର୍ଟରେ ସବୁ ନାଁ ପ୍ରକାଶ ପାଇବାରେ ବିଜୁବାବୁଙ୍କ ଗୋଷ୍ଠି ଅସନ୍ତୁଷ୍ଟ ହେଲେ ଏବଂ କେହି କେହି ଏହି ରିପୋର୍ଟକୁ ପ୍ରତିବାଦ କରିବାକୁ କହିଲେ । ମାତ୍ର ମୁଁ ଶୁଣିଲି ଆଉ କେହି କହିଲେ ନାଁ ବାହାରି ପଡ଼ି ଭଲ ହେଲା । କାରଣ କିଏ କେଉଁ ପଟେ ଅଛନ୍ତି ଅନ୍ତତଃ ଜଣା ପଡ଼ିଗଲା । ଏହି ବୈଠକ ପରେ ମୋତେ ଥରେ ମହତାବ ବାବୁ ଦେଖିଲେ ଏବଂ ପଚାରିଲେ ତୁମେ ସେ ବାଙ୍କୀ ମିନାମଣ୍ଡଳୀ ପିଲା ତ ? ମୁଁ ଆଶ୍ଚର୍ଯ୍ୟ ହେଲି ଏବଂ କହିଲି ସାର୍ ମୁଁ ଆପଣଙ୍କ ପାଖକୁ ଅନେକ ଥର ଯାଇଛି ରାମଭାଇଙ୍କ ସହ । ତା'ପରେ ମୋତେ ପଚାରିଲେ ତୁମେ ମାତୃଭୂମିରେ ଯେଉଁ ନାମଗୁଡ଼ିକ ଦେଲ ତାହା କେଉଁଠାରୁ ପାଇଲ ? ମୁଁ କ'ଣ କହିବି ଠିକ୍ କରି ପାରିଲି ନାହିଁ । ତା'ପରେ କହିଲି ସେଇଠି ଯା' ଠୁ ତା'ଠୁ ଶୁଣି ଦେଇଥିଲି । ବିଚିତ୍ରାନନ୍ଦ ତୁମକୁ ଏ ନାଁ ଦେବାକୁ କହିଲେ ? ମୁଁ କିଛି କହିଲି ନାହିଁ । ତା'ପରେ ସେ କହିଲେ ଭଲ ଭଲ । ମୁଁ ଯଃ ପଳାୟତି ସଃ ଜିବତି । ପରେ କେତେକ ପାଠକ ମୋତେ ଅଭିନନ୍ଦନ ଜଣାଇଲେ । ଜଣେ ପୁରୁଖା ସାମ୍ବାଦିକ ମତେ କହିଲେ ବରେନ୍ଦ୍ର ଇନ୍‌ଭେଷ୍ଟିଗେଟିଭ୍ ଜର୍ଣ୍ଣାଲିଜମ୍ କର । ତୁମେ ନିଶ୍ଚିତ ଭାବେ ସଫଳ ହେବ । ମୁଁ ସେତେବେଳେ ଇନ୍‌ଭେଷ୍ଟିଗେଟିଭ୍ ଜର୍ଣ୍ଣାଲିଜମ୍ ବା ଅନୁସନ୍ଧାନମୂଳକ ସାମ୍ବାଦିକତା କ'ଣ ତା' ଜାଣିନଥିଲି । ତେବେ ବିଚାରିଲି ଯାହା ହେଉ ଗୋକୁଳିବାବୁ ମତେ ଅନେକ ସାହାଯ୍ୟ କଲେ । ନଚେତ୍ ଏ ପ୍ରଶଂସା ମୁଁ ପାଇ ନଥା'ନ୍ତି ।

୧୯୬୩ ମସିହା ଅକ୍ଟୋବର ପହିଲାରେ ବିଜୁ ବାବୁ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଲେ ଏବଂ ଅକ୍ଟୋବର ୨ ତାରିଖରେ ବୀରେନ ମିତ୍ର ଓଡ଼ିଶାର ନୂଆ ମୁଖ୍ୟମନ୍ତ୍ରୀ ହେଲେ । ନୂଆ ମନ୍ତ୍ରିମଣ୍ଡଳରେ ପବିତ୍ର ମୋହନ ପ୍ରଧାନ ଯୋଗ ଦେବାକୁ ମନା କରିଦେଲେ । ସେ କିନ୍ତୁ ବିଜୁ ବାବୁଙ୍କ ମନ୍ତ୍ରିମଣ୍ଡଳରେ ମନ୍ତ୍ରୀ ଥିଲେ । ବୀରେନ୍ ଦା ତାଙ୍କୁ ବ୍ୟକ୍ତିଗତ ଭାବେ ଅନୁରୋଧ କଲେ ମଧ ସେ ରାଜି ହେଲେ ନାହିଁ ।

ପବିତ୍ର ବାବୁ ସେତେବେଳେ କଟକରେ ରହୁଥା'ନ୍ତି । ପ୍ରତିଦିନ ସ୍ୱରାଜ୍ୟ ଭବନକୁ ଆସନ୍ତି । କଟକ ଭାଷାକୋଷ ଲେନ୍‌ରେ ସ୍ୱରାଜ ଭବନ । ମହତାବ ବାବୁ ମଧ୍ୟ ସେଠାକୁ ଆସନ୍ତି । ମୁଁ ସ୍ୱରାଜ୍ୟ ଭବନରେ ପବିତ୍ରବାବୁଙ୍କୁ ଭେଟି ମୋ ପରିଚୟ ଦେଇ ପଚାରିଲି ସାର୍- ଆପଣ ମନ୍ତ୍ରୀ ହେବାକୁ କାହିଁକି ମନା କଲେ ? ସେ କହିଲେ ଆହେ- ମୁଁ ମୁଖ୍ୟମନ୍ତ୍ରୀ ହେବା ପାଇଁ ପ୍ରତିଦ୍ୱନ୍ଦ୍ୱିତା କରିଥିଲି । ଯିଏ ମୋତେ ହରାଇଲା ତାରି ଅଧିନରେ ପୁଣି ମନ୍ତ୍ରୀ ହୋଇଥା'ନ୍ତି ? ମୋର କ'ଣ ଇଜ୍ଜତ ନାହିଁ । ମନ୍ତ୍ରୀ ହେବା ପାଇଁ ମୋର ଲୋଭ ନାହିଁ ।

ନୀଳମଣି ରାଉତରାୟ ବୀରେନ ମିତ୍ର ମନ୍ତ୍ରିମଣ୍ଡଳରେ ଉପ ମୁଖ୍ୟମନ୍ତ୍ରୀ ରୂପେ କାର୍ଯ୍ୟ କଲେ । ବୀରେନ ମିତ୍ରଙ୍କ କାର୍ଯ୍ୟ କରିବାର ଶୈଳୀ ମଧ୍ୟ ଅଦ୍ଭୁତ । ସେ କଟକ ଦାଦା ଥିଲେ । ତାଙ୍କୁ ସମସ୍ତେ ଦାଦା ବୋଲି ଡାକୁଥିଲେ । ମୁଁ ପୂର୍ବରୁ କହିଛି ସେ ବିହାରୀ ବାଗ(ପ୍ରଜାତନ୍ତ୍ର ଖବର କାଗଜ ଯେଉଁଠାରୁ ପ୍ରକାଶ ପାଉଛି)ରେ ରହୁଥିଲେ । ସକାଳୁ ଘଣ୍ଟେ/ଦି'ଘଣ୍ଟା ସେ କେବଳ ଖଣ୍ଡେ ଲୁଙ୍ଗି ପିନ୍ଧି ଖାଲି ଦେହରେ ବସି ତେଲ ମାଲିସ୍ ହୁଅନ୍ତି । ତାଙ୍କୁ ଯିଏ ଯେତେବେଳେ ସାକ୍ଷାତ କରିବାକୁ ଯାଇଛି ତାଙ୍କର ସେଇ ବେଶରେ ସାକ୍ଷାତ କରିଛି । ମୁଁ କେତେବେଳେ କେମିତି ତାଙ୍କୁ ଦେଖା କରିବାକୁ ଯାଏ । କିଛି ସମ୍ବାଦ ପାଇଁ ବା ସରକାରୀ କାର୍ଯ୍ୟକ୍ରମ ସମ୍ପର୍କରେ ଜାଣିବା ପାଇଁ ସେହିଭଳି ଅବସ୍ଥାରେ କଥାବାର୍ତ୍ତା କରି ଆସିଛି । ତାଙ୍କ ପାଖକୁ ଅନେକ ଛାତ୍ର ଆସୁଥିଲେ । ଅଧିକାଂଶ ଅର୍ଥ ସାହାଯ୍ୟ ପାଇଁ । ଆମେ ଏଭଳି ଅନେକ ଛାତ୍ରଙ୍କୁ ଜାଣିଛୁ ଏବଂ ଦେଖିଛୁ । ସେମାନଙ୍କ ମଧ୍ୟରୁ ଆଜି ଅନେକ ସମାଜରେ ସୁପ୍ରତିଷ୍ଠିତ । ସେମାନଙ୍କ ନାଁ ଦେବାପାଇଁ ଇଚ୍ଛା କରୁନାହୁଁ ଏଇଥିପାଇଁ ଯେ ଏହା ସେମାନଙ୍କ ପ୍ରତିଷ୍ଠାରେ ଆଞ୍ଚ ଆଣିପାରେ । ସେମାନେ ଏବେ ଆମ ବୟସର କିମ୍ବା ଆମଠୁ ସାମାନ୍ୟ ଛୋଟ ବା ବଡ଼ ହୋଇପାରନ୍ତି । ସେମାନେ ନିଜେ ନିଜ ପକ୍ଷରୁ ଅବଶ୍ୟ ଯଦି କେତେବେଳେ ଏହା ପ୍ରକାଶ କରିବେ ତାହା ସେମାନଙ୍କ ମହାନୁଭବତା ହେବ ।

୧୯୬୩ ଅକ୍ଟୋବର/ ନଭେମ୍ବର ମାସ ବେଳକୁ ଶୁଣାଗଲା ୧୯୬୪ ଜାନୁଆରୀ ପ୍ରଥମ ସପ୍ତାହରେ ଭୁବନେଶ୍ୱରରେ କଂଗ୍ରେସ ଅଧିବେଶନ ଅନୁଷ୍ଠିତ ହେବ । ଏଥିପାଇଁ ବ୍ୟାପକ ପ୍ରସ୍ତୁତି ଆରମ୍ଭ ହୋଇଗଲା । ଆଠ ନମ୍ବର ୟୁନିଟ୍‌ରେ ଯେଉଁଠି ଏବେ ଗୋପବନ୍ଧୁଙ୍କ ପ୍ରତିମୂର୍ତ୍ତିରହୁଛି ସେ ଅଞ୍ଚଳର ଚାରିପଟେ ନୂଆ ଟାଇପ୍-୨, ଟାଇପ୍-୧ ଓ ବଡ଼ ଘର ଯାହା ସବୁ ତିଆରି ହେଉଥିଲା ତାକୁ ତୁରନ୍ତ ଶେଷ କରିବା ପାଇଁ ନିର୍ଦ୍ଦେଶ ଦିଆଗଲା । କଂଗ୍ରେସ ଅଧିବେଶନ ଅଞ୍ଚଳକୁ ଗୋପବନ୍ଧୁ ନଗର ନାମରେ ନାମିତ କରାଗଲା । ସେଠି ଗୋପବନ୍ଧୁଙ୍କ ବ୍ରୋଞ୍ଜ୍ ପ୍ରତିମୂର୍ତ୍ତିନିର୍ମାଣ କରାଯାଇ ଛକ ଉପରେ ସ୍ଥାପନ କରାଗଲା । ମାତୃଭୂମିର ସେତେବେଳେ ଭୁବନେଶ୍ୱର ପ୍ରତିନିଧି ବାଳକୃଷ୍ଣ କାନୁନ୍‌ଗୋ ଥିଲେ । ସେ ଏ ସମ୍ପର୍କରେ ସବୁ ଖବର ଦେଉଥିଲେ । ମାତ୍ର ମଝିରେ ବିଚିବାବୁ ମୋତେ କହିଲେ ବରେନ୍ଦ୍ର ବାବୁ ଆପଣ ଗୋପବନ୍ଧୁ ନଗରରେ କ'ଣ କାମ ହେଉଛି କି ପ୍ରକାର ଆୟୋଜନ ହେଉଚି କିଏ କେଉଁଠି ରହିବା ବ୍ୟବସ୍ଥା ହୋଇଛି ତାକୁ ଦେଖିବାକୁ ଯାଉ ନାହାନ୍ତି । କାରଣ କଂଗ୍ରେସ ଅଧିବେଶନ ବେଳେ କେବଳ ବାଳକୃଷ୍ଣ ବାବୁ ସବୁ ଖବର ଦେବା ସମ୍ଭବ ହେବ ନାହିଁ । ଆପଣ ଆଗରୁ ଯାଇ ଟିକେ ବୁଲାବୁଲି କରି ପରିବେଶ ସହ ନିଜକୁ ପରିଚିତ କରାଇ ଆସନ୍ତୁ । ମୁଁ ସେଥିପାଇଁ ଗୋପବନ୍ଧୁ ନଗରକୁ ବୁଲି ଦେଖିବାକୁ ଗଲି । ସେତେବେଳେ ଭୁବନେଶ୍ୱରରେ ସମାଜ ପ୍ରତିନିଧି ଥା'ନ୍ତି ବିଶିଷ୍ଟ ସାମ୍ବାଦିକ ନାରାୟଣ ରଥ । ନାରଣ ବାବୁ ପ୍ରତିଦିନ କଟକରୁ ଭୁବନେଶ୍ୱର ଯାଉଥା'ନ୍ତି । ପ୍ରକୃତ ପକ୍ଷରେ ମୋର ଭୁବନେଶ୍ୱର ସମ୍ପର୍କରେ କୌଣସି ଧାରଣା ନଥିଲା । ତେଣୁ ମୁଁ ନାରଣ ବାବୁଙ୍କ ପିଛା ଧରିଲି । ନାରଣ ବାବୁ ଚାନ୍ଦିନୀ ଚୌକରୁ ବସ୍ ଧରନ୍ତି । ମୁଁ ମଧ୍ୟ ରାଜା ବଗିଚା ଲେବର କଲୋନୀରୁ ସାଇକେଲ୍‌ରେ ଯାଇ ସାଇକେଲ୍‌କୁ ଚାନ୍ଦିନୀଚୌକ ଛକରେ ଥିବା ଓ୍ୱେଷ୍ଟର୍ଣ୍ଣ ହୋଟେଲ ସାମ୍ନାରେ ତାଲା ପକାଇ ରଖିଦେଇ ନାରଣ ବାବୁଙ୍କ ସହ ଓ.ଆର୍.ଟି. ବସ୍‌ରେ ଭୁବନେଶ୍ୱର ଗଲି । ମତେ ନାରଣ ବାବୁ ପଚାରିଲେ କିହୋ ବରେନ୍ଦ୍ର ତୁମ କାଗଜର ପରା ବାଳକୃଷ୍ଣ ଅଛନ୍ତି । ତୁମେ

ପୁଣି କୁଆଡ଼େ ଯାଉଛ ? ମୁଁ ତାଙ୍କୁ କହିଲି ନା- ଏଇମିତି- କଂଗ୍ରେସ ଅଧିବେଶନ ବେଳେ କେବଳ ବାଳକୃଷ୍ଣବାବୁ ସବ ଖବର ଦେବା ସମ୍ଭବ ହେବ ନାହିଁ- ତେଣୁ ତାଙ୍କୁ ସାହାଯ୍ୟ କରିବା ପାଇଁ ମଝିରେ ମଝିରେ ମୋତେ ଆସିବା ପାଇଁ ବିଡିବାବୁ କହିଲେ । ତା'ଛଡ଼ା ମୁଁ ଭୁବନେଶ୍ୱର ସମ୍ପର୍କରେ ବିଶେଷ କିଛି ଜାଣିନି । ସେଥିପାଇଁ ଟିକେ ଆଗରୁ ଆସି ଗୋପବନ୍ଧୁ ନଗର କେଉଁଠି ଏବଂ ସେଠାରେ କ'ଣ ଆୟୋଜନ ହେଉଛି ସେକଥା ଦେଖିବାକୁ ଯାଉଛି ।

ସେତେବେଳେ ଭୁବନେଶ୍ୱରରେ ବସ୍‌ଷ୍ଟାଣ୍ଡ ଥିଲା ଏକ ନମ୍ବର ହାଟ ସାମ୍‌ନାରେ । ଏବେ ଯେଉଁଠି ପୂଜା ମଣ୍ଡପ, ମନ୍ଦିର ଏବଂ ପୂଜାମଣ୍ଡପ ମାର୍କେଟ ଏବଂ କୃଷି ବିଭାଗ ବିହନ କେନ୍ଦ୍ର ରହିଛି ସେସବୁ କିଛି ନଥିଲା । ମାର୍କେଟ ବିଲଡିଂ ମାତ୍ର ଗୋଟିଏ ଧାଡ଼ି ଥିଲା । ମାର୍କେଟ ବିଲଡିଂରେ ଯେଉଁଠି 'ଅଳକା ଷ୍ଟୋର' ବର୍ତ୍ତମାନ ଅଛି ସେଠି ମୋର ଯାହା ମନେ ପଡୁଛି ଖଣି ବିଭାଗ ନିର୍ଦ୍ଦେଶାଳୟ ଥିଲା । 'ବୟନିକା' ଦୋକାନ ଯେଉଁଠି ଅଛି ସେଠି ସୂଚନା ଭବନ ଥିଲା । 'କଳାମନ୍ଦିର' ଲୁଗାଦୋକାନ ସ୍ଥାନରେ ସେଇ ମାଲିକ ଏକ ମନୋହରି ଦୋକାନ 'ବର୍ମା ଜେନେରାଲ୍ ଷ୍ଟୋର୍' ନାମରେ ଖୋଲିଥିଲେ । ବେଶ୍ ବଡ଼ ଡିପାର୍ଟମେଣ୍ଟାଲ୍ ଷ୍ଟୋର୍ । ନରୁଲା କ୍ଲଥ୍ ଷ୍ଟୋର୍, ଲାଲ୍‌ଚାନ୍ଦ, କ୍ୟାପିଟାଲ୍ ଡ୍ରେସ୍ ଷ୍ଟୋର୍, ଅଶୋକ ନଗର ପୋଷ୍ଟ ଅଫିସ୍ ବଦଳରେ ସେଠି ଜେନେରାଲ୍ ପୋଷ୍ଟ ଅଫିସ୍ ବା ଜି.ପି.ଓ. ଏବଂ ଆଉ ଦୁଇଟି ବଡ଼ ବଡ଼ ଏଜେନ୍ସିର ସୋ'ରୁମ୍ ଥିଲା । ଅନେକ ଦୋକାନ ମାର୍କେଟ ବିଲଡିଂର ଦୁଇପଟେ ଓ୍ୱେଷ୍ଟର୍ଣ୍ଣ ଟାଓ୍ୱାର ଓ ଇଷ୍ଟର୍ଣ୍ଣ ଟାଓ୍ୱାରରେ ଥିଲା । ସେଇଠି ଭିଡ଼ ବେଶୀ ହେଉଥିଲା । ଏବେ ପୋଷ୍ଟ ଅଫିସ୍ ଓ ଅଳକା ମଝିରେ ଯେଉଁ 'ୟୁ' ଟାଇପ୍ ଛୋଟ ଛୋଟ ଦୋକାନ ଘର ରହିଛି ସେସବୁ କିଛି ନଥିଲା । ସେଠି ଗଣେଶ ପୂଜା- ସରସ୍ୱତୀ ପୂଜା ହେଉଥିଲା ।

ଓ୍ୱେଷ୍ଟର୍ଣ୍ଣ ଟାଓ୍ୱାର ସାଇଡ୍‌ରେ ଦୁଇଟି ଚାଲୁ କ୍ୟାଣ୍ଟିନ୍ ଥାଏ । ଗୋଟିଏ ନାରଣ ମହାପାତ୍ରଙ୍କର ଅନ୍ୟଟି ଶୁକଦେବ ହଂସଙ୍କର । ନାରଣ ମହାପାତ୍ର ମାତୃଭୂମିର ଭୁବନେଶ୍ୱର ଏଜେଣ୍ଟ ଥିଲେ । ଏ କ୍ୟାଣ୍ଟିନ୍ ଦୁଇଟିରେ ଚବିଶ ଘଣ୍ଟା ଭିଡ଼ ଲାଗିଥାଏ । ଏବେ ରାଜ ମହଲ ଛକ ଯେଉଁଠି ଅଛି କଳ୍ପନା ଛକରୁ ସେଇବାଟ ଦେଇ ରାଜଭବନକୁ ଗୋଟିଏ ରାସ୍ତା ଥାଏ । ଡବଲ୍ ରୋଡ଼୍ ହୋଇ ନଥାଏ । ଆମେ ଭୁବନେଶ୍ୱରର ଏହି ଭୌଗୋଳିକ ସ୍ଥିତି ଏଇଥିପାଇଁ ଦେଲୁ ଯେ ଚାଳିଶ/ବୟାଳିଶ ବର୍ଷ ତଳେ ଭୁବନେଶ୍ୱର କ'ଣ ଥିଲା- ଏବେ କ'ଣ ହୋଇଛି ତାହା ସାଧାରଣ ପାଠକଙ୍କୁ ଜଣାଇବା ପାଇଁ ।

ଏବେ ଆସିବା ଗୋପବନ୍ଧୁଙ୍କ ନଗରକୁ । ଆମେ ବସ୍‌ଷ୍ଟାଣ୍ଡରୁ ରିକ୍ସାଟିଏ ଧରି ଗୋପବନ୍ଧୁ ନଗର ଆସିଲୁ । ସେଇ ରିକ୍ସାରେ ବସି ଚାରିଆଡ଼େ ବୁଲି ବୁଲି ସବୁ ଦେଖିଲୁ । ଶହ ଶହ ଲୋକ କାମ କରୁଥା'ନ୍ତି । ଅନେକ ଘର ଛାତ ପଡୁଥାଏ । ରାସ୍ତା ତିଆରି ଚାଲିଥାଏ । ପାଣି ଟ୍ୟାପ୍ ବିଭିନ୍ନ ସ୍ଥାନରେ ଠିଆ ହୋଇଥାଏ । କର୍ମଯଜ୍ଞ କ'ଣ ତାକୁ ନଦେଖିଲେ ଜାଣିହେବ ନାହିଁ । ପ୍ରାୟ ଦୁଇଘଣ୍ଟା କାଳ ବୁଲି ବୁଲି ବସ୍‌ଷ୍ଟାଣ୍ଡ ଫେରିଲି । ବସ୍‌ଷ୍ଟାଣ୍ଡରୁ ଗୋପବନ୍ଧୁ ନଗର ଯିବା ବାଟ ମଧ ଚିହ୍ନିଗଲି ।

ଆଜି ଭୁବନେଶ୍ୱରକୁ ଯେଉଁମାନେ ଦେଖୁଛନ୍ତି ୧୯୬୩/୬୪ ମସିହାରେ ସେଇଆ ନଥିଲା । କଳ୍ପନା ଛକରୁ ଗୋଟିଏ ସରୁ ପିଚୁ ରାସ୍ତା ରାଜଭବନକୁ ଯାଇଥିଲା । ରାଜମହଲ ଛକ ବୋଲି କିଛି ନଥିଲା । ଏତେ କୋଠାବାଡ଼ି ମଧ ନଥିଲା । ସେତେବେଳେ ଡବଲ ରୋଡ଼୍ ନଥିଲା । ବସ୍‌ଷ୍ଟାଣ୍ଡରେ ଝୁପୁଡ଼ି ହୋଟେଲ, ଚା' ଜଳଖିଆ ଦୋକାନ ଏବଂ ଗୋଟିଏ ବହି-ମାଗାଜିନ୍ କ୍ୟାବିନ୍ ଥିଲା । ସେତେବେଳେ ଭୁବନେଶ୍ୱରରେ ଦୁଇଟି ସିନେମାହଲ୍ । ଗୋଟିଏ କଳ୍ପନା ଏବଂ ଅନ୍ୟଟି ଡଃ ମହତାବଙ୍କ ଏକାମ୍ର ନିବାସ ପାଖରେ ଥିଲା । ଦୁଇଟି ଯାକ ଆମର ଯାହା ମନେ ପଡୁଛି ଚାଳ ଘର ଥିଲା । ରାଜମହଲ ହୋଟେଲ ମଧ ଚାଳ ଘର ଥିଲା ।

ସେ ଯାହାହେଉ ମୁଁ ବସ୍‌ରୁ ଓହ୍ଲାଇ ରିକ୍ସା ଧରି ଗୋପବନ୍ଧୁ ନଗର ଗଲି । ଲୋକେ ବିଶେଷ କେହି ଗୋପବନ୍ଧୁ ନଗର ଜାଣି ନଥିଲେ । ରିକ୍ସା ବାଲାଏ ଜାଣିଥିଲେ । କାରଣ ସେତେବେଳେ ଠିକାଦାର, କଂଗ୍ରେସ ନେତା ସମସ୍ତେ ଘନ ଘନ ଗୋପବନ୍ଧୁ ନଗର ଯାଉଥା'ନ୍ତି । ମୋତେ ରିକ୍ସାବାଲା ଗୋପବନ୍ଧୁ ନଗର ନେଇ ଚାରିଆଡ଼ ବୁଲାଇ ଦେଖାଇଲା । କଂଗ୍ରେସ ଅଧିବେଶନ କେଉଁଠି ହେବ ଏବଂ ସମସ୍ତେ କେଉଁଠି ରହିବେ ସେ କଥା ମୁଁ ସେଇଠି କାମ କରୁଥିବା ଠିକାଦାର ଓ କଂଗ୍ରେସ ନେତାଙ୍କ ଠାରୁ ବୁଝିଲି । ଚାରିଆଡ଼େ ଶହ ଶହ ଲୋକ କାମ କରୁଥା'ନ୍ତି । କେଉଁଠି ଛାତ ପଡୁଥାଏ ତ କେଉଁଠି ରାସ୍ତା ତିଆରି ହେଉଥାଏ ଏବଂ କେଉଁଠି କେଉଁଠି ନଳକୂପ ବସା ଯାଉଥାଏ । ଅନେକ ସ୍ଥାନରେ ପାଣି ଟ୍ୟାପ୍ ଲାଗିଥାଏ । ପ୍ରାୟ ଦୁଇଘଣ୍ଟା ବୁଲି ବୁଲି ମୁଁ ଫେରିଲି । ମନରେ ଗୋପବନ୍ଧୁ ନଗରର ଏକ ନକ୍ସା ଆଙ୍କି ହୋଇ ଯାଇଥିଲା । ଗୋପବନ୍ଧୁଙ୍କ ମୂର୍ତ୍ତିସେତେବେଳୁ ତିଆରି ହୋଇ ନଥିଲା । ଅଧିବେଶନର ସପ୍ତାହକ ପୂର୍ବରୁ ସେଠି ପ୍ରତିଷ୍ଠା ହେଲା । ତେବେ କଂଗ୍ରେସ ଅଧିବେଶନ ଆରମ୍ଭ ହେବା ପୂର୍ବରୁ ମୁଁ ଚାରି/ପାଞ୍ଚଥର ଗୋପବନ୍ଧୁ ନଗର ବୁଲି ଦେଖି ଯାଇଥିଲି । ଫଳରେ ଚାରିଆଡ଼େ ମୁଁ ପ୍ରାୟ ଜାଣି ଯାଇଥିଲି ।

କଂଗ୍ରେସ ଅଧିବେଶନ ଆରମ୍ଭ ହେବା କଥା ୧୯୬୪ ମସିହା ଜାନୁଆରୀ ୭ ତାରିଖରେ । କିନ୍ତୁ ତା'ର ପ୍ରାୟ ପନ୍ଦର/କୋଡ଼ିଏ ଦିନ ପୂର୍ବରୁ ଦେଶର ବିଭିନ୍ନ ସ୍ଥାନରୁ କଂଗ୍ରେସ ସେବାଦଳର କର୍ମୀମାନେ ଭୁବନେଶ୍ୱର ଆସିଥା'ନ୍ତି । ସେମାନଙ୍କ ପାଇଁ ଅନେକ ତମ୍ବୁ ଟଣା ଯାଇଥାଏ । ସେବା ଦଳରେ ବହୁ ଝିଅ ମଧ୍ୟ ଆସିଥା'ନ୍ତି । ସେମାନଙ୍କ ମଧ୍ୟରେ ଅନେକ ସୁନ୍ଦରୀ ଝିଅ ଓ ମହିଳା ଥା'ନ୍ତି । ସକାଳୁ ସେମାନେ ପି.ଟି. କରନ୍ତି । ଗୋପବନ୍ଧୁ ନଗରରେ ବୁଲନ୍ତି । ସେମାନଙ୍କୁ ଦେଖିବା ପାଇଁ ଅନେକ ଲୋକ ସେମାନଙ୍କ ପଛେ ପଛେ ଯା'ନ୍ତି । ଗୋପବନ୍ଧୁ ନଗରରେ ସବୁ ଖବରକାଗଜ ପାଇଁ ଡିସେମ୍ବର ୨୫ ତାରିଖରୁ ଗୋଟିଏ ଗୋଟିଏ ଦି'ବଖରିଆ ଘର ଦିଆଯାଇଥାଏ । ସେତେବେଳେ ଓଡ଼ିଶାରେ ଚାରୋଟି ଖବରକାଗଜ ପ୍ରକାଶ ପାଉଥିଲା । ସମାଜ, ପ୍ରଜାତନ୍ତ୍ର, ମାତୃଭୂମି ଆଉ କଳିଙ୍ଗ । ସାମ୍ବାଦିକ ଅର୍ଥାତ୍ ଓଡ଼ିଆ/ଇଂରାଜୀ ଖବରକାଗଜର ଷ୍ଟାଫ୍ ରିପୋର୍ଟର ଭୁବନେଶ୍ୱର/କଟକକୁ ମିଶାଇଲେ ଥିଲେ ତେର/ଚଉଦ ଜଣ ।

ଭୁବନେଶ୍ୱରରେ ଥିଲେ ସମାଜର ନାରାୟଣ ରଥ, ପ୍ରଜାତନ୍ତ୍ରର ଗୋପାଳ ମିଶ୍ର, ମାତୃଭୂମିର ବାଳକୃଷ୍ଣ କାନୁନ୍‌ଗୋ, କଳିଙ୍ଗର ଚିନ୍ତାମଣି ପାଣିଗ୍ରାହୀ, ପି.ଟି.ଆଇ.ର ରାମକୃଷ୍ଣ ବେହେରା, ଷ୍ଟେଟ୍‌ସମ୍ୟାନ/ହିନ୍ଦୁର ଏନ୍.ଆର୍. ସ୍ୱାମୀ, ଇଣ୍ଡିଆନ୍ ଏକ୍ସପ୍ରେସ୍‌ର କୃପାକରନ୍ ଏବଂ ଟାଇମ୍ସ ଅଫ୍ ଇଣ୍ଡିଆର ଏନ୍.କେ. ସ୍ୱାମୀ । ଆଜି ଏ ଆତ୍ମଚରିତ ଲେଖିବା ବେଳକୁ କେହି ଇହଧାମରେ ନାହାନ୍ତି । ସେମାନଙ୍କ ଉଦ୍ଦେଶ୍ୟରେ ଆଜି ମୋର ସଶ୍ରଦ୍ଧ ପ୍ରଣାମ ।

କଂଗ୍ରେସ ଅଧିବେଶନରେ ସବୁ ଖବରକାଗଜ ପାଇଁ ଦିଆଯାଇଥିବା ଘରେ ଟେଲିଫୋନ୍ ଲଗାଯାଇଥାଏ । ଏବଂ ଚାରୋଟି ଚଉକି ଓ ଗୋଟିଏ ଟେବୁଲ୍ ଦିଆଯାଇଥାଏ । ଆମ କାଗଜ ପାଇଁ ଦିଆ ଯାଇଥିବା ଘରର ଚାବି ବାଳକୃଷ୍ଣ କାନୁନ୍‌ଗୋଙ୍କ ପାଖରେ ଥାଏ । ତେବେ ମୁଁ ତାଙ୍କୁ ସାହାଯ୍ୟ କରିବା ପାଇଁ ବିଚିବାବୁ ଅର୍ଡ଼ର କରିଥିବାରୁ ସେ ଟିକେ ଅସନ୍ତୁଷ୍ଟ ଥିଲା ପରି ମନେ ହେଲା । ସେଥିପାଇଁ ମୁଁ କିଛି ମୁଣ୍ଡ ନଖେଳାଇ ପ୍ରତିଦିନ ଭୁବନେଶ୍ୱରରେ ଓହ୍ଲାଇ ତାଙ୍କ ପାଖରୁ ଚାବି ନେଇ ଆସେ । ଅବଶ୍ୟ ସେ କଂଗ୍ରେସ ଅଧିବେଶନ ପ୍ରେସ୍ ଦାୟିତ୍ୱରେ ଥିବା ଲୋକ ସମ୍ପର୍କ ବିଭାଗ ନିର୍ଦ୍ଦେଶକ ଶଶିଭୂଷଣ ମିଶ୍ରଙ୍କ ପାଖରୁ ଡୁପ୍ଲିକେଟ୍ ଚାବିଟିଏ ଆଣି ମୋତେ ଦେଲେ । ମୁଁ କ'ଣ କ'ଣ କଭର କରିବି ସେକଥା ମତେ ବୁଝାଇ ଦେଇ ସେବାଦଳ ଏବଂ ଅଧିବେଶନରେ କିଏ କ'ଣ କରୁଛି ସେ କଥା ଲେଖି ତାଙ୍କୁ ଦେଖାଇବାକୁ କହିଲେ । ମୁଁ ପ୍ରତିଦିନ ଯିବା ଆସିବା କରୁଥାଏ । କାରଣ ଡିସେମ୍ବରରେ ଏତେ କିଛି ରିପୋର୍ଟ କରିବାର ନଥାଏ । କଂଗ୍ରେସ ଅଧିବେଶନ ଆରମ୍ଭ ହେବାକୁ ଡେରି ଥାଏ ।

## -ପିଲୁ ବେନ୍-

ସେଦିନ ମୁଁ ବସ୍‌ରେ ଫେରିଯିବା ପାଇଁ ଭୁବନେଶ୍ୱର ବସ୍‌ଷ୍ଟାଣ୍ଡରେ ପହଞ୍ଚି ଏକ ମୁଖରୋଚକ ସମ୍ବାଦ ଶୁଣି ସ୍ତମ୍ଭିଭୂତ ହୋଇଗଲି । ବସ୍‌ରେ ଯିବା ପୂର୍ବରୁ ଷ୍ଟାଣ୍ଡରେ ଥିବା ଏକ ଜଳଖିଆ ଦୋକାନରେ ବରା ତରକାରୀ ଖାଉଛି, ଦୁଇ/ତିନିଜଣ ବ୍ୟକ୍ତି ଚା' ପିଉ ପିଉ କଥା ହେଉଥା'ନ୍ତି ଝିଅଟାକୁ ରେପ୍ କରି ମାରି ଦେଇଛନ୍ତି । ଜଣେ କହିଲା ଝିଅଟା ଭାରି ସୁନ୍ଦରୀ ଥିଲା । ଦେଖିଦେଲେ ଲୋଭ ହୋଇଯିବ । ମୁଁ ସେମାନଙ୍କୁ ଚାହିଁଲି । ତା'ପରେ ଜଣକୁ ପଚାରିଲି କ'ଣ ହୋଇଛି ଆଜ୍ଞା ? ସେ ମୋତେ ଚାହିଁଲେ । ମୁଁ କହିଲି ଏଇନେ ମୁଁ କଂଗ୍ରେସ ଅଧିବେଶନ ଯାଗାରୁ ଆସୁଛି । ମୁଁ ଜଣେ ସାମ୍ବାଦିକ । ସାମ୍ବାଦିକ ଶୁଣି ସେ ଭଦ୍ରଲୋକ ମୋତେ ଚାହିଁଲେ । କହିଲେ ଆପଣ ସାମ୍ବାଦିକ । ଆମ ଅପେକ୍ଷା ଆପଣ ଆଗ ଜାଣିବା କଥା । ତେବେ ମୁଁ ସେଇଠି ଥିଲି ବୋଲି ଅବଶ୍ୟ ଦେଖିଛି । ମୋ ମନଟା ଆହୁରି ଉତ୍ସୁକ ହେଲା । ସେ କହିଲେ ଆଜି ଏଇ କିଛି ସମୟ ଆଗରୁ ଖଣ୍ଡଗିରି ଛକ ପାଖରେ ଏକ ଜିପ୍‌କୁ ଟ୍ରକ୍ ଧକ୍କା ଦେଲା । ସେ ଜିପ୍‌ରେ କଂଗ୍ରେସର ଜଣେ ସେବାଦଳ ଝିଅ ବସିଥିଲା । ସେ ସେଇଠି ମରିଗଲା ବୋଲି କହୁଛନ୍ତି । ତାକୁ କ୍ୟାପିଟାଲ ହସ୍‌ପିଟାଲକୁ ନେଇଥିଲେ ।

ମୁଁ ଏକଥା ଶୁଣି ସାଙ୍ଗେ ସାଙ୍ଗେ ହାତ ଧୋଇ କ୍ୟାପିଟାଲ ହସ୍‌ପିଟାଲ୍‌କୁ ରିକ୍ସା ଧରି ଧାଇଁଲି । ଆଜି ସେ କଥା ମନେ କରିବା ବେଳକୁ ମନଟା ଦୁଃଖରେ ଭରି ଯାଉଛି । ଏମର୍‌ଜେନ୍ସି ରୁମ୍‌ରେ ସେ ଝିଅର ଶବ ରହିଥାଏ । ସେତେବେଳକୁ ସନ୍ଧ୍ୟା ସାଢ଼େ ୭ଟା/୮ଟା ହେବ । ଶୁଣିଲି ସେ ଝିଅ ନାଁ ପିଲୁ ବେନ୍ । ଜାତିରେ ପାର୍ଶି । ବମ୍ବେରୁ ଆସିଥିଲା ସେବାଦଳ ତାଲିମ୍ ନେବାପାଇଁ । ଆଦିବାସୀ ଗ୍ରାମ ମଙ୍ଗଳ ବିଭାଗର ଜଣେ ସହକାରୀ ଜିଲ୍ଲା ଓ୍ୱେଲଫେୟାର ଅଫିସର୍‌ଙ୍କ ସାଙ୍ଗରେ ଖଣ୍ଡଗିରି-ଉଦୟଗିରି ବୁଲିବାକୁ ଯାଇଥିଲେ । ଫେରିବା ବେଳେ ସନ୍ଧ୍ୟା ୫ଟା ସାଢ଼େ ୫ଟାରେ ଗୋଟେ ଟ୍ରକ୍ ସହ ଜିପ୍‌ର ଧକ୍କା ହେଲା । ପିଲୁ ବେନ୍ ଆଗରେ ବସିଥିଲେ । ଛିଞ୍ଚାଡ଼ି ହୋଇ ପଡ଼ି ମୁଣ୍ଡ ପଥରରେ ପିଟି ହୋଇ ମୃତ୍ୟୁମୁଖରେ ପଡ଼ିଲେ ।

ଆମେ ସେଇଠି କିଛି ସମୟ ରହିଲୁ । ଆଜି ମନେ ପଡୁଛି ସେଦିନ ୧୯୬୩ ମସିହା ଡିସେମ୍ବର ୨୮ ତାରିଖ । ପ୍ରବଳ ଶୀତ ହେଉଥାଏ । ଏଇମିତି ଭୁବନେଶ୍ୱରରେ କଟକ ଅପେକ୍ଷା ଶୀତ ବେଶୀ । କ'ଣ କରିବୁ ଭାବୁଛୁ- ରହିବୁ କି ଫେରିଯିବୁ । ଦେଖିଲୁ ଭବାନୀ ପଟ୍ଟନାୟକ ଆସୁଛନ୍ତି । ଭବାନୀ ବାବୁଙ୍କ ସାଙ୍ଗରେ କଟକରୁ ସ୍ୱରାଜ୍ୟ ଆଶ୍ରମରୁ ଚିହ୍ନା । ତାଙ୍କୁ ପଚାରିଲି ପିଲୁ ବେନ୍ ସମ୍ପର୍କରେ । ସେ କହିଲେ ମୁଁ ବ୍ୟସ୍ତ ଅଛି । କାଲି ଆସ । ଏହି ସମୟରେ ଦେଖିଲି ଭୁବନେଶ୍ୱର ସାମ୍ବାଦିକମାନେ ଆସିଲେ । ମୁଁ ବାଳକୃଷ୍ଣ ବାବୁଙ୍କୁ ଦେଖି ସାଙ୍ଗେ ସାଙ୍ଗେ କଟକ ଫେରିବା ପାଇଁ ବସ୍‌ଷ୍ଟାଣ୍ଡକୁ ଆସିଲି ।

## -କଂଗ୍ରେସ ଅଧିବେଶନ-

ଅଜାଣତରେ ଏଭଳି ଗୋଟିଏ ଗୋଟିଏ ସମୟ ଆସେ ଯେତେବେଳେ ଜଣକ ଜୀବନରେ ତାହା ଏକ ଉଜ୍ଜ୍ୱଳ ରେଖାପାତ ହୋଇ ରହିଯାଏ । ମୋ ଜୀବନରେ ୧୯୬୪ ମସିହା ସେହିଭଳି ଏକ ବର୍ଷ । ୧୯୬୪ ମସିହା ବର୍ଷ ପ୍ରାରମ୍ଭରେ ଭୁବନେଶ୍ୱରରେ ନିଖିଳ ଭାରତ କଂଗ୍ରେସ କମିଟି ଅଧିବେଶନ ଅନୁଷ୍ଠିତ ହେଲା । ଜାନୁଆରୀ ୭ ତାରିଖରେ କଂଗ୍ରେସ ଅଧିବେଶନ ଆରମ୍ଭ ହୋଇଥିଲା । ମାତୃଭୂମି ଭୁବନେଶ୍ୱର ପ୍ରତିନିଧି ବାଳକୃଷ୍ଣ କାନୁନ୍‌ଗୋ ଏହି ଅଧିବେଶନ

ସମ୍ପର୍କରେ ରିପୋର୍ଟିଂ କରିବା ପାଇଁ ଯଦିଓ ଥିଲେ ମୋତେ ବିଚିତ୍ରାନନ୍ଦ କର (ମାତୃଭୂମିର ପରିଚାଳକ) ନିର୍ଦ୍ଦେଶ ଦେଇଥାନ୍ତି କଂଗ୍ରେସ ଅଧିବେଶନର କିଛି ସ୍ୱତନ୍ତ୍ର ସମ୍ବାଦ ଲେଖି ପଠାଇବା ପାଇଁ । ଯାହାକୁ ଟିଟ୍-ବିଟ୍ସ ବୋଲି କୁହାଯାଏ । ତେବେ ମୋ ସାମ୍ବାଦିକ ଜୀବନରେ ଯେଉଁ ଘଟଣାଟି ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ତାହା ହେଲା ଜାନୁଆରୀ ୫ ତାରିଖରେ ଟିକରପଡ଼ା ବନ୍ଧ ଶିଳାନ୍ୟାସ ଉତ୍ସବ । କଂଗ୍ରେସ ଅଧିବେଶନ ପାଇଁ ବିଜୁ ପଟ୍ଟନାୟକ ଶହେରୁ ଅଧିକ ନୂଆ ଜିପ୍ ବ୍ୟବସ୍ଥା କରିଥା'ନ୍ତି । ସବୁ ଖବର କାଗଜ ପାଇଁ ଗୋଟିଏ ଗୋଟିଏ ଜିପ୍ ବ୍ୟବସ୍ଥା ହୋଇଥା'ଏ । ଜାନୁଆରୀ ୪ ତାରିଖରେ ମୁଁ ମାତୃଭୂମି ଅଫିସ୍‌ରେ ପହଞ୍ଚିବା ପରେ ମୋତେ ବିଚିବାବୁ କହିଲେ ବରେନ୍ଦ୍ର ବାବୁ ଆପଣ ଚାରିଟା ବେଳକୁ ଅନୁଗୁଳ ଯିବାପାଇଁ ରେଡି ହୋଇଥା'ନ୍ତୁ । ମୁଁ କ'ଣ ପାଇଁ ପଚାରିବାରେ ସେ କହିଲେ କାଲି ସକାଳ ଦଶଟାରେ ନେହେରୁ ତାଳଚେର ତାପଜ ବିଦ୍ୟୁତ୍ କେନ୍ଦ୍ର ଏବଂ ସାଢ଼େ ଦଶଟାରେ ଟିକରପଡ଼ା ନଦୀବନ୍ଧ ଯୋଜନାର ଶିଳାନ୍ୟାସ କରିବେ । ବାଳକୃଷ୍ଣ ବାବୁ ଭୁବନେଶ୍ୱର ଯିବେ । ତେଣୁ ଆପଣ ତାଙ୍କ ସାଙ୍ଗରେ କଥା ହୋଇ କେଉଁ ଉତ୍ସବ ରିପୋର୍ଟ କରିବେ ତାହା ସ୍ଥିର କରିବେ । ପାଠକ ବନ୍ଧୁମାନଙ୍କୁ ମୁଁ କହିରଖେ 'ମାତୃଭୂମି'ର ସମ୍ପାଦକ ଥିଲେ ଗୌରଚନ୍ଦ୍ର ରାଉତ । ବିଚିବାବୁ ବା ବିଚିତ୍ରାନନ୍ଦ କର ଥିଲେ ଯୁଗ୍ମ ସମ୍ପାଦକ । 'ମାତୃଭୂମି'ର ମାଲିକ ସ୍ୱର୍ଗତଃ ବାଳକୃଷ୍ଣ କରଙ୍କର ସେ ଜ୍ୟେଷ୍ଠପୁତ୍ର । ସେଥିପାଇଁ ମାତୃଭୂମିର ସମ୍ପାଦକୀୟ ନୀତି ନିର୍ଦ୍ଧାରଣ ସବୁ ବିଚି ବାବୁ କରୁଥିଲେ ।

## -ମୋର ସାମ୍ବାଦିକ ଜୀବନର ଅଭୁଲା ଘଟଣା-

ଅପରାହ୍ନ ଚାରିଟା ବେଳକୁ ଗୋଟିଏ ଜିପ୍ ଆସି ମାତୃଭୂମି ଅଫିସ୍ ପାଖରେ ପହଞ୍ଚିଲା, ମୋତେ ବିଚିବାବୁ କହିଲେ ଆପଣ ଜିପ୍ ନେଇ ଚାଲିଯା'ନ୍ତୁ । ମୁଁ ତଳକୁ ଆସି ଦେଖିଲି ନୂଆ ଜିପ୍ । ଡ୍ରାଇଭର ନେପାଳୀ ଯୁବକ । ମୁଁ ତାକୁ ପଚାରିଲି ଅନୁଗୁଳ ଦେଖିଛ ? ସେ ମୋତେ ହିନ୍ଦୀରେ କହିଲା ମୁଁ ସିଧା ବମ୍ବେରୁ ଜିପ୍ ଧରି କାଲି ପହଞ୍ଚିଲି । ମୋତେ ବାଟ-ଘାଟ କିଛି ମାଲୁମ ନାହିଁ । ଆପଣ ବାଟ ଦେଖାଇ ମୋତେ ଯୁଆଡ଼େ କହିବେ ମୁଁ ଯିବି । ଜାନୁଆରୀ ମାସ ୪ ତାରିଖ । ପ୍ରବଳ ଥଣ୍ଡା ପଡ଼ିଥାଏ । ମୁଁ ପ୍ରଥମେ ରାଜା ବଗିଚା ଲେବର କଲୋନିକୁ ଗଲି । ମୋ ଘରୁ ଗୋଟିଏ ବେଡ଼ିଂରେ ଚାଦର କମ୍ବଳ ତକିଆ ଗୁଡ଼ାଇଲି । ସଫା ପ୍ୟାଣ୍ଟ-ସାର୍ଟ ହଳେ ଧରି ଅନୁଗୁଳ ଅଭିମୁଖେ ବାହାରି ପଡ଼ିଲି । ଗୋଟେ ପୁରା ହାତ ସୁଇଟର ଓ ମଙ୍କିକ୍ୟାପ୍ ପିନ୍ଧିଥିଲେ ମଧ୍ୟ ଆଉ ଗୋଟିଏ ହାଫ୍ ସୁଇଟର ନେଇଥିଲି । ସେତେବେଳେ ଆଜିକାଲି ପରି ରାସ୍ତା ଏତେ ଚଉଡ଼ା ନଥିଲା । ତେଣୁ ବାଟ ପଚାରି ଆମେ ଯାଇ ଅନୁଗୁଳ ସର୍କିଟ ହାଉସ ପାଖରେ ପହଞ୍ଚିଲା ବେଳକୁ ରାତି ସାଢ଼େ ଆଠଟା ହୋଇ ଯାଇଥାଏ । ସେତେବେଳକୁ ଭୁବନେଶ୍ୱରରୁ ତିନି/ ଚାରିଜଣ ସାମ୍ବାଦିକ ଆସି ପହଞ୍ଚିଥା'ନ୍ତି । ରାତିରେ ସେଠି ପୁରା ବିଦେଶୀ ସ୍କଚ୍ ହୁଇସ୍କି ପାର୍ଟିଥାଏ । ତା' ସାଙ୍ଗରେ କସା ମାଂସ ଏବଂ ଅନ୍ୟାନ୍ୟ ଅନେକ ଖାଦ୍ୟ ଦ୍ରବ୍ୟ । ମୁଁ ସେତେବେଳେ ମଦ ପିଇବା ଆରମ୍ଭ କରି ନଥାଏ । ଆଗରୁ କହିଛି କଟକ-ଭୁବନେଶ୍ୱରରେ ସେତେବେଳେ ହାତଗଣତି ସାମ୍ବାଦିକ ଥିଲେ । ରାତି ନ'ଟା ସୁଦ୍ଧା ପାଖାପାଖି ଯାହା ଆଜି ମନେ ପଡୁଛି ବାର-ତେରଜଣ ସାମ୍ବାଦିକ ସେଠି ପହଞ୍ଚିଥିଲେ । ସେମାନଙ୍କ ମଧ୍ୟରେ ଦୁଇ/ତିନିଜଣ କଲିକତା ସାମ୍ବାଦିକ ଥିଲେ । ଆମ ସାଙ୍ଗରେ କଟକ ଡି.ପି.ଆର୍. ଓ ବିପିନ ବିହାରୀ ପଟ୍ଟନାୟକ ଥିଲେ ଏବଂ ଲୋକ ସମ୍ପର୍କ ବିଭାଗ ନିର୍ଦ୍ଦେଶକ ଶଶିଭୂଷଣ ମିଶ୍ର ଥିଲେ । ବାଳକୃଷ୍ଣ କାନୁନ୍‌ଗୋ ଭୁବନେଶ୍ୱରରୁ ଆସିଥିଲେ । ମୁଁ ତାଙ୍କୁ ଦେଖି ନମସ୍କାର କରି ଟିକରପଡ଼ା ଯିବା କଥା ପଚାରିଲି । ସେ କହିଲେ ତୁମେ ଯିବ ଯଦି ଯାଅ । ମୁଁ ଏଇଠି ରହିବି । ତେବେ ସମ୍ଭବତଃ ନେହେରୁ ଟିକରପଡ଼ା ଯିବେ ନାହିଁ । ସେଠି ଟିକରପଡ଼ା ବନ୍ଧ କଲେ ବଉଦ- ସୋନପୁର ସହର ବୁଡ଼ିଯିବ ବୋଲି ପ୍ରତିବାଦ କରିବା ପାଇଁ ହିଂମାଂଶୁ ପାଢ଼ୀଙ୍କ ନେତୃତ୍ୱରେ ବହୁ ଲୋକ ଆସିବେ ବୋଲି ଖବର ପହଞ୍ଚିଛି । ତେଣୁ ପ୍ରଧାନମନ୍ତ୍ରୀ ସେଠାକୁ ଯାଇ ନପାରନ୍ତି । ବାଳକୃଷ୍ଣ ବାବୁଙ୍କ କଥାକୁ ସେଠି ଆଉ ତିନି/ ଚାରିଜଣ ସମର୍ଥନ କଲେ । ମୁଁ ଏ ସମ୍ପର୍କରେ ବିପିନ ବାବୁଙ୍କୁ ପଚାରିଲି ।

ବିପିନ ବାବୁ ମୋତେ କିଛି ସମୟ ପରେ ବାହାରକୁ ଡାକି ନେଇ କହିଲେ ଆପଣ ଟିକରପଡ଼ା ଯିବା କଥା ଯଦି ଯା'ନ୍ତୁ । କାରଣ ଏମାନେ ଏଠି ଏ ପାର୍ଟିଛାଡ଼ି କେହି ଯିବେ ନାହିଁ । ନେହେନ୍ତୁ ଯଦି ନଯିବେ ତେବେ ତା' ବି ତ ସମ୍ବାଦ ହେବ । କିନ୍ତୁ ଏଠୁ ଟିକରପଡ଼ା ରାସ୍ତା କଚା ରାସ୍ତା । ସକାଳ ଛ'ଟା ପୂର୍ବରୁ ଆପଣଙ୍କୁ ଯିବାକୁ ହେବ । ଅଢ଼େଇ ଘଣ୍ଟା ପାଖା ପାଖି ଲାଗିବ ।

ମୁଁ ଜାଣେନି ରାତିରେ ଯେଉଁଠି ସମସ୍ତେ ଥିଲେ ସର୍କିଟ ହାଉସ ନା ଆଉ କ'ଣ ? ତେବେ ରାତି ଦଶଟା ସୁଦ୍ଧା ଖାଇଦେଇ ଗୋଟିଏ ରୁମ୍‌ରେ ମୋ ବେଡିଂ ଖୋଲି ମୁଁ ଶୋଇ ପଡ଼ିଲି । ସେତେବେଳେ ଏଇମିତି ମୁଁ ସକାଳ ଛ'ଟା ପୂର୍ବରୁ ଉଠୁଥିଲି । ସେଠି ନୂଆ ଯାଗା । ନିଦ ହୋଇଗଲା । ଭାଙ୍ଗିଲା ବେଳକୁ ଘଣ୍ଟାରେ ଦେଖିଲି ରାତି ପାଞ୍ଚଟା । ଫର୍ଚ୍ଚା ହୋଇ ଆସୁଛି । ଉଠିପଡ଼ି ବେଡିଂ ଗୁଡ଼େଇ ଦେଲି । ବେଡିଂ ଧରି ଜିପ୍ ପାଖକୁ ଗଲି । ନେପାଳୀ ଡ୍ରାଇଭର ଶୋଇଥିଲା । ତାକୁ ଉଠାଇଲି । ବେଡିଂ ଥୋଇ ଦେଇ ବ୍ୟାଗ୍‌ରୁ ତଉଲିଆ ଧରି ବାଥ୍‌ରୁମ୍‌ରେ ପଶିଲି । ଅନ୍ୟ କୋଠରୀକୁ ଚାହିଁଲି । ସମସ୍ତେ ନିଦ୍ରାରେ ଅଚେତନ । ସେଠି ଥିବା ଜଣେ ଲୋକକୁ ପଚାରିଲି ଏମାନେ କେତେବେଳେ ଖିଆପିଆ ସାରିଲେ ? ସେ କହିଲା ରାତି ତିନିଟା ପର୍ଯ୍ୟନ୍ତ ଚାଲିଥିଲା । ରାତିରେ ଭୁବନେଶ୍ୱରରୁ ଆଉ ଚାରି/ପାଞ୍ଚଜଣ ଆସିଲେ । ସେମାନେ ଏମାନଙ୍କ ସହ ଯୋଗଦେଲେ । ମୁଁ ସେ ଆଡୁ ମୁହଁ ଫେରାଇ ନିତ୍ୟକର୍ମ ଶେଷ କରି ସେଇ ଥଣ୍ଡା ପାଣିରେ ଦିହ- ମୁହଁ ଧୁଆଧୋଇ କରି ଜିପ୍ ପାଖକୁ ଆସି ପହଞ୍ଚିଲା ବେଳକୁ ଡ୍ରାଇଭର ତା' କାମ ସାରି ଷ୍ଟିଅରିଂ ଧରିଛି । ଛ'ଟା ବାଜିବାକୁ ତଥାପି ଆଉ ଦଶମିନିଟ୍ ଥାଏ ।

ଅନୁଗୁଳରେ ପ୍ରବଳ ଥଣ୍ଡା । ରାସ୍ତା ଘାଟ ଜନଶୂନ୍ୟ । କିଛିବାଟ ପରେ ଦେଖିଲୁ କିଛି ଲୋକ କାଠ ଜାଳି ଧୂନି କରି ଦିହ ଉଷୁମ କରୁଛନ୍ତି । ଗାଡ଼ି ରଖି ସେମାନଙ୍କୁ ଟିକରପଡ଼ା ରାସ୍ତା ପଚାରିଲୁ । ସେମାନଙ୍କ ମଧ୍ୟରୁ ଜଣେ ଆମକୁ ବାଟ ବତାଇ ଦେଲା । ତେବେ ବାଟରେ ଦେଖିଲୁ ପ୍ରଧାନମନ୍ତ୍ରୀ ଟିକରପଡ଼ା ଆସିବେ ବୋଲି ରାସ୍ତା କଡ଼ରେ ମଝିରେ ମଝିରେ ନାଲି- ନେଳି କାଗଜ ପତାକା ଲଗା ହୋଇଛି । ତେଣୁ ବାଟ ଚିହ୍ନିବାରେ ଅସୁବିଧା ହେଲାନାହିଁ । ଡ୍ରାଇଭର ଆସ୍ତେ ଆସ୍ତେ ଗାଡ଼ି ଚଲାଉଥାଏ । ସକାଳ ସାତଟା ବେଳକୁ ଗୋଟିଏ ଜାଗାରେ ଦେଖିଲୁ ଚା' ଦୋକାନଟିଏ ଖୋଲିଛି । ଭାଟିରେ ଚା' ବସିଛି । ସେଇଠି ଗାଡ଼ି ଅଟକେଇ ଚା' ପିଇଲୁ । ଦୋକାନୀକୁ ପଚାରିଲୁ ଟିକରପଡ଼ା ଆଉ କେତେ ସମୟ ଲାଗିବ ? ସେ କହିଲା ଆଉ ଘଣ୍ଟେ/ଦେଢ଼ ଘଣ୍ଟା ପାଖାପାଖି ଲାଗିବ । ଚା' ଦି'କପ୍ ଲେଖାଏଁ ପିଇଲୁ । ତା'ପରେ ଗାଡ଼ି ଚାଲିଲା । ଟିକରପଡ଼ାରେ ପହଞ୍ଚିଲା ବେଳକୁ ଆଠଟା ପଇଁଚାଳିଶ ମିନିଟ୍ । ତଳେ ଗୋଟିଏ ସ୍ଥାନରେ ଦେଖିଲୁ ଛୋଟ କ୍ୟାବିନ୍‌ରେ ବରା ଛଣା ହେଉଛି । ଗାଡ଼ି ଅଟକେଇ ଗରମ ବରା ଆଉ ଚା' ଖାଇଲୁ । ବେଶ୍ ଭଲ ଲାଗୁଥାଏ । କାର୍ଯ୍ୟକ୍ରମ ଅନୁସାରେ ପ୍ରଧାନମନ୍ତ୍ରୀ ଏଠାକୁ ସାଢ଼େ ଦଶଟାରେ ଆସିବା କଥା । ପାହାଡ଼ ତଳ ପର୍ଯ୍ୟନ୍ତ ଗାଡ଼ି ନେଲୁ । ସାରା ଅଞ୍ଚଳ ପୋଲିସ୍ ଭର୍ତ୍ତିହୋଇ ଯାଇଥା'ନ୍ତି । ତଳୁ ପାହାଡ଼ କାଟି ଉପରକୁ ଗାଡ଼ି ଯିବାପାଇଁ ବାଟ ହୋଇଥାଏ । ସାଧାରଣ ଗାଡ଼ି ଉପରକୁ ଯିବାକୁ ମନା । କେବଳ ଭି.ଆଇ.ପି. ଗାଡ଼ି ଛାଡ଼ । ଅଗତ୍ୟା ମୁଁ ଗାଡ଼ି ଛାଡ଼ି ଚାଲି ଚାଲି ଉପରକୁ ଗଲି । ଦୁଇ/ତିନି ଯାଗାରେ ପୋଲିସ୍ ଅଫିସର ମତେ ଅଟକାଇ ପାଶ୍ ମାଗିଲେ । ମୁଁ ମୋ ପ୍ରେସ୍ ପାଶ୍ ଓ ପ୍ରଧାନମନ୍ତ୍ରୀ ସଭାର ସିକ୍ୟୁରିଟି ପାଶ୍ ଦେଖାଇ ଉପରକୁ ଗଲି ।

ସାତକୋଶିଆ ପାହାଡ଼ ତଳୁ ଚଉଡ଼ା କରି କଟା ହୋଇ ଉପରକୁ ଯିବା ପାଇଁ ରାସ୍ତା ହୋଇଛି । ଗାଡ଼ି ମଟର ଯିବାପାଇଁ ବ୍ୟବସ୍ଥା ହୋଇଛି । ମାତ୍ର ଉପରେ ଯାଗା କମ୍ ଥିବାରୁ କେବଳ ଭି.ଆଇ.ପି. ଗାଡ଼ି ଯାଇ ସେମାନଙ୍କୁ ଛାଡ଼ି ତଳକୁ ଚାଲି ଆସୁଥିଲା । ମୁଁ ଉପରକୁ ଚାଲି ଚାଲି ଗଲି । ପାହାଡ଼ ମଝିରେ ଏକ ପ୍ରଶସ୍ତ ସ୍ଥାନ ସମତଳ କରାଯାଇ ମଞ୍ଚ ତିଆରି ହୋଇଛି । ପ୍ରଧାନମନ୍ତ୍ରୀଙ୍କ ସଭା ଓ ଭାଷଣ ପାଇଁ । ପାହାଡ଼ ତଳେ ମହାନଦୀର ସାତକୋଶିଆ ଗଣ୍ଡ । ସକାଳ

ନ'ଟା । ଜାନୁଆରୀ ୫ ତାରିଖ- ଶୀତଦିନର କଅଁଳ ଖରା ବେଶ୍ ଆରାମ ଲାଗୁଥାଏ । ମଞ୍ଚ ପାଖରୁ ପାହାଡ଼ ଉପରକୁ ଗାଡ଼ି ଓ ଲୋକ ଯିବା ଆସିବା ପାଇଁ ରାସ୍ତା ଓ ପାହାଚ ହୋଇଛି । ମୁଁ ଉପରକୁ ଉଠିଲି । ଦେଖିଲି ପାହାଡ଼ ଉପରେ ବେଶ୍ ପ୍ରଶସ୍ତ ଅଞ୍ଚଳ ସମତଳ କରାଯାଇଛି । ଶୁଣିଲି ସେଠି ହେଲିକେପ୍ଟର ଓହ୍ଲାଇବ । ମୁଁ ପୂର୍ବରୁ ଏ ପ୍ରକାର ଦୃଶ୍ୟ ଦେଖି ନଥିଲି । ସେଇଠୁ ଜିପ୍‌ରେ ପ୍ରଧାନ ମନ୍ତ୍ରୀ ସଭାସ୍ଥଳକୁ ଆସିବେ । ମୁଁ ଓହ୍ଲାଇ ଆସିଲି । ସଭାମଞ୍ଚରୁ ସାତକୋଣିଆ ଗଣ୍ଡ ଆଡ଼କୁ ପାହାଡ଼ର କିଛି ଅଂଶ ପାହାଚ ପାହାଚ କରି କଟାଯାଇଛି । ସେଠି ଲୋକ ବସିବାର ବ୍ୟବସ୍ଥା ହୋଇଛି । ଅନେକ ଲୋକ ସ୍ତ୍ରୀ- ପୁରୁଷ ସେଠି ସେତେବେଳକୁ ବସିଗଲେଣି । ରଙ୍ଗ ରଙ୍ଗିଲା ଶାଢ଼ି ଧୋତି ସାର୍ଟ ପିନ୍ଧି ଲୋକ ବସି ଯାଇଛନ୍ତି । ଏ ବ୍ୟବସ୍ଥା ନ ଦେଖିଲେ ବିଶ୍ୱାସ କରିହେବ ନାହିଁ । ମୁଁ ଏ ସମସ୍ତ ବ୍ୟବସ୍ଥାକୁ ମୋ ଡାଇରିରେ ଟିପି ରଖିଲି । ବିଶେଷକରି ପାହାଡ଼ ଉପର ହେଲିପ୍ୟାଡ଼ ଦେଖି ମୁଁ ଚମକୃତ ହୋଇଥିଲି ।

ଦିନ ସାଢ଼େ ନ'ଟା ବା ନ'ଟା ପଇଁଚାଳିଶ ମିନିଟ୍ ବେଳକୁ ଆକାଶରେ ଏକ ହେଲିକେପ୍ଟର ଦେଖାଦେଲା । ହେଇ ପ୍ରଧାନମନ୍ତ୍ରୀ ଆସିଗଲେ- ଆସିଗଲେ ବୋଲି ହୁରି ପଡ଼ିଲା । ହେଲିକେପ୍ଟରଟି ଓହ୍ଲାଇଲା ଏବଂ ପାଞ୍ଚମିନିଟ୍ ପରେ ପୁଣି ଉଡ଼ିଗଲା । ମୁଁ ଜଣେ ପୋଲିସ୍ ଅଫିସରଙ୍କୁ ପଚାରିଲି ପ୍ରଧାନମନ୍ତ୍ରୀ ଆସିବେ ତ ? ସେ କହିଲେ ସେ କଥା ମୁଁ କିପରି କହିବି ? ତେବେ ପାଇଲଟ୍ ହେଲିକେପ୍ଟର ଆସି ଯାଗା ଦେଖି ଗଲାଣି । ସମ୍ଭବତଃ ପ୍ରଧାନମନ୍ତ୍ରୀ ଆସିବେ । ସମସ୍ତେ ଆକାଶକୁ ଚାହିଁ ରହିଲେ ।

ସକାଳ ଦଶଟା ପଇଁତିରିଶ ମିନିଟ୍ ବେଳକୁ ଆକାଶରେ ପୁଣି ହେଲିକେପ୍ଟର ଦେଖାଗଲା । ସମସ୍ତେ ଚିତ୍କାର କଲେ ପଣ୍ଡିତ ନେହେରୁ କି ଜୟ, ବିଜୁ ପଟ୍ଟନାୟକ କି ଜୟ- ଚିତ୍କାର ଜୋର୍ ହେଲା । ହେଲିକେପ୍ଟର ତଳକୁ ଓହ୍ଲାଇଲା । କିଛି ସମୟ ପରେ ଗୋଟିଏ ଜିପ୍ ତଳକୁ ଆସିଲା । ଜିପ୍‌ରୁ ଓହ୍ଲାଇ ଆସିଲେ ବିଜୁ ପଟ୍ଟନାୟକ, ଓଡ଼ିଶା ରାଜ୍ୟପାଳ ଡଃ ଅଯୋଧ୍ୟା ନାଥ ଖୋସଲା । ସେମାନେ ନେହେରୁଙ୍କୁ ଧରି ଆସ୍ତେ ଜିପ୍‌ରୁ ଓହ୍ଲାଇ ଦେଲେ । ମୁଁ ନେହେରୁଙ୍କୁ ଯେଭଳି ଦେଖିଲି ସେଥିରେ ନିଜ ଆଖିକୁ ବିଶ୍ୱାସ କରି ପାରିଲି ନାହିଁ । ନେହେରୁଙ୍କ ପରିଧାନରେ ସେଇ ଧୂସର ଚୁଡ଼ିଦାର ଆଉ ଧଳା ପାଇଜାମା । ଚୁଡ଼ିଦାର ଛାତି ବୋତାମରେ ନାଲି ଗୋଲାପ କଢ଼ି । କିନ୍ତୁ ନେହେରୁଙ୍କ ଶରୀର ଅତ୍ୟନ୍ତ ଶୀର୍ଣ୍ଣ । ପୂର୍ବର ନେହେରୁ ଏ ନେହେରୁ ଏ ନୁହନ୍ତି । ଯେଉଁ ତେଜୋଦୀପ୍ତ ନେହେରୁଙ୍କୁ ୧୯୬୨ରେ ପାରାଦ୍ୱୀପ ବନ୍ଦର ଉନ୍ମୋଚନ ବେଳେ ମୁଁ ଦେଖିଥିଲି ଏ ନେହେରୁ ସେ ନୁହନ୍ତି । ନେହେରୁ ନଇଁ ପଡ଼ିଥିଲେ । ବେକ ଉଠାଇ ଟିକେ ଚାହିଁଲେ ।

ମୋର କେମିତି ମନେ ହେଲା ବେକ  ଉଠାଇବାକୁ ତାଙ୍କୁ କଷ୍ଟ ହେଉଥିଲା । ତାଙ୍କୁ ଧରି ଧରି ମଞ୍ଚ ଉପରକୁ ଆଣି ବସାଇ ଦିଆଗଲା । ମଞ୍ଚ ପାଖରେ ଟିକରପଡ଼ା ନଦୀବନ୍ଧ ପ୍ରକଳ୍ପର ଶୁଭଦାନ ପାଇଁ ଶିଳାଲିପି ମାର୍ବଲ ପଥରରେ ଲେଖା ହୋଇ ଏକ ପଥର ଖୁମ୍ବରେ ସିମେଣ୍ଟ ଦେଇ ଖଞ୍ଜା ଯାଇଥିଲା । ତା' ଉପରେ କନା ଭିଡ଼ା ଯାଇଥିଲା । ତଳେ ଜଣେ ବ୍ରାହ୍ମଣ ବସି ପୂଜା କରୁଥିଲା । ନେହେରୁ ସେଠାକୁ ନଯାଇ ସେଇ ମଞ୍ଚରୁ ସେ କନାକୁ ଭିଡ଼ି ଦେଇ ତା'ର ଶୁଭାରମ୍ଭ କରିଥିଲେ । ପ୍ରଥମେ ଡଃ ଖୋସଲା ଟିକରପଡ଼ା ବନ୍ଧ ହେଲେ ମହାନଦୀରେ ବନ୍ୟା ନିୟନ୍ତ୍ରଣ ଓ ଜଳସେଚନ କିପରି ହେବ ତାହାର କିଛି ପରିସଂଖ୍ୟାନ ଦେଇ ସଂକ୍ଷେପରେ କହିଥିଲେ । ତା'ପରେ ନେହେରୁ ସେଇଠି ବସି ତିନି/ଚାରିମିନିଟ୍ କହିଥିଲେ । ସେ ତାଙ୍କ ଭାଷଣରେ ଟିକରପଡ଼ା ଯୋଜନା ପାଇଁ କେନ୍ଦ୍ର ସରକାର ସାହାଯ୍ୟ ଦେବେ ଏବଂ ଏହା ଓଡ଼ିଶାର ପ୍ରଗତୀରେ ସାହାଯ୍ୟ କରିବ ବୋଲି କହିଥିଲେ । ସମସ୍ତେ ଏ ଯୋଜନାକୁ ସମର୍ଥନ କରିବା ଦରକାର ବୋଲି ମତ ଦେଇଥିଲେ । ଶେଷର ବିଜୁବାବୁ ଧନ୍ୟବାଦ ଦେଇଥିଲେ । ପନ୍ଦର ମିନିଟ୍‌ରେ ସଭା ଶେଷ

ହୋଇଗଲା । ୧୯୬୪ ଜାନୁଆରୀ ୫ ତାରିଖରେ ବିଜୁବାବୁ ମୁଖ୍ୟମନ୍ତ୍ରୀ ନଥିଲେ । ସେ ଓଡ଼ିଶା ଯୋଜନା ବୋର୍ଡ଼ ଚେୟାରମ୍ୟାନ ଥିଲେ । ସଭା ଏତିକିରେ ଶେଷ ହୋଇ ଗଲା । ତା'ପରେ ନେହେରୁଙ୍କୁ ସେଇ ଜିପ୍‌ରେ ବସାଇ ହେଲିକେପ୍ଟର ପାଖକୁ ନିଆଗଲା । ସେଠୁ ସେମାନେ ଭୁବନେଶ୍ୱର ଫେରିଗଲେ । ନେହେରୁଙ୍କ ସେଇ ସାଧାରଣ ସଭାରେ ମୁଁ ଏକମାତ୍ର ସାମ୍ବାଦିକ ଉପସ୍ଥିତ ଥିଲି । କାରଣ ସେଠି ମଞ୍ଚ ଏବଂ ତା' ସମ୍ମୁଖ ଭାଗରେ ଯେଉଁ ଚଉକି ପଡ଼ିଥିଲା ସାମ୍ବାଦିକମାନଙ୍କ ପାଇଁ ଉଦ୍ଦିଷ୍ଟ ସ୍ଥାନରେ କେବଳ ମୁଁ ବସିଥିଲି । ଅନ୍ୟ ପାଞ୍ଚୋଟି/ ଛ'ଟି ଚଉକି ଖାଲିଥିଲା । ଯେତେବେଳେ ନେହେରୁ କହିଲେ ତାଙ୍କ କଥାଶୁଣା ନଯିବାରୁ ମୁଁ ମଞ୍ଚର ଗୋଟିଏ କଡ଼କୁ ଉଠିଯାଇ ତାଙ୍କ ଭାଷଣ ଟିପିଥିଲି । ସେତେବେଳେ ଆଜିକାଲିକା ଭଳି ଏତେ ଜୋର୍‌ଦାର ସିକ୍ୟୁରିଟି ବ୍ୟବସ୍ଥା ନଥିଲା ।

ସଭାପରେ ମୁଁ ଫେରିଆସିଲି ଜିପ୍ ନିକଟକୁ । ନେପାଳୀ ଡ୍ରାଇଭର ଷ୍ଟିଅରିଂ ଧରି ବସିଥିଲା । ମୋତେ ଦେଖି ଗାଡ଼ି ଷ୍ଟାର୍ଟ କଲା । ଆମେ ଆସିଲୁ ଅନୁଗୁଳକୁ । ମୁଁ ପୂର୍ବରୁ କହିଛି ସେତେବେଳେ ଓଡ଼ିଶାର ସମସ୍ତ ଖବର କାଗଜ ସନ୍ଧ୍ୟାରେ ପ୍ରକାଶ ପାଉଥିଲା । ତେଣୁ ଦି'ଟା ସୁଦ୍ଧା କପି କ୍ଲୋଜ୍ ହେଉଥିଲା । ଅର୍ଥାତ୍ ଦିନ ଦି'ଟା ପରେ ଆଉ ସମ୍ବାଦ ଦିଆ ହେଉନଥିଲା । କାରଣ ହାତରେ କମ୍ପୋଜ ହୋଇ ଛାପା ମେସିନ୍ ଉପରକୁ ଫର୍ମା ଗଲା ବେଳକୁ ଚାରିଟାରୁ ବିଳମ୍ବ ହୋଇଗଲେ କାଗଜ ବାହାରିବାକୁ ଡେରି ହେଉଥିଲା । ଅନୁଗୁଳକୁ ମୁଁ ଯାଇ ସେଠାରୁ ଟେଲିଗ୍ରାଫ୍ କରି ଖବର ପଠାଇବା ପାଇଁ ଗଲି । କାରଣ କଟକରେ ପହଞ୍ଚୁ ପହଞ୍ଚୁ ସାଢ଼େ ଚାରିଟା ହୋଇ ଯାଇଥା'ନ୍ତା । ଅନୁଗୁଳ ଠାରେ ପହଞ୍ଚୁ ପହଞ୍ଚୁ ଗୋଟେ ବାଜିବାକୁ ଆଉ ପନ୍ଦର ମିନିଟ୍ । ସେତେବେଳକୁ ସେଠାରେ ଅନ୍ୟ କେହି ସାମ୍ବାଦିକ ନାହାନ୍ତି । ମୁଁ ଟେଲିଗ୍ରାଫ୍ ଅଫିସ୍‌ରେ ପହଞ୍ଚି ବୁଝିଲି କେବଳ ଜଣେ ଦିଲ୍ଲୀ ସାମ୍ବାଦିକ ଅନୁଗୁଳ ଉତ୍ସବର ଖବର ପଠାଇଛନ୍ତି ।



ମୁଁ ନେହେରୁଙ୍କ ଭାଷଣ ସହ ତାଙ୍କର ଜୀର୍ଣ୍ଣ ଶୀର୍ଣ୍ଣ ଶାରୀରିକ ଅବସ୍ଥା ଏବଂ କ୍ଷୀଣ କଣ୍ଠ ସମ୍ପର୍କରେ ସାମାନ୍ୟ ବର୍ଣ୍ଣନା କରି ଖବର ଦେଲି । ତା'ପରେ ଡଃ ଖୋସଲାଙ୍କ ପ୍ରାରମ୍ଭିକ ଭାଷଣ, ବିଜୁବାବୁଙ୍କ ଭାଷଣ, ପାହାଡ଼ ଉପରେ ହେଲିପ୍ୟାଡ଼ ଆଦି ସମ୍ପର୍କରେ ଲେଖି ଟେଲିଗ୍ରାଫ୍ କରୁଥିବା ବାବୁଙ୍କୁ ଦେଲି । ଟେଲିଗ୍ରାଫ୍ ଶେଷ ହେବାକୁ ୪୦ ମିନିଟ୍ ଲାଗିଲା । ପଇସା ତୁଟାଇ ଦେଇ ମୁଁ କଟକ ବାହାରିଲି । ଦ୍ୱିପ୍ରହରରେ ରାସ୍ତା ଗହଳି ନଥିଲା । ତେଣୁ ଆମେ ଚାରିଟା ବେଳକୁ କଟକରେ ପହଞ୍ଚିଲୁ ।

ପ୍ରେସ୍‌ରେ ପହଞ୍ଚି ଦେଖିଲି ମୋ ଷ୍ଟୋରି ବସିବାକୁ ଯାଉଛି । ମାତୃଭୂମିର ସେତେବେଳେ ରୋଟାରି ଛାପା ମେସିନ୍ ଆସିଥିଲା । ତେଣୁ ଏକା ସାଙ୍ଗରେ ଆଠ ପୃଷ୍ଠା କାଗଜ ଘଣ୍ଟାରେ କୋଡ଼ିଏ ହଜାର ଛାପି ହୋଇ ଯାଇପାରିବ । ମାତ୍ର ଆମର ଦୈନିକ ଚାରିପୃଷ୍ଠା କାଗଜ ଛପା ହେଉଥାଏ । ସବୁ କାଗଜ ସେତେବେଳେ ଚାରିପୃଷ୍ଠା ଛାପୁଥା'ନ୍ତି । ତେଣୁ ଆମର ଶେଷ କପି ବା ସମ୍ବାଦ ଚାରିଟା ପରେ ସାଢ଼େ ଚାରିଟା ବେଳକୁ ସ୍ଥଳ ବିଶେଷରେ ପାଞ୍ଚଟା ବେଳକୁ ମଧ ଯାଉଥିଲା । ମୁଁ ଆଉଥରେ ମୋ କପି ଦେଖିନେଲି । ତା'ପରେ ଲୋକ ସଂଖ୍ୟା ଏବଂ ହିଂମାଂଶୁ ପାଢ଼ୀ ଓ ସେମାନଙ୍କ ଲୋକଙ୍କୁ କିପରି ପୋଲିସ୍ ବହୁ ଦୂରରେ ରଖି ଦେଇଥିଲା ସେ ବିଷୟରେ ଗୋଟିଏ ପରିଚ୍ଛେଦ ଯୋଡ଼ି ଦେଲି ।

ବିଚିବାବୁ ମୋତେ ପଚାରିଲେ ଟିକରପଡ଼ା ଆଉ କିଏ ଯାଇଥିଲେ ? ମୁଁ କହିଲି ସାମ୍ବାଦିକ ହିସାବରେ କେବଳ ମୁଁ ଏକା ଥିଲି । କାରଣ ସେଠି କଟକ/ଭୁବନେଶ୍ୱର ବା ଓଡ଼ିଶା ବାହାରର କୌଣସି ସାମ୍ବାଦିକଙ୍କୁ ମୁଁ ଦେଖିନାହିଁ ।

ବିଚିବାବୁ କ'ଣ ଭାବିଲେ, ତା'ପରେ ପ୍ରଥମ ପୃଷ୍ଠା ମେକ୍‌ଅପ୍‌ରେ ଟିକେ ପରିବର୍ତ୍ତନ କରି ମୋ ଷ୍ଟୋରିକୁ ପ୍ରଥମ ଷ୍ଟୋରି କଲେ । ତା' ଭିତରେ ଡକ୍ଟର ଖୋସଲା କହିଥିବା ଭାଷଣରୁ କିଛି ଅଧିକ ପରିସଂଖ୍ୟାନ ଦେଇ ଷ୍ଟୋରି ଟିକେ ବଡ଼ କରି ଛାଡ଼ିଦେଲେ । ସେଦିନ ସନ୍ଧ୍ୟାରେ କାଗଜରେ ଟିକରପଡ଼ା ଖବର ମୋ ନାଁରେ ଏବଂ ତାଳଚେର ବିଦ୍ୟୁତ କେନ୍ଦ୍ର ଖବର ବାଳକୃଷ୍ଣ ବାବୁଙ୍କ ନାମରେ କାଗଜରେ ବାହାରିଲା ।

ଜାନୁଆରୀ ୬(ଛ') ତାରିଖ, ୧୯୬୪ ମସିହା । ସକାଳ ଦଶଟା । ମୋର ରାଜାବଗିଚା ଲେବର କଲୋନି ଘର ପାଖରେ ଜିପ୍ ପହଞ୍ଚିଲା । ସେଦିନ ନେହେରୁ ପାରାଦ୍ୱୀପ ଯିବାପାଇଁ କାର୍ଯ୍ୟକ୍ରମ ସ୍ଥିର ହୋଇଥିଲା । ଆମକୁ ସବୁ କୁହାଯାଇଥିଲା ଗାଡ଼ି ଧରି ମହାନଦୀ ପୋଲ ପାଖରେ ସକାଳ ସାଢ଼େ ଦଶଟା ବେଳେ ପହଞ୍ଚିବା ପାଇଁ । ମହାନଦୀ ଉପରେ ପୋଲ ୧୯୬୧ ମସିହାରେ ନିର୍ମିତ ହୋଇଥିଲା । ଆମେ ଖବର କାଗଜ ବାଲାଏ ଦିନ ସାଢ଼େ ଦଶଟାରେ ପହଞ୍ଚିଲୁ । କଟକ ଡି.ପି.ଆର୍.ଓ. ବିପିନ ବିହାରୀ ପଟ୍ଟନାୟକ ଏବଂ ତାଙ୍କ ସହକାରୀ ସେଠି ଆମକୁ ଅପେକ୍ଷା କରିଥିଲେ । ମୁଁ ଜିପ୍‌କୁ ରଖି ତାଙ୍କ ପାଖକୁ ଗଲି । ମୋ ପୂର୍ବରୁ ଦୁଇ ତିନିଜଣ ସାମ୍ବାଦିକ ସେଠି ମଧ୍ୟ ଥିଲେ । ମୋତେ ଦେଖି ବିପିନ ବାବୁ କହିଲେ ବରେନ୍ଦ୍ର ବାବୁ ଆଜି ନେହେରୁଙ୍କ କାର୍ଯ୍ୟକ୍ରମ ବାତିଲ ହୋଇ ଯାଇଛି । ତେଣୁ ପାରାଦ୍ୱୀପ ଯିବା ଆବଶ୍ୟକ ନାହିଁ । ମୁଁ ପଚାରିଲି କାହିକି ବାତିଲ ହେଲା ? ସେ କହିଲେ ସେ କଥା ମୁଁ କହି ପାରିବି ନାହିଁ । କେବଳ ଆମ ପାଖକୁ ନିର୍ଦ୍ଦେଶ ଆସିଛି ପାରାଦ୍ୱୀପ ଯିବା ଦରକାର ନାହିଁ । ମୁଁ ଘରୁ ବାହାରି ଆସିଥିଲି । ତେଣୁ ପ୍ରେସ୍‌କୁ ଯାଇ ବିଚିବାବୁଙ୍କୁ ସବୁ କହିଲି । ସେ ସବୁ ଶୁଣି ମତେ କହିଲେ ଆପଣଙ୍କ ପାଖରେ ଜିପ୍ ଅଛି ? ମୁଁ ହଁ କଲି । ସେ କହିଲେ ତେବେ ଆପଣ ଭୁବନେଶ୍ୱର ଯାଇ କଂଗ୍ରେସ ଅଧିବେଶନ ସମ୍ପର୍କରେ ବୁଝି ଗୋଟିଏ ଷ୍ଟୋରି କରନ୍ତୁ । କିଏ କିଏ ନେତା ଆସିଲେ, କିଏ କେଉଁଠି ରହୁଛନ୍ତି, କ'ଣ କରୁଛନ୍ତି ସବୁ ବୁଝି ଲେଖନ୍ତୁ । ହଁ ମାତୃଭୂମିକୁ କଂଗ୍ରେସ ଅଧିବେଶନ ପାଖରେ ଗୋଟିଏ ଘର ମିଳିଛି । ସେଠି ଟେଲିଫୋନ୍ ବ୍ୟବସ୍ଥା କରାଯାଇଛି ବୋଲି ଶଶି ବାବୁ( ଶଶିଭୂଷଣ ମିଶ୍ର- ସୂଚନା ଲୋକ ସମ୍ପର୍କ ବିଭାଗ ନିର୍ଦ୍ଦେଶକ) ମୋତେ କହିଛନ୍ତି । ସେ ଘର ଚାବି ବାଳକୃଷ୍ଣ କାନୁନ୍‌ଗୋଙ୍କ ପାଖରେ ଅଛି । ଆପଣ ତାଙ୍କ ପାଖରୁ ଚାବି ନେଇ ସେ ଘର ବ୍ୟବହାର କରନ୍ତୁ । ଭଲ ହେବ ଆପଣ ବେଡିଂ ନେଇ କଂଗ୍ରେସ ଅଧିବେଶନ ପର୍ଯ୍ୟନ୍ତ ସେଇଠି ରହିଯା'ନ୍ତୁ । କଂଗ୍ରେସ ଅଧିବେଶନ ଶେଷ ପର୍ଯ୍ୟନ୍ତ ଏ ଜିପ୍‌ଟି ଆମ ପାଖରେ ରହିବ । ତେଣୁ ଆପଣଙ୍କର ଅସୁବିଧା ହେବ ନାହିଁ ।

ମୁଁ ବିଚିବାବୁଙ୍କ କଥାଶୁଣି ଜିପ୍ ନେଇ ଭୁବନେଶ୍ୱର ଆସିଲି । ସିଧାଗଲି କଂଗ୍ରେସ ଅଧିବେଶନକୁ । ସେତେବେଳେକୁ ମଞ୍ଚ ଏବଂ ପ୍ରେକ୍ଷାଳୟ କାମ ପ୍ରାୟ ଶେଷ ହେବା ଉପରେ । ଅଧିବେଶନ କମ୍ପାଉଣ୍ଡ ମଧ୍ୟରେ ଜଳଖିଆ ଦୋକାନ, ହୋଟେଲ, ଚା' ଦୋକାନ, ପାନ ଦୋକାନ ବସି ଯାଇଥାଏ । ରାଜ ସାହୁ(ରାଜ ମହଲ ହୋଟେଲ ମାଲିକ) ଏ ସମସ୍ତ ଦୋକାନର ଠିକା ନେଇଥା'ନ୍ତି । ସେଇଠି ରାଜୁବାବୁ ଦେଖାହେଲେ । ମୋତେ କହିଲେ- ସାମ୍ବାଦିକ ବାବୁ କାଲିଠୁ ହୋଟେଲ- ଜଳଖିଆ ଦୋକାନ ସବୁ ଖୋଲିଯିବ । ଆପଣ ଗୋଟେ ପ୍ରେସ୍ ପାଶ୍ ଶଶିବାବୁଙ୍କ ପାଖରୁ ଆଣନ୍ତୁ । ଏହି କମ୍ପାଉଣ୍ଡ ମଧ୍ୟରେ ଯାହା ପାଖରେ ଅଧିବେଶନ ପାଶ୍ ଥିବ ତାକୁ ସବୁ ମାଗଣାରେ ମିଳିବ । ତେଣୁ ଖାଇବା-ପିଇବା ସବୁ ମାଗଣା । ବିଜୁବାବୁ ସବୁ ବ୍ୟବସ୍ଥା କରିଛନ୍ତି ।

ମୁଁ ରାଜୁ ସାହୁଙ୍କ ସହ କଥାବାର୍ତ୍ତା ହେଲାବେଳେ ଦେଖିଲି ମନ୍ତ୍ରୀ ନୀଳମଣି ରାଉତରାୟ ଭିତରକୁ ଆସିଲେ । ତାଙ୍କ ପଛେ ପଛେ ଲାଲ୍ ବାହାଦୂର ଶାସ୍ତ୍ରୀ, ବିଜୟ ପାଣି(ଓଡ଼ିଶା କଂଗ୍ରେସ ସଭାପତି), ମନ୍ତ୍ରୀ ସତ୍ୟପ୍ରିୟ ମହାନ୍ତି, ସ୍ୱାସ୍ଥ୍ୟମନ୍ତ୍ରୀ ଜଗନ୍ନାଥ ରାଓ, ଆଉ ପାଞ୍ଚ/ ଛ'ଜଣ ଏମ୍.ଏଲ୍.ଏ. ଆସିଲେ । ଲାଲ୍‌ବାହାଦୂର ଶାସ୍ତ୍ରୀଙ୍କୁ ମୁଁ ସେଇ

ପ୍ରଥମଥର ଦେଖିଲି । ଶାସ୍ତ୍ରୀଜୀ ମଞ୍ଚ- ପ୍ରେକ୍ଷାଳୟ କାମ ସବୁ ତଦାରଖ କରୁଥିଲେ । ମୁଁ ସେମାନଙ୍କ ପଛେ ପଛେ ଘୁରିଲି । ପ୍ରାୟ ଅଧଘଣ୍ଟାକ ପରେ ସେମାନେ ସବୁ ଚାଲିଗଲେ । ମୁଁ ମଧ ବାହାରି ଆସି ‹ ୍ବେଶନର ପ୍ରେସ୍ ଦାୟିତ୍ୱରେ ଥିବା ଲୋକ ସମ୍ପର୍କ ବିଭାଗର ଜଣେ ଡି.ପି.ଆର୍‌.ଓ.ଙ୍କ ପାଖକୁ ଗଲି । ତାଙ୍କ ଅଫିସ୍ ସେଇଠି ଖୋଲା ହୋଇଯାଏ । ତାଙ୍କୁ 'ମାତୃଭୂମି' ଘର କଥା ପଚାରିଲି । ସେ ମତେ ନେଇ ଗୋଟିଏ 2RB ଘର ପାଖକୁ ଗଲେ । ସେଠି ଛ'/ ସାତଟି ଘର ମଧ୍ୟରୁ ତୃତୀୟ ଘରଟି ଆମ କାଗଜର । ସେ ତାଲା (ଡୁପ୍ଲିକେଟ୍ ଚାବି) ଖୋଲି ଦେଲେ । ମୁଁ ଦେଖିଲି ଦୁଇଟି ଛୋଟ ଛୋଟ ରୁମ୍ । ଗୋଟିଏ ଟେଲିଫୋନ୍ ଅଛି । ଗୋଟିଏ ଟେବୁଲ ଏବଂ ଚାରୋଟି ଟିଣ ଚେୟାର ଅଛି । ବାଥ୍‌ରୁମ୍- ପାଇଖାନା ମଧ ଅଛି । ସେ ମୋତେ କହିଲେ ଆପଣଙ୍କ ଘର ଦାୟିତ୍ୱ ଆଜି ସକାଳୁ ବାଳକୃଷ୍ଣ କାନୁନ୍‌ଗୋଙ୍କୁ ଦିଆଯାଇଛି । ସବୁ କାଗଜ ବାଲା ପି.ଟି.ଆଇ. ସମସ୍ତେ ଆଜି ଦାୟିତ୍ୱ ନେଇ ଯାଇଛନ୍ତି । କେବଳ ଓଡ଼ିଶା ବାହାରୁ ଯେଉଁ ସାମ୍ବାଦିକ ଆସିବେ ସେମାନଙ୍କ ପାଇଁ ଏକ ପ୍ରେସ୍ ସେଣ୍ଟର ଗୋଟେ ବଡ଼ ଘରେ ଖୋଲା ଯାଇଛି । ସେଠି ଟେଲିପ୍ରିଣ୍ଟର, ଟେଲିଫୋନ୍ ସବୁ ବ୍ୟବସ୍ଥା ଅଛି । ସେମାନେ ଚାହିଁଲେ ସେଠି ରହିବା ବ୍ୟବସ୍ଥା ମଧ କରା ଯାଇ ପାରିବ ।

## -କଂଗ୍ରେସ ଅଧିବେଶନ-

ଜାନୁଆରୀ ଆଠ ତାରିଖରେ କଂଗ୍ରେସ ଅଧିବେଶନ ବିଧିବଦ୍ଧ ଭାବେ ଆରମ୍ଭ ହେବ । ନେହେରୁ ଉଦ୍‌ଘାଟନ କରିବେ । କଂଗ୍ରେସ ଅଧିବେଶନ ପାଇଁ କାମରାଜ ନାଦର ସଭାପତି ନିର୍ବାଚିତ ହୋଇଥା'ନ୍ତି । ମୁଁ ସେଠାରୁ ଲୋକ ସମ୍ପର୍କ ବିଭାଗକୁ ଆସି ଶଶିବାବୁଙ୍କୁ ଭେଟିଲି । କଂଗ୍ରେସ ଅଧିବେଶନ ପାଇଁ ପ୍ରେସ୍ ପାଶ୍ ଦେବା ତାଙ୍କ ଦାୟିତ୍ୱ ଥିଲା । କିନ୍ତୁ ସବୁ ପାଶ୍‌ରେ ବିଜୟ ପାଣିଙ୍କ ଦସ୍ତଖତ ଦେବା ବ୍ୟବସ୍ଥା ଥିଲା । ସେ ମତେ କହିଲେ ଆପଣ ପାଶ୍ ବିଜୟ ପାଣିଙ୍କ ପାଖରୁ ପାଇବେ । ବିଜୟ ପାଣି ସେତେବେଳେ ୟୁନିଟ୍- ୨ ରେ ଏକ ଟାଇପ୍-୬ ଘରେ ରହୁଥିଲେ । ମୁଁ ସେଠୁ ବିଜୟ ପାଣିଙ୍କ ପାଖକୁ ଆସି ବିଚିବାବୁଙ୍କ ଚିଠି ଦେଲି । ସେ ବିଚିବାବୁଙ୍କ ଚିଠି ପଢ଼ି ମୋତେ ଗୋଟିଏ ପାଶ୍ ଦେଲେ । ପାଶ୍ ପାଇ ମନଟା ଖୁସି ହୋଇଗଲା । ଯାହା ହେଉ ଅନ୍ତତଃ ଖାଇବା ଚିନ୍ତା ଗଲା । କାରଣ ପ୍ରେସ୍‌ରୁ ଯେଉଁ ଟଙ୍କା ମିଳୁଥିଲା ତାହା ଖାଇବା ପିଇବା ପାଇଁ ଯଥେଷ୍ଟ ନଥିଲା । ମୁଁ ବିଜୟ ପାଣିଙ୍କ ଘରୁ ବାଳକୃଷ୍ଣ କାନୁନ୍‌ଗୋଙ୍କ ପାଖକୁ ଗଲି । ତାଙ୍କୁ ତାଙ୍କ ଦୁଇ ନମ୍ବର ୟୁନିଟ୍ ଘରେ ଦେଖା କଲି । ତାଙ୍କୁ ବିଚିବାବୁଙ୍କ କଥା କହିଲି । ଅବଶ୍ୟ ସେତେବେଳକୁ ବିଚିବାବୁଙ୍କ ସହ ତାଙ୍କର ଟେଲିଫୋନ୍‌ରେ କଥାବାର୍ତ୍ତା ହୋଇ ସାରିଥିଲା । ତାଙ୍କପାଖରୁ ଘରର ଚାବି ନେଇ ମୁଁ କଟକ ଫେରି ଆସିଲି ।

ଜାନୁଆରୀ ୮ ତାରିଖରେ ନିଖିଳ ଭାରତ କଂଗ୍ରେସ କମିଟିର ଅଧିବେଶନ ବିଧିବଦ୍ଧ ଭାବେ ଆରମ୍ଭ ହେଲା । ସକାଳ ସାଢ଼େ ଦଶଟା ବେଳକୁ ଅଧିବେଶନ ମଞ୍ଚ ଓ ପ୍ରେକ୍ଷାଳୟରେ ନେତା ଆଉ କର୍ମୀ ଭର୍ତ୍ତିହୋଇ ଯାଇଥା'ନ୍ତି । ମୁଁ ସକାଳୁ ନିତ୍ୟକର୍ମ ଶେଷ କରି ପ୍ରେସ୍ ପାଶ୍ ଦେଖାଇ ଖାଦ୍ୟ କୁପନ୍ ସଂଗ୍ରହ କଲି । ଜଳଖିଆ ତିଆରି ହେଉଥିବା ସ୍ଥାନକୁ ଯାଇ କୁପନ୍ ଦେଲି । ଗରମ ଗରମ ପୁରି- ଆଳୁଦମ୍ ଆଉ ବୁନ୍ଦିଥିବା ପତର ଠୋଲା ମୋତେ ମିଳିଲା । ଜଳଖିଆ ଖାଇ ଚା' ପିଇଲି । ତା' ପରେ ଅଧିବେଶନ ଗେଟ୍ ଭିତରକୁ ଢୁକିଲି । ଅଧିବେଶନ ମଞ୍ଚ ଓ ପ୍ରେକ୍ଷାଳୟ ଦେଖି ମୋ ଆଖି ଖୋସି ହୋଇଗଲା । ଅଭୂତପୂର୍ବ ସାଜସଜ୍ଜା । ଏତେ ଚମତ୍କାର ମଞ୍ଚ ଓ ପ୍ରେକ୍ଷାଳୟ ମୁଁ ସେଇ ପ୍ରଥମ ଦେଖିଲି । ପାଞ୍ଚ ହଜାର ଲୋକ ବସିବା ପାଇଁ ବ୍ୟବସ୍ଥା ହୋଇଥାଏ । ବିରାଟ ମଞ୍ଚ । ମଞ୍ଚର ଦକ୍ଷିଣ ପଟେ ସାମ୍ବାଦିକମାନେ ବସିବା ପାଇଁ

ସ୍ୱତନ୍ତ୍ର ସ୍ଥାନ ହୋଇଥାଏ । ମୁଁ ଯାଇ ସାମ୍ବାଦିକମାନଙ୍କ ପାଇଁ ଉଦ୍ଦିଷ୍ଟ ସ୍ଥାନରେ ବସିଲି । ସମସ୍ତେ ଉତ୍ସୁକ ହୋଇ ଅପେକ୍ଷା କରିଥା'ନ୍ତି ନେହେରୁଙ୍କୁ । ସକାଳ ସାଢ଼େ ଦଶଟା ବେଳକୁ ନେହେରୁ ରାଜଭବନର ଧଳା ଚେଭରଲେଟ୍ ଇମ୍ପାଲା ଗାଡ଼ିରେ ଆସିଲେ । ଗାଡ଼ିର ହୁଡ୍ ଖୋଲା ହୋଇଥିଲା । ନେହେରୁ-ଇନ୍ଦିରା ଗାନ୍ଧୀ ପଛରେ ବସିଥିଲେ । ବିଜୁ ପଟ୍ଟନାୟକ ସାମନା ସିଟ୍‌ରେ ବସିଥିଲେ । ଗାଡ଼ି ସିଧା ମଞ୍ଚ ପାଖରେ ପହଞ୍ଚିଲା । ଟିକରପଡ଼ାରେ ମୁଁ ଯେଉଁ ନେହେରୁଙ୍କୁ ଦେଖିଥିଲି ସେ ନେହେରୁଙ୍କ ଚେହେରାରେ ସାମାନ୍ୟ ପରିବର୍ତ୍ତନ ହୋଇଥିଲା । ବେଶ୍ ପ୍ରଫୁଲ୍ଲ ଜଣାପଡୁଥିଲେ । ବେଶ ପୋଷାକ ସେଇ ଏକାରକମ । ମୁଣ୍ଡରେ ଗାନ୍ଧୀ ଟୋପି । ଗାଡ଼ିରୁ ତାଙ୍କୁ ଧରି ସାବଧାନରେ ବିଜୁବାବୁ, ଇନ୍ଦିରା ଗାନ୍ଧୀ ଓ କାମରାଜ ଓହ୍ଲାଇ ଦେଲେ । ନେହେରୁ ସେଇଠି ଟିକିଏ ଠିଆହୋଇ ଚାରିଆଡ଼େ ଚାହିଁଲେ । ତା'ପରେ ତାଙ୍କ ମୁହଁରେ ପ୍ରସନ୍ନତା ଖେଳିଗଲା । ସେ ପାଖରେ ଥିବା ବିଜୁବାବୁଙ୍କୁ କ'ଣ କହିଲେ । ବିଜୁବାବୁଙ୍କ ମୁହଁରେ ହସ ଦେଖାଦେଲା । ତା'ପରେ ନେହେରୁଙ୍କୁ ଆସ୍ତେ ଆସ୍ତେ ମଞ୍ଚ ଉପରକୁ ନିଆଗଲା । ମଞ୍ଚ ମଝିରେ ନେହେରୁ ବସିଲେ ।

କଂଗ୍ରେସ ସଭାପତି କାମରାଜ ନାଦର ପ୍ରଥମେ ତାମିଲରେ ସ୍ୱାଗତ ଭାଷଣ ଦେଲେ । ତାଙ୍କ ଭାଷଣକୁ ହିନ୍ଦୀରେ ଜଣେ ଅନୁବାଦ କରି କହୁଥିଲେ । କାମରାଜ ତାଙ୍କ ଭାଷଣ ଶେଷରେ ନେହେରୁଙ୍କୁ ଉଦ୍‌ବୋଧନ ଦେବାକୁ ଅନୁରୋଧ କଲେ । ମାଇକ୍ ନେହେରୁଙ୍କ ପାଖକୁ ନିଆଗଲା । ତାଙ୍କୁ ବସି ବସି କହିବା ପାଇଁ ଅନୁରୋଧ କରାଗଲା । ମାତ୍ର ସେ ଠିଆ ହୋଇ କହିବା ପାଇଁ କହିଲେ । ନେହେରୁ ଠିଆହୋଇ ମାଇକ ଧରି କହିବା ପୂର୍ବରୁ ହଠାତ୍ ପଡ଼ିଯିବାର ଉପକ୍ରମ କଲେ । କେହି କିଛି ବୁଝିବା ପୂର୍ବରୁ ଇନ୍ଦିରା ଗାନ୍ଧୀ ତାଙ୍କ ସ୍ଥାନରୁ ଏକା ଡିଆଁକେ ଆସି ନେହେରୁଙ୍କୁ ଧରି ପକାଇ ବସାଇ ଦେଲେ ।

ପ୍ରଧାନମନ୍ତ୍ରୀ ପଣ୍ଡିତ ନେହେରୁ ଏଭଳି ପଡ଼ିଯିବା ଦେଖି ସମଗ୍ର ସଭାସ୍ଥଳରେ ଚାଞ୍ଚଲ୍ୟ ସୃଷ୍ଟି ହେଲା । ସମସ୍ତେ ନିଜ ଆସନରୁ ଉଠିପଡ଼ିଲେ । ଆମେ ସାମ୍ବାଦିକମାନେ ନିଜ ସ୍ଥାନରୁ ଉଠି ସଭାମଞ୍ଚ ଆଡ଼କୁ ଚାଲି ଆସିଲୁ । କିନ୍ତୁ ସାଙ୍ଗେ ସାଙ୍ଗେ ଲାଲ ବାହାଦୂର ଶାସ୍ତ୍ରୀ ମାଇକରେ ସମସ୍ତଙ୍କୁ ଶାନ୍ତ ହେବା ପାଇଁ ଅନୁରୋଧ କଲେ । ସେ ସେବା ଦଳ କର୍ମୀମାନଙ୍କୁ ନିର୍ଦ୍ଦେଶ ଦେଲେ ନିଜ ନିଜ ପୋଜିସନ୍ ନେବା ପାଇଁ । ମଞ୍ଚ ଉପରକୁ କେହି ଯେପରି ନଆସନ୍ତି ସେଥିପାଇଁ ଦୃଷ୍ଟି ଦେବାକୁ ସେବାଦଳ କର୍ମକର୍ତ୍ତାଙ୍କୁ ନିର୍ଦ୍ଦେଶ ଦିଆଗଲା । ଇତିମଧ୍ୟରେ ନେହେରୁଙ୍କୁ ଜଣେ ଡାକ୍ତର କ'ଣ ପରୀକ୍ଷା କରି ଗୋଟିଏ ଇଞ୍ଜେକ୍ସନ ଦେଲେ । ସାଙ୍ଗେ ସାଙ୍ଗେ ତାଙ୍କୁ ଧରି ସେଇ ଇମ୍ପାଲା ଗାଡ଼ିର ପଛ ସିଟ୍‌ରେ ଶୁଆଇ ଦିଆଗଲା ଏବଂ ଇମ୍ପାଲାର ହୁଡ୍ ଟେକି ଦେଇ ତାଙ୍କୁ ରାଜଭବନକୁ ନିଆଗଲା । କଂଗ୍ରେସ ଅଧିବେଶନରେ ନିସ୍ତବ୍ଧତା ବିରାଜମାନ କଲା । ମଞ୍ଚରୁ ମୁଁ ଦେଖିଲି କୃଷ୍ଣମେନନ୍, ଲାଲ୍‌ବାହାଦୂର ଶାସ୍ତ୍ରୀ, ଜଗଜ୍ଜିବନ ରାମ ଓହ୍ଲାଇ ଆସି ବାହାରକୁ ଗଲେ । ବିଜୁ ବାବୁ ମଧ୍ୟ ବାହାରକୁ ଗଲେ । ଏମାନେ ସମ୍ଭବତଃ ସମସ୍ତେ ରାଜଭବନ ଗଲେ । ମୁଁ କ'ଣ କରିବି ଭାବୁଛି, ଏହି ସମୟରେ ବାଳକୃଷ୍ଣ କାନୁନ୍‌ଗୋ ମତେ କହିଲେ- ବରେନ୍ଦ୍ର ତୁମେ ଏଠି ରୁହ । ଅଧିବେଶନରେ କ'ଣ କ'ଣ ହେଉଛି ତାକୁ ଲେଖ । କିଏ ଭାଷଣ ଦେଉଛନ୍ତି ତାକୁ ଟିପୁଥା । ମୁଁ ରାଜଭବନରୁ ଆସୁଛି । ମୁଁ ବାଧ୍ୟ ହୋଇ କଂଗ୍ରେସ ଅଧିବେଶନରେ ରହିଲି । ତେବେ କଂଗ୍ରେସ ଅଧିବେଶନ ଘଣ୍ଟାକ ପାଇଁ ମୁଲତବୀ କରି ଦିଆଗଲା । ମୋର ବିଶେଷକିଛି କାମ ନଥିଲା । ମୁଁ ଜଳଖିଆ ଦୋକାନକୁ ଗଲି । ସାମନାରେ ଅନେକ ଚେୟାର ଟେବୁଲ ପଡ଼ିଥାଏ । ଦେଶର ବଡ଼ ବଡ଼ ନେତା, ବିଭିନ୍ନ ରାଜ୍ୟର ମୁଖ୍ୟମନ୍ତ୍ରୀ, କେନ୍ଦ୍ରମନ୍ତ୍ରୀ ସମସ୍ତେ ସେଠି ଉପସ୍ଥିତ ଥା'ନ୍ତି । କାମରାଜ, ନିଜଲିଙ୍ଗପା, ଅତୁଲ୍ୟ ଘୋଷ, ୟୁ.ଏନ୍.ଧୋବର, ଏସ୍.କେ. ପାଟିଲ, ରାଜସ୍ଥାନ ମୁଖ୍ୟମନ୍ତ୍ରୀ ମୋହନଲାଲ୍ ସୁଖାଡିଆ, ଆସାମ ମୁଖ୍ୟମନ୍ତ୍ରୀ ବିମଳ ପ୍ରସାଦ ଚାଲିହା, ବିହାର ମୁଖ୍ୟମନ୍ତ୍ରୀ ଶ୍ରୀକୃଷ୍ଣ ସିହ୍ନା, ସଂଜୀବ ରେଡ୍ଡି,

ମୋରାରଜୀ ଦେଶାଇ, ଗୁଲ୍‌ଜାରୀଲାଲ୍ ନନ୍ଦା, ୱାଇ.ବି. ଚାଭନ ପ୍ରଭୃତି ବହୁ ବିଖ୍ୟାତ ନେତା ବିଭିନ୍ନ ସ୍ଥାନରେ ବସି ଆଲୋଚନା କରୁଥା'ନ୍ତି । ମୁଁ ସେଇଠି ବୁଲି ବୁଲି ସମସ୍ତଙ୍କୁ ଦେଖୁଥାଏ । ସମସ୍ତଙ୍କ ନାଁ ମୋ ଡାଇରୀରେ ଟିପୁଥାଏ । କାରଣ ଏତେ ସଂଖ୍ୟକ ନେତା- ମନ୍ତ୍ରୀ, ମୁଖ୍ୟମନ୍ତ୍ରୀଙ୍କୁ ମୁଁ ଜୀବନରେ କେବେ ଗୋଟିଏ ସ୍ଥାନରେ ଦେଖିନଥିଲି । ଉଭୟ ଦେଖିବାପାଇଁ କୌତୁହଳ ଏବଂ ସେମାନଙ୍କ ଆଲୋଚନା ମଧ୍ୟ ଶୁଣୁଥାଏ । ଗୋଟିଏ ଟେବୁଲ ପାଖରେ ଦେଖିଲି ନିଜଲିଙ୍ଗପା, ଅତୁଲ୍ୟ ଘୋଷ, ଏସ୍.କେ. ପାଟିଲ ଏବଂ ଆଉ ଦୁଇଜଣ ବସି କ'ଣସବୁ ଆଲୋଚନା କରୁଥା'ନ୍ତି । ମୁଁ କୌତୁହଳି ହୋଇ ସେଠି ପାଖରେ ଆଉ ଏକ ଟେବୁଲ ପାଖରେ ବସିଲି । ସେମାନଙ୍କ ମଧ୍ୟରୁ ଏସ୍.କେ. ପାଟିଲ କହିଲେ ବିଜୁ ନେହେରୁଙ୍କୁ ତାଳଚେର ଟିକରପଡ଼ା ନେବା ଉଚିତ୍ ନଥିଲା । ସେଇ ଟୁର୍ ନେହେରୁଙ୍କ ପାଇଁ କାଳ ହେଲା । କ'ଣ ହୋଇଛି କେଜାଣି ? ଆଉଜଣେ କହିଲେ ଯାହା ମନେ ହେଉଛି କିଛି ସିରିୟସ୍, ନଚେତ୍ ଲାଲ୍‌ବାହାଦୂରଜୀ ଫେରି ଆସନ୍ତେଣି । ଏଣେ କଂଗ୍ରେସ ଅଧିବେଶନ ଆରମ୍ଭ କରିବାକୁ ହେବ । ଅତୁଲ୍ୟ ଘୋଷ ବିଜୁବାବୁଙ୍କୁ ସମର୍ଥନ କରି କହିଲେ ବିଜୁ ଲୋଭରେ ନେହେରୁଙ୍କୁ ନେଇ ତା'ର ଦୁଇଟି ବଡ଼ ପ୍ରୋଜେକ୍ଟ ଫାଉଣ୍ଡେସନ ଦେଇଛି । କିନ୍ତୁ ନେହେରୁ ସେଠିକି ଯିବା ନିଯିବା ତାଙ୍କ ଡାକ୍ତର ଆଉ ଇନ୍ଦିରା ନିଷ୍ପତ୍ତି ନେଇଥା'ନ୍ତେ । ସମ୍ଭବତଃ ସେମାନେ ଅନୁମତି ଦେଇଛନ୍ତି ତା' ନହେଲେ ପଣ୍ଡିତଜୀ ଯାଇ ନଥା'ନ୍ତେ । ତା'ଛଡ଼ା ଓଡ଼ିଶା ଆସି ଓଡ଼ିଶାର ଦୁଇଟି ପ୍ରକଳ୍ପରେ ଶୁଭ ଦେବା ସ୍ୱାଭାବିକ ଘଟଣା । କାମରାଜ ନାଦର ଏମାନଙ୍କ ସହ ଆସି ଯୋଗ ଦେଲେ ।

## -ନେହେରୁଙ୍କ ହୃଦରୋଗ-

ମୁଁ ସେଇଠି ଏପଟ ସେପଟ ହେଉଥାଏ । ଏହି ସମୟରେ ଦେଖିଲି ବଙ୍କିମ ଦାସ ଆସିଲେ । ବଙ୍କିମ ବାବୁ ବିଜୁ ପଟ୍ଟନାୟକଙ୍କ ପଲିଟିକାଲ୍ ସେକ୍ରେଟାରୀ ଥିଲେ । ତାଙ୍କର ସେତେବେଳେ ଖୁବ୍ ପ୍ରତିପତି । ବିଶେଷକରି ଗୋଟିଏ ପଟେ କାମିନୀ (ପଟ୍ଟନାୟକ), ଭବାନୀ (ପଟ୍ଟନାୟକ) ଏବଂ ବିନୟ (ମହାନ୍ତି)ଙ୍କୁ ଗୋଷ୍ଠି ଅନ୍ୟ ପଟେ ବଙ୍କିମ ସମସ୍ତେ ବିଜୁ ପଟ୍ଟନାୟକଙ୍କ ଖାସ୍ ଲୋକ ରୂପେ ପରିଚିତ ଥିଲେ । ମୁଁ ବଙ୍କିମ ବାବୁଙ୍କୁ ନମସ୍କାର କଲି । ସେ ମତେ ଚାହିଁ କହିଲେ ଆପଣ 'ମାତୃଭୂମି'ରେ ଅଛନ୍ତି ତ ? ମୁଁ ହଁ କହିଲି । ତାଙ୍କୁ ପଚାରିଲି ସାର୍ ନେହେରୁଙ୍କର କ'ଣ ହୋଇଛି ? ସେ ମତେ କହିଲେ ଆପଣ ଏଠି କ'ଣ କରୁଛନ୍ତି ? ମୁଁ କହିଲି ମତେ ବିଚିବାବୁ ପଠାଇଛନ୍ତି କିଛି ସ୍ୱତନ୍ତ୍ରୀ ଖବର କରିବା ପାଇଁ । ଆପଣ କ'ଣ ବାଳକୃଷ୍ଣ ଜରିଆରେ ପଠାଉଛନ୍ତି ନା ସିଧା ପଠାଉଛନ୍ତି ? ମୁଁ କହିଲି ନା ମୁଁ ସିଧା ପଠାଉଛି । ତା'ପରେ ତାଙ୍କୁ ପୁଣିଥରେ ନେହେରୁଙ୍କ ସମ୍ପର୍କରେ ପଚାରିଲି । ସେ କହିଲେ ବାଳକୃଷ୍ଣ, ଗୋପାଳ କାହାକୁ କହିବେ ନାହିଁ । ନେହେରୁଙ୍କୁ ଷ୍ଟ୍ରୋକ୍ ହୋଇଛି । ତାଙ୍କ ବାଁ ପାଖ ଆଂଶିକ ପାରାଲିସସ୍ ହୋଇଯାଇଛି । ତାଙ୍କୁ ଚିକିତ୍ସା କରିବା ପାଇଁ ଦିଲ୍ଲୀରୁ ଚାରିଜଣ ଡାକ୍ତର ଆସି ଯେକୌଣସି ସମୟରେ ପହଞ୍ଚି ପାରନ୍ତି । ନେହେରୁ କଥାବାର୍ତ୍ତା ଅତି କ୍ଷୀଣ କରୁଛନ୍ତି । ମୁଁ ପଚାରିଲି ଏକଥା ମୁଁ ଦେଇ ପାରିବି ? ସେ କହିଲେ ସେ କଥା ମୁଁ କିପରି କହିବି ? ତା' ଆପଣଙ୍କ ରିସ୍କ । ଏହା କାହାକୁ କହିବାକୁ ମନା ହୋଇଛି । ଖୁବ୍‌ଶୀଘ୍ର ଏଆଇସିସି ମୁଖପାତ୍ର ଆପଣମାନଙ୍କୁ ଆଡ୍ରେସ କରିବେ । ମୁଁ କ'ଣ କରିବି କିଛି ବୁଝି ପାରିଲି ନାହିଁ । ତେବେ ହଠାତ୍ ମନେ ପଡ଼ିଲା ଆମ ବାଙ୍କୀର ରାଜୁ ଭାଇ ରାଜ ଭବନରେ ଡାକ୍ତର ଥିବା ଶୁଣିଥିଲି । ତାଙ୍କ ପାଖକୁ ଯିବାପାଇଁ ବାହାରିଲି । ସେତିକିବେଳେ ଦେଖିଲି ବାଳକୃଷ୍ଣ ବାବୁ, ଗୋପାଳ ବାବୁ, ନାରଣ ବାବୁ ସମସ୍ତେ ଏ.ଆଇ.ସି.ସି. ପେଣ୍ଡାଲ ନିକଟରେ ପହଞ୍ଚିଲେ । ମୁଁ ବାଳକୃଷ୍ଣ ବାବୁଙ୍କୁ ପଚାରିଲି ଆଜ୍ଞା କ'ଣ ହେଲା । ସେ କହିଲେ କ'ଣ ହେବ ? ନେହେରୁ ରାଜ ଭବନରେ ଅଛନ୍ତି । ତାଙ୍କ ଦେହ ଖରାପ । ଏବେ ଆଉ

ଏ.ଆଇ.ସି.ସି. ଅଧିବେଶନକୁ ଆସିବେ ନାହିଁ । କାଲି ଆଡ଼କୁ ଆସି ପାରନ୍ତି ।

ମୁଁ ତାଙ୍କୁ କହିଲି ମୁଁ ଟିକେ ମୋର ଜଣେ ରିଲେସନଙ୍କୁ ଦେଖାକରି ଆସୁଛି । ଜିପ୍ ନେଇ ଯାଉଛି । ସେ କହିଲେ ବେଗି ଆସିବ । ମୁଁ ହଁ କରି ଆସିଲି । ଜିପ୍ ଧରି ମୁଁ ରାଜଭବନକୁ ଗଲି । ସେଠି ଗେଟ୍ ଜଗିଥିବା ପୋଲିସ୍‌କୁ କହିଲି ମୁଁ ଟିକେ ରାଜଭବନ ଡାକ୍ତର ରାଜୁବାବୁଙ୍କୁ ଦେଖା କରିବାକୁ ଚାହେଁ । ସେ କହିଲା ଆପଣ ରିସେପସନ୍ କାଉଣ୍ଟରକୁ ଯାଇ ପଚାରନ୍ତୁ । ମୁଁ ସେଇଆ କଲି । ସେଠିଥିବା କର୍ମଚାରୀ ରାଜୁ ଭାଇଙ୍କୁ ଫୋନ୍ କଲେ । ସେପଟୁ ରାଜୁଭାଇ ସମ୍ଭବତଃ ମୋତେ ଫୋନ୍ ଦେବା ପାଇଁ କହିଲେ । ମୁଁ ଯିବାପାଇଁ କହିବାରୁ ସେ କହିଲେ ଏଇନେ ରାଜଭବନ ଭିତରକୁ କାହାରିକୁ ଛଡ଼ାଯିବ ନାହିଁ । ମୁଁ ତାଙ୍କୁ ଫୋନ୍‌ରେ ଆସ୍ତେ ଆସ୍ତେ ବଙ୍କିମବାବୁ ଯାହା କହିଥିଲେ ସେ କଥା କହିବାରେ ସେ ଆଶ୍ଚର୍ଯ୍ୟ ହୋଇ କହିଲେ ତୁ ଏତେକଥା କିପରି ଜାଣିଲୁ ? ଯାହା କହିଲୁ ସବୁ ଠିକ୍ । ଦିଲ୍ଲୀରୁ ଚାରିଜଣ ଡାକ୍ତର ପହଞ୍ଚିଲେଣି । ମୁଁ ତାଙ୍କ ନାଁ ସବୁ ପଚାରିଲି । ସେ କହିଲେ ତୁ ସେଇଠି ଥା' । ପାଞ୍ଚମିନିଟ୍ ପରେ ମୁଁ କହୁଛି । କିଛି ସମୟ ପରେ ସେ ସେଇ ରିସେପ୍‌ସନ୍‌କୁ ଫୋନ୍ କରି ମୋତେ ସେ ଡାକ୍ତରମାନଙ୍କ ନାଁ କହିଦେଲେ । ମୁଁ ସେଇଠୁ ଫେରି ଆସିଲି । ଏ.ଆଇ.ସି.ସି. ଅଧିବେଶନ ପାଖକୁ ଆସିଲି । ବାଳକୃଷ୍ଣ ବାବୁଙ୍କୁ ଦେଖା କଲି । ସେ କହିଲେ ତୁମେ ତ ଏଇଠି ଖାଇବ । ମୁଁ ଘରକୁ ଯାଉଛି । ଖାଇକରି ଚାରିଟା ବେଳକୁ ଆସିବି । ଯଦି କିଛି ଦରକାର ପଡ଼େ ମତେ ଘରକୁ ଫୋନ୍ କରିବ ।

ବାଳକୃଷ୍ଣ ବାବୁ ଯିବା ପରେ ମୁଁ ପ୍ରେସ୍‌କୁ ଫୋନ୍ କଲି । ବିଚିବାବୁଙ୍କୁ ସବୁକଥା କହିଲି । ସେ କହିଲେ ଆରେ ଏତେ କଥା ଆପଣ କୁଆଡୁ ଜାଣିଲେ ? ମୁଁ ତାଙ୍କୁ ବଙ୍କିମ ଦାସ ଆଉ ରାଜୁଭାଇ(ଡାକ୍ତର)ଙ୍କ କଥା କହିଲି । ସେ ସବୁ ଶୁଣି କହିଲେ ଆପଣ ଯାହାସବୁ କହିଲେ ତା'ଡାକି ଦିଅନ୍ତୁ । ମୁଁ ସବୁକଥା ଡାକିଦେଲି । ନେହେରୁଙ୍କ ସ୍ୱାସ୍ଥ୍ୟ ସମ୍ପର୍କରେ କୌଣସି ଉଦ୍‌ବେଗକର ସମ୍ବାଦ ନଦେବା ପାଇଁ କୁହାଯାଇଥିଲା । ବସ୍ତୁତଃ ଏ.ଆଇ.ସି.ସି. ମୁଖପାତ୍ର ନେହେରୁ ସୁସ୍ଥ ହେଉଛନ୍ତି । କାଲି ଅଧିବେଶନରେ ଯୋଗ ଦେବେ ବୋଲି କହିଥିଲେ । ମାତ୍ର ମୁଁ ଯାହା ଶୁଣିଥିଲି ତାକୁ ସିଧାସଳଖ ଦେଇଦେଲି । ସେଦିନ ସନ୍ଧ୍ୟାରେ 'ମାତୃଭୂମି' ସମ୍ବାଦ ବେଶ୍ ଆଲୋଚିତ ହେଲା । ତା' ପରଦିନ ସକାଳେ ମଧ ମାତୃଭୂମି ଖବରକୁ ନେଇ ଏ.ଆଇ.ସି.ସି. ଅଧିବେଶନରେ ଚର୍ଚ୍ଚା ଚାଲିଲା । ବାଳକୃଷ୍ଣ ବାବୁ ମୋ ଖବର ପଢ଼ି ମୋତେ ପଚାରିଲେ ତୁମେ ଏ ଖବର ଦେଇଛ ? କାହାଠୁ ପାଇଲ ? ମୁଁ କହିଲି ନା ଏଇମିତି ଏଠି କେତେକ ବେଶ୍ ଚୁପ୍‌ଚୁପ୍ କଥା ହେଉଥିଲେ । ମୁଁ ଅତୁଲ୍ୟ ଘୋଷ, ଏସ୍.କେ. ପାଟିଲ ପ୍ରଭୃତି କଥା ହେଉଥିଲେ ବୋଲି ତାଙ୍କୁ କହିଲି । ସେ ସବୁ ଶୁଣି କହିଲେ ସିଏ କ'ଣ କଥା ହେଉଥିଲେ- ତୁମେ କ'ଣ ଶୁଣିଲ । ଚଟ୍‌କରି ତାକୁ ପ୍ରେସ୍‌କୁ ଦେଇଦେଲ କାହିଁକି ? ମତେ ପଚାରିଲ ନାହିଁ । ମୁଁ କିଛି କହିଲିନି ।

ନେହେରୁଙ୍କ ଏହି ସ୍ଥିତି କଂଗ୍ରେସ ନେତାମାନଙ୍କୁ ହତୋତ୍ସାହିତ କରି ଦେଇଥିଲା । ମାତ୍ର ଅନ୍ୟ ନେତାମାନେ କଂଗ୍ରେସ ଅଧିବେଶନକୁ ଚଳାଇ ରଖିଥିଲେ । ଇନ୍ଦିରା ଗାନ୍ଧୀ କଂଗ୍ରେସ ଅଧିବେଶନ ଓ ରାଜଭବନ ମଧ୍ୟରେ ଯିବା ଆସିବା କରି ସମନ୍ୱୟ ରକ୍ଷା କରୁଥା'ନ୍ତି । ମୁଁ ରାଜୁଭାଇଙ୍କ ପାଖକୁ ସନ୍ଧ୍ୟାରେ ତାଙ୍କ ଘରକୁ ଯାଉଥିଲି । ନେହେରୁ କେବେ ଦିଲ୍ଲୀ ଯିବେ ସେ ସମ୍ପର୍କରେ ତାଙ୍କୁ ପଚାରିବାରେ ସେ କହିଲେ ଯେଉଁ ଡାକ୍ତରମାନେ ଆସିଛନ୍ତି ସେମାନେ ତାଙ୍କୁ ତାଙ୍କ ବେଡ୍‌ରୁ ଓହ୍ଲାଇବାକୁ ଅନୁମତି ଦେଉ ନାହାନ୍ତି । ନେହେରୁ ଦୁର୍ବଳ ହୋଇ ପଡ଼ିଛନ୍ତି । ତାଙ୍କ ଦେହରେ ଟିକିଏ ବଳ ଆସିଲେ ତାଙ୍କୁ ଦିଲ୍ଲୀ ନିଆଯିବ । ଦଶ ତାରିଖରେ ରାଜୁଭାଇ ମତେ କହିଲେ ଆଜି ନେହେରୁ ତାଙ୍କ ଶେଯରେ ଉଠି ବସିଥିଲେ । ମାତ୍ର ତଳକୁ ଓହ୍ଲାଇ ନଥିଲେ । ସେ ଧୀରେ ଧୀରେ ସୁସ୍ଥ ହେଉଛନ୍ତି । ମୁଁ କଂଗ୍ରେସ ଅଧିବେଶନରେ

ଯେଉଁ ପ୍ରସ୍ତାବ ଗ୍ରହଣ କରାଯାଉଥିଲା ତା'ର ଗୋଟିଏ କପି କଟକକୁ ପଠାଇ ଦେଉଥାଏ । କଂଗ୍ରେସ ଦଳର ମୁଖପାତ୍ର ଆମକୁ ମଝିରେ ମଝିରେ ଗ୍ରହଣ କରାଯାଉଥିବା ପ୍ରସ୍ତାବର ସମୀକ୍ଷା ମଧ ଡାକି ଦେଉଥା'ନ୍ତି । କଂଗ୍ରେସ ଅଧିବେଶନର ସମ୍ଭବତଃ ଦ୍ୱିତୀୟ ଦିନ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସଙ୍କ ସ୍ମୃତିରେ ଭାରତୀୟ ଡାକ-ତାର ବିଭାଗ ଏକ ସ୍ୱତନ୍ତ୍ର ଡାକ ଟିକେଟ ପ୍ରକାଶ କଲେ । ସେ ଟିକେଟର ମୂଲ୍ୟ ଥିଲା ସେତେବେଳେ ମୋର ଯାହା ମନେ ପଡୁଛି ପଚାଶ ପଇସା । ତା' ସାଙ୍ଗରେ ଗୋପବନ୍ଧୁଙ୍କ ଛବି ଥିବା ଫାଷ୍ଟ ଡେ' କଭର ଲଫାପା ମଧ ପ୍ରକାଶ ପାଇଥିଲା । କଂଗ୍ରେସ ଭବନରେ ଖୋଲାଯାଇଥିବା ଡାକଘରୁ ମୁଁ ଦଶୋଟି ଲଫାପା ଓ ଦଶୋଟି ଟିକେଟ କିଣିଥିଲି । ଅବଶ୍ୟ ପ୍ରତି ଟିକେଟ ସହ ଲଫାପା ମାଗଣା ମିଳୁଥିଲା । ସେଠି କୁହାଗଲା ଓଡ଼ିଶାର କୌଣସି ଜନନେତାଙ୍କ ନାମରେ ଏହି ପ୍ରଥମ ଥର ପାଇଁ ଏକ ସ୍ୱତନ୍ତ୍ର ଡାକ ଟିକେଟ ପ୍ରଚଳନ କରାଯାଇଥିଲା ।

ସେତେବେଳେ ମୋର ଦେଶର ଅର୍ଥନୀତିକ ସ୍ଥିତି କିମ୍ବା ସାମାଜିକ ଅବସ୍ଥା ସମ୍ପର୍କରେ ଏତେ ଜ୍ଞାନ ନଥିଲା । ସମସ୍ତେ କୁହାକୁହି ହେଉଥା'ନ୍ତି ଭୁବନେଶ୍ୱର କଂଗ୍ରେସ ଅଧିବେଶନ ଏକ ଯୁଗାନ୍ତକାରୀ ଅଧିବେଶନ । ପ୍ରଥମଥର ପାଇଁ ଏହି ଅଧିବେଶନରେ ଭାରତବର୍ଷକୁ ଏକ ସମାଜବାଦୀ ରାଷ୍ଟ୍ରରେ ପରିଣତ କରିବା ପାଇଁ ପ୍ରସ୍ତାବ ଗୃହୀତ ହୋଇଥିଲା । ଏହି ଅଧିବେଶନରେ ଗୃହୀତ ଏକ ପ୍ରସ୍ତାବ ଯାହା ମୁଁ ଟିପି କରି ରଖିଥିଲି ତାକୁ ଏଠାରେ ଅବିକଳ ଉଦ୍ଧାର କରୁଛି । ମୋର କହିବାରେ ସଂକୋଚ ନାହିଁ ସେତେବେଳେ ମୁଁ ଏହି ପ୍ରସ୍ତାବର ମୁଣ୍ଡ ଗଣ୍ଡି କିଛି ବୁଝିପାରି ନଥିଲି ।

ପ୍ରସ୍ତାବରେ ଥିଲା- "The Bhubaneswar Resolution on Democracy and Socialism clearly laid down that Indian planning should be consciously so directed that it leads to the creation of a socialist society at called for elimination of previleger, disporities and exploitation. It worked against conceutration of wealth and means of prodnchion in a few hands. It called upon a ceilling on income and property in privat hands, for workers participation in management, completion of untire programme of land Refarms within two years etc.' କଂଗ୍ରେସ ଅଧିବେଶନର ଏହି ପ୍ରସ୍ତାବର ସାରାଂଶଟି ଆମେ ଏଇଥିପାଇଁ ଦେଲୁ ଯେ ଭବିଷ୍ୟତରେ ଏହାକୁ କେହି ଗବେଷକ ବ୍ୟବହାର କରି ପାରିବେ । ବସ୍ତୁତଃ ସେଠି କୁହାଗଲା ଏଭଳି ଏକ ପ୍ରସ୍ତାବ ଗ୍ରହଣ କରିବା କ୍ଷେତ୍ରରେ ନେହେରୁଙ୍କର ମୂଳ ଉଦ୍ଦେଶ୍ୟ ଥିଲା । କଂଗ୍ରେସ ଅଧିବେଶନରେ ଯୋଗ ଦେବାପାଇଁ ଆସିବା ପୂର୍ବରୁ ଦିଲ୍ଲୀ ଠାରେ ସେ ଏହି ପ୍ରସ୍ତାବର ଚିଠା କରିଥିଲେ । ପରେ ଇନ୍ଦିରା ଗାନ୍ଧୀ, କାମରାଜ ନାଦର, କୃଷ୍ଣ ମେନନ, ଲାଲ୍‌ବାହାଦୂର ଶାସ୍ତ୍ରୀ ପ୍ରମୁଖ ବାମପନ୍ଥୀ ଚିନ୍ତାଧାରାର ନେତାମାନେ ଏହାକୁ ବାସ୍ତବ ରୂପ ଦେଇଥିଲେ ।

ଆମେ କଂଗ୍ରେସ ଅଧିବେଶନର ଏହି ତଥ୍ୟ ଦେବାର ଏକମାତ୍ର ଉଦ୍ଦେଶ୍ୟ ହେଉଛି ଭବିଷ୍ୟତରେ ଯଦି କୌଣସି ଗବେଷକ ୧୯୬୪ କଂଗ୍ରେସ ଅଧିବେଶନ କଥା ଜାଣିବାକୁ ଇଚ୍ଛା କରିବେ ବା ଲେଖିବାକୁ ଇଚ୍ଛା କରିବେ ସେ ଏହି ବିଷୟରୁ ଅନ୍ତତଃ କିଛି ଜାଣି ପାରିବେ । କାରଣ ମୁଁ ଜାଣିବାରେ ଭୁବନେଶ୍ୱର କଂଗ୍ରେସ ଅଧିବେଶନ ସମ୍ପର୍କରେ ଓଡ଼ିଆରେ ସେଭଳି କିଛି ତଥ୍ୟ ନାହିଁ । ଇଂରାଜୀରେ କିଏ କେଉଁଠି ଲେଖିଥିବେ ଆମକୁ ଜଣାନାହିଁ । ଏବେ ସୁଦ୍ଧା କୁହାଯାଉଛି ଭୁବନେଶ୍ୱର କଂଗ୍ରେସ ଅଧିବେଶନ ଏକମାତ୍ର ଅଧିବେଶନ ଯେଉଁଥିରେ ପ୍ରଥମଥର ପାଇଁ କଂଗ୍ରେସ ଭାରତବର୍ଷକୁ ଏକ ସମାଜବାଦୀ ରାଷ୍ଟ୍ରରେ ପରିଣତ କରିବା ପାଇଁ ତା'ର ଲକ୍ଷ୍ୟ ବୋଲି ପ୍ରସ୍ତାବ ଗ୍ରହଣ କରିଥିଲା ।

ମୁଁ କଂଗ୍ରେସ ଅଧିବେଶନରେ ଯୋଗ ଦେଇଥିବା ଅନ୍ୟାନ୍ୟ ନେତାମାନଙ୍କ ମଧ୍ୟରୁ କେତେକଙ୍କୁ ସାକ୍ଷାତ କରି ସେମାନଙ୍କର ସାକ୍ଷାତକାର ନେଇଥିଲି । ତେବେ ଯେତେବେଳେ କୃଷ୍ଣ ମେନନ୍ ଓ ଜଗଜ୍ଜିବନ ରାମଙ୍କ ସାକ୍ଷାତକାର ପାଇଁ ଅନୁରୋଧ କଲି ସେମାନେ କିନ୍ତୁ ରୋକ୍‌ଠୋକ୍ ମନାକରି ଦେଲେ । ତା'ର କାରଣ ମୁଁ ଅବଶ୍ୟ ସେମାନଙ୍କୁ ପଚାରିବାକୁ ସାହସ କରିପାରିଲି ନାହିଁ । ତେବେ ସମ୍ଭବତଃ ଓଡ଼ିଆ ଖବରକାଗଜ ଏବଂ ମୋ ଭଳି ଜଣେ ଅଳ୍ପ ବୟସ୍କ ସାମ୍ବାଦିକଙ୍କୁ ସେମାନେ ସାକ୍ଷାତକାର ଦେବାକୁ ମନା କରିଦେଲେ । କିନ୍ତୁ ମୋ ଜୀବନରେ ସବୁଠାରୁ ବଡ଼ ମୁହୂର୍ତ୍ତ ଆସିଲା ଯେତେବେଳେ ଲାଲ୍‌ବାହାଦୁର ଶାସ୍ତ୍ରୀଙ୍କ ସହ ସେଇ କଂଗ୍ରେସ ଅଧିବେଶନରେ ସାକ୍ଷାତ ଆଲୋଚନା କଲି । ଶାସ୍ତ୍ରୀଜୀ ସେତେବେଳେ ଜଳଖିଆ ଖାଇ ଚା' ପାନ କରୁଥିଲେ । ମୁଁ ତାଙ୍କ ପାଖକୁ ଯାଇ ତାଙ୍କ ପାଦ ଛୁଇଁ ପ୍ରଣାମ କଲି । ସେ ମତେ ଚାହିଁଲେ । ମୋ ବେକରେ ଝୁଲୁଥିବା ଆଇଡେଣ୍ଟିଟି କାର୍ଡ଼କୁ ଅନାଇଲେ । ତା'ପରେ ପଚାରିଲେ ଆପ୍ କ୍ୟା କେରଲ୍ ସେ ଆୟା ହୈ । 'ମାତୃଭୂମି' କେରଳ କା ପେପର ତ ? ମୁଁ ବିନୟର ସହ କହିଲି ସାର୍ ୟେ କଟକ ସେ ନିକଲ୍‌ତା ହୈ ଔର ଓଡ଼ିଆ ଭାଷା କି ହୈ । ସେ ମତେ ବସିବାକୁ କହିଲେ । ମୁଁ ତାଙ୍କ ସାମ୍ନାରେ ବସିଲି । ତା'ପରେ ପଚାରିଲି ସାର୍ ଆପଣ କ'ଣ କ୍ୟାବିନେଟ୍‌କୁ ଫେରିବେ ? ସେ ମୋତେ ଚାହିଁ ହସିଲେ । ତା'ପରେ ପଚାରିଲେ ଆପ୍ ତୋ ଜର୍ଣ୍ଣାଲିଷ୍ଟ । ମୁଝେ ବତାଇୟେ ମେଁ କ୍ୟୁଁ କ୍ୟାବିନେଟ୍ ସେ ରିଜାଇନ୍ କ୍ୟା ? ମୁଁ ସାଙ୍ଗେ ସାଙ୍ଗେ ଉତ୍ତର ଦେଲି ଆପଣ କାମରାଜ ପ୍ଲାନରେ ଇସ୍ତଫା ଦେଲେ । ୧୯୬୩ ଅଗଷ୍ଟ ୨୪ ତାରିଖରେ ଆପଣ ଇସ୍ତଫା ଦେଲେ । ଶାସ୍ତ୍ରୀଜୀ ସମ୍ଭବତଃ ମୋ ମୁହଁରୁ ହଠାତ୍ ଏଭଳି ଚଟାପଟ୍ ଉତ୍ତର ଆଶା କରିନଥିଲେ । ସେହିଭଳି ହସି ହସି କହିଲେ ଆପ୍‌କୋ ତାରିଖ ବି ମାଲୁମ୍ ହୈ । ମୁଁ କହିଲି ସାର୍ କାମରାଜ ପ୍ଲାନ ଓଡ଼ିଶାରେ ଖୁବ୍ ପ୍ରଚାରିତ । କାରଣ ଆପଣଙ୍କ ଇସ୍ତଫା ପରେ ବିଜୁ ବାବୁ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଲେ । ତେଣୁ ଓଡ଼ିଶାରେ କାମରାଜ ଯୋଜନା ସମ୍ପର୍କରେ ଅନେକ ଖବର ରଖନ୍ତି । ସେଇଥିପାଇଁ ମୋର ତାରିଖ ମନେ ଅଛି । ଶାସ୍ତ୍ରୀଜୀ ହସିଲେ । ତା'ପରେ ମୋତେ କହିଲେ ଯବ୍ ମୈନେ ଇସ୍ତଫା ଦେ ଦିଆ ଫିର୍ କୈସେ ମନ୍ତ୍ରୀ ହୋଗା ? ମୁଁ ହଠାତ୍ ପଚାରି ବସିଲି ତେବେ କ'ଣ ଇନ୍ଦିରାଜୀ ମନ୍ତ୍ରୀ ହେବେ ? ଶାସ୍ତ୍ରୀଜୀ କହିଲେ ମୈଁ ପ୍ରଧାନମନ୍ତ୍ରୀ ନହିଁ ହୁଁ । ଆପ୍‌କା ଏ ପ୍ରଶ୍ନକା ଉତ୍ତର ମୈ କୈସେ ଦୁଙ୍ଗା ? ତା'ପରେ କହିଲେ ଇନ୍ଦିରାଜୀ ଅଭି ତୋ ପାର୍ଲାମେଣ୍ଟକା ସଦସ୍ୟ ନେହିଁ ହୈ । ବାସ୍ ଏତିକି ମାତ୍ର କଥାବାର୍ତ୍ତା । ଶାସ୍ତ୍ରୀଜୀ ତା'ପରେ ଉଠି ଚାଲିଗଲେ ।



ମୁଁ ଏହି କଥୋପକଥନ ଲେଖି ବିଟିବାବୁଙ୍କ ପାଖକୁ ପଠାଇଦେଲି । ପରଦିନ ଏହି ସାକ୍ଷାତକାର ପ୍ରକାଶ ପାଇଲା । ମାତ୍ର ଯେଉଁଭଳି ଢଙ୍ଗରେ ପ୍ରକାଶ ପାଇଲା ସେଥିରେ ଅନେକ କଂଗ୍ରେସ ନେତା ଅତ୍ୟନ୍ତ କ୍ଷୁବ୍ଧ ହୋଇଥିଲେ । ମୋ ସାକ୍ଷାତକାରର ଶୀରୋନାମା ହୋଇଥିଲା 'ଇନ୍ଦିରାଗାନ୍ଧୀ କେନ୍ଦ୍ରରେ ମନ୍ତ୍ରୀ ହୋଇ ପାରିବେ ନାହିଁ- ଶାସ୍ତ୍ରୀ' । ଶାସ୍ତ୍ରୀଜୀଙ୍କ ଶେଷ ବାକ୍ୟରୁ ଏହି ଅର୍ଥ ବାହାର କରି ବିଟିବାବୁ ଶୀରୋନାମା ଦେଇଥିଲେ । ମୁଁ ଯାହା ଶୁଣିଲି ବିଜୁବାବୁ ଏ ଖବର ପଢ଼ି ଅଗ୍ନିଶର୍ମା । କାରଣ ସେ ଇନ୍ଦିରା ଗାନ୍ଧୀଙ୍କୁ ଉପ ପ୍ରଧାନମନ୍ତ୍ରୀ କରିବା ପାଇଁ ଲାଗି ପଡ଼ିଥିଲେ । ସ୍ୱାଭାବିକ ଭାବେ ଶାସ୍ତ୍ରୀଜୀଙ୍କ ଏହି ମନ୍ତବ୍ୟ ଇନ୍ଦିରାଙ୍କ ସପକ୍ଷରେ ଯିବ ନାହିଁ । ମୁଁ ଏତେ କଥା ହେବ କଳ୍ପନାକାଳେ ଭାବି ନଥିଲି । ଗୋଟିଏ ଛୋଟ

କଥାରୁ ଏଭଳି ଅନେକ ବିବାଦ ଜନ୍ମ ନେବ ସେକଥା ମୋ ମୁଣ୍ଡରେ ଢୁକି ନଥିଲା । ମୁଁ ବିଚିବାବୁଙ୍କୁ ସେ କଥା କହିଲି । ସେ କହିଲେ ଆପଣ ବ୍ୟସ୍ତ ହେବାର କ'ଣ ଅଛି ? ମୁଁ କହିଲି ବିଜୁବାବୁ କୁଆଡ଼େ ଖୁବ୍ ବିରକ୍ତ ହୋଇଛନ୍ତି । ବିଚିବାବୁ କହିଲେ ସେ ବିରକ୍ତ ହେଲେ କ'ଣ କରିବେ ? ଆପଣ ଭୟ ନକରି ଯାହା ଖବର ପାଉଛନ୍ତି କରନ୍ତୁ । ଏହିଭଳି ଖବରରେ ତ କାଗଜର ଜନପ୍ରିୟତା ବଢ଼ିବ ।

ଏଣେ ନେହେରୁଙ୍କ ଅସୁସ୍ଥତା ସମ୍ପର୍କରେ କୌଣସି ଖବର ଦିଆଯାଉ ନଥାଏ । ମଝିରେ ପ୍ରଚାର ହୋଇଗଲା ନେହେରୁ ଦିଲ୍ଲୀ ଚାଲିଗଲେଣି । କିଏ କହିଲା କାଲି ରାଜ ଭବନରେ ହେଲିକେପ୍ଟର ଓହ୍ଲାଇ ଥିଲା । ସେଇଥିରେ ନେହେରୁ ଚାରିବାଟିଆ ଯାଇ ସେଠାରୁ ଦିଲ୍ଲୀ ଗଲେ । ମୁଁ ସେଦିନ ରାତିରେ ରାଜୁଭାଇଙ୍କୁ ତାଙ୍କ ଘରେ ଭେଟିଲି । ସେ କହିଲେ ନେହେରୁ ରାଜଭବନରେ ଅଛନ୍ତି । ଆମେ କେହି ତାଙ୍କ ପାଖକୁ ଯିବାକୁ ଅନୁମତି ଦିଆଯାଉ ନାହିଁ । ଦିଲ୍ଲୀରୁ ଯେଉଁ ଡାକ୍ତରମାନେ ଆସିଛନ୍ତି ସେଇମାନେ କେବଳ ତାଙ୍କ ପାଖକୁ ଯାଉଛନ୍ତି । ତେବେ ଯାହା ଶୁଣିଛି ସେ ସାମାନ୍ୟ ସୁସ୍ଥ ହେଉଛନ୍ତି । ଆଉ ଦୁଇ/ତିନିଦିନ ପରେ ସମ୍ଭବତଃ ତାଙ୍କୁ ଦିଲ୍ଲୀ ନିଆଯିବ । ମୁଁ କହିଲି ରାଜୁ ଭାଇ ମୋତେ ଯେମିତି ହେଲେ ସେ ଖବର ଦେବେ । ରାଜୁ ଭାଇ କହିଲେ ଚେଷ୍ଟା କରିବି । ତେବେ ପ୍ରତିଦିନ ମୋତେ ସେଇ ରିସିପ୍‌ସନକୁ ଆସି ଫୋନ୍ କରି ବୁଝୁଥିବୁ ।

ନେହେରୁଙ୍କ ଅସୁସ୍ଥତା ସମ୍ପର୍କରେ ଜାଣିବା ପାଇଁ ସାଧାରଣ ଲୋକ କେବଳ ନୁହନ୍ତି ବହୁ କଂଗ୍ରେସ ନେତାଙ୍କ ମନରେ ପ୍ରବଳ ଉତ୍‌କଣ୍ଠା ସୃଷ୍ଟି ହୋଇଥିଲା । ପ୍ରତିଦିନ ଖବର କାଗଜ ଅଫିସକୁ ବହୁ ଟେଲିଫୋନ୍ ଆସୁଥାଏ । ଆମେ ଯେଉଁମାନେ କଂଗ୍ରେସ ଅଧିବେଶନ ଖବର ସଂଗ୍ରହ କରୁଥାଉ ଆମକୁ ଅନେକ ପଚାରୁଥା'ନ୍ତି । ଏପରିକି ଅନ୍ୟ ରାଜ୍ୟର ମନ୍ତ୍ରୀ-ମୁଖ୍ୟମନ୍ତ୍ରୀ ଏଥିରୁ ବାଦ୍ ଯାଉ ନଥିଲେ । ମୁଁ ପ୍ରତିଦିନ ରାଜୁଭାଇଙ୍କ ପାଖରୁ ଯେତିକି ଖବର ପାଏ ସେତିକି ଦିଏ । ଏଗାର ତାରିଖ (ଜାନୁଆରୀ-୧୯୬୪) ଦିନ ମୁଁ ରାଜୁଭାଇଙ୍କୁ ପଚାରିଲି ନେହେରୁଙ୍କ ଅବସ୍ଥା ଏଇନେ କିପରି ? ସେ କହିଲେ ଆମକୁ ତ ଭିତରକୁ ଛଡ଼ା ଯାଉନାହିଁ । କେବଳ ଦିଲ୍ଲୀ ଡାକ୍ତରଙ୍କ ପାଖରୁ ଯେତିକି ଶୁଣିଛି ନେହେରୁ ପୂର୍ବ ଅପେକ୍ଷା ସାମାନ୍ୟ ସୁସ୍ଥ ଅଛନ୍ତି । ତେବେ ତାଙ୍କ ବାମ ପାଖ ପକ୍ଷାଘାତ ଅବସ୍ଥାରେ ପରିବର୍ତ୍ତନ ହୋଇ ନାହିଁ । ଆଜି ସେ ଡାହାଣ ପଟ କଡ଼ ଲେଉଟାଇ ଉଠି ବସିଥିଲେ ବୋଲି ସେମାନେ କହୁଥିଲେ । ଆଜି ସୁପ୍ ଖାଇଛନ୍ତି । ସମ୍ଭବତଃ କାଲି ବା ପଅରଦିନ ଦିଲ୍ଲୀ ଚାଲିଯାଇ ପାରନ୍ତି । ତୁ ମତେ କାଲି ଦିନ ଗୋଟାଏ/ ଦେଢ଼ଟା ବେଳକୁ ପଚାର । ଯାହା ହୋଇଥିବ ମୁଁ କହିବି । ତା' ପରଦିନ ଅର୍ଥାତ୍ ୧୨ ତାରିଖ କଂଗ୍ରେସ ଅଧିବେଶନର ଶେଷ ଦିନ । ମୁଁ ତା' ପରଦିନ ବାରଟା ବେଳକୁ ରାଜଭବନକୁ ଫୋନ୍ କଲି । ରାଜୁଭାଇଙ୍କୁ ପଚାରିଲି । ସେ କହିଲେ ଆଜି ସକାଳ ସାତଟା ବେଳେ ଏୟାରଫୋର୍ସ ହେଲିକେପ୍ଟର ଆସିଥିଲା । ନେହେରୁଙ୍କ ପାଇଁ ଏକ ସ୍ପେଶାଲ୍ ଚକଲଗା ଚେୟାର ଦିଲ୍ଲୀରୁ ଆସିଥିଲା । ସେ ଚେୟାରରେ ବସାଇ ତାଙ୍କୁ ତାଙ୍କ ରୁମ୍‌ରୁ ଗଡ଼େଇ ରାଜଭବନ ପୋର୍ଟିକୋରେ ଥିବା ଏକ ଆମ୍ବୁଲାନ୍ସକୁ ନିଆଯାଇଥିଲା । ସେଠାରୁ ସେ ଆମ୍ବୁଲାନ୍ସକୁ ହେଲିକେପ୍ଟରଯାଏ ନିଆଯାଇ ସେଠାରୁ ସେଇ ଚେୟାର ସମେତ ତାଙ୍କୁ ଟେକି ନେଇ ହେଲିକେପ୍ଟରରେ ବସାଇ ଦିଆଗଲା । ସେ ଚାରିବାଟିଆ ଗଲେ ବୋଲି ଶୁଣିଲି । ସେଠାରୁ ବିମାନ ବାହିନୀର ସ୍ୱତନ୍ତ୍ର ବିମାନରେ ତାଙ୍କୁ ଦିଲ୍ଲୀ ନିଆଯାଇଥିବ । ମୁଁ ପଚାରିଲି ନେହେରୁଙ୍କ ଅବସ୍ଥା କିପରି ଥିଲା । ସେ କହିଲେ ଆଠ ତାରିଖରେ ତାଙ୍କୁ ଯେମିତି ଦେଖିଥିଲି ସେଥିରେ ସାମାନ୍ୟ ପରିବର୍ତ୍ତନ ହୋଇଥିଲେ ମଧ ସେ ଅତ୍ୟନ୍ତ ରୁଗ୍ଣ ଓ ବିଷର୍ଣ୍ଣ ଦେଖାଯାଉଥିଲେ । ତଳକୁ ମୁହଁ ପୋତି ବସିଥିଲେ । ସେଦିନ ମୁଁ ସେ ସବୁ କଥା ବର୍ଣ୍ଣନା କରି ମାତୃଭୂମିକୁ ଡାକି ଦେଲି । ସନ୍ଧ୍ୟାରେ ରାଜୁଭାଇଙ୍କ ସହ ତାଙ୍କ ଘରେ ଦେଖାହେଲା । କଥାବାର୍ତ୍ତା ବେଳେ ସେ କହିଲେ ନେହେରୁଙ୍କୁ ଦେଖି ଯାହା ମନେ ହେଲା ତାଙ୍କ ସମୟ ସରି ଆସୁଛି । ଆଉ ବେଶୀଦିନ ନୁହେଁ ।

ଜାନୁଆରୀ ବାର ତାରିଖ ୧୯୬୪ରେ କଂଗ୍ରେସ ଅଧିବେଶନ ଶେଷ ହେଲା । ସବୁ ନେତା ନିଜ ନିଜ ସ୍ଥାନକୁ ଫେରିଗଲେ । ଆମ ପାଖରେ ଥିବା ଜିପ୍‌ଟିରେ ମୁଁ ୧୨ ତାରିଖ ରାତିରେ କଟକ ଫେରିଆସି ତାକୁ ଫେରାଇ ଦେଲି । ପରଦିନ ସକାଳୁ ଗାଧୋଇ ପାଧୋଇ ପ୍ରେସ୍‌କୁ ବାହାରିଲି । ପ୍ରେସ୍‌ରେ ସମଗ୍ର କଂଗ୍ରେସ ଅଧିବେଶନର ଏକ ବିବରଣୀ ବସି ଲେଖିଲି । କିଏ କିଏ ନେତା ଆସିଥିବା ଠାରୁ ଆରମ୍ଭ କରି ନେହେରୁଙ୍କ ଅସୁସ୍ଥତା ସବୁ ଲେଖି ବିଚିବାବୁଙ୍କୁ ଦେଲି । କଂଗ୍ରେସ ଅଧିବେଶନରେ ଗ୍ରହଣ କରାଯାଇଥିବା ପ୍ରସ୍ତାବ ଏବଂ କିଛି ବଡ଼ ବଡ଼ ନେତାଙ୍କ ଭାଷଣ ସବୁ ଠିକେ ଠିକେ ଲେଖିଥିଲି । ବିଚିବାବୁ ତା'ର ଶିରୋନାମା କଲେ 'ଭୁବନେଶ୍ୱରରେ ଐତିହାସିକ କଂଗ୍ରେସ ଅଧିବେଶନ-ସମାଜବାଦୀ ରାଷ୍ଟ୍ର ଗଠନ ପାଇଁ ଆହ୍ୱାନ !' ଏହି ଶିରୋନାମା ତଳେ ମୋର ନାମ ମଧ୍ୟ ଦେଲେ । ଜୀବନରେ ସେଇ ମୋର ପ୍ରଥମ ସ୍ତମ୍ଭଲିଖନ । ଆଜି ତେୟାଳିଶ ବର୍ଷ ପରେ ଯେତେବେଳେ ସେଦିନ ସେଇ ସ୍ମୃତି ମନକୁ ଆସେ ମନରେ ରୋମାଞ୍ଚ ଆଉ ଦୁଃଖ ହୁଏ । ରୋମାଞ୍ଚ ଏଇଥିପାଇଁ ପୁରା ଚାରିକଲମ ନିବନ୍ଧ ପଢ଼ି ତା' ପରଦିନ ମୋତେ ଅନେକ ବନ୍ଧୁ ଅଭିନନ୍ଦନ ଜଣାଇଥିଲେ । ଏପରିକି ରାଜ୍ୟ କଂଗ୍ରେସ ସଭାପତି ବିଜୟ ପାଣି ବିଚିବାବୁଙ୍କୁ ଫୋନ୍ କରି ମୋତେ ଅଭିନନ୍ଦନ ଜଣାଇ ଦେବାକୁ କହିଥିଲେ । ଦୁଃଖ ଏଇଥିପାଇଁ ସାମ୍ବାଦିକ ଜୀବନର ସେଇ ପ୍ରଥମ ସ୍ତମ୍ଭ ଲେଖାଟିକୁ ମୁଁ ରଖିପାରିଲି ନାହିଁ । ଅନେକ ଦିନ ଧରି ମୋ ପାଖରେ ଥିଲା । ମୋର ଅସାବଧାନତା ବଶତଃ ତାହା ନଷ୍ଟ ହୋଇଗଲା । ପରେ ମାତୃଭୂମି ଅଫିସ୍ ଯାଇ ସେ କାଗଜ ଖୋଜିଥିଲି । ମାତ୍ର ମାତୃଭୂମିର ପୁରୁଣା କପି ନାହିଁ ବୋଲି ମୋତେ କୁହାଗଲା । ଆଜି ସ୍ତମ୍ଭକାର ରୂପେ ଜୀବନରେ ଏକ ପରିଚୟ ସୃଷ୍ଟି ହେଲା ବେଳେ ଜୀବନର ପ୍ରଥମ ନିବନ୍ଧଟିକୁ ରଖିପାରିଲି ନାହିଁ । ଛାଡ଼- ଗତସ୍ୟ ଶୋଚନା ନାସ୍ତି ।

ପୂର୍ବରୁ କହିଛି ୧୯୬୪ ମସିହା ମୋର ବୃତ୍ତି ଓ ପ୍ରବୃତ୍ତି କ୍ଷେତ୍ରରେ ଏକ ଗୁରୁତ୍ୱପୂର୍ଣ୍ଣ ବର୍ଷ । ବୃତ୍ତି ହେଲା ସାମ୍ବାଦିକତା ଆଉ ପ୍ରବୃତ୍ତି ହେଲା ସାହିତ୍ୟ । ସେତେବେଳେ ଉତ୍କଳ ସାହିତ୍ୟ ସମାଜ ରାଜ୍ୟରେ ସାହିତ୍ୟ କ୍ଷେତ୍ରରେ ଏକ ଅତି ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଥିଲା । ମୁଁ ସେତେବେଳେ ରାଜ୍ୟରେ ପ୍ରକାଶ ପାଉଥିବା ପତ୍ର ପତ୍ରିକାରେ ନିୟମିତ ଗଳ୍ପ କବିତା ଲେଖୁଥିଲି । ତେବେ ମୁଁ ମୁଖ୍ୟତଃ ଗଳ୍ପ ଲେଖୁଥିଲି । ଦିନେ ସମ୍ଭବତଃ ୧୯୬୪ ଜାନୁଆରୀ ଶେଷ ଭାଗରେ ବିଚିବାବୁ ମୋତେ ପଚାରିଲେ ବରେନ୍ଦ୍ର ବାବୁ ଆପଣ ଉତ୍କଳ ସାହିତ୍ୟ ସମାଜର ସଭ୍ୟ ହୋଇଛନ୍ତି ? ମୁଁ ମନା କଲି । ସେ କହିଲେ ଆରେ ମୁଁ ଭାବିଥିଲି ଆପଣ ହୋଇଛନ୍ତି ବୋଲି । ଆଜି ଆପଣ ଧଡ଼ି(ଉତ୍କଳ ସାହିତ୍ୟ ସମାଜର ପିଅନ)କୁ ଦଶଟଙ୍କା ଦେଇ ରସିଦ୍ ନେଇ ଆସିବେ । ଏଥର ନିର୍ବାଚନରେ ଆପଣ କାର୍ଯ୍ୟକାରୀ କମିଟି ପାଇଁ ପ୍ରତିଦ୍ୱନ୍ଦ୍ୱିତା କରିବେ । ମୁଁ ସେଦିନ ସନ୍ଧ୍ୟାରେ ଧଡ଼ିକୁ ଦଶଟଙ୍କା ଦେଇ ରସିଦ୍ ଆଣିଲି । ଫେବୃଆରୀ ମାସରେ ସାହିତ୍ୟ ସମାଜ କାର୍ଯ୍ୟକାରୀ କମିଟି ବୈଠକରେ ମୋର ସଦସ୍ୟପଦ ସ୍ୱୀକୃତି ଲାଭ କଲା । ସେତେବେଳେ ସାହିତ୍ୟ ସମାଜର ସଭାପତି ଥିଲେ କବି ଅନନ୍ତ ପଟ୍ଟନାୟକ, ଉପସଭାପତି ଥିଲେ ପଠାଣି ପଟ୍ଟନାୟକ ଓ ସଂପାଦକ ଥିଲେ ବିଚିତ୍ରାନନ୍ଦ କର ।

୧୯୬୪ ମେ' ୨୭ ତାରିଖରେ ନେହେରୁଙ୍କ ପରଲୋକ ଗମନ ପରେ ଉତ୍କଳ ସାହିତ୍ୟ ସମାଜ ପକ୍ଷରୁ ଏକ ସ୍ମରଣୀକା ପ୍ରକାଶ ପାଇଁ ନିଷ୍ପତ୍ତି କରାଗଲା । ଏଥିପାଇଁ ରାଜ୍ୟର ଲେଖକମାନଙ୍କୁ ପ୍ରବନ୍ଧ ଓ କବିତା ପଠାଇବା ପାଇଁ ଅନୁରୋଧ କରାଯାଇ ଏକ ପତ୍ର ପଠାଗଲା । ମୋର ସୌଭାଗ୍ୟ ମୋ ନିକଟକୁ ଗୋଟିଏ ପତ୍ର ଆସିଥିଲା । ସଭାପତି ଅନନ୍ତ ପଟ୍ଟନାୟକ ଦିନେ ମୋତେ ମାତୃଭୂମି ଅଫିସ୍‌ରେ କହିଲେ ବରେନ୍ଦ୍ର ଏଭଳି ଏକ ବିଷୟ ବାଛ ଯାହା ଗ୍ରହଣଯୋଗ୍ୟ ହେବ । ମୁଁ ତାଙ୍କୁ କହିଥିଲି ନେହେରୁଙ୍କ ଖେଳ ଆଉ ଖେଳାଳିମାନଙ୍କ ପ୍ରତି ଥିବା ଆଗ୍ରହ ଓ ଶ୍ରଦ୍ଧାକୁ

ନେଇ ମୁଁ ଲେଖିବି ବୋଲି ଭାବିଛି । ଅନନ୍ତ ବାବୁ କହିଲେ, ବାଃ ଭଲ ବିଷୟ ବାଛିଛ । ଶୀଘ୍ର ଲେଖା ଦେଇଦିଅ । ମୋର ସୌଭାଗ୍ୟ ଉତ୍କଳ ସାହିତ୍ୟ ସମାଜର ସେହି ସ୍ମରଣୀକାରେ ମୋର 'ସୁଚପଳ ନେହେରୁ' ଶୀରୋନାମାରେ ଏକ ପ୍ରବନ୍ଧ ପ୍ରକାଶ ପାଇଥିଲା । ଏହି ସ୍ମରଣୀକାରେ ଯେଉଁମାନେ ଲେଖିଥିଲେ ସେମାନଙ୍କ ମଧ୍ୟରେ ଥିଲେ ଓଡ଼ିଶାର ସର୍ବକାଳର କେତେଜଣ ବିଖ୍ୟାତ ଲେଖକ । ଏହି ସ୍ମରଣୀକାରେ ମୋଟ ଏକୋଇଶଟି ପ୍ରବନ୍ଧ ଏବଂ ତେରୋଟି କବିତା ପ୍ରକାଶ ପାଇଥିଲା । ଯେଉଁମାନେ ପ୍ରବନ୍ଧ ଲେଖିଥିଲେ ସେମାନଙ୍କ ମଧ୍ୟରେ ଥିଲେ କାଳିନ୍ଦୀ ଚରଣ ପାଣିଗ୍ରାହୀ, ସଚ୍ଚିଦାନନ୍ଦ ରାଉତରାୟ, ଡଃ କୁଞ୍ଜବିହାରୀ ଦାଶ, ରାଧାନାଥ ରଥ, ଗୁରୁଚରଣ ପଟ୍ଟନାୟକ, ପଠାଣି ପଟ୍ଟନାୟକ, ସୁରେନ୍ଦ୍ର ନାଥ ଦ୍ୱିବେଦୀ, ଶ୍ରଦ୍ଧାକର ସୁପକାରଙ୍କ ସମେତ ଏଇ ଲେଖକ ଏବଂ କବିମାନଙ୍କ ମଧ୍ୟରେ ଥିଲେ ବୈକୁଣ୍ଠ ନାଥ ପଟ୍ଟନାୟକ, ଅନନ୍ତ ପଟ୍ଟନାୟକ, ବୀର କିଶୋର ଦାସ(ଜାତୀୟ କବି), ମନମୋହନ ମିଶ୍ର, ସୀତାକାନ୍ତ ମହାପାତ୍ର ଏବଂ ମୁରାରି ମୋହନ ଜେନା ପ୍ରମୁଖ । ମୋର ଏହା ଉଲ୍ଲେଖ କରିବାର ଏକମାତ୍ର କାରଣ ହେଲା ୧୯୬୪ରେ ମୋର ସାହିତ୍ୟ କ୍ଷେତ୍ରରେ ଯେଉଁ ପରିଚୟର ସୂତ୍ରପାତ ହୋଇଥିଲା ତାହାକୁ ମୁଁ ଆଜି ପର୍ଯ୍ୟନ୍ତ ବଞ୍ଚାଇ ରଖିଛି ଏବଂ ଜୀବନର ଶେଷ ପର୍ଯ୍ୟନ୍ତ ବଞ୍ଚାଇ ରଖିଥିବି । ସାହିତ୍ୟ ମୋର ପ୍ରବୃତ୍ତି ଭାବେ ପିଲାଦିନୁ ରହିଥିଲା । ଆଜି ମୋର କହିବାରେ ଦ୍ୱିଧା ନାହିଁ ସେ ସମୟର ଅନେକ ସାହିତ୍ୟିକ ବନ୍ଧୁଙ୍କର ଆଜି ଆଉ ସୋର୍‌ଶବ୍ଦ ନାହିଁ ।

## -ସାହିତ୍ୟିକ ଜୀବନ - ପ୍ରଥମ ଉପନ୍ୟାସ-

୧୯୬୪ ମସିହାରେ ମୋ ସାହିତ୍ୟିକ ଜୀବନରେ ଆଉ ଏକ ମାଇଲ୍‌ଖୁଣ୍ଟ ହେଲା ମୋର ପ୍ରଥମ ଉପନ୍ୟାସ 'ସନ୍ଧ୍ୟାର ମୁକୁର'ର ପ୍ରକାଶ । ମଳୟ ଉପନ୍ୟାସ ପତ୍ରିକାରେ ସେପ୍ଟେମ୍ବର ସଂଖ୍ୟାରେ ଏହା ପ୍ରକାଶ ପାଇବା ପରେ ଅକ୍ଟୋବର ମାସରେ ଏହା ସ୍ୱତନ୍ତ୍ର ବହି ଆକାରରେ ପ୍ରକାଶ ପାଇଥିଲା । ମୋଟ ବୟାଅଶି ପୃଷ୍ଠାର ଏହି ଉପନ୍ୟାସର ପ୍ରଚ୍ଛଦପଟ୍ଟ ଛବି ଆଙ୍କିଥିଲେ ବିଖ୍ୟାତ ଚିତ୍ରଶିଳ୍ପୀ ଗୋପାଳ କାନୁନ୍‌ଗୋ । ଏଥିସହ ଆମ ପ୍ରଥମ ଉପନ୍ୟାସ 'ସନ୍ଧ୍ୟାର ମୁକୁର'ର ପ୍ରଚ୍ଛଦପଟ୍ଟ ଛବି ଦେଲୁ । ବର୍ତ୍ତମାନର ପ୍ରଚ୍ଛଦପଟ୍ଟ ଏବଂ ଚାଳିଶ/ ପଚାଳିଶ ବର୍ଷ ତଳର ପ୍ରଚ୍ଛଦପଟ୍ଟ ଯେଉଁମାନେ ଦେଖିବେ ସେମାନେ ଶିଳ୍ପଗତ ଭିନ୍ନତା କଳ୍ପନା କରିପାରିବେ ।

ମୋର ଏଇ ପ୍ରଥମ ଉପନ୍ୟାସ ପ୍ରକାଶ ପାଇବା ପରେ ସ୍ୱାଭାବିକ ଭାବେ ମୁଁ ରୋମାଞ୍ଚିତ ହୋଇ ଉଠିଥିଲି । ସେଇ ସମୟର ସେ ଆନନ୍ଦ ଆଜି ମନେ ପଡ଼ିଲେ ମନରେ ଅଦ୍ଭୁତ ଏକ ଶିହରଣ ସୃଷ୍ଟିହୁଏ । ସେତେବେଳେ ସାହିତ୍ୟିକ ମହଲରେ ଗୋଟିଏ ଉପନ୍ୟାସ ସୃଷ୍ଟିକୁ ବେଶ୍ ଗୁରୁତ୍ୱ ଦିଆଯାଉଥିଲା । ମୋର ମନେ ଅଛି ମୋର ଉପନ୍ୟାସକୁ ନେଇ ବାଙ୍କୀବଜାର ବିନୋଦ ବିହାରୀରେ ବେଶ୍ ଆଲୋଚନା ହୋଇଥିଲା ।

ମଳୟ ପତ୍ରିକାରେ ମୋର ଉପନ୍ୟାସ ସନ୍ଧ୍ୟାର ମୁକୁର ପ୍ରକାଶ ପାଇବା ପରେ ଜନ ସାହିତ୍ୟର ସମ୍ପାଦକ ବଂଶୀଧର ଭୂୟାଁ ମତେ ଦିନେ ଦେଖି ଜନସାହିତ୍ୟ ପାଇଁ ଏକ ଉପନ୍ୟାସ ଲେଖି ଦେବାପାଇଁ କହିଲେ । ମୋର ସେତେବେଳେ ଏହି ପ୍ରଥମ ଉପନ୍ୟାସ କିଛି ବନ୍ଧୁଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ସନ୍ଧ୍ୟାର ମୁକୁର ମୁଖ୍ୟତଃ ଏକ କିଶୋର ପ୍ରେମ କାହାଣୀ ଏବଂ ବିୟୋଗାତ୍ମକ ଉପନ୍ୟାସ ଥିଲା । ଗଳ୍ପ ଶେଷ ହେଲା ବେଳକୁ ଉଭୟ ପ୍ରେମିକ ପ୍ରେମିକା ପ୍ରାଣ ହରାଉଛନ୍ତି । ବଂଶୀଧର ଭୂୟାଁଙ୍କ 'ଜନ ସାହିତ୍ୟ' ଉପନ୍ୟାସ ପତ୍ରିକାରେ ସେତେବେଳର ବହୁ ନାମକରା ଔପନ୍ୟାସିକ ଉପନ୍ୟାସ ଲେଖୁଥିଲେ । ବିଭୂତି ପଟ୍ଟନାୟକଙ୍କର ବୋଧହୁଏ ତିନି/ ଚାରୋଟି ଉପନ୍ୟାସ

ଜନ ସାହିତ୍ୟରେ ପ୍ରକାଶ ପାଇବା ପରେ ପୁସ୍ତକ ଆକାରରେ ପ୍ରକାଶ ପାଇଲା । ମୁଁ ବଂଶୀଧର ବାବୁଙ୍କ କଥାରେ ବେଶ୍ ଉତ୍ସାହିତ ହୋଇ ମୋର ପରବର୍ତ୍ତିଉପନ୍ୟାସ ଲେଖିବା ପାଇଁ ଉଦ୍ୟମ ଆରମ୍ଭ କରିଦେଲି । ବାଙ୍କା ବଜାରରେ ମଳୟ ପତ୍ରିକା ଅଫିସ୍ ବହି ଦୋକାନ ସାମନାରେ ଏକ ଲୁଗା ଦୋକାନ ଥିଲା । ତା'ର ମାଲିକ ଥିଲେ ସାଗର ମଲ ଅଗ୍ରଓ୍ୱାଲ । ଦୁଇଟି ଦୋକାନ ଛାଡ଼ି ଆଉ ଏକ ବହି ଦୋକାନ ଥିଲା । ସେଠି କୋହିନୁର ପଞ୍ଜିକା ପ୍ରକାଶ ପାଉଥିଲା । ତା'ର ମାଲିକ ଥିଲେ ଜଣେ ମୁସଲମାନ । ସେମାନେ ତିନି/ଚାରି ଭାଇ । 'ଚକ୍ରାନ୍ତ' ନାମରେ ସେମାନେ ଏକ ଡିଟେକ୍ଟିଭ୍ ଉପନ୍ୟାସ ପତ୍ରିକା ପ୍ରକାଶ କରୁଥିଲେ । ଥରେ ମୁଁ ସାଗର ମଲ ଦୋକାନରେ ବସି ଚା' ପିଉଥିବା ବେଳେ ସାଗର ମଲ ମୋତେ କହିଲେ ଧଳ ବାବୁ, ଆମେ ଏକ ଡିଟେକ୍ଟିଭ୍ଉପନ୍ୟାସ ପତ୍ରିକା ପ୍ରକାଶ କଲେ କିପରି ହୁଅନ୍ତା ? ମୁଁ ସାଗର ମଲ କଥା ଶୁଣି ରୀତିମତ ଆଶ୍ଚର୍ଯ୍ୟ । ସାଗର ମଲ ଯେ ପତ୍ରିକା ପ୍ରକାଶ କରିବ ସେ କଥା ମୁଁ କଳ୍ପନାରେ ମଧ୍ୟ ଭାବି ନଥିଲି । ମୁଁ ତା' କଥା ଶୁଣି ଉତ୍ସାହିତ ହୋଇ ପଡ଼ିଲି । ତା'ପରେ କହିଲି ସାଗର କିନ୍ତୁ ଅନ୍ତତଃ ଛ'ଟି ମାସିକିଆ ପତ୍ରିକା ପ୍ରକାଶ ପାଇଁ ପ୍ରଥମେ ଟଙ୍କା ରଖି ପତ୍ରିକା ପ୍ରକାଶ କର । ସାଗର କହିଲା ଆପଣ ଟଙ୍କା ପାଇଁ ଚିନ୍ତା କରନ୍ତୁ ନାହିଁ । ସେ କଥା ମୁଁ ବୁଝିବି । ଆସନ୍ତା ମାସେ/ ଦି'ମାସ ମଧ୍ୟରେ ଆମ ପତ୍ରିକା ଯେପରି ପ୍ରକାଶ ପାଏ । ମୁଁ ସେ ପତ୍ରିକାର ନାମକରଣ କ'ଣ ହେବ କେଉଁଠି ଛପା ହେବ ସେ କାମରେ ଲାଗି ପଡ଼ିଲି । ଏଣେ 'ମାତୃଭୂମି'ର ରିପୋର୍ଟିଂ ତେଣେ ପତ୍ରିକାର କାମ । ବହୁ ଭାବିଚିନ୍ତି ପତ୍ରିକାର ନାମ ଦେଲୁ 'ଗଣ-ସାହିତ୍ୟ' । 'ଜନ ସାହିତ୍ୟ'କୁ ଲକ୍ଷ୍ୟ ରଖି ଏହାର ନାମ ଦେଲୁ 'ଗଣ-ସାହିତ୍ୟ' । ସଂପାଦକ - ବରେନ୍ଦ୍ର କୃଷ୍ଣ ଧଳ, ପ୍ରକାଶକ- ସାଗର ମଲ ଅଗ୍ରଓ୍ୱାଲା । ନାଁ ରେଜିଷ୍ଟ୍ରେସନ୍ ପାଇଁ ଆବେଦନ କରି ଡିଟେକ୍ଟିଭ୍ ଉପନ୍ୟାସ ସଂଗ୍ରହ ପାଇଁ ଲାଗି ପଡ଼ିଲୁ । ଆମ ଗାଁର କୃଷ୍ଣ ଭାଇନା(ପ୍ରକୃତ ନାମ ପ୍ରଫୁଲ ଚନ୍ଦ୍ର ମିଶ୍ର) ସେତେବେଳେ ବିକ୍ରିକର ବିଭାଗରେ କିରାଣି ଥିଲେ । ସେ ଡିଟେକ୍ଟିଭ୍ ଉପନ୍ୟାସ ଲେଖୁଥିବା ମୋତେ କହିଥିଲେ । ଦିନେ ସନ୍ଧ୍ୟାରେ ତାଙ୍କ ଘରକୁ ଗଲି । ସେ ଘରେ ଥିଲେ । ମତେ ଦେଖି ଖୁସି ହେଲେ । ମୁଁ ତାଙ୍କୁ ମୋ ଆସିବାର ଅଭିପ୍ରାୟ କହିଲି । ସେ ମୋ ମୁହଁକୁ ଚାହିଁଲେ । କହିଲେ 'ବରି, ତୁ ସତ କହୁଛୁ । ମୁଁ ମୋର ଉପନ୍ୟାସରୁ ଖଣ୍ଡିଏ ବହି ତାଙ୍କୁ ଦେଲି । ସିଏ ବହିଟି ହାତରେ ଧରି କହିଲେ- ବରି, ତୁ ପ୍ରକୃତରେ ଆମ ବାଙ୍କୀର ଗର୍ବ । ଏତେ ପିଲାଦିନୁ ତୁ ଉପନ୍ୟାସ ଲେଖି ସାରିଲୁଣି । ମୁଁ କହିଲି ଭାଇନା, ଆପଣଙ୍କର ଡିଟେକ୍ଟିଭ୍ ଉପନ୍ୟାସ ଯଦି ଶେଷ ହୋଇଥାଏ ମୋତେ ଦିଅନ୍ତୁ । ଗଣ ସାହିତ୍ୟର ପ୍ରଥମ ସଂଖ୍ୟାରେ ଆପଣଙ୍କ ବହି ଛପା ହେବ । ସେ ପ୍ରଥମେ ମୋ କଥାକୁ ବିଶ୍ୱାସ କଲେ ନାହିଁ । ତା'ପରେ କହିଲେ, 'ମୁଁ ତତେ ତିନି/ଚାରିଦିନ ଭିତରେ ଦେଇଦେବି ।'

ଆଜି କେହି କଳ୍ପନା କରିପାରିବେନି ସେଦିନ ମୁଁ କି ଆନନ୍ଦିତ ହୋଇଥିଲି । ସେତେବେଳେ ମୋ ବୟସ ମାତ୍ର ତେଇଶ/ଚବିଶ ବର୍ଷ । ଏଇ ବୟସରେ ଗୋଟିଏ ଉପନ୍ୟାସ ପ୍ରକାଶ ପାଇବା ଏବଂ ଏକ ଉପନ୍ୟାସ ପତ୍ରିକାର ସଂପାଦକ ହେବା କମ୍ କଥା ନୁହେଁ । 'ଗଣ ସାହିତ୍ୟ' କେଉଁଠି ଛପା ହେବ ସେକଥା ମୁଁ ସ୍ଥିର କଲି । ଚାନ୍ଦିନୀଚୌକ ଛକରେ ଚିନ୍ତାମଣି ମିଶ୍ରଙ୍କ 'ନବଜୀବନ' ପତ୍ରିକା ପ୍ରକାଶ ପାଉଥିଲା । ତାଙ୍କର ନିଜର ପ୍ରେସ୍ ଥିଲା । ସେଇ ପ୍ରେସ୍‌ରେ 'ଗଣ ସାହିତ୍ୟ' ଛାପିବା ପାଇଁ ଆମେ ସ୍ଥିର କଲୁ । ଚିନ୍ତାମଣି ମିଶ୍ର ଓଡ଼ିଶାର ଜଣେ ଜଣାଶୁଣା ବ୍ୟକ୍ତିତ୍ୱ ଥିଲେ । ଆମ ଗାଁର ଆଡ଼ଭୋକେଟ ପ୍ରମୋଦ ଚନ୍ଦ୍ର ମିଶ୍ର ତାଙ୍କର ବଡ଼ ଜ୍ୱାଇଁ ଏବଂ ବିଖ୍ୟାତ ଅର୍ଥନୀତିଜ୍ଞ ପ୍ରଫେସର ବୈଦ୍ୟନାଥ ମିଶ୍ର ତାଙ୍କର ସାନ ଜ୍ୱାଇଁ । ବାଙ୍କୀର ଲୋକ ହିସାବରେ ମୁଁ ତାଙ୍କ ସହ ପରିଚିତ ହୋଇଥିଲି । ତେବେ ମୋତେ ସେ ମାତୃଭୂମିର ଷ୍ଟାଫ୍‌ରିପୋର୍ଟର ହିସାବରେ ଅଧିକ ଶ୍ରଦ୍ଧା କରୁଥିଲେ । ନବଜୀବନରେ ମୋର ସେତେବେଳେ ଦୁଇଟି ଗଳ୍ପ ମଧ୍ୟ ପ୍ରକାଶ ପାଇଥିଲା ।

କୃଷ୍ଣ ଭାଇନାଙ୍କ ଠାରୁ ତାଙ୍କ ପାଣ୍ଡୁଲିପି ଆଣି ପ୍ରେସ୍‌ରେ ଦେଲି । ଆଜି ଯାହା ମନେ ପଡୁଛି ସେ ଡିଟେକ୍ଟିଭ୍ ଉପନ୍ୟାସର ନାଁ ଥିଲା 'ପ୍ରେତାତ୍ମାର ପ୍ରତିଶୋଧ' । ଶହେ ପୃଷ୍ଠାର ଏହି ଡିଟେକ୍ଟିଭ୍ ଉପନ୍ୟାସ ସେତେବେଳେ ପାଠକ ମହଲରେ ଆଦୃତ ହୋଇଥିଲା । ଗଣ ସାହିତ୍ୟ ଉପନ୍ୟାସ ପତ୍ରିକା ଚାରୋଟି ସଂଖ୍ୟା ପରେ ମୁଁ ଆଉ ସେଥିରେ ସଂପୃକ୍ତ ରହିଲି ନାହିଁ । ତା'ର କାରଣ ହେଲା ସାଗର ମଲ ଅଗ୍ରୱାଲ ସଂପାଦକ ରୂପେ ମୋ ନାମ ସହ ତା' ନାମ ରଖିବାକୁ ଚାହିଁଲା । ଏପରିକି ପଞ୍ଚମ ସଂଖ୍ୟାରେ ମୁଁ କିଛି ଜାଣିବା ପୂର୍ବରୁ ସଂପାଦକ ରୂପେ ତାଙ୍କ ନାମ ତଳକୁ ମୋ ନାମ ରହିଥିଲା । ଷଷ୍ଠ ସଂଖ୍ୟାରେ ମୁଁ ଆଉ ସେ ପତ୍ରିକାରେ ମୋ ନାମ ଦେବାପାଇଁ ପ୍ରେସ୍‌ରେ ମନା କରିଦେଇ ଆସିଲି । ଫଳରେ ଷଷ୍ଠ ସଂଖ୍ୟା ଆଉ ପ୍ରକାଶ ପାଇଲା ନାହିଁ । କାରଣ ଯେଉଁ ଡିଟେକ୍ଟିଭ୍ ଉପନ୍ୟାସ ମୁଁ ପ୍ରେସ୍‌ରେ ନେଇ ଦେଇଥିଲି ତାହା ଫେରାଇ ଆଣି ଲେଖକଙ୍କୁ ଦେଇଦେଲି । ସାଗର ତା'ପରେ ମୋ ପାଖକୁ ଆସିଥିଲା । ମାତ୍ର ମୁଁ ଆଉ ସେଥିରେ ମନ ଦେଲି ନାହିଁ । ପତ୍ରିକା ସଂପାଦନା ସେଇଠୁ ଇତି ହେଲା ।

ଉତ୍କଳ ସାହିତ୍ୟ ସମାଜର ନିର୍ବାଚନ ପାଇଁ ସେତେବେଳେ ଖୁବ୍ ଜୋର୍‌ସୋର୍ ପ୍ରତିଦ୍ୱନ୍ଦ୍ୱିତା ଆରମ୍ଭ ହୋଇଥାଏ । ମୋତେ ଅନନ୍ତ ପଟ୍ଟନାୟକ ଏବଂ ବିଚିବାବୁ ସେ କାମରେ ଲଗାଇ ଦେଲେ । ଗୋଟିଏ ପଟେ ରବି ସିଂହ, ରବି ମହାପାତ୍ର କିଛି ସାହିତ୍ୟିକଙ୍କୁ ଧରି ତାଙ୍କ ପ୍ରଚାର ଚଳାଇବା ବେଳେ ଅନ୍ୟ ପଟେ ମୁରାରୀ ଜେନା, ମୁଁ ଏବଂ ଆଉ କେତେଜଣ ଅନନ୍ତ ବାବୁ, ବିଚିବାବୁଙ୍କ ପାନେଲ୍ ପାଇଁ ପ୍ରଚାରରେ ଲାଗି ଯାଇଥିଲୁ । ସେତେବେଳେ ଉତ୍କଳ ସାହିତ୍ୟ ସମାଜରେ ବେଶ୍ ନାମକରା ସାହିତ୍ୟିକ ସଭ୍ୟ ଥିଲେ । ଯେଉଁମାନେ ଥିଲେ ସମସ୍ତେ ପ୍ରାୟ ଭୋଟ୍ ଦେବାକୁ ଆସୁଥିଲେ । ଭୋଟ ହେଲା । ଭୋଟ୍‌ରେ ଅନନ୍ତ ବାବୁ- ବିଚିବାବୁଙ୍କ ପାନେଲ ବିଜୟଲାଭ କଲା । ଗୋଠ ମାତିଲେ ହଡ଼ା ମାତେ ନ୍ୟାୟରେ ମୁଁ ମଧ୍ୟ ନିର୍ବାଚିତ ହୋଇଗଲି । ସମ୍ଭବତଃ ଉତ୍କଳ ସାହିତ୍ୟ ସମାଜ କାର୍ଯ୍ୟକାରୀ କମିଟିରେ ମୁଁ ସର୍ବକନିଷ୍ଠ ସଦସ୍ୟ ଥିଲି । ତେବେ ମୁଁ ପାଞ୍ଚ/ ଛଅମାସ ପରେ ଭୁବନେଶ୍ୱର ବଦଳି ହେବାରୁ କାର୍ଯ୍ୟକାରୀ କମିଟିରୁ ଇସ୍ତଫା ଦେବାକୁ ପଡ଼ିଲା । କାରଣ ସେତେବେଳେ ସାହିତ୍ୟ ସମାଜ ସମ୍ବିଧାନ ଅନୁସାରେ କଟକ ବାହାରର ସାହିତ୍ୟିକ କାର୍ଯ୍ୟକାରୀ କମିଟିର ସଦସ୍ୟ ରହିପାରିବେ ନାହିଁ । ଏବେ ଏହାର ପରିବର୍ତ୍ତନ ହେଲାଣି କି ନାହିଁ ସେ ସମ୍ପର୍କରେ ଆଉ କିଛି ଖବର ରଖିନି ।

ଏସବୁ ସାଙ୍ଗେ ସାଙ୍ଗେ ମୁଁ ମୋର ପରବର୍ତ୍ତିଉପନ୍ୟାସ ଲେଖିବା ଆରମ୍ଭ କରି ଦେଇଥାଏ । ମଝିରେ ମଝିରେ ଗଳ୍ପ ଲେଖୁଥାଏ । ସମୟ ମିଳିଲେ ବାଙ୍କା ବଜାର- ବିନୋଦ ବିହାରୀ ବହି ବଜାରରେ ଆଡ୍ଡା ମାରୁଥାଏ । ସେତେବେଳେ ମୁଖ୍ୟତଃ ଫ୍ରେଣ୍ଡସ୍ ପବ୍ଲିଶର୍ସ, ସାହିତ୍ୟ ସଂସାରରେ ସାହିତ୍ୟିକ ବିଶେଷ କରି ଯୁବ ସାହିତ୍ୟିକମାନଙ୍କର ଆଡ୍ଡା ଥାଏ । ସାହିତ୍ୟ ସଂସାରରେ ମୋର ଯାହା ମନେ ପଡୁଛି ମୋ ସମେତ ବିଭୂତି ପଟ୍ଟନାୟକଙ୍କୁ ଛାଡ଼ି ଦେଲେ ଭାଗିରଥି ନେପାକ, ଭଗବାନ ନାୟକ ବର୍ମା, ରାହାସ ରାୟ ପ୍ରମୁଖ ଆସୁଥିଲେ । ଫ୍ରେଣ୍ଡସ୍ ପବ୍ଲିଶର୍ସରେ ମୁଁ, ବିଭୂତି ବାବୁ, ପ୍ରସନ୍ନ ମହାପାତ୍ର, ସରୋଜ ମହାନ୍ତି, ମହେଶ୍ୱର ମୂଳିଆ ପ୍ରଭୃତି କେତେକ ବନ୍ଧୁ ଆସୁଥା'ନ୍ତି । ମହେଶ୍ୱର ମୂଳିଆଙ୍କର ସେତେବେଳେ 'ଓଡ଼ିଆ ପ୍ରେମ କବିତା' ନାମରେ ଏକ କବିତା ବହି ଫ୍ରେଣ୍ଡସ୍ ଛାପିଥାଏ । ତାହା ସେତେବେଳେ ବେଶ୍ ଆଲୋଚନା ହେଉଥାଏ । ତା'ପରେ ମହେଶ୍ୱର ମୂଳିଆ ଆଉ କବିତା ଲେଖାରେ ବିଶେଷ ମନ ଦେଲେ ନାହିଁ । ସେ ପ୍ରଜାତନ୍ତ୍ରର ସହ ସଂପାଦକ ଥିଲେ ।

ମୁଁ ମାତୃଭୂମିର କଟକ ପାଇଁ ଷ୍ଟାଫ୍ ରିପୋର୍ଟର, ସ୍ପୋଟ୍ସ ରିପୋର୍ଟର ସାଙ୍ଗକୁ ରବିବାର ମାତୃଭୂମି ଦାୟିତ୍ୱରେ ମଧ୍ୟ ଥିଲି । ପ୍ରଥମ ଦୁଇଟି ଦାୟିତ୍ୱ ଅପେକ୍ଷା ଶେଷ ଦାୟିତ୍ୱଟି ମୋ ପାଇଁ ବଡ଼ ଅସୁବିଧାଜନକ ବ୍ୟବସ୍ଥା ଥିଲା । ରବିବାର ମାତୃଭୂମି ପ୍ରଥମେ ଆଠପୃଷ୍ଠା ଥିଲା । ମାତ୍ର ୧୯୬୩ରୁ ଏହାକୁ ଚାରିପୃଷ୍ଠା କରି ଦିଆଗଲା । ପ୍ରଥମ ପୃଷ୍ଠାରେ ବିଶ୍ୱ ବିଖ୍ୟାତ କଥା ସାହିତ୍ୟ ଦୁଇଟି ବା ତିନୋଟି ସ୍ତମ୍ଭ ଜାଗା ନିଏ । ବାକି ପାଞ୍ଚଟି ସ୍ତମ୍ଭ ମଧ୍ୟରୁ ଏକ ପ୍ରବନ୍ଧ, ବୁଲା ଫକିରର ଝୁଲାମୁଣି ଭଳି କେତେକ ବିଷୟ ସ୍ଥାନ ପାଏ । ଭିତର ଦୁଇ ପୃଷ୍ଠାର ଗୋଟିଏ ପୃଷ୍ଠା 'କିଶୋର ଫଉଜ' ଶିରୋନାମାରେ କିଶୋର କିଶୋରୀମାନଙ୍କ ପାଇଁ । ଆଉ ଗୋଟିଏ ପୃଷ୍ଠାରେ ନୂଆ ବିଜ୍ଞାନ ଉଦ୍ଭାବନ, ବିଶ୍ୱ ବିଖ୍ୟାତ ଗୁପ୍ତଚର କାହାଣୀ ଏବଂ ଶେଷ ପୃଷ୍ଠାରେ ପାଠକଙ୍କ ଜାଣିବା ପାଇଁ କେତେକ ତଥ୍ୟ ସହ ଗୋଟିଏ ଦୁଇଟି ପ୍ରବନ୍ଧ ସ୍ଥାନ ପାଏ । ଏଇ ବିଶ୍ୱ ବିଖ୍ୟାତ ଗୁପ୍ତଚର କାହାଣୀ ମତେ ଲେଖିବାକୁ ପଡ଼େ । ତେଣୁ ଅନେକ ଆଡୁ ଅନେକ ବହି ପତ୍ର-ପତ୍ରିକା ଯୋଗାଡ଼ କରିବାକୁ ପଡ଼େ । ଏହା ଅତ୍ୟନ୍ତ କଷ୍ଟକର ବ୍ୟାପାର ଥିଲା । କାରଣ ଚାରି/ପାଞ୍ଚ କଲମ ବା ସ୍ଥଳ ବିଶେଷରେ ଛ' କଲମ ପର୍ଯ୍ୟନ୍ତ ଇଂରାଜୀରୁ ଅନୁବାଦ କରିବାକୁ ପଡ଼େ । ତାକୁ ଲେଖି ମୁଁ କୃଷ୍ଣପ୍ରସାଦ ପଟ୍ଟନାୟକ(ମାତୃଭୂମିର ବରିଷ୍ଠ ସହ ସଂପାଦକ ଓ ବିଶ୍ୱବିଖ୍ୟାତ କଥା ସାହିତ୍ୟର ଲେଖକ)ଙ୍କୁ ଦେଖାଏ । ସେ ତା'ର ଭାଷାଗତ ତ୍ରୁଟି ଏବଂ ଅନ୍ୟକୌଣସି ତ୍ରୁଟି ଥିଲେ ତାକୁ ସଂଶୋଧନ କରି ଦିଅନ୍ତି । ତେବେ ସବୁଠାରୁ କଷ୍ଟଦାୟକ ବିଷୟଟି ମୋ ପାଇଁ ଥାଏ ଏଥିରେ ମୋର ନାଁ ଉଲ୍ଲେଖ ରହେ ନାହିଁ । ସେହିଭଳି ବିଶ୍ୱବିଖ୍ୟାତ କଥା ସାହିତ୍ୟରେ କୃଷ୍ଣବାବୁଙ୍କ ନାମ ମଧ୍ୟ ରହେ ନାହିଁ । କାହିଁକି ଏ ପ୍ରକାର ନିୟମ ହୋଇଥିଲା ତା' ମୁଁ ଜାଣେ ନାହିଁ । ତେବେ ତା'ର ପ୍ରତିବାଦ ମଧ୍ୟ ମୁଁ କେବେ କରି ନାହିଁ।

## -ଛାତ୍ର ଆନ୍ଦୋଳନ-

ଉଣେଇଶ ଚଉଷଠି ମସିହା ସେପ୍ଟେମ୍ବର ମାସରେ ଭୁବନେଶ୍ୱର-କଟକରେ ଦୁଇଟି ବଡ଼ ଧରଣର ଛାତ୍ର ଆନ୍ଦୋଳନ ସଂଗଠିତ ହୋଇଥିଲା । ପ୍ରଥମଟି ହୋଇଥିଲା ସେପ୍ଟେମ୍ବର ୨ ତାରିଖରେ ଏବଂ ଅନ୍ୟଟି ସେହିମାସ ୨୬ ତାରିଖରେ।

ସେପ୍ଟେମ୍ବର ୨ ତାରିଖ ସକାଳେ ଓଡ଼ିଶା ରୋଡ଼ ଟ୍ରାନ୍ସପୋର୍ଟ କମ୍ପାନୀର ଗୋଟିଏ ବସ୍‌ରେ କଣ୍ଡକ୍ଟର ଓ କୃଷି ବିଶ୍ୱବିଦ୍ୟାଳୟର ଜଣେ ଛାତ୍ର ମଧ୍ୟରେ ଟିକେଟକୁ ନେଇ ଗୋଳମାଳ ହୋଇଥିଲା । କଟକରୁ ଆସୁଥିବା ଏହି ବସ୍‌ରେ ସଂପୃକ୍ତ ଛାତ୍ର ବସ୍‌ରେ ଚଢ଼ି ବସିଥିବା ବେଳେ ବାଟରେ କଣ୍ଡକ୍ଟର ତାଙ୍କୁ ଟିକେଟ ପାଇଁ ପଇସା ମାଗିଥିଲେ । ଛାତ୍ର ଜଣକ ପଇସା ଦେଇଛି ବୋଲି ଦାବି କରିବାରେ ଗୋଳମାଳ ହୋଇଥିଲା ଏବଂ ଦୁହିଁଙ୍କ ମଧ୍ୟରେ ହାତାହାତି ହୋଇଥିଲା । ଏହି ଗୋଳମାଳରେ ଛାତ୍ରଟିକୁ କଣ୍ଡକ୍ଟର ମାଡ଼ ଦେଇ ମୁହଁ ଫଟାଇ ଦେଇଥିଲା ବୋଲି ଅଭିଯୋଗ ହୋଇଥିଲା । ଛାତ୍ରଟି ଭୁବନେଶ୍ୱରରେ ବସ୍‌ରୁ ଓହ୍ଲାଇ କ୍ୟାପିଟାଲ୍ ଥାନାରେ କଣ୍ଡକ୍ଟର ବିରୁଦ୍ଧରେ ଏଫ୍.ଆଇ.ଆର୍. ଦେଇଥିଲା । ସେତେବେଳେ ଥାନା ସାମନାରେ ବସ୍‌ଷ୍ଟାଣ୍ଡ ଥିଲା । ଆଜି ଯେଉଁଠି ରାଜଧାନୀ ପୂଜା ସମିତି ଅଛି । ପୋଲିସ୍ ଏହି ଅଭିଯୋଗ ଉପରେ ସଂପୃକ୍ତ କଣ୍ଡକ୍ଟରଙ୍କୁ ଗିରଫ କରିଥିଲା । ଏହି ଘଟଣା ପରେ ସଂପୃକ୍ତ ଛାତ୍ର କଲେଜକୁ ଫେରି ଯାଇଥିଲେ । ମାତ୍ର ଦିନ ପ୍ରାୟ ଦୁଇଟା ବେଳକୁ କୃଷି ମହାବିଦ୍ୟାଳୟର ଦଳେ ଛାତ୍ର ସ୍ଲୋଗାନ୍ ଦେଇ କ୍ୟାପିଟାଲ ଥାନା ନିକଟକୁ ଆସିଥିଲେ । ସେମାନେ ଥାନା ହତାରେ ଧସେଇ ପଶିବା ସହ ସଂପୃକ୍ତ କଣ୍ଡକ୍ଟରଙ୍କୁ ସେମାନଙ୍କ ହାତରେ ଦେବାକୁ ଦାବି କରିଥିଲେ । ମାତ୍ର ପୋଲିସ୍ ସେମାନଙ୍କ କଥା ଶୁଣି ନଥିଲେ ଏବଂ ସେମାନଙ୍କ ଉପରେ ଲାଠି ଚାର୍ଜ କରିଥିଲେ । ଅଳ୍ପ ସମୟ ପରେ ବି.ଜେ.ବି. କଲେଜର ଅନେକ ଛାତ୍ର ସେମାନଙ୍କ ସହ ଯୋଗ ଦେଇଥିଲେ । ସେମାନେ ଥାନା ସାମନା ବସ୍‌ଷ୍ଟାଣ୍ଡରେ ଥିବା ଓ.ଆର୍.ଟି.

କମ୍ପାନୀର କିଛି ବସ୍ ଭଙ୍ଗାରୁଜା କରିବା ସଙ୍ଗେ ସଙ୍ଗେ ବିଧାନସଭା ଆଡ଼କୁ ଯାଇଥିଲେ । ସେଦିନ ଥିଲା ମଙ୍ଗଳବାର-କ୍ୟାପିଟାଲ୍ ହାଟପାଳି । ତେଣୁ କ୍ୟାପିଟାଲ୍ ଥାନା ପାଖରେ ପ୍ରବଳ ଗହଳି ହୋଇଥିଲା । ଏହି ଛାତ୍ରମାନଙ୍କ ସହ କିଛି ଅଣଛାତ୍ର ମଧ ଯୋଗ ଦେଇଥିଲେ । ସେତେବେଳେ ବିଧାନସଭାର ଅଧିବେଶନ ଚାଲିଥାଏ । ଛାତ୍ରମାନେ ବିଧାନସଭାରେ ପହଞ୍ଚିବା ବେଳେ ବିଧାନସଭା ଲଞ୍ଚ୍‌ବ୍ରେକ୍ ପରେ ଆରମ୍ଭ ହେଉଥାଏ । ହଠାତ୍ ପ୍ରବଳ ପାଟିତୁଣ୍ଡ କରି ଏହି ଛାତ୍ର-ଅଣଛାତ୍ରମାନେ ବିଧାନସଭା ଦର୍ଶକ ଗ୍ୟାଲେରୀ, ପ୍ରେସ୍ ଗ୍ୟାଲେରୀ ଭିତରେ ପଶି ଯାଇଥିଲେ । ଆମେ ଖବର କାଗଜବାଲାଏ ଏପ୍ରକାର ପରିସ୍ଥିତି ପାଇଁ ପ୍ରସ୍ତୁତ ନଥିଲୁ । ମୁଁ ପୂର୍ବରୁ କହିଛି ସେତେବେଳେ ଓଡ଼ିଶାରେ ମାତ୍ର ଚାରୋଟି ଖବର କାଗଜ ପ୍ରକାଶ ପାଉଥାଏ । ମୁଁ ମାତୃଭୂମିର କଟକ ଷ୍ଟାଫ୍ ପ୍ରତିନିଧି ଥିଲେ ମଧ ସେହିବର୍ଷ ଫେବୃୟାରୀ-ମାର୍ଚ୍ଚ ବଜେଟ୍ ଅଧିବେଶନର ବିଧାନସଭା ରିପୋର୍ଟିଂ ପାଇଁ ମୋତେ ପଠା ଯାଉଥିଲା । ଏ ଅବସ୍ଥ ଦେଖି ମୋତେ ନାରଣ ବାବୁ (ସମାଜ) କହିଲେ, ବରେନ୍ଦ୍ର ତଳେ ଯାଇ ଦେଖ କ'ଣ ହେଉଛି ? ମୁଁ ଏହି ଅବସ୍ଥା ଦେଖି ତଳକୁ ଚାଲି ଆସିଲି । ସେତେବେଳକୁ ଅନେକ ପୋଲିସ୍ ବିଧାନସଭାରେ ପହଞ୍ଚି ଗଲେଣି । ମାତ୍ର ଏକ ଅଭିନବ ଦୃଶ୍ୟ ତଳେ ଅଭିନୀତ ହେଲା । ମୁଖ୍ୟମନ୍ତ୍ରୀ ବୀରେନ୍ ମିତ୍ର ବୁଲି ବୁଲି ପୋଲିସ୍‌ମାନଙ୍କୁ ଛାତ୍ରମାନଙ୍କ ବିରୁଦ୍ଧରେ କୌଣସି କାର୍ଯ୍ୟାନୁଷ୍ଠାନ ଗ୍ରହଣ ନକରିବା ପାଇଁ ବଡ଼ ପାଟିରେ କହୁଥିଲେ । ସେତେବେଳେ ଛାତ୍ରମାନେ ମନ୍ତ୍ରୀମାନଙ୍କ ଚେମ୍ବରରେ ପଶି ଟେବୁଲ୍ ଚେୟାର ଭାଙ୍ଗିବାରେ ଲାଗିଲେ । ବିଧାନସଭାର କିଛି କର୍ମଚାରୀ ଓ ମନ୍ତ୍ରୀମାନଙ୍କର କର୍ମଚାରୀ ସେମାନଙ୍କୁ ବାଧା ଦେବାରେ ସେମାନେ ମାଡ଼ ଖାଇଲେ । ମୁଁ ବୁଲି ବୁଲି ଏହି ଘଟଣା ଦେଖୁଥାଏ ଏବଂ କେଉଁଠି କ'ଣ ହେଉଛି ମୋ ଡାଇରିରେ ଟିପୁଥାଏ । ବିଧାନସଭା କୋଠୀ ବାହାରେ କ'ଣ ହେଉଛି ମୁଁ ଦେଖିବାକୁ ଆସିଲି । ଦେଖିଲି ବନମାଳୀ ବାବୁ ଓ ଜଗନ୍ନାଥ ରାଓ (ଦୁହେଁ ମନ୍ତ୍ରୀ) ତାଙ୍କ କୋଠରୀର ପାଇଖାନା ଝରକାବାଟେ ତଳକୁ ଡେଇଁଲେ । ସେତେବେଳେ ବନମାଳୀ ବାବୁ ନଗର ଉନ୍ନୟନ ମନ୍ତ୍ରୀ ଓ ଜଗନ୍ନାଥ ରାଓ ସ୍ୱାସ୍ଥ୍ୟ ମନ୍ତ୍ରୀ ଥିଲେ । ସେମାନେ ଗାଡ଼ିରେ ନଯାଇ ଚାଲିଚାଲି ଏମ୍.ଏଲ୍.ଏ. କଲୋନୀ ଆଡ଼କୁ ଥିବା ଫାଟକ ବାଟେ ବାହାରି ଗଲେ । ମୁଁ ପୁଣି ଭିତରକୁ ଆସିଲି । ଭିତରେ ଆଉ ଏକ ଦୃଶ୍ୟ ଅଭିନୀତ ହେଉଥିଲା । ସେତେବେଳେ ବିଧାନସଭାର ବାଚସ୍ପତି ଥିଲେ ଲିଙ୍ଗରାଜ ପାଣିଗ୍ରାହୀ । ଶ୍ରୀ ପାଣିଗ୍ରାହୀ ପୂର୍ବରୁ ଓଡ଼ିଶା ହାଇକୋର୍ଟର ମୁଖ୍ୟ ବିଚାରପତି ଥିଲେ । ଘଟଣାଦିନ ସେ ଅସୁସ୍ଥ ଥିବାରୁ ବିଧାନସଭା ଆସି ନଥିଲେ । ଉପ ବାଚସ୍ପତି ଲୋକନାଥ ମିଶ୍ର ବିଧାନସଭା ପରିଚାଳନା ଦାୟିତ୍ୱରେ ଥିଲେ ।

ଅନ୍ୟ ଦିଗରେ ମୁଖ୍ୟମନ୍ତ୍ରୀ ବିଧାନସଭା ସାମ୍ନାରେ ଥିବା ଲନ୍‌ରେ ବସି ହାତ ଯୋଡ଼ି ସମସ୍ତଙ୍କୁ ଶାନ୍ତ ହେବା ପାଇଁ ଅନୁରୋଧ କରୁଥିଲେ । ମାତ୍ର ଏହାର ସୁଫଳ ପରିବର୍ତ୍ତେ କୁଫଳ ହେଲା । କିଛି ବଦ୍‌ମାସ ଲୋକ ସମ୍ଭବତଃ ଅଣଛାତ୍ର ମୁଖ୍ୟମନ୍ତ୍ରୀଙ୍କ ଉପରକୁ ବାଲି- ଗୋଡ଼ି- ମାଟି ପକାଇବାକୁ ଲାଗିଲେ । ଅବସ୍ଥା ବେଗତିକ ଦେଖି ପୁରୀ ଜିଲ୍ଲାପାଳ ଓ ଏସ୍.ପି. ତାଙ୍କୁ ତାଙ୍କ କୋଠରୀକୁ ଚାଲିଯିବାପାଇଁ ଅନୁରୋଧ କଲେ । ମୁଖ୍ୟମନ୍ତ୍ରୀ କିନ୍ତୁ ବାରମ୍ବାର ଛାତ୍ରମାନଙ୍କ ଉପରକୁ ଗୁଳି ନଚଳାଇବା ପାଇଁ ନିର୍ଦ୍ଦେଶ ଦେଉଥିଲେ ।

ମୁଖ୍ୟମନ୍ତ୍ରୀଙ୍କର ଏହି ସରଳତାର ସୁଯୋଗ ନେଇ ଛାତ୍ରମାନେ ଏବଂ ସେମାନଙ୍କ ମଧ୍ୟରେ ଥିବା କିଛି ଅଣଛାତ୍ର ଓ ବଦ୍‌ମାସ ଲୋକ ବିଧାନସଭା ଗ୍ୟାଲେରୀରୁ କାଗଜ ଚିରି ଫୋପାଡ଼ିବା ସଙ୍ଗେ ସଙ୍ଗେ ଇଟା ଖଣ୍ଡମାନ ପକାଇଲେ । ଫଳରେ ଭୟରେ ଏମ୍.ଏଲ୍.ଏ.ମାନେ ବିଧାନସଭା ଗୃହରୁ ଲବି ଭିତରକୁ ଚାଲି ଯାଇଥିଲେ । ଏହାପରେ ବହୁ ଛାତ୍ର ବିଧାନସଭା ଗୃହ ମଧ୍ୟକୁ ପଶିଯାଇ ସେଠାରେ ମକ୍ ପାର୍ଲାମେଣ୍ଟ ଅଭିନୟ କରିଥିଲେ । ବାଚସ୍ପତିଙ୍କ ଆସନରେ ଜଣେ ଛାତ୍ର ବସି ସଭ୍ୟମାନଙ୍କ ଆସନରେ ବସିଥିବା ଛାତ୍ରମାନଙ୍କୁ ନାନା ପ୍ରକାର ଭାଷଣ ଦେବା ଆରମ୍ଭ କରି ଦେଇଥିଲେ । ଏଭଳି ଆଚରଣ କେବଳ ଯେ ସେଦିନ ଆମକୁ ସ୍ତବ୍ଧ କରି ଦେଇଥିଲା ତା' ନୁହେଁ, କେତେକ ଏମ୍.ଏଲ୍.ଏ. ଓ ମନ୍ତ୍ରୀ ଅତି ଭୟଭିତ ଭାବେ ଏହାକୁ ନିରୀକ୍ଷଣ କରିଥିଲେ । ଏ ଘଟଣାକୁ ଏଡ଼ାଇ ଦିଆଯାଇ ପାରିଥା'ନ୍ତା । ମାତ୍ର ମୁଖ୍ୟମନ୍ତ୍ରୀ ପୋଲିସ୍‌କୁ ଏଥିରେ ହସ୍ତକ୍ଷେପ ନକରିବାକୁ ବାରମ୍ବାର ଆଦେଶ ଦେବା ଫଳରେ ପୋଲିସ୍ ନିରବଦ୍ରଷ୍ଟା ହୋଇ କେବଳ ଠିଆ ହୋଇଥିଲେ । ଅନେକ ପୋଲିସ୍ ଛାତ୍ରମାନଙ୍କ ମାଡ଼ରେ ଆହତ ମଧ ହୋଇଥିଲେ ।

ପ୍ରାୟ ତିନିଘଣ୍ଟା ପରେ ଛାତ୍ରମାନେ ବିଧାନସଭା କକ୍ଷ ଓ ହତା ଛାଡ଼ି ଚାଲି ଯାଇଥିଲେ ଏବଂ ଗଲାବେଳେ ମୁଖ୍ୟମନ୍ତ୍ରୀ ମୁର୍ଦ୍ଦାବାଦ ଧ୍ୱନି ଦେଇ ଯାଇଥିଲେ । ଏହି ଘଟଣାରେ ବିଧାନସଭାର ଛ'ଜଣ କର୍ମଚାରୀ ଆହତ ହୋଇ ଚିକିତ୍ସିତ ହେବାକୁ ଡାକ୍ତରଖାନା ଯାଇଥିଲେ । ପୁରୀ ଜିଲ୍ଲା ଏସ୍.ପି. ମଧ୍ୟ ଛାତ୍ରମାନଙ୍କ ଠେଲାପେଲାରେ ଆହତ ହୋଇଥିଲେ । ଟେବୁଲ୍ ଚେୟାର ଭାଙ୍ଗି ଚାରିଆଡ଼େ ବିଛାଡ଼ି ହୋଇ ପଡ଼ିଥିଲା । ମନ୍ତ୍ରୀମାନଙ୍କ କୋଠରୀରୁ ବହୁ ଆଇନା ଭଙ୍ଗା ହୋଇଥିଲା । କେତେକ ଆଇନାକୁ କାନ୍ଥରୁ ଓପାଡ଼ି କେହି କେହି ନେଇ ଯାଇଥିଲେ ।

ମୁଁ ଏସବୁ ଚାରିଆଡ଼େ ବୁଲି ବୁଲି ଦେଖୁଥିଲି । ସେଦିନ ରାତିରେ ମୁଁ କଟକ ଫେରିଆସି ସବୁ ଘଟଣାର ଏକ ବିସ୍ତୃତ ବିବରଣୀ ଲେଖି ମୁଖ୍ୟମନ୍ତ୍ରୀ ବୀରେନ୍ ମିତ୍ରଙ୍କ ଯୋଗୁ ଏ ପ୍ରକାର ପରିସ୍ଥିତି ସୃଷ୍ଟି ହେଲା ବୋଲି ଦର୍ଶାଇଥିଲି । ମାତ୍ର ବାଳକୃଷ୍ଣ ବାବୁ ବୀରେନ୍ ମିତ୍ରଙ୍କ ଅସାଧାରଣ ମାନବିକତା ଏବଂ ତାଙ୍କ ଯୋଗୁଁ ଏକ ବଡ଼ ଗଣ୍ଡଗୋଳରୁ ରକ୍ଷା ମିଳିଲା ବୋଲି ବର୍ଣ୍ଣନା କରି ଏକ ବିବରଣୀ ଦେଲେ । ସେ ଲେଖିଥିଲେ ମୁଖ୍ୟମନ୍ତ୍ରୀ ଯଦି ପୋଲିସ୍‌କୁ ନିର୍ଦ୍ଦେଶ ଦେଇଥା'ନ୍ତେ ତେବେ ସେଦିନ ବହୁ ଛାତ୍ର ମୃତାହତ ହୋଇଥା'ନ୍ତେ ।

ମାତୃଭୂମିରେ ମୋର ବିବରଣୀ ଓ ତାଙ୍କ ବିବରଣୀ ପ୍ରକାଶ ପାଇଲା । ତେବେ ଏହି ଘଟଣାରେ ମୁଖ୍ୟମନ୍ତ୍ରୀ ବିଧାନସଭାର ସାର୍ବଭୌମତ୍ୱ ଓ ମର୍ଯ୍ୟାଦା କ୍ଷୁର୍ଣ୍ଣ କରିଛନ୍ତି ବୋଲି ତାଙ୍କ ଦଳର ଓ ବିରୋଧୀ ଦଳର କିଛି ସଦସ୍ୟ ଖୋଲାଖୋଲି ବିବୃତ୍ତି ଦେଇଥିଲେ । ଘଟଣା ଘଟିଯିବା ପରେ ଏବଂ ବିଧାନସଭାର ଭଙ୍ଗାରୁଜା ଅବସ୍ଥାର ଫଟୋ ଖବର କାଗଜରେ ପ୍ରକାଶ ପାଇବା ପରେ ମୁଖ୍ୟମନ୍ତ୍ରୀ ଅତ୍ୟନ୍ତ ଭାଙ୍ଗି ପଡ଼ିଥିଲେ । ତାଙ୍କୁ ସବୁଠାରୁ ଦୁଃଖ ଦେଇଥିଲା ଛାତ୍ରମାନଙ୍କ ମନୋଭାବ । ସେ ଆଶା କରିଥିଲେ ତାଙ୍କର କାର୍ଯ୍ୟକଳାପକୁ ଛାତ୍ରନେତାମାନେ ପ୍ରଶଂସା କରି ନିଜର କଳାକର୍ମ ସମ୍ପର୍କରେ ଦୁଃଖ ପ୍ରକାଶ କରି ଏକ ବିବୃତ୍ତି ଦେବେ । ମାତ୍ର କୌଣସି ଛାତ୍ରନେତା ଏହା କରିବା ଦୂରେଥାଉ ମୁଖ୍ୟମନ୍ତ୍ରୀଙ୍କୁ ସମାଲୋଚନା କରିବାରେ ସେ ତାଙ୍କ ନିଜ କଳାକର୍ମ ପାଇଁ ଅନୁତପ୍ତ ହୋଇଥିଲେ । ଫଳ ସ୍ୱରୂପ ସେ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେବାପାଇଁ ପ୍ରଧାନମନ୍ତ୍ରୀ ଲାଲ୍‌ବାହାଦୂର ଶାସ୍ତ୍ରୀଙ୍କ କଂଗ୍ରେସ ସଭାପତି ଓ କାମରାଜ ନାଦରଙ୍କୁ ପତ୍ର ଲେଖିଥିଲେ । ଏହି ଘଟଣା ସେପ୍ଟେମ୍ବର ୨ ତାରିଖରେ ଘଟିଥିଲା । ସେପ୍ଟେମ୍ବର ୩ ତାରିଖରେ ସେ ତାଙ୍କର ଇସ୍ତଫା ପତ୍ର ପ୍ରଧାନମନ୍ତ୍ରୀଙ୍କ ନିକଟକୁ ପଠାଇ ଦେଇ ବିଧାନସଭା ଆଉ ଚଳାଇ ପାରିବେ ନାହିଁ ବୋଲି ଉପବାଚସ୍ପତିଙ୍କୁ ଲେଖି ଦେଇଥିଲେ । ସାମ୍ବାଦିକମାନଙ୍କୁ ଡାକି ସେ ଏକଥା କହି ଦେଇଥିଲେ । ଫଳରେ ବିଧାନସଭା ଅଧିବେଶନ ସେପ୍ଟେମ୍ବର ବାଇଶ ତାରିଖ ପର୍ଯ୍ୟନ୍ତ ମୁଲତବୀ ରହିଥିଲା । ବିଧାନସଭା ୨୨ ତାରିଖରେ ଆରମ୍ଭ ହେବା ପରେ ମୁଖ୍ୟମନ୍ତ୍ରୀଙ୍କ ପତ୍ର ବିଧାନସଭାରେ ଉପସ୍ଥାପିତ ହୋଇଥିଲା । ଏଥିରେ ଲେଖାଥିଲା - Although as Chief Minister, I have no locus standi within the precincts of the Assembly, I took it upon myself and ordered the police not to use violence under any cirumstances. The police was manhandled and the superintendent of police was badly injured, and yet under my orders the entire police and the majistracy displayed examplory restraint under great provocation. I have no doubt that if normal law & order procedure were to be adopted, many students and the rowdy elements would have been demolished. I had to decide between bloodshed and restoring the prastige of the sovereign house of the State. I regret to state that I failed to uphold the dignity and sacredness of Orissa House of Legislature and have therefore decided to relingqish for thwith my charge as Chief Minister of the State (Orissa Assembly Proceeding 22/09/64)

ଆମେ ଗତ ଅଧ୍ୟାୟରେ ମୁଖ୍ୟମନ୍ତ୍ରୀ କଂଗ୍ରେସ ହାଇ କମାଣ୍ଡଙ୍କୁ ପଠାଇଥିବା ଇସ୍ତଫା ସମ୍ପର୍କରେ ବିଧାନସଭାରେ ଉପସ୍ଥାପିତ ବିବରଣୀ ଉଲ୍ଲେଖ କରିଥିଲୁ । 'ମାତୃଭୂମି'ରେ ଏହି ବିବରଣୀ ବିସ୍ତୃତ ଭାବେ ପ୍ରକାଶ ପାଇଥିଲା । ଏହା ପ୍ରକାଶ ପାଇବା ପରେ ସାଧାରଣରେ ବୀରେନ୍ ମିତ୍ରଙ୍କ ଭାବମୂର୍ତ୍ତିରେ ବିଶେଷ କିଛି ଉନ୍ନତି ହୋଇ ନଥିଲା । ବରଂ ବିଧାନସଭାରେ ଛାତ୍ରମାନଙ୍କ ଗୋଳମାଳ ଭଙ୍ଗାରୁଜା ଆଦିର ଛବି ଏବଂ କୌତୁକ ବିଧାନସଭା ମୁଖ୍ୟମନ୍ତ୍ରୀଙ୍କ ପ୍ରଶାସନିକ ଦୁର୍ବଳତାକୁ ପଦାରେ ପକାଇଥିଲା । ଏହି ଘଟଣା ଲୋକଙ୍କ ମନରୁ ଲିଭୁ ନଲିଭୁଣୁ ସେଇ ମାସ (ସେପ୍ଟେମ୍ବର- ୧୯୬୪) ୨୬ ତାରିଖରେ କଟକ ଷ୍ଟେସନ ବଜାରରେ ସକାଳ ୧୦ଟା ବା ୧୧ଟାରେ ଜଣେ ରେଡିଓ ଦୋକାନୀ ସହ କଟକ ଇଂଜିନିୟରିଂ ସ୍କୁଲର ଶଶାଙ୍କଧର ଦାସ ନାମକ ଜଣେ ଛାତ୍ରର ରେଡିଓ ମରାମତି ପଇସାକୁ ନେଇ ଗୋଳମାଳ ହୋଇଥିଲା । ଦୋକାନୀ ଓ ଛାତ୍ର ମଧ୍ୟରେ ଏହାକୁ ନେଇ ଯୁକ୍ତିତର୍କ ଓ ମାରପିଟ ପର୍ଯ୍ୟନ୍ତ କଥା ଯାଇଥିଲା । ଛାତ୍ର ଜଣକ ଦୋକାନୀକୁ ଧମକ ଦେଇ ଯାଇଥିଲା ଯେ ସେ ତାଙ୍କ ସାଙ୍ଗମାନଙ୍କୁ ନେଇ ଖୁବ୍ ଶୀଘ୍ର ଆସୁଛନ୍ତି ଏବଂ ତାକୁ ଠିକଣା ଜବାବ ଦେବେ । ଭୟରେ ରେଡିଓ ଦୋକାନୀ ମଙ୍ଗଳାବାଗ ଥାନାରେ ଏହା ଉପରେ ଏକ ଅଭିଯୋଗ କରିଥିଲା । ଅପରାହ୍ନ ତିନିଟା ସାଢ଼େ ତିନିଟା ବେଳକୁ କଟକ ଇଂଜିନିୟରିଂ ସ୍କୁଲର ପ୍ରାୟ ଶହେ ଖଣ୍ଡେ ଛାତ୍ର ରେଡିଓ ଦୋକାନକୁ ଘେରି ଯାଇଥିଲେ । ଖବର ପାଇ ମଙ୍ଗଳାବାଗ ଥାନାରୁ ଅନେକ ପୋଲିସ୍ ଘଟଣାସ୍ଥଳକୁ ଯାଇଥିଲେ । ମୁଁ ଏ ଖବର ପାଇ ଘଟଣାସ୍ଥଳରେ ପହଞ୍ଚିଲି । ମୁଁ ପହଞ୍ଚିଲା ବେଳକୁ ରେଭେନ୍ସା କଲେଜରୁ ଓ ମଧୁସୂଦନ ଆଇନ୍ କଲେଜରୁ ଅନେକ ଛାତ୍ର ସେଠାରେ ରୁଣ୍ଡ ହୋଇ ଯାଇଥିଲେ । ପାଖାପାଖି ଛ'/ସାତ ଶହ ଛାତ୍ର ହେବେ । ଛାତ୍ରମାନଙ୍କ ସଂଖ୍ୟା ଦେଖି ଅଧିକ ପୋଲିସ୍ ଫୋର୍ସ ମଧ୍ୟ ସେଠି ପହଞ୍ଚି ଥିଲେ । ବର୍ତ୍ତମାନ ଭଳି ସେତେବେଳେ ଷ୍ଟେସନ ବଜାରରେ ସେତେ ଦୋକାନ ବଜାର ନଥିଲା । ଅଧିକାଂଶ କ୍ୟାବିନ୍ ଦୋକାନ ଥାଏ । ରେଡିଓ ମରାମତି ଦୋକାନଟି ମଧ୍ୟ ଏକ ଛୋଟ ଦୋକାନ ଥିଲା । ପୋଲିସ୍ ଛାତ୍ରମାନଙ୍କୁ ବୁଝାସୁଝା କରୁଥା'ନ୍ତି । ମୁଁ ଦେଖିଲି ଛାତ୍ରମାନେ ପୋଲିସ୍ କଥା ନଶୁଣି ରେଡିଓ ଦୋକାନକୁ ଟେକାମାଡ଼ କରିବାକୁ ଆରମ୍ଭ କଲେ । ଘଟଣା ଦେଖି ପାଖ-ଆଖ ସବୁ ଦୋକାନ ବନ୍ଦ ହୋଇଗଲା । ଛାତ୍ରମାନଙ୍କୁ ଚାଲିଯିବା ପାଇଁ ପୋଲିସ୍ ମାଇକ୍‌ରେ ଘୋଷଣା କଲା । କିଛି ଛାତ୍ର ରେଡିଓ ଦୋକାନ କବାଟ ଭାଙ୍ଗି ଭିତରେ ପଶି ଜିନିଷ ପତ୍ର ଭଙ୍ଗାରୁଜା କଲେ । ଫଳରେ ପୋଲିସ୍ ସେମାନଙ୍କୁ ତଡ଼ି ଦେବା ପାଇଁ ଉଦ୍ୟମ କରିବା ବେଳେ ଟେକା-ପଥର ମାଡ଼ ହେଲା । କିଛି ଛାତ୍ର ବାଉଁଶ ଫାଳିଆ ଧରି ପୋଲିସ୍‌କୁ ଆକ୍ରମଣ କଲେ । ଫଳରେ ସେଠାରେ ଉପସ୍ଥିତ ଜଣେ ମାଜିଷ୍ଟ୍ରେଟ ଛାତ୍ର ମେଳିକୁ ବେଆଇନ୍ ଘୋଷଣା କଲେ । ପୋଲିସ୍ ପକ୍ଷରୁ ପ୍ରଥମେ ଲୁହବୁହା ବାଷ୍ପ ଏବଂ କିଛି ସମୟ ପରେ ଲାଠିମାଡ଼ ଆରମ୍ଭ ହେଲା । ମୁଁ, କଳିଙ୍ଗର ସୁରିତ ପଟ୍ଟନାୟକ ଏବଂ ପ୍ରଜାତନ୍ତ୍ରର ନଗେନ୍ ବେଉରିଆ ଷ୍ଟେସନ ବଜାର ଦେବୀଘର ଗଳି ଭିତରେ ପଶିଗଲୁ । ସେଠି ନଗେନ୍ ବାବୁଙ୍କର ଜଣେ ଚିହ୍ନା ଲୋକଙ୍କ ଘର ଛାତ ଉପରକୁ ଯାଇ ଏ ପରିସ୍ଥିତି ଦେଖିଲୁ । ପାଖରେ ରେଭେନ୍ସା କଲେଜ ଓ ଆଇନ୍ କଲେଜ ହଷ୍ଟେଲ ଥିବାରୁ ପୋଲିସ୍ ଉପରକୁ ଟେକା-ପଥର ମାଡ଼ ଚାଲିଥିଲା । ମୋର ଯାହା ମନେ ଅଛି ରାତି ଦୁଇଟା ପର୍ଯ୍ୟନ୍ତ ଏ ଗୋଳମାଳ ଚାଲିଥିଲା । ଆମେ ସମସ୍ତେ ରାତିରେ ଘରକୁ ଫେରିଲା ବେଳକୁ ରାତି ତିନିଟା ବାଜି ଯାଇଥିଲା ।

ତା'ପରଦିନ ଏ ଗଣ୍ଡଗୋଳ ଆରମ୍ଭ ହେଲା ରେଭେନ୍ସା କଲେଜରୁ । ତା'ସାଙ୍ଗେ ସାଙ୍ଗେ ଆଇନ୍ କଲେଜ ହଷ୍ଟେଲରୁ । ମୁଁ ସକାଳୁ ଉଠି ନିତ୍ୟକର୍ମ ସାରି ପ୍ରେସ୍‌କୁ ଯାଇ ରାତିର ଘଟଣା ଲେଖି ଦିନ ସାଢ଼େ ଦଶଟା/ଏଗାରଟା ବେଳକୁ ମଙ୍ଗଳାବାଗ ଥାନାକୁ ଗଲି । ଯିବା ପୂର୍ବରୁ ସୁରିତ ଭାଇଙ୍କୁ ଫୋନ୍ କରି ପଚାରିବାରେ ସେ କହିଲେ ଯେ,

ଷ୍ଟେସନ ବଜାରରୁ ମଙ୍ଗଳାବାଗ ଥାନା ପର୍ଯ୍ୟନ୍ତ ସମସ୍ତ ଅଞ୍ଚଳରେ ୧୪୪ ଧାରା ଜାରି କରାଯାଇଛି । ରେଭେନ୍ସା କଲେଜ ପାଖରେ ଥିବା ଏକ ପୋଲିସ୍ ଗାଡ଼ିକୁ କେତେକ ଛାତ୍ର ନିଆଁ ଲଗାଇ ଦେଇଛନ୍ତି । ସେଠି ଥିବା ପୋଲିସ୍ ଫୋର୍ସ୍ ଉପରକୁ ଟେକା ମାଡ଼ ହେଉଛି । ମତେ ମଙ୍ଗଳାବାଗ ଥାନାକୁ ଯିବା ପାଇଁ ସେ କହିଲେ । ମୁଁ ମଙ୍ଗଳାବାଗ ଥାନାରେ ପହଞ୍ଚିବା ବେଳକୁ ସୁରିତ ଭାଇ ସେଠି ବସିଥିଲେ । ଆମେ ଦୁହେଁ ସାଇକେଲ୍ ନେଇ ହିନ୍ଦ୍ ସିନେମା ପଛବାଟ ଦେଇ କେନାଲ ପୋଲ ପାଖରେ ପହଞ୍ଚିଲୁ । ସେଠି ପାଖରେ ଆଇନ୍ କଲେଜ ହଷ୍ଟେଲ୍ ଥାଏ । (ଏବେ ସେ କୋଠା ଭଙ୍ଗା ଯାଇ ସେଠି କଟକ ସୁଇଟଷ୍ଟଲ୍ ଦୋକାନ ହୋଇଛି ।) ସେଠାରୁ ରାସ୍ତା ଉପରକୁ ଟେକା-ପଥର ମାଡ଼ ଚାଲିଥାଏ । ପୋଲିସ୍ ଫୋର୍ସ ଷ୍ଟେସନ୍ ପାଖରୁ ରାଣୀହାଟ ପର୍ଯ୍ୟନ୍ତ ପଇଁତରା ମାରୁଥା'ନ୍ତି । ମୁଁ ଏ ଘଟଣାର ଫଟ ଉଠାଇବା ପାଇଁ ମାତୃଭୂମି ପାଇଁ ଫଟୋ ଉଠାଉଥିବା ପ୍ରଭାତ ସିନେମା ପାଖ କିଙ୍ଗ୍ ଫଟୋ ଷ୍ଟୁଡିଓର ମାଲିକ କମରୁଦ୍ଦିନ ଖାଁକୁ ହିନ୍ଦ୍ ସିନେମା ଅଫିସ୍‌ରୁ ଫୋନ୍ କଲି । ଆମେ ସେଇଠି ହିନ୍ଦ୍ ସିନେମା ପାଖରେ ଅପେକ୍ଷା କଲୁ । କିଛି ସମୟ ପରେ କମରୁଦ୍ଦିନ ତା' କ୍ୟାମେରା ସହ ସେଠି ପହଞ୍ଚିଲା । ଠିକ୍ ତା'ପରେ ପରେ ପୋଲିସ୍ ହଷ୍ଟେଲ୍ ଭିତରୁ ଯେଉଁ ଦିଗରୁ ଟେକା ପଡୁଥିଲା ସେଠାକୁ ଉଠିଲା । ଉପର ମହଲା ଓ ଛାତ ଉପରେ କିଛି ଛାତ୍ର-ଅଣଛାତ୍ର ଠିଆ ହୋଇ ଟେକା ପକାଉଥିଲେ । ପୋଲିସ୍ ସେ ଛାତ୍ର ବା ଅଣଛାତ୍ର ସମସ୍ତଙ୍କୁ ଧକ୍କା ମାରି ମାରି କେତେକଙ୍କୁ ଲାଠି ସାହାଯ୍ୟରେ ଠେଲି ଠେଲି ତଳକୁ ଆଣିଲା । କମରୁ ମିଆଁ ଏହି ଦୃଶ୍ୟର ଫଟୋ ନେଲା ବେଳେ କେତେକ ପୋଲିସ୍ ତା' ଆଡ଼କୁ ମାଡ଼ି ଆସିଲେ । ସେ ଦଉଡ଼ି ଯାଇ ପୋଲିସ୍ ସର୍ଜେଣ୍ଟ ମେଜର ଆଲାମ (ବିଖ୍ୟାତ ଫୁଟବଲର୍)ଙ୍କ ଶରଣ ପଶିବାରେ ରକ୍ଷା ପାଇଲା । ଆମେ ଏହା ପରେ ପରେ ଆଲାମଙ୍କ ସାଙ୍ଗରେ ତାଙ୍କ ଜିପ୍ ପଛରେ ବସି କଲେଜ ଛକ ଗଲୁ । ଆମ ସାଇକେଲ୍ ହିନ୍ଦ୍ ସିନେମା ମ୍ୟାନେଜରଙ୍କୁ କହି ତାଙ୍କ ସାଇକେଲ୍ ଷ୍ଟାଣ୍ଡରେ ରଖି ଦେଇଥିଲୁ । କଲେଜ ଛକରେ ପହଞ୍ଚି ଆମେ ଜିପ୍‌ରୁ ଓହ୍ଲାଇ ଏକ ନିରାପଦ ଦୂରତ୍ୱରେ ଠିଆ ହେଲୁ । ସେତେବେଳେ ରେଭେନ୍ସା ହତାରେ ଅନେକ ଛାତ୍ର ରୁଣ୍ଡ ହୋଇଥା'ନ୍ତି । ସ୍ଲୋଗାନ୍ ଚାଲିଥାଏ । ବାହାରେ ଦୁଇଶହ/ତିନିଶହ ପୋଲିସ୍ ଠିଆ ହୋଇଥା'ନ୍ତି । ହଠାତ୍ କଲେଜ ହତାରୁ ଟେକାମାଡ଼ ହେଲା । କିଛି ନିଆଁ ହୁଳା ମଧ୍ୟ ରାସ୍ତା ଉପରେ ଥିବା ପୋଲିସ୍ ଆଡ଼କୁ ଫିଙ୍ଗା ହେଲା ।

ଆମେ କିଛି ବୁଝିବା ପୂର୍ବରୁ ପୋଲିସ୍ ଫୋର୍ସ କଲେଜ ହତାରେ ପ୍ରବେଶ କଲେ । ତା'ପରେ ଚାଲିଲା ଲାଠି ମାଡ଼ । ଛାତ୍ରମାନଙ୍କ ପକ୍ଷରୁ ଯିଏ ଯୁଆଡ଼େ ପାଇଲେ ଦୌଡ଼ିଲେ । ପୋଲିସ୍ ସମସ୍ତଙ୍କୁ ଗୋଡ଼େଇ ଗୋଡ଼େଇ ରାସ୍ତା ଆଡ଼କୁ ତଡ଼ି ଆଣୁଥିଲା । ମାତ୍ର ତା' ଭିତରେ କେହି କେହି ହଷ୍ଟେଲ ଆଡ଼କୁ ମଧ୍ୟ ଦୌଡ଼ି ଥା'ନ୍ତି । କମ୍‌ରୁ ଏହି ଦୃଶ୍ୟର ଫଟୋ ନେଲା । ପ୍ରାୟ ଘଣ୍ଟେ/ ଦେଢ଼ଘଣ୍ଟା ପର୍ଯ୍ୟନ୍ତ ଏହା ଚାଲିଥିଲା । ଆମେ ସେଠାରୁ ଦୌଡ଼ି ଦୌଡ଼ି ଆସି ସାଇକେଲ୍ ଧରି ପ୍ରେସ୍‌କୁ ଚାଲିଲୁ । କମରୁ ଦିନ ୨ଟା ଭିତରେ ଫଟୋ ଆଣି ଦେବ ବୋଲି ମତେ କହିଲା । ମୁଁ ପ୍ରେସ୍‌ରେ ପହଞ୍ଚିଲା ବେଳକୁ ଦିନ ଗୋଟାଏ । ପ୍ରେସ୍‌ରେ ବିଚିବାବୁଙ୍କୁ ସବୁକଥା କହି ଏକ ରିପୋର୍ଟ ଲେଖିଲି । କମରୁ ମିଆଁ ଦି'ଟା ବେଳକୁ ପାଞ୍ଚୋଟି ଫଟୋ ଆଣିଦେଲା । ଗୋଟିକରେ ଆଇନ୍ କଲେଜରୁ ପିଲାଙ୍କ ଟେକା ପଥର ମାଡ଼, ଗୋଟିକରେ ପୋଲିସ୍ ପିଲାଙ୍କୁ ଧକ୍କା ମାରି ମାରି ଆଣୁଥିବାର ଦୃଶ୍ୟ, ଗୋଟିଏ ଫଟରେ କଲେଜ ଛକରେ ପଡ଼ିଥିବା ଇଟା ପଥର, ଆଉ ଗୋଟିଏ ଫଟରେ ପୋଲିସ୍ ଗେଟ୍ ଡେଇଁ ରେଭେନ୍ସା ହତାରେ ପ୍ରବେଶ କରୁଥିବା ଏବଂ ଗୋଟିକରେ ପିଲାଙ୍କୁ ଲାଠି ମାଡ଼ କରୁଥିବାର ଦୃଶ୍ୟ ଥିଲା । ଫଟୋଗୁଡ଼ିକୁ ବିଚିବାବୁ ଦେଖି ସାଙ୍ଗେ ବ୍ଲକ୍ କରିଦେବାପାଇଁ ବ୍ଲକ୍ ସେକ୍‌ସନକୁ ପଠାଇ ଦେଲେ । ହଁ କହିରଖେ- ସେତେବେଳେ କେବଳ ମାତୃଭୂମିରେ ବ୍ଲକ ତିଆରି ହେଉଥିଲା । ଅନ୍ୟ କୌଣସି ଖବର କାଗଜରେ ସେ ସୁବିଧା ନଥିଲା ।

ସେଦିନ ସନ୍ଧ୍ୟାରେ ମାତୃଭୂମିରେ ପ୍ରଥମ ପୃଷ୍ଠାରେ ସମ୍ବାଦ ଓ ଫଟୋ ବଡ଼ ଆକାରରେ ଛପା ହୋଇଥିଲା । ସନ୍ଧ୍ୟାରେ ମାତୃଭୂମିର ବିକ୍ରି ସେଦିନ କଟକରେ ଆଶାତୀତ ଭାବେ ହୋଇଥିଲା ।

ସେପ୍ଟେମ୍ବର ୨୭ ତାରିଖ ଘଟଣା ପରେ ରେଭେନ୍ସା, ଇଂଜିନିୟରିଂ ସ୍କୁଲ୍ ଓ ଆଇନ୍ କଲେଜ ଛାତ୍ରମାନେ ଏକ ବ୍ୟାପକ ଆନ୍ଦୋଳନ ପାଇଁ ପ୍ରସ୍ତୁତ ହେଲେ । ସେମାନଙ୍କ ପକ୍ଷରୁ କେତେକ ଛାତ୍ରନେତା ମେଡିକାଲ୍ କଲେଜ, ଷ୍ଟିୱାର୍ଟ କଲେଜ, ଖ୍ରୀଷ୍ଟ କଲେଜ ଓ ଶୈଳବାଳା ମହିଳା କଲେଜର ଛାତ୍ର-ଛାତ୍ରୀମାନଙ୍କ ସହ ଯୋଗାଯୋଗ କରି ଏକ ପ୍ରସ୍ତୁତି କମିଟି ଗଠନ କଲେ । ମୋର ଯାହା ମନେ ପଡୁଛି ଏହି କମିଟିରେ ନିମ୍ନଲିଖିତ ଛାତ୍ରନେତାମାନେ ସଦସ୍ୟ ଥିଲେ । ଛାତ୍ର ୟୁନିୟନ ପକ୍ଷରୁ ଭାଗବତ ବେହେରା, ତ୍ରିଲୋଚନ କାନୁନ୍‌ଗୋ, ଚୌଧୁରୀ ପ୍ରତାପ ମିଶ୍ର, ଲୋକନାଥ ଆଚାର୍ଯ୍ୟ, ରମାକାନ୍ତ ମିଶ୍ର, ରେଭେନ୍ସା କଲେଜ ଛାତ୍ର ୟୁନିୟନ ସଭାପତି ଅଭୟ ମହାପାତ୍ର, ଛାତ୍ର ଫେଡେରେସନ୍ ପକ୍ଷରୁ ପ୍ରଫୁଲ୍ଲ ମହାନ୍ତି, ଲମ୍ବୋଦର ନାୟକ, ପ୍ରଫୁଲ୍ଲ ଘଡ଼େଇ, ମେଡିକାଲ୍ କଲେଜ ଛାତ୍ରୀ ସେବା ମହାପାତ୍ର ଓ ପ୍ରତିମା ମହାପାତ୍ର । ଏହି କ୍ରିୟାନୁଷ୍ଠାନ କମିଟିର ସଭାପତି ଥିଲେ କଟକ ମେଡିକାଲ କଲେଜ ଛାତ୍ର ୟୁନିୟନ ସଭାପତି ପ୍ରମୋଦ ସାମନ୍ତରାୟ । ଏମାନଙ୍କ ବ୍ୟତୀତ ଷ୍ଟିୱାର୍ଟ କଲେଜ ଛାତ୍ର ୟୁନିୟନ ସଭାପତି ଭବନାଥ ମିଶ୍ର ମଧ୍ୟ ଜଣେ ସଦସ୍ୟ ଥିଲେ ।

୧୯୬୪ ମସିହାର ଛାତ୍ର ଆନ୍ଦୋଳନ ତେପନ ଦିନ ଚାଲିଥିଲା । ସମ୍ଭବତଃ ଓଡ଼ିଶାରେ ଏହା ସବୁଠାରୁ ଦୀର୍ଘଦିନ ଚାଲିଥିବା ଛାତ୍ର ଆନ୍ଦୋଳନ । କଟକ ଏହି ଆନ୍ଦୋଳନର ମୁଖ୍ୟ କେନ୍ଦ୍ର ଥିଲା ଏବଂ ସମଗ୍ର ଓଡ଼ିଶାରେ ଏହା ବ୍ୟାପି ଯାଇଥିଲା । ମୁଁ ଏହି ସମୟରେ ଖବର ସଂଗ୍ରହପାଇଁ ଏକ ସୁବିଧାଜନକ ସ୍ଥିତିରେ ଥିଲି । କଟକ ମେଡ଼ିକାଲ୍ କଲେଜ ହଷ୍ଟେଲରେ ଏହାର ମୁଖ୍ୟ କେନ୍ଦ୍ର ଥିଲା । ମେଡ଼ିକାଲ୍ କଲେଜର ଶେଷ ବର୍ଷର ଛାତ୍ର ଧୀରେନ୍ଦ୍ର ନାଥ ପଟ୍ଟନାୟକ ମୋର ଘନିଷ୍ଠ ବନ୍ଧୁ ଥିଲେ । ମୁଁ ଅଧିକାଂଶ ସମୟରେ ସେ ରହୁଥିବା ହଷ୍ଟେଲକୁ ଯାଉଥିଲି । ଏପରିକି ହଷ୍ଟେଲ କ୍ୟାଣ୍ଟିନ୍‌ରେ ମଧ୍ୟ ପ୍ରାୟ ଖାଉଥିଲି । ତେଣୁ ଛାତ୍ର ଆନ୍ଦୋଳନ ସମ୍ପର୍କରେ ଅନେକ ଖବର ମତେ ମିଳୁଥିଲା । ସେଇଠି ତ୍ରିଲୋଚନ କାନୁନ୍‌ଗୋ (ସେତେବେଳେ ରେଭେନ୍ସା କଲେଜର ଏମ୍.ଏ. ଗଣିତ ଶ୍ରେଣୀର ଛାତ୍ର), ଚୌଧୁରୀ ପ୍ରତାପ ମିଶ୍ର, ପ୍ରଫୁଲ୍ଲ ମହାନ୍ତି, ପ୍ରମୋଦ ସାମନ୍ତରାୟ, ଭାଗବତ ବେହେରା ଆଦି ଛାତ୍ରନେତାମାନଙ୍କ ସହ ଘନିଷ୍ଠତା ବଢ଼ିଥିଲା । ଏମାନଙ୍କ ମଧ୍ୟରେ କେତେକ ମହତାବଙ୍କ ଅନୁଗତ ହୋଇଥିବା ବେଳେ ଆଉ କେତେଜଣ ବୀରେନ୍ ମିତ୍ରଙ୍କ ଅନୁଗାମୀ ଥିଲେ । ତେବେ ଛାତ୍ର ଆନ୍ଦୋଳନକୁ ତେଜେଇବା ଦିଗରେ ସେତେବେଳେ ଡଃ ମହତାବ ଏବଂ ପ୍ରଜାତନ୍ତ୍ର ସମ୍ପାଦକ ଜାନକୀ ବଲ୍ଲଭ ପଟ୍ଟନାୟକ ମୁଖ୍ୟ ଭୂମିକା ନେଇଥିଲେ । ମାତୃଭୂମି ଓ ସମାଜ ନିରପେକ୍ଷ ଭୂମିକା ନେଇଥିବା ବେଳେ କଳିଙ୍ଗ ଖବରକାଗଜର ଭୂମିକା ଆନ୍ଦୋଳନର ଏକ ପ୍ରକାର ବିରୋଧୀ ଥିଲା ।

ଛାତ୍ର ଆନ୍ଦୋଳନ ସମୟରେ କଟକରେ ଜିଲ୍ଲାପାଳ ଥିଲେ ପଦ୍ମନାଭ ମିଶ୍ର । ସେ ଓ.ଏ.ଏସ୍.ରୁ ଆଇ.ଏ.ଏସ୍. ହୋଇଥିଲେ । ଏସ୍.ପି. ଥିଲେ ବିନୟ ମହାପାତ୍ର । ଏ ଦୁହିଁଙ୍କ ଯୋଗୁଁ କଟକରେ ଛାତ୍ର ଆନ୍ଦୋଳନ ବେଳେ କୌଣସି ଅପ୍ରୀତିକର ଘଟଣା ଘଟିନଥିଲା । ବିଶେଷକରି ପଦ୍ମନାଭ ମିଶ୍ର ଅତ୍ୟନ୍ତ ଶାନ୍ତ ଶିଷ୍ଟ ଏବଂ ସହନଶୀଳ ବ୍ୟକ୍ତି ଥିଲେ । ତାଙ୍କୁ ଖୁବ୍ କମ୍ ରାଗିବା ମୁଁ ଦେଖିଛି । ସେ ଯେତେବେଳେ ଯାହା ପରିସ୍ଥିତି ହେଲେ ମଧ୍ୟ ଧୈର୍ଯ୍ୟ ହରାଉ ନଥିଲେ । ମୋର ମନେ ଅଛି ଦିନେ ସମ୍ଭବତଃ ଅକ୍ଟୋବର ବାର କି ତେର ତାରିଖ ବହୁ ଛାତ୍ର କଟକ କଲେକ୍ଟୋରେଟ ସମ୍ମୁଖରେ ରୁଣ୍ଡ ହୋଇ ନାନା ଧ୍ୱନୀ ଦେଇଥିଲେ । କଲେକ୍ଟୋରେଟ ଅଫିସ୍‌ରେ ପଶିବା ପାଇଁ ଉଦ୍ୟମ କରିଥିଲେ । ଏହି ସମୟରେ ପଦ୍ମନାଭ ବାବୁ ସେମାନଙ୍କ ନିକଟକୁ ଆସି ବୁଝାଇବା ପାଇଁ ଚେଷ୍ଟା କରିଥିଲେ । କେତେକ ତାଙ୍କୁ ଠେଲାପେଲା

କରିଥିଲେ । ଆଉ କେତେକ ଛାତ୍ର ଅଫିସ୍ ଛାତ ଉପରକୁ ଯାଇ କଳା ପତାକା ଉଡ଼ାଇଥିଲେ । ମାତ୍ର ପଦ୍ମନାଭ ବାବୁ ଏସବୁ ସତ୍ତ୍ୱେ ଉତ୍ତେଜିତ ନହୋଇ ପିଲାମାନଙ୍କ ଭିତରେ ଠିଆ ହୋଇ ସେମାନଙ୍କ ସହ କଥାବାର୍ତ୍ତା କରିଥିଲେ । ପୋଲିସ୍‌କୁ ଲାଠି ବା ଗୁଳି ଚଳାଇବାକୁ ମନା କରିଥିଲେ । ଦୁଇ/ତିନି ଘଣ୍ଟା ପରେ ଛାତ୍ରମାନେ ସେଠାରୁ ଚାଲି ଆସିଥିଲେ । ମୁଁ ସେ ଘଟଣାରେ ପଦ୍ମନାଭ ବାବୁଙ୍କ ଧୈର୍ଯ୍ୟ ଏବଂ ସାହସ ଦେଖି ତାଙ୍କୁ ତାଙ୍କୁ ପ୍ରଶଂସା କରି ଷ୍ଟୋରି ଲେଖିଥିଲି । ତା' ପରଦିନ ମୋର ପଦ୍ମନାଭ ବାବୁଙ୍କ ସହ ଦେଖାହେବା ବେଳେ ମତେ କହିଲେ ବରେନ୍ଦ୍ର ବାବୁ- ଧନ୍ୟବାଦ । ଆପଣଙ୍କ ଖବର ପଢ଼ି ମୋର ମନେ ହେଲା ମୋର ନିଜ କାମକୁ ସମୀକ୍ଷା କରିବାର ସୁଯୋଗ ମିଳିଲା । ମୁଁ କହିଲି ସାର୍, କାଲି ଆପଣଙ୍କ ଜାଗାରେ ଅନ୍ୟ କେହି ଥିଲେ ସମ୍ଭବତଃ ପୋଲିସ୍ ଗୁଳି ଚଳାଇଥା'ନ୍ତା । ସେ କହିଲେ ଗୁଳି ଚଳାଇବା, ଲାଠି ଚାର୍ଜ କରିବା ଦ୍ୱାରା ସମସ୍ୟା ବଢ଼ିବ ସିନା କମିବ ନାହିଁ । ପିଲାଙ୍କ କଥାରେ ନରାଗି ସେମାନଙ୍କୁ ବୁଝେଇ ଦେଲେ ସେମାନେ ବୁଝିଯିବେ ।

ସେତେବେଳେ ପୋଲିସ୍ ଆଇ.ଜି. ଥିଲେ ଶ୍ରୀକାନ୍ତ ଘୋଷ । ସେ ଭାରି ଟାଣୁଆ ହାକିମ ଥିଲେ । କଥା କଥାରେ ଲାଠି ଗୁଳି ଚଳାଇବା ପାଇଁ ଆଦେଶ ଦେଉଥିଲେ । ମୁଁ ତାଙ୍କ ସମ୍ପର୍କରେ ଗୋଟିଏ ଘଟଣା ବର୍ଣ୍ଣନା କରୁଛି । ସେଦିନ ଠିକ୍ କେତେ ତାରିଖ ମୋର ମନେ ପଡୁନି । ଓ.ଆର୍.ଟି. ବସ୍ ଚଳାଚଳ ବନ୍ଦ କରିବା ପାଇଁ ସେଦିନ ଚାନ୍ଦିନୀଚୌକରେ ଛାତ୍ରମାନଙ୍କର ବିକ୍ଷୋଭ ଥିଲା । ମୁଁ ସକାଳ ସାଢ଼େ ଆଠଟାରେ ଚାନ୍ଦିନୀଚୌକ ଛକରେ ଥିବା ୱେଷ୍ଟର୍ଣ୍ଣ ହୋଟେଲ୍ ସାମନାରେ ମୋ ସାଇକେଲ୍ ଧରି ବିକ୍ଷୋଭ କେତେବେଳେ ହେବ ଅପେକ୍ଷା କରିଛି । ଅଧଘଣ୍ଟାଏ ପରେ ଖାକି ପ୍ୟାଣ୍ଟ ଓ ଧଳା ହାଫ୍ ସାର୍ଟ ପିନ୍ଧି ଜଣେ ବୟସ୍କ ଲୋକ ସେଠି ପହଞ୍ଚିଲେ । ହାତରେ ଧରିଥିଲେ ଛୋଟ ବାଡ଼ି । ଧଳା କାନ୍‌ଭାସ ଜୋତା ଆଉ ମୋଜା । ମୁଁ କିଛି କହିବା ପୂର୍ବରୁ ସେ ମୋତେ ଅନାଇ ପଚାରିଲେ ଏଠି କ'ଣ କରୁଛ ? ମୁଁ କହିଲି କ'ଣ କରୁଛି ଆପଣ ଦେଖିପାରୁ ନାହାନ୍ତି ? ସେ କହିଲେ ତୁମେ କ'ଣ ଷ୍ଟୁଡେଣ୍ଟ ? ମୁଁ ତାଙ୍କ ପ୍ରଶ୍ନର ଢଙ୍ଗ ଦେଖି କହିଲି ମୁଁ କିଏ କ'ଣ ସେକଥା ଆପଣ ଜାଣି ଲାଭ କ'ଣ ? କାହିଁକି ଏସବୁ ପଚାରୁଛନ୍ତି ? ସେ ସେହିଭଳି ଜୋର ଗଳାରେ କହିଲେ ତୁମେ ଶୀଘ୍ର ଏ ସ୍ଥାନ ଛାଡ଼ି ଚାଲିଯାଅ । ମୁଁ କହିଲି ଆପଣ କିଏ କ'ଣ ମୁଁ ଜାଣେନାହିଁ । ମାତ୍ର ମୁଁ ଜଣେ ସାମ୍ବାଦିକ । ମାତୃଭୂମିର ଷ୍ଟାଫ୍ ରିପୋର୍ଟର । ସେ କହିଲେ ଆଇ ଡୋଣ୍ଟ୍ ବଦର ହୁ ଆର୍ ୟୁ । ଅନ୍‌ଲେସ୍ ୟୁ ଲିଭ୍ ଦିସ୍ ପ୍ଲେସ୍ ଇମିଡିଏଟ୍‌ଲି... ଏତିକି ସେ କହିବା ବେଳେ ଚାରିଜଣ ପୋଲିସ୍ ଅଫିସର ଓ କିଛି ଗୋର୍ଖା ପୋଲିସ୍ ସେଠି ପହଞ୍ଚିଲେ । ସେ ପୋଲିସ୍ ଅଫିସରଙ୍କୁ କିଛି ଇଙ୍ଗିତ୍ କଲେ । ତା'ପରେ ପୋଲିସ୍ ଅଫିସର୍ ମୋ ପାଖକୁ ଆସି କହିଲେ ଆପଣ ଏଠୁ ଯା'ନ୍ତୁ ଭାରି । ଏଠି ୧୪୪ ଧାରା ଜାରି ହୋଇଛି । ସେତିକିବେଳେ ପ୍ରାୟ ଶହେ/ ଦେଢ଼ଶହ ଛାତ୍ର ସେଠି ପହଞ୍ଚିଲେ । ସେମାନେ ଚାନ୍ଦିନୀଚୌକ ଛକରେ ବସିବା ମାତ୍ରେ ସେଇ ହାଫ୍‌ପ୍ୟାଣ୍ଟ୍ ପିନ୍ଧା ଲୋକଙ୍କ ନିର୍ଦ୍ଦେଶରେ ପୋଲିସ୍ ବାହିନୀ ସେମାନଙ୍କ ନିକଟକୁ ଯାଇ ସେମାନଙ୍କୁ ଉଠି ଯିବାକୁ କହିଲେ । ସେମାନେ ନ ଶୁଣିବାରୁ ଲାଠିମାଡ଼ ଆରମ୍ଭ ହେଲା । ମୁଁ ସେ ଅବସ୍ଥା ଦେଖି ସାଇକେଲ୍‌ରେ ପଳାଇ ଆସିଲି ଲାଲ୍‌ବାଗ ଥାନାକୁ । ପରେ ଶୁଣିଲି ସେଠାରେ ପୋଲିସ୍ ଗୁଳିଚାଳନା କରିଥିଲା । ଥାନାରେ ପହଞ୍ଚି ମୁଁ ଜଣେ ଚିହ୍ନା ଅଫିସର ସେଶାଲ ବ୍ରାଞ୍ଚ୍ ସବ୍‌ଇନ୍ସପେକ୍ଟର ଶରତ ଚନ୍ଦ୍ର ମିଶ୍ରଙ୍କ ସାଙ୍ଗରେ କଥା ହେଉଛି । ଏହି ସମୟରେ ଦେଖିଲି ସେଇ ଖାକି ହାଫ୍ ପ୍ୟାଣ୍ଟ ପିନ୍ଧା ବ୍ୟକ୍ତି ଏକ ଜିପ୍‌ରୁ ଓହ୍ଲାଇ କୁଆଡ଼କୁ ନଚାହିଁ ଇନ୍ସପେକ୍ଟରଙ୍କ ରୁମ୍‌କୁ ଚାଲିଗଲେ । ମୁଁ ଶରତ ବାବୁଙ୍କୁ ପଚାରିଲି ଇଏ କିଏ କି ? ଶରତ ବାବୁ ମତେ କହିଲେ ଏତେବର୍ଷ ହେଲା ସାମ୍ବାଦିକ ହେଲୋଣି ଯାଙ୍କୁ ଜାଣି ନାହାନ୍ତି ? ଇଏ ଶ୍ରୀକାନ୍ତ ଘୋଷ । ଓଡ଼ିଶା ପୋଲିସ୍‌ର ହର୍ତ୍ତାକର୍ତ୍ତା ଆଇ.ଜି. । ମୁଁ କିଛି କହିଲି ନାହିଁ । ସେଠାରେ ପୂର୍ବରୁ ଏସ୍.ପି. ବିନୟ ମହାପାତ୍ର ଆସି ପହଞ୍ଚିଥିଲେ । ଚାନ୍ଦିନୀଚୌକ ଘଟଣା ସମ୍ପର୍କରେ ଆଲୋଚନା ହୋଇଥିଲା । ସେଦିନ ଚାନ୍ଦନୀଚୌକରେ ପୋଲିସ୍ ଲାଠି ଚାର୍ଜରେ ଓ ଗୁଳି ଚାଳନାରେ ଚାଳିଶ/ ପଚାଶ ଜଣ ଛାତ୍ର ଆହତ ହୋଇ ଡାକ୍ତରଖାନା ଯାଇଥିଲେ । ପନ୍ଦର ଜଣଙ୍କ ଆଘାତ

ଗୁରୁତର ବୋଲି କୁହା ଯାଇଥିଲା । କୌଣସି କାରଣ ନଥାଇ କାହା ନିର୍ଦ୍ଦେଶରେ କାହିଁକି ଲାଠି ଚାର୍ଜ ହେଲା ଓ ଗୁଳି ଚାଳନା ହେଲା ତା' ଉପରେ ଖୁବ୍ ତୁମ୍ବି-ତୋଫାନ ଚାଲିଲା । ମୁଁ ସବୁ ଘଟଣା ଏବଂ ଆଇ.ଜି. ଶ୍ରୀକାନ୍ତ ଘୋଷଙ୍କ ନିର୍ଦ୍ଦେଶରେ ଲାଠି ଚାର୍ଜ ହେଲା ବୋଲି ଲେଖି ମୋ ଷ୍ଟୋରି ଦେଲି । ମାତ୍ର ତା' ପରଦିନ ପୋଲିସ୍ ଅଫିସ୍ ପ୍ରତିବାଦ ଦେଲା । ଆଇ.ଜି. ସେ ସ୍ଥାନରେ ଆଦୌ ନଥିଲେ ଏବଂ ତାଙ୍କ ନାମ ମିଛରେ ଲେଖା ଯାଇଛି । ବିଚିବାବୁ ସେ ପ୍ରତିବାଦ ପାଇ ମୋତେ ପଚାରିଲେ । ମୁଁ ତାଙ୍କୁ ସବୁକଥା କହିଲି । ସେ କହିଲେ ଆପଣ ସବୁକଥା କେଉଁ କେଉଁ ସମୟରେ ଘଟିଥିଲା ଏବଂ ଆପଣଙ୍କ ସହ ଆଇ.ଜି.ଙ୍କ କଥା କଟାକଟି ସବୁ ବିସ୍ତୃତ ଭାବେ ଲେଖି ଦିଅନ୍ତୁ । ମୁଁ ସେଇ ଅନୁସାରେ ଲେଖି ବିଚିବାବୁଙ୍କୁ ଦେଲି । ସେଦିନ ପୋଲିସ୍ ବିଭାଗ ପ୍ରତିବାଦ ସହ ମୋର ସମ୍ବାଦ ପ୍ରକାଶ ପାଇବା ପରେ ଶୁଣିଲି ଆଇ.ଜି. ଭାରି ଖପା ହେଲେ । ଘଟଣା ସରକାରଙ୍କ ପାଖକୁ ଗଲା । ସ୍ୱରାଷ୍ଟ୍ର ମନ୍ତ୍ରୀ ନୀଳମଣି ରାଉତରାୟ ଏ ଘଟଣାରେ ଖୁବ୍ ବିରକ୍ତ ହେଲେ ଏବଂ ଆଇ.ଜି.ଙ୍କ ଠାରୁ କୌଣସି କୈଫିୟତ ମାଗି ନଥିଲେ । ଫଳ ହେଲା ପୋଲିସ୍‌ର ସାମ୍ବାଦିକ ସମ୍ମିଳନୀରେ ମାତୃଭୂମିକୁ ବାସନ୍ଦ କରାଗଲା । ଏଘଟଣା ଜଣା ପଡ଼ିବା ପରେ ମାତୃଭୂମିରେ ବଡ଼ ବଡ଼ ଅକ୍ଷରରେ ଛପା ହୋଇ ମୁଖ୍ୟମନ୍ତ୍ରୀଙ୍କ ଦୃଷ୍ଟି ଆକର୍ଷଣ କରାଗଲା । ପରେ ସବୁ ଠିକ୍ ଠାକ୍ ହୋଇଗଲା । ଛାତ୍ର ଆନ୍ଦୋଳନ ପରେ ଆଇ.ଜି. ଶ୍ରୀକାନ୍ତ ଘୋଷଙ୍କୁ ଆଇ.ଜି. ପଦରୁ ବିଦା କରାଯାଇ ତାଙ୍କ ସ୍ଥାନରେ ଜେ.ସି. ଘୋଷ ନାମକ ଜଣେ ଅଫିସର ଆଇ.ଜି. ହୋଇଥିଲେ ।

ଏହି ଛାତ୍ର ଆନ୍ଦୋଳନର ତୀବ୍ରତା ଏତେ ଥିଲା ଯେ ବିଭିନ୍ନ ସ୍ଥାନରେ ପୋଲିସ୍ ଗୁଳିରେ ଚାରିଜଣ ଛାତ୍ର ପ୍ରାଣ ହରାଇଥିଲେ । ଯାହା ମୋର ମନେ ପଡୁଛି ଏବଂ ଯାହା ମୁଁ ଡାଇରିରେ ଲେଖିଛି ସେଥିରେ ଜଗତ୍‌ସିଂହପୁରରେ ଜଣେ, ବ୍ରହ୍ମପୁରରେ ଦୁଇଜଣ, ଭବାନୀପାଟଣାରେ ଜଣେ ଛାତ୍ର ପୋଲିସ୍ ଗୁଳିରେ ପ୍ରାଣ ହରାଇଥିଲେ । ଏହାପରେ ଆନ୍ଦୋଳନ ଆହୁରି ତୀବ୍ର ହୋଇଥିଲା । ତା'ପରେ ସରକାରଙ୍କ ପକ୍ଷରୁ ସ୍ୱରାଷ୍ଟ୍ର ମନ୍ତ୍ରୀ ନୀଳମଣି ରାଉତରାୟ ଛାତ୍ର ନେତାମାନଙ୍କୁ ଆଲୋଚନା ପାଇଁ ଡାକିଥିଲେ । କେତେକ ଛାତ୍ରନେତା ବିଶେଷକରି ଭାଗବତ ବେହେରା, ତ୍ରିଲୋଚନ କାନୁନ୍‌ଗୋ ଏବଂ ଆଉ ତିନି ଚାରିଜଣ ଛାତ୍ରନେତା ଏହି ଆଲୋଚନାକୁ ଯାଇଥିଲେ । ଛାତ୍ର ଆନ୍ଦୋଳନ ସମ୍ପର୍କରେ ବିଚାର ବିଭାଗୀୟ ତଦନ୍ତ ହେବ ବୋଲି ସରକାର ଘୋଷଣା କରିଥିଲେ । ମାତ୍ର ତା' ସତ୍ତ୍ୱେ ଛାତ୍ର ଆନ୍ଦୋଳନ ବନ୍ଦ ହୋଇନଥିଲା ।

## -ମୁଖ୍ୟମନ୍ତ୍ରୀ ପଦ ପାଇଁ ହଟ-ଚମଟ-

ଓଡ଼ିଶାର ଛାତ୍ର ଆନ୍ଦୋଳନର ତୀବ୍ରତା କେନ୍ଦ୍ରରେ ପହଞ୍ଚିଲା । ବୀରେନ ମିତ୍ର ସେତେବେଳେ ମୁଖ୍ୟମନ୍ତ୍ରୀ ଥିଲେ ମଧ୍ୟ ବିଧାନ ସଭାରେ ସେପ୍ଟେମ୍ବର ୨ ତାରିଖର ଛାତ୍ରମାନଙ୍କ ଭଙ୍ଗାରୁଜା ଘଟଣା ପରେ ବେଶ୍ ଭାଙ୍ଗି ପଡ଼ିଥିଲେ । ଛାତ୍ର ଆନ୍ଦୋଳନ ସମାଧାନ ପାଇଁ କେନ୍ଦ୍ର ସରକାର ନିଜେ ହସ୍ତକ୍ଷେପ କଲେ । ୧୯୬୪ ନଭେମ୍ବର ପହିଲାରେ କେନ୍ଦ୍ର ସ୍ୱରାଷ୍ଟ୍ର ମନ୍ତ୍ରୀ ଗୁଲଜାରୀ ଲାଲ ନନ୍ଦା ଓ ସ୍ୱରାଷ୍ଟ୍ର ସଚିବ ବି.କେ. ସିହ୍ନା (ମୋର ଯାହା ମନେ ପଡୁଛି ତାଙ୍କ ନାଁ ବି.କେ. ସିହ୍ନା ଓ ଓ ସେ ଆଇ.ସି.ଏସ୍. ଅଫିସର) ଏକ ସ୍ୱତନ୍ତ୍ର ବିମାନରେ ଭୁବନେଶ୍ୱର ଆସିଲେ । ନଭେମ୍ବର ୨ ତାରିଖରେ ସକାଳ ସାଢ଼େ ଦଶଟା ବେଳେ କଟକ ସର୍କିଟ ହାଉସ୍‌ରେ ଛାତ୍ରନେତାମାନଙ୍କ ସହ ଆଲୋଚନା ହେବା ସ୍ଥିର ହେଲା । ଏ ଖବର ପାଇ ମୁଁ ସକାଳ ସାଢ଼େ ନ'ଟା ବେଳକୁ ସର୍କିଟ ହାଉସ୍‌ରେ ପହଞ୍ଚିଥିଲି । ସିହ୍ନା ସାହେବ ପ୍ରଥମେ ଆସି ସର୍କିଟ୍ ହାଉସ୍‌ରେ ପହଞ୍ଚିଲେ । ଦୀର୍ଘକାୟ ଚେହେରା । ବେଶ୍ ମୋଟାସୋଟା- ଉଚ୍ଚତା ଛ' ଫୁଟ୍ ୨/୩ ଇଞ୍ଚରୁ କମ୍ ହେବ ନାହିଁ । ବ୍ଲୁ କଲରର ସୁଟ୍ ପିନ୍ଧି ସର୍କିଟ ହାଉସ୍ ବାରଣ୍ଡାରେ ଏପଟ ସେପଟ ହେଉଥା'ନ୍ତି । ଦଶଟା ପନ୍ଦର/କୋଡ଼ିଏ

ମିନିଟ୍ ବେଳେ ଜଣେ ଛାତ୍ରନେତା ସମ୍ଭବତଃ ତ୍ରିଲୋଚନ କାନୁନ୍‌ଗୋ ଆସି କହିଲେ ଆମେ ଆଲୋଚନାକୁ ଆସିବୁ ନାହିଁ । କାରଣ ବାଟରେ ଆମର ଜଣେ ଛାତ୍ରନେତା ଭାଗବତ ବେହେରାଙ୍କୁ ପୋଲିସ୍ ଗିରଫ୍ କରି ନେଇ ଯାଇଛି । ସ୍ୱରାଷ୍ଟ୍ର ସଚିବ ସିହ୍ନା ସାହେବ ଏକଥା ଶୁଣି ଅତ୍ୟନ୍ତ ବିରକ୍ତି ଗଳାରେ କଟକ ଏସ୍.ପି. ବିନୟ ମହାପାତ୍ରଙ୍କୁ କହିଲେ, 'ୟୁ ଗୋ ଏଣ୍ଡ୍ ଗେଟ୍ ଦ୍ୟାଟ୍ ବୟ । ହୁ ଅର୍ଡ଼ର ଟୁ ଆରେଷ୍ଟ ହିମ୍ ।' ବିନୟ ବାବୁ ଏ କଥା ସେଇଠି ଥିବା ଜଣେ ଇନ୍‌ସପେକ୍ଟରଙ୍କୁ କହି ଭାଗବତ ବେହେରାଙ୍କୁ ଆଣିବା ପାଇଁ କହିଲେ । ସିହ୍ନା ସାହେବ ସେଇଠି ଏପଟ ସେପଟ ହେଉଥା'ନ୍ତି ।

ପନ୍ଦର କୋଡ଼ିଏ ମିନିଟ୍ ହୋଇଗଲା । କୌଣସି ଛାତ୍ରନେତା ଉପର ମହଲାକୁ ଗଲେ ନାହିଁ । ହଠାତ୍ ସିହ୍ନା ସାହେବ ବିରକ୍ତ ହୋଇ ବିନୟ ବାବୁଙ୍କୁ କହିଲେ ଏସ୍.ପି. ମୁଁ ଆପଣଙ୍କୁ କହିଥିଲି ସେ ପିଲାକୁ ନିଜେ ଯାଇ ନେଇ ଆସିବାପାଇଁ । ଶୀଘ୍ର ଯାଅ । ହଠାତ୍ ସିହ୍ନା ସାହେବଙ୍କ ମୁହଁରୁ ପରିଷ୍କାର ଓଡ଼ିଆ ଶୁଣି ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ସେଠି ଉପସ୍ଥିତ ଜଣେ ପୁରୁଣା ପୋଲିସ୍ ଅଫିସରଙ୍କୁ ଏକଥା ପଚାରିବାରେ ସେ କହିଲେ ସିହ୍ନା ସାହେବ ପୂର୍ବରୁ କଟକ କଲେକ୍ଟର ଥିଲେ । ସେତେବେଳେ ଓଡ଼ିଶାରେ ଥିବା ଅଣଓଡ଼ିଆ ଅଫିସରମାନେ ଓଡ଼ିଆ ଭାଷା ଶିକ୍ଷା କରିବା ବାଧ୍ୟତାମୂଳକ ଥିଲା । କେବଳ ମୁଁ ନୁହେଁ, ସେଠି ଉପସ୍ଥିତ ଅନେକ ଲୋକ ସ୍ୱରାଷ୍ଟ୍ର ସଚିବଙ୍କ ଓଡ଼ିଆ କଥା ଶୁଣି ଆଶ୍ଚର୍ଯ୍ୟ ହୋଇଥିଲେ । କିଛି ସମୟ ପରେ ଭାଗବତ ବେହେରା ଆସିଲେ । ସବୁ ଛାତ୍ର ନେତାମାନେ ସର୍କିଟ ହାଉସ୍‌ର ଉପର ମହଲାରେ ଥିବା ଏକ ଲାଉଞ୍ଜକୁ ଗଲେ । ମୁଁ ସେଇ ଛାତ୍ରନେତାମାନଙ୍କ ଭିତରେ ସେଇ ଲାଉଞ୍ଜକୁ ଚାଲିଗଲି । ସେ ଆଲୋଚନା ଯଦିଓ ଗୋପନୀୟ ଥିଲା, ମୋତେ ଭିତରକୁ ଯିବାରେ କେହି ରୋକିଲେ ନାହିଁ । ସେତେବେଳେ ସେ କଥା ମତେ ଆଶ୍ଚର୍ଯ୍ୟ ଲାଗିଲା । ପରେ ମୋତେ ସ୍ପେଶାଲ୍ ବ୍ରାଞ୍ଚ୍ ଏସ୍.ଆଇ. ଶରତ ମିଶ୍ର କହିଲେ ମୋଟ ଏଗାର ଜଣ ଛାତ୍ରନେତା ଯିବା କଥା । ଜଣେ ଛାତ୍ରନେତା ଆସିନଥିଲେ । ତେଣୁ ଗେଟ୍‌ରେ ଯେଉଁ ପୋଲିସ୍ ଅଫିସର ଗଣତି କରି ଛାତ୍ରନେତାଙ୍କୁ ଛାଡୁଥିଲେ ମୋତେ ଛାତ୍ରନେତା ଭାବି ଛାଡ଼ିଦେଲେ ।

ଭିତରେ ପହଞ୍ଚି ମୁଁ ଦେଖିଲି ଗୁଲଜାରୀ ଲାଲ୍ ନନ୍ଦା, ଆଚାର୍ଯ୍ୟ ହରିହର, ରମାଦେବୀ, ସମାଜ ସମ୍ପାଦକ ରାଧାନାଥ ରଥ, ରାଜ୍ୟ ସ୍ୱରାଷ୍ଟ୍ର ମନ୍ତ୍ରୀ ନୀଳମଣି ରାଉତରାୟ, କଟକ ଜିଲ୍ଲାପାଳ ପଦ୍ମନାଭ ମିଶ୍ର ପ୍ରମୁଖ ବସିଥିଲେ । ଛାତ୍ରନେତାମାନେ ସମ୍ମୁଖରେ ବସିଲେ । ମୁଁ ଗୋଟେ ଛୋଟ ଟି-ପଏ ଟାଣି ନେଇ ଆଚାର୍ଯ୍ୟ ହରିହର ଓ ରାଧାନାଥ ରଥ ବସିଥିବା ସୋଫା ପଛପଟେ ବସିଲି । ଆଲୋଚନା ଆରମ୍ଭ ହେଲା । ଉଭୟ ପକ୍ଷରୁ ଯିଏ ଯାହା କହୁଥିଲେ ମୁଁ ତାକୁ ଟିପୁଥାଏ । ହଠାତ୍ ମୋ ଉପରେ କଟକ କଲେକ୍ଟର ପଦ୍ମନାଭ ବାବୁଙ୍କ ଦୃଷ୍ଟି ପଡ଼ିଲା । ସେ ମତେ ବାହାରକୁ ଯିବା ପାଇଁ ହାତରେ ଇସାରା ଦେଲେ । ମୁଁ ତାଙ୍କୁ ନମସ୍କାର କରି ସେହିଭଳି ଇସାରାରେ ଆଉ କିଛି ନକହିବା ପାଇଁ ଅନୁରୋଧ କଲି ।

ପ୍ରାୟ ଘଣ୍ଟାକ ପରେ ଆଲୋଚନା ଶେଷ ହେଲା । ଛାତ୍ରମାନଙ୍କ ଉପରୁ ସମସ୍ତ ମୋକଦ୍ଦମା ପ୍ରତ୍ୟାହାର କରିନେବା ପାଇଁ, ମୃତ ଛାତ୍ରମାନଙ୍କ ପାଇଁ କ୍ଷତିପୂରଣ ଏବଂ ସମସ୍ତ ଘଟଣାର ନିରପେକ୍ଷ ଅନୁସନ୍ଧାନ ପାଇଁ ଏକ ତଦନ୍ତ କମିଶନ ବସାଇବା ପାଇଁ ନିଷ୍ପତ୍ତି ହେଲା । ଦିନ ପ୍ରାୟ ଗୋଟାଏ ବେଳକୁ ସମସ୍ତେ ଉଠି ରେଭେନ୍ସା କଲେଜ ପଡ଼ିଆରେ ଆୟୋଜିତ ହୋଇଥିବା ଏକ ଛାତ୍ର ସମାବେଶରେ ଯୋଗଦେବାକୁ ଗଲେ । ମୁଁ ମୋ ସାଇକେଲ୍ ଧରି ରେଭେନ୍ସାରେ ପହଞ୍ଚି ପ୍ରିନ୍ସିପାଲ୍‌ଙ୍କ ଅଫିସ୍‌କୁ ଗଲି । ସେଇଠୁ ଫୋନ୍ କରି ଆଲୋଚନାର ବିସ୍ତୃତ ବିବରଣୀ ଦେଲି । ତା' ସାଙ୍ଗରେ ରେଭେନ୍ସା କଲେଜ ସଭା କଥା ମଧ୍ୟ ଦେଲି । ସେ ଦିନ ସନ୍ଧ୍ୟାରେ ମାତୃଭୂମିରେ ବିସ୍ତୃତ ବିବରଣୀ ପ୍ରକାଶ

ପାଇଲା । ମାତ୍ର ଅନ୍ୟ ଖବର କାଗଜରେ କେବଳ ତଦନ୍ତ କମିଶନ ଖବର ସଂକ୍ଷିପ୍ତରେ ପ୍ରକାଶ ପାଇଲା । ମୁଁ ପୂର୍ବରୁ କହିଛି ସେତେବେଳେ ସବୁ କାଗଜ ସନ୍ଧ୍ୟାରେ ପ୍ରକାଶ ପାଉଥିଲା । ତେଣୁ ଦିନ ଦୁଇଟା ସୁଦ୍ଧା ଖବର ଦେବାର ଶେଷ ସମୟ ଥିଲା । କେବଳ ରେଭେନ୍ସା ପଡ଼ିଆର ମିଟିଂ ଖବର ଅନ୍ୟ କାଗଜରେ ବାହାରିବା ବେଳେ ଆମ କାଗଜରେ ଆଲୋଚନାର ବିସ୍ତୃତ ଖବର ପ୍ରକାଶ ପାଇଥିଲା । ଓଡ଼ିଶା ହାଇକୋର୍ଟର ବିଚାରପତି ଶ୍ରୀ ସତ୍ୟଭୂଷଣ ବର୍ମନ ଏହି ଛାତ୍ର ଆନ୍ଦୋଳନ କମିଶନ ରୂପେ ନିଯୁକ୍ତି ପାଇଥିଲେ ।

ଆମ କାଗଜରେ ସର୍କିଟ ହାଉସ୍‌ରେ ଛାତ୍ରନେତାମାନଙ୍କର ଏବଂ ନନ୍ଦାଜୀ, ନୀଳମଣି ବାବୁ, ରମାଦେବୀ ଓ ଅନ୍ୟ ବିଶିଷ୍ଟ ନେତାମାନେ ଯାହା ଯାହା କହିଥିଲେ ଏବଂ ରେଭେନ୍ସା କଲେଜ ମିଟିଂ ଖବର ମୁଁ ବିସ୍ତୃତଭାବେ ଦେଇଥିଲି । ସ୍ୱାଭାବିକଭାବେ ତାହା ମାତୃଭୂମିର ଫାଷ୍ଟ ଷ୍ଟୋରୀ ହୋଇଥିଲା । ସେଦିନ ସନ୍ଧ୍ୟାରେ ମାତୃଭୂମିର ବେଶ୍ ଚାହିଦା ହେଲା । କିନ୍ତୁ ବିପଦ ହେଲା ପରଦିନ । ଆମ କାଗଜ ଦେଖି ରାଧାନାଥ ବାବୁ କଟକ ଜିଲ୍ଲାପାଳ ପଦ୍ମନାଭ ମିଶ୍ରଙ୍କୁ ଏକ ପତ୍ର ଲେଖିଦେଲେ । ତାଙ୍କର ଅଭିଯୋଗ ହେଲା ସର୍କିଟ ହାଉସ୍ ମିଟିଂ ଗୋପନୀୟ ହୋଇଥିବା ବେଳେ ମାତୃଭୂମି ସାମ୍ବାଦିକ ସେ ସ୍ଥାନକୁ କିପରି ଗଲେ ଏବଂ ତାଙ୍କୁ ସେଠାରେ ବସିବାପାଇଁ କିଏ ଅନୁମତି ଦେଇଥିଲା ? ଯଦି ଖବର କାଗଜ ସାମ୍ବାଦିକଙ୍କୁ ମିଟିଂକୁ ଡକାଯାଇଥିଲା ତେବେ ସମାଜକୁ ଡକାଗଲା ନାହିଁ କାହିଁକି ? ଅନୁରୂପ ଅଭିଯୋଗ ମଧ୍ୟ ପ୍ରଜାତନ୍ତ୍ର କାଗଜ ପକ୍ଷରୁ କରାଗଲା । ଏ ଦୁଇ ଖବର କାଗଜର ପତ୍ର ପାଇ କଟକ ଜିଲ୍ଲାପାଳ 'ମାତୃଭୂମି' ସମ୍ପାଦକ ଗୌରଚନ୍ଦ୍ର ରାଉତଙ୍କ ନିକଟକୁ ଏକ ପତ୍ର ଲେଖି ସରକାରୀ ଗୋପନୀୟ ତଥ୍ୟ ପ୍ରକାଶ ଆଇନ୍ ଅନୁସାରେ ମାତୃଭୂମି ସମ୍ବାଦପତ୍ରର ପ୍ରତିନିଧି ବରେନ୍ଦ୍ର କୃଷ୍ଣ ଧଳଙ୍କୁ ଗିରଫ କରାଯିବ ନାହିଁ କାହିଁକି ? ବୋଲି ପ୍ରଶ୍ନ କରିଥିଲେ ।

ଗୌରବାବୁ ପତ୍ର ପାଇ ମୋତେ ପଚାରିଲେ ଘଟଣା ସମ୍ପର୍କରେ । ମୁଁ କହିଲି ପ୍ରଥମତଃ ସେ ମିଟିଂ ଗୋପନୀୟ ବୋଲି ମତେ କେହି କହି ନାହିଁ କିମ୍ବା ସେଠାରେ କୌଣସି ଲେଖା ନଥିଲା । ଦ୍ୱିତୀୟରେ ମୁଁ ବୈଠକ ଗୃହକୁ ପ୍ରବେଶ କରିବା ବେଳେ କେହି ମୋତେ ଅଟକାଇଲେ ନାହିଁ । ତୃତୀୟରେ ବୈଠକ ଚାଲିଥିବା ବେଳେ କଟକ ଜିଲ୍ଲାପାଳ ମୋତେ ଦେଖିଛନ୍ତି । ଏବଂ ମୋତେ ବୈଠକରେ ଉପସ୍ଥିତ ନରହିବା ପାଇଁ କିଛି କହି ନାହାନ୍ତି । ଚତୁର୍ଥରେ ମୋତେ ରାଧାନାଥ ବାବୁ ସେଠି ଦେଖିଛନ୍ତି । ମାତ୍ର କିଛି କହି ନାହାନ୍ତି । କାରଣ ମୁଁ ରାଧାନାଥ ବାବୁଙ୍କ ଠିକ୍ ପଛପଟେ ବସିଥିଲି ।

ଏହି ପଏଣ୍ଟଗୁଡ଼ିକ ଲେଖିଦେବା ପାଇଁ ବିଚିବାବୁ ମୋତେ କହିଲେ । ଏହି ପଏଣ୍ଟ ସହ ଆଉ ଗୋଟିଏ ପଏଣ୍ଟ ଯୋଡ଼ି ମୁଁ ଲେଖିଲି ଯେ ପୋଲିସ୍ ଅଫିସର, ସ୍ପେଶାଲ୍ ବ୍ରାଞ୍ଚ୍ ଅଫିସର ଯେଉଁମାନେ ସେଠାରେ ଥିଲେ ସମସ୍ତେ ମୋତେ ଚିହ୍ନିଛନ୍ତି । ମାତ୍ର କେହି ମୋତେ ସେ ମିଟିଂ ସ୍ଥାନକୁ ପ୍ରବେଶ କରିବା ବେଳେ ବାଧା ଦେଇ ନାହାନ୍ତି । ତେଣୁ ମୋର ମନେ ହେଲା ମିଟିଂକୁ ସାମ୍ବାଦିକମାନଙ୍କ ପ୍ରବେଶରେ ଅସୁବିଧା ନାହିଁ ।

ଯେଉଁ କାରଣ ମୁଁ ଦର୍ଶାଇଲି ସେଗୁଡ଼ିକ ଲେଖି ଗୌରବାବୁ ଜିଲ୍ଲାପାଳଙ୍କ ପତ୍ରର ଉତ୍ତର ଦେଲେ । ଜିଲ୍ଲାପାଳ ପତ୍ର ପାଇଲା ପରେ ଘଟଣାର ପରିସମାପ୍ତି ଘଟିଥିଲା । ଏହି ଘଟଣାର ଚାରି/ପାଞ୍ଚଦିନ ପରେ ପଦ୍ମନାଭ ବାବୁଙ୍କ ସହ ମୋର ଦେଖା ହେଲା । ମୋତେ ଦେଖି ହସି ହସି କହିଲେ ଭିତରକୁ ଗଲେ ତ ଗଲେ । ରାଧାନାଥ ବାବୁ ଆଉ ଆଚାର୍ଯ୍ୟ ହରିହରଙ୍କ ମଝିରେ ମୁହଁ ଦେଖାଉଥିଲେ କାହିଁକି ? ସମାଜରେ ଆପଣଙ୍କ ଫଟ ଦେଖି ରାଧାନାଥ ବାବୁଙ୍କୁ ତାଙ୍କ ଷ୍ଟାଫ୍ ରିପୋର୍ଟର କହିଲେ ଏଇଠି ମାତୃଭୂମି ଷ୍ଟାଫ୍ ରିପୋର୍ଟର ଆପଣଙ୍କ ପାଖରେ ବସିଛନ୍ତି । ଆପଣ ଆମ ଉପରେ

ରାଗିଲେ ଆମେ କ'ଣ କରିବୁ ? ତା' ପରେ ରାଧାନାଥ ବାବୁ ଏ ଚିଠି ଲେଖିଲେ । ଯାହାହେଉ ତାଙ୍କ ପକ୍ଷରୁ ଆଉ ଏ ଘଟଣାକୁ ଗୁରୁତ୍ୱ ଦେଇ ନାହାନ୍ତି ।

୧୯୬୫ ମସିହାରେ ଓଡ଼ିଶାରେ ମୁଖ୍ୟମନ୍ତ୍ରୀ ବୀରେନ ମିତ୍ର ପରିବର୍ତ୍ତନ ହେଲେ । ଫେବୃଆରୀ ୨୦ ତାରିଖରେ ବୀରେନ ଦା ଇସ୍ତଫା ଦେଲେ । ଫେବୃଆରୀ ୨୧ ତାରିଖରେ ସଦାଶିବ ତ୍ରିପାଠୀ ମୁଖ୍ୟମନ୍ତ୍ରୀ ରୂପେ ଶପଥ ନେଲେ । ନୀଳମଣି ରାଉତରାୟ ଉପ- ମୁଖ୍ୟମନ୍ତ୍ରୀ ରୂପେ ମଧ୍ୟ ଶପଥ ନେଲେ । ମୁଁ ସେତେବେଳେ ପ୍ରାୟ ଭୁବନେଶ୍ୱର ଯିବା ଆସିବା କରୁଥିଲି । ସେତେବେଳେ ବିଜୁବାବୁଙ୍କ କାଟ୍‌ତି ମଧ୍ୟ କମି ଯାଇଥାଏ । କାରଣ ମୁଁ ଯାହା କଂଗ୍ରେସ ନେତାମାନଙ୍କ ଠାରୁ ଶୁଣିଥିଲି ପ୍ରଧାନମନ୍ତ୍ରୀ ଲାଲ୍ ବାହାଦୂର ଶାସ୍ତ୍ରୀ ବିଜୁବାବୁଙ୍କ ଉପରେ ସନ୍ତୁଷ୍ଟ ନଥିଲେ । ଶାସ୍ତ୍ରୀଜୀଙ୍କୁ ଓଡ଼ିଶାରୁ ବହୁ ନେତା ବିଜୁବାବୁ ଏବଂ ବୀରେନ୍ ବାବୁଙ୍କ ବିରୁଦ୍ଧରେ ଦୁର୍ନୀତି ଅଭିଯୋଗ କରି ପତ୍ର ଦେଇଥିଲେ । ନେହେରୁ ଥିବା ପର୍ଯ୍ୟନ୍ତ ବିଜୁ ବାବୁଙ୍କ ବିରୁଦ୍ଧରେ ଯେତେ ଯାହା ଚକ୍ରାନ୍ତ ହୋଇଥିଲା ସେ ସବୁ କିଛି କାଟୁ କରି ନଥିଲା । ମାତ୍ର ନେହେରୁଙ୍କ ପରଲୋକ ପରେ ବିଜୁ ବାବୁ କଂଗ୍ରେସର ମୋରାରଜୀ ଦେଶାଇଙ୍କୁ ସମର୍ଥନ କରିବାରେ ଶାସ୍ତ୍ରୀଙ୍କ ଠାରୁ ଆରମ୍ଭ କରି ଇନ୍ଦିରାଙ୍କ ପର୍ଯ୍ୟନ୍ତ କେହି ତାଙ୍କୁ ଆଉ ସୁନଜରରେ ଦେଖିଲେ ନାହିଁ । ମାତ୍ର ବିଜୁବାବୁଙ୍କ ବିଶାଳ ବ୍ୟକ୍ତିତ୍ୱ ବିରୁଦ୍ଧରେ ଯିବାପାଇଁ କେହି ସାହସ କରିନଥିଲେ । ମୁଁ ଯାହା ଶୁଣିଥିଲି ଶାସ୍ତ୍ରୀଜୀ ବିଜୁବାବୁଙ୍କ ବିରୁଦ୍ଧରେ ବହୁ ଅଭିଯୋଗ ପାଇବା ପରେ ତାଙ୍କୁ ଡକାଇ ରାଜ୍ୟ ଯୋଜନା ବୋର୍ଡ଼ ଅଧକ୍ଷ ପଦରୁ ଇସ୍ତଫା ଦେବାକୁ କହିଥିଲେ । ବାଧ୍ୟ ହୋଇ ବିଜୁବାବୁ ୧୯୬୫ ଜାନୁଆରୀ ୨୯ ତାରିଖରେ ରାଜ୍ୟ ଯୋଜନା ବୋର୍ଡ଼ ଅଧକ୍ଷ ପଦରୁ ଇସ୍ତଫା ଦେଲେ । ଖୁବ୍ ଶୀଘ୍ର ବୀରେନ୍ ମିତ୍ର ଇସ୍ତଫା ଦେବେ ବୋଲି ମଧ୍ୟ ଜୋର ପ୍ରଚାର ହେଲା ।

ଭୁବନେଶ୍ୱର ଆଉ କଟକରେ ସେତେବେଳେ ପ୍ରଚାର ହେଲା ନୀଳମଣି ରାଉତରାୟ ପରବର୍ତ୍ତିମୁଖ୍ୟମନ୍ତ୍ରୀ ହେବେ । ନୀଳମଣି ବାବୁ କଟକରେ ରହୁଥିଲେ । ମତେ ବିଚିବାବୁ ନୀଳମଣି ବାବୁଙ୍କ ଠାରୁ ଏକ ସାକ୍ଷାତକାର ଆଣିବା ପାଇଁ କହିଲେ । ସମ୍ଭବତଃ ଫେବୃଆରୀ ପନ୍ଦର ତାରିଖରେ ମୁଁ ନୀଳମଣି ବାବୁଙ୍କ ଚଣ୍ଡି ଛକ ବାସଭବନକୁ ସକାଳେ ଯାଇ ପହଞ୍ଚିଥିଲି । ନୀଳମଣି ବାବୁ ମୋତେ ଦେଖି ପଚାରିଲେ ମୁଁ ମୁଖ୍ୟମନ୍ତ୍ରୀ ହେବି ବୋଲି ତମେ କିପରି ଜାଣିଲ ? ମୁଁ କହିଲି ସାର୍ ସମସ୍ତେ କଥାବାର୍ତ୍ତା ହେଉଛନ୍ତି ଆପଣ ପରବର୍ତ୍ତିମୁଖ୍ୟମନ୍ତ୍ରୀ ବୋଲି । ଆମ ସମ୍ପାଦକ ଗୌର ବାବୁ ବିଜୁବାବୁଙ୍କୁ ଫୋନ୍‌ରେ ଏକଥା ପଚାରିଥିଲେ । ବିଜୁବାବୁ ତାଙ୍କୁ ତାଙ୍କ ପକ୍ଷରୁ କିଛି ନ କହିଲେ ମଧ୍ୟ ଗୌରବାବୁ ଆପଣଙ୍କ ନାଁ ଉଠାଇବାରେ ସେ କହିଲେ ମେ' ବି । ନୀଳମଣି ବାବୁ ଏକଥା ଶୁଣି ଆଗ୍ରହୀ ହୋଇ ପଡ଼ିଲେ । ଗୌରବାବୁ କେବେ ବିଜୁବାବୁଙ୍କୁ ପଚାରିଥିଲେ ବୋଲି ନୀଳମଣି ବାବୁ ମୋତେ ପଚାରିବାରେ ମୁଁ କହିଲି ବୋଧେ କାଲି ଚାରିଟା/ପାଞ୍ଚଟା ବେଳକୁ । ସେଇଥିପାଇଁ ମୋତେ ଆଜି ଆପଣଙ୍କ ପାଖକୁ ପଠାଇଲେ ଇଣ୍ଟରଭ୍ୟୁ ନେବା ପାଇଁ । ନୀଳମଣି ବାବୁ ମୋ କଥା ଶୁଣି ଭାରି ଖୁସି ହୋଇଗଲେ । ତା'ପରେ କହିଲେ ଏଇନେ ମୁଖ୍ୟମନ୍ତ୍ରୀ ଭାବେ ଇଣ୍ଟରଭ୍ୟୁ ଦେବା ଠିକ୍ ହେବ ନାହିଁ । ବରଂ ଏଇମିତି ରାଜ୍ୟର ସମସ୍ୟା ସମ୍ପର୍କରେ ପ୍ରଶ୍ନ କରି ପାର । ଉପ-ମୁଖ୍ୟମନ୍ତ୍ରୀ ରୂପେ ଉତ୍ତର ଦେବାରେ ବାଧା ନାହିଁ । ମୁଁ ଲେଖିକରି ନେଇଥିବା ପ୍ରଶ୍ନ ତାଙ୍କୁ ପଚାରିଲି । ସେ ଉତ୍ତର ଦେଲେ । ସେ ଯଦି ପରବର୍ତ୍ତିମୁଖ୍ୟମନ୍ତ୍ରୀ ହୁଅନ୍ତି ତେବେ ତାଙ୍କର ପ୍ରଥମ ପଦକ୍ଷେପ କ'ଣ ହେବ ବୋଲି ପ୍ରଶ୍ନ କରିବାରେ ନୀଳମଣି ବାବୁ କହିଲେ ମୁଖ୍ୟମନ୍ତ୍ରୀ ହେବା ପରେ ସେ କଥା ବିଚାର କରିବି । ମୁଁ ଇଣ୍ଟରଭ୍ୟୁ ନେଇ ଫେରିଲି । ତେବେ ମୋ କଥାରେ ନୀଳମଣି ବାବୁ ସେଦିନ ଖୁବ୍ ଆନନ୍ଦ ହୋଇ ମୁଖ୍ୟମନ୍ତ୍ରୀ ହେବାର ସ୍ୱପ୍ନ ଦେଖିବାକୁ ଆରମ୍ଭ କଲେ ।

ମାତ୍ର ବିଧିର ବିଧାନ ବିଚିତ୍ର । ନୀଳମଣି ବାବୁ ମୁଖ୍ୟମନ୍ତ୍ରୀ ହେବା ପାଇଁ ଏକ ପ୍ରକାର ସଜବାଜ ହୋଇ ବସିଥିବା ବେଳେ ଦିଲ୍ଲୀରୁ ଖବର ଆସିଲା ସଦାଶିବ ତ୍ରିପାଠୀ ମୁଖ୍ୟମନ୍ତ୍ରୀ ହେବେ ବୋଲି । ସମସ୍ତେ ଆଶ୍ଚର୍ଯ୍ୟ ହୋଇଥିଲେ । ମୁଁ କିଛି କଂଗ୍ରେସ ନେତାଙ୍କୁ ଏ ସମ୍ପର୍କରେ ପଚାରିବାରେ ସେମାନେ ବିଭିନ୍ନ ଯୁକ୍ତି ଦେଖାଇଥିଲେ । ଜଣେ କହିଲା ନୀଳମଣି ବାବୁଙ୍କ ସପକ୍ଷରେ ଚାଉଳ କଳବାଲା ଲାଗିବାରୁ କଂଗ୍ରେସରୁ କିଛି ନେତା ନୀଳମଣିବାବୁଙ୍କ ସଚ୍ଚୋଟତା ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରି କେନ୍ଦ୍ର ହାଇକମାଣ୍ଡଙ୍କୁ ଜଣାଇଥିଲେ । ଦ୍ୱିତୀୟରେ ବିଜୁ-ବୀରେନ୍-ନୀଳମଣି ଅଭିନ୍ନ ବନ୍ଧୁ ଥିବାରୁ ଏବଂ ପ୍ରଥମ ଦୁଇଜଣ ଦୁର୍ନୀତି ଅଭିଯୋଗରେ ବିଦା ହେବାରୁ ନୀଳମଣି ବାବୁଙ୍କ ପାଇଁ ମଧ ତାହା ଏକ ପ୍ରକାର ଅଙ୍ଗୁଳି ନିର୍ଦ୍ଦେଶ ହୋଇଥିଲା । ଫଳରେ ସଦାଶିବବାବୁଙ୍କୁ ମୁଖ୍ୟମନ୍ତ୍ରୀ ପାଇଁ ମନୋନୀତ କରାଗଲା । ନୀଳମଣି ବାବୁ ଭାଙ୍ଗିପଡ଼ିଲେ । ମାତ୍ର ସଦାଶିବ ବାବୁ ନିଜେ ତାଙ୍କ ପାଖକୁ ଆସି ତାଙ୍କୁ ଉପମୁଖ୍ୟମନ୍ତ୍ରୀ ପଦ ଗ୍ରହଣ କରି ଶପଥ ନେଲେ । ସେତେବେଳେ ଏହି ଘଟଣାକୁ ନେଇ ବହୁ ମୁଖରୋଚକ ଗୁଜବମାନ ପ୍ରକାଶ ପାଇଥିଲା । ବୀରେନ୍ ଦା'ଙ୍କ ସରକାରରେ ଯେଉଁମାନେ ମନ୍ତ୍ରୀ ଥିଲେ ସଦାଶିବ ତ୍ରିପାଠୀଙ୍କ ମନ୍ତ୍ରିମଣ୍ଡଳରେ ସେମାନେ ସମସ୍ତେ ସ୍ଥାନ ପାଇଲେ ।

ବୀରେନ ମିତ୍ର ଶାସନରୁ ଅପସରି ଯିବା ପରେ କଟକରୁ ଏକ ଦୈନିକ ଖବରକାଗଜ ପ୍ରକାଶ କରିବା ପାଇଁ ସ୍ଥିର କଲେ । ୧୯୬୫ ଅଗଷ୍ଟ ମାସରୁ ତା'ର କାମ ଆରମ୍ଭ ହେଲା । ପ୍ରେସ୍ ମେସିନ୍ ବସି ବୋଧହୁଏ ସେପ୍ଟେମ୍ବର ମାସରୁ ଡମି କପି ପ୍ରକାଶ ପାଇଲା । ସେତେବେଳେ କୌଣସି ଖବର କାଗଜ ସର୍ବନିମ୍ନ ଛ'ମାସ ପ୍ରକାଶ ପାଇ ନଥିଲେ ସରକାରୀ ବିଜ୍ଞାପନ ମିଳୁ ନଥିଲା । ତେଣୁ କାଗଜ ଛାପିବା କାମ ଆରମ୍ଭ ହେଲା । କାଗଜର ନାଁ ରଖାଗଲା ଜନଶକ୍ତି । ଶ୍ରୀହର୍ଷ ମିଶ୍ର ସମାଜରୁ ଯାଇ ତା'ର ସମ୍ପାଦକ ହେଲେ । ଅକ୍ଟୋବର ମାସରେ ସମ୍ଭବତଃ ପୂଜା ପରେ ମୋତେ ଦିନେ ମାତୃଭୂମି ମ୍ୟାନେଜର ନଟବର ଦାସ ଡାକି ଏକ ଅର୍ଡ଼ର ଧରାଇ ଦେଲେ । ମୁଁ ତାକୁ ପଢ଼ି ଅକଲ ଗୁଡୁମ । ମୋତେ ଭୁବନେଶ୍ୱର ପ୍ରତିନିଧି କରି ବଦଳି କରାଯାଇଛି ଏବଂ ମୋ ସ୍ଥାନରେ ବାଳକୃଷ୍ଣ କାନୁନ୍‌ଗୋଙ୍କୁ କଟକକୁ ବଦଳି କରାହୋଇଛି । ମୁଁ ଏ ଅର୍ଡ଼ର ପାଇ ରୀତିମତ ବୋକା ପାଲ୍‌ଟି ଗଲି । ବିଚିବାବୁ ଅଫିସ୍‌କୁ ଆସି ନଥା'ନ୍ତି । ତାଙ୍କୁ ଅପେକ୍ଷା କଲି । ସେ ଆସିବା ପରେ ତାଙ୍କୁ ଏକଥା ପଚାରିଲି । ସେ କହିଲେ ଆପଣଙ୍କୁ ଭୁବନେଶ୍ୱର ପ୍ରତିନିଧି କରି ପଠାଇଲୁ ବାଧ ହୋଇ । କାରଣ ଆପଣ ସେଠି ଠିକ୍ ପାରିବେ । ମୁଁ କହିଲି କିନ୍ତୁ ବାଳକୃଷ୍ଣ ବାବୁଙ୍କ ଭଳି ଏତେ ସିନିୟର ଲୋକ ଥାଉ ଥାଉ... ସେ କହିଲେ ଆପଣ ଜାଣିନାହାନ୍ତି କି ବାଳକୃଷ୍ଣ ବାବୁ ଏଇନେ ଭୁବନେଶ୍ୱରର ଜନଶକ୍ତି ଖବର କାଗଜର ବେନାମୀ ପ୍ରତିନିଧି । ତେଣୁ ତାଙ୍କୁ ଆଉ ଆମ କାଗଜ ପାଇଁ ରଖିବା ସମ୍ଭବ ନୁହେଁ । ସବୁଆଡ଼କୁ ଚିନ୍ତା କରି ଆପଣଙ୍କୁ ଶେଷରେ ଭୁବନେଶ୍ୱର ପଠାଇବା ପାଇଁ ସ୍ଥିର ହେଲା । ମୁଁ ବଡ଼ ଅଡୁଆରେ ପଡ଼ିଲି । କାରଣ ସେତେବେଳେ ଭୁବନେଶ୍ୱର ଏକ ନିର୍ଜନ ସହର । ମାର୍କେଟ ବିଲ୍‌ଡିଂରେ ସାତ/ଆଠୋଟି ଦୋକାନ । ବହୁ ସରକାରୀ ଅଫିସ୍ ମାର୍କେଟ ବିଲ୍‌ଡିଂରେ କାର୍ଯ୍ୟ କରୁଥିଲା । ମୋର ଯାହା ମନେ ପଡୁଛି ଏବେ ଯେଉଁଠି 'ଅଳକା' ଅଛି ସେଠି ଖଣି ଓ ଭୂତତ୍ତ୍ୱ ନିର୍ଦ୍ଦେଶାଳୟ ଥିଲା । 'ବୟନିକା' ଯେଉଁଠି ଅଛି ସେଠି ସୂଚନା ଭବନ ଥିଲା । 'କଳାମନ୍ଦିର' ଶାଢ଼ୀ ଦୋକାନ ସ୍ଥାନରେ ବର୍ମା ଜେନେରାଲ୍ ଷ୍ଟୋର୍ ନାମରେ ଏକ ଡିପାର୍ଟମେଣ୍ଟ ଷ୍ଟୋର ଥିଲା । ପୂର୍ବରୁ କହିଛି ପୂଜା ମାର୍କେଟ ବୋଲି କିଛି ନଥିଲା । ସେଠି ଭୁବନେଶ୍ୱର ମୁଖ୍ୟ ବସଷ୍ଟାଣ୍ଡ ଥିଲା । ଏକ ନମ୍ବର ହାଟ ମୁଖ୍ୟ ହାଟ ଥିଲା ଏବଂ କ୍ୟାପିଟାଲ୍ ଓ ଓଲ୍ଡଟାଉନ୍ ଦୁଇଟି ଥାନା ଥିଲା । ନାଲି କୋଠାରେ ହେଡ୍ସ ଅଫ୍ ଡିପାର୍ଟମେଣ୍ଟ କାର୍ଯ୍ୟ କରୁଥିଲା । ଆଜି ସେକ୍ରେଟାରିଏଟ୍ ବିଲ୍‌ଡିଂ ଯାହା ରହିଛି ସେତେବେଳେ ତା'ର ଅଧା ଥିଲା । ବିଧାନସଭା ନୂଆ ତିଆରି ହୋଇଥାଏ । ତେଣୁ କଟକ ଭଳି

ଏକ ଜନଗହଳି ଏବଂ ପ୍ରାଣ ପ୍ରାଚୁର୍ଯ୍ୟମୟ ସହରକୁ ଛାଡ଼ି ଭୁବନେଶ୍ୱର ଭଳି ଏକ ମୃତ ସହରକୁ ଯିବାପାଇଁ ମୋର ମନ ଇମାରୁ ହେଲାନାହିଁ । ତା'ଛଡ଼ା ବାରବାଟି ଷ୍ଟାଡିୟମ୍ ଏବଂ ପ୍ରତିଦିନର ଫୁଟ୍‌ବଲ୍ ଖେଳ, ସିନେମା, ଥିଏଟର, ବଜାର, ସାହିତ୍ୟ ଆସର, ସଭା-ସମିତିକୁ ଛାଡ଼ି କିପରି ଭୁବନେଶ୍ୱରରେ ରହିବି ସେକଥା ଚିନ୍ତା କରି ପାରିଲି ନାହିଁ । ତେଣୁ ଆଉଥରେ ବିଚିବାବୁଙ୍କୁ ଅନୁରୋଧ କଲି ଏ ଅର୍ଡ଼ର ବଦଳାଇବା ପାଇଁ । ସେ କହିଲେ ମୁଁ ବୁଝି ପାରୁଛି ଆପଣଙ୍କ କଥା । କିନ୍ତୁ କ'ଣ କରିବା କିଛି ଉପାୟ ନାହିଁ । ତେବେ ଗୋଟିଏ କାମ କରନ୍ତୁ । ଏବେ ଦି/ତିନିମାସ ଯିବା ଆସିବା କରନ୍ତୁ । ତା'ପରେ ଆପଣ ଆଡ଼ଜଷ୍ଟ କରିନେବେ । ସେଇଆ ହେଲା । ମୁଁ ପ୍ରତିଦିନ ଯିବା ଆସିବା କରିବା ପାଇଁ ନିଷ୍ପତ୍ତି ନେଲି । ମୁଁ ଭୁବନେଶ୍ୱର ପ୍ରତିନିଧି ହୋଇଯିବା ପରେ ମୋ ଦରମା କଟକ ଅପେକ୍ଷା ଆହୁରି ଶହେଟଙ୍କା ଅଧିକା ହେଲା । ମୁଁ ମୋଟ୍ ଦରମା ପାଇଲି ୨୮୦ ଟଙ୍କା ।

## -ଭୁବନେଶ୍ୱରରେ ସାମ୍ବାଦିକତା-

ଏବେ ଯାହା ମୋର ମନେ ହେଉଛି ନଭେମ୍ବର ସାତ କି ଆଠ ତାରିଖ ଦିନ ପ୍ରଥମେ ଭୁବନେଶ୍ୱର ଆସି ମୋ କାମରେ ଯୋଗ ଦେଲି । ସକାଳୁ ସାଇକେଲ୍‌ରେ ଚାନ୍ଦିନୀଚୌକ ଆସି ସ୍ୱେଷ୍ଟର୍ଣ୍ଣ ହୋଟେଲ୍ ସାମନାରେ ସାଇକେଲ୍ ରଖି ସକାଳ ଦଶଟା ବସ୍‌ରେ ଯିବା ପାଇଁ ଅପେକ୍ଷା କଲି । ଦେଖିଲି ନାରଣ ବାବୁ(ନାରାୟଣ ରଥ-ସମାଜର ଭୁବନେଶ୍ୱର ପ୍ରତିନିଧି) ଆସି ଗଦା ପାନ ଦୋକାନ ଆଗରେ ଠିଆ ହେଲେ । ମୁଁ ନାରଣ ବାବୁଙ୍କୁ ଦେଖି ତାଙ୍କ ପାଖକୁ ଗଲି ଓ ନମସ୍କାର କଲି । ମୋତେ ଦେଖି ନାରଣ ବାବୁ ପଚାରିଲେ ବରେନ୍ଦ୍ର କୁଆଡ଼େ ଯାଉଛ ? ମୁଁ କହିଲି ଭୁବନେଶ୍ୱର । ସେ କହିଲେ କ'ଣ କିଛି କାମ ଅଛି ? ମୁଁ କହିଲି ନା- ଏବେ ମୋତେ ଭୁବନେଶ୍ୱର ପ୍ରତିନିଧି କରି ବଦଳି କରାଯାଇଛି । ସେ ମୋ ମୁହଁକୁ ଚାହିଁଲେ । କହିଲେ ବାଳକୃଷ୍ଣ ଆଉ ତମେ ଦିହେଁ ରହିବ ? ମୁଁ କହିଲି ନା- ବାଳକୃଷ୍ଣ ବାବୁଙ୍କୁ କଟକ ବଦଳି କରାଯାଇଛି । ସେ ଆଶ୍ଚର୍ଯ୍ୟ ହୋଇ କହିଲେ କାହିଁ ବାଳକୃଷ୍ଣ ତ ମତେ ଏକଥା କହି ନାହାନ୍ତି । କାଲି ପ୍ରେସ୍ ରୁମ୍‌ରେ ଦେଖା ହୋଇଥିଲା । ମୁଁ କିଛି କହିଲି ନାହିଁ । ବସ୍ ଆସି ପହଞ୍ଚିଲା । ନାରଣ ବାବୁ ଆଉ ମୁଁ ବସ୍‌ରେ ଚଢ଼ିଲୁ ।

ଅଗତ୍ୟା ଭୁବନେଶ୍ୱର ଯିବାକୁ ହେଲା । ବାଳକୃଷ୍ଣବାବୁଙ୍କ କଟକକୁ ବଦଳି ଆଦେଶ ମୋ ହାତରେ ପଠା ଯାଇଥିଲା । ମୁଁ ବାଳକୃଷ୍ଣ ବାବୁ ରହୁଥିବା ଦୁଇ ନମ୍ବର ୟୁନିଟ୍‌ର ମାର୍କେଟ ବିଲ୍‌ଡିଂ ପଛ ଧାଡ଼ିରେ ଥିବା ଟାଇପ୍-ଫୋର୍ କ୍ୱାଟର ନମ୍ବର ୨୬/୨୮/୨ ଘରକୁ ଯାଇ ତାଙ୍କୁ ଭେଟିଲି । ସେ ମୋ ହାତରୁ ଚିଠିଟି ନେଇ ପଢ଼ିଲେ ଏବଂ ଦାମ୍ଭିକ ଭାବେ ଉତ୍ତର ଦେଲେ ତାହାଲେ ତମେ ମାତୃଭୂମିର ପ୍ରତିନିଧି ହୋଇ ଆସିଲ ? ମୁଁ କହିଲି ଇଚ୍ଛା ନଥିଲେ ବି ଆସିବାକୁ ହେଲା । ସେ କେବଳ ହୁଁ ଟିଏ କହି ଘର ଭିତରକୁ ଗଲେ । ମୁଁ ସଚିବାଳୟକୁ ଗଲି । ସେତେବେଳେ ସଚିବାଳୟର ଦ୍ୱିତୀୟ ତାଲା ମନ୍ତ୍ରୀ ଗଳି ସାମ୍‌ନାରେ ଥିବା ଛୋଟ ମନ୍ତ୍ରୀ ଗଳିର ଶେଷ ବଖରାଟି ଥିଲା ପ୍ରେସ୍‌ରୁମ୍ । ପ୍ରେସ୍ ରୁମ୍‌ର ସେତେବେଳେ ଇନ୍‌ଫରମେସନ୍ ଅଫିସର ଥିଲେ ଶ୍ରୀ ପରମାନନ୍ଦ ମହାନ୍ତି । ଅତି ଅମାୟିକ ଭଦ୍ରଲୋକ । ପ୍ରେସ୍‌ରୁମ୍ ସାମ୍‌ନା କୋଠରୀରେ ସେ ବସୁଥିଲେ । ମୁଁ ଯାଇ ତାଙ୍କୁ ନମସ୍କାର କଲି । ଏଇମିତି ମୋତେ ସିଏ ପୂର୍ବରୁ ଜାଣିଥିଲେ । ଦେଖି ଭାରି ଖୁସି ହେଲେ । କହିଲେ ଆପଣ ଆସୁଥିବା କଥା କାଲି ବିଚିବାବୁ କହୁଥିଲେ । ଭଲ ହେଲା । ଆପଣ ତ କଟକରେ ଷ୍ଟାଫ୍ ରିପୋର୍ଟର ଥିଲେ । ଏଠି କିଛି ଅସୁବିଧା ହେବ ନାହିଁ । ମୁଁ ତାଙ୍କ ଠାରୁ ବିଦାୟ ନେଇ ପ୍ରେସ୍‌ରୁମ୍‌କୁ ଆସିଲି । ପ୍ରେସ୍‌ରୁମ୍‌ରେ ତିନିଜଣ ସାମ୍ବାଦିକ ବସିଥିଲେ । କଳିଙ୍ଗ ଖବରକାଗଜର ପ୍ରତିନିଧି ସୁବୋଧ ଦାସ(ନାଟ୍ୟକାର ବିଶ୍ୱଜିତ ଦାସଙ୍କ ବାପା), ପ୍ରଜାତନ୍ତ୍ର ପ୍ରତିନିଧି ରମେଶ ଧଳ ଏବଂ ଗଣତନ୍ତ୍ର (ବନ୍ଦ ହୋଇ

ଯାଇଥାଏ ପୁଣି ପ୍ରକାଶ ପାଇଁ କାର୍ଯ୍ୟ ଆରମ୍ଭ ହୋଇଥାଏ)ର ପ୍ରତିନିଧି ବୈରାଗୀ ଚରଣ ମହାନ୍ତି । ତିନିଜଣଙ୍କ ସହ ମୋର ପୂର୍ବରୁ ପରିଚୟ ଥାଏ । ମୋତେ ଦେଖି ସେମାନେ ଖୁବ୍ ଖୁସି ହୋଇଗଲେ । ସମସ୍ତେ ବସି ଗପସପ ହେଲୁ । ଚାହା ମଗା ହେଲା । ମୁଁ ରମେଶ ଧଳଙ୍କୁ କହିଲି ମୋତେ ଟିକେ ସବୁ ମନ୍ତ୍ରୀଙ୍କ ସହ ପରିଚୟ କରାଇ ଦିଅନ୍ତୁ । ଚାଲନ୍ତୁ ଯିବା । ରମେଶ ବାବୁ କହିଲେ ଆସୁ ଆସୁ ଏତେ ବ୍ୟଗ୍ର କାହିଁକି ହେଉଛ ? ବସ୍ ଯିବାତ । ଯାହୁ ସାହୁ କଥାବାର୍ତ୍ତା ହେବା ପରେ ନାରଣ ବାବୁ ଆସି ପହଞ୍ଚିଲେ । ତାଙ୍କ ପଛେ ପଛେ ରାମକୃଷ୍ଣ ବେହେରା(ପି.ଟି.ଆଇ.ର ଭୁବନେଶ୍ୱର ପ୍ରତିନିଧି) । ମୋତେ ରାମକୃଷ୍ଣ ବେହେରା କହିଲେ ବରେନ୍ଦ୍ର, ଭୁବନେଶ୍ୱର ଆସିଲ ଯେ ପାରିବ ତ ? ମୁଁ କିଛି କହିବା ପୂର୍ବରୁ ବୈରାଗୀ ବାବୁ କହିଲେ ହଇଏ ରାମକୃଷ୍ଣ ବାବୁ ତମେ ଆସି ଯଦି ପାରି ପାରିଲ ବରେନ୍ଦ୍ର ବାବୁ ପାରିବେନି କାହିଁକି ?

ସିଏ ତ ଆଗରୁ ଆସି ବିଧାନସଭା ବିବରଣୀ ରିପୋର୍ଟ କରିଛନ୍ତି । ଆଉ ଇଏ କୋଉ ଗୁରୁ ଘର ବିଦ୍ୟା ଯେ ପାରିବେନି ? ରାମକୃଷ୍ଣ ବାବୁ ବୈରାଗୀ ବାବୁଙ୍କ କଥା ଶୁଣି ଟିକେ ଦବିଗଲେ । ଆଉ କିଛି କହିଲେ ନାହିଁ ।

ପ୍ରତିଦିନ ମୁଁ ଯିବା-ଆସିବା କରେ । ଗଲା ବେଳକୁ ନାରଣ ବାବୁଙ୍କ ସହ ପ୍ରାୟ ସେଇ ନାୟାର ବସ୍‌ରେ ଯାଏ । ଆସିବା ବେଳେ ନାରଣ ବାବୁ, ମଝିରେ ମଝିରେ ଗାୟକ ସିକନ୍ଦର ଆଲାମ(କୃଷି ବିଭାଗରେ ଚାକିରି କରୁଥିଲେ) ଏବଂ ଆଉ ଜଣେ ଦି'ଜଣ ବନ୍ଧୁ ଆସୁଥିଲେ । ସଚିବାଳୟରୁ ବାହାରି ଆମେ ଚାଲି ଚାଲି ବସ୍‌ଷ୍ଟାଣ୍ଡ ଆସୁ । ସେତେବେଳେ ପୁରୁଣା ବସ୍‌ଷ୍ଟାଣ୍ଡ କି ସୂଚନା ଭବନ ନିର୍ମାଣ ହୋଇନଥିଲା । ଇନ୍ଦିରା ଗାନ୍ଧୀ ପାର୍କ ପରେଡ଼ ପଡ଼ିଆ ରୂପେ ରହିଥାଏ । ଜାନୁଆରୀ ୨୬ ଓ ଅଗଷ୍ଟ ୧୫ ପ୍ୟାରେଡ ସେଇଠି ହୁଏ । ସବୁ ସଭା ସମିତି ସେଇଠି ହୁଏ । ଆମେ ସମସ୍ତେ ସଚିବାଳୟ ସାମ୍ନା ପଡ଼ିଆରେ ପାଦଚଲା ରାସ୍ତା ଦେଇ ବସ୍‌ଷ୍ଟାଣ୍ଡ ଆସୁ । ସେଇ ନାୟାର ବସ୍‌ରେ କଟକ ଆସୁ । ଆମେ ଆସିବା ପର୍ଯ୍ୟନ୍ତ ନାୟାର ଅପେକ୍ଷା କରିଥାନ୍ତି ।

ଦି' ତିନିଦିନ ହେଲେ ମଧ ମୋତେ କେହି ମନ୍ତ୍ରୀମାନଙ୍କ ସହ ସାକ୍ଷାତ କରିବାକୁ ସାଙ୍ଗ କଲେ ନାହିଁ । ମୋର କେମିତି ମନେ ହେଲା ସେମାନେ ମନ୍ତ୍ରୀଙ୍କୁ ସାକ୍ଷାତ କରିବାକୁ ମଧ ଚାହୁଁ ନାହାନ୍ତି । ଅଗତ୍ୟା ମୁଁ ନିଜେ ଏକା ଏକା ଗଲି । ସେତେବେଳେ ନୀଳମଣି ବାବୁ(ରାଉତରାୟ) ଉପ ମୁଖ୍ୟମନ୍ତ୍ରୀ ଥା'ନ୍ତି । ମୋତେ ନୀଳମଣି ବାବୁ ଜାଣିଥିଲେ । ମୁଁ ତାଙ୍କ ରୁମ୍‌କୁ ଯାଇ ନମସ୍କାର କଲି । ସେ ମୋତେ ଟିକେ ଚାହିଁଲେ । ସମ୍ଭବତଃ ଠିକ୍ ଠଉରାଇ ପାରିଲେ ନାହିଁ । ମୁଁ କହିଲି ସାର୍ ମୁଁ ମାତୃଭୂମିର ପ୍ରତିନିଧି ରୂପେ ଭୁବନେଶ୍ୱରରେ ଯୋଗ ଦେଇଛି । ତାଙ୍କର ମନେ ପଡ଼ିଗଲା- କହିଲେ ତମ ନାଁ ଧଳ ତ ? ମୁଁ କହିଲି ସାର୍ ବରେନ୍ଦ୍ର କୃଷ୍ଣ ଧଳ । ସେ କହିଲେ ଭଲ ହେଲା । ବାଳକୃଷ୍ଣ କୁଆଡ଼େ ଗଲା ? ମୁଁ କହିଲି ତାଙ୍କୁ କଟକ ବଦଳି କରାଯାଇଛି । ସେ କହିଲେ ବାଳକୃଷ୍ଣ କଟକ ଯିବ ତ ? ମୁଁ କହିଲି କେଜାଣି ? ସମ୍ଭବତଃ ସେ ବୀରେନ୍ ମିତ୍ରଙ୍କ କାଗଜରେ ଯୋଗ ଦେବେ । ନୀଳମଣି ବାବୁ କହିଲେ ହଁ- ହଁ ବୀରେନ୍‌ର କାଗଜ 'ଜନଶକ୍ତି'ତ ? ମୁଁ ହଁ କଲି । ସେ କହିଲେ ତା' ପାଇଁ ସେ କାଗଜ ଭଲ । ମୁଁ କହିଲି ସାର୍- ମୋତେ ଟିକେ ସାହାଯ୍ୟ କରିବେ । ଯାହା ଯେତେବେଳେ ଖବର ଥିବ ମୋତେ ଟିକେ ଦେବେ । ସେ କହିଲେ ଏବେ ଗୋଟିଏ ତଟକା ଖବର ଦେଉଛି ଲେଖ । ବର୍ତ୍ତମାନ ସବୁଠୁ ବଡ଼ ଖବର ହେଲା ରାଜ୍ୟରୁ ଅନ୍ୟ ରାଜ୍ୟକୁ ଧାନ- ଚାଉଳ ଯିବା ଆଜିଠୁ ବନ୍ଦ ହେଲା । ଆଜି ଅଧ୍ୟାଦେଶ ହୋଇଛି । ରାଜ୍ୟର ସବୁ ସୀମାନ୍ତ ଅଞ୍ଚଳକୁ ସିଲ୍ କରି ଦିଆଯିବା ପାଇଁ ଆଦେଶ ହୋଇଛି । ଏବର୍ଷ ରାଜ୍ୟରେ ବହୁ ଅଞ୍ଚଳରେ ମରୁଡ଼ି ହୋଇଥିବାରୁ ଏହି ପଦକ୍ଷେପ ନିଆଯାଇଛି । ନୀଳମଣି ବାବୁଙ୍କ ପାଖରୁ ଏକଥା ଶୁଣି ମୁଁ ତାଙ୍କ ପ୍ରାଇଭେଟ୍

ସେକ୍ରେଟାରୀଙ୍କ ରୁମ୍‌ରୁ ଏ ଖବରଟି ବେଶ୍ ବନେଇ ଚୁନେଇ ଡାକିଦେଲି । ନୀଳମଣି ବାବୁଙ୍କ ପ୍ରାଇଭେଟ୍ ସେକ୍ରେଟାରୀ ଥାନ୍ତି ଆକୁଳାନନ୍ଦ ଦେହୁରୀ ଏବଂ ପି.ଏ. ଥା'ନ୍ତି ବିଜୟ ପଟ୍ଟନାୟକ । ସେମାନଙ୍କ ସହ ବେଶ୍ ବନ୍ଧୁତା ହୋଇଗଲା ।

ସେଦିନ ମୁଁ ଜାଣି ନଥିଲି ଏ ଖବର ଅନ୍ୟ କୌଣସି ସାମ୍ବାଦିକ ଜାଣିନଥିଲେ ବୋଲି । କାରଣ ସେଦିନ ସନ୍ଧ୍ୟା ମାତୃଭୂମିରେ ଏହା ବଡ଼ ବଡ଼ ଅକ୍ଷରରେ ତିନିକଲମ ହେଡିଂ ହୋଇ ବସିଥାଏ । ତଳେ ଲେଖାଥାଏ ଆମ ଭୁବନେଶ୍ୱର ପ୍ରତିନିଧି ବରେନ୍ଦ୍ର କୃଷ୍ଣ ଧଳଙ୍କ ଠାରୁ । ମୋର ଭୁବନେଶ୍ୱର ଯିବା ମୋଟେ ଚାରିଦିନ । ତା' ପରଦିନ ମୁଁ ଚାନ୍ଦିନୀଚୌକଠାରେ ପହଞ୍ଚିବାବେଳେ ନାରଣ ବାବୁ ଦେଖାହେଲେ । ମୋତେ ଦେଖି ସେ ପ୍ରଥମେ ପଚାରିଲେ ବରେନ୍ଦ୍ର ଧାନ-ଚାଉଳ ଖବର ତୁମେ କେଉଁଠୁ ପାଇଲ ? ମୁଁ କହିଲି ନୀଳମଣି ବାବୁଙ୍କ ସହ ଦେଖା ହେଲା ବେଳେ ସେ ଏହା କହିଲେ । ନାରଣ ବାବୁ କହିଲେ କିନ୍ତୁ ଅଡ଼ିନାନ୍ସ ତ କାଲି ରାଜ୍ୟପାଳଦସ୍ତଖତ କରି ନଥିଲେ ବୋଲି ଶୁଣିଲି । ମୁଁ କହିଲି କେଜାଣି- ମୁଁ ସେକଥା ଜାଣିନି । ନୀଳମଣି ବାବୁ ମୋତେ ଯାହା କହିଲେ ମୁଁ ତାହାହିଁ ଦେଇଛି । ନାରଣ ବାବୁ ଆଉ କିଛି କହିଲେ ନାହିଁ । ମୋ ମନଟା ଖୁସି ହୋଇଗଲା । ସେଦିନର ସେ ଖବର ମୋର ଏକ୍ସକ୍ଲୁସିଭ୍ ଖବର ।

ଭୁବନେଶ୍ୱରରେ ପହଞ୍ଚି ଶୁଣିଲି ଭୁବନେଶ୍ୱରକୁ କଂଗ୍ରେସ ସଭାପତି କାମରାଜ ନାଦର ଆସୁଛନ୍ତି । କଲିକତାରୁ ବିମାନ ଯୋଗେ ଆସି ଦିନ ଗୋଟାକ ବେଳେ ପହଞ୍ଚିବେ । ମୁଁ ସଚିବାଳୟରେ ପହଞ୍ଚି ଟାଇମ୍ସ ଅଫ୍ ଇଣ୍ଡିଆର ଓଡ଼ିଶା ପ୍ରତିନିଧି ଏନ୍ କୃଷ୍ଣସ୍ୱାମୀଙ୍କ ସହ ଦେଖା ହେଲା । ତାଙ୍କୁ ପଚାରିଲି ସାର୍ କାମରାଜ ନାଦର ଆସୁଛନ୍ତି ବୋଲି ଶୁଣିଲି । କ'ଣ ସତ ? ସେ କହିଲେ ହଁ ଆସୁଛନ୍ତି । ତୁମେ ଯିବ ? ମୁଁ କହିଲି ଯିବାପାଇଁ ଇଚ୍ଛା । ସେ କହିଲେ ଠିକ୍ ଅଛି ମୁଁ ତମକୁ ମୋ କାର୍‌ରେ ନେଇଯିବି । ସ୍ୱାମୀବାବୁଙ୍କର ସେତେବେଳେ ଗୋଟିଏ ପୁରୁଣା ଫିଆଟ ଗାଡ଼ି ଥିଲା । ସେ ନିଜେ ଡ୍ରାଇଭ୍ କରୁଥିଲେ । ସେ କଟକ ଦରଘା ବଜାରରେ ରହୁଥା'ନ୍ତି । ମଝିରେ ମଝିରେ ଭୁବନେଶ୍ୱର ଯାଉଥା'ନ୍ତି । ସେତେବେଳେ ଭୁବନେଶ୍ୱରରେ ହିନ୍ଦୁ ଓ ଷ୍ଟେଟ୍‌ସମ୍ୟାନ୍ ପ୍ରତିନିଧି ଏନ୍. ରାମସ୍ୱାମୀଙ୍କର ଏବଂ ଅମୃତ ବଜାର ପତ୍ରିକା ପ୍ରତିନିଧି ଗୋପାଳ ମିଶ୍ରଙ୍କର କାର୍ ଥାଏ । ତେଣୁ ଅନ୍ୟ ସାମ୍ବାଦିକମାନେ କୁଆଡ଼େ ଯିବାକୁ ସେମାନଙ୍କ ସାହାଯ୍ୟ ନିଅନ୍ତି ।

ମୁଁ ସେଦିନ ସ୍ୱାମୀବାବୁଙ୍କ କାର୍‌ରେ ଏୟାରପୋର୍ଟ ଯାଇ କାମରାଜ ନାଦରଙ୍କ ସାମ୍ବାଦିକ ସମ୍ମିଳନୀରେ ଯୋଗ ଦେଇ ଫେରିଲି । ସ୍ୱାମୀବାବୁ ଏୟାର୍‌ପୋର୍ଟରୁ ସିଧା ପି.ଟି.ଆଇ. ଅଫିସ୍(ୟୁନିଟ୍-୧)କୁ ଆସିଲେ । ମୋତେ କହିଲେ ବରେନ୍ଦ୍ର ତୁମେ ପ୍ରତିଦିନ ଏଠାକୁ ଆସ । ଏଠି ସବୁ ସାମ୍ବାଦିକ ଆସନ୍ତି । ତେଣୁ ତୁମେ ନୂଆ ହୋଇଥିବାରୁ ସବୁ ଖବର ପାଇ ପାରିବ । ଆଜି ତୁମର ଭଲ ଏକ୍ସକ୍ଲୁସିଭ୍ ଷ୍ଟୋରି ବାହାରିଛି । ତେବେ ତୁମେ ଯାହା ଖବର ପାଇବ ଏଠି କହିଲେ ଅନ୍ୟମାନେ ଯେଉଁ ଖବର ପାଇଥିବେ ତାକୁ ତୁମେ ମଧ୍ୟ ପାଇବ । ମୁଁ ସ୍ୱାମୀ ବାବୁଙ୍କ କଥା ଶୁଣି କହିଲି ସାର୍ ପି.ଟି.ଆଇ. ଯାହା ପାଇବ ଆମ କାଗଜ ତା' ପାଇବ । ମୁଁ ଯେଉଁ ଖବର ପାଇବି ତାକୁ ଯଦି ଏଠି କହେ ତେବେ ମୋ କାଗଜରେ ମୁଁ କ'ଣ ଦେବି ? ସେ କହିଲେ ଏଠିକି ନ ଆସିଲେ ତୁମେ ଖବର ପାଇବା ମୁସ୍କିଲ୍ ହେବ । ମୁଁ କିଛି କହିଲି ନାହିଁ । ତେବେ ସେଦିନ ପି.ଟି.ଆଇ. ଅଫିସ୍ ଯାଇ କିଛି ସମୟ ବସିଲି । ଦେଖିଲି ଏନ୍. ରାମସ୍ୱାମୀ, ନାରଣବାବୁ, ଗୋପାଳ ବାବୁ ସମସ୍ତେ ସେଠିକୁ ଆସିଲେ । ମାତ୍ର ରମେଶ ଧଳ, ସୁବୋଧ ଦାସ ଓ ବୈରାଗୀ ମହାନ୍ତି ଆସି ନଥିଲେ । ମୁଁ ସ୍ୱାମୀବାବୁଙ୍କୁ ଏକଥା ପଚାରିବାରେ ସେ କହିଲେ ସେମାନେ କ'ଣ ସାମ୍ବାଦିକ ?

କୃଷ୍ଣସ୍ୱାମୀଙ୍କ କଥା ମୋତେ ଭଲ ଲାଗିଲା ନାହିଁ । ତେବେ ତାଙ୍କୁ କିଛି ନକହି ସେକ୍ରେଟେରିଏଟ୍‌କୁ ଆସି ଖବର

ଡାକିଲି । ପରେ ଏକଥା ଯେତେବେଳେ ରମେଶବାବୁ ହେରିକାଙ୍କୁ ପଚାରିଲି ବୈରାଗୀ ବାବୁ କହିଲେ ସେମାନେ ସିଣ୍ଡିକେଟ୍ ଗଢ଼ିଛନ୍ତି । ମଦ ମାଂସ ପ୍ରତିଦିନ ଚାଲେ । ଆମେ ସେଥିରୁ ବହୁ ଦୂରରେ । ତେଣୁ ଆମେ ତାଙ୍କ ଆଖିରେ ସାମ୍ପ୍ରାଦିକ ନୁହଁ।

ମୁଁ ଜାଣେନାହିଁ ଏହା ପରିସ୍ଥିତିର ଚାପ ନା ମୋ ଚରିତ୍ରର ଗୋଟିଏ ଦିଗ । ତା'ହେଲା ଯାହା ମୋତେ ଭଲ ଲାଗିବ ନାହିଁ ଏବଂ ଯେଉଁଠି କୌଣସି ଆହ୍ୱାନର ସମ୍ମୁଖୀନ ହୁଏ ତାକୁ ମୁକାବିଲା କରିବା ପାଇଁ ମୁଁ ପ୍ରସ୍ତୁତ ହୋଇ ପଡ଼େ । ସେଦିନ ଟାଇମ୍ସ ଅଫ୍ ଇଣ୍ଡିଆର ଓଡ଼ିଶା ପ୍ରତିନିଧି ଏନ୍. କୃଷ୍ଣସ୍ୱାମୀ ମୋତେ ପି.ଟି.ଆଇ. ଅଫିସ୍‌କୁ ଯିବାପାଇଁ ଯେପରି ନିର୍ଦ୍ଦେଶ ଦେଲେ ଏବଂ ରମେଶବାବୁ, ବୈରାଗୀ ବାବୁ ଓ ସୁବୋଧ ବାବୁଙ୍କ ପ୍ରତି ଯେଉଁ ବ୍ୟଙ୍ଗାତ୍ମକ ମନ୍ତବ୍ୟ ଦେଲେ ମତେ କେଜାଣି କାହିଁକି ଭଲ ଲାଗିଲା ନାହିଁ । ଅନ୍ୟପକ୍ଷରେ ରମେଶ ବାବୁ, ବୈରାଗୀ ବାବୁ ଓ ସୁବୋଧ ବାବୁ ସମସ୍ତେ ଖୁବ୍ ଭଲ ଲୋକ ଓ ମୋତେ ଅତ୍ୟନ୍ତ ସ୍ନେହ ଶ୍ରଦ୍ଧା କରୁଥିଲେ । ତେବେ ଏ କଥା ସତ୍ୟ ଯେ ସେମାନଙ୍କ ମଧ୍ୟରୁ କେହି କୌଣସି ଠାରୁ କୌଣସି ଖବର ଆଣିବାରେ ସେପରି ଧୁରନ୍ଧର ନଥିଲେ । କଟକରେ ସେତେବେଳକୁ ଚାରିବର୍ଷର ଷ୍ଟାଫ ରିପୋର୍ଟର କାର୍ଯ୍ୟ କରିବା ଭିତରେ ଖବର କିପରି ସଂଗ୍ରହ ହୁଏ ଏବଂ ସେଥିପାଇଁ କାହାକୁ ସାକ୍ଷାତ କରିବାକୁ ହୁଏ ସେ ସମ୍ପର୍କରେ ଊଣା ଅଧିକେ ମୋର ଧାରଣା ହୋଇଥିଲା । କାରଣ କଟକରେ କଲେକ୍ଟର, ଏସ୍.ପି., ଆର୍.ଡି.ସି. ଓ ରାଜସ୍ୱ ବୋର୍ଡ଼ ସଦସ୍ୟଙ୍କୁ ସାକ୍ଷାତ କରି ଅନେକ ଖବର ମୁଁ ଦେଇଥିଲି । ବିଶେଷ କରି ଉନ୍ନୟନ କାର୍ଯ୍ୟକ୍ରମ ସମ୍ପର୍କିତ ଖବର, ଯୋଗାଣ ବିଭାଗ ଖବର, ଆଇନ୍-ଶୃଙ୍ଖଳା ଖବର ଆଦି ବିଭିନ୍ନ ଧରଣର ଖବର ସଂଗ୍ରହ କରି ମାତୃଭୂମିରେ ଦେଉଥିଲି । ଭୁବନେଶ୍ୱର ଅବଶ୍ୟ ଏକ ଭିନ୍ନ ଧରଣର ସ୍ଥାନ । ଏଠି ରାଜ୍ୟର ମନ୍ତ୍ରିମଣ୍ଡଳ ଠାରୁ ଆରମ୍ଭ କରି ସଚିବାଳୟ, ବିଭାଗୀୟ ମୁଖ୍ୟ ଦପ୍ତର ଏବଂ ବହୁ ଇଂଜିନିୟରିଂ ବିଭାଗ ରହିଛି । ଖବର ସଂଗ୍ରହ ପାଇଁ କଟକ ନଦୀ ହେଲେ ଭୁବନେଶ୍ୱର ସମୁଦ୍ର । ରାଘବ- ତିମିଠାରୁ ଆରମ୍ଭ କରି ରୋହି ଭାକୁର ସମସ୍ତେ ଏଠି ବିଦ୍ୟମାନ । ତେଣୁ ଯୁଆଡ଼କୁ ଚାହିଁବ ସିଆଡ଼େ ଖବର । କେବଳ ଖବର ସଂଗ୍ରହ କରି ପାରିଲେ ହେଲା ।

ମୁଁ ଯେତେବେଳେ ଭୁବନେଶ୍ୱର ଆସିଲି ସେତେବେଳେ ରାଜ୍ୟର ମୁଖ୍ୟ ଶାସନ ସଚିବ ରୂପେ ଥିଲେ ବି. ଶିବରମଣ । ଶିବ ରମଣ ସାହେବ ବିଜୁବାବୁଙ୍କର ଅତ୍ୟନ୍ତ ପ୍ରିୟ ଲୋକ ଥିଲେ । ତେବେ ସଦାଶିବ ତ୍ରିପାଠୀ ମୁଖ୍ୟମନ୍ତ୍ରୀ ହେବାର (ଫେବୃଆରୀ, ୧୯୬୫) ଚାରି/ପାଞ୍ଚମାସ ପୂର୍ବରୁ ସେ ଦିଲ୍ଲୀ ବଦଳି ହୋଇଗଲେ । ତାଙ୍କ ସ୍ଥାନରେ ଓଡ଼ିଶାର ମୁଖ୍ୟ ଶାସନ ସଚିବ ରୂପେ ଦାୟିତ୍ୱ ନେଲେ ଏ.କେ. ବ୍ୟାରେନ୍ । ବ୍ୟାରେନ୍ ସାହେବ ଯୁଦ୍ଧରୁ ଫେରି ଏମରଜେନ୍ସି କୋଟାରେ ଆଇ.ଏ.ଏସ୍. ପାଇଥିଲେ । ସେ ଜଣେ ଆଙ୍ଗ୍ଲୋଇଣ୍ଡିଆନ୍ ଥିଲେ । ଅଫିସର ରୂପେ ସେ ଅତ୍ୟନ୍ତ ନୀତିବାନ, ନିରପେକ୍ଷ ଏବଂ ସଚ୍ଚୋଟ ଥିଲେ । ତେଣୁ ମୁଖ୍ୟମନ୍ତ୍ରୀ ଓ ମନ୍ତ୍ରୀମାନଙ୍କର ତାଙ୍କ ନିଷ୍ପତ୍ତି ପ୍ରତି ବେଶ୍ ସମ୍ମାନ ଥିଲା ।

ମୁଁ ଜଣେ ରିପୋର୍ଟର ଭାବେ ଏତିକି ଜାଣିଥିଲି ଏବଂ ହୃଦୟଙ୍ଗମ କରିଥିଲି ଯେ ଭଲ ଖବର ପାଇବାକୁ ହେଲେ ବିଭିନ୍ନ ମହଲରେ ଭଲ ସମ୍ପର୍କ ସୃଷ୍ଟି କରିବାକୁ ପଡ଼ିବ । କାରଣ ସେ ଛୋଟ ହେଉ ବା ବଡ଼ ହେଉ ଯେକୌଣସି କର୍ମଚାରୀ ଅନେକ ସମୟରେ ଚମକାଇ ଦେଲାଭଳି ଖବର ଦେଇଥା'ନ୍ତି । ମୁଁ ନିଷ୍ପତ୍ତି କରିନେଲି ପି.ଟି.ଆଇ. ଅଫିସ୍‌କୁ ଯାଇ ସମୟ ନଷ୍ଟ କରିବି ନାହିଁ । ତେବେ କ'ଣ କରିବି ଏବଂ ମୋର ପରବର୍ତ୍ତି ପଦକ୍ଷେପ କ'ଣ ହେବ ସେ ସମ୍ପର୍କରେ ଚିନ୍ତା କଲି । ସ୍ଥିର କଲି ପ୍ରଥମେ ରାଜ୍ୟର ବଡ଼ ବଡ଼ ଅଫିସରଙ୍କୁ ଭେଟି ନିଜକୁ ପରିଚିତ କରାଇବି । ୧୯୬୫ ମସିହା ନଭେମ୍ବର ମାସ । ସେତେବେଳେ ଭୁବନେଶ୍ୱରରେ ସତୁରିରୁ ଅଶିଟି ବଡ଼ ବଡ଼ ବଙ୍ଗଳା ଘର ଥିଲା । ଟାଇପ୍-୬, ୭ ଓ ୮ ବଙ୍ଗଳା । ଏହି ବଙ୍ଗଳାରେ ମୁଖ୍ୟମନ୍ତ୍ରୀ, ମନ୍ତ୍ରୀ, ବଡ଼ବଡ଼ ଅଫିସର ରହୁଥିଲେ ।

ହଁ ମୁଁ କହିରଖେ ବାଳକୃଷ୍ଣ କାନୁନ୍‌ଗୋ ଦୁଇ ନମ୍ବର ୟୁନିଟ୍‌ର ଯେଉଁ ଟାଇପ୍- ଫୋର୍ ଘରେ (୨୬-୨୮/୨) ରହୁଥିଲେ ତାଙ୍କୁ ଛାଡ଼ି ଦେଇଥିଲେ । ମୁଁ ସେ ଘରେ ରହୁଥିଲି । ଆବଶ୍ୟ ସେ ଘରେ କେବଳ ଗୋଟିଏ ଖଟ ଓ ଟେବୁଲ୍ ଏବଂ ଦୁଇଟି ଚେୟାର ରଖିଥିଲି । ଖଟରେ ଶେଯ ଥିଲା । ମୁଁ କଟକରୁ ଯିବା ଆସିବା କରୁଥିଲି । ଦରକାର ହେଲେ କେମିତି କେଉଁ ଦିନ ଭୁବନେଶ୍ୱରରେ ରହି ଯାଉଥିଲି ।

## -ବଡ ବଡ ହାକିମଙ୍କ ସହ ସାକ୍ଷାତ-

ଏବେ ଯେତେବେଳେ ମୁଁ ନିଷ୍ପତ୍ତି କଲି ସବୁ ଅଫିସରଙ୍କ ଘରକୁ ଯାଇ ସେମାନଙ୍କୁ ସାକ୍ଷାତ କରିବି ମୋତେ ଭୁବନେଶ୍ୱରରେ ରହିବାକୁ ପଡ଼ିଲା । ମୁଁ କଟକରୁ ମୋର ଡ୍ରେସ୍ ପତ୍ର ଭୁବନେଶ୍ୱର ନେଇ ଆସିଲି । ବସ୍ତୁତଃ ଏଇ ନିଷ୍ପତ୍ତି ମୁଁ କଟକରେ କୃଷ୍ଣବାବୁ(ମାତୃଭୂମିର ବରିଷ୍ଠ ସହ ସମ୍ପାଦକ କୃଷ୍ଣ ପ୍ରସାଦ ପଟ୍ଟନାୟକ)ଙ୍କ ଠାରୁ ପରାମର୍ଶ ବେଳେ ପାଇଥିଲି । ସେ କହିଥିଲେ ବରେନ୍ଦ୍ର ପ୍ରଥମେ ତୁମେ ତୁମ ନିଜର ପରିଚୟ ସୃଷ୍ଟି କର । ପ୍ରଥମେ ବଡ଼ ବଡ଼ ଅଫିସର, ଇଞ୍ଜିନିୟର ଏବଂ ଭୁବନେଶ୍ୱରର ବିଶିଷ୍ଟ ଲୋକ, ରାଜନୀତିକ ବ୍ୟକ୍ତି, ଓକିଲ ଏମାନଙ୍କ ସହ ପରିଚିତ ହୁଅ । ତା'ପରେ ତୁମପାଇଁ କାମ ସହଜ ହୋଇଯିବ । ମୁଁ ପ୍ରତିଦିନ ସକାଳେ ଗୋଟିଏ ରିକ୍ସା ଧରି ଭୁବନେଶ୍ୱରରେ ଥିବା ସମସ୍ତ ବଡ଼ ବଡ଼ କ୍ୱାର୍ଟରସ୍‌କୁ ଗଲି । ପ୍ରତି କ୍ୱାର୍ଟରରେ ଯେଉଁ ଅଫିସର ରହୁଥିଲେ ସେମାନଙ୍କ ସହ ସାକ୍ଷାତ କଲି । ମୋ ପରିଚୟ ଦେଲି । ଆସିବା କାରଣ କହିଲି । ଏହି ପରିଚୟ ବେଳେ ମୁଁ ଦେଖିଲି ଓଡ଼ିଶାର ବଡ଼ ବଡ଼ ହାକିମ ପଦବୀରେ ଓଡ଼ିଆଙ୍କ ଅପେକ୍ଷା ଅଧିକ ଅଣଓଡ଼ିଆ ଆଇ.ଏ.ଏସ୍. ଅଫିସର୍ ଥିଲେ । ମୁଁ ପ୍ରତିଦିନ ଯେଉଁ ଅଫିସରଙ୍କୁ ଭେଟୁଥିଲି ତାଙ୍କ ନାମ ଏବଂ ଟେଲିଫୋନ୍ ନମ୍ବର ଟିପି ଆଣୁଥିଲି । ୧୯୬୫ ମସିହା ଡିସେମ୍ବର ମାସରେ ଓଡ଼ିଶାରେ ମୋଟ ୧୧୨ ଜଣ ଆଇ.ଏ.ଏସ୍. ଅଫିସର ଥିଲେ । ଏମାନଙ୍କ ମଧ୍ୟରେ ୭୪ଜଣ ସିଧା ସଳଖ ଆଇ.ଏ.ଏସ୍. ଏବଂ ୩୮ଜଣ ଓଡ଼ିଶା କ୍ୟାଡରରୁ ପଦୋନ୍ନତି ପାଇ ଆଇ.ଏ.ଏସ୍. ହୋଇଥିଲେ । ଓଡ଼ିଶା ସଚିବାଳୟରେ ମୋଟ ଅଠରଟି ବିଭାଗ ଥିଲା । ସ୍ୱାଧୀନତା ପରେ ୧୯୪୮ ମସିହାରେ ଯେତେବେଳେ କଟକରେ ରାଜ୍ୟ ସଚିବାଳୟ ଥିଲା ସେତେବେଳେ ମୋଟ ନ'ଟି ବିଭାଗ ଥିଲା । ମାତ୍ର ରାଜ୍ୟରେ ଆଇ.ଏ.ଏସ୍. ଅଫିସରଙ୍କ ସଂଖ୍ୟା ବୃଦ୍ଧି ହେବା ପରେ ୧୯୫୯ରେ ଏହା ବୃଦ୍ଧି ପାଇ ଅଠରଟି ବିଭାଗ ହେଲା । ଏହି ଅଫିସରଙ୍କ ମଧ୍ୟରୁ ୨୪ଜଣ କେନ୍ଦ୍ର ସରକାରଙ୍କ ଅଧୀନକୁ ଡେପୁଟେସନ୍ ଯିବା ବ୍ୟବସ୍ଥା ଥିଲା । ସେତେବେଳେ ଅଫିସରମାନେ ଦିଲ୍ଲୀ ଯିବାକୁ ଆଗ୍ରହୀ ଥିଲେ । ମୁଁ ଅଫିସରମାନଙ୍କ ସହ ପରିଚିତ ହେବା ବେଳେ କେତେକ ଆଗ୍ରହ ପ୍ରକାଶ କରି କଥାବାର୍ତ୍ତା ହେଲାବେଳେ ଆଉ କେତେକ ବିଶେଷ କରି ଦକ୍ଷିଣ ଭାରତୀୟ ଅଫିସର୍ ମୋତେ ରୋକ୍‌ଠୋକ୍ ଶୁଣାଇ ଦେଲେ ସେମାନେ ସରକାରୀ ଗୋପନୀୟ ଖବର କୌଣସି ସାମ୍ବାଦିକଙ୍କ ନିକଟରେ ପ୍ରକାଶ କରିବେ ନାହିଁ । ଏହି ସମୟରେ ରାଜ୍ୟ ଯୋଗାଣ ଓ ବାଣିଜ୍ୟ ବିଭାଗର କମିଶନର ଥିଲେ ପି.କେ. ଚକ୍ରବର୍ତ୍ତିନାମରେ ଜଣେ ବରିଷ୍ଠ ଆଇ.ଏ.ଏସ୍. ଅଫିସର । ସେ ମୋ ପରିଚୟ ପାଇ ଖୁବ୍ ଖୁସି ହେଲେ । ମୋତେ ତାଙ୍କ ଲନ୍‌ରେ ବସାଇ ଚା'ଦେଲେ । ଏଣୁ ତେଣୁ କଥାବାର୍ତ୍ତା ବେଳେ କହିଲେ ମୋତେ ଆପଣ ଜାଣିଛନ୍ତି ବା ମୋ ସହ ଆପଣଙ୍କର ପରିଚୟ ଅଛି ବୋଲି ଖୋଲା ଖୋଲି କାହାକୁ କହିବେ ନାହିଁ । ସେ ମୋର ଟେଲିଫୋନ୍ ନମ୍ବର ଟିପିଲେ । ସେତେବେଳେ ଭୁବନେଶ୍ୱରରେ ମୋର କ୍ୱାଟରରେ ଟେଲିଫୋନ୍ ସଂଯୋଗ ହୋଇଥିଲା । ଟେଲିଫୋନ୍ ନମ୍ବର ଥିଲା ୪୨୭ । ୧୯୬୫ ମସିହାରେ ଭୁବନେଶ୍ୱରରେ ମୋଟ୍ ଟେଲିଫୋନ୍ ସଂଖ୍ୟା ଥିଲା ହଜାରରୁ କମ୍ । ଯାହାଘରେ ଟେଲିଫୋନ୍ ଥିଲା ସମାଜରେ ତାଙ୍କର ବେଶ୍ ଖାତିର ଥିଲା । ମୋର ଯାହା ମନେ ପଡୁଛି ସେତେବେଳେ ମୁଁ ଯେଉଁ ଲାଇନ୍‌ରେ ରହୁଥିଲି କେବଳ ମୋ ଘରେ ଟେଲିଫୋନ୍ ଥିଲା । ତେଣୁ ଯାହାର ଯାହା କାମ ପଡ଼େ ସେମାନେ ମୋ ଘରକୁ ଆସୁଥିଲେ ଟେଲିଫୋନ୍ କରିବା ପାଇଁ ।

ଭୁବନେଶ୍ୱରରେ ସମସ୍ତ ବଡ଼ ବଡ଼ ବଙ୍ଗଳାକୁ ଗୋଟିଏ ଥର ଯାଇ ପରିଚିତ ହେବାକୁ ପାଖାପାଖି ମାସେ ଲାଗିଗଲା । ଇତି ମଧ୍ୟରେ ଦିନବେଳା ସଚିବାଳୟରେ ଅଫିସରମାନଙ୍କ ବିଭାଗକୁ ଯାଇ ମଧ୍ୟ କଥାବାର୍ତ୍ତା ହେଲି । ମୋଟାମୋଟି ଦୁଇମାସ ଅଢ଼େଇମାସ ମଧ୍ୟରେ ସମସ୍ତ ବଡ଼ ବଡ଼ ଅଫିସରଙ୍କ ସହ ଉଣାଅଧିକେ ମୋର ପରିଚୟ ହୋଇଗଲା ।

ଏଇ ପରିଚୟ ପର୍ବ ମଧ୍ୟରେ ମୁଁ ବେଶ୍ କେତୋଟି ଖବର ମଧ୍ୟ ପାଇଲି । ଯେଉଁ ଖବରଗୁଡ଼ିକ ମାତୃଭୂମି କେବଳ ପ୍ରକାଶ କରିଥିଲା । ଯାହାକୁ ଇଂରାଜୀରେ ଏକ୍ସକ୍ଲୁସିଭ୍ ଖବର ବୋଲି କୁହାଯାଏ । ଏହି ଖବରଗୁଡ଼ିକ ଛାପା ହେବା ଫଳରେ ଅନ୍ୟ ଓଡ଼ିଆ କାଗଜଗୁଡ଼ିକର ସମ୍ପାଦକମାନେ ସେମାନଙ୍କ ପ୍ରତିନିଧିମାନଙ୍କୁ କୈଫିୟତ ଠିକ୍ ନହେଲେ ମଧ୍ୟ ବେଶ୍ ତାଗିଦା ଦେଲେ । ପି.ଟି.ଆଇ. ଅଫିସ୍ ସିଣ୍ଡିକେଟ୍ ବୈଠକରେ ମୋ ସମ୍ପର୍କରେ ଆଲୋଚନା ହେଲା । ମୋର ବିରୁଦ୍ଧରେ ମାତୃଭୂମି ଖବର କାଗଜ ସମ୍ପାଦକଙ୍କ ନିକଟକୁ କେତେକ ବେନାମୀ ପତ୍ର ଗଲା । ସେ ପତ୍ରର ସାରାଂଶ ହେଲା ମୁଁ ଖବର ପାଇଁ ଟଙ୍କା ଆଦାୟ କରୁଛି । ଏ ପ୍ରକାର ପତ୍ର ପାଇ ଆଉ ଯିଏ ହେଉ ନହେଉ ବିଚିବାବୁ ବିଶ୍ୱାସ କଲେ ନାହିଁ । କିଛିଦିନ ପରେ ଏହାର ସ୍ୱରୂପ ପଦାକୁ ଆସିଲା ।

ଦିନେ ମତେ ଆମ ସମ୍ପାଦକ ଗୌର ବାବୁ (ଗୌରଚନ୍ଦ୍ର ରାଉତ) କଟକ ଅଫିସ୍‌କୁ ଡକାଇ ପଠାଇଲେ । ମୁଁ ତା'ପରଦିନ ଅଫିସ୍‌ରେ ପହଞ୍ଚିବା ପରେ ଗୌରବାବୁ ମୋତେ କହିଲେ ବରେନ୍ଦ୍ର ବାବୁ ଆପଣଙ୍କ ବିରୁଦ୍ଧରେ ଅନେକଗୁଡ଼ିଏ ଅଭିଯୋଗ ଆସିଛି । ଆପଣ କଟକ ଅଫିସ୍‌କୁ ଆସି ଯୋଗ ଦିଅନ୍ତୁ । ମୁଁ ଭୁବନେଶ୍ୱର ଯିବି । ମୁଁ ଆଶ୍ଚର୍ଯ୍ୟ ହୋଇ ପଚାରିଲି କ'ଣ ହୋଇଛି ? ସେ କହିଲେ ଆପଣ ଖବର ସଂଗ୍ରହ ପାଇଁ ଭିନ୍ନ ପ୍ରକାର ଧନ୍ଦା କରୁଛନ୍ତି । ମୁଁ ଜାଣିବାକୁ ଚାହିଁଲି ଖୋଲାଖୋଲି କୁହନ୍ତୁ । ମୋର ସାମ୍ବାଦିକ ଜୀବନରେ ମୁଁ କେବେ କୌଣସି ବାଜେ ଧନ୍ଦା କରିନି କିମ୍ବା ଖବର ଦେବା ପାଇଁ କୌଣସି ଅଣ ପେଶାଦାର କାର୍ଯ୍ୟ କରିନାହିଁ । ଗତ ପାଞ୍ଚମାସ ମଧ୍ୟରେ ଅନ୍ତତଃ ମୁଁ ଏପରି ଅନେକ ଷ୍ଟୋରି ଦେଇଛି ଯାହା ଅନ୍ୟମାନେ ଦେଇ ନାହାନ୍ତି । କେବଳ ସେତିକି ନୁହେଁ ମୋ ଖବର ଉପରେ ବିଧାନ ସଭାରେ ଏବେ ପାଞ୍ଚୋଟି ମୁଲତବୀ ପ୍ରସ୍ତାବ ଆସିଛି । ମୁଁ ଆଉ କିଛି କହିବା ପୂର୍ବରୁ ବିଚିବାବୁ କହିଲେ ଏସବୁ ବାଳକୃଷ୍ଣ କାନୁନ୍‌ଗୋଙ୍କର ଧନ୍ଦା । ସେ ଭାବିଥିଲେ ସେ ମାତୃଭୂମି ଛାଡ଼ି ଦେବା ପରେ ଭୁବନେଶ୍ୱର ଖବର ମାନ୍ଦା ହୋଇଯିବ । ମାତ୍ର ଆପଣ ଯେତେ ଏକ୍ସକ୍ଲୁସିଭ୍ ଖବର ଦେଉଛନ୍ତି ସେଥିରେ ସେମାନେ ବଡ଼ ଅସୁବିଧାରେ ପଡ଼ୁଛନ୍ତି । ତେଣୁ ଆପଣଙ୍କ ବିରୁଦ୍ଧରେ ମନଗଢ଼ା ଅଭିଯୋଗ କରି ଚାଲିଛନ୍ତି ।

ମୋତେ ବିଚିବାବୁ ପରେ କହିଲେ ଆପଣଙ୍କ ବିରୁଦ୍ଧରେ ତିନି ଚାରିଜଣ ସାମ୍ବାଦିକ ଆସି କିଛି ଅଭିଯୋଗ କରୁଥିଲେ । ମୁଁ ସେମାନଙ୍କ ନାମ ଜାଣିବାକୁ ଚାହିଁବାରେ ସେ କହିଲେ ଭୁବନେଶ୍ୱରରେ ଯେଉଁମାନେ ସିଣ୍ଡିକେଟ୍ କରିଛନ୍ତି ସେମାନଙ୍କ ମଧ୍ୟରୁ ତିନି ଜଣ ଆସିଥିଲେ । ସେ ପୁଣି କହିଲେ ଆପଣ ପ୍ରତିଦିନ ଯେଉଁ ଏକ୍ସକ୍ଲୁସିଭ୍ ସମ୍ବାଦ ଦେଉଛନ୍ତି ସେଥିରେ ସେମାନଙ୍କର ଗାତ୍ରଦାହ ହେଉଛି । ତେଣୁ ବ୍ୟସ୍ତ ହେବା ଦରକାର ନାହିଁ । ଆପଣଙ୍କ କାମ କରି ଚାଲନ୍ତୁ । ମୁଁ (ବିଚିବାବୁ) ସେମାନଙ୍କୁ କହିଲି ବରେନ୍ଦ୍ର ବାବୁ ମାତ୍ର ଚାରି/ପାଞ୍ଚମାସ ହେବ ଯାଉ ଯାଉ ଟଙ୍କା କମାଇଲେଣି । ତା'ହେଲେ ଆପଣମାନେ ତ ଲକ୍ଷଲକ୍ଷ ଟଙ୍କା କମେଇବେଣି । ତା'ପରେ ସେମାନେ ଯାଇଛନ୍ତି, ଆଉ ଆସି ନାହାନ୍ତି ।

୧୯୬୬ ଏପ୍ରିଲ ପହିଲାରେ ବିଧିବଦ୍ଧ ଭାବେ ବୀରେନ ମିତ୍ରଙ୍କ 'ଜନଶକ୍ତି' ଖବର କାଗଜ ପ୍ରକାଶ ପାଇଲା । କଟକ ଓ.ଏମ୍.ପି. ପାଖରୁ ତାଳଦଣ୍ଡା କେନାଲ କୂଳରେ ଏକ ସେଡ୍ (ଘର) ତିଆରି କରାଯାଇ କାଗଜ ସେଇଠି ଛପା ହୋଇ ପ୍ରକାଶ ପାଇଲା । ଏଣେ ଭୁବନେଶ୍ୱରରେ ସ୍ୱରାଜ୍ୟ ନାମରେ ଏକ ଖବର କାଗଜ ପ୍ରକାଶ ପାଇଲା । ଓଡ଼ିଶାର

ଗଣତନ୍ତ୍ର ପରିଷଦ ରାଜନୀତିକ ଦଳ ୧୯୬୨ ମାର୍ଚ୍ଚ ୩ ତାରିଖରେ ନିଖିଳ ଭାରତ ସ୍ୱତନ୍ତ୍ର ଦଳ ସହ ମିଶିଗଲା । ବଲାଙ୍ଗିରର ପୂର୍ବତନ ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓ ଏହାର ନେତା ହେଲେ । ଓଡ଼ିଶା ବିଧାନ ସଭାରେ ଶ୍ରୀ ସିଂହଦେଓ ବିରୋଧୀ ଦଳ ନେତା ରୂପେ କାର୍ଯ୍ୟ କଲେ । ୧୯୬୧ ନିର୍ବାଚନରେ ଗଣତନ୍ତ୍ର ପରିଷଦ ୫୧ଟି ସ୍ଥାନରେ ବିଜୟ ଲାଭ କରି ରାଜ୍ୟର ଦ୍ୱିତୀୟ ବୃହତ୍ତମ ଦଳ ହୋଇଥିଲା । ସ୍ୱରାଜ୍ୟ ଖବର କାଗଜ ସ୍ୱତନ୍ତ୍ର ଦଳର ମୁଖପତ୍ର ରୂପେ ଆତ୍ମପ୍ରକାଶ କଲା । 'ଜନଶକ୍ତି' ଖବର କାଗଜର ସମ୍ପାଦକ ରୂପେ ପ୍ରଖ୍ୟାତ ସାମ୍ବାଦିକ ଶ୍ରୀହର୍ଷ ମିଶ୍ର ଦାୟିତ୍ୱ ଗ୍ରହଣ କରିବା ବେଳେ ସ୍ୱରାଜ୍ୟ ଖବର କାଗଜର ସମ୍ପାଦକ ରୂପେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ, ସାମ୍ବାଦିକ ଓ ସାହିତ୍ୟିକ ରାମ ପ୍ରସାଦ ସିଂହ ଯୋଗ ଦେଇଥିଲେ ।

## -ଜନଶକ୍ତି ଚିଫ୍ ରିପୋର୍ଟର-

ମୁଁ ପୂର୍ବରୁ କହିଛି ଜନଶକ୍ତି ଖବର କାଗଜ ବିଧିବଦ୍ଧ ଭାବେ ପ୍ରକାଶ ପାଇବାର ଚାରି/ପାଞ୍ଚ ମାସ ପୂର୍ବରୁ ଡମି କପି ବା ଅଫିସ୍ କପି ପ୍ରକାଶ ପାଉଥିଲା । ତେବେ ଖୋଲାଖୋଲି ଭାବେ ପ୍ରକାଶ ପାଇବା ପରେ ଦିନେ ମୋତେ ବୀରେନ୍ ମିତ୍ରଙ୍କ ଅଫିସରୁ ଟେଲିଫୋନ୍ ଆସିଲା । ସେପଟୁ ଜଣେ କହିଲେ ବରେନ୍ଦ୍ର ବାବୁ- ଦାଦା ଆପଣଙ୍କୁ ଡାକୁଛନ୍ତି । ଟିକେ ଆସି ପାରିବେ ? ମୁଁ କହିଲି କ'ଣ ପ୍ରେସ୍ କନ୍‌ଫରେନ୍ସ ? ସେ କହିଲେ ନା- ନା ଏଇମିତି ଆପଣଙ୍କୁ ଡାକିଛନ୍ତି କ'ଣ କଥାବାର୍ତ୍ତା କରିବାକୁ । ମୁଁ ଆଶ୍ଚର୍ଯ୍ୟ ହେଲି । ମୋ ସାଙ୍ଗରେ ଦାଦାଙ୍କର କ'ଣ କାମ ? ଦେଖାଯାଉ । ମୁଁ ଉତ୍ତର ଦେଲି, ଆଚ୍ଛା ମୁଁ ଆସୁଛି । ମୁଁ ସାଇକେଲ୍ ଧରି ବାହାରିଲି । ଦାଦା ରହୁଥିଲେ ଏ.ଜି. ଛକ ଚିଲ୍ଡ୍ରେନ୍ ପାର୍କ ପଛ ପାଖ ଘରେ । ମୁଁ ସାଇକେଲ୍ ରଖିବା ବେଳେ ଦେଖିଲି ଦାଦା ବାରଣ୍ଡାରେ ବଡ଼ ଲମ୍ବା ଆରାମ ଚେୟାରରେ ବସିଥିଲେ । ମୁଁ ନମସ୍କାର କରି ଠିଆ ହେବାରେ କହିଲେ ଧଳ, ବସ । ତୋ ସାଙ୍ଗରେ କଥା ଅଛି । ମୁଁ କିଛି ନକହି ବସିଲି । କିଛି ସମୟ ପରେ ଦାଦା କହିଲେ ତତେ ଏଇନେ ରାମ(ରାମଚନ୍ଦ୍ର କର, ମାତୃଭୂମିର ଅନ୍ୟତମ ସତ୍ତ୍ୱାଧିକାରୀ) କେତେ ଦରମା ଦେଉଛି ? ମୁଁ ହଠାତ୍ ଏଭଳି ପ୍ରଶ୍ନ ପାଇଁ ପ୍ରସ୍ତୁତ ନଥିଲି । ତେବେ କହିଲି ଅଢ଼େଇଶହ ଟଙ୍କା । ସେ ଟିକେ କ'ଣ ଭାବି କହିଲେ ମୁଁ ତତେ ସାଢ଼େ ତିନିଶହ ଟଙ୍କା ଦେବି । ତୁ କଟକରେ ଜନଶକ୍ତିର ଚିଫ୍ ରିପୋର୍ଟର ହୋଇ ଜଏନ୍ କର । ମୁଁ ଦାଦାଙ୍କ କଥାଶୁଣି ରୀତିମତ ଆଶ୍ଚର୍ଯ୍ୟ ହେଲି । ହଠାତ୍ କ'ଣ କହିବି ଜାଣି ପାରିଲି ନାହିଁ । କିଛି ସମୟ ନିରବ ରହି କହିଲି ଦାଦା ମତେ ଟିକେ ସମୟ ଦିଅନ୍ତୁ । ମୁଁ ଆପଣଙ୍କୁ ପରେ କହିବି । ଦାଦା କହିଲେ ପରେ କ'ଣ କହିବୁ । ତୁ ମୋ କାଗଜରେ କଟକ ଚିଫ୍ ରିପୋର୍ଟର ହେବୁ । ଆର ମାସରେ ଜଏନ୍ କର । ମୁଁ ଆଉକିଛି ନକହି ଚାଲି ଆସିଲି ।

ମୁଁ ଘରକୁ ଆସି ଅନେକ ସମୟ ଭାବିଲି । କାହାକୁ ଏକଥା ପଚାରିବି ? ତା'ପରେ ମନେ ହେଲା କୃଷ୍ଣବାବୁ(କୃଷ୍ଣ ପ୍ରସାଦ ପଟ୍ଟନାୟକ, ମାତୃଭୂମିର ବରିଷ୍ଠ ସହ-ସମ୍ପାଦକ)ଙ୍କୁ ପଚାରିଲେ ଠିକ୍ ହେବ । ସନ୍ଧ୍ୟାବେଳେ କୃଷ୍ଣବାବୁଙ୍କୁ ଟେଲିଫୋନ୍ କଲି । ତାଙ୍କୁ ସବୁକଥା କହିଲି । ସେ ସବୁ ଶୁଣି ମତେ ପଚାରିଲେ ତମେ କ'ଣ ଭାବୁଛ ? ମୁଁ କହିଲି ମୋର ମନରେ ସେଭଳି କୌଣସି ଆଗ୍ରହ ଆସୁ ନାହିଁ । ତା'ଛଡ଼ା ପୁଣି କଟକ ଯାଇ ରିପୋର୍ଟିଂ କରିବାକୁ ଇଚ୍ଛା ନାହିଁ । ସେ ଶୁଣି କହିଲେ ତୁମେ ଯାହା ଭାବୁଛ ସେଇଆ କର । କୌଣସି ରାଜନୀତିକ ବ୍ୟକ୍ତିଙ୍କ କାଗଜରେ କାମ କରିବାରେ ତମେ ତମର ନିରପେକ୍ଷତା ହରାଇ ବସିବ । କୃଷ୍ଣବାବୁଙ୍କ କଥା ଶୁଣି ମୋ ମନରେ ଯେଉଁ ଦ୍ୱନ୍ଦ୍ୱ ସୃଷ୍ଟି ହୋଇଥିଲା ତାହା ଦୂର ହୋଇଗଲା । ମୁଁ ଆଉ ଦାଦାଙ୍କ ପାଖକୁ ଗଲି ନାହିଁ । ଦାଦା ମଝିରେ ଦୁଇ/ତିନି ଥର ଖବର ଦେଲେ । ମାତ୍ର ମୁଁ ଗାଳେଇ ଗଲି । ମୁଁ ଭୁବନେଶ୍ୱରରେ ରହୁଥିଲେ ମଧ୍ୟ କଟକ ରାଜା ବଗିଚା ଲେବର କଲୋନି ଘରେ ମୋର ଜିନିଷ ପତ୍ର ସବୁ ଥିଲା । ମଝିରେ ମଝିରେ ବିଶେଷ କରି ଶନିବାର, ରବିବାର କଟକରେ ରହି ସୋମବାର ସକାଳୁ ଭୁବନେଶ୍ୱର ଯାଉଥିଲି । ଏହି ଘଟଣାରେ

ପ୍ରାୟ ପନ୍ଦର ଦିନ ପରେ ଦିନେ ଚାନ୍ଦିନୀଚୌକରୁ ବସ୍ ଧରିବାବେଳେ ନାରଣବାବୁ(ସମାଜର ଭୁବନେଶ୍ୱର ପ୍ରତିନିଧି) ଦେଖାହେଲେ । ମୋତେ ଦେଖି ପଚାରିଲେ ତୁମେ କ'ଣ କଟକ ଆସୁଛ ? ମୁଁ କହିଲି ନାଇଁ ଏଇମିତି ଶନିବାର, ରବିବାର କଟକ ଆସି ରହୁଛି । ଆଜି ଏବେ ଯାଉଛି । ନାରଣ ବାବୁ କହିଲେ ନାଇଁ ହେ- ତମେ ଜନଶକ୍ତିର କଟକ ରିପୋର୍ଟର ହେଲ ବୋଲି ମୋତେ ବାଳକୃଷ୍ଣ କହୁଥିଲେ । ମୁଁ କହିଲି କାହିଁ ନାଇଁତ, ମୁଁ ଭୁବନେଶ୍ୱରରେ ତ ଅଛି । ସେ କହିଲେ ତାହାଲେ ତମକୁ ବୋଧେ ବୀରେନ୍ କହିପାରେ । ବାଳକୃଷ୍ଣ ତମ ନାଁ କଟକ ପାଇଁ ପ୍ରସ୍ତାବ କରିଥିଲା । ନାରଣ ବାବୁଙ୍କ କଥା ଶୁଣି ମୁଁ ସେତେବେଳେ ଜାଣିଲି ଇୟେ ବାଳକୃଷ୍ଣ କାନୁନ୍‌ଗୋଙ୍କ ଚକ୍ରାନ୍ତ । ମୁଁ ଈଶ୍ୱରଙ୍କୁ ମନେ ମନେ ପ୍ରଣାମ କଲି । ଭୁବନେଶ୍ୱରରୁ ମତେ ହଟାଇବା ପାଇଁ ଏମାନେ ତଥାପି ଜିଦ୍ ଛାଡ଼ି ନାହାନ୍ତି । ମୁଁ ମଧ ମୋ ମନକୁ ଦୃଢ଼ କଲି ।

ମୁଁ ଆହୁରି ଜୋର୍‌ରେ କାମକୁ ଓହ୍ଲାଇ ପଡ଼ିଲି । ସେତେବେଳକୁ ରାଜ୍ୟର ମନ୍ତ୍ରୀ, ଏମ୍.ଏଲ୍.ଏ. ଏବଂ ବଡ଼ ବଡ଼ ଅଫିସରଙ୍କ ସହ ପ୍ରାୟ ଚିହ୍ନା ପରିଚୟ ହୋଇଗଲାଣି । ମନ୍ତ୍ରୀମାନଙ୍କୁ ନିୟମିତ ଭାବେ ଭେଟିବା ଏବଂ ଖବର ଆଣିବାରେ ମୋର ଆଉ ଅସୁବିଧା ହେଲା ନାହିଁ । ସେତେବେଳେ ରାଜ୍ୟରେ କଂଗ୍ରେସ ଦଳ ଭିତରେ ପ୍ରାୟ ଗୋଳମାଳ ଆରମ୍ଭ ହେଲାଣି । ବିଜୁବାବୁ ରାଜ୍ୟ ଯୋଜନା ବୋର୍ଡ଼ର ଅଧକ୍ଷ ପଦରୁ କଂଗ୍ରେସ ହାଇ କମାଣ୍ଡଙ୍କ ନିର୍ଦ୍ଦେଶରେ ଇସ୍ତଫା ଦେଇଥା'ନ୍ତି । ତେବେ ସେ ପୁଣି ଥରେ ମୁଖ୍ୟମନ୍ତ୍ରୀ ହେବାପାଇଁ ଇଚ୍ଛାକରି କଂଗ୍ରେସ ଏମ୍.ଏଲ୍.ଏ. ଆଉ ମନ୍ତ୍ରୀମାନଙ୍କୁ ନିଜର ଇଚ୍ଛା ଜଣାଇଥିଲେ । ଦଳରେ ବିଜୁବାବୁଙ୍କ ପ୍ରଭାବ ଅକ୍ଷୁର୍ଣ୍ଣ ଥିଲା । ତେଣୁ ସମସ୍ତେ ଚାହୁଁଥିଲେ ସେ ଆଉଥରେ ମୁଖ୍ୟମନ୍ତ୍ରୀ ହୁଅନ୍ତୁ ବୋଲି ।

୧୯୬୬ ମସିହା ଓଡ଼ିଶା ରାଜନୀତିରେ ଏକ ଗୁରୁତ୍ୱପୂର୍ଣ୍ଣ ବର୍ଷ । ମୁଁ ଭୁବନେଶ୍ୱରରେ କାମ କରିବାକୁ ଆରମ୍ଭ କରିବା ବେଳେ କଂଗ୍ରେସରେ ଏକ ବିଭାଜନ ହେବା କଥା ଶୁଣିଲି । ସେଦିନ କଟକରେ ପ୍ରଜାତନ୍ତ୍ର ବିଷୁବ ମିଳନକୁ ଯାଇଥିଲି । ଏପ୍ରିଲ୍ ୧୪ ତାରିଖରେ (୧୯୬୬) ସନ୍ଧ୍ୟାରେ ଏକ ବନ୍ଧୁମିଳନ ହେଉଥାଏ । ସେଇଠି ବଉଦର ଏମ୍.ଏଲ୍.ଏ. ହିମାଂଶୁ ଶେଖର ପାଢ଼ୀଙ୍କ ସହ ଦେଖାହେଲା । ହିମାଂଶୁ ବାବୁ ଭାରି ସରଳିଆ ଲୋକ ଆଉ ବନ୍ଧୁଭାବାପନ୍ନ । ହିମାଂଶୁ ବାବୁଙ୍କ ସହ ବିଧାନସଭା ଲବିରେ ମୋର ଦେଖା ହୋଇ ଘନିଷ୍ଠତା ହୋଇଥାଏ । ସେ ସେଠି ଏକୁଟିଆ ବୁଲୁଥିଲେ । ମୋତେ ଦେଖି ଖୁସି ହୋଇଯାଇ କହିଲେ ବରେନ୍ଦ୍ର ବାବୁ ଆସନ୍ତୁ ଆସନ୍ତୁ ଏଇ କଣକୁ ବସିବା । ଆମେ ସେଠି ଏକ କଣରେ ଚା'କପ୍ ଧରି ବସିଲୁ । ଏଣୁ ତେଣୁ କଥାବାର୍ତ୍ତା ପରେ ମୁଁ କହିଲି ହିମାଂଶୁବାବୁ ଆଉ ରାଜନୀତି ଖବର କ'ଣ ? ସେ କହିଲେ ଖବର କ'ଣ- ମହତାବ ବାବୁ ଆମ ନେତା ସେ ଯାହା କହିବେ, ଯୁଆଡ଼କୁ ଯିବେ ଆମେ ସିଆଡ଼କୁ ଯିବୁ । ମୁଁ ପଚାରିଲି କିନ୍ତୁ ଏବେ କଂଗ୍ରେସର ସ୍ଥିତି ଯାହା ସେଥିରେ ମହତାବବାବୁଙ୍କ ଗୁରୁତ୍ୱ ପ୍ରାୟ ନାହିଁ । ବିଜୁବାବୁଙ୍କ ସହ ଭଲ ସମ୍ପର୍କ ନହେବା ପର୍ଯ୍ୟନ୍ତ ତାଙ୍କୁ କଂଗ୍ରେସରେ ଉଚିତ୍ ସମ୍ମାନ ମିଳିବ ନାହିଁ । ତେଣୁ ଆଗାମୀ ନିର୍ବାଚନରେ ଆପଣମାନଙ୍କୁ ଟିକେଟ ମିଳିବା ନେଇ ଅସୁବିଧା ହୋଇପାରେ । ସେ ମୋ ମୁହଁକୁ ଚାହିଁଲେ । ତା'ପରେ ଚୁପ୍ ଚୁପ୍ କହିଲେ ସମ୍ଭବତଃ ଓଡ଼ିଶାରେ ଆଉ ଏକ କଂଗ୍ରେସ ଦଳ ସୃଷ୍ଟି ହୋଇପାରେ । ମୁଁ ତାଙ୍କ କଥା ଶୁଣି ଆଶ୍ଚର୍ଯ୍ୟ ହୋଇ କହିଲି ତେବେ ଆପଣମାନେ କ'ଣ କଂଗ୍ରେସ ଛାଡ଼ିବେ । ସେ କହିଲେ ଆଉ ଉପାୟ କ'ଣ ? ଏବେ ବିଜୁ-ବୀରେନ-ନୀଳମଣି ଦୌରାତ୍ମ୍ୟରେ ରହିବା ମୁସ୍କିଲ ହେଲାଣି । ସଦାଶିବ ବାବୁ ମୁଖ୍ୟମନ୍ତ୍ରୀ ଅଛନ୍ତି ବୋଲି କାମଦାମ କିଛି ହେଉଛି । ମାତ୍ର ସଦାଶିବ ବାବୁ ତ କଂଗ୍ରେସର ସର୍ବାଧିନାୟକ ନୁହଁନ୍ତି । ତେଣୁ ସମ୍ଭବତଃ ମହତାବବାବୁ କଂଗ୍ରେସ ଛାଡ଼ିବେ । ଆମେ ଏକଥା ଶୁଣି ଆଉ କିଛି କଥା ତାଙ୍କ ପାଖରୁ ବାହାର କରିବା ପାଇଁ କହିଲୁ ଆପଣ ତ ମହତାବବାବୁଙ୍କ ଗୋଷ୍ଠିର ଜଣେ ମୁଖିଆ ନେତା । କାରଣ ଆପଣଙ୍କ ନେତୃତ୍ୱ ଯୋଗୁଁ ବିଜୁବାବୁଙ୍କ ଟିକରପଡ଼ା ବନ୍ଧ ଯୋଜନା ମାଡ଼ ଖାଇଗଲା । ସେଥିପାଇଁ ବିଜୁବାବୁ ଆପଣଙ୍କ ଉପରେ ବିରକ୍ତ । ତା'ଛଡ଼ା ଆପଣ ମୂଳରୁତ ବିଜୁବାବୁଙ୍କ ବିରୋଧୀ । ସେ ଆମ କଥା ଶୁଣି ଖୁସି ହୋଇଗଲେ । ମତେ ପଚାରିଲେ ମୋ ସମ୍ପର୍କରେ

ଏଠାରେ ଖବର କାଗଜବାଲାଙ୍କ ଧାରଣା କ'ଣ ? ମୁଁ କହିଲି ଯାହା ମୁଁ କହିଲି ସେକଥା ପ୍ରାୟ ସମସ୍ତଙ୍କ ଧାରଣା । ଏଣୁ ତେଣୁ କଥା ହେବାପରେ ମୁଁ ପଚାରିଲି ଆଚ୍ଛା ମୋଟ୍ କେତେ ଏମ୍.ଏଲ୍.ଏ. କଂଗ୍ରେସ ଦଳ ଛାଡ଼ିବେ ବୋଲି ଆପଣ ଭାବୁଛନ୍ତି ? ସେ କହିଲେ କଥାବାର୍ତ୍ତା ଚାଲିଛି । ମୋର ଅନୁମାନ ପନ୍ଦର ଜଣ ପର୍ଯ୍ୟନ୍ତ ବୋଧେ ଇସ୍ତଫା ଦେଇ ମହତାବଙ୍କ ଦଳରେ ଯୋଗଦେବେ । କିଏ କିଏ ବୋଲି ପଚାରିବାରେ ସେ କହିଲେ ସବୁ ନାଁ'ତ ମୋର ମନେ ନାହିଁ । ତେବେ ମହତାବଙ୍କ ଅନୁଗତ ବନମାଳୀ ପଟ୍ଟନାୟକ, ସୁରେନ୍ଦ୍ର ପଟ୍ଟନାୟକ, ପବିତ୍ର ପ୍ରଧାନ, ମୁରଲିଧର ଜେନା, ଉପେନ୍ଦ୍ର ମହାନ୍ତି, କୁମୁଦଚନ୍ଦ୍ର ସିଂହ, ବୀର ବିକ୍ରମାଦିତ୍ୟ ସିଂହ ବରିହା, ଶାନ୍ତନୁ କୁମାର ଦାସ, ସୋନାରାମ ସୋରେନ୍, ମନମୋହନ ଟୁଡୁ ଏବଂ ଆଉ ତିନି ଚାରିଜଣ ଅଛନ୍ତି । ମୁଁ ହିମାଂଶୁବାବୁ କହିଥିବା ନାଁ ସବୁ ଟିପିନେଲି । ହିମାଂଶୁ ବାବୁ କହିଲେ ବରେନ୍ଦ୍ର ବାବୁ ଏଇନେ ଏସବୁ ଦେବେନି । ଆଉ ଗୋଟିଏ କଥା ମୋ ପାଖରୁ ଶୁଣିଛନ୍ତି ବୋଲି ଯେପରି କେହି ନଜାଣନ୍ତି । ମୁଁ ହସିଲି । କହିଲି ଆପଣ ନିଶ୍ଚିନ୍ତ ରୁହନ୍ତୁ । ମୋ ମୁହଁରୁ ଆପଣଙ୍କ ନାଁ କେହି ଶୁଣିବେ ନାହିଁ । ଦୁଇ/ତିନି ଦିନ ପରେ ମୁଁ ମାତୃଭୂମିରେ ଖବର ଦେଲି । ଓଡ଼ିଶାରେ ଖୁବ୍ ଶୀଘ୍ର ଆତ୍ମ ପ୍ରକାଶ କରୁଛି ନୂଆ ରାଜନୀତିକ ଦଳ ।

କଂଗ୍ରେସ ଦଳ ବିଭାଜିତ ହେବ ବୋଲି ଖୁବ୍ ଜୋର୍‌ରେ ଗୁଜବ ଚାଲିଥାଏ । ମୁଁ ହିମାଂଶୁ ବାବୁଙ୍କ ପାଖରୁ ଯାହା ଶୁଣିଥିଲି ତାକୁ ବାଗେଇ ଚୁନେଇ ଏକ ଷ୍ଟୋରି କଲି । ତେବେ ସେତେବେଳ ପର୍ଯ୍ୟନ୍ତ ଯେଉଁ ଗୋଷ୍ଠି ଅଲଗା ହେବେ ସେମାନଙ୍କ ଦଳର ନାମ କ'ଣ ହେବ ଏବଂ କିଏ ନେତା ହେବେ ସେସବୁ କିଛି ଜଣା ପଡ଼ିନଥିଲା । ମୁଁ ନାମ କରଣକୁ ବାଦ ଦେଇ ମହତାବଙ୍କ ଗୋଷ୍ଠି କଂଗ୍ରେସ ଛାଡ଼ିବେ ବୋଲି ଏଥିରେ ଲେଖିଲି । ଯେଉଁ ଏଗାର ଜଣ ବିଧାୟକ ନୂଆ ଦଳରେ ଯୋଗ ଦେବା ସମ୍ଭାବନା ସେମାନଙ୍କ ନାମ ମଧ୍ୟ ଦେଲି । ଆମ କାଗଜରେ ଯେଉଁଦିନ ସମ୍ବାଦ ପ୍ରକାଶ ପାଇଲା ସେଦିନ ପ୍ରଜାତନ୍ତ୍ରରେ ମଧ୍ୟ ଏକା ସମ୍ବାଦ ପ୍ରକାଶ ପାଇଲା । ସମ୍ଭବତଃ ସେତେବେଳକୁ ମହତାବ ବାବୁ ସ୍ଥିର କରି ନେଇଥିଲେ କଂଗ୍ରେସରେ ବିଭାଜନ ହେବ ବୋଲି । ତା'ନହୋଇ ଥିଲେ ପ୍ରଜାତନ୍ତ୍ରରେ ଏତେ ଶୀଘ୍ର ସମ୍ବାଦ ପ୍ରକାଶ ପାଇ ନଥା'ନ୍ତା । ଏ ଖବର ପ୍ରକାଶ ପାଇବା ପରେ ରାଜ୍ୟ ରାଜନୀତିରେ ବେଶ୍ ହଇଚଇ ଆରମ୍ଭ ହେଲା । ପ୍ରେସ୍ ରୁମ୍‌ରେ ମୋତେ ସେଦିନ ବୈରାଗୀ ବାବୁ ଆଉ ସୁବୋଧ ବାବୁ କହିଲେ ବରେନ୍ଦ୍ର ଆମକୁ ଟିକେ କହିଲ ନାହିଁ । ମୁଁ କହିଲି ଆଜି ପ୍ରଜାତନ୍ତ୍ରରେ ମଧ୍ୟ ପ୍ରକାଶ ପାଇଛି । ରମେଶ ବାବୁ ତ କାଲି ଆପଣମାନଙ୍କ ସାଙ୍ଗରେ ଥିଲେ । ସେ କିଛି କହିଲେ ନାହିଁ ? ବୈରାଗୀ ବାବୁ କହିଲେ ଆହେ- ରମେଶ ବାବୁ ଦେଇଥିଲେ ସିନା ଆମକୁ କହିଥା'ନ୍ତେ । ସେ ତ ନିଜେ ଜାଣି ନାହାନ୍ତି ଏ ଖବର କିଏ ଦେଲା ବୋଲି । ତାଙ୍କ କାଗଜରେ ଡଃ ମହତାବ ସିଧା ସଳଖ ଏ ଖବର ଦେଇଛନ୍ତି । ହେଲେ ତମକୁ ଏ ଖବର କିଏ ଦେଲା ? ମୁଁ କହିଲି ସେ କଥା କ'ଣ କହିହେବ ? ତେବେ ଏତିକି କହିପାରେ ସ୍ପେଶାଲ ବ୍ରାଞ୍ଚ ପାଖରୁ ଏ ଖବର ମୁଁ ପାଇଲି । ତା'ପରେ ଯେଉଁଠାରେ ଏ ଖବର ପାଇଲି ସେଠାରୁ ସେକ୍ରେଟେରିଏଟ୍ ଆସିବା ସମ୍ଭବ ହୋଇ ନଥା'ନ୍ତା । ମୁଁ ଜାଣିଶୁଣି କଥା ଗୋପନ ରଖିଲି ।

ସେଦିନ ଚାରିଟା-ସାଢ଼େ ଚାରିଟା ବେଳକୁ ମୁଁ ନୀଳମଣି ରାଉତରାୟଙ୍କ କୋଠରୀକୁ ଗଲି । ନୀଳମଣି ବାବୁଙ୍କ ସହ ଇତି ମଧ୍ୟରେ ମୋର ବେଶ୍ ଜଣାଶୁଣା ହୋଇ ଯାଇଥିଲା । ମୋତେ ଦେଖି ସେ ତାଙ୍କ ରୁମ୍‌ରେ ଥିବା ଦି'ଜଣ ଲୋକଙ୍କୁ ପରେ ଆସିବ କହି ବିଦା କରିଦେଲେ । ତାଙ୍କ ସିଗାରଟାକୁ ମୁହଁରୁ କାଢ଼ି ସେ ମତେ ପଚାରିଲେ, ବରେନ୍ଦ୍ର ବାବୁ ଆଜି ଯେଉଁ ଖବର ତମ କାଗଜରେ ପ୍ରକାଶ ପାଇଛି ସେ କଥା ସତ ? ମୁଁ କହିଲି ସେ ଖବର ତ ପ୍ରଜାତନ୍ତ୍ରରେ ପ୍ରକାଶ ପାଇଛି । ତାକୁ ସମ୍ଭବତଃ ନିଜେ ଡଃ ମହତାବ ଦେଇଛନ୍ତି । ତେଣୁ ଖବର ସତ । ସେ କହିଲେ ପ୍ରଜାତନ୍ତ୍ର ଖବର କାଗଜରେ ଅନେକ କଥା ଭିନ୍ନ ମତଲବରେ ପ୍ରକାଶ ପାଏ । ଅନେକ ସମୟରେ ଏ ପ୍ରକାର ଖବର

ଦେଇ ମୁଲ୍‌ତାଲ୍ କରାଯାଏ । କିନ୍ତୁ ତୁ ଏ ଖବର କେଉଁଠୁ ପାଇଲୁ ? ତତେ ମୁଁ ଏଇନେ ଡାକି ପଠାଇଥା'ନ୍ତି । ତତେ କ'ଣ ଏକଥା ମହତାବ ବାବୁ କହିଲେ ? ମୁଁ କହିଲି ନାଁ, ମହତାବବାବୁଙ୍କ ସହ ମୋର ଦେଖା ସାକ୍ଷାତ ହୋଇନି । ତେବେ ତୋର ସୋର୍ସ କ'ଣ ? ମୁଁ କହିଲି ଯାହାଙ୍କ ପାଖରୁ ମୁଁ ଶୁଣିଛି ସେ ମତେ କେବେ ମିଛ କଥା କହିବେ ନାହିଁ ବୋଲି ମୁଁ ଜାଣେ । ତେଣୁ ତାଙ୍କ ପାଖରୁ ଏହା ପାଇଲା ପରେ ମୁଁ ଏହାକୁ ଦେଲି । ନୀଳମଣି ବାବୁ ମତେ କିଏ କିଏ ବୋଲି ପଚାରିଲେ । ମୁଁ କ'ଣ କହିବି ଭାବି ପାରିଲି ନାହିଁ । ତା'ପରେ ମୋ ମୁହଁରୁ କିପରି ବାହାରିଗଲା ପବିତ୍ର ବାବୁଙ୍କ ପାଖରୁ ଏହା ପାଇଛି ବୋଲି । ପବିତ୍ର ବାବୁଙ୍କ ନାଁ ଶୁଣି ସେ କହିଲେ ତାହାଲେ ଖବର ସତ ହୋଇ ପାରେ । କାରଣ ପବିତ୍ରବାବୁ ମିଛ କଥା କହିବେ ନାହିଁ । ସେ ପୁଣି ପଚାରିଲେ ତୁ ଯେଉଁ ଏଗାର ଜଣଙ୍କ ନାଁ ଦେଇଛୁ ସେଇ ଏଗାର ଜଣ ନାଁ ଆଉ ଅଛନ୍ତି ? ମୁଁ କହିଲି ପବିତ୍ର ବାବୁ ଯାହା କହୁଥିଲେ ବର୍ତ୍ତମାନ ସୁଦ୍ଧା ପନ୍ଦର ଜଣ ଦସ୍ତଖତ କରିଛନ୍ତି । ଆଉ ଚାରିଜଣଙ୍କ ଦସ୍ତଖତ ବର୍ତ୍ତମାନ ସୁଦ୍ଧା ସେମାନଙ୍କ ହସ୍ତଗତ ହୋଇନାହିଁ । ତେବେ ଏହାବାଦ୍ ଆଉ ପାଞ୍ଚଜଣ ଆସି ପାରନ୍ତି । କିନ୍ତୁ ସେମାନଙ୍କ ନାଁ ସେ କହିଲେ ନାହିଁ । ମୋଟ କୋଡ଼ିଏ ଜଣ ତାଙ୍କ ଦଳରେ ଯୋଗ ଦେବେ ବୋଲି ସେ କହିଲେ । ନୀଳମଣି ବାବୁ ମୋତେ କହିଲେ ଅଧିକା କ'ଣ ପାଇଲେ ମୋତେ କହିବୁ । ମୁଁ ପଚାରିଲି ସାର୍ କ'ଣ ବିଜୁବାବୁ ପୁଣି ମୁଖ୍ୟମନ୍ତ୍ରୀ ହେଉଛନ୍ତି ? ସେ କହିଲେ କାହିଁ ସେ ଭଳି କିଛି କଥା ତ ନାହିଁ । ତୁ ଏକଥା କେଉଁଠୁ ଶୁଣିଲୁ ? ମୁଁ କହିଲି ନାହିଁ କାଲି ଭବାନୀ ପଟ୍ଟନାୟକ ଦେଖା ହୋଇଥିଲେ । ସେ କହୁଥିଲେ ଯେ ୧୯୬୭ ମସିହା ନିର୍ବାଚନ ପାଖେଇ ଆସୁଥିବାରୁ ବିଜୁ ବାବୁ ଦାୟିତ୍ୱ ନନେଲେ ନିର୍ବାଚନରେ କଂଗ୍ରେସର ଅବସ୍ଥା ଭଲ ହେବ ନାହିଁ । ତା'ଛଡ଼ା ସଦାଶିବ ତ୍ରିପାଠୀ ଅସୁସ୍ଥ ରହୁଥିବାରୁ ତାଙ୍କୁ ଦାୟିତ୍ୱ ମୁକ୍ତ କରିବା ପାଇଁ କୁଆଡ଼େ ହାଇ କମାଣ୍ଡଙ୍କ ପାଖରେ ଆପଣଙ୍କ ଦଳ ପକ୍ଷରୁ ପ୍ରସ୍ତାବ ଦିଆଯାଇଛି । ନୀଳମଣି ବାବୁ ମୋ କଥା ଶୁଣି କହିଲେ ବିଜୁ ଚାହୁଁଛି ଯେ ତାକୁ ମୁଖ୍ୟମନ୍ତ୍ରୀ କରିବା ପାଇଁ କଂଗ୍ରେସ ବିଧାୟକମାନେ ହାଇକମାଣ୍ଡଙ୍କୁ ଲେଖନ୍ତୁ । ତେବେ ହାଇକମାଣ୍ଡ ଏଥିରେ ରାଜି ହେବେ କି ନାହିଁ ସେଥିରେ ସନ୍ଦେହ ଅଛି । ମୁଁ ପଚାରିଲି କାହିଁକି ଶ୍ରୀମତୀ ଗାନ୍ଧୀଙ୍କ ସହ ବିଜୁବାବୁଙ୍କର ତ ଭଲ ସମ୍ପର୍କ । ନୀଳମଣି ବାବୁ ମୋ କଥା ଶୁଣି ହସିଲେ । କହିଲେ ବିଜୁ ଅନେକ ସମୟରେ ନିଜ ଆଡ଼କୁ ନିଜେ କୁରାଢ଼ିରେ ଚୋଟ ପକାଏ । ମୁଁ କିଛି ବୁଝି ପାରିଲି ନାହିଁ । ନୀଳମଣି ବାବୁ ପୁଣି କହିଲେ ଲାଲ୍ ବାହାଦୂର ଶାସ୍ତ୍ରୀ ଥିଲେ କ'ଣ ହୋଇଥା'ନ୍ତା । ମାତ୍ର ଇନ୍ଦିରା ଗାନ୍ଧୀଙ୍କ ସହ ପୂର୍ବରୁ ଯେଉଁ ସଂପର୍କ ଥିବା କଥା କୁହାଯାଉଛି ତାହା ଏବେ ଆଉ ନାହିଁ । କାରଣ ଶାସ୍ତ୍ରୀଙ୍କ ମୃତ୍ୟୁ ପରେ (୧୯୬୬ ଜାନୁଆରୀ ୧୦ ତାରିଖ ରାତି ଗୋଟାଏ) ଯେତେବେଳେ ଇନ୍ଦିରା ଗାନ୍ଧୀ ପ୍ରଧାନମନ୍ତ୍ରୀ ହୁଅନ୍ତୁ ବୋଲି ଅଧିକାଂଶ କଂଗ୍ରେସ ଲୋକ ଚାହୁଁଥିଲେ ସେତେବେଳେ ବିଜୁ ମୋରାରଜୀଙ୍କୁ ପ୍ରଧାନମନ୍ତ୍ରୀ ପଦ ପାଇଁ ସମର୍ଥନ କଲେ । ଏକଥା ଇନ୍ଦିରାଙ୍କୁ ଭଲ ଲାଗି ନାହିଁ । ସେ ମୁହଁରେ କିଛି ନକହିଲେ ମଧ ଭିତରେ ଏଥିନେଇ ଅସନ୍ତୁଷ୍ଟ ହୋଇଛନ୍ତି । ତେଣୁ ଏବେ ବିଜୁ ମୁଖ୍ୟମନ୍ତ୍ରୀ ହେବା ପାଇଁ ଚାହିଁଲେ ମଧ ହେବା ସହଜ ନୁହେଁ । ମୁଁ ନୀଳମଣିବାବୁଙ୍କ କଥା ସବୁ ଶୁଣି ମନେ ମନେ ତାଙ୍କ ମତକୁ ସମର୍ଥନ କଲି । ତା' ପରଦିନ ମୁଁ ନୀଳମଣି ବାବୁ କହିଥିବା କଥାକୁ ବାଗେଇ ଚୁନେଇ ଗୋଟିଏ ଷ୍ଟୋରି କଲି । ବେଶ୍ ବଡ଼ ଆକାରରେ ସେ ଖବର ପ୍ରକାଶ ପାଇଲା । ସେଥିରେ ମୁଁ ଗୋଟିଏ ପାରା ଜୋଡ଼ି ଦେଲି ଯଦି ସଦାଶିବ ବାବୁଙ୍କୁ ମୁଖ୍ୟମନ୍ତ୍ରୀ ପଦରୁ ହଟାଯିବ ତେବେ ବିଜୁ ବାବୁଙ୍କ ଅପେକ୍ଷା ହାଇକମାଣ୍ଡ ନୀଳମଣି ବାବୁଙ୍କୁ ମୁଖ୍ୟମନ୍ତ୍ରୀ ପଦ ପାଇଁ ଅଧିକ ସମର୍ଥନ କରିବେ । କାରଣ ତା' ଦ୍ୱାରା ନୀଳମଣି ବାବୁ ହାଇକମାଣ୍ଡଙ୍କର ଅଧିକ ଅନୁଗତ ହୋଇ ରହିବେ । ମୋ ଖବର ପ୍ରକାଶ ପାଇବା ପରେ କଂଗ୍ରେସ ମହଲରେ ବେଶ୍ ଚର୍ଚ୍ଚା ଚାଲିଲା । ନୀଳମଣି ବାବୁ ମଧ ମୋ ଖବର ଦେଖି ଖୁବ୍ ଖୁସି ।

ନୀଳମଣି ବାବୁ ମତେ ଯେଉଁ ଖବର ଦିଅନ୍ତି ସେଥିରେ ତାଙ୍କର ସ୍ୱାର୍ଥ ନିହିତ ଥାଏ । ତାଙ୍କର ନିଜର କୌଣସି ଖବର କାଗଜ ନଥିଲା କିମ୍ବା ଅନ୍ୟ ଖବର କାଗଜ ସହ ଭଲ ସମ୍ପର୍କ ନଥିଲା । ସମାଜ ରାଧାନାଥ ବାବୁଙ୍କ କାଗଜ ହୋଇଥିବାରୁ ସେଥିରୁ ସେ ସାହାଯ୍ୟ ପାଇବେ ନାହିଁ । ଦ୍ୱିତୀୟରେ ରାଧାନାଥ ବାବୁ ଏବଂ ତାଙ୍କ ପ୍ରତିନିଧି ନାରାୟଣ ରଥ ସଦାଶିବ ତ୍ରିପାଠୀଙ୍କୁ ସମର୍ଥନ କରୁଥିଲେ । ପ୍ରଜାତନ୍ତ୍ର ସହ ବିଶେଷ କରି ମହତାବ ବାବୁଙ୍କ ସହ ତାଙ୍କର ଅହି ନକୁଳ ସମ୍ପର୍କ । କଳିଙ୍ଗ ବିଜୁବାବୁଙ୍କ ଖବର କାଗଜ । ତେଣୁ ତାହା ମଧ୍ୟ ତାଙ୍କ ପାଇଁ ସୁବିଧାଜନକ ନଥିଲା । ଜନଶକ୍ତି ବୀରେନ ମିତ୍ରଙ୍କ କାଗଜ ଏବଂ ବାଳକୃଷ୍ଣ ବାବୁ ତା'ର ଭୁବନେଶ୍ୱର ପ୍ରତିନିଧି । ନୀଳମଣି ବାବୁ ବାଳକୃଷ୍ଣ କାନୁନ୍‌ଗୋଙ୍କୁ ଭଲ ପାଉ ନଥିଲେ । ସ୍ୱରାଜ୍ୟ ସ୍ୱତନ୍ତ୍ର ଦଳର କାଗଜ । ଏକମାତ୍ର ମାତୃଭୂମି କୌଣସି ଦଳର ନଥିଲା ଏବଂ ମୁଁ ମଧ୍ୟ କୌଣସି ନେତାଙ୍କର ଏତେ ଘନିଷ୍ଠ ନଥିଲି । ତେଣୁ ସମ୍ଭବତଃ ନୀଳମଣି ବାବୁ ମତେ ଅନେକ ଭିତିରି କଥା କହୁଥିଲେ ଏବଂ ତାଙ୍କର ଉଦ୍ଦେଶ୍ୟ ଥିଲା ସେ ସବୁ ଯେପରି ମାତୃଭୂମିରେ ପ୍ରକାଶ ପାଉ । ମୁଁ ମଧ୍ୟ ଖବର ପାଇଁ ଆଗ୍ରହୀ ଥିଲି । ତେଣୁ ନୀଳମଣି ବାବୁ ଯେଉଁ ଖବର ଦେଉଥିଲେ ମୁଁ ତାକୁ ରଙ୍ଗ ଦେଇ ବନେଇ ଚୁନେଇ ପ୍ରକାଶ କରୁଥିଲି । ପାଠକମାନେ ମଧ୍ୟ ସେହିଭଳି ଖବର ମାତୃଭୂମିଠାରୁ ଆଶା କରୁଥିଲେ ।

## -ନିର୍ବାଚନ-

୧୯୬୬ ମସିହାରେ ଆଉ ଏକ ଘଟଣା ହେଲା ଓଡ଼ିଶାରେ ମନ୍ତ୍ରୀ ଧର୍ମଘଟ । ଦ୍ୱିତୀୟ ଘଟଣା ଏବଂ ସବୁଠାରୁ ପ୍ରମୁଖ ଘଟଣା ହେଲା ଓଡ଼ିଶା ବିଧାନସଭା ନିର୍ବାଚନ ଏକବର୍ଷ ଘୁଞ୍ଚିବା । ସମ୍ଭବତଃ ଏହା ଆଉ କେବେ ହୋଇନାହିଁ । ୧୯୬୧ ମସିହା ଜୁନ୍ ମାସରେ ଓଡ଼ିଶା ବିଧାନସଭା ପାଇଁ ମଧ୍ୟବର୍ତ୍ତୀକାଳୀନ ନିର୍ବାଚନ ଅନୁଷ୍ଠିତ ହୋଇଥିଲା । ସେ ଅନୁସାରେ ୧୯୬୬ ଜୁନ୍ ମାସ ମଧ୍ୟରେ ଓଡ଼ିଶା ବିଧାନସଭା ପାଇଁ ନିର୍ବାଚନ ହେବା କଥା । ମାତ୍ର ଦେଶରେ ଏକ ସମୟରେ ଚତୁର୍ଥ ଲୋକସଭା ସହ ଓଡ଼ିଶା ସମେତ ଅନ୍ୟ ସମସ୍ତ ରାଜ୍ୟ ବିଧାନ ସଭାର ନିର୍ବାଚନ ଏକ ସମୟରେ କରିବା ପାଇଁ ସ୍ଥିର କରାଯାଇ ଏକ ବିଲ୍ ଲୋକସଭାରେ ଗୃହୀତ ହେବାରେ ଓଡ଼ିଶାରେ ବିଧାନସଭା ନିର୍ବାଚନ ଆଉ ଆଠମାସ ଘୁଞ୍ଚିଗଲା । ଓଡ଼ିଶାରେ ଚତୁର୍ଥ ବିଧାନସଭା ନିର୍ବାଚନ ୧୯୬୭ ଫେବୃଆରୀ ୨୧ ତାରିଖରେ ଅନୁଷ୍ଠିତ ହେଲା । ଏହି ନିର୍ବାଚନରେ କଂଗ୍ରେସ ପରାସ୍ତ ହେଲା । କଂଗ୍ରେସ ବିରୁଦ୍ଧରେ ତିନିଜଣ ପ୍ରମୁଖ ନେତା ଜୋର୍‌ଦାର୍ ଆନ୍ଦୋଳନ ଚଳାଇଲେ । ଏହି ନେତାମାନେ ହେଲେ ଡଃ ହରେକୃଷ୍ଣ ମହତାବ, ରାଜେନ୍ଦ୍ର ନାରାୟଣ ସିଂହଦେଓ ଓ ନବକୃଷ୍ଣ ଚୌଧୁରୀ । ମୁଁ ଉଭୟ ଦଳ ପକ୍ଷରୁ ହେଉଥିବା ଅନେକ ନିର୍ବାଚନ ସଭାର ରିପୋର୍ଟିଂ କରିଛି । ସେତେବେଳେ ବିରୋଧୀ ଦଳର ସ୍ଲୋଗାନ୍ ହେଲା ବିଜୁ ବୀରେନ୍ କେଉଁଠି ? ମଦ ବୋତଲ ଯେଉଁଠି । ଲୋକଙ୍କୁ ଏହି ସ୍ଲୋଗାନ୍ ବେଶ୍ ଆମୋଦିତ କରିଥିଲା । ବିଜୁବାବୁଙ୍କ ସଭାରେ ଅନେକ ଲୋକ ଜମା ହେଉଥିଲେ ମଧ୍ୟ ସଭା ଆରମ୍ଭ ପରେ ପରେ ବିରୋଧୀଙ୍କ ପକ୍ଷରୁ ଟେକା ମାଡ଼ ଆରମ୍ଭ ହୁଏ । ଫଳରେ ପୋଲିସ୍ ଓ ବିକ୍ଷୋଭକାରୀଙ୍କ ମଧ୍ୟରେ ବେଶ୍ ଚଢ଼ା ଉତ୍ତାର ହୁଏ । ଅନେକ ଲୋକ ଖଣ୍ଡିଆ ଖାବରା ହୁଅନ୍ତି । କଟକ ଚନ୍ଦନ ପୋଖରୀ ଠାରେ (ଚୌଧୁରୀ ବଜାର, କଟକ ମ୍ୟୁନିସିପାଲିଟି ପଛପଟ ପଡ଼ିଆ ଏବଂ ପୋଖରୀ) ବିଜୁ ବାବୁଙ୍କ ସଭାରେ ମୁଁ ରିପୋର୍ଟିଂ କରୁଥିବା ବେଳେ ଟେକାମାଡ଼ରେ ମୋ ହାତ ଖଣ୍ଡିଆ ହୋଇଥିଲା ।

୧୯୬୬ ମସିହାରେ ଓଡ଼ିଶାରେ ନିର୍ବାଚନ ନହୋଇ ୧୯୬୭କୁ ଘୁଞ୍ଚିଗଲା । ଏହି ଘୁଞ୍ଚିଯିବା କଂଗ୍ରେସ ଦଳ ପାଇଁ ମହଙ୍ଗା ପଡ଼ିଲା । କାରଣ ବିରୋଧୀ ପକ୍ଷ ବିଶେଷ କରି କଂଗ୍ରେସ ଭିତରେ ଥିବା ମହତାବଙ୍କ ଗୋଷ୍ଠି ବିଜୁ ପଟ୍ଟନାୟକଙ୍କୁ

ବିରୋଧ କରି ଜନ କଂଗ୍ରେସ ନାମରେ ଏକ ନୂଆ ଦଳ ତିଆରି କଲେ । କଂଗ୍ରେସରୁ ଏଗାର ଜଣ ପ୍ରଥମେ ବାହାରି ଆସି ଏଥିରେ ଯୋଗ ଦେଲେ । ଏହାର ସଭାପତି ହେଲେ ପବିତ୍ର ମୋହନ ପ୍ରଧାନ ଏବଂ ସମ୍ପାଦକ ହେଲେ ଉପେନ୍ଦ୍ର ମହାନ୍ତି । ଅନ୍ୟ ପକ୍ଷରେ ବିଜୁବାବୁଙ୍କ ସଭାକୁ ଏହି ଦଳ ପକ୍ଷରୁ ଭଣ୍ଡୁର କରିବା ପାଇଁ ଉଦ୍ୟମ ହେଲା । କଂଗ୍ରେସରୁ ବାହାରି ଆସିଥିବା ଏଗାର ଜଣଙ୍କ ନାମ ଆମେ ପୂର୍ବ ଅଧ୍ୟାୟରେ ଦେଇଥିଲୁ ।

ସେତେବେଳକୁ ମୁଖ୍ୟମନ୍ତ୍ରୀ ସଦାଶିବ ତ୍ରିପାଠୀ ବିଜୁବାବୁଙ୍କ ବିରୋଧୀ ହୋଇ ଗଲେଣି । କାରଣ ବିଜୁ ପଟ୍ଟନାୟକ ତାଙ୍କୁ ତଡ଼ି ନିଜେ ପୁଣି ମୁଖ୍ୟମନ୍ତ୍ରୀ ହେବା ପାଇଁ ଉଦ୍ୟମ କରୁଥା'ନ୍ତି । ସଦାଶିବବାବୁ ଏଇମିତି ଅତି ସରଳିଆ ଲୋକ । ସଚ୍ଚୋଟ ଲୋକ । ଏ.ଜି. ଛକ ପାଖ ସରକାରୀ ଘରେ ସେ ରହୁଥା'ନ୍ତି । ତାଙ୍କୁ ମୁଖ୍ୟମନ୍ତ୍ରୀରୁ ହଟାଇବା ପାଇଁ ଉଦ୍ୟମ ଡଃ ମହତାବଙ୍କୁ ବିଜୁବାବୁଙ୍କ ବିରୁଦ୍ଧରେ ଆଉ ଏକ ଅସ୍ତ୍ର ଯୋଗାଇଲା । ଏହାର ଫଳ ସ୍ୱରୂପ ସଦାଶିବବାବୁ ମହତାବଙ୍କ ଆଡ଼କୁ ଢଳିଲେ । ଫଳରେ ପ୍ରଶାସନ ଉପରେ ମହତାବ ପରୋକ୍ଷରେ କିଛି ଅଙ୍କୁଶ ଲଗାଇବାକୁ ଆରମ୍ଭ କଲେ । ସଦାଶିବ ବାବୁଙ୍କର ପ୍ରାଇଭେଟ ସେକ୍ରେଟାରୀ ଥା'ନ୍ତି ବି. ରାମଚନ୍ଦ୍ରନ ନାମରେ ଜଣେ ତାମିଲ ଲୋକ । ସେତେବେଳେ ମୁଖ୍ୟମନ୍ତ୍ରୀଙ୍କ ପ୍ରାଇଭେଟ ସେକ୍ରେଟାରୀ ସେଇ ଏକା ଲୋକ ରହୁଥିଲେ । ସେମାନଙ୍କୁ କୁହାଯାଉଥିଲା ସ୍ୱର୍ଗର ସଚି । କାରଣ ମୁଖ୍ୟମନ୍ତ୍ରୀ ବଦଳିଲେ ମଧ୍ୟ ସେମାନେ ବଦଳୁ ନଥିଲେ । ରାମଚନ୍ଦ୍ରନ ମହତାବବାବୁ, ନବବାବୁ ମୁଖ୍ୟମନ୍ତ୍ରୀ ଥିବା ବେଳେ ସେମାନଙ୍କର ପ୍ରାଇଭେଟ ସେକ୍ରେଟାରୀ ଥିଲେ । ପରେ ବିଜୁବାବୁ, ବୀରେନ୍ ମିତ୍ରଙ୍କର ମଧ୍ୟ ପ୍ରାଇଭେଟ ସେକ୍ରେଟାରୀ ଥିଲେ । ଏତେ ପରସ୍ପର ବିରୋଧୀ ବ୍ୟକ୍ତିଙ୍କର ପ୍ରାଇଭେଟ ସେକ୍ରେଟାରୀ ଥିଲେ ମଧ୍ୟ ତାଙ୍କ ମୁହଁରୁ କାହାରି ସମ୍ପର୍କରେ ପଦେ କଥା ଜାଣିବା ଅସମ୍ଭବ ଥିଲା ।

## -ରାଜଧାନୀ କଳା ସଂସଦ-

ମୁଁ ଦିନେ ରାଜଧାନୀ କଳା ସଂସଦ ପାଇଁ ସରକାରୀ ଗ୍ରାଣ୍ଟ ପାଇବାକୁ ଅନୁରୋଧ କରିବାଲାଗି ମୁଖ୍ୟମନ୍ତ୍ରୀଙ୍କ ସରକାରୀ ଘରକୁ ଯାଇଥିଲି । ସେତେବେଳେ ରାଜଧାନୀରେ ତିନୋଟି ନୃତ୍ୟ ସଂଗୀତ ଅନୁଷ୍ଠାନ ଥିଲା । ଛ' ନମ୍ବର ୟୁନିଟ୍‌ରେ ରାଜଧାନୀ କଳାକେନ୍ଦ୍ର, ଦୁଇନମ୍ବର ୟୁନିଟ୍‌ରେ ଲଳିତ କଳାପୀଠ ଏବଂ ତିନିନମ୍ବର ୟୁନିଟ୍‌ରେ ରାଜଧାନୀ କଳାସଂସଦ ଥିଲା । କଳାକେନ୍ଦ୍ର ଓ କଳାପୀଠ ସରକାରଙ୍କ ଠାରୁ ଲକ୍ଷାଧିକ ଟଙ୍କା ଗ୍ରାଣ୍ଟ ନେଇ ନିଜ ନିଜର ବଡ଼ ବଡ଼ କୋଠା ତିଆରି କରିଥିବା ବେଳେ କଳା ସଂସଦ ତିନିନମ୍ବର ୟୁନିଟ୍‌ରେ ଏକ ଟାଇପ୍-ଟୁ ଘରେ ଚାଲିଥିଲା । ଏହାର ନିଜସ୍ୱ ଜାଗା ଥିଲେ ମଧ୍ୟ ଅର୍ଥାଭାବ ଯୋଗୁ ନିଜସ୍ୱ ଭବନ ତିଆରି ହୋଇ ନଥିଲା । ମୁଁ ଭୁବନେଶ୍ୱର ଯିବାପରେ ଦିନେ ଏହି ଅନୁଷ୍ଠାନ ସହ ସଂପୃକ୍ତ କେତେଜଣ ବ୍ୟକ୍ତି ମୋତେ ଦେଖା କଲେ । ରମେଶ ଧଳ ଏହାର ସାଧାରଣ ସମ୍ପାଦକ ଥିଲେ । ଏହାର ସଦସ୍ୟମାନେ ମୁଖ୍ୟତଃ ସଚିବାଳୟର କିରାଣୀ ଥିଲେ । ଅନ୍ୟ ପକ୍ଷରେ କଳାକେନ୍ଦ୍ରର ସଭାପତି ଜଗନ୍ନାଥ ମହାପାତ୍ର ରାଜ୍ୟ ସରକାରଙ୍କର ଡେପୁଟି ସେକ୍ରେଟାରୀ ଥିଲେ । ସାଧାରଣ ସମ୍ପାଦକ ଥିଲେ ନରେନ୍ଦ୍ର ମଲ୍ଲ ନାମରେ ଜଣେ ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର । କଳାପୀଠର ସାଧାରଣ ସମ୍ପାଦକ ଥିଲେ ଗୋପାଳ ମିଶ୍ର ସାମ୍ବାଦିକ ଏବଂ ଅନ୍ୟ ଜଣେ କର୍ମକର୍ତ୍ତା ଥିଲେ ସାମ୍ବାଦିକ ରାମକୃଷ୍ଣ ବେହେରା । ତେଣୁ ସେମାନେ ଚାରି ଛକରେ ଅଧିକ ଟଙ୍କା ନେଇଥିଲେ । ରାଜଧାନୀ କଳା ସଂସଦର କେତେଜଣ କର୍ମକର୍ତ୍ତା ଆସି ମୋତେ ଦେଖା କରି ସେମାନଙ୍କ ଅନୁଷ୍ଠାନକୁ ସାହାଯ୍ୟ କରିବା ପାଇଁ ଅନୁରୋଧ କଲେ । ସେମାନେ ମୋତେ ତାଙ୍କ ଅନୁଷ୍ଠାନର ଉପସଭାପତି ରୂପେ ନିର୍ବାଚିତ କଲେ । ଫଳରେ ସେମାନଙ୍କ ପାଇଁ ମୁଁ ଯାଇ କହିବାର ସୁଯୋଗ ସୃଷ୍ଟି ହେଲା । ସେତେବେଳେ ଏହି ଗ୍ରାଣ୍ଟ ରାଜସ୍ୱ ବିଭାଗ ପକ୍ଷରୁ ଦିଆଯାଉଥିଲା । ସତ୍ୟପ୍ରିୟ ମହାନ୍ତି ରାଜସ୍ୱ ମନ୍ତ୍ରୀ ଥିଲେ । ରାଜସ୍ୱ ବିଭାଗ ସଚିବ ଥିଲେ ଭବକୃଷ୍ଣ ମହାନ୍ତି । ସେମାନେ ମୋତେ କହିଲେ

ରମେଶ ବାବୁ ଯାଇ ଗ୍ରାଣ୍ଟ କଥା କହିଲେ ତାଙ୍କ କଥା କେହି ଶୁଣୁ ନାହାନ୍ତି । ସେ ଜୋର୍ ଦେଇ କହିପାରୁ ନାହାନ୍ତି । ଆପଣ ଚାହିଁଲେ ହେବ ।

ମୁଁ ସିଧାଯାଇ ସତ୍ୟପ୍ରିୟ ମହାନ୍ତିଙ୍କୁ ସବୁକଥା କହିଲି । ସତ୍ୟପ୍ରିୟ ବାବୁ ସେତେବେଳେ ରାଜସ୍ୱ ଓ ଓ୍ୟାର୍କ୍ସ ବିଭାଗ ଦାୟିତ୍ୱରେ ଥବଲେ । ରାଜସ୍ୱ ବିଭାଗ ଏହି ଗ୍ରାଣ୍ଟ ଦେଉଥିଲେ । କିପରି କଳାକେନ୍ଦ୍ର ଓ କଳାପୀଠ ଲକ୍ଷାଧିକ ଟଙ୍କା ନେଉଛନ୍ତି ଏବଂ କଳା ସଂସଦକୁ ଆଦୌ ମିଳି ନାହିଁ, ସେସବୁ କଥା ବିସ୍ତାରିତ ଭାବେ କହିଲି । ସତ୍ୟପ୍ରିୟ ବାବୁ ସବୁ ଶୁଣିବା ପରେ ତାଙ୍କ ପ୍ରାଇଭେଟ ସେକ୍ରେଟାରୀଙ୍କୁ ଏହା ସାଙ୍ଗେ ସାଙ୍ଗେ ବୁଝିବାକୁ କହିଲେ । ମୁଁ ସେଇଠି ତାଙ୍କ ଘରେ ବସିଥିଲି । ସେତେବେଳେ ସତ୍ୟପ୍ରିୟ ବାବୁ ମୁଖ୍ୟମନ୍ତ୍ରୀଙ୍କ ଘର ପଛପଟେ ରହୁଥିଲେ । ସେ ଘର ପରେ ଇଣ୍ଡିଆନ୍ ଏୟାରଲାଇନ୍ସକୁ ସରକାର ବିକ୍ରି କରିଦେଲେ । କିଛି ସମୟ ପରେ ସତ୍ୟପ୍ରିୟ ବାବୁଙ୍କ ପ୍ରାଇଭେଟ ସେକ୍ରେଟାରୀ ଆସି ଏକ ତାଲିକା ଦେଲେ । ସେଥିରେ କଳାପୀଠକୁ ୧ଲକ୍ଷ ୧୦ ହଜାର, କଳାକେନ୍ଦ୍ରକୁ ୧ଲକ୍ଷ ୫ ହଜାର ଟଙ୍କା ଦିଆଯାଇଥିବା ଦର୍ଶାଯାଇଥିଲା । ସତ୍ୟପ୍ରିୟ ବାବୁ ଆମ ଦରଖାସ୍ତରେ ପ୍ରଥମ କିସ୍ତିରେ ଆମକୁ ୨୫ ହଜାର ଟଙ୍କା ଦେବାପାଇଁ ସୁପାରିଶ କରି ଅନ୍ୟ ଦୁଇ ଅନୁଷ୍ଠାନକୁ କୌଣସି ଅର୍ଥ ନଦେବା ପାଇଁ ଲେଖିଦେଲେ । ମୋତେ କହିଲେ ଏ ଫାଇଲ୍ ମୁଖ୍ୟମନ୍ତ୍ରୀଙ୍କ ପାଖକୁ ଯିବ । ଆପଣ ଟିକେ ଯାଇ ମୁଖ୍ୟମନ୍ତ୍ରୀଙ୍କୁ ଦେଖା କରି ସବୁ କହି ଦିଅନ୍ତୁ । ମୁଁ ଦିନକ ପରେ ମୁଖ୍ୟମନ୍ତ୍ରୀଙ୍କ ପାଖକୁ ଗଲି । ସଦାଶିବ ବାବୁ ମୋତେ ସେତେବେଳକୁ ଭଲଭାବେ ଜାଣିଥିଲେ । କାରଣ ଆମ ସମ୍ପାଦକ ଗୌରଚନ୍ଦ୍ର ରାଉତଙ୍କ ସହ ତାଙ୍କର ବହୁଦିନର ବନ୍ଧୁତା ଥିଲା । ଗୌରବାବୁ ଥରେ ଭୁବନେଶ୍ୱର ଆସି ମୋତେ ତାଙ୍କ ନିକଟକୁ ନେଇ ପରିଚୟ କରାଇ ଦେଇଥିଲେ । ସେତେବେଳେ ସଦାଶିବ ବାବୁ ରାଜ୍ୟର ରାଜସ୍ୱ ମନ୍ତ୍ରୀ ଥିଲେ । ମୁଖ୍ୟମନ୍ତ୍ରୀ ହୋଇ ନଥିଲେ । ଗୌରବାବୁ କହିଲେ ସଦାଶିବବାବୁ ତୁମର ଯାହା ସମ୍ବାଦ ଦେବାକଥା ବରେନ୍ଦ୍ର ବାବୁଙ୍କୁ ଦେଇଦେଲେ ସେ ମୋତେ ପଠାଇ ଦେବେ । ତୁମେ ତାଙ୍କୁ ବିଶ୍ୱାସ କରିପାର । ସେଇ ଦିନଠାରୁ ମୁଁ ସଦାଶିବ ବାବୁଙ୍କ ପାଖକୁ ବିନା ବାଧାରେ ଯାଇ ଦେଖା କରୁଥିଲି । ସେଦିନ ମୁଁ ସଦାଶିବ ବାବୁଙ୍କ ଘରେ ପହଞ୍ଚି ତାଙ୍କ ପ୍ରାଇଭେଟ ସେକ୍ରେଟାରୀ ରାମଚନ୍ଦ୍ରନଙ୍କୁ ଦେଖା କଲି । ସେ କହିଲେ ଯା'ନ୍ତୁ । ମୁଖ୍ୟମନ୍ତ୍ରୀ ତାଙ୍କ ଅଫିସ୍ ରୁମ୍‌ରେ ବସିଛନ୍ତି । ମୁଁ ଯାଇ ପରଦା ଆଡ଼େଇ ସାର୍ ନମସ୍କାର ବୋଲି କହିଲି । ମୋତେ ଦେଖି ସଦାଶିବ ବାବୁ ହସି କହିଲେ ଆସ ଆସ । ମୁଁ ଯାଇ ତାଙ୍କ ସାମ୍ନାରେ ବସିଲି । ସେ କହିଲେ ଗୌର ତୁମ କଥା ଏଇନେ ପଚାରୁ ଥିଲେ । ଆଉ କ'ଣ ଖବର ? ମୁଁ ସଦାଶିବ ବାବୁଙ୍କ ପାଖକୁ ଯିବା ପୂର୍ବଦିନ ସେକ୍ରେଟେରିଏଟ୍‌ରେ ଦିନ ଚାରିଟା ସାଢ଼େ ଚାରିଟା ବେଳକୁ ବୀର କିଶୋର ନନ୍ଦ(ବୀର ବାବୁ ସେତେବେଳେ ବଡ଼ ଠିକାଦାର ଏବଂ ମହତାବଙ୍କ ପାଖ ଲୋକ)ଙ୍କ ସହ ଦେଖା ହେଲା । ସେ ମୋତେ ଦେଖି କହିଲେ ହଇଏ ବରେନ୍ଦ୍ର ବାବୁ ଆପଣ ତ ଭୁବନେଶ୍ୱରକୁ ଅଳ୍ପ ଦିନ ହେବ ଆସି ଗୋପାଳ, ରାମକୃଷ୍ଣ ହେରିକାଙ୍କ ଚୁଟିକାଟି ସାରିଲେଣି । ବହୁତ ଭିତିରି ଖବର ମାତୃଭୂମିରେ ଦେଉଛନ୍ତି । ମତେ ଟିକେ କହିଲେ ଏଇ ଯେଉଁ ରିଉମର ଚାଲିଛି ଯେ ସତ୍ୟପ୍ରିୟ ବାବୁଙ୍କ ପାଖରୁ ଓ୍ୟାର୍କ୍ସ ଡିପାର୍ଟମେଣ୍ଟ କାଢ଼ି ନିଆଯାଇ ବନମାଳିବାବୁଙ୍କୁ ଦିଆଯିବ ସେ କଥା କ'ଣ ଠିକ୍ ?

ମୁଁ ବୀରବାବୁଙ୍କ କଥାଶୁଣି ରୀତିମତ ଆଶ୍ଚର୍ଯ୍ୟ ହୋଇଗଲି । କାରଣ ପ୍ରକୃତରେ ମୁଁ ସେକଥା କିଛି ଜାଣିନଥିଲି । ତେବେ ଉପରେ କହିଲି ମୁଁ ସେକଥା ତ ଶୁଣିଛି କିନ୍ତୁ ପ୍ରକୃତରେ ତାହା ହେଉଛି କି ରିଉମର କହିପାରିବି ନାହିଁ । ତେବେ ଆପଣ ବନମାଳୀବାବୁ(ସମ୍ବଲପୁର ବିଧାୟକ ଓ ସହରାଞ୍ଚଳ ବିକାଶ ମନ୍ତ୍ରୀ)ଙ୍କ କଥା ଶୁଣିଛନ୍ତି । ମୁଁ କିନ୍ତୁ ରାମପ୍ରସାଦ ମିଶ୍ର (ଅର୍ଥମନ୍ତ୍ରୀ, ବଲାଙ୍ଗୀର ବିଧାୟକ)ଙ୍କ କଥା ଶୁଣିଛି । ସେ କହିଲେ ତା'ହେଲେ ଖବର ଠିକ୍ । ଆଚ୍ଛା ଧଳବାବୁ, କଟକ-ପୁରୀ ମନ୍ତ୍ରୀ କ'ଣ ଅପାରଗ ଯେ ମୁଖ୍ୟମନ୍ତ୍ରୀ ସମ୍ବଲପୁର ଆଉ ବଲାଙ୍ଗୀର ବାଲାଙ୍କୁ ଏଭଳି ଗୁରୁତ୍ୱପୂର୍ଣ୍ଣ ବିଭାଗ ଦେବେ । ମୁଁ ଆଉ କିଛି କହିଲି ନାହିଁ । ବୀର ବାବୁ ମତେ ପଚାରିଲେ ନୀଳମଣି ବାବୁ କ'ଣ କହୁଛନ୍ତି ? ମୁଁ କହିଲି ମୁଁ ନୀଳମଣି ବାବୁଙ୍କ

ପାଖକୁ ଯାଇନି । ତେବେ ଏକଥା କାହାଠୁ ଶୁଣିଲ ? ମୁଁ କହିଲି ଏଇମିତି ଆପଣ ଯେମିତି ଶୁଣିଛନ୍ତି ମୁଁ ସେଇମିତି ଶୁଣିଛି । ସେ ପୁଣି କହିଲେ ନାହିଁ, ଏ ମୋତେ ରାମକୃଷ୍ଣ କହିଲା, ତେଣୁ ସତ ହେବ ବୋଧେ । କାରଣ ତା'ର ମୁଖ୍ୟମନ୍ତ୍ରୀଙ୍କ ସହ ଭଲ ସମ୍ପର୍କ । ମୁଁ କହିଲି ତେବେ ଆପଣ ଯାହା ଶୁଣିଛନ୍ତି ଠିକ୍ ହୋଇ ପାରେ । ବୀରବାବୁ ହସିଲେ । କହିଲେ ଧଳବାବୁ ଆପଣ ନିଶ୍ଚୟ ଜାଣିଛନ୍ତି ମୋତେ କଥା ଲୁଚାଉଛନ୍ତି । ସେ ତାଙ୍କ ଗନ୍ତବ୍ୟପଥରେ ଚାଲିଗଲେ ।

ବୀରବାବୁଙ୍କ କଥା ଶୁଣି ମୁଁ ଆଶ୍ଚର୍ଯ୍ୟ ହେଲି । ସାଙ୍ଗେ ସାଙ୍ଗେ ଏ ବିଷୟ ଗୌରବାବୁଙ୍କୁ ମୁଖ୍ୟମନ୍ତ୍ରୀଙ୍କ ଠାରୁ ବୁଝିବାପାଇଁ କହିଲି । କାରଣ ଏ ଖବର ସତ ହୋଇପାରେ । ଗୌରବାବୁ ମତେ କହିଲେ ଆପଣ ସଦାଶିବଙ୍କ ପାଖକୁ ଯାଇ ପଚାରନ୍ତୁ । ମୁଁ ମଧ ପଚାରୁଛି । ମୁଁ ସଦାଶିବ ବାବୁଙ୍କୁ ପଚାରିଲି, ସାର୍ କ'ଣ ବିଭାଗ ଅଦଳ ବଦଳ ହେଉଛି ? ସେ କହିଲେ କାହାର ? ମୁଁ କହିଲି ନାଇଁ ସେକ୍ରେଟେରିଏଟ୍‌ରେ କାଲି ବୀରବାବୁଙ୍କୁ ରାମକୃଷ୍ଣ ବେହେରା ଓ୍ୱାର୍କ୍ସ ଡିପାର୍ଟମେଣ୍ଟ ଚେଞ୍ଜ୍ ହେବ ବୋଲି କହୁଥିଲେ ଏବଂ ବନବାଳୀ ବାବୁଙ୍କୁ ତା' ଦିଆଯିବ ବୋଲି କହୁଥିଲେ । ମୋ କଥା ଶୁଣି ସଦାଶିବ ବାବୁ ଟିକେ ଗୁମ୍‌ମାରି ବସିଲେ । ତା'ପରେ କହିଲେ ଯେ ବେହେରା ଏସବୁ ଯାଇ ବାହାରେ ଗପୁଛି କାହିଁକି ? ମୁଁ ପଚାରିଲି ତାହାଲେ ଏକଥା ସତ ? ସେ କହିଲେ ସତ ମିଛ କହିପାରିବି ନାହିଁ । ଆଉ ଦିନେ/ ଦି'ଦିନ ଅପେକ୍ଷା କର । ମୁଁ ମନେ ମନେ ଭାବିଲି ତେବେ କଥାଟା ସତ୍ୟ । ତା'ପରେ ମୁଁ କଳାସଂସଦ ଗ୍ରାଣ୍ଟ କଥା କହିଲି । ତା' ସାଙ୍ଗେ ସାଙ୍ଗେ କଳାକେନ୍ଦ୍ର ଓ କଳାପୀଠ ଯେତେ ଅର୍ଥ ନେଇଛନ୍ତି ସେ କଥା ମଧ କହିଲି । ସେ ରାମଚନ୍ଦ୍ରନ୍‌ଙ୍କୁ ଡାକ ପଚାରିଲେ ଏଭଳି ଫାଇଲ୍ କ'ଣ ଆସିଛି ? ଯଦି ଆସିଛି ଧଳଙ୍କ ଅନୁଷ୍ଠାନ କଥା ମୋତେ ମନେ ପକାଇ ଦେବ । ମୁଁ ଗୋଟିଏ ଦରଖାସ୍ତ ଲେଖି ନେଇଥିଲି । ତାକୁ ଦେଲି । ସେ ତା' ଉପରେ ପୁଟ୍ ଅପ୍ ଉଇଥ୍ ଦି ଫାଇଲ୍ ଲେଖି ରାମଚନ୍ଦ୍ରନ୍‌ଙ୍କୁ ଦେଇଦେଲେ । ମୁଁ ତା'ପରେ ପଚାରିଲି ସାର୍ ଡିପାର୍ଟମେଣ୍ଟ ରିସଫଲ୍ ଖବର ଦେଇ ପାରିବି ? ସେ ହସି ହସି କହିଲେ କ'ଣ ଦେବ ଗୌରଙ୍କୁ ପଚାରି ଦେବ । ତାକୁ କହିଛି, ଯାଅ ।

## -ମନ୍ତ୍ରୀ ଧର୍ମଘଟ-

ସଦାଶିବ ତ୍ରିପାଠୀଙ୍କ ମୁଖ୍ୟମନ୍ତ୍ରୀତ୍ୱ ସମୟରେ ଓଡ଼ିଶାରେ ଏକ ମନ୍ତ୍ରୀ ଧର୍ମଘଟ ହୋଇଥିଲା । ଉପମୁଖ୍ୟମନ୍ତ୍ରୀ ନୀଳମଣି ରାଉତରାୟଙ୍କ ଘରେ ମନ୍ତ୍ରୀମାନେ ଏକଯୁଟ୍ ହୋଇ ମୁଖ୍ୟମନ୍ତ୍ରୀଙ୍କୁ ସମୂହ ଇସ୍ତଫା ପ୍ରଦାନ କରିଥିଲେ । ଏହାର ମୂଳ କାରଣ ଥିଲା ବିଜୁବାବୁଙ୍କ ଇଚ୍ଛା ଅନୁସାରେ ସଦାଶିବ ବାବୁ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଲେ ନାହିଁ । ଅପରନ୍ତୁ କିପରି ବିଜୁବାବୁ ତାଙ୍କୁ ଇସ୍ତଫା ଦେବାପାଇଁ କହୁଛନ୍ତି ଓ ମନ୍ତ୍ରୀମାନେ ତାଙ୍କୁ ସହଯୋଗ କରୁ ନାହାନ୍ତି ଇତ୍ୟାଦି ଲେଖି ଏକ ପତ୍ର କଂଗ୍ରେସ ସଭାପତି କେ. କାମରାଜଙ୍କ ପାଖକୁ ପଠାଇଲେ । ୧୯୬୬ ସେପ୍ଟେମ୍ବର ୧ ତାରିଖରେ ସଦାଶିବ ବାବୁ ଏହି ପତ୍ରରେ କିପରି ବିଜୁବାବୁଙ୍କ କହିବା ଅନୁସାରେ ସେ(କାମରାଜ) ବିଜୁବାବୁଙ୍କୁ ପୁଣିଥରେ ମୁଖ୍ୟମନ୍ତ୍ରୀ ଦାୟିତ୍ୱ ଦେବାପାଇଁ ଆଗ୍ରହୀ ସେ ବିଷୟ ଲେଖି ଯେତେଶୀଘ୍ର ସମ୍ଭବ ତାଙ୍କୁ ମୁଖ୍ୟମନ୍ତ୍ରୀ ପଦରୁ ଅନ୍ତର କଲେ ସେ ଖୁସି ହେବେ ବୋଲି ଜଣାଇଲେ ।

ସଦାଶିବବାବୁଙ୍କର ଏହି ପତ୍ରର ନକଲ ମୁଁ ତାଙ୍କ ପାଖରୁ ପାଇଥିଲି ଏବଂ ଗୌରବାବୁ(ମାତୃଭୂମି ସମ୍ପାଦକ)ଙ୍କୁ ସବୁକଥା ଜଣାଇଲି । ଏହି ପତ୍ର ପ୍ରକାଶ ପାଇବା ପରେ ନୀଳମଣି ରାଉତରାୟଙ୍କ ନେତୃତ୍ୱରେ ରାଜ୍ୟର ବାରଜଣ ମନ୍ତ୍ରୀ ମିଳିତଭାବେ ଏକ ଇସ୍ତଫା ପତ୍ର ମୁଖ୍ୟମନ୍ତ୍ରୀଙ୍କ ନିକଟକୁ ପଠାଇଲେ । ଏଥିରେ ଲେଖାଥିଲା ଆମେ ଦୁଃଖର ସହ କହୁଛୁ ଯେ ଆମ ଉପରେ ଆପଣ ବିଶ୍ୱାସ ହରାଇଛନ୍ତି । ଆପଣ କଂଗ୍ରେସ ସଭାପତିଙ୍କୁ ଲେଖିଛନ୍ତି ଯେ ରାଜ୍ୟରେ ଏକ ନିର୍ମଳ ଶାସନ ଚଳାଇବା କ୍ଷେତ୍ରରେ ଆମେ ଯଥାର୍ଥ ଭାବେ ଆପଣଙ୍କୁ ସହଯୋଗ କରୁନାହୁଁ । ତେଣୁ ଆପଣ ଇସ୍ତଫା ଦେବାକୁ ଚାହିଁଛନ୍ତି । ଏହାଦ୍ୱାରା ଆମେ ମନେ କରୁଛୁ ଯେ ଆପଣ ଆମମାନଙ୍କୁ ନିଶ୍ଚିତ କରିବା ପାଇଁ

ଏ ପ୍ରକାର ଏକ ପତ୍ର ଲେଖିଛନ୍ତି । ସେ କ୍ଷେତ୍ରରେ ଆମେ ଆଉ ଆପଣଙ୍କ ସରକାରରେ ମନ୍ତ୍ରୀ ରୂପେ କାର୍ଯ୍ୟ କରିବା ପାଇଁ ଭଲ ମନେ କରୁନାହୁଁ । ଆଶାକରୁ ଆମ ଇସ୍ତଫା ଗ୍ରହଣ କରିବେ ।' ଏଥିରେ ଦସ୍ତଖତ କରିଥିଲେ ସର୍ବଶ୍ରୀ ନୀଳମଣି ରାଉତରାୟ, ରାମପ୍ରସାଦ ମିଶ୍ର, ଟି. ସାଙ୍ଗନା, ସତ୍ୟପ୍ରିୟ ମହାନ୍ତି, ବନମାଳୀ ବାବୁ, ଜଗନ୍ନାଥ ରାଓ, ପ୍ରହଲ୍ଲାଦ ମଲ୍ଲିକ, ଚିତ୍ତରଞ୍ଜନ ନାୟକ, ସନ୍ତୋଷ କୁମାର ସାହୁ, ଚନ୍ଦ୍ରମୋହନ ସିଂହ, ସରସ୍ୱତୀ ପ୍ରଧାନ ଓ ମଦନ ମୋହନ ପ୍ରଧାନ । ସେତେବେଳେ ଆମ ଖବରକାଗଜ ବାଲାଏ ତନ୍ତିଘର କଣ୍ଡା ଭଳି ଏପଟ ସେପଟ ହେଉଥାଉ । ଆଗରୁ ମୁଁ କହିଛି ଓଡ଼ିଶାରେ ସେତେବେଳେ ମୋଟ ଚାରୋଟି ଖବର କାଗଜ ଥିଲା । କଟକରେ ସମାଜ, ପ୍ରଜାତନ୍ତ୍ର, ମାତୃଭୂମି ଓ କଳିଙ୍ଗ ଥିଲା । ୧୯୬୬ ଏପ୍ରିଲ ପହିଲାରେ ବୀରେନ ମିତ୍ରଙ୍କ ଜନଶକ୍ତି କାଗଜ ପ୍ରକାଶ ପାଇଲା । ସେହି ସମୟରେ ଭୁବନେଶ୍ୱରରୁ ସ୍ୱରାଜ୍ୟ କାଗଜ ପ୍ରକାଶ ପାଇଲା । କଟକରୁ ଅମୃତ ବଜାର ପତ୍ରିକା ଖବର କାଗଜ କଳିଙ୍ଗ ପ୍ରେସ୍‌ରୁ ପ୍ରକାଶ ପାଇଲା । ଅବଶ୍ୟ ଅଳ୍ପଦିନ ପରେ ତାହା ବନ୍ଦ ହୋଇଗଲା ।

ମନ୍ତ୍ରୀମାନଙ୍କର ମୁଖ୍ୟମନ୍ତ୍ରୀଙ୍କ ବିରୁଦ୍ଧରେ ମେଳି ଓ ଇସ୍ତଫା ଖବର ସାଧାରଣରେ ଭାରି ଖରାପ ପ୍ରଭାବ ପକାଇଥିଲା । ଫଳରେ ବିଜୁ ପଟ୍ଟନାୟକଙ୍କ ସଭାରେ ବିରୋଧି ଦଳ ନିୟମିତ ଗଣ୍ଡଗୋଳ ଆରମ୍ଭ କରି ଦେଇଥିଲେ । ସେତେବେଳେ ମୁଁ ଅନେକ ସ୍ଥାନକୁ ନିର୍ବାଚନ ସଭା ରିପୋର୍ଟିଂ କରିବାକୁ ଯାଉଥିଲି । ମହତାବ ବାବୁ, ନବକୃଷ୍ଣ ଚୌଧୁରୀ ଗୋଟିଏ ପଟେ ବିଜୁ ପଟ୍ଟନାୟକ, ବୀରେନ୍ ମିତ୍ର, ନୀଳମଣି ରାଉତରାୟ ଅନ୍ୟ ପଟେ । ତେବେ ବିଜୁବାବୁ ବୀରେନ୍‌ମିତ୍ର ବିରୋଧୀ ଦଳର ମୁଖ୍ୟ ଟାର୍‌ଗେଟ୍ ଥିଲେ । ଅଧିକାଂଶ ସଭାରେ ଟେକାମାଡ଼ ଚାଲିଥିଲା । ମୁଁ ସାଲେପୁର, କଟକ, ଚୌଦ୍ୱାର, ଭଦ୍ରକ ଓ ବାଲେଶ୍ୱର ଆଦି ସ୍ଥାନକୁ ଯାଇ ସଭା ରିପୋର୍ଟିଂ କରିଥିଲି ।

## -ଇନ୍ଦିରା ଗାନ୍ଧୀଙ୍କ ନାକ ଫାଟିଲା-

ନିର୍ବାଚନ ପ୍ରଚାର ବେଳେ ଆଉ ଏକ ବଡ଼ ଅଘଟଣ ଘଟିଲା । ୧୯୬୭ ଫେବୃଆରୀ ୮ ତାରିଖରେ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀ ଭୁବନେଶ୍ୱର ପ୍ୟାରେଡ ପଡ଼ିଆ(ଅଧୁନା ଇନ୍ଦିରାଗାନ୍ଧୀ ପାର୍କ)ରେ ନିର୍ବାଚନୀ ସଭାରେ ଭାଷଣ ଦେଉଥିଲେ । ମଞ୍ଚରେ ବିଜୁ ପଟ୍ଟନାୟକ, ଭୁବନେଶ୍ୱର ଲୋକସଭା ପ୍ରାର୍ଥୀ ଚିନ୍ତାମଣି ପାଣିଗ୍ରାହୀ, ଭୁବନେଶ୍ୱର ବିଧାୟକ ପ୍ରାର୍ଥୀ ସତ୍ୟପ୍ରିୟ ମହାନ୍ତି ଉପସ୍ଥିତ ଥିଲେ । ହଠାତ୍ ସଭାରେ ବସିଥିବା ଲୋକଙ୍କ ପଛ ଭାଗରୁ ଟେକା ବୃଷ୍ଟି ହେଲା । ମୁଁ ମଞ୍ଚତଳେ ବସି ଭାଷଣ ଟିପୁଥିଲି । ହଠାତ୍ ଏକ ଟେକା ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କ ନାକରେ ମାଡ଼ ହେଲା । ଏହି ଅପ୍ରତ୍ୟାଶିତ ଘଟଣାରେ ହଠାତ ଆମେ ସମସ୍ତେ ସ୍ତମ୍ଭିଭୂତ ହୋଇଗଲୁ । ସେଦିନର ସେହି ମୁହୂର୍ତ୍ତର ଦୃଶ୍ୟ ଆଜି ବି ମୋ ମନରେ ସତେଜ ଅଛି । ଶ୍ରୀମତୀ ଗାନ୍ଧୀ ବସି ପଡ଼ିଲେ । ମାତ୍ର ମୁହୂର୍ତ୍ତକ ମଧ୍ୟରେ ଠିଆହୋଇ ସେଇ ରକ୍ତାକ୍ତ ଅବସ୍ଥାରେ କହିଲେ, 'ଏ ଟେକାମାଡ଼ ଯେଉଁମାନେ କରିଛନ୍ତି ସେମାନେ ଲଜ୍ଜା ପାଇବା ଉଚିତ୍ । ଏହା ଏ ଦେଶ ପାଇଁ ଏକ ଅପମାନର ବିଷୟ । ମୋ ପାଇଁ ଏହା ଲଜ୍ଜାକର ନୁହେଁ । ଟେକା ପକାଇଲେ ଭୋଟ ମିଳେ ନାହିଁ ।' ଶ୍ରୀମତୀ ଗାନ୍ଧୀ ତାଙ୍କ ନାକ ଚିପି ତଳକୁ ଓହ୍ଲାଇ ଆସିଲେ ତାଙ୍କ ଧଳା ଖଦଡ଼ ଶାଢ଼ୀର ସାମ୍ନା ଅଂଶରେ ରକ୍ତ ଭିଜି ଲାଲ୍ ହୋଇ ଯାଇଥିଲା । ହଠାତ୍ ମୋ ମନରେ ଷ୍ଟ୍ରାଇକ୍ କଲା ଏ ଘଟଣା କଟକକୁ ଡାକି ଆଜି କାଗଜରେ ଛାପିବା ପାଇଁ ଚେଷ୍ଟା କରିବି । ମୁଁ ପ୍ୟାରେଡ୍ ପଡ଼ିଆ ନିକଟରେ ଏକ ଟାଇପ୍- ଫୋର୍ ଘରେ ରହୁଥାଏ । ଏକା ନିଶ୍ୱାସରେ ଦୁଇ ମିନିଟ୍ ମଧ୍ୟରେ ଦୌଡ଼ି ଘରେ ପହଞ୍ଚି ବିଚିବାବୁଙ୍କୁ ଫୋନ୍ କଲି । ଭାଗ୍ୟକୁ ବିଚିବାବୁ ଅଫିସ୍‌ରେ ଥିଲେ । ତାଙ୍କୁ ସବୁକଥା କହି ଯେମିତି ହେଲେ ଏ ଖବର ଦେବାପାଇଁ କହିଲି । ବିଚିବାବୁ ସାଙ୍ଗେ ସାଙ୍ଗେ କମ୍ପୋଜିଟର ଡାକି କେବଳ ଚାରି ଲାଇନ୍‌ର

ବଡ଼ ବଡ଼ ଅକ୍ଷରରେ ଖବରଟି ଦେଇଦେଲେ । 'ଭୁବନେଶ୍ୱର ସଭାରେ ଟେକାମାଡ଼ରେ ଇନ୍ଦିରାଙ୍କ ନାକ ଫାଟିଲା । ପ୍ରବଳ ରକ୍ତସ୍ରାବ । ଚିକିତ୍ସା ପରେ ସ୍ୱତନ୍ତ୍ର ବିମାନରେ ଦିଲ୍ଲୀ ଫେରିଗଲେ ।

ସଭାମଞ୍ଚର ତଳକୁ ଆସି ଯେତେବେଳେ ଶ୍ରୀମତୀ ଗାନ୍ଧୀଙ୍କୁ ତାଙ୍କ ସୁରକ୍ଷା କର୍ମୀ ପାଣି ଗ୍ଲାସ୍‌ଟିଏ ବଢ଼ାଇ ଦେଲେ ସେ କହିଲେ ନା- ନା- ପାଣି ନୁହେଁ । ମତେ ବରଫ ଦିଅ । ମାତ୍ର ବରଫ ମିଳି ନଥିଲା । ସାଙ୍ଗେ ସାଙ୍ଗେ ଶ୍ରୀମତୀ ଗାନ୍ଧୀଙ୍କୁ କ୍ୟାପିଟାଲ୍ ହସ୍‌ପିଟାଲ୍‌କୁ ନିଆଗଲା । ଟେକାମାଡ଼ରେ ବିଜୁବାବୁ, ଚିନ୍ତାମଣିବାବୁ ମଧ୍ୟ ଆହତ ହୋଇଥିଲେ । ସାମ୍ନା ଧାଡ଼ିରେ ତଳେ ବସିଥିବା କେତେକ ପୋଲିସ୍ କର୍ମଚାରୀ ଓ ଦର୍ଶକ ମଧ୍ୟ ଟେକାମାଡ଼ରେ ଆହତ ହୋଇଥିଲେ ।

ପରଦିନ ମୁଁ ସଭା ଓ ଟେକାମାଡ଼ ସମ୍ପର୍କରେ ଏକ ବିସ୍ତୃତ ବିବରଣୀ ଦେଇଥିଲି । କିନ୍ତୁ ଟେକାମାଡ଼ ସନ୍ଧ୍ୟା (୮ ତାରିଖ) ମାତୃଭୂମିରେ ପ୍ରଧାନ ମନ୍ତ୍ରୀଙ୍କୁ ଟେକାମାଡ଼ ଖବର ବଡ଼ ବଡ଼ ଅକ୍ଷରରେ ପ୍ରକାଶ ପାଇ କାଗଜ ବଜାରକୁ ଗଲା । ସନ୍ଧ୍ୟାରେ କଟକ ସହରରେ ମାତୃଭୂମିର ପ୍ରବଳ ଚାହିଦା । କେବଳ ମାତୃଭୂମି ଛଡ଼ା ସେଦିନ ଅନ୍ୟ କୌଣସି ଓଡ଼ିଆ କାଗଜ ଏହାକୁ ରିପୋର୍ଟିଂ କରିପାରି ନଥିଲେ । ତା'ର କାରଣ ହେଲା ମୋ ଘର ଠାରୁ ଅନ୍ୟମାନଙ୍କ ଘର ଦୂରରେ । ତା'ଛଡ଼ା ସଭାରେ ଟେକାମାଡ଼ ପରେ ସମସ୍ତେ ଦୌଡ଼ାଦୌଡ଼ି କରିବାରେ ସାମ୍ବାଦିମାନେ ଘରକୁ ସାଙ୍ଗେ ସାଙ୍ଗେ ଫେରିବା ସମ୍ଭବ ନଥିଲା । ପରଦିନ ବିଚିବାବୁ ମୋତେ ଥଟ୍ଟାରେ କହିଲେ ଲୋକେ କଥାବାର୍ତ୍ତା ହେଉଛନ୍ତି ମାତୃଭୂମି ବାଲାଏ ଟେକାମାଡ଼ ହେବା କଥା ଆଗରୁ ଜାଣି ଖବର ଦେଇଛନ୍ତି ।

ପ୍ରଧାନମନ୍ତ୍ରୀଙ୍କ ଟେକାମାଡ଼ ଘଟଣାରେ ଚାରିଆଡୁ ଗଣ୍ଡଗୋଳକାରୀଙ୍କୁ ନିନ୍ଦାକରି ଖବର ଆସିଲା । ସମଗ୍ର ଦେଶରେ ଏହି ଘଟଣାରେ ପ୍ରବଳ ଆଲୋଡ଼ନ ସୃଷ୍ଟି ହୋଇଥିଲା । ତେବେ ଏହି ଘଟଣା କଂଗ୍ରେସ ପ୍ରତି ଲୋକଙ୍କ ମନରେ ସମବେଦନା ସୃଷ୍ଟି କରିବ ବୋଲି ଯାହା ଆଶା କରାଯାଉଥିଲା ତାହା ହେଲା ନାହିଁ ।

୧୯୬୭ମସିହା ନିର୍ବାଚନରେ କଂଗ୍ରେସ ଦଳର ପତନ ଘଟିଲା । ବିଜୁବାବୁ, ବୀରେନ୍ ମିତ୍ର, ନୀଳମଣି ରାଉତରାୟ ସମସ୍ତେ ନିର୍ବାଚନରେ ପରାସ୍ତ ହେଲେ । ଅନ୍ୟ ପକ୍ଷରେ ଡଃ ମହତାବ ଓ ତାଙ୍କ ଜନକଂଗ୍ରେସର ନେତାମାନେ ବିଜୟୀ ହେଲେ । କିନ୍ତୁ କୌଣସି ଦଳ ସଂଖ୍ୟା ଗରିଷ୍ଠତା ପାଇଲେ ନାହିଁ । କଂଗ୍ରେସ ପରାଜିତ ହୋଇଥିଲେ ମଧ୍ୟ ଶତକଡ଼ା ୩୦.୬୨ ଭାଗ ଲୋକଙ୍କ ସମର୍ଥନ ଲାଭ କରି ୩୧ଟି ସ୍ଥାନ ହାସଲ କରିଥିଲା । ମାତ୍ର ସ୍ୱତନ୍ତ୍ର ଦଳ ୪୯ଟି ଆସନ ଲାଭ କରିଥିଲେ ମଧ୍ୟ ମାତ୍ର ୨୨.୫୮ ଭାଗ ଭୋଟ ପାଇଥିଲା ।

ନିର୍ବାଚନ ପରେ ସ୍ୱତନ୍ତ୍ର ଓ ଜନକଂଗ୍ରେସ ଦଳ ମିଳିତ ଭାବେ ସରକାର ଗଠନ କରିଥିଲେ । ଜନକଂଗ୍ରେସ ୨୬ଟି ଆସନ ଲାଭ କରିଥିଲା । ଏହି ନିର୍ବାଚନରେ ସର୍ବାଧିକ ଆସନ (୪୯ଟି) ପାଇଥିବା ସ୍ୱତନ୍ତ୍ର ଦଳର ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଏବଂ ଜନକଂଗ୍ରେସ ଦଳର ପବିତ୍ର ମୋହନ ପ୍ରଧାନ ଉପ ମୁଖ୍ୟମନ୍ତ୍ରୀ ରୂପେ ଦାୟିତ୍ୱ ଗ୍ରହଣ କରିଥିଲେ ।

ଏହି ମନ୍ତ୍ରିମଣ୍ଡଳ ଗଠନ ହେବା ପରେ ପ୍ରଥମଥର ପାଇଁ ରାଜ୍ୟରେ କମିଶନ ରାଜନୀତି ଆରମ୍ଭ ହେଲା । ବିଜୁ ପଟ୍ଟନାୟକ, ବୀରେନ୍ ମିତ୍ର, ସଦାଶିବ ତ୍ରିପାଠୀ, ନୀଳମଣି ରାଉତରାୟ ପ୍ରମୁଖ ୧୮ଜଣଙ୍କ ବିରୁଦ୍ଧରେ ଦୁର୍ନୀତି ଅଭିଯୋଗରେ ଖାନ୍ନା କମିଶନ ଗଠିତ ହେଲା ।

ଦିଲ୍ଲୀ ହାଇକୋର୍ଟର ବିଚାରପତି ହଂସରାଜ ଖାନ୍ନାଙ୍କ ଅଧ୍ୟକ୍ଷତାରେ ଜଣିକିଆ କମିଶନ ଏହି ତଦନ୍ତ ଭାର ଗ୍ରହଣ କରିଥିଲେ । ମୋତେ ଏହି ତଦନ୍ତ କମିଶନର ପ୍ରତ୍ୟେକ ଦିନ ବିବରଣୀ ଦେବା ପାଇଁ ପ୍ରେସ୍‌ରୁ କୁହା ଯାଇଥିଲା । ତତ୍‌କାଳୀନ ଡି.ପି.ଆଇ. ଅଫିସ୍(ବର୍ତ୍ତମାନ ରାଜ୍ୟ ହରେକୃଷ୍ଣ ମହତାବ ପାଠାଗାର) ମଧ୍ୟସ୍ଥଳରେ ଥିବା ଏକ ବଡ଼ ହଲ୍‌ରେ ଏହି କମିଶନ ଶୁଣାଣି ଚାଲିଥିଲା । ଏହି ଶୁଣାଣି ଦେଖିବା ପାଇଁ ପ୍ରତିଦିନ ପ୍ରବଳ ଭିଡ଼ ହେଉଥିଲା । ମୁଁ ଅନେକ ସମୟରେ ଏହି ଶୁଣାଣି ବୁଝି ନପାରିଲେ ସେଠାରେ ଉପସ୍ଥିତ ଓକିଲମାନଙ୍କ ଠାରୁ ବୁଝୁଥିଲି ।

ଶ୍ରୀମତୀ ଇନ୍ଦିରା ଗାନ୍ଧୀ ୧୯୬୭ ମସିହାରେ ଓଡ଼ିଶାକୁ ନିର୍ବାଚନ ପ୍ରଚାର କରିବାପାଇଁ ଆସି କେବଳ ତାଙ୍କ ନାକ ଫଟାଇଲେ ତା' ନୁହେଁ । ସେ ଯେଉଁ କେତୋଟି ନିର୍ବାଚନ ମଣ୍ଡଳୀକୁ ପ୍ରଚାର ପାଇଁ ଯାଇଥିଲେ ସେ ସମସ୍ତ ନିର୍ବାଚନ ମଣ୍ଡଳୀରେ କଂଗ୍ରେସ ପ୍ରାର୍ଥୀ ପରାଜିତ ହୋଇଥିଲେ । ଶ୍ରୀମତୀ ଗାନ୍ଧୀ ପ୍ରଥମେ ବାଙ୍କୀ, ପରେ ପରେ ବୋଲଗଡ଼(ବେଗୁନିଆ- ବୋଲଗଡ଼), ଖୋର୍ଦ୍ଧା ଏବଂ ଶେଷରେ ଭୁବନେଶ୍ୱର ବିଧାନସଭା ନିର୍ବାଚନ ମଣ୍ଡଳୀରେ ସାଧାରଣ ସଭାରେ ଭାଷଣ ଦେଇଥିଲେ । ବାଙ୍କୀରେ କଂଗ୍ରେସ ପ୍ରାର୍ଥୀ ଥିଲେ ଛାୟାରାଣୀ ବାନାର୍ଜୀ । ତାଙ୍କୁ ସ୍ୱାଧୀନ ପ୍ରାର୍ଥୀ ଡାକ୍ତର ଯୋଗେଶ ଚନ୍ଦ୍ର ରାଉତ ପରାସ୍ତ କରିଥିଲେ । ବୋଲଗଡ଼ ବେଗୁନିଆରେ କଂଗ୍ରେସ ପ୍ରାର୍ଥୀ ସତ୍ୟାନନ୍ଦ ଚମ୍ପତିରାୟ ତାଙ୍କୁ ପରାସ୍ତ କରିଥିଲେ କମ୍ୟୁନିଷ୍ଟ ପ୍ରାର୍ଥୀ ଗଙ୍ଗାଧର ପାଇକରାୟ । ଖୋର୍ଦ୍ଧାରେ କଂଗ୍ରେସ ପ୍ରାର୍ଥୀ ଥିଲେ ଡାକ୍ତର ବେଣୁଧର ବଳିଆରସିଂହ । ତାଙ୍କୁ ପରାସ୍ତ କରିଥିଲେ ଜନ କଂଗ୍ରେସ ପ୍ରାର୍ଥୀ ବନମାଳୀ ପଟ୍ଟନାୟକ । ଭୁବନେଶ୍ୱରରେ କଂଗ୍ରେସ ପ୍ରାର୍ଥୀ ଥିଲେ ସତ୍ୟପ୍ରିୟ ମହାନ୍ତି । ତାଙ୍କୁ ପରାସ୍ତ କରିଥିଲେ ଜନକଂଗ୍ରେସ ପ୍ରାର୍ଥୀ ଡଃ ହରେକୃଷ୍ଣ ମହତାବ ।

ମୁଁ ସେତେବେଳେ ଜଣେ ସାମ୍ବାଦିକ ରୂପେ ଶ୍ରୀମତୀ ଗାନ୍ଧୀଙ୍କର ଚାରୋଟିଯାକ ସଭାରେ ଉପସ୍ଥିତ ଥିଲି । କଂଗ୍ରେସ ଦଳ ଆମକୁ ଗୋଟିଏ ଗୋଟିଏ ଆମ୍ବାସାଡାର କାର୍ ଦେଇଥିଲେ । ସେଥିରେ ମୁଁ ରମେଶ ଧଳ, ବୈରାଗୀ ମହାନ୍ତି ଏହିସବୁ ସଭାକୁ ଯାଇଥିଲୁ । ଏ ପ୍ରକାର ସଭାରେ ଯୋଗଦେଇ ବିବରଣୀ ଦେବାର ଏକ ଆନନ୍ଦ ଥିଲା ।

ବାଙ୍କୀରେ କଂଗ୍ରେସ ପ୍ରାର୍ଥୀ ମନୋନୟନ ପାଇଁ ବାଙ୍କୀର ମୋ ସମେତ କିଛି ଯୁବକ ଡାକ୍ତର ଯୋଗେଶ ଚନ୍ଦ୍ର ରାଉତଙ୍କୁ ପ୍ରାର୍ଥୀ କରିବାକୁ କଂଗ୍ରେସ ସଭାପତି ବିଜୟ କୁମାର ପାଣିଙ୍କୁ ଭୁବନେଶ୍ୱରରେ ଭେଟି କହିଥିଲୁ । ଯୋଗେଶ ବାବୁ ୧୯୫୭ରୁ ୧୯୬୧ ପର୍ଯ୍ୟନ୍ତ ବାଙ୍କୀ କଂଗ୍ରେସ ଦଳ ବିଧାୟକ ଥିଲେ । ୧୯୬୧ରେ ଗୋକୁଳାନନ୍ଦ ପ୍ରହରାଜ ପ୍ରଜା ସୋସାଲିଷ୍ଟ ଦଳ ଟିକେଟରେ ଲଢ଼ି ବିଧାୟକ ହେଲେ । ମାତ୍ର ଏକ ଜମି-ଜମା ମୋକଦ୍ଦମାରେ ସେ ତାଙ୍କର ଜଣେ କର୍ମୀଙ୍କ ଜାମିନଦାର ଭାବେ ସର୍ବସ୍ୱାନ୍ତ ହୋଇଯିବାର ଆଶଙ୍କାରେ କଂଗ୍ରେସରେ ଯୋଗ ଦେଲେ । ଫଳରେ ବାଙ୍କୀରେ ତାଙ୍କର ବାଦ୍‌ନାମ ହୋଇଥିଲା । ସେଥିପାଇଁ ଯୋଗେଶ ବାବୁଙ୍କୁ ଟିକେଟ ଦେବାପାଇଁ ମୁଁ ବିଜୟ ପାଣିଙ୍କୁ ଅନୁରୋଧ କରିଥିଲି । ସେତିକିବେଳେ ବିଜୁବାବୁ ସେଠାରେ ପହଞ୍ଚି ଯିବାରେ ବିଜୟ ପାଣି ବିଜୁବାବୁଙ୍କୁ ସେ କଥା କହିଲେ । ବିଜୁବାବୁ ମତେ ଚାହିଁଲେ । ତା'ପରେ କହିଲେ ଯୋଗେଶ ମହତାବଙ୍କ ଲୋକ ତାକୁ ଟିକେଟ୍ ମିଳିବ ନାହିଁ । ବାଙ୍କୀରେ ମୋ ଯୋତାକୁ ଠିଆ କରାଇ ଦେଲେ ସିଏ ମଧ୍ୟ ଜିତି କରି ପଳେଇ ଆସିବ । ଏଥର ଛାୟା ବାନାର୍ଜୀ ବାଙ୍କୀରେ କଂଗ୍ରେସ ପ୍ରାର୍ଥୀ ହେବ । ମୁଁ ଏକଥା ଶୁଣି ସେଇଠି ଟିକେ କେଜାଣି କାହିଁକି ଉତ୍ତେଜିତ ହୋଇ ପଡ଼ିଲି । ବିଜୁବାବୁଙ୍କୁ କହିଲି ସାର୍ ଆପଣ ଯେଉଁ ଛାୟା ବାନାର୍ଜୀ କଥା କହୁଛନ୍ତି ଜିତିବା ତ ଦୂର କଥା, ତା' ଅମାନତ ଆମେ ଉଡ଼ାଇ ଦେବୁ । ଦେଖନ୍ତୁ ତା'ହେଲେ କ'ଣ ହେବ । ମୁଁ ଆଉ ମୋର ବନ୍ଧୁମାନେ ସେଠାରୁ ପଳାଇ ଆସିଲୁ । ମୋ ଜୀବନରେ ମୁଁ ବିଜୁବାବୁଙ୍କୁ ସେଇ ପ୍ରଥମ ଚାଲେଞ୍ଜ୍ କରି କଥା କହିଥିଲି । ବାଙ୍କୀ ଫେରିଆସି ଆମେ ଏକଥା ପ୍ରଚାର କରିଦେଲୁ । ସମସ୍ତେ କୁହାକୁହି ହେଲେ ଛାୟା ବାନାର୍ଜୀ କିଏ ? କାରଣ ବାଙ୍କୀରେ ଛାୟା ବାନାର୍ଜୀଙ୍କୁ କେହି ଜାଣିନଥିଲେ । ବୁଝୁବୁଝୁ ଜଣା ପଡ଼ିଲା ଛାୟା ବାନାର୍ଜୀଙ୍କ ଶଶୁର ବ୍ରିଟିଶ ଶାସନର 'ସନ୍‌ସେଟ୍ ଲ' ଅନୁସାରେ ବାଙ୍କୀ ଭେଡ଼ା-ରାମଚନ୍ଦ୍ରପୁର ମୌଜାର ପଚାଶ/ଷାଠିଏ ଏକର ଜମିର ମାଲିକାନା

ପାଇ ବାଙ୍କୀରେ ଆସ୍ଥାନ ଜମାଇଥିଲେ । ପରେ ସେ କଟକ ଯାଇ ସେଠାରେ ବସବାସ କରିଥିଲେ । ତାଙ୍କ ପୁଅ ଜୟଦେବ ବାନାର୍ଜୀଙ୍କୁ ଛାୟା ବାନାର୍ଜୀ ବିବାହ କରିଥିଲେ ।

ନିର୍ବାଚନ ପ୍ରଚାରରେ ମୁଁ ବାଙ୍କୀରେ ଯୋଗେଶ ବାବୁଙ୍କ ପକ୍ଷ ନେଇଥିଲି । ବାଙ୍କୀ ନିର୍ବାଚନ ମଣ୍ଡଳୀର ସବୁ ପଞ୍ଚାୟତରୁ ମୁଖିଆ ଲୋକଙ୍କୁ ଏକ ସଭାକୁ ନିମନ୍ତ୍ରଣ କରାଯାଇଥିଲା । ତର୍ଚ୍ଚିକା ହାଟର ଏକ ସ୍ଥାନରେ ଏହି ସଭା ହେଲା । ମୁଁ ସଭାର ଉଦ୍ଦେଶ୍ୟ ବର୍ଣ୍ଣନା କରିବା ବିଜୁ ପଟ୍ଟନାୟକ ଯାହା କହିଥିଲେ ତାହା କହିଲି । ମୋ ସାଙ୍ଗରେ ବାଙ୍କୀର ଯେଉଁ ବନ୍ଧୁମାନେ ଯାଇଥିଲେ ସେମାନେ ମୋ କଥାକୁ ସମର୍ଥନ କଲେ । ସେଇ ସଭାସ୍ଥଳରେ ଯୋଗେଶ ବାବୁଙ୍କ ନିର୍ବାଚନ ପାଇଁ ପାଣ୍ଠି ସଂଗ୍ରହ ହେଲା । ମୋର ଯାହା ମନେ ହେଉଛି ସେଦିନ ସାଢ଼େ ଚାରିହଜାର ଟଙ୍କା ମିଳିଥିଲା । ତେବେ ଆରମ୍ଭ ଶୁଭ ବୋଲି ସମସ୍ତେ ମତ ଦେଇଥିଲେ । ନିର୍ବାଚନ ପ୍ରଚାର ଖୁବ୍ ଧୁମ୍‌ଧାମ୍‌ରେ ହେଲା । ଛାୟା ବାନାର୍ଜୀ ବହୁତ ଟଙ୍କା ଖର୍ଚ୍ଚ କରିଥିଲେ । ନିର୍ବାଚନ ପ୍ରଚାର ବେଳେ ହଠାତ୍ ଦିନେ ଛାୟା ବାନାର୍ଜୀ ଆଉ ତାଙ୍କ ସ୍ୱାମୀ ଜୟଦେବ ବାନାର୍ଜୀ ମୋ ଭୁବନେଶ୍ୱର କ୍ୱାଟର୍ସରେ ପହଞ୍ଚିଲେ । ମୁଁ ଦୁହିଁଙ୍କୁ ଦେଖି ଆଶ୍ଚର୍ଯ୍ୟ ହୋଇଗଲି । ମୋର ସେମାନଙ୍କ ସାଙ୍ଗରେ ଆଗରୁ ଜଣାଶୁଣା ନଥିଲା । ତେବେ ମୋ ଘରେ ପହଞ୍ଚି ଦୁହେଁ ମୋ ହାତଧରି ସେମାନଙ୍କୁ ସମର୍ଥନ କରିବା ପାଇଁ କହିଲେ । ମୁଁ କହିଲି ନିର୍ବାଚନ ଆଉ ଛ'ସାତ ଦିନ ଅଛି । ଏବେ ମୁଁ ଆପଣଙ୍କୁ ସମର୍ଥନ କରିବି ବୋଲି କହିଲେ ଲୋକେ ମୋତେ ମାଡ଼ଦେବା ଛଡ଼ା ଆଉ କ'ଣ କରିବେ ? ସେମାନଙ୍କୁ ସିଧା କଥା କହି ବିଦା କଲି । ନିର୍ବାଚନରେ ଯୋଗେଶ ବାବୁ ଚଉଦ ହଜାର ଭୋଟରେ ବିଜୟୀ ହେଲେ । ନିର୍ବାଚନ ପରେ ଥରେ ବିଧାନସଭାରେ ବିଜୟ ପାଣିଙ୍କ ସହ ମୋର ଦେଖା ହେଲା । ମୁଁ କିଛି କହିବା ପୂର୍ବରୁ ସେ ମତେ କହିଲେ ବରେନ୍ଦ୍ର, ବିଜୁବାବୁ ବାହାପିଆ କଥାର ଫଳ ପାଇଲା । ତମକୁ ମୁଁ ଅଭିନନ୍ଦନ ଜଣାଉଛି । ତୁମେ ଲାଗିପଡ଼ି ଯୋଗେଶଙ୍କୁ ଜିତାଇ ଦେଲ । ମୁଁ କହିଲି ନା- ସାର୍ ବିଜୁବାବୁ ପରିସ୍ଥିତିକୁ ବିଚାର ନକରି କାନକୁହାଙ୍କ କଥାରେ ନିଜ ବିପର୍ଯ୍ୟୟ ନିଜେ ଆମନ୍ତ୍ରଣ କଲେ । ଜୁନ୍‌ମାସରେ ନିର୍ବାଚନ ପରେ ଜୁଲାଇ ମାସ ପ୍ରଥମ ସପ୍ତାହରେ କଂଗ୍ରେସ ଦଳ ବୈଠକରେ ବିଜୟ ପାଣି ସଭାପତି ପଦରୁ ତଡ଼ା ଖାଇଲେ । ତାଙ୍କ ସ୍ଥାନରେ ନୀଳମଣି ରାଉତରାୟ ସଭାପତି ହେଲେ ।

## -ସ୍ୱତନ୍ତ୍ର - ଜନକଂଗ୍ରେସ ସରକାର-

୧୯୬୭ ନିର୍ବାଚନରେ ରାଜ୍ୟରେ ସ୍ୱତନ୍ତ୍ର ଦଳର ନେତା ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ମୁଖ୍ୟମନ୍ତ୍ରୀତ୍ୱରେ ସ୍ୱତନ୍ତ୍ର-ଜନକଂଗ୍ରେସ ମିଳିତ ମନ୍ତ୍ରିମଣ୍ଡଳ ଗଠନ ହେଲା । ଏହି ସରକାରରେ ଜନ କଂଗ୍ରେସର ପବିତ୍ର ମୋହନ ପ୍ରଧାନ ଉପମୁଖ୍ୟମନ୍ତ୍ରୀ ଦାୟିତ୍ୱ ନେଲେ । ଯେଉଁମାନେ ମନ୍ତ୍ରୀରୂପେ ନିଯୁକ୍ତି ପାଇଲେ ସେମାନେ ହେଲେ ସର୍ବଶ୍ରୀ ସୁରେନ୍ଦ୍ର ନାଥ ପଟ୍ଟନାୟକ, ବନମାଳୀ ପଟ୍ଟନାୟକ, ନିତ୍ୟାନନ୍ଦ ମହାପାତ୍ର, ଶାନ୍ତନୁ କୁମାର ଦାସ(ସମସ୍ତେ ଜନକଂଗ୍ରେସ) ରାଜବଲ୍ଲଭ ମିଶ୍ର, ହରିହର ପଟେଲ, ହର ପ୍ରସାଦ ମହାପାତ୍ର, ଏନ୍. ରାମଶେଷାୟ, ମୁରାରୀ ପ୍ରସାଦ ମିଶ୍ର ଓ ଦୟାନିଧି ନାୟକ(ସମସ୍ତେ ସ୍ୱତନ୍ତ୍ର)- କ୍ୟାବିନେଟ ପାହ୍ୟା ମନ୍ତ୍ରୀ ଏବଂ ଉପମନ୍ତ୍ରୀ ହେଲେ ସର୍ବଶ୍ରୀ ହିଂମାଂଶୁ ଶେଖର ପାଢ଼ୀ, ମନମୋହନ ଟୁଡୁ, କାର୍ତ୍ତିକ ମାଝି(ଜନ କଂଗ୍ରେସ) ଅନନ୍ତ ନାରାୟଣ ସିଂହଦେଓ, ବୃନ୍ଦାବନ ତ୍ରିପାଠୀ, ଗୋବିନ୍ଦ ମୁଣ୍ଡା ଓ ଗଙ୍ଗାଧର ପ୍ରଧାନ(ସ୍ୱତନ୍ତ୍ର) । ବିଧାନସଭାର ବାଚସ୍ପତି ହେଲେ ନନ୍ଦ କିଶୋର ମିଶ୍ର(ସ୍ୱତନ୍ତ୍ର) ଏବଂ ଉପବାଚସ୍ପତି ହରିହର ବାହିନୀପତି(ଜନକଂଗ୍ରେସ) ।

ମୁଁ ପୂର୍ବରୁ କହିଛି ସେତେବେଳେ ଓଡ଼ିଶାରେ ଖବର କାଗଜ ଥିଲା ମାତ୍ର ଛ'ଟି । ସେଥିମଧ୍ୟରୁ ସମାଜ(ସମ୍ପାଦକ ରାଧାନାଥ ରଥ) ଏବଂ ମାତୃଭୂମି(ସମ୍ପାଦକ ବିଚିତ୍ରାନନ୍ଦ କର) ନିରପେକ୍ଷତା ଅବଲୟନ କରୁଥା'ନ୍ତି । ଅବଶ୍ୟ ସମାଜ

କେତେକାଂଶରେ ମହତାବ ବିରୋଧୀ ହୋଇଥିବାରୁ ସରକାରଙ୍କୁ ବିରୋଧ କରୁଥିଲା । ମାତୃଭୂମି କିନ୍ତୁ ସର୍ବତୋଭାବେ ନିରପେକ୍ଷ ଥିଲା ଏବଂ ବିଚିବାବୁ ମତେ ସେହିଭଳି ସମ୍ବାଦ ଦେବାପାଇଁ କହିଥିଲେ । ଅନ୍ୟପକ୍ଷରେ କଳିଙ୍ଗ(ସମ୍ପାଦକ ସୁରେନ୍ଦ୍ର ମହାନ୍ତି), ଜନଶକ୍ତି(ସମ୍ପାଦକ ଶ୍ରୀହର୍ଷ ମିଶ୍ର), କଂଗ୍ରେସକୁ ସମର୍ଥନ କରିବାବେଳେ ସରକାରଙ୍କୁ ବିରୋଧ କରୁଥିଲେ । ପ୍ରଜାତନ୍ତ୍ରରୁ ସେତେବେଳକୁ ଜାନକୀ ବାବୁଙ୍କୁ ମହତାବ ବାହାର କରି ଦେଇଥିଲେ । ତାଙ୍କ ସ୍ଥାନରେ କିଏ ସମ୍ପାଦକ ହେଲେ ଏବେ ମନେ ପଡୁନାହିଁ । ସ୍ୱରାଜ୍ୟ ସ୍ୱତନ୍ତ୍ର ଦଳର ଖବରକାଗଜ ଏବଂ ଏହାର ସମ୍ପାଦକ ଥିଲେ- ରାମ ପ୍ରସାଦ ସିଂହ । ସ୍ୱାଭାବିକ ଭାବେ ଏହି ଦୁଇ କାଗଜ ସରକାରଙ୍କର ସମର୍ଥକ ଥିଲେ ।

ସେତେବେଳେ ଉପମୁଖ୍ୟମନ୍ତ୍ରୀ ପବିତ୍ର ମୋହନ ପ୍ରଧାନ ବିଭିନ୍ନ ସଭା ସମିତିରେ ରାଜ୍ୟରେ ନିର୍ମଳ ଶାସନ ଚାଲୁଛି ଏବଂ ଦୁର୍ନୀତିଗ୍ରସ୍ତ କର୍ମଚାରୀ ଓ ଅଫିସରମାନଙ୍କୁ ଖୋଲାଖୋଲି ପଦାକୁ ଆଣିବା ପାଇଁ ଜନସାଧାରଣଙ୍କୁ ଆହ୍ୱାନ ଦେଇଥିଲେ । ପବିତ୍ରବାବୁ ମୋତେ ଶ୍ରଦ୍ଧା କରୁଥିଲେ । କେବଳ ପବିତ୍ର ବାବୁ ନୁହଁନ୍ତି ସୁରେନ୍ଦ୍ର ବାବୁ, ବନମାଳୀ ବାବୁ, ଶାନ୍ତନୁ ବାବୁ ସମସ୍ତେ ମୋତେ ଶ୍ରଦ୍ଧା କରୁଥିଲେ । ପବିତ୍ର ବାବୁ ମୋତେ ତାଙ୍କ ସଭାକୁ ଚାରି/ପାଞ୍ଚଥର ନେଇଥିଲେ । ମାତ୍ର ଘଣ୍ଟା ଘଣ୍ଟା ଧରି ସେ ଯେପରି ଭାଷଣ ଦେଉଥିଲେ ତାହା ଲୋକଙ୍କ ମନରେ ବିରକ୍ତି ଭାବ ସୃଷ୍ଟି କରୁଥିଲା । ମୋର ମନେ ଅଛି କେଉଁଝର ଟାଉନ୍‌ରେ ଏକ ସଭାରେ ପବିତ୍ର ବାବୁ ଭାଷଣ ଶେଷ କଲା ବେଳକୁ ମାତ୍ର ଚାରି/ପାଞ୍ଚଜଣ ଶ୍ରୋତା ଥିଲେ ।

ପବିତ୍ର ବାବୁଙ୍କ ଏଇ ନିର୍ମଳ ସ୍ଲୋଗାନ୍ ସେତେବେଳେ ଏକ ହସର ଖୋରାକ ଯୋଗାଉଥିଲା । ମାତ୍ର ସେଥିପ୍ରତି ତାଙ୍କର ଭ୍ରୁକ୍ଷେପ ନଥିଲା । ପବିତ୍ରବାବୁ ଅତ୍ୟନ୍ତ ସରଳ ଓ ଖୋଲାମନର ଲୋକ ଥିଲେ ।

ପବିତ୍ର ବାବୁ ଉପମୁଖ୍ୟମନ୍ତ୍ରୀ ରୂପେ ପଲିଟିକାଲ୍ ସର୍ଭିସେସ୍ ବିଭାଗ (ପରେ ଏହା ପରିବର୍ତ୍ତିତ ହୋଇ ଜେନେରାଲ୍ ଆଡ୍‌ମିନିଷ୍ଟ୍ରେସନ୍ ବିଭାଗ ହେଲା) ଦାୟିତ୍ୱରେ ଥିଲେ । ତାଙ୍କ ବେଳେ ମୋତେ ଭୁବନେଶ୍ୱରରେ ଖଣ୍ଡେ ସରକାରୀ ଜମି ମିଳିଲା । ପ୍ରଥମେ ମୋତେ ଏହି ଜମି ସହିଦନଗରରେ ମିଳିଥିଲା । ମାତ୍ର ମୁଁ ସେଠାରେ ଜମିନେବାକୁ ମନା କଲି । କାରଣ ୧୯୬୯ ମସିହାରେ ସହିଦ ନଗରରେ ଅନେକ ଛୋଟ ଛୋଟ ଜଙ୍ଗଲ ଥିଲା । ପରେ ମୋତେ ଷ୍ଟେସନ ସ୍କୋୟାରରେ ୧୯୭୦ ମସିହାରେ ଜମି ବା ଘରଡିହ ମିଳିଲା । ୧୯୮୦ ମସିହାରେ ମୁଁ ସେଇ ଜମିରେ ଖଣ୍ଡେ ଛୋଟ ଘର କଲି । ଋଣ ନେଇ ଘର କରି ଭଡ଼ା ଦେଲି । ଋଣ ଶୁଝୁ ଶୁଝୁ ପନ୍ଦର/ଷୋଳବର୍ଷ ଲାଗିଗଲା । ମୋର ସେତେବେଳେ ବିଷୟ ବୁଦ୍ଧି ଜ୍ଞାନ ନଥିଲା । ନଚେତ୍ ସେତେବେଳେ କ୍ୟାପିଟାଲ୍‌ରେ ଖଣ୍ଡେ ସପ୍-କମ୍- ରେସିଡେଣ୍ଟ ଜମି ନେଇଥିଲେ କେବଳ ଭଡ଼ାରୁ ଜୀବନ ସାରା ଆରାମରେ ଜଣେ ଚଳୁଥାନ୍ତା । ପରେ ଅନେକ ବନ୍ଧୁ ମତେ ସେକଥା କହିଥିଲେ । ମାତ୍ର ଈଶ୍ୱରଙ୍କର ଯେତେବେଳେ ଯାହା ଇଚ୍ଛା ତାହାହିଁ ହେବ । ମୁଁ ଷ୍ଟେସନ୍ ସ୍କୋୟାର୍‌ରେ ୫୦ ଫୁଟ୍‌ରେ ୭୫ ଫୁଟ୍ ମାପର ପ୍ରାୟ ଅଢ଼େଇଗୁଣ୍ଠ ଘରଡିହ ପଟ୍ଟା ପାଇଥିଲି । ୧୯୭୦ ମସିହାରେ ସେଥିପାଇଁ ମୋତେ ଦେବାକୁ ପଡ଼ିଥିଲା ମାତ୍ର ନଅଶହ ଟଙ୍କା ।

## -ପିଲାଏ ହସିଲେ ପୃଥିବୀ ହସେ-

ଭୁବନେଶ୍ୱରକୁ ମୁଁ ଆସିବା ପରେ ୧୯୬୭ ମସିହାରେ ମୋର ପିଲାଙ୍କ ପାଇଁ ଲେଖିଥିବା ଗପ-କବିତାକୁ ନେଇ ଫ୍ରେଣ୍ଡସ୍ ପବ୍ଲିଶର୍ସ ଏକ ବହି ପ୍ରକାଶ କଲେ । ଏ ବହିର ନାଁ ଥିଲା 'ପିଲାଏ ହସିଲେ ପୃଥିବୀ ହସେ ।' ବହିଟିର ପ୍ରଚ୍ଛଦ ଆଙ୍କିଥିଲେ ବିଖ୍ୟାତ ଶିଳ୍ପୀ ଅସୀତ ମୁଖାର୍ଜୀ । ରଙ୍ଗ-ରଙ୍ଗିଲା ପ୍ରଚ୍ଛଦପଟ ବେଶ୍ ଆକର୍ଷଣୀୟ ଥିଲା । ପଇଁତିରିଶ ପୃଷ୍ଠା ବହିଟିର ଦାମ୍ ଥିଲା ୬ଟଙ୍କା । ସେ ବହିଟି ସେଇ ବର୍ଷ ଓଡ଼ିଶା ସରକାରଙ୍କ ପ୍ରୌଢ଼ଶିକ୍ଷା ପ୍ରତିଯୋଗିତାରେ ଦାଖଲ ହୋଇ ପ୍ରଥମ ପୁରସ୍କାର ଲାଭ କରିଥିଲା । ସେତେବେଳେ ଡି.ପି.ଆଇ. ଅଫିସରେ ଏହି ପ୍ରୌଢ଼ଶିକ୍ଷା ବିଭାଗ ଥାଏ । ଏହା

ଦାୟିତ୍ୱରେ ଥିଲେ ବିଖ୍ୟାତ ନାଟ୍ୟକାର ଭଞ୍ଜକିଶୋର ପଟ୍ଟନାୟକ ଓ ଔପନ୍ୟାସିକ ବିଭୂତି ପଟ୍ଟନାୟକ । ପ୍ରଥମ ପୁରସ୍କାର ବାବଦରେ ମୁଁ ତିନିଶହ ଟଙ୍କା ଲାଭ କରିଥିଲି । ଜୀବନରେ ଲେଖାପାଇଁ ତାହାହିଁ ମୋର ପ୍ରଥମ ପୁରସ୍କାର । ମୋର ଏହି ପ୍ରାପ୍ତି ସମ୍ପର୍କରେ ସବୁ ଖବର କାଗଜରେ ପ୍ରକାଶ ପାଇଥିଲା । ଅନେକ ବନ୍ଧୁ ଟେଲିଫୋନ୍ ଏବଂ ସାକ୍ଷାତରେ ଅଭିନନ୍ଦନ ଜଣାଇଲେ ।

'ପିଲାଏ ହସିଲେ ପୃଥିବୀ ହସେ' ବହିଟି କେବଳ ମୋତେ ସୁଖ୍ୟାତି ଆଣି ଦେଇଥିଲା ତା' ନୁହେଁ । ଏହା ପୁରସ୍କାର ପାଇବା ଫଳରେ ରାଜ୍ୟର ପାଞ୍ଚହଜାର ପ୍ରୌଢ଼ ଶିକ୍ଷା କେନ୍ଦ୍ର ପାଇଁ ପାଞ୍ଚହଜାର ବହି ସରକାର କିଣିଥିଲେ । ୧୯୬୮ ମସିହା ସେପ୍ଟେମ୍ବର ବେଳକୁ ଫ୍ରେଣ୍ଡସ୍ ପବ୍ଲିଶର୍ସର ସତ୍ତ୍ୱାଧିକାରୀ ସହଦେବ ପ୍ରଧାନ ମୋତେ ଭୁବନେଶ୍ୱରକୁ ଫୋନ୍ କରି କଟକ ଆସିବା ପାଇଁ କହିଲେ । ତା' ସାଙ୍ଗେ ସାଙ୍ଗେ ଭଲ ମିଠା ପ୍ୟାକେଟ୍ ଧରି ଆସିବାକୁ ହସି ହସି କହିଲେ । ମୁଁ ପଚାରିଲି କ'ଣ ପାଇଁ ମିଠା ନେବି ? ସେ କହିଲେ ଆପଣ ଆସନ୍ତୁ ଜାଣି ପାରିବେ । ମୁଁ ସେଦିନ ୪ଟା ବେଳକୁ ନାୟାର ବସ୍‌ରେ କଟକ ବାହାରିଲି । ରିକ୍ସାରେ ବସି ବିନୋଦ ଗଳି ଚାଲିଲି । ବାଟରେ ନିମ୍‌ଚଉଡ଼ି ଛକରୁ ବଙ୍ଗାଳୀ ଦାଦା ମିଠା ଦୋକାନରୁ ଭଲ ରସଗୋଲା ଗୋଲାପ ଜାମୁ ଦଶଟଙ୍କାର କିଣିଲି । ସେତେବେଳେ ଫ୍ରେଣ୍ଡସ୍ ପବ୍ଲିଶର୍ସ ମାରୁଓ୍ୱାଡ଼ି ହାଇସ୍କୁଲ ସାମ୍‌ନାରେ ଥିଲା । ଦୋକାନରେ ପହଞ୍ଚି ମିଠା ହାଣ୍ଡି ସହଦେବ ବାବୁଙ୍କୁ ବଢ଼ାଇ ଦେଲି । ପାଖରେ ତାଙ୍କର ବନ୍ଧୁ ଓ ଦୋକାନର ପାର୍ଟନର ଜଗନ୍ନାଥ ରଥ ଏବଂ ଆଉ ଦୁଇ ତିନିଜଣ ଲେଖକ ଥିଲେ । ମିଠା ଖିଆ ସରିଲା । ସମସ୍ତେ ହାତ ଧୋଇଲୁ । ଚା' ମଗାହେଲା । ମୁଁ କିଛି କହିବା ପୂର୍ବରୁ ସହଦେବ ପ୍ରଧାନ ମୋ ହାତକୁ ଗୋଟିଏ ଚେକ୍ ବଢ଼ାଇ ଦେଲେ । ଆମେ ଚେକ୍‌ଟି ଦେଖି ରୀତିମତ ଆଶ୍ଚର୍ଯ୍ୟ ହୋଇଗଲୁ । ଆମେ ଏଭଳି ଏକ ବିସ୍ମୟ କେବେ ଆଶା କରିନଥିଲୁ । କାରଣ ଏହା ଆମ କଳ୍ପନା ବାହାରେ ଥିଲା । ଭୁବନେଶ୍ୱରକୁ ବଦଳି ହୋଇ ଆସିବା ପରେ ଆମର ମାସିକ ଦରମା ଥିଲା ସାଢ଼େ ତିନିଶହ ଟଙ୍କା । ଚେକ୍‌ଟି ହାତରେ ଧରି ଆମେ ସହଦେବ ବାବୁଙ୍କ ମୁହଁକୁ ଚାହିଁଲୁ । ସେ କହିଲେ 'ପିଲାଏ ହସିଲେ ପୃଥିବୀ ହସେ'ର ରୟାଲଟି ଚେକ୍ । ପାଞ୍ଚହଜାର ବହି ସରକାର କିଣିଲେ । ମୋଟ୍ ତିରିଶ ହଜାର ଟଙ୍କା । ଆପଣଙ୍କ ରୟାଲଟି ଦଶ ପରସେଣ୍ଟ ହିସାବରେ ତିନିହଜାର ଟଙ୍କା । ମୋର କହିବାରେ ଦ୍ୱିଧା ନାହିଁ । ଜୀବନରେ ଏତେ ଟଙ୍କା ସେତେବେଳ ପର୍ଯ୍ୟନ୍ତ ମୁଁ କେବେ ଧରିନଥିଲି ।

ଚେକ୍‌ଟି ଆଣିଲି । ମନ ଭିତରଟା ଆନନ୍ଦରେ କୁରୁଳି ଉଠୁଥିଲା । କିନ୍ତୁ ସମସ୍ୟା ହେଲା ଏହାକୁ ଭଙ୍ଗାଇବି କିପରି ? ସେ କଥା ସହଦେବ ବାବୁଙ୍କୁ କହିଲି । ସେ କହିଲେ କାଲି ସକାଳେ ଆସିଲେ ସାଙ୍ଗ ହୋଇ ବ୍ୟାଙ୍କକୁ ଯିବା । ମୁଁ ରାତିରେ ମୋର ରାଜାବଗିଚା ଲେବର କଲୋନି ଘରକୁ ଗଲି । ସକାଳୁ ଉଠି ଗାଧୋଇ ପାଧୋଇ ସାଇକେଲ୍ ଧରି ଚଉଧୁରୀ ବଜାର ଚୁନଭାଟି ଗଳି ସାଉଥ୍ ଇଣ୍ଡିଆନ୍ ହୋଟେଲ୍‌କୁ ଗଲି । ଇଡ଼ଲି, ଦୋଷା ଖାଇ ଫ୍ରେଣ୍ଡସ୍ ପବ୍ଲିଶର୍ସକୁ ବାହାରିଲି । ସକାଳ ସାଢ଼େ ନ'ଟା ହେବ । ମୁଁ ପହଞ୍ଚିଲା ବେଳକୁ ସହଦେବ ବାବୁ ପହଞ୍ଚିଥିଲେ । ମୋତେ ଦେଖି କହିଲେ ମୁଁ ଦୋକାନଟା ଖୋଲିଦିଏ । ଧୂପ ଦେଇ ବ୍ୟାଙ୍କ୍ ଯିବା । ସେଇଆ ହେଲା । ମୁଁ ଦୋକାନରେ ବସିଲି । ସହଦେବ ବାବୁ ଚା' ମଗାଇଲେ । କହିଲେ ଭଲ ବରା କରୁଛି । ଖାଇବେ । ମୁଁ ମନା କଲି । ବସି କଥା ହେଉ ହେଉ ସେ କହିଲେ ଏତେଗୁଡ଼ାଏ ଟଙ୍କା ଧରି ଭୁବନେଶ୍ୱର କାହିଁକି ଯିବେ ? ବରଂ ଭୁବନେଶ୍ୱରରେ ଆପଣଙ୍କ ଘର ପାଖରେ ଯେଉଁ ବ୍ୟାଙ୍କ୍ ଅଛି ସେଥିରେ ଗୋଟିଏ ଆକାଉଣ୍ଟ ଖୋଲି ଦିଅନ୍ତୁ । ଯେତେବେଳେ ଦରକାର ଟଙ୍କା ଉଠାଇବେ । ମୋର ସେତେବେଳେ କୌଣସି ବ୍ୟାଙ୍କ୍ ଆକାଉଣ୍ଟ ନଥାଏ । ସହଦେବ ବାବୁଙ୍କ କଥାଟା ମନକୁ ପାଇଲା । ତା'ପରେ ସେଇଠୁ ସାଇକେଲ୍ ଧରି ଚାନ୍ଦିନୀଚୌକ ଆସି ବସ୍‌ରେ ସାଇକେଲ୍ ଲଦି ଭୁବନେଶ୍ୱର ଆସିଲି । ମାର୍କେଟ ବିଲ୍‌ଡିଂରେ ୟୁନାଇଟେଡ ବ୍ୟାଙ୍କ ଅଫ୍ ଇଣ୍ଡିଆର ଭୁବନେଶ୍ୱର ଶାଖା ଥିଲା । ମୋ କ୍ୱାର୍ଟର ମାର୍କେଟ ବିଲ୍‌ଡିଂ ପଛପଟେ ଥିଲା । ଚେକ୍ ଧରି ସେଠାକୁ ଗଲି । ବ୍ୟାଙ୍କ୍ ଭିତରେ ପଶି ଦେଖିଲି ମୋର ବେଶ୍ କେତେଜଣ ପରିଚିତ ବନ୍ଧୁ ଅଛନ୍ତି । ମୋତେ ସେମାନେ ଦେଖି ହସିହସି ଡାକିଲେ । ଜଣେ ବନ୍ଧୁଙ୍କ ପାଖରେ

ବସି ଗୋଟିଏ ଆକାଉଣ୍ଟ ଖୋଲିବା କଥା କହି ତିନି ହଜାର ଟଙ୍କାର ଚେକ୍ ଦେଖାଇଲି । ସେ ଗୋଟିଏ ଫର୍ମ ଆଣି ତାକୁ ପୂରଣ କରି ମୋତେ ଦଶଟଙ୍କା ମାଗିଲେ । ମୋତେ କହିଲେ ଦଶଟଙ୍କା ଦେଇ ଆକାଉଣ୍ଟ ଖୋଲି ସାରିବା ପରେ ଚେକ୍ ଜମା କରିବେ । ସେଇଆ ହେଲା । ଅଧଘଣ୍ଟାଏ ମଧ୍ୟରେ ମୋ ଚେକ୍ ଜମା ହୋଇଗଲା । ଜୀବନରେ ତାହାହିଁ ମୋର ପ୍ରଥମ ବ୍ୟାଙ୍କ୍ ଜମା । ମୋତେ ଗୋଟିଏ ପାଶ୍‌ବହି ଓ ଚେକ୍ ବହି ମିଳିଲା । କ୍ୱାର୍ଟରକୁ ଫେରିଲି । ମନଟା ଖୁବ୍ ଖୁସି ହୋଇଗଲା ।

ଭୁବନେଶ୍ୱରରେ ମୋର ଧୀରେ ଧୀରେ କଣ୍ଟାକ୍ଟ ବଢ଼ିବାରେ ଲାଗିଲା । ଭୁବନେଶ୍ୱର ରାଜଧାନୀ କଳା ସଂସଦ ପାଇଁ ପ୍ରଥମେ ପଚିଶ ହଜାର ଟଙ୍କା ଯୋଗାଡ଼ କରି ତା'କୁ ତତ୍‌କାଳୀନ ଚିଫ୍ ଇଞ୍ଜିନିୟର ମମତାଜ ଅଲ୍ଲୀଙ୍କୁ ଦେଲି । ମୋ ସାଙ୍ଗରେ କଳା ସଂସଦର ଦୁଇଜଣ କର୍ମକର୍ତ୍ତା ବନ୍ଧୁ ଯାଇଥିଲେ । ଅଲ୍ଲୀ ସାହେବଙ୍କୁ ସକାଳୁ ସକାଳୁ ତାଙ୍କ ବାସଭବନରେ ଦେଖାକଲୁ । ଆମକୁ ଦେଖି ଖୁସି ହୋଇ ବୈଠକଖାନାରେ ବସାଇ ଆସିବା କାରଣ ପଚାରିଲେ । ଆମେ ସବୁକଥା କହି କଳାସଂସଦ ଜାଗାରେ (ତିନିନମ୍ବର ୟୁନିଟ୍‌ରେ ଜାଗା ଥାଏ) ଏକ ହଲ୍ କରିଦେବା ପାଇଁ କହିଲୁ । ସେ ସବୁ ଶୁଣି ସାଙ୍ଗେ ସାଙ୍ଗେ ଲଳିତ ମୋହନ ପାତ୍ର ନାମରେ ଜଣେ ଆସିଷ୍ଟାଣ୍ଟ ଇଞ୍ଜିନିୟରଙ୍କୁ ଡାକି ପଠାଇଲେ । ତାଙ୍କ ହାତରେ ୨୫ ହଜାର ଟଙ୍କା ଦେଇ କହିଲେ ତୁମେ ଏ ଟଙ୍କାରେ ଆଉ ପାଞ୍ଚହଜାର ମିଶାଇ କଳା ସଂସଦ ପାଇଁ ଏକ ହଲ୍ କରିଦେବ । ଛ'ମାସ ମଧ୍ୟରେ ଯେପରି କାମ ଶେଷ ହୁଏ । ଆମେ ସମସ୍ତେ ଫେରିଲୁ । କଳାସଂସଦ କାମ ଆରମ୍ଭ ହେଲା । ସେତେବେଳେ କଳା ସଂସଦରେ ଓଡ଼ିଶୀ ନୃତ୍ୟ, ଓଡ଼ିଶୀ ସଂଗୀତ ଓ ହିନ୍ଦୁସ୍ଥାନୀ ଶାସ୍ତ୍ରୀୟ ସଂଗୀତ ଶିକ୍ଷା ଦିଆ ଯାଉଥାଏ । ଓଡ଼ିଶୀ ସଂଗୀତ ଓ ଶାସ୍ତ୍ରୀୟ ସଂଗୀତ ଶିକ୍ଷା ଦେବାପାଇଁ ଦାମୋଦର ହୋତା ଦାୟିତ୍ୱ ନେଇଥା'ନ୍ତି । କଳାସଂସଦରେ ଯେଉଁମାନେ କର୍ମକର୍ତ୍ତା ଥିଲେ ସମସ୍ତେ ସଚିବାଳୟର କିରାଣି । ମଝିରେ ମଝିରେ ଏମାନଙ୍କ ମଧ୍ୟରୁ ଦି'/ତିନିଜଣ ହାକିମାତି ଦେଖାନ୍ତି । ମୋର ମନେ ହୁଏ ଅଫିସ୍‌ରେ ଅଫିସରଙ୍କ ପାଖରୁ ଗାଳିମନ୍ଦ ଶୁଣି ତାକୁ ସମ୍ଭବତଃ ଏହି ଅନୁଷ୍ଠାନରେ ଝଡ଼ାନ୍ତି । ଇତିମଧ୍ୟରେ ମୁଁ କେନ୍ଦ୍ର ସରକାରଙ୍କ ସଂସ୍କୃତି ବିଭାଗକୁ ଅଡିଟୋରିୟମ୍ ନିର୍ମାଣ ପାଇଁ ଆବେଦନ କରିଥିଲି । ଚିନ୍ତାମଣି ପାଣିଗ୍ରାହୀ ଓ ଲୋକନାଥ ମିଶ୍ର ଯଥାକ୍ରମେ ଲୋକସଭାରେ ଓ ରାଜ୍ୟସଭାରେ ସଭ୍ୟ ଥା'ନ୍ତି । ସେମାନଙ୍କୁ ଅନୁରୋଧ କଲି ଆମକୁ ସାହାଯ୍ୟ କରିବା ପାଇଁ । ସେତେବେଳେ କେନ୍ଦ୍ରରେ ଭକ୍ତ ବତ୍ସଳମ୍ ସଂସ୍କୃତି ବିଭାଗର ଉପମନ୍ତ୍ରୀ ଥିଲେ । ମୋର ଯାହା ମନେ ପଡୁଛି କଳା ସଂସଦ ପାଇଁ ଅଠଷଠି ହଜାର ଟଙ୍କା ମଞ୍ଜୁର ହୋଇଥିଲା । ତିନୋଟି କିସ୍ତିରେ ମିଳିବା ସ୍ଥିର ହୋଇଥିଲା । ପ୍ରଥମ କିସ୍ତି କୋଡ଼ିଏ ହଜାର ଟଙ୍କା ମିଳିବ ବୋଲି ଚିଠି ଆସିଲା । ମୁଁ ଚିଠି ଦେଖି ମିଟିଂ ଡାକି ଟଙ୍କା କଥା କହିଲି ଏବଂ ପୂର୍ବଭଳି ଅଲ୍ଲୀ ସାହେବଙ୍କ ସାହାଯ୍ୟ ନେବାପାଇଁ ପ୍ରସ୍ତାବ ଦେଲି । ମାତ୍ର ଦେଖିଲି ସେଇ ଦୁଇ ତିନିଜଣ କୁହାଳିଆ ବ୍ୟକ୍ତି ମୋ ପ୍ରସ୍ତାବକୁ ଗ୍ରହଣ ନକରି ସେମାନେ ନିଜେ ନିର୍ମାଣ ଦାୟିତ୍ୱ ନେବେ ବୋଲି କହିଲେ । ମୁଁ ସେଥିରେ ରାଜି ହେଲି ନାହିଁ । ସେହିଦିନଠାରୁ ମୁଁ କଳାସଂସଦ ଛାଡ଼ି ଦେଲି । କେନ୍ଦ୍ର ସରକାର ଯେଉଁ ଅର୍ଥ ପଠାଇଲେ ମୁଁ ଯାହା ଆଶଙ୍କା କରିଥିଲି ତାହାହିଁ ହେଲା । ଅଳ୍ପ କିଛି ଟଙ୍କା ଖର୍ଚ୍ଚ କରି ସାମନାରେ ବଖରେ ଦି'ବଖରା ଘର କରି ବାକି ଟଙ୍କା ନିଜ ନିଜ ମଧ୍ୟରେ ବାଣ୍ଟି ନେଲେ ।

ଦିନେ ମୁଁ ସେକ୍ରେଟେରିଏଟ୍‌ରେ ପ୍ରେସ୍ ରୁମ୍‌ରେ ବସିଛି । ବିଶ୍ୱଜିତ୍ ଦାସ (ବିଖ୍ୟାତ ନାଟ୍ୟକାର) ଆସି ପହଞ୍ଚିଲେ । ବିଶ୍ୱଜିତ୍ ବାବୁ ସେତେବେଳେ ସୂଚନା-ଲୋକସମ୍ପର୍କ ବିଭାଗରେ ଡି.ପି.ଆର୍.ଓ. ଥିଲେ । କଟକରୁ ମୋର ତାଙ୍କ ସହ ପରିଚୟ । ବିଶେଷ କରି ସୃଜନୀ ନାଟ୍ୟସଂସ୍ଥାର ସେ ଜଣେ ପ୍ରମୁଖ ବ୍ୟକ୍ତି ଥିଲେ । ତାଙ୍କର ଦୁଇଟି ନାଟକ ମଧ୍ୟ ସୃଜନୀ ସଂସ୍ଥା ମଞ୍ଚସ୍ଥ କରିଥିଲେ । ମୋର ଯାହା ମନେ ପଡୁଛି 'ପ୍ରତାପଗଡ଼ରେ ଦି'ଦିନ' ଓ 'ସାଗର ମନ୍ଥନ' ତାଙ୍କ ନାଟକ ମଞ୍ଚସ୍ଥ ହୋଇଥିଲା । ବିଶ୍ୱଜିତ୍ ବାବୁ ମୋତେ ଟିକେ ନିରୋଳାକୁ ଡାକି ନେଇ କହିଲେ ବରେନ୍ଦ୍ର ବାବୁ ଆଜି ସଂଧ୍ୟାରେ ଟିକେ ମୋ ଘରକୁ ଆସି ପାରିବେ ? ମୁଁ ପଚାରିଲି କ'ଣ କିଛି ନିର୍ଦ୍ଦିଷ୍ଟ କଥା ଅଛି ? ସେ କହିଲେ ହଁ, ଏଇ ପ୍ରଥମ ମୁଁ ଆପଣଙ୍କୁ କହୁଛି । ଆମେ ଏଠି ସୃଜନୀ ଭଳି ଏକ ନାଟ୍ୟ ସଂସ୍ଥା କଲେ କିପରି ହୁଅନ୍ତା ? ମୁଁ ବିଶ୍ୱଜିତ୍ ବାବୁଙ୍କ କଥା ଶୁଣି କହିଲି, କିନ୍ତୁ ମୁଁ ସେଥିରେ କି ପ୍ରକାର ସାହାଯ୍ୟ କରିବି ? ସେ କହିଲେ ଆପଣଙ୍କ ସାଙ୍ଗଠନିକ ଶକ୍ତି ଅଛି । କଳାସଂସଦରେ ସେକ୍ରେଟାରୀ

ହୋଇ ବର୍ଷକରେ ଘର କରିଦେଲେ । ଆମର ଘର-ଦ୍ୱାର ଦରକାର ନାହିଁ । କିନ୍ତୁ ପୁରା ଅନୁଷ୍ଠାନର ଦାୟିତ୍ୱ ଆପଣଙ୍କୁ ନେବାକୁ ହେବ । ମୁଁ ସନ୍ଧ୍ୟାରେ ଯିବାପାଇଁ ସମ୍ମତି ଜଣାଇଲି ।

## -ରୂପକାର ନାଟ୍ୟ ସଂସ୍ଥା-

ସେଦିନ ସଂଧ୍ୟାରେ ମୁଁ ବିଶ୍ୱଜିତ୍ ବାବୁଙ୍କ ଘରେ ପହଞ୍ଚିଲା ବେଳକୁ ଭୁବନେଶ୍ୱର କଳାକେନ୍ଦ୍ର ସଭାପତି ତଥା ପଞ୍ଚାୟତରାଜ ବିଭାଗର ଡେପୁଟି ସେକ୍ରେଟାରୀ ଜଗନ୍ନାଥ ମହାପାତ୍ର, ତାଙ୍କ ଝିଅ ସନ୍ଧ୍ୟା ମହାପାତ୍ର ବସିଛନ୍ତି । ମୋତେ ଦେଖି ସୁବୋଧ ବାବୁ (ବିଶ୍ୱଜିତ୍ ବାବୁଙ୍କ ବାପା) ସ୍ୱାଗତ କଲେ । କହିଲେ ଆ- ପୁଅ- ବସ୍ । ଜଗନ୍ନାଥ ବାବୁଙ୍କୁ ମୁଁ ନମସ୍କାର କଲି । ପରେ ପରେ ଅସୀମ ବସୁ (ଶିଳ୍ପୀ) ପହଞ୍ଚିଲେ । ବାସ୍ ସେଇଠି ସ୍ଥିର ହେଲା ନାଟ୍ୟସଂସ୍ଥା ଗଢ଼ାଯିବ । ତା'ର ନାଁ ରହିବ 'ରୂପକାର' । ଜଗନ୍ନାଥ ମହାପାତ୍ର ସଭାପତି ଓ ମୁଁ ସାଧାରଣ ସମ୍ପାଦକ ରହିବା ସ୍ଥିର ହେଲା । ନାଟକ ପାଇଁ କାହାକୁ କାହାକୁ ଆର୍ଟିଷ୍ଟ ନିଆଯିବ ସେ ବିଷୟ କଥାବାର୍ତ୍ତା ହେଲା । ସନ୍ଧ୍ୟା ନାଟକରେ ହିରୋଇନ୍ ହେବା କଥା ସ୍ଥିର ହେଲା । ସପ୍ତାହକ ମଧ୍ୟରେ ଆର୍ଟିଷ୍ଟମାନଙ୍କ ତାଲିକା ହୋଇଗଲା । ପ୍ରମୋଦ ମହାପାତ୍ର, ପ୍ରସନ୍ନ ମହାପାତ୍ର, ଅଜିତ୍ କର, ଅସୀମ ବସୁ, ସଦାନନ୍ଦ ଦାଶ, ଲୋକନାଥ ମହାନ୍ତି ପ୍ରମୁଖ କଳାକାରମାନେ ଯୋଗ ଦେଲେ ।

ଭୁବନେଶ୍ୱରରେ 'ରୂପକାର' ହେଉଛି ପ୍ରଥମ ସୌଖୀନ ନାଟ୍ୟସଂସ୍ଥା ।

ରୂପକାର ଗଢ଼ା ହେଲା । ରବିନ୍ଦ୍ର ମଣ୍ଡପରେ ପ୍ରଥମ ନାଟକ ମଞ୍ଚସ୍ଥ ହେବାପାଇଁ ସ୍ଥିର ହେଲା । ରିହରସାଲ ଚାଲିଲା । ୟୁନିଟ୍ ୨ର ଓ୍ୱେଷ୍ଟର୍ଣ୍ଣ ମାର୍କେଟ ଏବଂ ବସ୍‌ଷ୍ଟାଣ୍ଡ ମଝିରେ ବିଦ୍ୟୁତ୍ ବିଲ୍ ନେବା ପାଇଁ ଯେଉଁ ଘର ଥାଏ ସେଇ ଘରେ ରିହରସାଲ ଆରମ୍ଭ ହେଲା । ନୂଆ ନାଟକ ଲେଖିବା ପାଇଁ ସାଙ୍ଗେ ସାଙ୍ଗେ ସମ୍ଭବ ନହେବାରୁ ବିଶ୍ୱଜିତ୍ ଦାସଙ୍କର 'ପ୍ରତାପଗଡ଼ରେ ଦି'ଦିନ' ନାଟକ ପ୍ରଥମେ ମଞ୍ଚସ୍ଥ ହେବାକୁ ସ୍ଥିର ହେଲା । ସନ୍ଧ୍ୟା ନାୟିକା ଭୂମିକାରେ ଅଭିନୟ କଲେ । ମୋର ଯାହା ମନେ ପଡୁଛି ୧୯୬୮ ଫେବୃୟାରୀ ମାସରେ ଆମର ନାଟକ ପ୍ରଦର୍ଶନ ଆରମ୍ଭ ହେଲା । ମୁଖ୍ୟମନ୍ତ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ଏହି ନାଟକ ଉଦ୍‌ଘାଟନ କରିଥିଲେ । ନାଟକ ଶେଷ ପର୍ଯ୍ୟନ୍ତ ଶ୍ରୀ ସିଂହଦେଓ ବସି ଦେଖିଥିଲେ । ସରିବା ପରେ ବେଶ୍ ଖୁସି ହୋଇ କହିଲେ ଖୁବ୍ ଭଲ ନାଟକ ଏବଂ ଅଭିନୟ । ସେଇ ନାଟକ ତିନିଦିନ ଧରି ଚାଲିଲା । ଆମେ ଯାହା ଆଶା କରି ନଥିଲୁ ତା' ଅପେକ୍ଷା ବହୁତ ଅଧିକ ସଫଳ ହେଲା । ପ୍ରଥମ ଦିନ ବହୁ ନିମନ୍ତ୍ରିତ ବ୍ୟକ୍ତି ଥିଲେ ମଧ୍ୟ ପରବର୍ତ୍ତିଦୁଇଦିନ ଅନେକ ଲୋକ ଟିକେଟ୍ କାଟି ଆସିଥିଲେ । ପ୍ରତାପ ଗଡ଼ରେ ଦି'ଦିନ ଏକ ରୁଷୀୟ ନାଟକ ଛାୟାରେ ଲେଖା ଯାଇଥିଲା । ଭୁବନେଶ୍ୱରରେ ତାହାହିଁ ପ୍ରଥମ ସୌଖୀନ ନାଟକ ସଂସ୍ଥାର ପରୀକ୍ଷାଧର୍ମୀ ନାଟକ ପରିବେଷଣ । ଏହି ନାଟକ ପରିବେଷଣ ପରେ ଏବଂ ଏହାର ସଫଳତା ଆମକୁ ବେଶ୍ ଉଦ୍‌ବୁଦ୍ଧ କଲା । ପରେ ପରେ ବିଶ୍ୱଜିତ୍ ବାବୁ ଏକ ନୂଆ ନାଟକ ଲେଖିଲେ । ତା'ର ନା 'ନାଲିପାନ ରାଣୀ କଳାପାନ ଟିକା' । ସେଇ ନାଟକ ରିହରସାଲ୍ ଆରମ୍ଭ ହେଲା ।

ଦେଢ଼ମାସ ପରେ ଏହା ମଞ୍ଚସ୍ଥ ହେଲା । ପ୍ରଥମେ ଆମେ ତିନିଦିନ ପାଇଁ ଏହା ପରିବେଷଣ କରିବା ପରେ ପର ମାସରେ ଆଉ ଦୁଇଦିନ ମଞ୍ଚସ୍ଥ ହେଲା । ଏହା ପରେପରେ ରୂପକାର ଏକ ନାଟ୍ୟସଂସ୍ଥା ରୂପେ ଭୁବନେଶ୍ୱରରେ ବେଶ୍ ସୁଖ୍ୟାତି ଲାଭ କଲା । ସନ୍ଧ୍ୟା ବ୍ୟତୀତ ଆଉ ଦୁଇଟି ଝିଅ ଅଭିନୟ କରିବା ପାଇଁ ଆସିଲେ । ପରେ ରୂପକାର ସଂସ୍ଥା ବିଶ୍ୱଜିତ୍ ବାବୁଙ୍କର ଆଉ ଦୁଇଟି ନାଟକ 'ନିଜ ପ୍ରତିନିଧିଙ୍କ ଠାରୁ' ଏବଂ 'କୀଟ' ମଞ୍ଚସ୍ଥ କରିଥିଲା । ସେତେବେଳକୁ କଟକରେ 'ସୃଜନୀ' ନାଟ୍ୟସଂସ୍ଥା ବନ୍ଦ ହୋଇ ଗଲାଣି । ତେଣୁ ରୂପକାର ରାଜ୍ୟରେ 'ନବନାଟ୍ୟ ଆନ୍ଦୋଳନ'ର ମୁଖ୍ୟ ସଂସ୍ଥା ରୂପେ ପରିଚିତ ହେଲା । ରୂପକାରର ଏହି ସଫଳତା ରାଜ୍ୟର ବିଶିଷ୍ଟ ନାଟ୍ୟକାର ଓ ନିର୍ଦ୍ଦେଶକମାନଙ୍କୁ ଏଥିରେ ଯୋଗଦେବାପାଇଁ ଆକୃଷ୍ଟ କଲା । ଦିନେ ମୋତେ ବିଶିଷ୍ଟ ନାଟ୍ୟକାର ମନୋରଞ୍ଜନ ଦାସ ଟେଲିଫୋନ୍ କରି ତାଙ୍କ ନାଟକ

ମଞ୍ଚସ୍ଥ କରିବାକୁ କହିଲେ । ମୁଁ ଏ ବିଷୟ ଆମର ଏକ ବୈଠକରେ କହିଲି । ଦେଖିଲି ଅନ୍ୟମାନେ ସମସ୍ତେ ଆଗ୍ରହ ପ୍ରକାଶ କରିବା ବେଳେ ବିଶ୍ୱଜିତ୍ ବାବୁ ତା'ର ଘୋର ବିରୋଧ କଲେ । ତାଙ୍କର ଯୁକ୍ତି ହେଲା ବାହାର ନାଟ୍ୟକାରଙ୍କ ନାଟକ ମଞ୍ଚସ୍ଥ କଲେ ନାନା ପ୍ରକାର ଅସୁବିଧା ହେବ । ତା'ଛଡ଼ା ମନୋରଞ୍ଜନବାବୁଙ୍କ ନାଟକ ଆମ ସଂସ୍ଥା ପାଇଁ ଠିକ୍ ହେବ ନାହିଁ । ଆପଣମାନେ ଯଦି ତାଙ୍କ ନାଟକ ଆଣିବେ ତେବେ ମୋତେ ବିଦାୟ ଦିଅନ୍ତୁ । ହଠାତ୍ କେହି କିଛି କହିପାରିଲେ ନାହିଁ । ତେବେ ମୁଁ କହିଲି ଆପଣ ଯଦି ଏଭଳି ମନୋଭାବ ଗ୍ରହଣ କରିବେ ତେବେ 'ରୂପକାର' ଆଉ କାହାରି ନାଟକ ନେଇପାରିବ ନାହିଁ । ସେ କ'ଣ ଭାବି ପୁଣି କହିଲେ ନା- ବରେନ୍ଦ୍ର ବାବୁ ଆଉ ବର୍ଷେ ପରେ ଆମେ ସେକଥା ଚିନ୍ତା କରିବା । ସମସ୍ତେ ମୁହଁରେ କିଛି ନକହିଲେ ମଧ ମନେ ମନେ ଅସନ୍ତୁଷ୍ଟ ହେଲେ । କଥା ସେଇଠି ଛିଡ଼ିଗଲା । ୧୯୬୮ ମହାତ୍ମାଗାନ୍ଧୀ ଜନ୍ମ ଶତବାର୍ଷିକୀ ପାଇଁ କେନ୍ଦ୍ର ସଂଗୀତ ଓ ନାଟକ ଡିଭିଜନ ସବୁ ରାଜ୍ୟ ସଂଗୀତ ଏକାଡେମୀକୁ ପତ୍ର ଲେଖିଥା'ନ୍ତି । ମୁଁ ଏକଥା ଜାଣିପାରି ରୂପକାର ସଂସ୍ଥାକୁ ଏହି ପ୍ରତିଯୋଗିତା ପାଇଁ ପଠାଇବା ସକାଶେ ଏକାଡେମୀର ସଭାପତି ଡଃ ହରେକୃଷ୍ଣ ମହତାବଙ୍କୁ ଅନୁରୋଧ କଲି । ସେତେବେଳେ ସାହିତ୍ୟ ଏକାଡେମୀ, ଲଳିତକଳା ଏକାଡେମୀ ଓ ସଂଗୀତ ନାଟକ ଏକାଡେମୀର ସଭାପତି ଥିଲେ ଡଃ ମହତାବ । ପୂର୍ବରୁ ଡଃ ମହତାବଙ୍କୁ ଆମେ 'ନିଜ ପ୍ରତିନିଧିଙ୍କ ଠାରୁ' ନାଟକ ଉଦ୍‌ଘାଟନ କରିବା ପାଇଁ ଡାକିଥିଲୁ । ସେ ପୁରା ସମୟ ଦେଖି ଖୁସି ହୋଇଥିଲେ । ସେଦିନ ବିଧାନସଭା ଲବିରେ ଡଃ ମହତାବ ବସିଥିବାବେଳେ ମୁଁ ଏକଥା ଉଠାଇଲି । ସେ କହିଲେ ଠିକ୍ ଅଛି ଏଠିଯେଉଁମାନେ ଆବେଦନ କରିଛନ୍ତି ସେମାନଙ୍କ ମଧରେ ଏକ କମ୍ପିଟିସନ୍ ହେବ । ସେଥିରେ ଯିଏ ଜିତିବ ସେ ଯିବ ।

ରବୀନ୍ଦ୍ର ମଣ୍ଡପରେ ଜନତା ଥିଏଟର, କଳାଶ୍ରୀ ଥିଏଟର ଏବଂ ରୂପକାର ନାଟ୍ୟସଂସ୍ଥା ମଧରେ ପ୍ରତିଯୋଗିତା ହେଲା । ପ୍ରତିଯୋଗିତାରେ ରୂପକାର ସଂସ୍ଥା ଜିତିଲା ଏବଂ ଆମ ନାଁ ଦିଲ୍ଲୀ ସଂଗୀତ ନାଟକ ଡିଭିଜନ(ସଙ୍ଗ୍ ଏଣ୍ଡ୍ ଡ୍ରାମା ଡିଭିଜନ୍)କୁ ସୁପାରିଶ କରାଗଲା । ସେତେବେଳେ ଗୋଟିଏ ଦଳରେ ସର୍ବାଧିକ ତିରିଶଜଣ ଯିବାର ନିୟମ ଥିଲା । ମୋଟ ଖର୍ଚ୍ଚ ୧୮ ହଜାର ଟଙ୍କାରୁ ଅଧା ଓଡ଼ିଶା ସରକାର ବାକି ଅଧା ଟଙ୍କା ଦିଲ୍ଲୀରେ ସଙ୍ଗ୍ ଏଣ୍ଡ୍ ଡ୍ରାମା ଡିଭିଜନ୍ ଦେବେ । ଆମେ ନ'ହଜାର ଟଙ୍କା ନେଇ ଦିଲ୍ଲୀ ବାହାରିଲୁ । ସେତେବେଳେ ଭୁବନେଶ୍ୱରରୁ ସିଧା ସଳଖ ଦିଲ୍ଲୀ ଯିବା ପାଇଁ କୌଣସି ଟ୍ରେନ୍ ନଥିଲା । ପୁରୀ ହାୱଡ଼ା ଏକ୍ସପ୍ରେସ୍‌ରେ ଦୁଇଟି ଦିଲ୍ଲୀ ବଗି ଯୋଡ଼ା ଯାଉଥିଲା । ଖଡ଼ଗପୁରଠାରେ ସେ ବଗି ଦୁଇଟି ବିଚ୍ଛିନ୍ନ ହୋଇ ହାଓଡ଼ା ଆସାନସୋଲ୍ ଗାଡ଼ିରେ ଯୋଡ଼ା ହୋଇ ଆସାନସୋଲ୍ ଯାଉଥିଲା । ସେଠି ଆସାନସୋଲ୍ ଟ୍ରେନ୍‌ରୁ ବଗି ଦୁଇଟି ବିଚ୍ଛିନ୍ନ ହୋଇ ତୁଫାନ୍ ଏକ୍ସପ୍ରେସ୍‌ରେ ଯୋଡ଼ା ହୋଇ ଦିଲ୍ଲୀ ଯାଉଥିଲା । ଆମେ ପୁରୀ ଏକ୍ସପ୍ରେସ୍ ଦିଲ୍ଲୀ ବଗିରେ ବସିଲୁ । ଆମ ସହ ତିନିଜଣ ଲେଡି ଆର୍ଟିଷ୍ଟ ଯାଉଥିଲେ । ସେମାନଙ୍କ ନାଁ ଥିଲା ବିଜୟଲକ୍ଷ୍ମୀ ପଟ୍ଟନାୟକ, ସନ୍ଧ୍ୟା ଆଚାର୍ଯ୍ୟ ଓ ବିଜୟଲକ୍ଷ୍ମୀ ଆଚାର୍ଯ୍ୟ । ଏହି ସନ୍ଧ୍ୟା ଆଚାର୍ଯ୍ୟ ପରେ ଓଡ଼ିଆ ଚଳଚ୍ଚିତ୍ରରେ ଅଭିନୟ କରିଥିଲେ ।

ସଙ୍ଗ୍ ଏଣ୍ଡ୍ ଡ୍ରାମା ଡିଭିଜନର ଥିଏଟର ହଲ୍, ରିହରସାଲ୍ ହଲ୍, ଅଫିସ୍ ସବୁ ମଥୁରା ରୋଡ଼ ପ୍ରଦର୍ଶନୀ ପଡ଼ିଆରେ ଥିଲା । କଳାକାରମାନେ ରହିବା ପାଇଁ ବେଶ୍ ବଡ଼ ହଷ୍ଟେଲ୍ ଥିଲା । ଆମେ ସନ୍ଧ୍ୟାରେ ସେଠାରେ ପହଞ୍ଚିଲୁ । ଆମ ରହିବା କଥା ସେଠାରେ ଥିବା ଜଣେ କର୍ମକର୍ତ୍ତାଙ୍କୁ ପଚାରିବାରେ ସେ ଆମକୁ ବାର/ଚୌଦଟି ଟେଣ୍ଟ ପାଖକୁ ନେଇ କହିଲେ ଆପଣମାନେ ଏଇଠି ରହିବେ । ଶୀତଦିନ । ପୁଣି ଦିଲ୍ଲୀ ଶୀତ । ଆମେ କେହି ଅଭ୍ୟସ୍ତ ନୋହୁ । ଟେଣ୍ଟ ଦେଖି ଆମ ତାଳୁକ ଶୁଖିଗଲା । ଅନେକ ଟେଣ୍ଟର ଉପରେ ବଡ଼ ବଡ଼ କଣା । ଚନ୍ଦ୍ର-ସୂର୍ଯ୍ୟ ଦେଖାଦେବା ଭଳି ଅବସ୍ଥା । ଆମେ ପଚାରିଲୁ ସମସ୍ତେ ଏଇଠି ରୁହନ୍ତି ? ସେ କହିଲେ ଓଡ଼ିଶା ଦଳକୁ ଏଇଠି ଦିଆଯାଇଛି । ଆଉ ଅନ୍ୟମାନଙ୍କୁ ? ସେ କିଛି ନକହି ଚୁପ୍ ରହିଲେ । ତା'ପରେ ମୁଁ ଯେତେବେଳେ କହିଲି ଆମେ ପ୍ରଫେସନାଲ୍ ନୁହଁ, ଆମେଚର ଗ୍ରୁପ୍ । ଆମ ଭିତରେ ବଡ଼ ବଡ଼ ଅଫିସର ସାମ୍ବାଦିକ ଓ ପ୍ରଫେସର ଅଛନ୍ତି । ସେ କ'ଣ ଭାବି କହିଲେ ଦେଖନ୍ତୁ ଥରକେ ଦୁଇଟି ଗ୍ରୁପ୍‌କୁ ଡକାଯାଏ । ଏଥର ଓଡ଼ିଶା ଆଉ ବଙ୍ଗଳାକୁ ଡକା ଯାଇଛି । ବଙ୍ଗଳା ଗ୍ରୁପ କେଉଁଠି ରହୁଛନ୍ତି ପଚାରିବାରେ ସେ ହଷ୍ଟେଲ ଆଡ଼େ ହାତ ଦେଖାଇଦେଲେ । ମୁଁ

ପଚାରିଲି ତେବେ ଆମକୁ ଏଠି କାହିଁକି ? ସେ କହିଲେ ଅଫିସ୍‌ରେ ଡାଇରେକ୍ଟର କର୍ଣ୍ଣେଲ ଗୁପ୍ତା ଅଛନ୍ତି ତାଙ୍କୁ ଯାଇ କୁହନ୍ତୁ । ସେ ଯାହା କରିବେ । ମୁଁ ଦୁଇ-ତିନିଜଣ ବନ୍ଧୁଙ୍କୁ ଧରି ଅଫିସ୍‌କୁ ଗଲି । ଆମ କାର୍ଡ଼ ଦେବା ପରେ କର୍ଣ୍ଣେଲ ଗୁପ୍ତା ଆମକୁ ଡାକିଲେ । ମୁଁ ଆମ ପରିଚୟ ଦେଲି । ଏବଂ କହିଲି ଯେଉଁ ଟେଣ୍ଟ ଦେଇଛନ୍ତି ସେଠାରେ ରହିବା ସମ୍ଭବ ନୁହେଁ । ଆମ ପାଇଁ ଘର ବ୍ୟବସ୍ଥା କରନ୍ତୁ । ସେ ମୋ କଥା ଶୁଣି ହଠାତ୍ ବିରକ୍ତ ହୋଇଗଲେ । ଏବଂ ବଡ଼ପାଟିରେ ଚିତ୍କାର କରି କହିଲେ, What do uou think of yourself. If You dont want to stay there then you go out. I dont need your drama. ମୁଁ କର୍ଣ୍ଣେଲ ଗୁପ୍ତାଙ୍କର ଏ ପ୍ରକାର ବ୍ୟବହାର ଦେଖି ଆଶ୍ଚର୍ଯ୍ୟ ହୋଇଗଲି । ସାଙ୍ଗେ ସାଙ୍ଗେ ମୁଁ କହିଲି Mr. Director we have come here on invitation form you. Dont behave like this. In our group persons are there who are much above of your rank. ସେ କିଛୁ କିଛି ଶୁଣିବାକୁ ପ୍ରସ୍ତୁତ ନଥିଲେ । ସେହିପରି ଚଡ଼ାଗଳାରେ କହିଲେ, I dont care. you go out. ମୁଁ ଏବଂ ମୋ ସାଙ୍ଗରେ ଯାଇଥିବା ବନ୍ଧୁମାନେ ଅପମାନିତ ହୋଇ ବାହାରି ଆସିଲୁ ।

ବାହାରକୁ ଆସି ହଠାତ୍ ମୋ ମନରେ ନନ୍ଦିନୀ ଦେବୀଙ୍କ କଥା ଆସିଲା । ନନ୍ଦିନୀ ଶତପଥୀ ସେତେବେଳେ କେନ୍ଦ୍ରରେ ତଥ୍ୟ ବେତାର ବିଭାଗର ଉପମନ୍ତ୍ରୀ । ସୌଭାଗ୍ୟବଶତଃ ମୁଁ ଭୁବନେଶ୍ୱର ଛାଡ଼ିବା ବେଳେ ତାଙ୍କର ଏବଂ ଆଉ କେତେଜଣ ଏମ୍.ପି.ଙ୍କର ଟେଲିଫୋନ୍ ନମ୍ବର ଟିପି ନେଇଥିଲି । ଆମେ ସେଇ ସଙ୍ଗ୍ ଏଣ୍ଡ ଡ୍ରାମା ଡିଭିଜନ ଅଫିସ୍‌ରୁ ନନ୍ଦିନୀ ଦେବୀଙ୍କୁ ଫୋନ୍ କଲୁ । ସେପଟୁ ତାଙ୍କ ପି.ଏ. ସିଂହବାବୁ ଫୋନ୍ ଧରିଲେ । ଆମ ପରିଚୟ ପାଇବା ପରେ ସେ ଟେଲିଫୋନ୍ କନେକ୍ସନ ଦେଲେ । ମୁଁ ମୋର ପରିଚୟ ଦେବାରେ ସେ କହିଲେ ହଠାତ୍ ସନ୍ଧ୍ୟାବେଳେ କେଉଁଠୁ ଆସିଲ ? ମୁଁ ସବୁକଥା କହି କର୍ଣ୍ଣେଲ ଗୁପ୍ତା ଆମକୁ ଯେଭଳି କଦର୍ଯ୍ୟ ବ୍ୟବହାର କଲା ଏବଂ ବଙ୍ଗଳାକୁ ଯେପରି ସୁବିଧା ଦେଇଛି ସବୁ କହିଲି । ସେ ସବୁ ଶୁଣିବା ପରେ କହିଲେ ତମେ କେଉଁଠୁ କହୁଛ ? ମୁଁ ସେଇ ଅଫିସ୍ ଫୋନ୍‌ରୁ କହୁଛି ଶୁଣିବା ପରେ ସେ କହିଲେ ସେଠି ଯିଏ ଅଛି ତାକୁ ଫୋନ୍ ଦିଅ । ମୁଁ ଟେଲିଫୋନ୍ ରିସିଭର ଅଫିସ୍ ସୁପରିଟେଣ୍ଡେଣ୍ଟଙ୍କୁ ଦେଇ କହିଲି ମନ୍ତ୍ରୀ ଡାକୁଛନ୍ତି । ସେପଟୁ ନନ୍ଦିନୀ ଦେବୀ କ'ଣ କହିଲେ ସେକଥା ଶୁଣି ସେ ଖାଲି ମ୍ୟାଡାମ୍ ମ୍ୟାଡାମ୍ ବୋଲି କହୁଥା'ନ୍ତି । ସେ ଫୋନ୍ ଥୋଇ ଦେଇ କର୍ଣ୍ଣେଲ ଗୁପ୍ତାଙ୍କ ରୁମ୍‌କୁ ଦଉଡ଼ିଲେ । ହଠାତ୍ ମୁଁ ଦେଖିଲି କର୍ଣ୍ଣେଲ ଗୁପ୍ତା ବାହାରକୁ ଆସି ପଚାରିଲେ, Who is Orissa party leader ? ମୁଁ କହିଲି ମୁଁ । Come to my room. ମୁଁ କହିଲି Why ? ସିଏ ଠିଆ ହୋଇ ପଡ଼ି ପଚାରିଲେ Did you telephone to Minister ? ମୁଁ ହଁ କଲି । ସେ କହିଲେ ମୋ ବିନା ଅନୁମତିରେ ମୋ ଅଫିସ୍‌ରୁ କାହିଁକି ମିନିଷ୍ଟରଙ୍କୁ ଫୋନ୍ କଲେ । ମୁଁ ଚଡ଼ାଗଳାରେ କହିଲି, If you want you can call the police. You are not in your sence. let Mrs Satpathy comes. Then I will see how far you will go. କର୍ଣ୍ଣେଲ ଗୁପ୍ତା ହଠାତ୍ ଏ ପ୍ରକାର କଥା ଆଶା କରିନଥିଲେ । ମୋତେ ପଚାରିଲେ What are doing ? ମୁଁ କହିଲି I am a Journalist. ସିଏ ଆଉ କିଛି କହିବା ପୂର୍ବରୁ ନନ୍ଦିନୀ ଦେବୀଙ୍କ ଗାଡ଼ି ଆସି ପହଞ୍ଚିଲା । ଗାଡ଼ିରୁ ଓହ୍ଲାଇ ଆମେ ସବୁ ଠିଆ ହୋଇଥିବା ସ୍ଥାନକୁ ଆସିଲେ । ଆମେ ନମସ୍କାର କଲୁ । ସେ କହିଲେ କ'ଣ ସବୁ ନାଟକ ଆଣିଛ ? ତା'ପରେ ଅନନ୍ତ ମହାପାତ୍ରଙ୍କୁ ଦେଖି ପଚାରିଲେ ଅନନ୍ତ ବାବୁ ଆପଣ କ'ଣ ନାଟକର ନିର୍ଦ୍ଦେଶକ ? ଅନନ୍ତ ବାବୁ ହସି ହସି ହଁ କଲେ ।

ନନ୍ଦିନୀ ଶତପଥୀ ପହଞ୍ଚିଯିବା ପରେ ଆମେ ସମସ୍ତେ ଆଶ୍ୱସ୍ତ ହେଲୁ । ମନ୍ତ୍ରୀଙ୍କୁ ଦେଖି କର୍ଣ୍ଣେଲ ଗୁପ୍ତା ନମସ୍କାର କରି କହିଲେ ମାଡାମ ଆସନ୍ତୁ । ନନ୍ଦିନୀ ଦେବୀ ରୁମ୍‌କୁ ନଯାଇ ସେଇ ବାରଣ୍ଡାରେ ଠିଆ ହୋଇ କର୍ଣ୍ଣେଲ ଗୁପ୍ତାଙ୍କୁ ପଚାରିଲେ ଆପଣ ସମ୍ଭବତଃ ଏକ୍ସଟେନସନ୍‌ରେ ଅଛନ୍ତି ? ଆପଣ ଏମାନଙ୍କୁ କ'ଣ କହିଲେ ? କର୍ଣ୍ଣେଲ୍ ଗୁପ୍ତା କ'ଣ କହିବାକୁ ଯିବା ବେଳେ ନନ୍ଦିନୀ ଦେବୀ କହିଲେ ଯେଉଁ ଟେଣ୍ଟ ଏମାନଙ୍କୁ ରହିବା ପାଇଁ ଦେଇଛନ୍ତି ସେ ଟେଣ୍ଟରେ

ଆପଣ ଆଜି ରାତିରେ ରୁହନ୍ତୁ । ଆପଣ ଜାଣନ୍ତି ଆପଣଙ୍କ ଅପେକ୍ଷା ଉଚ୍ଚ ର୍ୟାଙ୍କର ଅଫିସର ଏମାନଙ୍କ ମଧ୍ୟରେ ଅଛନ୍ତି । କେଉଁ ସାହସରେ ଆପଣ ଏମାନଙ୍କୁ ଏ ପ୍ରକାର ବ୍ୟବହାର କଲେ ? ପଶ୍ଚିମବଙ୍ଗ ଗ୍ରୁପ୍ ଯଦି ହଷ୍ଟେଲ୍‌ରେ ଅଛନ୍ତି ଏମାନଙ୍କ ପାଇଁ ଏ ଟେଣ୍ଟ ବ୍ୟବସ୍ଥା କାହିଁକି କରିଥିଲେ ? ହଷ୍ଟେଲ୍‌ରେ ଆଉ ସ୍ଥାନ ନାହିଁ ? ନନ୍ଦିନୀ ଦେବୀ ଅଫିସ୍ ସୁପରିଟେଣ୍ଡେଣ୍ଟଙ୍କୁ ଚାହିଁଲେ । ସେ କହିଲେ ହଁ ମ୍ୟାଡାମ୍ ଉପର ମହଲା ଖାଲି ଅଛି । ନନ୍ଦିନୀ ଦେବୀ କହିଲେ ଏମାନଙ୍କୁ ସେଠାରେ ରଖନ୍ତୁ । ତା'ପରେ କର୍ଣ୍ଣେଲ ଗୁପ୍ତାଙ୍କୁ ଚାହିଁ କହିଲେ କାଲି ମୁଁ ଆପଣଙ୍କ କଥା ବୁଝୁଛି । ସେତେବେଳକୁ କର୍ଣ୍ଣେଲ ଗୁପ୍ତାଙ୍କ ମଦନିଶା ଖସି ଗଲାଣି । ସେ ଆଶା କରିନଥିଲେ ଏତେ ସବୁ ଘଟଣା ଘଟିଯିବ । ଆସନ୍ତାକାଲି କ'ଣ ହେବ ସେକଥା ମଧ୍ୟ ସେ ବୁଝିଗଲେଣି । ସମ୍ଭବତଃ ତାଙ୍କ ଏକ୍ସଟେନସନ୍ ମନ୍ତ୍ରୀ କାଲି ଶେଷ କରିଦେବେ । ଆମକୁ ନନ୍ଦିନୀ ଦେବୀ କହିଲେ ତୁମେସବୁ ଆଜି ବିଶ୍ରାମ କର । କାଲି ଦେଖାହେବ । ସେ ଚାଲିଗଲେ । କର୍ଣ୍ଣେଲ ଗୁପ୍ତା ସାଙ୍ଗେ ସାଙ୍ଗେ ବଦଳିଗଲେ । ମୋ ପାଖକୁ ଆସି କହିଲେ, ମିଃ ଧଳ, ମୁଁ ଦୁଃଖିତ । କାଇଣ୍ଡ୍‌ଲି ଏକ୍ସକ୍ୟୁଜ୍ ମି । ମୁଁ କିଛି କହିଲି ନାହିଁ । ସାଙ୍ଗେ ସାଙ୍ଗେ ଆମକୁ ହଷ୍ଟେଲ୍ ଉପର ମହଲାକୁ ନିଆଗଲା । ସେଠାରେ ପ୍ରତି ତିନିଜଣଙ୍କ ପାଇଁ ଦଶୋଟି ଘର ଦିଆଗଲା । ସବୁ ଘରେ ନୂଆ ଫିତା ଖଟ ପଡ଼ିଥିଲା ଏବଂ ରୁମ୍ ବାହାରେ ବାରଣ୍ଡା ସାମ୍ନାରେ ଧାଡ଼ିଏ କମନ୍ ବାଥ୍-ଲାଟ୍ରିନ୍ ଥିଲା । ଅଫିସ୍ ସୁପରିଟେଣ୍ଡେଣ୍ଟ ଆମକୁ ରୁମ୍ ଖୋଲି ଦେଇ ମୋ ପାଖରୁ ଅଣ୍ଡରଟେକିଂ ଲେଖିନେଲେ । ମୁଁ ତାଙ୍କୁ ପଚାରିଲି ଏତେ ଘର ଥାଉ ଥାଉ ଆମକୁ କାହିଁକି ସେ କଦର୍ଯ୍ୟ ସ୍ଥାନ ଦିଆଯାଇଥିଲା ? ସେ ମୋତେ କହିଲେ ଏ ମହଲା ମାସେ ହେଲା ନୂଆ ହୋଇଛି । ତେଣୁ ଓଡ଼ିଶା ଭଳି ଗୋଟେ ଛୋଟ ରାଜ୍ୟକୁ ନଦେଇ ମହାରାଷ୍ଟ୍ରକୁ ଦେବାପାଇଁ କର୍ଣ୍ଣେଲ୍ ଗୁପ୍ତା କହିଥିଲେ । ଆପଣମାନେ ଏଥର ଯେପରି ହାଙ୍ଗାମା କଲେ କର୍ଣ୍ଣେଲ ଗୁପ୍ତା ତାହା ଆଶା କରିନଥିଲେ । ତା'ଛଡ଼ା ମନ୍ତ୍ରୀ ଓଡ଼ିଶାର ବୋଲି ସେ ସମ୍ଭବତଃ ଜାଣିନଥିଲେ । ତେବେ ପୂର୍ବରୁ ଓଡ଼ିଶାରୁ ଯେଉଁ ଗ୍ରୁପ୍ ଆସୁଥିଲେ ସେମାନେ ଯେଉଭଳି ବ୍ୟବହାର କରୁଥିଲେ ସେଥିରେ ଓଡ଼ିଶାକୁ ଅନେକ ନିମ୍ନମାନର ବୋଲି ଏଠାରେ ଆମ ଲୋକେ ବିଚାର କରୁଥିଲେ । କିନ୍ତୁ ଏଥର ଆପଣମାନେ ସେ ଇମ୍ପ୍ରେସନ ପୁରା ବଦଳାଇ ଦେଇଛନ୍ତି । ଆମେ ଏତେବେଳେ ବୁଝିଲୁ କର୍ଣ୍ଣେଲ୍ ଗୁପ୍ତା କାହିଁକି ଆମକୁ ଅପମାନିତ କଲେ ।

ଦିଲ୍ଲୀ ଶୀତରେ ଯାହାହେଉ ସେ ରୁମ୍ ପାଇ ଆମେ ଆଶ୍ୱସ୍ତ ହେଲୁ । ଦିଲ୍ଲୀ ଶୀତ ପାଇଁ ଆମେ ସମସ୍ତେ ମୋଟା କମ୍ବଳ, ଗରମ ପୋଷାକ ନେଇଥିଲୁ । ତେଣୁ ଅସୁବିଧା କିଛି ହେଲା ନାହିଁ । ଆମର ଯେଉଁଦିନ ନାଟକ ମଞ୍ଚସ୍ଥ ହେବ ତା'ର ଚାରିଦିନ ପୂର୍ବରୁ ଆମେ ଯାଇଥିଲୁ । କାରଣ ଯେଉଁ ଷ୍ଟେଜ୍‌ରେ ନାଟକ ହେବ ସେ ଷ୍ଟେଜ୍‌ରେ ତିନିଦିନ ରିହରସାଲ କରିବା ସଙ୍ଗେ ସଙ୍ଗେ ଷ୍ଟେଜ୍ ସାଜସଜ୍ଜା ଓ ଲାଇଟ୍ ଫିଟିଂ କରିବାକୁ ହେବ । ଅସୀମ ବସୁ ଷ୍ଟେଜ୍ ସାଜସଜ୍ଜା ଦାୟିତ୍ୱରେ ଥିଲେ ।

ଆମେ ସେଥର ମହାତ୍ମାଗାନ୍ଧୀ ଜନ୍ମ ଶତବାର୍ଷିକ ଉପଲକ୍ଷେ 'ପାହାଚ' ନାମରେ ଏକ ନାଟକ ମଞ୍ଚସ୍ଥ କରିଥିଲୁ । ପାହାଚ ନାଟକର ଲେଖକ ଥିଲେ ବିଜୟ ମିଶ୍ର । ଏବଂ ନିର୍ଦ୍ଦେଶନା ଦାୟିତ୍ୱରେ ଥିଲେ ବିଖ୍ୟାତ ନାଟ୍ୟ ନିର୍ଦ୍ଦେଶକ ଅନନ୍ତ ମହାପାତ୍ର । ଅନନ୍ତ ବାବୁ କଟକ ସୃଜନୀ ନାଟ୍ୟସଂସ୍ଥାର ମୁଖ୍ୟ ନିର୍ଦ୍ଦେଶକ ଥିଲେ । ଆମେ 'ପାହାଚ' ନାଟକର ପାଣ୍ଡୁଲିପି ଯେତେବେଳେ ଓଡ଼ିଶା ସଂଗୀତ ନାଟକ ଏକାଡେମୀରେ ଦାଖଲ କଲୁ ବିଶ୍ୱଜିତ୍ ବାବୁ ତା'ର ବିରୋଧ କରି ତାଙ୍କର ପୁରୁଣା ନାଟକ ଦାଖଲ ପାଇଁ ଜିଦ୍ କଲେ । ମାତ୍ର ମୁଁ ଅନ୍ୟମାନଙ୍କ ସାଙ୍ଗରେ ଆଲୋଚନା କରି ବିଜୟ ମିଶ୍ରଙ୍କ ନାଟକ ଦାଖଲ କଲି । ଫଳରେ ବିଶ୍ୱଜିତ୍ ବାବୁ ତା'ର ନିର୍ଦ୍ଦେଶନା ଦେବା ପାଇଁ ମନା କରିଦେଲେ । ଆମେ ହତୋତ୍ସାହ ନହୋଇ ଅନନ୍ତ ବାବୁଙ୍କୁ ଯୋଗାଯୋଗ କଲୁ । ବିଶ୍ୱଜିତ୍‌ବାବୁ ଅପମାନିତ ହୋଇ ଜଗନ୍ନାଥ

ମହାପାତ୍ରଙ୍କୁ ଶିଖେଇ ସନ୍ଧ୍ୟାକୁ ନାଟକରେ ଅଭିନୟ ନକରିବାକୁ ପ୍ରବର୍ତ୍ତାଇ ସଫଳ ହେଲେ । ଆମେ ପ୍ରଥମେ ଅସୁବିଧାରେ ପଡ଼ିଲେ ମଧ୍ୟ ପରେ ବାଣୀବିହାର ଛାତ୍ରୀ ବିରାଜଲକ୍ଷ୍ମୀ ପଟ୍ଟନାୟକ, ଭୁବନେଶ୍ୱ‌ର ସନ୍ଧ୍ୟା ଆଚାର୍ଯ୍ୟ ଏବଂ ବାଣୀବିହାର ସଂସ୍କୃତ ବିଭାଗ ପ୍ରଫେସର କୃଷ୍ଣଚନ୍ଦ୍ର ଆଚାର୍ଯ୍ୟଙ୍କ ଝିଅ ବିଜୟଲକ୍ଷ୍ମୀ ଆଚାର୍ଯ୍ୟଙ୍କୁ ଏହି ନାଟକରେ ଅଭିନୟ କରିବା ପାଇଁ ରାଜି କରାଇଲୁ । ନାଟକରେ ମୋଟ ତିନୋଟି ନାରୀ ଚରିତ୍ର ଥିଲା । ଝିଅମାନଙ୍କ ସହ ସେମାନଙ୍କ ଅଭିଭାବକ ରୂପେ ବିରାଜଲକ୍ଷ୍ମୀଙ୍କ ମା' ଯିବା ସ୍ଥିର ହେଲା । ଆମେ ନାଟକର ରିହରସାଲ୍ ସ୍ଥାନ ପରିବର୍ତ୍ତନ କରି ଜଳସେଚନ ବିଭାଗ ଚିଫ୍ ଇଞ୍ଜିନିୟର ଅଫିସ୍ ପ୍ରବେଶ ପଥର ଉପର ମହଲା ହଲ୍‌ରେ ରିହରସାଲ୍ କଲୁ । ବିଶ୍ୱଜିତ୍‌ବାବୁ ତାଙ୍କଆଡୁ ଅସହଯୋଗ କଲେ ମଧ୍ୟ ଆମେ ତାଙ୍କୁ ଡାକିବାରେ ହେଳା କରିନୁ । ସେ ମଧ୍ୟ ଆସୁଥିଲେ ଏବଂ ଆମ ସାଙ୍ଗରେ ଦିଲ୍ଲୀ ମଧ୍ୟ ଯାଇଥିଲେ । କିନ୍ତୁ ଯେଉଁ ସହଯୋଗ ତାଙ୍କଠାରୁ ପାଇବା କଥା ପାଇ ନଥିଲୁ ।

ଦିଲ୍ଲୀରେ ଆମ ନାଟକ ମଞ୍ଚସ୍ଥ ପାଇଁ ପ୍ୟାରିସ୍‌ର ଜଣେ ଆଲୋକସଜ୍ଜା ବିଶେଷଜ୍ଞଙ୍କୁ ଆମେ ପାଇଥିଲୁ । ଆମ ନାଟକ ହେବାର ଛ'ମାସ ପୂର୍ବରୁ ଅନନ୍ତବାବୁ ପ୍ୟାରିସ୍ ଯାଇ ନାଟକ ନିର୍ଦ୍ଦେଶନା ତାଲିମ୍ ନେଇଥିଲେ । ଅନନ୍ତ ମହାପାତ୍ର ନ୍ୟାସନାଲ୍ ସ୍କୁଲ୍ ଅଫ୍ ଡ୍ରାମା ସଂସ୍ଥାକୁ ଯାଇଥିବା ବେଳେ ସଂଯୋଗବଶତଃ ତାଙ୍କ ସାଙ୍ଗରେ ତାଙ୍କର ଦେଖା ହୋଇଥିଲା । ପୂର୍ବରୁ ପ୍ୟାରିସ୍‌ରେ ତାଙ୍କ ସହ ତାଙ୍କର ସାକ୍ଷାତ ହୋଇଥିଲା । ତାଙ୍କୁ ଆମ ନାଟକରେ ଆଲୋକ ସଂପାତ ପାଇଁ ଅନନ୍ତବାବୁ ଅନୁରୋଧ କରିବାରେ ସେ ରାଜିହୋଇ ଯାଇଥିଲେ ଏବଂ ସେଥିପାଇଁ ଦୁଇହଜାର ଟଙ୍କା ପାରିଶ୍ରମିକ ନେବେ ବୋଲି କହିଲେ । ଅନନ୍ତବାବୁ ଏ ବିଷୟ ମୋତେ ପଚାରିବାରେ ମୁଁ ରାଜି ହେଲି । କାରଣ ଆମର ଖର୍ଚ୍ଚବାର୍ଚ୍ଚ ଯାଇ ଆଉ ଦୁଇ ତିନିହଜାର ଟଙ୍କା ବଳିବ ବୋଲି ମୁଁ ହିସାବ କରିଥିଲି ।

ଯାହାହେଉ ନିର୍ଦ୍ଦିଷ୍ଟ ଦିନ ନାଟକ 'ପାହାଚ' ମଞ୍ଚସ୍ଥ ହେଲା । ତା'ର ପୂର୍ବଦିନ ଆମ ନାଟକ ସମ୍ପର୍କରେ ଏକ ଛୋଟ ସମ୍ବାଦ ଦିଲ୍ଲୀର ସବୁ ବଡ଼ ବଡ଼ ଖବର କାଗଜକୁ ନନ୍ଦିନୀ ଦେବୀଙ୍କ ଅଫିସ୍ ଜରିଆରେ ପଠାଇ ଫୋନ୍ କରି ପ୍ରକାଶ କରିବାକୁ ଅନୁରୋଧ କରିଥିଲୁ । ଆମର ପରଦିନ ଖବର କାଗଜ ଦେଖି ଆନନ୍ଦର ସୀମା ରହିଲା ନାହିଁ । ସବୁ କାଗଜରେ ବକ୍ସ ଭିତରେ 'Oriya Drama Pahacha on godhi Phylosophy in Song & Drama Division Stage'. ଏ ଖବର ପଢ଼ି ନାଟକ ମଞ୍ଚସ୍ଥ ହେବାଦିନ ବହୁ ଓଡ଼ିଆ ପରିବାରସହ ଦେଖିବାକୁ ଆସିଥିଲେ । କହିବା ବାହୁଲ୍ୟ ଶ୍ରୀମତୀ ନନ୍ଦିନୀ ଶତପଥୀ ଏହାକୁ ଉଦ୍‌ଘାଟନ କରିଥିଲେ । ଦିଲ୍ଲୀ ପୋଲିସ୍ ଆଇ.ଜି. ନିକୁଞ୍ଜ କିଶୋର ରାୟ (ଓଡ଼ିଆ ହାଇକୋର୍ଟର ପ୍ରଥମ ପ୍ରଧାନ ବିଚାରପତି ବୀର କିଶୋର ରାୟଙ୍କ ଜ୍ୟେଷ୍ଠ ପୁତ୍ର)ଙ୍କ ସମେତ କେତେକ ଓଡ଼ିଆ ଆଇ.ଏ.ଏସ୍. ଏବଂ ଦିଲ୍ଲୀରେ ରହୁଥିବା ବହୁ ଓଡ଼ିଆ ଭଦ୍ରଲୋକ ସସ୍ତ୍ରୀକ ନାଟକ ଦେଖିବାକୁ ଆସିଥିଲେ । ଦର୍ଶକମାନଙ୍କ ମଧ୍ୟରେ ଆଉ ଯେଉଁ ବିଶିଷ୍ଟ ବ୍ୟକ୍ତିଥିଲେ ସେମାନଙ୍କ ମଧ୍ୟରେ ନ୍ୟାସନାଲ୍ ସ୍କୁଲ୍ ଅଫ୍ ଡ୍ରାମାର ଅଧ୍ୟକ୍ଷ ଏବଂ ବିଶିଷ୍ଟ ନାଟ୍ୟ ନିର୍ଦ୍ଦେଶକ ଡଃ ଆଲକାଜୀ ଏବଂ କେନ୍ଦ୍ର ସଂଗୀତ ନାଟକ ଏକାଡେମୀର ସଭାପତି (ନାଁ ମନେ ପଡୁନାହିଁ) ଅନ୍ୟତମ । ନାଟକଟି ମୋଟ ଦୁଇ ଘଣ୍ଟାର । ସାଢ଼େ ସାତଟାରେ ଆରମ୍ଭ ହୋଇ ସାଢ଼େ ନ'ଟାରେ ଶେଷ ହେଲା । ନାଟକ ଶେଷରେ ଡଃ ଆଲକାଜୀ ଆମର ନିର୍ଦ୍ଦେଶକଙ୍କୁ ଡାକିଲେ । ଅନନ୍ତବାବୁ ଆସିବା ପରେ ସେ କହିଲେ ଓଡ଼ିଶାରେ ଏତେ ଉଚ୍ଚ ଧରଣର ନାଟକ ମଞ୍ଚସ୍ଥ ହୁଏ ସେ କଳ୍ପନା କରିପାରୁ ନାହାନ୍ତି । ନନ୍ଦିନୀ ଦେବୀ ମଧ୍ୟ ନାଟକ ଦେଖି କହିଲେ ଯାହାହେଉ ତୁମେ ଆଜି ଓଡ଼ିଶା ମଥା ଉଚ୍ଚ କରିଦେଲ । ମତେ ପଚାରିଲେ ବରେନ୍ଦ୍ର ଟଙ୍କା ଅଛି ତ ? ମୁଁ କହିଲି ହଁ କାଲି ଏଠୁ ମିଳିବ । ଅସୁବିଧା ହେବ ନାହିଁ । ତା'ପରେ ସେଇ ଷ୍ଟେଜ୍‌ରେ ନନ୍ଦିନୀ ଦେବୀ, ଡଃ ଆଲାକଜୀ, ଏକାଡେମୀ ସଭାପତି, ନିକୁଞ୍ଜବାବୁ, ଆମର ତିନି ଚାରିଜଣ ବନ୍ଧୁ ବସି ଚା'ପାନ କଲୁ । ସମସ୍ତେ ବିଦାୟ ନେଲେ ।

ନିକୁଞ୍ଜବାବୁ କହିଲେ କ'ଣ ଅସୁବିଧା ହେଲେ ମୋତେ କହିବେ।

ନାଟକ ପରେ ଆମ ମନ ଖୁବ୍ ଖୁସି ହୋଇଗଲା । ସମସ୍ତେ ଖାଇ ପିଇ ସାରି ବସି ଗପସପ କରି ରାତି ବାରଟା ବେଳକୁ ଶୋଇବାକୁ ଗଲୁ । ତା'ପର ଦିନ ସକାଳୁ ଟଙ୍କା ପାଇଁ ସଙ୍ଗ ଏଣ୍ଡ ଡ୍ରାମା ଡିଭିଜନ ଅଫିସ୍ ସଫ୍ଦରଜଙ୍ଗ ଯିବାକୁ ସ୍ଥିରକଲୁ ଏବଂ ଟଙ୍କା ପାଇବା ପରେ ଦିନ ବାରଟା ଗୋଟେ ବେଳେ ଆଗ୍ରା ଯାଇ ତାଜମହଲ ଦେଖିବା ପାଇଁ ସମସ୍ତେ ନିଷ୍ପତ୍ତି ନେଲୁ । ପରଦିନ ସକାଳ ସାଢ଼େ ଦଶଟା ବେଳେ ମୁଁ ଦୁଇଜଣ ବନ୍ଧୁଙ୍କୁ ଧରି ସଙ୍ଗ ଏଣ୍ଡ ଡ୍ରାମା ଡିଭିଜନ୍ ଅଫିସ୍ ଗଲି । ଆମ ଫାଇଲ୍ ପାସ୍ ହୋଇଥିଲା । କାରଣ ନନ୍ଦିନୀ ଦେବୀଙ୍କ ପି.ଏ. ସିଂହବାବୁଙ୍କର ପୂର୍ବରୁ କଡ଼ା ନିର୍ଦ୍ଦେଶ ଥିଲା । ଅଧଘଣ୍ଟାଏ ମଧ୍ୟରେ ଟଙ୍କା ଧରି ଆମେ ଫେରିଲୁ ।

ଆମେ ସମସ୍ତେ ଛ'ଟି ଟାକ୍ସି କରି ଆଗ୍ରା ବୁଲିବାକୁ ଗଲୁ । ପ୍ରତ୍ୟେକ ଟାକ୍ସି ପାଞ୍ଚଶହ ଟଙ୍କା କରି ଭଡ଼ା ନେବା କଥା ସ୍ଥିର ହେଲା । ଆଗ୍ରା ଯାଇ ତାଜମହଲ ଦେଖିଲୁ । ଜୀବନରେ ସେଇ ପ୍ରଥମଥର ବହିରେ ପଢ଼ିଥିବା ମୋଗଲ ସମ୍ରାଟ ଶାହାଜାହାନଙ୍କ ପ୍ରେମ କାହାଣୀର ବାସ୍ତବ ରୂପ ଦେଖିଲି । ବାସ୍ତବରେ ଅଭିଭୂତ ହେବାଭଳି ବିଷୟ । ତାଜମହଲକୁ ଲାଗି ବିରାଟ ଆଗ୍ରା ଫୋର୍ଟ । ଏଇ ଫୋର୍ଟ ବା ଦୁର୍ଗରେ ଶାହାଜାହାନ ତାଙ୍କ ବନ୍ଦୀ ଜୀବନ ବିତାଇଥିଲେ । ଦୁଇମହଲା ଉପରେ ସେ ରହୁଥିବା କୋଠରୀ ଝରକା ମଧ୍ୟରେ ତାଜମହଲ ପ୍ରତିଦିନ ଦେଖୁଥିଲେ । ପ୍ରାଣପ୍ରିୟା ମମତାଜଙ୍କୁ ତାରି ଭିତରେ ଦେଖି ଦେଖି ଜୀବନର ଅବଶିଷ୍ଟ ସମୟ କଟାଇ ଦେଇଥିଲେ । ତାଜମହଲର ନିର୍ମାଣ କାରିଗରି ଅପୂର୍ବ । ସାମନାରେ ଲମ୍ବା ଜଳାଶୟ । ମଝିରେ ମଝିରେ ପାଣି ଫୁଆରା । ପଛପଟେ ଯମୁନା ନଦୀ ବହି ଯାଉଛି । ତାଜମହଲକୁ ପଛକରି ସମସ୍ତେ ଫଟୋ ଉଠାଇଲୁ । ପ୍ରତି ଫଟୋ ପିଛା ପାଞ୍ଚ ଟଙ୍କା । ତାଜମହଲରେ ଦୁଇଘଣ୍ଟା କଟାଇ ଖାଇବାକୁ ଆସିଲୁ । ଖାଇସାରି ଆଗ୍ରା ସହର ବୁଲି ପ୍ରାୟ ପାଞ୍ଚଟା- ସାଢ଼େ ପାଞ୍ଚଟା ବେଳକୁ ଦିଲ୍ଲୀ ବାହାରିଲୁ । ରାତି ଆଠଟା ବେଳକୁ ବାଟରେ ଏକ ଢାବାରେ ଗାଡ଼ି ରଖି ରାତ୍ରି ଖାଇବା ଖାଇଲୁ । ଦିଲ୍ଲୀରେ ଆମ ହଷ୍ଟେଲରେ ପହଞ୍ଚିଲା ବେଳକୁ ରାତି ପାଖାପାଖି ଏଗାରଟା । ଆମେ ଟାକ୍ସି ପଇସା ତୁଟାଇବାକୁ ଗଲାବେଳେ ହଠାତ୍ ଏକ ଗୋଳମାଳ ସୃଷ୍ଟି ହେଲା । ଦୁଇଜଣ ଡ୍ରାଇଭର ଆଠଶହ ଟଙ୍କା ଦାବି କଲେ । ସେ ଦି'ଜଣ ଦେଖିବାକୁ ଗୁଣ୍ଡା ଭଳି । ମୋଟାମୋଟା ନିଶ । ଆମେ ଯେତେବେଳେ ପାଞ୍ଚଶହ ଟଙ୍କାରୁ ଅଧିକ ଦେବୁ ନାହିଁ ବୋଲି କହିଲୁ ଜଣେ ତା'ଗାଡ଼ିରୁ ଗୋଟେ ଲମ୍ବା ଛୁରା ବାହାର କରି ଆମକୁ ବିଶେଷ କରି ମୋତେ ଧମକ ଦେଲା ଆଠଶହ ଟଙ୍କା ନଦେଲେ ଖତମ କରିଦେବି । ତୁମ୍ ସାଲା ଯାହାଁ ସେ ଯା' ନେହିଁ ସକ୍ତେ । ଆମେ ସମସ୍ତେ ହତଭମ୍ବ ହୋଇପଡ଼ିଲୁ । ମନରେ ଭୟ ହେଲା । ଆମ ଭିତରୁ ଜଣେ କହିଲା ବରେନ୍ଦ୍ର ବାବୁ ଦେଇ ଦିଅନ୍ତୁ । ମୁଁ କହିଲି ଦୁଇଜଣଙ୍କୁ ଦେବା ମାନେ ସମସ୍ତଙ୍କୁ ଦେବାକୁ ପଡ଼ିବ । ମୋ ପାଖରେ ଏତେଟଙ୍କା ନାହିଁ । ଦ୍ୱିତୀୟତଃ ଥରେ ଏମାନଙ୍କ କଥା ମାନିଗଲେ ସେମାନେ ଆମକୁ ଆହୁରି ଧମକ୍ ଯେ ନଦେବେ ତା'ର କିଛି ମାନେ ନାହିଁ । ହଠାତ୍ ମୋ ମନକୁ ନିକୁଞ୍ଜ କିଶୋର ରାୟଙ୍କ କଥା ମନେ ପଡ଼ିଲା । ଆମର ହିରୋଇନ୍ ବିରାଜଲକ୍ଷ୍ମୀ ତାଙ୍କ ପତ୍ନୀଙ୍କ ଝିଆରି । ମୁଁ ବିରାଜ ଲକ୍ଷ୍ମୀକୁ ତାଙ୍କ ଘରକୁ ସାଙ୍ଗେ ସାଙ୍ଗେ ଫୋନ୍ କରି ସବୁ କଥା ଜଣାଇବାକୁ କହିଲି । ସେ ହଷ୍ଟେଲ ତଳ ମହଲା ଅଫିସ୍‌ରୁ ଫୋନ୍ କଲା । ଶ୍ରୀମତୀ ରାୟ ଧରିଲେ । ମୁଁ ଯାଇ ତାଙ୍କୁ ସବୁ କହିଲି । ନିକୁଞ୍ଜ ବାବୁ ଫୋନ୍ ରିସିଭର ନେଇ ସବୁ ଶୁଣି କହିଲେ ତାଙ୍କୁ ପନ୍ଦର/କୋଡ଼ିଏ ମିନିଟ୍ ଅପେକ୍ଷା କରିବାକୁ କୁହ । ମୁଁ ଲୋକ ପଠାଉଛି । ମୁଁ ବାହାରକୁ ଆସି କହିଲି । ଆପ୍ ଲୋକ ଠହରିଏ । ହମାରା ଆଦ୍‌ମି ରୁପିୟା ଲେକର ଆତା ହୈ । ସେମାନେ ଟଙ୍କା ଆସୁଛି ଶୁଣି ପରସ୍ପର ମଧ୍ୟରେ ହସାହସି ହେଲେ । ପନ୍ଦର/କୋଡ଼ିଏ ମିନିଟ୍ ପରେ ବୁଲେଟ୍ ମୋଟର ସାଇକେଲ୍ ଶବ୍ଦ ଶୁଭିଲା । ପାଞ୍ଚଜଣ ପୋଖତ୍‌ମାର୍କା ପୋଲିସ୍

ସର୍ଜେଣ୍ଟ ପହଞ୍ଚିଲେ । ସେମାନଙ୍କ ମଧ୍ୟରୁ ଜଣେ ମୋତେ ଖୋଜିଲା । ମୁଁ ମୋ ପରିଚୟ ଦେଇ ସବୁକଥା କହିଲି । ଏବଂ ଯେଉଁ ଦୁଇ ଡ୍ରାଇଭର ଆମକୁ ଛୁରା ଦେଖାଇ ଧମକାଉଥିଲେ ସେମାନଙ୍କୁ ଚିହ୍ନାଇ ଦେଲି । ସେ ଦୁହେଁ କିଛି କହିବା ପୂର୍ବରୁ ଦୁଇଜଣ ସର୍ଜେଣ୍ଟ ସେମାନଙ୍କ ମୁଣ୍ଡବାଳକୁ ଧରି ଆଗେ ଢୋ ଢୋ ଚାପୁଡ଼ା ମାରିଲେ । ତା'ପରେ ସେମାନଙ୍କ ନିକଟରୁ ଛୁରା ଛଡ଼ାଇ ନେଲେ । ଏକଥା ଦେଖି ଅନ୍ୟ ଡ୍ରାଇଭରମାନେ ପୁରାପୁରି ଭୟଭିତ ହୋଇ ମୋ ପାଖକୁ ଆସି କହିଲେ ସାହେବ- ହମାରା ରୁପେୟା ଦେ ଦିଜିଏ- ହମଲୋଗ ଚଲେଯାଏଗେଁ । କିନ୍ତୁ ପୋଲିସ୍ ସର୍ଜେଣ୍ଟ ମୋତେ ଟଙ୍କା ଦେବାକୁ ମନା କରି ଥାନାରୁ ପୋଲିସ୍ ଜିପ୍ ମଗାଇଲେ । ସମସ୍ତଙ୍କୁ ଆରେଷ୍ଟ କରି ଥାନାକୁ ନେଇଗଲେ । ସେମାନଙ୍କ ଟାକ୍ସି ସେଇଠି ରହିଲା ।

ଆମର ପରଦିନ ସକାଳ ଦଶଟାରେ ଟ୍ରେନ୍ । ଆମେ କ'ଣ କରିବୁ ବୋଲି ଜଣେ ସର୍ଜେଣ୍ଟଙ୍କୁ ପଚାରିବାରେ ସେ କହିଲେ ଆପ୍‌ଲୋଗ ଯାଇଏ । କୁଛ୍ ଅସୁବିଧା ନେହିଁ ହୋଗା । କାଲ୍ ସବେରେ ହମାରା ଲୋଗ ଆକର ଆପଲୋଗଁକୋ ଷ୍ଟେସନ୍‌ମେଁ ଛୋଡ଼ ଦେଗେଁ । ଆମେ ସ୍ୱସ୍ତିର ନିଶ୍ୱାସ ମାରିଲୁ ।

ସକାଳ ଆଠଟା ବେଳକୁ ଏକ ପୋଲିସ୍ ବସ୍ ଆମ ହଷ୍ଟେଲ୍ ସାମ୍‌ନାରେ ପହଞ୍ଚିଲା । ଗତ ରାତିରେ ଆସିଥିବା ସର୍ଜେଣ୍ଟଙ୍କ ମଧ୍ୟରୁ ଜଣେ ସେ ବସ୍‌ରେ ଆସିଥିଲେ । ଆମେ ସମସ୍ତେ ବସ୍‌ରେ ବସି ଷ୍ଟେସନ୍ ଗଲୁ । ତୋଫାନ୍ ଏକ୍ସପ୍ରେସ୍ ଟ୍ରେନ୍‌ର ଶେଷ ଦୁଇ ଡବା ପୁରୀ ବଗି ବୋଲି ଲେଖାଥିଲା । ଆମେ ସେଥିରେ ବସିବା ପରେ ଦେହରେ ପ୍ରାଣ ପଶିଲା । ନିକୁଞ୍ଜବାବୁଙ୍କ ଉପକାର ଜୀବନରେ ଶୁଝିବା ମୁସ୍କିଲ୍ । ଟ୍ରେନ୍ ଛାଡ଼ିଲା । ଜୟ ଜଗନ୍ନାଥ କି ଜୟ । ଜୟ ଓଡ଼ିଶାର ଜୟ ଧ୍ୱନୀ କଲୁ । ଡବାରେ ଥିବା ଅନ୍ୟ ଓଡ଼ିଆ ଯାତ୍ରୀମାନେ ଆମ ସାଙ୍ଗରେ ପାଳି ଧରି ପ୍ରଭୁ ଶ୍ରୀଜଗନ୍ନାଥଙ୍କ ଜୟଧ୍ୱନୀ କଲେ । ଏତିକିବେଳେ ଚା'ବାଲା ଆସିଲା । ସମସ୍ତଙ୍କୁ ଚା' ଦେବା ପାଇଁ କହିଲି । ପରେ ପରେ ଗରମ ସିଙ୍ଗଡ଼ା ଧରି ହକର୍ ଆସିଲା । ଭୋକ ହେଉଥିଲା । ସମସ୍ତେ ସିଙ୍ଗଡ଼ା ଖାଇଲୁ । ଆମ ଡବାରେ ତା'ର ସବୁ ସିଙ୍ଗଡ଼ା ଶେଷ ହୋଇଗଲା । ମୋ ମନ ଆନନ୍ଦ ହେଲା ଯାହା ହେଉ ନିକୁଞ୍ଜବାବୁଙ୍କ ପାଇଁ ଆମର ତିନି ହଜାର ଟଙ୍କା ରହିଗଲା । ସ୍ଥିର ହେଲା ଭୁବନେଶ୍ୱର ଫେରିଯାଇ ଉପକାର ନାମରେ ଏକ ବ୍ୟାଙ୍କ୍ ଆକାଉଣ୍ଟ ଖୋଲି ସେଥିରେ ଏ ଟଙ୍କା ରଖାଯିବ ।

ତା'ପରଦିନ ସକାଳେ ଆମେ ଆସାନ୍‌ସୋଲ୍‌ରେ ପହଞ୍ଚିଲୁ । ସେଇଠି ଆମ ପୁରୀ ଡବା ତୁଫାନ୍ ଏକ୍ସପ୍ରେସ୍‌ରୁ ବିଚ୍ଛିନ୍ନ ହୋଇଗଲା । ଆମେ ସେଇ ଡବାରେ ନିତ୍ୟକର୍ମ ଶେଷ କଲୁ । ଆମ ଡବା ଯେଉଁଠାରେ ଥିଲା ତା' ସାମ୍‌ନାରେ ଆସାନ୍‌ସୋଲ୍ ଷ୍ଟେସନ୍‌ର ରେଷ୍ଟୁରାଣ୍ଟ । ସମସ୍ତେ ସେଠାକୁ ଯାଇ ଜଳଖିଆ ଖାଇଲୁ । ଦିନ ଦୁଇଟା ବେଳକୁ ଆମ ଡବା ଆସାନ୍‌ସୋଲ୍ ହାଓଡ଼ା ଟ୍ରେନ୍‌ରେ ଯୋଡ଼ାହୋଇ ଖଡ଼ଗପୁର ଯିବ । ସେଠାରେ ବିଚ୍ଛିନ୍ନ ହୋଇ ରାତି ବାରଟାରେ ପୁରୀ ଏକ୍ସପ୍ରେସ୍ ସହ ଯୋଡ଼ା ହେବ । ଏହା ବିରକ୍ତିକର । କିନ୍ତୁ ଆମକୁ ବେଶ୍ ମଜା ଲାଗୁଥାଏ । ଆସାନ୍‌ସୋଲ୍-ହାଓଡ଼ା ଟ୍ରେନ୍ ଛାଡ଼ିବା ପୂର୍ବରୁ ଆମେ ମଧ୍ୟାହ୍ନ ଭୋଜନ ଶେଷ କଲୁ । କାରଣ ରାତିରେ କ'ଣ ଖାଇବାକୁ ମିଳିବ ନମିଳିବ ସେଥିରେ ଆମର ସନ୍ଦେହ ଥାଏ ।

ରାତି ଆଠଟାସୁଦ୍ଧା ଆମେ ଖଡ଼ଗପୁରରେ ପହଞ୍ଚିଗଲୁ । ଡବାରୁ ଓହ୍ଲାଇ ଷ୍ଟେସନ୍ ପ୍ଲାଟଫର୍ମରେ ଗରମପୁରି, ଆଳୁଦମ୍ ଖାଇଲୁ । ବେଶ୍ ଏଥର ଚିନ୍ତାଗଲା । ଡବାକୁ ଫେରି କଥାବାର୍ତ୍ତା ହେଉହେଉ ଶୋଇଗଲୁ । ନିଦ ହୋଇ ଯାଇଛି । ନିଦ ଭାଙ୍ଗିଲା କଟକ ଷ୍ଟେସନ୍‌ରେ । ସମସ୍ତେ ଧଡ଼ପଡ଼ ହୋଇ ଉଠି ବିଛଣା ସଜାଡ଼ି ସୁଟ୍‌କେଶ୍‌ରେ ପୁରାଇଲୁ ।

ଅପେକ୍ଷାକଲୁ ଭୁବନେଶ୍ୱର ଷ୍ଟେସନ୍‌କୁ । ସକାଳ ଠିକ୍ ଛ'ଟାରେ ଭୁବନେଶ୍ୱରରେ ଟ୍ରେନ୍ ପହଞ୍ଚିଲା । ତା'ପରେ ବିଦାୟର ବେଳା । ମନଟା ସମସ୍ତଙ୍କର ଏକ ପ୍ରକାର ବିମର୍ଷ ହୋଇ ହୋଇଗଲା । ଦୁଇଦିନ ପରେ ସମସ୍ତେ ମିଶିବା ବୋଲି ମୁଁ କହିଲି । ଯିଏ ଯେଝା ବାଟ ଧରିଲେ ।

ଦି'ଦିନ ପରେ ସମସ୍ତଙ୍କୁ ଟେଲିଫୋନ୍ କଲି । ଯେଉଁମାନେ ଦିଲ୍ଲୀ ଯାଇଥିଲେ ସମସ୍ତଙ୍କୁ କହିଲି । ଷ୍ଟେଟ ଗେଷ୍ଟହାଉସ୍‌ରେ ଏହି ବୈଠକ ଡାକିଥିଲି । ଉଦ୍ଦେଶ୍ୟ ଥିଲା ବୈଠକରେ ପରବର୍ତ୍ତିକାର୍ଯ୍ୟପନ୍ଥା ସ୍ଥିର କରିବା ଏବଂ ଡିନର ଖାଇବା । ସନ୍ଧ୍ୟା ପାଞ୍ଚଟା ବେଳକୁ ସମସ୍ତଙ୍କୁ ଆସିବାକୁ ଅନୁରୋଧ କରିଥିଲି । ସନ୍ଧ୍ୟା ୬ଟା ସୁଦ୍ଧା ମୋଟ ୧୮ଜଣ ଆସିଥିଲେ । ସବୁଠାରୁ ବିସ୍ମୟଜନକ କଥା ହେଲା ବିଶ୍ୱଜିତ୍‌ବାବୁ ନଆସି ତାଙ୍କ ଇସ୍ତଫା ପତ୍ର ପଠାଇ ଦେଇଥିଲେ । ତାଙ୍କ ସାଙ୍ଗରେ ଆଉ ଦଶଜଣ ମଧ ଇସ୍ତଫାପତ୍ର ପଠାଇ ନଥିଲେ ମଧ ସେ ପ୍ରକାର ସୂଚନା ଦେଇଥିଲେ । ଶୁଣିଲି ବିଶ୍ୱଜିତ୍‌ବାବୁ ଆଉ ଏକ ନୂଆ ଦଳ ଗଢ଼ି ତାଙ୍କ ନାଟକ କରିବେ ।

ପରେ ମୁଁ ଚିନ୍ତା କଲି ଅନେକ ହୋଇଗଲା । ଏଣିକି ମୋର ପ୍ରଫେସନ୍ ଆଉ ଗଳ୍ପ ଲେଖିବା ପାଇଁ ମନୋନିବେଶ କରିବି । ଭୁବନେଶ୍ୱରର ପ୍ରଥମ ସୌଖୀନ ନାଟ୍ୟସଂସ୍ଥା ରୂପକାର ସଂସ୍ଥା ଭାଙ୍ଗିଗଲା । ମନରେ ଦୁଃଖ ହେଲା । କିନ୍ତୁ କିଛି କରିବାର ନଥିଲା । ମୁଁ ଲେଖାଲେଖିରେ ମନଦେଲି । ମୋର ତୃତୀୟ ଉପନ୍ୟାସ 'ନାୟିକା' ୧୯୭୦ ମସିହା ଜନ ସାହିତ୍ୟ ନବବର୍ଷ ସଂଖ୍ୟାରେ ପ୍ରକାଶ ପାଇଲା । ପୂର୍ବରୁ ୧୯୬୭ରେ ମୋର ଦ୍ୱିତୀୟ ଉପନ୍ୟାସ 'ବିଦଗ୍ଧା ବିହଙ୍ଗି' ସେଇ ଜନ ସାହିତ୍ୟରେ ପ୍ରକାଶ ପାଇଥିଲା । 'ନାୟିକା' ଉପନ୍ୟାସ ବସ୍ତୁତଃ ସେତେବେଳେ ଇଂଲଣ୍ଡ ରାଜନୀତିରେ ଚହଳ ପକାଇଥିବା କଲ୍‌ଗାର୍ଲ ଖ୍ରୀଷ୍ଟିୟାନ୍ କିଲର ଓ ଇଂଲଣ୍ଡର ପ୍ରତିରକ୍ଷା ମନ୍ତ୍ରୀ ପ୍ରଫ୍ୟୁମଙ୍କ ପ୍ରେମ କାହାଣୀକୁ ଭିତ୍ତିକରି ଲେଖା ଯାଇଥିଲା । ଏହି ଉପନ୍ୟାସ କେତେକାଂଶରେ ଅଶ୍ଳୀଳ ବୋଲି ସେତେବେଳେ କେତେକ ଅଭିଯୋଗ କରିଥିଲେ । ଫଳରେ ଜନସାହିତ୍ୟର ସେଇ ସଂଖ୍ୟାଟି ବେଶ୍ ଭଲ ବିକ୍ରି ହୋଇଥିଲା । ପରେ ଏ ଉପନ୍ୟାସଟି 'ଅବ୍ୟର୍ଥ ମୃଗୟା' ନାମରେ କଟକର ବୁକ୍ସ ଏଣ୍ଡ ବୁକ୍ସ ଛାପିଥିଲେ ।

## -ଭୁବନେଶ୍ୱର କଳାକେନ୍ଦ୍ର-

୧୯୬୯ ମସିହା ଶେଷ ହେବାକୁ ଆଉ ପାଞ୍ଚ ଛ'ଦିନ ବାକି । ଦିନେ ସକାଳେ ଆମ ଘରକୁ ଭୁବନେଶ୍ୱର କଳାକେନ୍ଦ୍ରର କର୍ମକର୍ତ୍ତାମାନେ ଆସି ପହଞ୍ଚିଲେ । ଯାହା ମନେ ପଡୁଛି ରବିବାର ହେବ । ପୂଜାରୀକୁ ଚା' କରିବା ପାଇଁ କହିଲି । ସମସ୍ତେ ବସି କଥାବାର୍ତ୍ତା ହେଉଛୁ । କଳାକେନ୍ଦ୍ର ସଭାପତି ଜଗନ୍ନାଥ ମହାପାତ୍ର କହିଲେ ବରେନ୍ଦ୍ରବାବୁ ଆପଣତ ରାଜଧାନୀ କଳାକେନ୍ଦ୍ର ଆଉ ରୂପକାର ସଂସ୍ଥା ଛାଡ଼ି ଦେଇଛନ୍ତି । ଆମ ଅନୁଷ୍ଠାନକୁ ଟିକେ ସାହାଯ୍ୟ କରନ୍ତୁ । ମୁଁ କିଛି ବୁଝିନପାରି କହିଲି ମୁଁ କି ଲୋକ ଯେ ଆପଣଙ୍କ ଅନୁଷ୍ଠାନକୁ ସାହାଯ୍ୟ କରିବି । ତାଙ୍କର ସମ୍ପାଦକ ଭାଗବତ ମହାରଣା କହିଲେ ଆପଣଙ୍କୁ ଆମେ ଉପସଭାପତି କରିବାକୁ ଚାହୁଁଛୁ । ମୁଁ ପ୍ରଥମେ କିଛି କହିଲି ନାହିଁ । କେବଳ କହିଲି ମୁଁ ଚିନ୍ତା କରି ଆପଣମାନଙ୍କୁ କହିବି । ଦି'ଦିନ ପରେ ଜଗନ୍ନାଥ ବାବୁ ସେକ୍ରେଟେରିଏଟ୍‌ରେ ଦେଖା ହେଲେ । ମୋତେ ତାଙ୍କ ରୁମ୍‌କୁ ଡାକି ଚା' ମଗାଇଲେ । ସେତେବେଳେ ଜଗନ୍ନାଥବାବୁ ପଲିଟିକାଲ୍ ସର୍ଭିସେ୍ ବିଭାଗ(ଏବେ ଜେନେରାଲ ଆଡ୍‌ମିନିଷ୍ଟ୍ରେସନ୍ ଡିପାର୍ଟମେଣ୍ଟ)ର ଡେପୁଟି ସେକ୍ରେଟାରୀ ଥିଲେ । ସେ ସେକ୍ରେଟେରିଏଟ୍ ସର୍ଭିସେସ୍‌ରୁ ପଦୋନ୍ନତି ପାଇ ଡେପୁଟି ସେକ୍ରେଟାରୀ ହୋଇଥିଲେ । ଚା' ଖାଉ ଖାଉ ସେ ସେଇ କଳାକେନ୍ଦ୍ର କଥା ଉଠାଇଲେ । କହିଲେ ଆପଣ କ'ଣ ଭାବୁଛନ୍ତି । ମୋର ମନେ ହୁଏ ଆପଣଙ୍କର କୌଣସି ଅସମ୍ମାନ ହେବ ନାହିଁ । ଆପଣ ଯଦି

ଉପସଭାପତି ହେବାକୁ ଇଚ୍ଛା କରୁନାହାନ୍ତି ତେବେ ସଭାପତି ହୁଅନ୍ତୁ । ମୁଁ ଜଗନ୍ନାଥବାବୁଙ୍କ କଥା ଶୁଣି ଅସୁବିଧାରେ ପଡ଼ିଲି । ମନେ ହେଲା ସଭାପତି ନହେଲେ ମୁଁ ଯିବି ନାହିଁ ବୋଲି ସମ୍ଭବତଃ ସେମାନେ ଭାବି ନେଇଛନ୍ତି । ଅଗତ୍ୟା ମୋତେ ରାଜି ହେବାକୁ ହେଲା । ପରେ ୧୯୭୦ ମସିହା ଜାନୁଆରୀ ମାସରେ ମୁଁ କଳାକେନ୍ଦ୍ରର ଉପସଭାପତି ହୋଇ ଯୋଗଦେଲି । ମୋତେ କଳାକେନ୍ଦ୍ରର କର୍ମକର୍ତ୍ତାମାନେ ଅନୁରୋଧ କଲେ ଯେ କଳାକେନ୍ଦ୍ରର ଉପର ମହଲା କିପରି ହେବ ସେ ସମ୍ପର୍କରେ କିଛି ପଦକ୍ଷେପ ନେବାକୁ । ତା' ସଙ୍ଗେ ସଙ୍ଗେ ଭୁବନେଶ୍ୱର ବାହାରେ ବିଚାରି ଅଧିକ କାର୍ଯ୍ୟକ୍ରମ ମିଳିବ ସେ ଆଲୋଚନା ହେଲା । ସରକାରଙ୍କର ରାଜସ୍ୱ ବିଭାଗରୁ ଉପରମହଲା ନିର୍ମାଣ ପାଇଁ ସାହାଯ୍ୟ ଯୋଗାଡ଼ କରିବାକୁ ସେମାନେ ମୋତେ ପରାମର୍ଶ ଦେଲେ । ମାତ୍ର ୧୯୭୦ରେ ଓଡ଼ିଶା ଜନକଂଗ୍ରେସ ସ୍ୱତନ୍ତ୍ର ମିଳିତ ମନ୍ତ୍ରିମଣ୍ଡଳ ଭାଙ୍ଗିଗଲା । ତେଣୁ ଅପେକ୍ଷା କରିବାକୁ ହେଲା ପରବର୍ତ୍ତିସରକାରକୁ ।

ନିର୍ବାଚନରେ ସ୍ୱତନ୍ତ୍ର ଓ ଉତ୍କଳ କଂଗ୍ରେସ ମଧ୍ୟରେ ବୁଝାମଣା ହୋଇ ମିଳିତ ମନ୍ତ୍ରିମଣ୍ଡଳ ଗଠିତ ହେଲା । ମାତ୍ର ମୁଖ୍ୟମନ୍ତ୍ରୀ କିଏ ହେବ ସେ ସମ୍ପର୍କରେ କୌଣସି ନିଷ୍ପତ୍ତି ହୋଇ ପାରିଲା ନାହିଁ । ଗୋଟିଏ ପଟେ ସ୍ୱତନ୍ତ୍ର ଦଳର ନେତା ପୂର୍ବତନ ମୁଖ୍ୟମନ୍ତ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ଏବଂ ଅନ୍ୟପଟେ ଉତ୍କଳ କଂଗ୍ରେସ ନେତା ପୂର୍ବତନ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ । ଉଭୟେ ମୁଖ୍ୟମନ୍ତ୍ରୀ ପଦପାଇଁ ଦାବି କରିବାରେ ତୃତୀୟ ବ୍ୟକ୍ତି ଏହି ପଦ ମାରିଦେଲେ । ସେ ହେଲେ ୮୧ ବର୍ଷ ବୟସ୍କ ବିଶ୍ୱନାଥ ଦାଶ । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ପ୍ରଥମ ପ୍ରଧାନମନ୍ତ୍ରୀ ରୂପେ ସେ କାର୍ଯ୍ୟ କରିଥିଲେ । ୧୯୭୧ ନିର୍ବାଚନରେ ଓଡ଼ିଶା ବିଧାନସଭାର ୧୪୦ଟି ଆସନ ମଧ୍ୟରୁ କଂଗ୍ରେସ(ଆର୍) ୫୧, ଉତ୍କଳ କଂଗ୍ରେସ- ୩୩, ସ୍ୱତନ୍ତ୍ର- ୩୬ ପାଇଥିବା ବେଳେ ଅନ୍ୟଦଳମାନେ ଗୋଟିଏରୁ ଚାରୋଟି ପର୍ଯ୍ୟନ୍ତ ପାଇଥିଲେ । ଏମାନଙ୍କ ସହ ଝାଡ଼ଖଣ୍ଡ ଦଳ (୪ଟି ଆସନ) ଯୋଗଦେବା ଫଳରେ ଏମାନେ ବିଧାନସଭାରେ ସଂଖ୍ୟା ଗରିଷ୍ଠତା ଲାଭକରିଥିଲେ । ୧୯୭୧ ଏପ୍ରିଲ୍ ୩ ତାରିଖରେ ବିଶ୍ୱନାଥ ଦାଶ ଉତ୍କଳ କଂଗ୍ରେସ- ସ୍ୱତନ୍ତ୍ର ଓ ଝାଡ଼ଖଣ୍ଡ ମିଳିତ ମନ୍ତ୍ରିମଣ୍ଡଳର ମୁଖ୍ୟମନ୍ତ୍ରୀ ଭାବେ ଶପଥ ନେଲେ । ମାତ୍ର କ୍ରମାଗତ ଭାବେ ଏହି ସରକାରରେ ଅସ୍ଥିରତା ଲାଗି ରହିଲା । ତେଣୁ ସରକାର ଯେକୌଣସି ସମୟରେ ଭାଙ୍ଗଯାଇପାରେ ବୋଲି ଆଶଙ୍କା ପ୍ରକାଶ ପାଇଲା । ୧୯୭୨ ମସିହା ଜୁନ୍ ୯ ତାରିଖରେ ଉତ୍କଳ କଂଗ୍ରେସ ସ୍ୱତନ୍ତ୍ର ଦଳ ସହ ସମ୍ପର୍କ ଛିନ୍ନ କରି କଂଗ୍ରେସରେ ଯୋଗଦେବା ପାଇଁ ନିଷ୍ପତ୍ତି କଲେ । ଫଳରେ ବିଶ୍ୱନାଥ ଦାଶ ମନ୍ତ୍ରିମଣ୍ଡଳର ପତନ ଘଟିଲା । ଜୁନ୍ ୧୪ ତାରିଖରେ ଶ୍ରୀମତୀ ନନ୍ଦିନୀ ଶତପଥୀ ଦିଲ୍ଲୀରୁ ଆସି ଓଡ଼ିଶାରେ କଂଗ୍ରେସ ସରକାର ଗଠନ କଲେ । କଂଗ୍ରେସ ସହ ଏହି ଯୋଗଦାନରେ ବସ୍ତୁତଃ ନୀଳମଣି ରାଉତରାୟ ମୁଖ୍ୟ ସୂତ୍ରଧର ଥିଲେ । ତେଣୁ ଶ୍ରୀମତୀ ଶତପଥୀଙ୍କ ମନ୍ତ୍ରିମଣ୍ଡଳରେ ସେ ଉପମୁଖ୍ୟମନ୍ତ୍ରୀ ରୂପେ ଦାୟିତ୍ୱ ଗ୍ରହଣ କଲେ । ମାତ୍ର ସବୁଠାରୁ ବିଡ଼ମ୍ବନାର ବିଷୟ ହେଲା ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଛ'ଜଣ ଉତ୍କଳ କଂଗ୍ରେସ ନେତାଙ୍କୁ କଂଗ୍ରେସରେ ଗ୍ରହଣ କରିବାକୁ ମନା କରିଦେଲେ । ସେମାନେ ହେଲେ ବିଜୁ ପଟ୍ଟନାୟକ, ପ୍ରତାପ ମହାନ୍ତି, ପ୍ରହଲାଦ ମଲ୍ଲିକ, ରାମକୃଷ୍ଣ ପଟ୍ଟନାୟକ, ଶରତ କର ଓ ଜଗନ୍ନାଥ ମଲ୍ଲିକ । ଫଳରେ ଉତ୍କଳ କଂଗ୍ରେସ ପୁଣିଥରେ ପୁନଃଗଠନ ହେବାର ଆଶଙ୍କା ସୃଷ୍ଟି ହେଲା । ଏହି ସମୟରେ ପ୍ରଜାସୋସାଲିଷ୍ଟ ଦଳର ଚାରିଜଣ ସଦସ୍ୟ କଂଗ୍ରେସରେ ଯୋଗଦେଲେ । ସେମାନଙ୍କ ମଧ୍ୟରେ ବାଙ୍କବିହାରୀ ଦାସ ଅନ୍ୟତମ । ବାଙ୍କବାବୁ ଶ୍ରୀମତୀ ଶତପଥୀଙ୍କ ସରକାରରେ ରାଜସ୍ୱ ମନ୍ତ୍ରୀ ରୂପେ ଦାୟିତ୍ୱ ଗ୍ରହଣ କରିଥିଲେ ।

ଜଣେ ସାମ୍ବାଦିକ ରୂପେ ମୁଁ ଓଡ଼ିଶାରେ ଘଟିଯାଉଥିବା ଏହି ରାଜନୈତିକ ଦୃଶ୍ୟପଟକୁ ଅତି ନିଖୁଣ ଭାବେ 'ମାତୃଭୂମି'ରେ ପ୍ରକାଶ କରୁଥିଲି । ମୋର ମନେ ଅଛି ସ୍ୱତନ୍ତ୍ର- ଜନକଂଗ୍ରେସ ମନ୍ତ୍ରିମଣ୍ଡଳରେ ମହତାବଙ୍କ ବିରୁଦ୍ଧରେ ଏକ କମିଶନ ବସାଇବା ପାଇଁ ମୁଖ୍ୟମନ୍ତ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ନିଷ୍ପତ୍ତି ନେଲେ । ଜନକଂଗ୍ରେସ ଦଳ ଏହା

ଶୁଣିବା ପରେ ସରକାରରୁ ଓହରି ଆସିବାକୁ ସ୍ଥିର କଲେ । ସେତେବେଳେ ଓଡ଼ିଶାରେ ରାଜ୍ୟପାଳ ଥିଲେ ସୌକତ ଅଲି ଆନ୍‌ସରି । ୧୯୭୧ ଜାନୁଆରୀ ୯ ତାରିଖରେ ରାଜ୍ୟପାଳ ଦିଲ୍ଲୀ ଯିବାପାଇଁ ସ୍ଥିର ହୋଇଥିଲା । ସେ ସେଦିନ ପାଇଲଟ ଧର୍ମଘଟ ଥିବାରୁ ରାଜ୍ୟପାଳ ଟ୍ରେନ୍‌ରେ କଲିକତା ଯାଇ ସେଠାରୁ ତା' ପରଦିନ ବିମାନରେ ଦିଲ୍ଲୀ ଯିବାପାଇଁ ସ୍ଥିର ହୋଇଥିଲା । ଏହି ଅବସ୍ଥାରେ ଜନ କଂଗ୍ରେସ ଦଳ ସରକାରରୁ ସମର୍ଥନ ପ୍ରତ୍ୟାହାର କରିନେବାରୁ ସରକାର ସ୍ୱାଭାବିକ ଭାବେ ଭାଙ୍ଗିଯିବା କଥା । ମୁଁ ରାଜ୍ୟପାଳ ଆନ୍‌ସରି ଦିଲ୍ଲୀ ଯିବା କଥା ଶୁଣି ଷ୍ଟେସନ୍‌କୁ ଆସିଲି । ଭୁବନେଶ୍ୱର ଷ୍ଟେସନ୍‌ରେ ମୁଁ ପହଞ୍ଚିବା ପରେ ପରେ ରାଜ୍ୟପାଳଙ୍କ ଜିନିଷ ପତ୍ର ରାଜଭବନ ଗାଡ଼ିରେ ଆସି ପହଞ୍ଚି ଷ୍ଟେସନ ପ୍ଲାଟଫର୍ମରେ ଓହ୍ଲାଗଲା । ମୁଁ ରାଜ୍ୟପାଳଙ୍କ ଅଗମନକୁ ଅପେକ୍ଷା କରିଥିଲି । ହଠାତ୍ ଦେଖିଲି କିଛି ସମୟ ପରେ ରାଜଭବନର ସେଇ ଗାଡ଼ି ଆସି ପହଞ୍ଚିଲା । ଯେଉଁ ଜିନିଷ ସବୁ ଅନ୍‌ଲୋଡ଼ ହୋଇଥିଲା ସେ ସବୁ ପୁଣି ଥରେ ସେ ଗାଡ଼ିରେ ଲଦା ହୋଇ ରାଜଭବନରେ ଗଲା । ଏ ପ୍ରକାର କାର୍ଯ୍ୟ ଦେଖି ମୋ ମନରେ କିଛି ସନ୍ଦେହ ହେଲା । ମୁଁ ସାଇକେଲ୍ ଧରି ଆସେମ୍ବ୍ଲି ରାସ୍ତାରେ ମୁଖ୍ୟମନ୍ତ୍ରୀ ସିଂହଦେଓଙ୍କ ଘରକୁ ଆସିଲି । ସମଗ୍ର ରାସ୍ତାଟି ସେଦିନ ଅନ୍ଧକାରରେ ଭରି ଯାଇଥିଲା । ମୋର ମନେହେଲା ଏହା ସରକାର ପତନର ପୂର୍ବାଭାବ ନୁହେଁ ତ ?

ମୁଖ୍ୟମନ୍ତ୍ରୀ ପି.ଏମ୍.ଜି. ଛକ ପାଖରେ ଡାହାଣ ହାତ (ଷ୍ଟେସନ ଆଡୁ ଗଲେ) ଶେଷ କ୍ୱାଟରର ପୂର୍ବ କ୍ୱାଟରରେ ରହୁଥିଲେ । ମୁଁ ସାଇକେଲ ଧରି ଫାଟକ ଭିତରେ ପଶିଲି । ସେତେବେଳେ ସମୟ ରାତି ୯ଟା । ତାଙ୍କ ବାସଭବନ ମଧ୍ୟ ଅନ୍ଧକାର ଥିଲା । ତଳେ ତାଙ୍କ ପି.ଏ.ଙ୍କ ରୁମ୍‌ରେ ବଡ଼ ମହମବତୀ ଜଳୁଥିଲା । ଯୁଗଳ ମିଶ୍ର ନାମରେ ଜଣେ ଓ.ଏ.ଏସ୍. ଅଫିସର ତାଙ୍କର ପି.ଏ. ଥିଲେ । ମୋତେ ଦେଖି ପଚାରିଲେ ଧଳବାବୁ କ'ଣ ହେଲା । ଏ ଅନ୍ଧକାରରେ କୁଆଡ଼େ ଆସିଲେ ? ମୁଁ ହସିହସି କହିଲି କାହିଁ, ସରକାର ତ ଅନ୍ଧାରରେ । ଆଲୋକର ମୁହଁ ଦେଖିବା ସମ୍ଭବତଃ ଆଉ ନୁହେଁ । ଯୁଗଳ ବାବୁ ହସିଲେ । କହିଲେ ମୁଖ୍ୟମନ୍ତ୍ରୀ ନାହାନ୍ତି । ରାଜଭବନ ଯାଇଛନ୍ତି । ମୁଁ କିଛି ନକହି ତାଙ୍କୁ ଚାହିଁଲି । ସେ କହିଲେ ରାଜ୍ୟପାଳଙ୍କୁ ଇସ୍ତଫା ଦେବା ପାଇଁ । ଆମେ କଥାବାର୍ତ୍ତା ହେଉଥିବା ବେଳେ ମୁଖ୍ୟମନ୍ତ୍ରୀଙ୍କ ଧଳା ଚେଭରଲେଟ୍ ଇମ୍ପାଲା କାର୍ ଆସି ପହଞ୍ଚିଲା । ମୁଖ୍ୟମନ୍ତ୍ରୀ ଓହ୍ଲାଇ ଆସିଲେ । ମୁଁ ନମସ୍କାର କରି ପଚାରିବାକୁ ଉଦ୍ୟତ ହେଉଥିବା ବେଳେ ମୁଖ୍ୟମନ୍ତ୍ରୀ କହିଲେ ମୁଁ ଇସ୍ତଫା ଦେଇ ଆସିଲି । ସେ ଯୁଗଳବାବୁଙ୍କୁ ମୋତେ ଇସ୍ତଫା କପି ଦେବାପାଇଁ କହିଲେ । ମୁଁ ସେଇଠୁ ମାତୃଭୂମିକୁ ଫୋନ୍ କଲି । ବିଚିବାବୁ ଅପେକ୍ଷା କରିଥିଲେ । ତା'ପରଦିନ ସକାଳୁ ପୁଷ୍ଟିକିଆ 'ମାତୃଭୂମି' ପ୍ରକାଶ ପାଇଲା ଓଡ଼ିଶା ସରକାର ପତନର ସମ୍ବାଦ ନେଇ ।

ନନ୍ଦିନୀ ଶତପଥୀ ଓଡ଼ିଶାର ପ୍ରଥମ ମହିଳା ମୁଖ୍ୟମନ୍ତ୍ରୀ ରୂପେ ୧୯୭୨ ଜୁନ୍ ୯ ତାରିଖରେ ଦାୟିତ୍ୱ ଗ୍ରହଣ କଲେ । ତାଙ୍କ ମନ୍ତ୍ରିମଣ୍ଡଳରେ ବାଙ୍କବିହାରୀ ଦାସ ଅର୍ଥ ଓ ରାଜସ୍ୱ ମନ୍ତ୍ରୀ ରୂପେ ଯୋଗ ଦେଇଥିଲେ । ବାଙ୍କବାବୁ ଖବର କାଗଜର ସାମ୍ବାଦିକମାନଙ୍କ ସହ ଅତ୍ୟନ୍ତ ଘନିଷ୍ଠ । ମୁଁ ତାଙ୍କୁ କଳାକେନ୍ଦ୍ରକୁ କିଛି ଅର୍ଥିକ ଅନୁଦାନ ଦେବାପାଇଁ ଅନୁରୋଧ କରିଥିଲି । କଳାକେନ୍ଦ୍ରର ମୁଁ ଉପସଭାପତି ବୋଲି ଜାଣିବା ପରେ ସେ କହିଲେ ଏବେ ତ ମାର୍ଚ୍ଚ ମାସ । ଯାହା ଦେବା କଥା ଦିଆ ହୋଇ ଗଲାଣି । ତେବେ ଯେଉଁ ଅର୍ଥ ଫେରି ଆସିଥିବ ବା ବଣ୍ଟା ହୋଇନଥିବ ସେଥିରୁ କିଛି ଦେବା । ଏପ୍ରିଲ୍ ଶେଷ ବେଳକୁ ମୋତେ ଟିକେ ଯୋଗାଯୋଗ କର । ମାର୍ଚ୍ଚ ମାସରେ ଆସେମ୍ବ୍ଲି ଚାଲିଥାଏ ।

ଏହା ପୂର୍ବରୁ ନଭେମ୍ବର ମାସରେ କଳକେନ୍ଦ୍ର ପାଇଁ ମୁଁ କଲିକତାରେ ଏକ କାର୍ଯ୍ୟକ୍ରମ ଠିକ୍ କରି ଦେଇଥିଲି । ବାଙ୍କୀର ବି.ଡି.ଓ. ନରେନ୍ଦ୍ର ମହାନ୍ତି ଦିନେ ମୋ ଭୁବନେଶ୍ୱର ବସାକୁ ଆସି ମୋତେ କହିଲେ ବରେନ୍ଦ୍ର ବାବୁ ଆପଣ ତ ଭୁବନେଶ୍ୱର କଳାକେନ୍ଦ୍ରର ଉପସଭାପତି ଅଛନ୍ତି । ମୋର ଭିଣୋଇ ସତ୍ୟଶେଖର ପଟ୍ଟନାୟକ କଲିକତା ପୋର୍ଟ ଟ୍ରଷ୍ଟର

ଚେୟାରମ୍ୟାନ୍ । ଖିଦିରପୁର ଓଡ଼ିଆ ହାଇସ୍କୁଲର ସେ ସଭାପତି । ଖିଦିରପୁର ହାଇସ୍କୁଲର ସାହାଯ୍ୟାର୍ଥେ ସେ ଏକ ଚାରିଟି ସୋ'କରିବା ପାଇଁ ଇଚ୍ଛୁକ । ଆପଣଙ୍କ ଅନୁଷ୍ଠାନ ଯଦି ଯାଏ ତେବେ ମୁଁ ତାଙ୍କ ସହ କଥାବାର୍ତ୍ତା କରିବି । ସେ ମୋତେ ଏ ଦାୟିତ୍ୱ ଦେଇଛନ୍ତି । ମୁଁ ତାଙ୍କ ପ୍ରସ୍ତାବ ଶୁଣି କହିଲି ଆଜି ସନ୍ଧ୍ୟାରେ ମୁଁ ଏ ସମ୍ପର୍କରେ ଅନ୍ୟ କର୍ମକର୍ତ୍ତାମାନଙ୍କ ସହ ଆଲୋଚନା କରି ଆପଣଙ୍କୁ ଜଣାଇବି । ସନ୍ଧ୍ୟାରେ ମୁଁ ଜଗନ୍ନାଥ ବାବୁଙ୍କୁ ଏକଥା କହିଲି । ସେ କହିଲେ ଇଏ ତ ଚମତ୍କାର ପ୍ରସ୍ତାବ । ଚାଲନ୍ତୁ କେନ୍ଦ୍ରକୁ ଯାଇ ଆଲୋଚନା କରିବା । କେନ୍ଦ୍ରରେ ସମସ୍ତେ ଥିଲେ । ଅନ୍ନଦା ଦାସ, ସମ୍ପାଦକ ଭାଗବତ ମହାରଣା ଏବଂ ଆଉ ଅନ୍ୟମାନେ ଥିଲେ । ସମସ୍ତେ ଶୁଣିଲେ । ସ୍ୱାଗତ କଲେ । ମୁଁ କହିଲି ଦେଖନ୍ତୁ ଆମେ ଅନ୍ତତଃ ଭଲ ପ୍ରୋଗ୍ରାମ କରିବା ଉଚିତ୍ । କଲିକତା ଯାଇ ବଦ୍‌ନାମ ହୋଇ ଯେପରି ନ ଆସୁ । ସମସ୍ତେ କହିଲେ ଆପଣ ତ ଦି'ବର୍ଷ ହେବ ଆମର କର୍ମକର୍ତ୍ତା । ଆମ ପ୍ରୋଗ୍ରାମ ତ ଦେଖୁଛନ୍ତି । ଭୁବନେଶ୍ୱରରେ ଆମକୁ କମ୍ପିଟ୍ କରିବା ଭଳି ଅନୁଷ୍ଠାନ କାହିଁ ? ଆମର ଯେତେ ସୁନ୍ଦର ସୁନ୍ଦର ଆର୍ଟିଷ୍ଟ ଅଛନ୍ତି ସମସ୍ତେ ଯେକୌଣସି ପ୍ରୋଗ୍ରାମକୁ ପୁରା ସଫଳ କରିଦେବେ । ମୁଁ କହିଲି ତେବେ ଆମେ କେତେ ଟଙ୍କା ଦେବା ପାଇଁ କହିବା । ସେ ଅନୁସାରେ ସେ କଥାବାର୍ତ୍ତା କରିବେ । ସ୍ଥିର ହେଲା ଯିବାଆସିବା ରହିବା ଖାଇବା ଦାୟିତ୍ୱ ତାଙ୍କର । ତା' ବାଦ୍ ପ୍ରତି ସୋ' ପାଇଁ ତିନିହଜାର ଟଙ୍କା । ତା' ପରଦିନ ନିଜେ ସତ୍ୟଶେଖର ବାବୁ ଭୁବନେଶ୍ୱରରେ ଆସି ପହଞ୍ଚିଲେ । ସନ୍ଧ୍ୟାରେ ତାଙ୍କୁ ନେଇ କଳାକେନ୍ଦ୍ରକୁ ଗଲି । ସବୁ କଥାରେ ସେ ରାଜିହେଲେ ଏବଂ କେବଳ ପ୍ରତି ସୋ' ପିଛା ଦୁଇ ହଜାର ଟଙ୍କା ଦେବେ ବୋଲି କହିଲେ । ସେ କହିଲେ କଲିକତାରେ ଅନ୍ତତଃ ଦୁଇଟି ସୋ' ମଧ୍ୟ ସ୍ପନସର କରି ଦେବେ । ସମସ୍ତେ ରାଜି ହେଲେ । ଫେବୃଆରୀ ପ୍ରଥମ ସପ୍ତାହରେ ଏହି କାର୍ଯ୍ୟକ୍ରମ ଅନୁଷ୍ଠିତ ହୋଇଥିଲା । କଲିକତାରେ ଲେଡି ରାନୁ ମୁଖାର୍ଜୀଙ୍କ ଫାଇନ୍ ଆର୍ଟ ଗ୍ୟାଲେରୀ ଅଡ଼ିଟୋରିଅମ୍‌ରେ ଦୁଇ ରାତି ସୋ' ହୋଇଥିଲା । ପୁରା ପ୍ରେକ୍ଷାଳୟ ଦର୍ଶକ ଭରପୁର ଥିଲା । ମୁଁ କଳାକେନ୍ଦ୍ର ପକ୍ଷରୁ ମଞ୍ଚରେ ଉଦ୍‌ବୋଧନ ଦେଇଥିଲି ।

ଆମେ ଭୁବନେଶ୍ୱର ଫେରି ଆସିବା ପରେ ରାଜସ୍ୱ ବିଭାଗ ଅନୁଦାନ ପାଇଁ ଲାଗି ପଡ଼ିଲୁ । ଏପ୍ରିଲ ମାସରେ ବାଙ୍କବାବୁ ୩୫ ହଜାର ଟଙ୍କା ଅନୁଦାନ ମଞ୍ଜୁର କଲେ । ମୁଁ ଏ ବିଷୟ ଆସି ସମସ୍ତଙ୍କୁ କହିଲି । ପୁରୀ କଲେକ୍ଟର ସେ ଟଙ୍କା ଦେବାକଥା । କେନ୍ଦ୍ରର ସମ୍ପାଦକ ମତେ କହିଲେ ସାର୍- ଆପଣ ଟିକେ କଲେକ୍ଟରଙ୍କୁ କହିଦେଲେ ମୁଁ ଯାଇ ଟଙ୍କା ନେଇ ଆସନ୍ତି । ସେତେବେଳେ ପୁରୀ କଲେକ୍ଟର ଥିଲେ ସଚ୍ଚିଦାନନ୍ଦ ରଥ । ମୋ ସାଙ୍ଗରେ ତାଙ୍କର ଭଲ ସମ୍ପର୍କ ଥିଲା । ମୁଁ ତାଙ୍କୁ ଫୋନ୍ କରି କହିଲି ଭାଇନା- କାଲି ଟଙ୍କାଟା ଡ୍ର' କରି ଦେଲେ ଆମ ସମ୍ପାଦକ ରସିଦ୍ ଦେଇ ନେଇ ଆସିବେ । ସେ କିନ୍ତୁ କହିଲେ ଟଙ୍କାତ ଆପଣଙ୍କ ନାଁରେ ହୋଇଛି । ତେଣୁ ରସିଦ୍ ଆପଣଙ୍କୁ ଦେବାକୁ ହେବ । ମୁଁ ସେଇ ଅନୁସାରେ ୩୫ ହଜାର ଟଙ୍କାର ଏକ ରସିଦ୍ ଲେଖି ସମ୍ପାଦକ ଭାଗବତ ମହାରଣାଙ୍କୁ ଅଥରାଇଜ କରିଦେଲି ଆଣିବା ପାଇଁ । ସାତଦିନ ପରେ ମିଟିଂ ଡକାହେଲା ଘର ତିଆରି କାମ କରିବା ପାଇଁ । ମୁଁ ଟଙ୍କା କଥା ପଚାରିଲି । କେନ୍ଦ୍ର ଆକାଉଣ୍ଟରେ ଜମା ହୋଇଛି କି ନାହିଁ ବୋଲି ଜାଣିବାକୁ ଚାହିଁଲି । ମୁଁ ଦେଖିଲି ସେକ୍ରେଟେରିଏଟ୍‌ର ତିନି/ଚାରିଜଣ କିରାଣି ସେଠି ଗୋଟେ ଦଳ କରିଥା'ନ୍ତି । ମୋତେ ଭାଗବତ ମହାରଣା କହିଲେ ହଁ ଟଙ୍କା ଜମା ହୋଇଛି । ମୁଁ କହିଲି ମତେ ସେ ଜମା ରସିଦ ଦିଅନ୍ତୁ । କାରଣ ମୁଁ ସରକାରଙ୍କୁ ଗୋଟେ ରିପୋର୍ଟ ଦେବି । ଜଗନ୍ନାଥବାବୁ ଚୁପ୍‌ଚାପ୍ ହୋଇ ବସିଥାନ୍ତି । ମୁଁ ଯେତେବେଳେ ଜୋର୍ ଦେଇ ରସିଦ୍ କଥା ପଚାରିଲି ସମ୍ପାଦକ କହିଲେ ମୁଁ ତାକୁ ମୋ ଆକାଉଣ୍ଟରେ ଜମା କରିଛି । ମୁଁ ଆଶ୍ଚର୍ଯ୍ୟ ହେଲି । କହିଲି କେନ୍ଦ୍ରର ଟଙ୍କା ଆପଣଙ୍କ ଆକାଉଣ୍ଟରେ କିପରି ଜମା କଲେ ? ସେ କହିଲେ ସେଥିରେ ଅସୁବିଧା କିଛି ନାହିଁ । ମୁଁ ତ ଆଣି ଖର୍ଚ୍ଚ କରିବି । ତେଣୁ ବାରମ୍ୱାର ଡବଲ୍ ସିଗ୍‌ନେଚର୍ କରି ଟଙ୍କା ଉଠାଇବା ଅସୁବିଧା । କାମ କରିବାରେ ଅସୁବିଧା ହେବ । ମୁଁ ଜଗନ୍ନାଥବାବୁଙ୍କୁ ଚାହିଁଲି । ସେ ଚୁପ୍ । ଏହି ସମୟରେ ଆଉଜଣେ ସଦସ୍ୟ (ପୁରା ନାମ ମନେପଡୁନି) କହିଲେ ସେଥିରେ ଅସୁବିଧା କିଛି ନାହିଁ । ମୁଁ ଟିକେ ରହି ସମସ୍ତଙ୍କୁ ଚାହିଁଲି । ତା'ପରେ ଉଠୁଉଠୁ କହିଲି କାଲି ଏଗାରଟା ସୁଦ୍ଧା ମୁଁ ଯଦି ୩୫

ହଜାର ଟଙ୍କାର ବ୍ୟାଙ୍କ ରସିଦ୍ ନପାଏ ତେବେ ପୋଲିସ୍‌ରେ ଏଫ୍.ଆଇ.ଆର୍. ଦେବି ଏବଂ ପୁରୀ କଲେକ୍ଟରଙ୍କୁ ସବୁ ଜଣାଇ ଆପଣଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରିବାକୁ କହିବି । ମୁଁ ଉଠି ଚାଲି ଆସିଲି ।

ସେକ୍ରେଟେରୀଏଟ୍‌ର କିଛି କିରାଣିଙ୍କ ଚରିତ୍ର ଏହିଭଳି । ରାଜଧାନୀ କଳା ସଂସଦରେ ମୁଁ ଯାହା ଅନୁଭବ କରିଥିଲି ଏଠି ମଧ୍ୟ ସେଇ ଅନୁଭୂତି । ଏମାନଙ୍କ ନିମ୍ନ ମାନସିକତା ଯୋଗୁ ଯେଉଁ ଅନୁଷ୍ଠାନରେ ଏମାନେ କର୍ମକର୍ତ୍ତା ସେଠି ସେ ଅନୁଷ୍ଠାନର ଅବସ୍ଥା ଖରାପ ହୋଇଥାଏ । ମୁଁ ଯାହା ଶୁଣିଲି ପୂର୍ବରୁ କଳାକେନ୍ଦ୍ରରେ ଶାନ୍ତନୁ ମହାପାତ୍ର, ଇଞ୍ଜିନିୟର ନରେନ୍ଦ୍ର ମଲ୍ଲ ଏବଂ ଆଉ କେତେକ ବଡ଼ ବଡ଼ ଅଫିସର ଥିଲେ । ସେମାନେ ସରକାରୀ ଅନୁଦାନ ଓ ବାହାରୁ ସାହାଯ୍ୟ ଆଣି ଘର ତିଆରି କରିଥିଲେ । ମାତ୍ର ଏମାନେ କିଛି ଟଙ୍କା ମାରି ନପାରିବାରୁ ସେମାନଙ୍କ ବିରୁଦ୍ଧରେ ନାନା ପ୍ରକାର କେଲେଙ୍କାରି କରିଥିଲେ ଏବଂ ଟଙ୍କାଠାରୁ ଆରମ୍ଭ କରି ଝିଅ କାରବାର ଆଦି ଅତି ନିମ୍ନ ସ୍ତରର ଚରିତ୍ର ଚିତ୍ରଣ କରି ସେମାନଙ୍କୁ ବିଦା କରିଥିଲେ । ସେମାନେ ଯିବାପରେ ପରେ ଅନୁଷ୍ଠାନ ପୁରା ମାଡ଼ଖାଇ ଯିବାରୁ ମତେ ଧରିଲେ । ଏସବୁ କଥା ସେଇଦିନ ରାତିରେ ମୋତେ କଳାକେନ୍ଦ୍ରର ଜଣେ ବେହେଲା ଶିକ୍ଷକ ମୋ ଘରକୁ ଆସି କହିଲେ । ମୁଁ ସକାଳେ ଗତ ସନ୍ଧ୍ୟାର ଘଟଣା ମଲ୍ଲବାବୁଙ୍କୁ କହି ଏମାନଙ୍କ ସମ୍ପର୍କରେ ପଚାରିବାରେ ସେ କହିଲେ ଆପଣଙ୍କ ବିରୁଦ୍ଧରେ ଆଜି ଝିଅ କାରବାର ନେଇ ବେନାମୀ ପଡ଼ିବ । ତେବେ ଆପଣ ଠିକଣା ଲୋକ । ଦେଖନ୍ତୁ ସେ ଆଜି ଟଙ୍କା କେନ୍ଦ୍ର ଆକାଉଣ୍ଟରେ ଜମା କରୁଛି କି ନାହିଁ । ସେତେବେଳେ କ୍ୟାପିଟାଲ୍ ଥାନା ଇନ୍ସପେକ୍ଟର ଥା'ନ୍ତି ପଟ୍ଟନାୟକ ବାବୁ । ମୁଁ ତାଙ୍କୁ ସବୁକଥା ଟେଲିଫୋନ୍‌ରେ କହିଲି । ସେ କହିଲେ ଆପଣ ଅପେକ୍ଷା କରନ୍ତୁ । ବାରଟା ସୁଦ୍ଧା ରସିଦ୍ ନପାଇଲେ ମୋତେ ଗୋଟେ କମ୍ପ୍ଲେନ୍ ଲେଖି ଦେବେ । କିନ୍ତୁ ସାଢ଼େ ଏଗାରଟା ବେଳକୁ କେନ୍ଦ୍ରର ପିଅନ୍ ଷ୍ଟେଟ୍ ବ୍ୟାଙ୍କରେ କେନ୍ଦ୍ର ଆକାଉଣ୍ଟରେ ୩୫ ହଜାର ଟଙ୍କା ଡିପୋଜିଟ୍ ରିସିଟ୍ ଆଣି ଦେଲା । ତା'ପରେ ମୁଁ ଦେଖିଲି ଏମାନଙ୍କ ସହ ବସିବା ନିଜ ଇଜ୍ଜତ ନିଜ ଇଜ୍ଜତ ଉପରେ ପଡ଼ିବ । ତେଣୁ ଇସ୍ତଫା ଦେଲି ।

## -ମୋର ବିବାହ-

ମୋ ଜୀବନରେ ନୂତନ ଅଧ୍ୟାୟ ସୃଷ୍ଟି ହେଲା ୧୯୭୧ ମସିହାରେ । ସେଇ ବର୍ଷ ମୋର ବିବାହ ସମ୍ପନ୍ନ ହେଲା । ଚୌଦ୍ୱାରର ଶ୍ରୀ ଜୟରାମ ଜେନାଙ୍କ ବଡ଼ ଝିଅ ସ୍ନେହଲତା ମୋର ଧର୍ମପତ୍ନୀ ହେଲେ । ବିବାହ ଦିନ ୧୯୭୧ ଜୁନ୍ ୨୭ ତାରିଖ । ଆମ ଗାଁର ପ୍ରଭାତ ମିଶ୍ର ସେତେବେଳେ ଚୌଦ୍ୱାର ଲୁଗାକଳରେ ଟେକ୍ସଟାଇଲ୍ ଇଞ୍ଜିନିୟର ଥିଲେ । ମୋ ଶଶୁର ଥିଲେ ସେଇ ମିଲ୍‌ର ଟେକ୍‌ନିକାଲ୍ ଅଫିସର । ପ୍ରଭାତ ଭାଇନା ଏ ପ୍ରସ୍ତାବ ଆଣି ଆମ ଘରେ ଦେଲେ । ସ୍ନେହଲତାଙ୍କ ଜାତକର ଟିପ୍ପଣୀ ମଧ୍ୟ ଦେଲେ । ମୋ ଦଦେଇ ଖୁବ୍ ଭଲ ଜ୍ୟୋତିଷ ଶାସ୍ତ୍ରବିତ୍ ଥିଲେ । ସେ ଜାତକ ଗଣନା କରି ମୋ ସହ ରାଜଯୋଟକ ଥିବା ଏବଂ ମୋ ଜୀବନରେ ସେ ଆନନ୍ଦର ଓ ଉନ୍ନତିର କାରଣ ହେବ ବୋଲି କହିଲେ । ବିବାହ ଏକ ପ୍ରକାର ସ୍ଥିର ହେଲା । ମୁଁ ଦେଖିବାକୁ ଯାଇ ମୋର ପସନ୍ଦ ଜଣାଇଦେଲି । ଶେଷରେ ଭୁବନେଶ୍ୱର ଅନନ୍ତ ବାସୁଦେବ ମନ୍ଦିରରେ ଜୁନ୍ ୬ ତାରିଖରେ ନିର୍ବନ୍ଧ ହେଲା । ସେଦିନ ବିଭାଘର ଜୁନ୍ ୨୭ ତାରିଖରେ ହେବ ବୋଲି ସ୍ଥିର ହେଲା । ନିର୍ବନ୍ଧ ପରେ ବିବାହ ପୂର୍ବରୁ ଯେଉଁ ପ୍ରଥା ଥାଏ ସେ ସବୁ କେଜାଣି କାହିଁକି କନ୍ୟାଘର ପକ୍ଷରୁ ପାଳନ କରିବାରେ ହେଳା ହେଲା । ମୁଁ ଶୁଣିଲି ସେମାନେ ବାହାଘର କରିବେ କି ନାହିଁ ଚିନ୍ତା କରୁଛନ୍ତି । ଏହାପରେ ଆଉ କିଛି କରିବାର ନଥିଲା । ପ୍ରଭାତ ଭାଇନାଙ୍କୁ ଟେଲିଫୋନ୍ କରି ଜାଣିଲି ମୋ ନାଁରେ କେହି କିଛି କହିଛି । ତା'ପରେ ଆଉ ଏକ ସମସ୍ୟା ହେଲା ମୁଁ ସାମ୍ବାଦିକ । ସେତେବେଳେ ଗାଁ ଗହଳିରେ 'ସାମ୍ବାଦିକ' କ'ଣ ଏବଂ ଏହା କି ଚାକିରି, ଏଥିରେ ଦରମା ଅଛି ନା ନାହିଁ, ଇତ୍ୟାଦି ନାନା ପ୍ରଶ୍ନ ଉଠିଲା । ଅବଶ୍ୟ ଏ ସବୁ ମୁଁ ପରେ ମୋ

ସ୍ତ୍ରୀଙ୍କ ଠାରୁ ଜାଣିଲି । ମୁଁ ସେତେବେଳେ ଭୁବନେଶ୍ୱରରେ ଦୁଇ ନମ୍ବର ୟୁନିଟ୍‌ରେ ଟାଇପ୍-୪ ଏବଂ ୨୬/୨୮/୨ କ୍ୱାର୍ଟରରେ ରହୁଥାଏ । ଏ କ୍ୱାର୍ଟରଟି ମାର୍କେଟ୍ ବିଲ୍‌ଡିଂ ପଛର ପଛ ଲାଇନ୍‌ରେ ଥିଲା । ଟାଇପ୍-୪ କ୍ୱାର୍ଟରରେ ଦୁଇଟି ବଡ଼ ରୁମ୍, ଗୋଟିଏ ବାଥ୍‌ରୁମ୍, ଲାଟ୍ରିନ୍, ରୋଷେଇଘର, ଷ୍ଟୋର୍ ରୁମ୍ ଥାଏ । ଦୁଇପଟେ ବଡ଼ ବଡ଼ ବାରଣ୍ଡା ଥାଏ । ମୋର କ୍ୱାର୍ଟରର ଦୁଇ ବାରଣ୍ଡାରେ ବାଉଁଶ ଗ୍ରିଲ୍ ଲଗା ହୋଇଥାଏ । ମୁଁ ଗୋଟିଏ ରୁମ୍ ମୋର ବେଡ୍‌ରୁମ୍ କରିଥାଏ । ଅନ୍ୟ ରୁମ୍‌ଟି ଗେଷ୍ଟରୁମ୍ ହୋଇଥାଏ । ସେତେବେଳେ ମୁଁ ବହୁତ ସିଗାରେଟ୍ ଟାଣୁଥିଲି । ବଜାରରେ ସେତେବେଳେ କ୍ୟାପଷ୍ଟାନ୍ ସିଗାରେଟ୍ ସବୁଠୁ ଦାମୀ ସିଗାରେଟ୍ ଥିଲା । ଦଶଟିକିଆ ସିଗାରେଟ୍ ପ୍ୟାକେଟ୍ ଦାମ୍ ଥିଲା ଟଙ୍କାଏ ଅଶୀ ପଇସା । କ୍ୟାପଷ୍ଟାନ ସିଗାରେଟ ଟାଣିବା ସେତେବେଳେ ଗୋଟେ ଭିନ୍ନ ମର୍ଯ୍ୟାଦା ଥିଲା ।

ମୁଁ ମଝିରେ ମଝିରେ କ୍ଲବରେ କିମ୍ବା ଷ୍ଟେଟ୍ ଗେଷ୍ଟ ହାଉସ୍‌ରେ ବିଭିନ୍ନ ପାର୍ଟିରେ ମଦ୍ୟପାନ କରୁଥିଲି । ତେବେ ମୋର ମଦ୍ୟପାନ ଗୋଟିଏ/ଦୁଇଟି ପେଗ୍ ମଧ୍ୟରେ ସୀମାବଦ୍ଧ ଥିଲା । ଜୀବନରେ କେବେ ହେଲେ ମୁଁ ମାତାଲ୍ ହୋଇନି । ମୋର ମଦ୍ୟପାନ ଆଉ ସିଗାରେଟ ଟାଣିବା ପଛରେ ଏକ କାହାଣୀ ନହେଲେ ମଧ୍ୟ ଏକ ଘଟଣା ରହିଛି । ୧୯୬୫ ମସିହା ପର୍ଯ୍ୟନ୍ତ ମୁଁ ମଦ ସିଗାରେଟ୍ ଛୁଇଁ ନଥିଲି । ୧୯୬୫ ମସିହା ନଭେମ୍ବର ବା ଡିସେମ୍ବର ମାସରେ (ଠିକ୍ ତାରିଖ ମନେ ପଡୁନାହିଁ) କଟକ ପ୍ରେସ୍‌କ୍ଲବ୍‌ରେ ଷ୍ଟ୍ର ପ୍ରଡ଼କ୍ସ(ରାୟଗଡ଼ା କାଗଜ କଳ) ପକ୍ଷରୁ ଏକ ସାମ୍ବାଦିକ ସମ୍ମିଳନୀ ହୋଇଥିଲା । ସେତେବେଳେ ପ୍ରେସ୍‌କ୍ଲବ୍ ଥିଲା କ୍ୟାଣ୍ଟନ୍‌ମେଣ୍ଟ ରୋଡ୍‌ରେ । ଏବେ ଯେଉଁଠି ଅଲ୍‌ଇଣ୍ଡିଆ ରେଡିଓ କୋଠା ହୋଇଛି ସେତେବେଳେ ସେହି ବ୍ରିଟିଶ୍ ଅମଳର ବିରାଟ ଚାଳ ବଙ୍ଗଳା ଥିଲା । ସେଇ ବଙ୍ଗଳାରେ ଗୋଟିଏ ପଟେ ପି.ଆଇ.ବି. ଅଫିସ୍ ଥିଲା ଏବଂ ଅନ୍ୟପଟେ ପ୍ରେସ୍ କ୍ଲବ୍ ଥିଲା । ସେଦିନ ପ୍ରେସ୍ କନ୍‌ଫରେନ୍ସ ପରେ କକ୍‌ଟେଲ୍ (ଡିନର ସହ ମଦ୍ୟପାନ) ପାର୍ଟିଥିଲା । ୧୯୬୫ରେ କଟକରେ ସାମ୍ବାଦିକଙ୍କ ସଂଖ୍ୟା ଥିଲା ୯/୧୦ଜଣ । ତେବେ ରିପୋର୍ଟର ସାମ୍ବାଦିକଙ୍କ ସହ କିଛି ସହ ସମ୍ପାଦକ ମଧ୍ୟ ଆସି ଯୋଗ ଦେଉଥିଲେ । ସେ ଦିନ ମୋର ସୌଭାଗ୍ୟ କି ଦୁର୍ଭାଗ୍ୟ ମୁଁ ଜାଣେନା, ମୁଁ ବସିଥିଲି ଏନ୍.ଆର୍.ସ୍ୱାମୀଙ୍କ ପାଖରେ । ଏନ୍.ଆର୍.ସ୍ୱାମୀ ସେତେବେଳେ ଓଡ଼ିଶାର ବିଖ୍ୟାତ ଓ ସର୍ବବରିଷ୍ଠ ସାମ୍ବାଦିକ । ତାଙ୍କ ଆରପାଖକୁ ବସିଥିଲେ ପ୍ରଜାତନ୍ତ୍ରର ଗୋରାଚାନ୍ଦ ମିଶ୍ର । କକ୍‌ଟେଲ୍ ଆରମ୍ଭ ହେଲା । ଆଜି ମୋର ସ୍ପଷ୍ଟ ମନେ ଅଛି ସେଦିନ ବ୍ଲାକ୍ ଡଗ୍ ସ୍କଚ୍ ହୁଇସ୍କି ଦିଆଯାଉଥିଲା । ଗୋଟିଏ ଗ୍ଲାସ୍‌ରେ ସ୍ୱାମୀ ବାବୁ ହୁଇସ୍କି ଢାଳି ମୋ ହାତକୁ ବଢ଼ାଇ ଦେଲେ । ମୁଁ କହିଲି ସାର୍ ମୁଁ ଡ୍ରିଙ୍କ୍ କରେ ନାହିଁ । ସେ କହିଲେ ତେବେ କ'ଣ କର । ରିପୋର୍ଟର ହୋଇଚ କ'ଣ କେବଳ ଭୂଦାନ ସମ୍ମିଳନୀକୁ ଯିବାପାଇଁ ? ଗୋରାଚାନ୍ଦ ମିଶ୍ର ଉଠି ଆସି ହୁଇସ୍କିରେ ସୋଡ଼ା ଢାଳି ମୋତେ କହିଲେ ଟିକେ ଟିକେ ପିଇ ଦେ । ତୁ ଟୋକାଟା- ସ୍କଚ୍ ହୁଇସ୍କି ପିଇବାକୁ ମନା କରୁଛୁ କ'ଣ ? ମୋର ମନେ ହେଲା ସତେ ଯେପରି ମୋ ସାମ୍‌ନାରେ ଅମୃତ ରଖାଯାଇଛି । ନ ପିଇଲେ ସ୍ୱର୍ଗକୁ ଯାଇହେବ ନାହିଁ । କିଛି ବୁଝି ପାରିଲିନି କ'ଣ କରିବି । ବ୍ଲାକ୍ ଡଗ୍ ହୁଇସ୍କି ଗ୍ଲାସ୍ ସେହିଭଳି ଟେବୁଲ୍ ଉପରେ ଥାଏ । ଟିକେ ଅନ୍ୟମନସ୍କ ହୋଇଗଲି । ଗାଁରେ ମୋର ଜଣେ ପରିଚିତ ମଦ ପିଇ ଯେପରି ଢଳି ଢଳି ଯାଉ ଯାଉ ରାସ୍ତା ଉପରେ ପଡ଼ିଯା'ନ୍ତି ସେଇ ଦୃଶ୍ୟ ମନକୁ ଆସିଲା । ତେବେ ମୁଁ ସେଇଭଳି କ'ଣ ମଦୁଆ ହୋଇ ଢଳି ଢଳି ରାସ୍ତାରେ ପଡ଼ିବି ? ହଠାତ୍ ଦେଖିଲି ସ୍ୱାମୀବାବୁ ଗ୍ଲାସ୍‌ଟାକୁ ମୋ ମୁହଁରେ ଲଗାଇ ଦେଲେ । କହିଲେ ଢୋକେ ପିଇଦେ । କିଛି ବୁଝିବା ପୂର୍ବରୁ ଢୋକେ ସୋଡ଼ାମିଶା ସ୍କଚ୍ ହୁଇସ୍କି ମୋ ପେଟକୁ ଚାଲିଗଲା । ସେଇ ଆରମ୍ଭ । ସେଦିନ ସେଇ ଗୋଟିଏ ପେଗ୍ ପିଇଲି । ଖାଇସାରି ସାଇକେଲ୍‌ରେ ମୁଁ, ଗୋରା ଭାଇନା ରାଜା ବଗିଚା ଲେବର କଲୋନିକୁ ଆସିଲୁ । ଘରେ ପହଞ୍ଚି ଖଟରେ ପଡୁପଡୁ ନିଦ ହୋଇଗଲା । ଇଏ ହେଲା ମୋର ମଦ୍ୟପାନର ଅଯମାରମ୍ଭ ।

## -ଦିଲ୍ଲୀରେ ସାମ୍ବାଦିକ ତାଲିମ୍-

ସେତେବେଳ ପର୍ଯ୍ୟନ୍ତ ମୋର ସିଗାରେଟ୍ ଖିଆ ଆରମ୍ଭ ହୋଇନି । ସିଗାରେଟ ଆରମ୍ଭ ହେଲା ୧୯୬୮ ମସିହାରେ । ଦିଲ୍ଲୀରେ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ କମ୍ୟୁନିକେସନ ନାମରେ କେନ୍ଦ୍ର ସରକାରଙ୍କର ଏକ ଅନୁଷ୍ଠାନ ଥାଏ । ଏଥିରେ କେନ୍ଦ୍ର ସରକାରଙ୍କ ଅଧୀନରେ ଥିବା ପ୍ରେସ୍ ଇନ୍‌ଫର ମେସନ୍ ବ୍ୟୁରୋ, ଡି.ଏ.ଭି.ପି. କ୍ଷେତ୍ର ପ୍ରଚାର ସଂସ୍ଥା ଓ ଅଲ୍‌ଇଣ୍ଡିଆ ରେଡିଓର ସମ୍ବାଦ ବିଭାଗରେ କାମ କରୁଥିବା ବ୍ୟକ୍ତିମାନଙ୍କୁ ଏକ କ୍ରାସ କୋର୍ସ ବା ଜରୁରୀ ପାଠ୍ୟକ୍ରମ ଶିକ୍ଷା ଦିଆଯାଏ । ଏମାନଙ୍କ ସହ ପ୍ରତିଥର ଦେଶର ଦଶଜଣ ଆଞ୍ଚଳିକ ଭାଷ୍ୟ କାଗଜର ସାମ୍ବାଦିକଙ୍କୁ ମଧ୍ୟ ଏଥିରେ ସୁଯୋଗ ଦିଆଯାଏ । ଜାନୁଆରୀରୁ ଜୁନ୍ ଏବଂ ଜୁଲାଇରୁ ଡିସେମ୍ବର ଏହିଭଳି ବର୍ଷରେ ଦୁଇଥର ଏହି ପାଠ୍ୟକ୍ରମ ଶିକ୍ଷା ଦିଆଯାଏ । ଯେଉଁ ସାମ୍ବାଦିକ ଏହି ପାଠ୍ୟକ୍ରମ ପାଇଁ ଯୋଗ୍ୟ ହେବେ ସେମାନଙ୍କର ରହିବା ଖାଇବା-ପିଇବା ସହ ପକେଟ୍‌ମନି ବା ସ୍କଲାରସିପ୍ ମାସିକ ଅଢ଼େଇଶହ ଟଙ୍କା ଦିଆଯାଉଥିଲା । ସୌଭାଗ୍ୟବଶତଃ ମୁଁ ଓଡ଼ିଶାରୁ ଏହି ପାଠ୍ୟକ୍ରମ ପାଇଁ ମନୋନୀତ ହେଲି । ଆମ ପ୍ରେସ୍‌କୁ ଚିଠି ଆସିଲା । ପ୍ରଥମେ ମୋତେ ଛାଡ଼ିବା ପାଇଁ ମନା ହେଲା । ତା'ପରେ ବିଚିବାବୁ(ବିଚିତ୍ରାନନ୍ଦ କର) କହିଲେ ନା- ବରେନ୍ଦ୍ର ବାବୁ ଯା'ନ୍ତୁ । ସେ ଫେରିବା ପରେ ଆମର ଏକ ଆସେଟ୍ ହେବେ । ମୋତେ ବିଚିବାବୁ କହିଲେ ବରେନ୍ଦ୍ର ବାବୁ ଆପଣ ଦିଲ୍ଲୀ ଯା'ନ୍ତୁ କିନ୍ତୁ ଭୁବନେଶ୍ୱରରେ ଆମକୁ କିଏ ନିଉଜ୍ ଦେବ ତା'ର ବ୍ୟବସ୍ଥା କରିବେ । ମୁଁ ସେତେବେଳେ ପ୍ରଜାତନ୍ତ୍ରର ରମେଶ ଧଳ ଏବଂ ସ୍ୱରାଜ୍ୟର ବୈରାଗୀ ମହାନ୍ତିଙ୍କୁ ଏକଥା କହିଲି । ସେମାନେ କହିଲେ ତୁମେ ପ୍ରେସ୍‌ରେ ବିଚିବାବୁଙ୍କୁ କହିଦିଅ ପ୍ରତିଦିନ ଆମ ପାଖକୁ ପ୍ରେସ୍‌ରୁମ୍‌କୁ ଦିନ ବାରଟାରୁ ଗୋଟାକ ମଧ୍ୟରେ ଫୋନ୍ କଲେ ଯାହା ଥିବ ଆମେ ଡାକିଦେବୁ । ଆମ ଭିତରୁ ଯିଏ ହେଲେ ନିଶ୍ଚୟ ଥିବ । ମୁଁ ସେକଥା ବିଚିବାବୁଙ୍କୁ କହି ଉଭୟଙ୍କ ସହ କଥାବାର୍ତ୍ତା କରାଇଦେଲି । ଏ ଘଟଣା ୧୯୬୭ ଡିସେମ୍ବର ୨୦ ବା ୨୧ ତାରିଖ । ଡିସେମ୍ବର ୨୩ ତାରିଖରେ ମୁଁ ଦିଲ୍ଲୀ ଗଲି । ତାହା ହେଉଛି ମୋ ଜୀବନର ପ୍ରଥମ ଦିଲ୍ଲୀ ଯାତ୍ରା । ସେ ଅନୁଷ୍ଠାନର ଚିଠି, ଟେଲିଫୋନ୍ ନମ୍ବର ସବୁନେଇ ମୁଁ ଦିଲ୍ଲୀ ଗଲି । ଡିସେମ୍ବର ୨୫ ତାରିଖ ସକାଳେ ପ୍ରାୟ ଆଠଟା ସମୟରେ ତୋଫାନ୍ ଏକ୍ସପ୍ରେସ୍‌ରୁ ଓହ୍ଲାଇ ଏକ ଟାକ୍ସି କରି ଓଡ଼ିଶା ଭବନ ଗଲି । ଓଡ଼ିଶା ଭବନର ମ୍ୟାନେଜର ଥିଲେ ତାପସ ଦାସ । ତାପସ ବାବୁ ୟୁନିଟ୍-୨ରେ ମୁଁ ଯେଉଁଘରେ ରହୁଥିଲି ତା'ର ସାମ୍ନା ଘରେ ରହୁଥିଲେ । ୧୯୬୭ରେ ଜୁନ୍ ବା ଜୁଲାଇରେ ତାଙ୍କୁ ଓଡ଼ିଶା ଭବନ ମ୍ୟାନେଜର କରି ସରକାର ପଠାଇଥିଲେ । ତେଣୁ ମୋର ସୁବିଧା ହେଲା । ମୁଁ ଓଡ଼ିଶା ଭବନରେ ପହଞ୍ଚିବା ପରେ ଜାଣିଲି ରୁମ୍ ଆଦୌ ନାହିଁ । ମାତ୍ର ତାପସ ବାବୁ ତାଙ୍କ ଅଫିସ୍‌କୁ ଲାଗି ଗୋଟିଏ ଛୋଟ ରୁମ୍‌ରେ ମୋତେ ରହିବାକୁ ଦେଲେ । ସେତେବେଳେ ଦିଲ୍ଲୀରେ ପ୍ରବଳ ଶୀତ । ତେବେ ମୁଁ କମ୍ବଳ, ରେଜେଇ, ଫୁଲ୍ ସୁଇଟର ଆଦି ନେଇ ଯାଇଥିଲି । ତାପସ ବାବୁଙ୍କୁ ସେ ପ୍ରତିଷ୍ଠାନର ଟେଲିଫୋନ୍ ନମ୍ବର ଦେଲି । ସେ ଟେଲିଫୋନ୍ କରି ସବୁ ବୁଝିଲେ ଏବଂ ୨୬ ତାରିଖରୁ ହଷ୍ଟେଲ୍ ମିଳିଯିବ ବୋଲି କହିଲେ । ୨୬ ତାରିଖ ସକାଳେ ଗାଧୋଇ ପାଧୋଇ ମୁଁ ମୋର ସୁଟ୍‌କେଶ୍, ବେଡିଂ ଧରି ବାହାରିଲି । ଓଡ଼ିଶା ଭବନ କାର୍‌ରେ ତାପସ ବାବୁଙ୍କ ସାଙ୍ଗରେ ମୁଁ ସେଠାକୁ ଗଲି । ସେ କେଉଁ ଜାଗା ଆଜି ମୋର ହେତୁ ନାହିଁ । ଯେତିକି ମନେ ପଡୁଛି ଦିଲ୍ଲୀ ବିଶ୍ୱବିଦ୍ୟାଳୟ ପାଖାପାଖି ହେବ ।

ତାପସବାବୁ ପୂର୍ବଦିନ ଠାରୁ ଟେଲିଫୋନ୍ କରି କହି ଦେଇଥିବାରୁ ମୋ ପାଇଁ ଗୋଟିଏ ରୁମ୍‌ର ଗୋଟିଏ ବେଡ୍ ରିଜର୍ଭ ହୋଇ ରହିଥିଲା । ଆମେ ପହଞ୍ଚିଲା ମାତ୍ରେ କେୟାର ଟେକର୍ ମୋତେ ନେଇ ମୋ ରୁମ୍ ଦେଖାଇ ଦେଲେ । ରୁମ୍‌ରେ ଦୁଇଟି ଖଟ । ମୋଟା ଫିତା ଖଟ । ମୋ ବେଡିଂ ବିଛାଇ ଦେଲି । ରୁମ୍‌ରେ ଆଟାଚଡ୍ ବାଥ୍ ଲାଟ୍ରିନ୍ । ବେଶ୍ ଆରାମପ୍ରଦ ।

ପାଠ୍ୟକ୍ରମ ଆରମ୍ଭ ହେବା ପୂର୍ବଦିନ ମୋ ରୁମ୍‌ରେ ଅନ୍ୟ ଖଟଟି ଅଧିକାର କଲେ ସୁବିମଳ ଭଟ୍ଟାଚାର୍ଯ୍ୟ । ସୁବିମଳଙ୍କ ବୟସ ମୋ ଠାରୁ ଦି'ବର୍ଷ ବଡ଼ । କଲିକତାରୁ ପ୍ରକାଶ ପାଉଥିବା ଦୈନିକ ବସୁମତିର ସେ ଥିଲେ ସହ ସଂପାଦକ । ମୁଁ ଭୁବନେଶ୍ୱରରୁ ଆସିଛି ବୋଲି ଶୁଣି ସେ ଖୁସି ହୋଇଗଲେ । କହିଲେ ଯାହାହେଉ ବଂଗାଳି ଓଡ଼ିଆ ଭଲ ପଟିବ । ମୁଁ ଭାବିଥିଲି ଯଦି ତେଲୁଗୁ-ତାମିଲ କି ମରାଠା-ଗୁଜରାଟି ହୋଇଥିବେ ବଡ଼ ଅସୁବିଧା ହେବ । ଆପଣ ଥିବାରୁ ଭଲ ହେଲା । ଜାନୁଆରୀ ମାସ । ପ୍ରବଳ ଶୀତ । ମୁଁ ଆଗରୁ କହିଛି ମୁଁ ସେତେବେଳ ପର୍ଯ୍ୟନ୍ତ ଅର୍ଥାତ୍ ୧୯୬୭ ପର୍ଯ୍ୟନ୍ତ ମଦ ଟିକେ ଟିକେ ଯଦିଓ ପିଉଥିଲି ସିଗାରେଟ ଆଦୌ ଟାଣୁ ନଥିଲି । କିନ୍ତୁ ମୁଁ ଦେଖିଲି ମୋ ରୁମ୍‌ମେଟ୍ ସୁବିମଳ ସବୁ ନିଶାରେ ଓସ୍ତାଦ । ସିଗାରେଟ୍, ମଦ ସାଙ୍ଗରେ ଗଞ୍ଜେଇ ଟାଣିବାରେ ମଧ୍ୟ ସେ ବେଶ୍ ପାରଙ୍ଗମ । ମୁଁ ପଚାରିଲି ଏ ଗଞ୍ଜେଇ ଚାଷ କେଉଁଠୁ ଶିଖିଲେ । ସେ ମତେ ଓଡ଼ିଆରେ କହିଲେ ଯେ ଆପଣଙ୍କ ପୁରୀ ଟ୍ରେନିଂ । ମୁଁ ପଚାରିଲି ଆପଣତ ପରିଷ୍କାର ଓଡ଼ିଆ କହୁଛନ୍ତି । ଆପଣ କ'ଣ ପୁରୀରେ ଥିଲେ ? ସେ କହିଲେ ମୁଁ ପୁରୀରେ ଅନେକ ଦିନ ରହିଛି । କାରଣ ବାପା ପୁରୀ ଏ.ଜି. ଅଫିସ୍‌ରେ ଚାକିରି କରୁଥିଲେ । ସେଇଠି କିଛି ପଣ୍ଡା ଟୋକା ମୋର ସାଙ୍ଗ ହୋଇଥିଲେ । ସେଇମାନଙ୍କ ଠାରୁ ଏହା ଆମଦାନି । ଆମ ଦୁହିଁଙ୍କ ମଧ୍ୟରେ ବେଶ୍ ଘନିଷ୍ଠତା ହୋଇଗଲା । ପ୍ରବଳ ଶୀତ ହେଲେ ମଧ୍ୟ ମୁଁ କମ୍ବଳ ରେଜେଇ ନେଇଥିବାରୁ ରାତିରେ ଶୋଇବା ଆରାମପ୍ରଦ ହେଲା । ତେବେ ମାର୍ଚ୍ଚ ଶେଷ ବେଳକୁ ଶୀତ ଛାଡ଼ିଗଲା ।

ଛ'ମାସ ଚାହୁଁ ଚାହୁଁ କଟିଗଲା । ସେ ତାଲିମ ମୋତେ ବେଶ୍ ସାହାଯ୍ୟ କଲା । କାରଣ ସମ୍ବାଦର ସଂଗ୍ରହ ପ୍ରଣାଳୀ, ଲେଖିବାର ଧରଣ, ଗୁରୁତ୍ୱପୂର୍ଣ୍ଣ ଅଂଶ ପ୍ରଥମେ କିପରି ବାଛିବ, କେଉଁ କେଉଁ ସମ୍ବାଦଗୁଡ଼ିକ ଉପରେ ଅଧିକ ଗୁରୁତ୍ୱ ଦେବ, କିପରି ସମ୍ବାଦର ମୂଳ ସୋର୍ସକୁ ଧରିବ ଆଦି ନାନା ପ୍ରକାର ତାଲିମ ଦିଆଗଲା । ପ୍ରତିଦିନ ସମସ୍ତଙ୍କୁ ଭିନ୍ନ ଭିନ୍ନ ଖବର ଧରାଇ ଦେଇ ତାକୁ ସଜାଇ କରି କିପରି ଲେଖିବ ତା'ର ତାଲିମ୍ ଦିଆଗଲା । ମୋର ଏହି ତାଲିମ୍ ନେଇ ଭଲ ଲାଭ ହେଲା ।

ସୁବିମଳ ଭଟ୍ଟାଚାର୍ଯ୍ୟ ଆଉ ମୁଁ ବେଶ୍ ଘନିଷ୍ଠ ବନ୍ଧୁ ହୋଇଗଲୁ । ଛ'ମାସ ପରେ ଆମେ ନିଜ ନିଜ ଘରକୁ ଫେରିବା ବେଳକୁ ମୁଁ ଦୁଇଟି ବିଷୟ ତାଙ୍କଠାରୁ ଶିକ୍ଷା କରିଥିଲି । ଗୋଟିଏ ହେଲା ବଙ୍ଗଳା ଭାଷାଶିଖିଗଲି ଏବଂ ଅନ୍ୟଟି ହେଲା ସିଗାରେଟ୍ ଟଣା । ମୁଁ ଦିଲ୍ଲୀ ଶୀତରେ ଦିନକୁ ତିନି/ଚାରୋଟି ସିଗାରେଟ୍ ଟାଣିବା ଆରମ୍ଭ କରୁକରୁ ଛ'ମାସ ପରେ ଦିନକୁ ଦୁଇ ପ୍ୟାକେଟ୍ ସିଗାରେଟ୍ ଟାଣୁଥିଲି । ମୁଁ କ୍ୟାପଷ୍ଟେନ୍ ସିଗାରେଟ୍ ସେତେବେଳେ ଟାଣୁଥିଲି । ମୋର ମନେଅଛି ଗୋଟିଏ କ୍ୟାପଷ୍ଟେନ୍ ସିଗାରେଟ୍ ପ୍ୟାକେଟ୍(ଦଶଟିକିଆ)କୁ ଦେଢ଼ଟଙ୍କା ପଡୁଥିଲା । ଭୁବନେଶ୍ୱର ଫେରିଆସି ମୋର ଅଭ୍ୟାସ ଆହୁରି ବଢ଼ିଗଲା । ଦିଲ୍ଲୀଠାରେ ଏହି ପାଠ୍ୟକ୍ରମ ତାଲିମ ନେବା ଫଳରେ ଭୁବନେଶ୍ୱରରେ ମୋର କାଟ୍‌ତି ଟିକେ ବଢ଼ିଗଲା । ପ୍ରଥମ କଥା ହେଲା ସେତେବେଳେ ମୁଁ ସବୁଠାରୁ କନିଷ୍ଠ ସାମ୍ବାଦିକ ଥିଲି । ମୋ ବୟସ ଅଠେଇଶ ବର୍ଷ ଥିଲା । ରମୋ ଧଳ ମୋ ଅପେକ୍ଷା ତିନିବର୍ଷ ବା ଚାରିବର୍ଷ ବଡ଼ ଥିଲେ । ବାକି ସମସ୍ତେ ଚାଳିଶରୁ ପଚାଶ ବର୍ଷ ବୟସର ଥିଲେ । ମୁଁ ସାମ୍ବାଦିକତାରେ ଦିଲ୍ଲୀରୁ ଟ୍ରେନିଂ ନେଇ ଆସିଛି ବୋଲି ସରକାରୀ ଅଫିସରମାନେ ଜାଣିବା ପରେ ମୋ ପ୍ରତି ବେଶ୍ ସମ୍ଭ୍ରମତା ପ୍ରକାଶ କଲେ । ଦ୍ୱିତୀୟରେ କ୍ୟାପ୍‌ଷ୍ଟେନ୍ ସିଗାରେଟ୍ ଟାଣିବା ଆଉ ଟିକେ ଗୁରୁତ୍ୱ ଯୋଗ କଲା । କାରଣ ସେତେବେଳେ କ୍ୟାପଷ୍ଟେନ୍ ନାଭିକଟ୍ ବ୍ରାଣ୍ଡ ଦାମୀ ସିଗାରେଟ ଥିଲା । ତେଣୁ ଯେତେବେଳେ ମୁଁ କୌଣସି ଅଫିସରଙ୍କ ପାଖରେ ବସେ ଏବଂ ସିଗାରେଟ୍ ଟାଣେ ତାଙ୍କୁ ମଧ୍ୟ ଅଫର୍ କରେ । ସେ ମଧ୍ୟ ଟାଣନ୍ତି । ତେଣୁ ଖବର ପାଇବାରେ ମୋ ପାଇଁ ସୁବିଧା ହେଲା ।

ମୁଁ ବାହାଘର କଥାରୁ ଆସି ସିଗାରେଟ୍ ପାଖରେ ପହଞ୍ଚିଲିଣି । ତେବେ ଏହି ମଦ ଆଉ ସିଗାରେଟ୍ ଯୋଗୁ ମୋ ବାହାଘର ଏକ ପ୍ରକାର ଭାଙ୍ଗିଯିବାକୁ ବସିଥିଲା । ମୋର ଆଉ ଗୋଟିଏ ଦୁର୍ବଳତା ହେଲା ମୁଁ ଭାରି ଡ୍ରେସ୍ ସଉକି ଥିଲି । ମୋର ସେତେବେଳେ ତିନିହଳ ସୁଟ୍-ଟାଇ ସାଙ୍ଗକୁ ପ୍ରାୟ କୋଡ଼ିଏ ହଳ ଭଲ ଦାମିକା ପ୍ୟାଣ୍ଟ ସାର୍ଟ ଥାଏ । ମୋ ବେଡ୍‌ରୁମ୍‌ରେ ଗୋଟେ ବଡ଼ ଆଲନାରେ ଏହି ଡ୍ରେସ୍ ଝୁଲାହୋଇଥାଏ । ବାହାଘର ହେବ କି ନାହିଁ ସେତେବେଳେ ମୁଁ ଏକ ପ୍ରକାର ଅନିଶ୍ଚିତ ଅବସ୍ଥାରେ ଥାଏ । ଦିନେ ମୁଁ ଘରେ ଅଛି । ସମ୍ଭବତଃ ଛୁଟିଦିନ । ସକାଳ ଏଗାରଟା ସାଢ଼େ ଏଗାରଟା ହେବ । ମୋ ରୁମ୍‌ରେ କଟକ ଏସ୍.ପି. ମୋର ବାଲ୍ୟବନ୍ଧୁ ବନବିହାରୀ ପଣ୍ଡା, ଚିଫ୍ ମାଇନିଂ ଅଫିସର ବିଜୟକୃଷ୍ଣ ମହାନ୍ତି ଏବଂ ଜଙ୍ଗଲ ବିଭାଗ ଚିଫ୍ କଞ୍ଜରଭେଟର ଶ୍ରୀପାଲ୍‌ଜୀ ବସିଛନ୍ତି । ମୋ ପୂଝାରୀ ସମସ୍ତଙ୍କୁ ଗରମ ପକୁଡ଼ି ଆଉ କଫି ଦେଲା । ଆମେ ବସି ଖାଉଛୁ ଏହି ସମୟରେ ଦୁଆର ମୁହଁ ପର୍ଦ୍ଦା ଟେକି ଜଣେ ଚାହିଁଲେ । ମୁଁ ହଠାତ୍ ଜାଣି ନପାରିଲେ ମଧ ତା'ପରେ ଜାଣିଲି ମୋର ଯିଏ ଶ୍ୱଶୁର ହେବେ ସେଇ ଭଦ୍ରବ୍ୟକ୍ତି । ମୁଁ ଉଠିଯାଇ ତାଙ୍କୁ ନମସ୍କାର କଲି । ଏବଂ ଭିତରକୁ ଡାକିଲି । ସେ କହିଲେ ମୋ ସାଙ୍ଗରେ ମୋ ବଡ଼ ଶଳା କୈଳାଶ ମହାନ୍ତି ଆସିଛନ୍ତି । ସେ ଆମ ଘରର ମୁରବୀ । ତାଙ୍କୁ ଟିକେ ସମ୍ମାନ ଜଣାଇବ । ମୁଁ କହିଲି ଆପଣମାନେ ଆସନ୍ତୁ । ତା'ପରେ ବାରଣ୍ଡାରେ ଠିଆ ହୋଇଥିବା କୈଳାଶ ମହାନ୍ତିଙ୍କୁ ନମସ୍କାର କରି ଭିତରକୁ ଡାକିଲି । ସେ ଆସିଲେ । ଭିତରକୁ ଡାକି ମୁଁ ବସିବାକୁ କହିଲି । କୈଳାଶ ବାବୁଙ୍କୁ ଦେଖି ଶ୍ରୀପାଳଜୀ କହିଲେ ଆରେ କୈଳାଶବାବୁ ଆପଣ କୁଆଡ଼େ ? ଏ ଟୋକା ସାଙ୍ଗରେ ଚିହ୍ନା ପରିଚୟ ଅଛି କି ? କୈଳାଶବାବୁ ଶ୍ରୀପାଳଜୀଙ୍କୁ, ବନୁକୁ ଆଉ ବିଜୟବାବୁଙ୍କୁ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ ଏବଂ ସମସ୍ତଙ୍କୁ ନମସ୍କାର କରି ଟିକେ ଥଙ୍ଗଥଙ୍ଗ ହୋଇ କହିଲେ ବାବୁଙ୍କ ସାଙ୍ଗରେ ଏକ ପ୍ରସ୍ତାବ ନେଇ... ଆରେ ଆରେ ଏବେ ଯେଉଁ ନିର୍ବନ୍ଧ ହେଲା କି ? ଭଲ ଭଲ ଯଲ୍‌ଦି କାମ ସାରନ୍ତୁ । ବନୁ ମତେ ଏକଥା ଶୁଣି କହିଲା କିବେ ଏତେ କଥା ହେଲାଣି । ମତେ କହିନୁ । ଆଚ୍ଛା ତମେ ସବୁ କଥାବାର୍ତ୍ତା କର । ମୁଁ ଆସୁଛି । ମୁଁ ପୂଝାରୀକୁ ଆଉ ଦି'କପ୍ କଫି ଆଉ ପକୁଡ଼ି କରିବାପାଇଁ କହିଲି । କୈଳାଶ ମହାନ୍ତି ଇତିମଧ୍ୟରେ ଶ୍ରୀପାଳଜୀଙ୍କୁ ଆର ରୁମ୍‌କୁ ଡାକି ମୋ ସମ୍ପର୍କରେ ସମ୍ଭବତଃ କିଛି ପଚାରିଲେ । କୈଳାଶ ମହାନ୍ତି କଟକର ବେଶ୍ ଜଣାଶୁଣା ଲୋକ । ମଙ୍ଗଳାବାଗ, ଜୋବ୍ରା ଆଉ ଶିଖରପୁରର ସେ ଥିଲେ ସାହି ମହନ୍ତ । କଟକରେ ସାହି ମହନ୍ତଙ୍କ ଭାରି ପ୍ରଭାବ । ତାଙ୍କ ନିଜର ଦୁଇଟି କରତ କଳ, କାର୍, ଟ୍ରକ୍ ସବୁ ଥିଲା ଏବଂ ପ୍ରାୟ କୋଟିଏ ଟଙ୍କାର ଜଙ୍ଗଲ ନିଲାମ ଧରିଥିଲେ ।

ଶ୍ରୀପାଳଜୀ, ବନୁ ଆଉ ବିଜୟବାବୁ ଚାଲିଗଲେ । ମୋ ଭବିଷ୍ୟତର ଶଶୁର ଜୟରାମ ଜେନା ଆଉ ମଳାଶୁର ବା ମଉଳାଶୁର କୈଳାଶ ମହାନ୍ତି ବସିଲେ । ସେତେବେଳେ ମୋ ଖ ଟ ପାଖରେ ଏକ ଟିପୟରେ ମୁଁ ସେଦିନ ଯେଉଁ ବହି ପଢୁଥାଏ ସେ ବହି, ସେ ଦିନର ସାତ ଆଠଟା ଖବର କାଗଜ ଆଉ ପୁରା ଗୋଟେ କାର୍ଟୁନ(ଦଶ ପ୍ୟାକେଟ୍) କ୍ୟାପଷ୍ଟେନ୍ ସିଗାରେଟ ରହିଥାଏ । ତା' ବାଦ୍ କଫି ଖାଇଲା ବେଳେ କପ୍ ରହେ । ଦିହେଁ ବସିବା ପରେ ଅନାମ ନନା(ମୋ ପୂଝାରୀ) କଫି, ରସଗୋଲା ଆଉ ଗରମ ପକୁଡ଼ି ପ୍ଲେଟ୍‌ରେ ଆଣିଦେଲା । କୈଳାଶବାବୁ ମୋର ଡ୍ରେସ୍, ଖଟ ଚାରିପଟେ ଥୁଆ ହୋଇଥିବା ଗଦା ଗଦା ବହି ଆଉ ପତ୍ରିକାକୁ ଚାହୁଁଥିଲେ । ତା'ପରେ ମୋ ଟିପୟ ଉପରେ ଥିବା ସିଗାରେଟ୍ କାର୍ଟୁନ୍‌କୁ ଚାହିଁଲେ । ମୁଁ ମିଠା ଆଉ ପକୁଡ଼ି ଖାଇବାକୁ ଦୁହିଁଙ୍କୁ ଅନୁରୋଧ କଲି । ମାତ୍ର ଦୁହେଁ ଜଳଖିଆ ନଖାଇ କେବଳ କଫି କପ୍‌ରେ ମୁହଁ ଲଗାଇଲେ । କୈଳାଶବାବୁ ପଚାରିଲେ କଟକ ଏସ୍.ପି. ସାହେବ କ'ଣ ଆପଣଙ୍କ ସାଙ୍ଗ ? ମୁଁ କହିଲି ମୋତେ ଆପଣ ଆପଣ କାହିଁକି କହୁଛନ୍ତି । ସେ ହସିଲେ । କହିଲେ ନାଇଁ ଏସ୍.ପି. ସାହେବ ଆଉ ଚିଫ୍ ମାଇନିଂ ଅଫିସର ଏତେ ରିଜର୍ଭ ଲୋକ ଯେ ମୋତେ ଅନେକ ସମୟରେ ସେମାନଙ୍କ ସହ ଜଗିରଖି କଥା

କହିବାକୁ ହୁଏ । ସେ ତ ତମକୁ ତୁ ତା କରୁଛନ୍ତି ତମେ ମଧ ତୁ ତା କହୁଛ । ମୁଁ କହିଲି ବନୁ ମୋର ଗୋଟେ ବର୍ଷ ସିନିୟର । ତେବେ ଆମେ ଦୁହେଁ ଖୁବ୍ ଘନିଷ୍ଠ ବନ୍ଧୁ । ବିଜୟବାବୁ ମୋର ଜଣେ ଖୁବ୍ ଘନିଷ୍ଠ ବନ୍ଧୁର ଭିଣୋଇ । ଆଉ ଶ୍ରୀପାଳଜୀଙ୍କ ସାଙ୍ଗରେ ଏଇମିତି ଚିହ୍ନା ହେଉ ହେଉ ଘନିଷ୍ଠତା ହୋଇଗଲା । ତାଙ୍କ ମୁହଁରେ ପ୍ରସନ୍ନତା ଫୁଟି ଉଠିଲା । ତା'ପରେ ସିଗାରେଟ୍କୁ ଦେଖି କହିଲେ, ବାପା ସିଗାରେଟ୍ ଏତେ କାହିଁକି ଟାଣୁଛ ? ମୁଁ କହିଲି ନାଇଁ ମୁଁ କମାଇ ଦେଲିଣି । ଏଇମିତି ଟାଣୁଟାଣୁ ଅଭ୍ୟାସ ହୋଇଗଲା । ସେ କହିଲେ ସିଗାରେଟ୍‌ରେ ବହୁତ ନିକୋଟିନ୍- ଯଦି ମନହୁଏ ତେବେ ବିଡ଼ି ଟାଣିଲେ କ୍ଷତି ନାହିଁ । ମୁଁ କିଛି କହିଲିନି । ତା'ପରେ ତାଙ୍କର ପ୍ରଶ୍ନ ହେଲା ଏଇ ସାମ୍ବାଦିକ କ'ଣ ଗୋଟେ ଚାକିରି ? ମୁଁ କହିଲି ହଁ ମୂଳତଃ ଚାକିରି । କିନ୍ତୁ ଆମେ ସବୁ ସ୍ୱାଧୀନ । ଏଥିରେ କ'ଣ ଦରମା ଥାଏ । ମାସକୁ ମାସ ଦରମା ମିଳେ ? ମୁଁ କହିଲି ହଁ ଦରମା ନପାଇଲେ ମୁଁ ଚଳିବି କିପରି ? କେତେ ଲେଖେ ଦରମା ପାଅ ? ମୁଁ କହିଲି ମୁଁ ପାଖାପାଖି ମାସକୁ ହଜାରେଟଙ୍କା ଦରମା ପାଏ । ସିଏ ପୁଣି କହିଲେ ଏ ଦରମା କିଏ ଦିଏ ? ମୁଁ କହିଲି ମାତୃଭୂମି ଦିଏ । ତେବେ ଜଣେ ନିୟମିତ ସାମ୍ବାଦିକ କେତେ ଦରମା ପାଇବ ସେ ବିଷୟ କେନ୍ଦ୍ର ସରକାରଙ୍କର ଏକ କମିଟି ସ୍ଥିର କରେ । ମୋତେ ସାମ୍ବାଦିକତା ନେଇ ସେ ଅନେକ ପ୍ରଶ୍ନ କଲେ । ତା'ପରେ ପ୍ରସନ୍ନ ମନରେ ବିଦାୟ ନେଲେ । ଇଏ ସମ୍ଭବତଃ ଜୁନ୍ ୧୫ ତାରିଖର କଥା ।

ଦୁଇଦିନ ପରେ ଚୌଦ୍ୱାରରୁ ପ୍ରଭାତ ଭାଇନା ମୋତେ ଫୋନ୍ କଲେ । ମୁଁ ଫୋନ୍ ଧରିଲି । ସେ ପଚାରିଲେ ତମ ଶଶୁର-ମଳାଶୁର ତମ ପାଖକୁ ଯାଇଥିଲେ କି ? ମୁଁ କହିଲି ମୁଁ ତ ବାହା ହୋଇନି ମୋ ଶଶୁର ମଳାଶୁର କେଉଁଠୁ ଆସିବେ ? ସେ ହସିଲେ । କହିଲେ ଆଜି ସକାଳେ ମିଲ୍‌ରେ (ଓ.ଟି.ଏମ୍.) ଜୟରାମ ବାବୁଙ୍କ ସାଙ୍ଗରେ ଦେଖା ହୋଇଥିଲା । ତମର ଭାରି ପ୍ରଶଂସା କରୁଥିଲେ । କହିଲେ ବରେନ୍ଦ୍ରଙ୍କର ଏତେ ବଡ଼ ବଡ଼ ଲୋକଙ୍କ ସଙ୍ଗେ ସାଙ୍ଗ ମୁଁ ଜାଣିନଥିଲି । ତାଙ୍କ ନାମରେ ଆମର ଜଣେ ଦି'ଜଣ ବନ୍ଧୁବାନ୍ଧବ ଇଆଡୁ ସିଆଡୁ କଥା କହି ବାହାଘର ଭାଙ୍ଗି ଦେବାକୁ ବସିଥିଲେ । ଭାଗ୍ୟ ଭଲ କୈଳାଶ ଭାଇ ମୁଁ ଯାଇ ସବୁକଥା ବାଙ୍କୀ ଆଉ ଭୁବନେଶ୍ୱରରୁ ବୁଝି ଆସିଲୁ । ଜୁନ୍ ୨୭ରେ ବାହାଘର ହେବ । ମୁଁ ହସିଲି । ସେ ପୁଣି ପଚାରିଲେ କଟକ ଏସ୍.ପି. ବନୁ ପଣ୍ଡା ଥିଲା କି ? ମୁଁ ହଁ କଲି ।

## -୧୯୭୧ ଜୁନ ୨୭ତାରିଖରେ ବିବାହ -

ମୋର ବାହାଘର ୧୯୭୧ ମସିହା ଜୁନ୍ ୨୭ ତାରିଖ ରବିବାର ଦିନ ହେବା ପାଇଁ ସ୍ଥିର ହେଲା । ମୋ ସାଙ୍ଗରେ ଅନେକ ବନ୍ଧୁ ଏବଂ ଆମ ଗାଁର ଅନେକ ସାଙ୍ଗ, ଆମ କୁଣିଆ-ମଇତ୍ରଙ୍କ ମଧ୍ୟରୁ ଅନେକ ଏହିଭଳି ପାଖାପାଖି ଦୁଇଶହ ଲୋକ ବରଯାତ୍ରୀ ହୋଇ ଯିବାକୁ ବାହାରିଲେ । ମୋର ଅନେକ ବନ୍ଧୁଙ୍କର ନିଜର କାର୍ ଥିଲା । ସେମାନଙ୍କ ସଂଖ୍ୟା ଅନ୍ତତଃ ସତେଇଶ ଅଠେଇଶ ହେବ । ସେମାନଙ୍କ ମଧ୍ୟରେ କଟକ ମେଡ଼ିକାଲ୍ କଲେଜର କେତେକ ବଡ଼ବଡ଼ ଡାକ୍ତର ଥିଲେ । ଇଞ୍ଜିନିୟର, କେୟାର୍ ଅଫିସର ଆଦି ଅନେକ । ସେମାନେ ସମସ୍ତେ କଟକରୁ ଯିବେ ବୋଲି କହିଲେ । କେତେକ ଭୁବନେଶ୍ୱରରୁ ଯିବେ ସ୍ଥିର ହେଲା । ବାହାଘରର ସବୁ ଆୟୋଜନ ମତେ କରିବାକୁ ପଡୁଥିଲା । ଟଙ୍କା-ପଇସା, ଗାଡ଼ି-ମଟର, ବାଜା-ବାଣ-ରୋଷଣୀ ସବୁ କଥା ମତେ ବୁଝିବାକୁ ପଡୁଥିଲା । ଭୋଜି ପାଇଁ ଜିନିଷପତ୍ର କିଣା, ପୂଜାରୀ ଯୋଗାଡ଼ କରିବା ଠାରୁ ଖଳିପତର କିଣିବା ପର୍ଯ୍ୟନ୍ତ ମୁଁ କରୁଥିଲି । କାରଣ ମୋ ଦଦେଇ(ବାପା)ଙ୍କ ପକ୍ଷରେ ଏସବୁ ବୁଝିବା ସମ୍ଭବ ନଥିଲା । ମୋ ହାତରେ ଟଙ୍କା ସେମିତି କିଛି ମଧ ନଥିଲା । ମୁଁ ସେତେବେଳେ ଦରମା

ଯାହା ପାଉଥିଲି ତାକୁ ସିଗାରେଟ୍, କଫି ଠାରୁ ଆରମ୍ଭ କରି ଦାମୀଦାମୀ ଡ୍ରେସ୍‌ରେ ଉଡ଼ାଉଥିଲି । ତଥାପି ମୋର ସାହସ ଥିଲା । କାରଣ ପ୍ରତି ମାସରେ ମାତୃଭୂମିକୁ ବିଜ୍ଞାପନ ଯୋଗାଡ଼ କରି ମାସକୁ ପାଖାପାଖି ଦୁଇ ହଜାର ଟଙ୍କା ପାଉଥିଲି । ସେତେବେଳେ ମୁଖ୍ୟମନ୍ତ୍ରୀ ଥା'ନ୍ତି ବିଶ୍ୱନାଥ ଦାଶ ଏବଂ ଉପ-ମୁଖ୍ୟମନ୍ତ୍ରୀ ଥିଲେ ନୀଳମଣି ରାଉତରାୟ । ମୁଁ ନିଜେ ବରହୋଇ ଯିବାପାଇଁ ରାଜ୍ୟ ଅତିଥିଭବନର ପ୍ଲାଇ ମାଉଥ୍ ଗାଡ଼ି ଯୋଗାଡ଼ କଲି । ତେବେ ସ୍ୱରାଷ୍ଟ୍ରମନ୍ତ୍ରୀଙ୍କ ଅନୁମତି ଛଡ଼ା ପ୍ଲାଇ ମାଉଥ୍ ଗାଡ଼ି ଦିଆଯାଇ ପାରିବ ନାହିଁ । ମୁଁ ଯାଇ ସ୍ୱରାଷ୍ଟ୍ର ମନ୍ତ୍ରୀ ନୀଳମଣି ବାବୁଙ୍କୁ ସେ କଥା କହିଲି । ନୀଳମଣି ବାବୁ ହସିଲେ । ସାଙ୍ଗେ ସାଙ୍ଗେ ତାଙ୍କ ପି.ଏ. ବିଜୟ ପଟ୍ଟନାୟକଙ୍କୁ ଡାକି ଗାଡ଼ି ପାଇଁ ରିକ୍ୟୁଜିସନ୍ ଦେବାକୁ କହିଲେ । ମୋର ମନେ ଅଛି ରାଜ୍ୟର ବିଭିନ୍ନ ମନ୍ତ୍ରୀମାନଙ୍କ ଠାରୁ ମୁଁ ପାଖାପାଖି କୋଡ଼ିଏଟି କାର୍ ଯୋଗାଡ଼ କରିଥିଲି । ବସ୍ ନେବା ପାଇଁ ମୋ ପାଖରେ ଟଙ୍କା ନଥିଲା । ଆଉ ଅଧିକା କାର୍ ପାଇଁ ମୁଁ ଆଇ.ଡି.ସି.ର ଏମ୍.ଡି. ଏସ୍.ଏନ୍. ଦାସ ମହାପାତ୍ରଙ୍କ ପାଖକୁ ଗଲି । ଦାସ ମହାପାତ୍ର ସାହେବ ମତେ ଖୁବ୍ ଶ୍ରଦ୍ଧା କରୁଥିଲେ । ମୋ ବାହାଘର କଥା ଶୁଣି କ'ଣ ଟିକିଏ ଭାବିଲେ । ତା'ପରେ ଆଇ.ଡି.ସି.ର ଗାଡ଼ି ଦାୟିତ୍ୱରେ ଥିବା ଅଫିସରଙ୍କୁ ଡାକି କହିଲେ ଆମର ଯେଉଁ ନୂଆ ଆମ୍ବାସାଡାର ଗାଡ଼ି ପାଇଁ ବରାଦ ଦିଆଯାଇଥିଲା ସେ ସବୁ କେବେ ଆସିବ ? ସେ କହିଲେ ଦିନେ/ ଦି'ଦିନ ଭିତରେ ଆସିବ । ସେ ଅର୍ଡ଼ର କରିଦେଲେ ସେ ଗାଡ଼ି ଭିତରୁ ପାଞ୍ଚୋଟି କାର୍ ଧଳବାବୁଙ୍କ ଗାଁକୁ ୨୭ ତାରିଖ ସକାଳେ ପଠାଇ ଦେବ । ଡ୍ରାଇଭର-ତେଲ ସବୁ ଦେଇ ପଠାଇବ । ମୁଁ ଦାସ ମହାପାତ୍ର ସାହେବଙ୍କ ଏ ବଦାନ୍ୟତାରେ ମୁଗ୍ଧ ହୋଇ କହିଲି, ସାର୍ ଆପଣଙ୍କ କଥା ମୋର ଚିରଦିନ ମନେ ରହିବ । ସେ ହସିଲେ । କହିଲେ ଆଉ ଯାହା ଦରକାର ମତେ କହିବେ । ମୁଁ କଟକରେ ଅନେକ ବନ୍ଧୁ ସୃଷ୍ଟି କରିଥାଏ । ସେମାନଙ୍କ ମଧ୍ୟରେ କଟକର ଦୁଇ ତିନିଜଣ ଯୁବ ବ୍ୟବସାୟୀ ଅନ୍ୟତମ । ସେମାନେ ସମସ୍ତେ ବାରବାଟି ଷ୍ଟାଡିୟମ୍‌ରେ ଖେଳ ବେଳୁ ବନ୍ଧୁ । ସମସ୍ତଙ୍କର ମାଲ୍ ଗୋଦାମରେ ଦୋକାନ ଅଛି । ଭୋଜି ପାଇଁ ମାଲ୍ ଗୋଦାମ୍‌ରୁ ଠିକ୍ ଜିନିଷ କିଣିବା ଏବଂ ଆବଶ୍ୟକହେଲେ ବାକିରେ ଆଣିବା ପାଇଁ ସେମାନଙ୍କର ସାହାଯ୍ୟ ନେଲି । ଆମ ଘର ଆମ ଗାଁରେ ଏଇମିତି ସାଆନ୍ତ ଘର । ତା'ଛଡ଼ା ମୋର ଅନେକ ବନ୍ଧୁ-ବାନ୍ଧବ କଟକ-ଭୁବନେଶ୍ୱରରୁ ବାଙ୍କୀ ଯିବାପାଇଁ ପ୍ରତିଶ୍ରୁତି ଦେଇଥା'ନ୍ତି । ଦେଢ଼ହଜାର ଲୋକଙ୍କ ପାଇଁ ବ୍ୟବସ୍ଥା ହେଲା । ଆମ ବିଲରେ ଦଦେଇ ଖୁବ୍ ସରୁ ବାସନା କଳାଜିରା ଧାନ କରିଥିଲେ । ବୋଉ ସେ ଧାନକୁ ଚାଉଳ କରି ରଖିଥିଲା । ପ୍ରାୟ ଚାରି/ପାଞ୍ଚ କୁଇଣ୍ଟାଲ୍ ବାସ୍ନା କଳାଜିରା ଚାଉଳ ଥିଲା । ଆମ ଅଞ୍ଚଳରେ ଭଲ ହରଡ଼ ହୁଏ । ମୋ ମାମୁଘର ବୋଲଗଡ଼ ଅଞ୍ଚଳରେ ମୁଗ ଭାରି ସୁଆଦିଆ । ମାମୁଘରୁ ବସ୍ତାଏ ମୁଗଡାଲି ଆସିଥିଲା । ତେବେ ଆମ ବିଲରୁ ପ୍ରାୟ ଦୁଇ କୁଇଣ୍ଟାଲ ହରଡ଼ ହୋଇଥିଲା । ତେଣୁ ପଲଉ-ଡାଲି ସମସ୍ୟା ତୁଟି ଥିଲା । ବାକି ତେଲ, ଲୁଣ, ମସଲା, ପନିପରିବା ଏବଂ ମାଛ । ସବୁ ବ୍ୟବସ୍ଥା ହୋଇଗଲା । ମହାନଦୀରୁ ବଡ଼ ଜାଲ ପକାଇ ବଡ଼ବଡ଼ ମାଛ ଆଣିବା ବ୍ୟବସ୍ଥା ହେଲା ।

ପୂର୍ବରୁ କହିଛି ଭୁବନେଶ୍ୱରରେ ସେତେବେଳେ ମୁଁ ସମାଜର ବିଭିନ୍ନ କିସମର ଲୋକଙ୍କ ସହ ବେଶ୍ ପରିଚିତ । ସେମାନଙ୍କ ମଧ୍ୟରେ ଡକ୍ଟର ଭବାନୀ ଚୌଧୁରୀ ଜଣେ । ଡଃ ଚୌଧୁରୀ ବାଣୀବିହାରରେ କେମେଷ୍ଟ୍ରି ଅଧ୍ୟାପକ । ମାତ୍ର ଚମତ୍କାର ଗିଟାର ବାଦକ । ତାଙ୍କର ଏକ ମେଲୋଡି ଗ୍ରୁପ୍ ଥାଏ । ତାଙ୍କ ସାଙ୍ଗରେ ସିକନ୍ଦର ଆଲାମ୍, ଭୁବନେଶ୍ୱରୀ ମିଶ୍ର, ବସନ୍ତ କୁମାର ଦାସ ଗାୟକମାନେ ସଂପୃକ୍ତ ଥା'ନ୍ତି । ମୋ ବାହାଘର କଥା ଶୁଣି ସେ କହିଲେ ଆମେ ସମସ୍ତେ ଆପଣଙ୍କ ରିସିପ୍‌ସନ୍ ଦିନ ବାଙ୍କୀ ଯିବୁ । ଧୀରେଧୀରେ ସବୁ ବ୍ୟବସ୍ଥା ହୋଇଗଲା । ସେତେବେଳେ ମୋ ସାନଭାଇ ଧୀରେନ୍ଦ୍ର ନୂଆ ହୋଇ ଅଧ୍ୟାପକ ଚାକିରିରେ ଢୁକିଥିଲା । ସିଏ ତା' ସାଙ୍ଗ ନିଶାମଣି, ଜ୍ଞାନ, ଶ୍ରୀନି, ସୁର ଆଦିଙ୍କୁ

ଭୁବନେଶ୍ୱରରୁ କାର୍ ସବୁକୁ ବାଙ୍କୀ ନେବାପାଇଁ ଦାୟିତ୍ୱ ଦେଲି । ସେମାନଙ୍କ ମଧ୍ୟରୁ କେତେକଙ୍କୁ କଟକ ମାଲ୍ ଗୋଦାମ ଓ ଛତ୍ରବଜାରରୁ ଜିନିଷ ନେବାପାଇଁ ଦାୟିତ୍ୱ ଦେଲି । ତା'ପରେ ରହିଲା ବାଜା, ◌ାଣ ଆଉ ଲାଇଟ୍ । ସେତେବେଳେ କଟକ ଅନ୍ନପୂର୍ଣ୍ଣା 'ବି' ଗ୍ରୁପ୍ ଥିଏଟର(ତିନିକୋଣିଆ ବଗିଚା) ସାମ୍ନାରେ ଓଡ଼ିଶାର ସବୁଠୁ ଭଲ ବାଜାପାର୍ଟିରହୁଥିଲା । ମୁଁ ଗଲି ସେମାନଙ୍କୁ କଣ୍ଟାକ୍ଟ କରିବା ପାଇଁ । ସେମାନଙ୍କ ମାଷ୍ଟରକୁ ଡାକି କଥାବାର୍ତ୍ତା ହେଲି । ମାତ୍ର ତା' ରେଟ୍ ଶୁଣି ମୋ ମୁଣ୍ଡ ଘୁରିଗଲା । ଚୌଦ୍ୱାର ଯିବା କଥା ଶୁଣି କହିଲା ବାବୁ- ଛ' ହଜାର ଟଙ୍କାରୁ ଟଙ୍କାଏ ବି କମିବ ନାହିଁ । ଏଇଠି କଟକରେ ଆମେ ଦି'ଘଣ୍ଟା/ ଅଢ଼େଇ ଘଣ୍ଟା ପାଇଁ ଦୁଇ ହଜାର/ଅଢ଼େଇହଜାର ଟଙ୍କା ନେଉଛୁ । ଏବେ ତ ବାହାଘର ସିଜନ୍ । ତେଣୁ ଗୋଟେ ରାତିରେ ତିନି/ଚାରିଟା ବର ଛାଡ଼ି ଦେଇ ଛ' ଆଠ ହଜାର ଟଙ୍କା କମଉଛୁ । ମୁଁ ଆଉ କିଛି ନକହି ମନ ଦୁଃଖରେ ଫେରିଲି । ଚାଲିଚାଲି ଆସୁଛି । କ୍ୟାପିଟାଲ୍ ସିନେମା ଛକ ପାଖରେ ହଠାତ୍ ଏକ ଜିପ୍ ମୋ ପାଖରେ ବ୍ରେକ୍ ଦେଲା । ମୁଁ ଠିଆ ହୋଇପଡ଼ି ଜିପ୍‌କୁ ଚାହିଁଲି । ଦେଖିଲି ଜିପ୍‌ରେ ଲାଲ୍‌ବାଗ ଥାନା ଇନ୍‌ସପେକ୍ଟର ଶରତ ମିଶ୍ର ବସିଛନ୍ତି । ମତେ ଚାଲିଚାଲି ଯିବା ଦେଖି ପଚାରିଲେ କିହୋ- ସାମ୍ବାଦିକ ବାବୁ ଏ ଖରାରେ ଚାଲିଚାଲି କୁଆଡ଼େ ? ଆସ ଜିପ୍‌ରେ ବସ୍ । ଶରତ ମିଶ୍ରଙ୍କୁ ଦେଖି ମୋର ପିଣ୍ଡରେ ପ୍ରାଣ ପଶିଲା । ଜିପ୍‌ରେ ବସିଲି । ଶରତ ମିଶ୍ରଙ୍କ ବାପା ବାଙ୍କୀରେ ଡାକ୍ତର ଥିଲେ । ଶରତ ମିଶ୍ର ମୋ ଅପେକ୍ଷା ଦଶ/ବାରବର୍ଷ ବଡ଼ । ମୁଁ ତାଙ୍କୁ ସେଇ ବାଙ୍କୀରୁ ଶରତ ଭାଇନା ବୋଲି ଡାକୁଥିଲି । ଭାରି ଗମାତିଆ ଲୋକ । ଖୋଲା ମିଜାଜର । ମୋ କଥା ଶୁଣି କହିଲେ ତୋ ବାହାଘର ପ୍ରୋବ୍‌ଲେମ୍ କ'ଣ ? ଚାଲ୍ ଥାନାକୁ ଚାଲ । ଥାନାରେ ପହଞ୍ଚି ତାଙ୍କ ସିପେଇକୁ ପଠାଇ ଭଲ କ୍ୟାପଷ୍ଟେନ୍ ସିଗାରେଟ୍ ଗୋଟେ ପ୍ୟାକେଟ୍, ଚା' ଆଉ ଟୁକ ଦୋକାନରୁ ଗରମ ବରା ଆଣିବାକୁ ବରାଦ୍ ଦେଲେ । ତା'ପରେ ଜଣେ ହାବିଲ୍‌ଦାର୍‌କୁ ପଠାଇ ସେ ବାଜା ପାର୍ଟିମାଲିକକୁ ଡାକି ଆଣିବାକୁ ପଠାଇଲେ । ସେତେବେଳକୁ ପ୍ରକୃତରେ ମୁଁ ସଂପୂର୍ଣ୍ଣ ଅବଶ ହୋଇ ପଡ଼ିଥିଲି । ବରା, ଚା' ଖାଇ ଏବଂ ସିଗାରେଟ୍ ଖଣ୍ଡେ ଲଗାଇ ମୋର ମୁଡ୍ ଫେରିଲା । ଏହି ସମୟରେ ହାବିଲ୍‌ଦାର ବାଜା ପାର୍ଟିର ମାଲିକକୁ ଧରି ପହଞ୍ଚିଲା । ତେଲେଙ୍ଗାଲୋକ । ଦିନଟାରେ ଦେଶୀମଦ ପିଇ ଟଳଟଳ ହେଉଥାଏ । ଶରତ ଭାଇନା ତାକୁ କହିଲେ ଆବେ ୨୭ ତାରିଖରେ ଚୌଦ୍ୱାର ଯିବୁ । ସେ ମୋତେ ଦେଖି କହଲା- ଏ ବାବୁଙ୍କୁ ତ କହିଦେଇଛି ଆଜ୍ଞା- ପୁରା ଛ' ହଜାର ନେବି । ସିଏ ଆଉ କିଛି କହିବା ପୂର୍ବରୁ ଶରତ ଭାଇନା ତାକୁ ଡୋ କରି ବେଶ୍ ଗୋଟେ ଚାପୁଡ଼ା ଲଗାଇଲେ । ସେ ସେଇ ଚାପୁଡ଼ା ଖାଇ ତଳକୁ ଖସିପଡ଼ିଲା । ତା'ପରେ କ'ଣ କହିବା ବେଳେ ଶରତ ଭାଇନା କହିଲେ ଏ ଶଳାକୁ ହାଜତ୍ ଭିତରେ ରଖିଦେ । କେଶ୍ ଦେବୁନି । ତା' ପକେଟ୍‌କୁ ଖୋଜିବାକୁ ହାବିଲ୍‌ଦାର୍‌କୁ କହିଲେ । ଦି' ପକେଟ୍‌ରୁ ଦି' ବୋତଲ ଦେଶୀମଦ ବାହାରିଲା । ଶରତ ଭାଇନା କହିଲେ ପନ୍ଦର ଦିନ ପାଇଁ ରଖ୍, ତା'ପରେ ଦେଖିବା । ବାଜାବାଲା ସର୍ଦ୍ଦାରର ଏକଥା ଶୁଣି ନିଶା ତୁଟି ଗଲାଣି, ଶରତ ଭାଇନାଙ୍କ ଗୋଡ଼କୁ ଧରି କହିଲା- ବାବୁ ତୁ ଯାହା କହିବୁ କରିବି । ୨୭ରେ ଚୌଦ୍ୱାର ଯିବି । ଶରତ ଭାଇନା ମୋତେ ଚାହିଁ କହିଲେ ତୋର କେତେବେଳେ ପ୍ରଶେସନ ଯିବ ? ମୁଁ କହିଲି ରାତି ଏଗାରଟା ବେଳକୁ ଆମେ ଚୌଦ୍ୱାରରେ ପହଞ୍ଚିବୁ । ସେ କହିଲେ ଆବେ ତୋର କେତେ ଲୋକ ? ସେ କହିଲା ଆଜ୍ଞା ଆମେ ପଚାଶ ଲୋକ । ଠିକ୍ ଅଛି । ରାତି ଦଶଟା ବେଳକୁ ରେଡିଥିବ । ତୁମ ପାଖରେ ଟ୍ରକ୍ ପହଞ୍ଚିବ । ଏକହଜାର ଟଙ୍କା ନେବୁ । ସେଇ କଟକରୁ ଲାଇଟ୍‌ବାଲା ମଧ ଠିକ୍ ହେଲା । ଯାହା ହେଉ ସବୁ ଭଲରେ ଭଲରେ ହୋଇଯିବା ପରେ ମୁଁ ମନଖୁସିରେ ଚାରିଟା ବେଳକୁ ଭୁବନେଶ୍ୱର ଆସିଲି । ଏବେ ସମସ୍ୟା ହେଲା ତିନୋଟି ଟ୍ରକ୍ । ବାଜାବାଲାଙ୍କ ପାଇଁ ଦୁଇଟି ଏବଂ ଗୋଟିଏ ଲାଇଟ୍‌ବାଲାଙ୍କ ପାଇଁ । ଭୁବନେଶ୍ୱରରେ ଜଣେ ବନ୍ଧୁଙ୍କୁ ପଚାରିଲି । ସେ କହିଲେ ଇଏ କି ବଡ଼ କଥା । ତମର ତ ଉଠା ଜଳସେଚନ ବିଭାଗ ଏମ୍.ଡି. ଏତେ ଚିହ୍ନା ।

ତାଙ୍କୁ କହିଲେ ସେ ସେଇ କଟକରୁ ବ୍ୟବସ୍ଥା କରିଦେବେ । ମୁଁ ଯାଇ ଏମ୍.ଡି.ଙ୍କୁ ଦେଖା କଲି । ସବୁ କହିଲି । ସେ କହିଲେ ଖାଲି ଟ୍ରକ ଆଉକିଛି ଦରକାର ନାହିଁ ? ମୁଁ କହିଲି ଭାଇ ଆଗେ ଏତିକି ବ୍ୟବସ୍ଥା କରିଦିଅନ୍ତୁ । ବାକି କ'ଣ ଦରକାର ହେଲେ କହିବି । ସେ ସେଇ ଭୁବନେଶ୍ୱରରୁ ତିନୋଟି ଟ୍ରକ୍ ଏବଂ ତାଙ୍କର ଜଣେ ଜୁନିଅର ଇଞ୍ଜିନିୟରଙ୍କୁ ଟ୍ରକ୍ ସହ ଯାଇ ବାଜାବାଲା ଆଉ ଲାଇଟ୍‌ବାଲାଙ୍କୁ ନେଇ ଚୌଦ୍ୱାର ଓ.ଟି.ଏମ୍. ଛକରେ ଅପେକ୍ଷା କରିବାକୁ ଦାୟିତ୍ୱ ଦେଲେ । ଭଗବାନଙ୍କ ଆଶୀର୍ବାଦ ନଥିଲେ ଏତେ ସହଜରେ ସବୁ ସମସ୍ୟାର ସମାଧାନ ହୋଇଯାଇ ନଥାନ୍ତା । ଈଶ୍ୱରଙ୍କ ଉଦ୍ଦେଶ୍ୟରେ ପ୍ରଣତି ଜଣାଇଲି ।

## -ଦଦେଇ - ବୋଉଙ୍କ ଜୀବନ ଚର୍ଯ୍ୟା-

ବାହାଘର ଯଥାରୀତି ହୋଇଗଲା । ମୋର ଏକ ନୂଆ ଜୀବନ ଆରମ୍ଭ ହେଲା । ଜୀବନରେ ପ୍ରଥମ ଗୁରୁଦାୟିତ୍ୱ ମୁଣ୍ଡରେ ପଡ଼ିଲା । ଗାଁରେ ଦଦେଇ ବୋଉ ରହୁଥିଲେ । ଅଳ୍ପ କିଛିଦିନ ମୋ ସ୍ତ୍ରୀ ସ୍ନେହଲତା ଗାଁରେ ରହିଲେ । ତା'ପରେ ଭୁବନେଶ୍ୱର ଆସିଲେ । ଆମର ଦାମ୍ପତ୍ୟ ଜୀବନ ଆରମ୍ଭ ହେଲା । ଦଦେଇ- ବୋଉଙ୍କୁ ଭୁବନେଶ୍ୱର ଆସି ରହିବାକୁ କହିଲି । ମାତ୍ର ଗାଁ ଛାଡ଼ି କେହି ଆସିବାକୁ ରାଜି ହେଲେ ନାହିଁ । ଏଇମିତି ମଝିରେ ମଝିରେ ଛ'ସାତ ଦିନ ପାଇଁ ଆସି ଚାଲି ଯାଉଥିଲେ । ଦଦେଇ-ବୋଉଙ୍କର ଜୀବନଚର୍ଯ୍ୟା ଥିଲା ସମ୍ପୂର୍ଣ୍ଣ ଭିନ୍ନ । ଦଦେଇ ରାତି ଚାରିଟାରୁ ଉଠି ଶ୍ରୀମଦ୍ ଭାଗବଦ୍ ଗୀତା ମୁହଁରୁ ଆବୃତ୍ତି କରନ୍ତି । ବୋଉ ପାଞ୍ଚଟାରୁ ଉଠି ଘରର ବାସିକାମ ସାରି ଠାକୁର ଘର ଲିପି ପାହାନ୍ତାରୁ ନଈକୁ ଗାଧୋଇବାକୁ ଚାଲିଯାଏ । ଦଦେଇ ପାହାନ୍ତା ପାହାନ୍ତା ବାଙ୍କୀ ବଜାର ପାଖରେ ଆମ ଜମି ଆଡ଼େ ଯାଇ ବୁଲାବୁଲି କରି ଗୋଟେ ଗାମୁଛାରେ ବେଶ୍ ବଡ଼ ପୁଟୁଳାଏ ଫୁଲ ଆଣି ଫେରନ୍ତି । ଆମ ବିଲ ହୁଡ଼ାରେ ଟଗର, ତରାଟ, କନିଅର, ଅପରାଜିତା, ମନ୍ଦାର ଆଦି ଫୁଲଗଛ ଲଗାଯାଇଥାଏ । ବୋଉ ନଈରେ ଗାଧୋଇ ପାଧୋଇ ସୂର୍ଯ୍ୟ ଉଠିବା ଆଗରୁ ଘରକୁ ଆସେ । ତା'ପରେ ଠାକୁର ଘରେ ମୁରୁଜ ପକାଇ ପୂଜା କରେ । ଦଦେଇ ଫୁଲ ଆଣି ଆସିବା ବେଳେ ଦାଣ୍ଡ ଦୁଆରେ ବସିଥିବା କିଛି ବୁଢ଼ା ବ୍ରାହ୍ମଣ ଫୁଲ ମାଗନ୍ତି । ସମସ୍ତଙ୍କୁ ଆଞ୍ଜୁଳାଏ ଆଞ୍ଜୁଳାଏ ଫୁଲ ଦେଇ ଘରକୁ ଆସି ବାକି ଫୁଲ ରଖି ତେଲ ଲଗାଇ ପିତଳ ଗରାଟାଏ ଧରି ଗାଧୋଇବାକୁ ନଈକୁ ଯା'ନ୍ତି । ଆମ ଘର ପାଖରେ କଚେରି ତୋଠରେ ପୁରୁଷ ଏବଂ ଚର୍ଚ୍ଚିକା ଗାଁ ବ୍ରାହ୍ମଣ ସାହୀ ତୋଠରେ ସ୍ତ୍ରୀଲୋକମାନେ ଗାଧାନ୍ତି ।

ଦଦେଇ ଗାଧୋଇବା ପାଇଁ ମହାନଦୀ ଅଧାଯାଏ ପହଁରି ନଈ ମଝିରୁ ପିତଳ ଗରାରେ ପାଣି ଆଣି କୂଳକୁ ଆସନ୍ତି । ଗାଧୋଇ ସାରି ଗରା ପାଣି ଆଣି ଆମ ସାହୀମୁଣ୍ଡରେ ଥିବା ଐଶାନେଶ୍ୱର ମହାଦେବଙ୍କ ମନ୍ଦିରକୁ ଯାଇ ସେଇ ଓଦା ଲୁଗାରେ ମହାଦେବଙ୍କୁ ସ୍ନାନ କରାଇ ଏବଂ ଅଧଗରାଏ ପାଣି ଆଣି ଘରକୁ ଆସନ୍ତି । ଘରେ ପହଞ୍ଚି ମଠା ପିନ୍ଧି ଘର ଠାକୁରଙ୍କୁ ଫୁଲ ଚନ୍ଦନ ଦେଇ ପୁଣି ଫୁଲଧରି ଐଶାନେଶ୍ୱର ମହାଦେବଙ୍କ ମନ୍ଦିରକୁ ଯାଇ ଫୁଲ ଦେଇ ଶ୍ଳୋକ ଆବୃତ୍ତି କରି ପ୍ରାୟ ଅଧଘଣ୍ଟାଏ ଧରି ବସି ଘରକୁ ଫେରନ୍ତି । ସକାଳ ଆଠଟା ସାଢ଼େ ଆଠଟା ସୁଦ୍ଧା ଏ ସମସ୍ତ କାମ ଶେଷ ହୋଇଯାଏ । ଘରେ ପହଞ୍ଚିବା ପରେ ମୁଢ଼ି ହେଉ ବା ଚୁଡ଼ାଭଜା ହେଉ କ୍ଷୀରରେ ପକାଇ ଜଳଖିଆ ଖା'ନ୍ତି । ତା'ପରେ କଚେରିକୁ ଯା'ନ୍ତି ।

ଦଦେଇ ଥିଲେ ସରକାରଙ୍କର ଜଣେ ତୃତୀୟଶ୍ରେଣୀ କର୍ମଚାରୀ । ନାଏବ ତହସିଲଦାର । ଜୀବନରେ ସେ କାହାରିଠାରୁ ଟଙ୍କା ପଇସା ଦୂରେଥାଉ ପାନଖଣ୍ଡେ ମଧ ନେଇ ନାହାନ୍ତି । ଅବସର ପରେ ଆମ ଘର ପାଖ କଚେରିରେ

ନବସିଦ୍ଧା କାମ କରୁଥିଲେ ସମୟ କଟିବା ପାଇଁ । ଓକିଲ ଉପେନ୍ଦ୍ର ଚନ୍ଦ୍ର ମିଶ୍ରଙ୍କ ସିରସ୍ତାରେ ସେ ବସୁଥିଲେ । ଉପେନ୍ଦ୍ରବାବୁ ଥିଲେ ଆମ ପଡ଼ୋଶୀ । ସେ ଏ.ଡି.ଏମ୍. ଚାକିରିରୁ ଅବସର ନେଇ ଘରେ ରହୁଥିଲେ । ଅତ୍ୟନ୍ତ ସାଧୁ, ସରଳ ଓ ସଚ୍ଚୋଟ ଅଫିସର ଥିଲେ । ଦଦେଇଙ୍କ ଚରିତ୍ର ତାଙ୍କ ଚରିତ୍ରରେ ଅନେକ ସାମଞ୍ଜସ୍ୟ ଥିବାରୁ ଦୁହିଁଙ୍କ ମଧ୍ୟରେ ଭଲ ପଟୁଥିଲା । ଉପେନ୍ଦ୍ରବାବୁଙ୍କ ପରିବାର ଓଡ଼ିଶାର ବିଖ୍ୟାତ ପରିବାର । ସେମାନେ ଚାରିଭାଇ । ଉପେନ୍ଦ୍ରବାବୁ ତୃତୀୟ ଭାଇ । ପ୍ରଥମ ଭାଇ ଡାକ୍ତର ମହେନ୍ଦ୍ର ଚନ୍ଦ୍ର ମିଶ୍ର କଟକ ମେଡ଼ିକାଲ୍ କଲେଜରେ ପ୍ରଫେସର (ଚକ୍ଷୁ ବିଭାଗ) ଓ ସୁପରିଟେଣ୍ଡେଣ୍ଟ । ଦ୍ୱିତୀୟ ଭାଇ ଡାକ୍ତର ଶରତ ଚନ୍ଦ୍ର ମିଶ୍ର ମେଡିସିନ୍ ପ୍ରଫେସର । ଲୋକେ କୁହନ୍ତି ଦୁଇଭାଇଙ୍କ କଥାରେ ଅଧେ ରୋଗ ଭଲ ହୋଇଯାଏ । ସବା ସାନ ଭାଇ ଡକ୍ଟର ଦେବେନ୍ଦ୍ର ଚନ୍ଦ୍ର ମିଶ୍ର ।ସେତେବେଳେ ରେଭେନ୍ସା କଲେଜର ବିଖ୍ୟାତ ଅର୍ଥନୀତି ପ୍ରଫେସର । ସେ ହେଉଛନ୍ତି ପ୍ରଥମ ଓଡ଼ିଆ ଯିଏ ଆମେରିକାର ବିଶ୍ୱବିଖ୍ୟାତ ହାର୍ଭାର୍ଡ଼ ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ୍ ଉପାଧି ଲାଭ କରିଥିଲେ ।

ଉପେନ୍ଦ୍ର ବାବୁ ସେମାନଙ୍କ ପୈତୃକ ଘରେ ଆମ ଗାଁରେ ରହିଲେ । ଏ ତିନିଭାଇ କଟକରେ ବାସିନ୍ଦା ହେଲେ । ଦଦେଇଙ୍କ ସହ ଏ ଚାରିଭାଇଙ୍କର ଘନିଷ୍ଠତା ଥିଲା । ଦଦେଇ ଶରତ ବାବୁଙ୍କ ସମବୟସୀ ଥିଲେ । ତେଣୁ ଉପେନ୍ଦ୍ରବାବୁ- ଦେବେନ୍ଦ୍ର ବାବୁ ଦଦେଇଙ୍କୁ ସୁରେନ୍ଦ୍ର ଭାଇନା ବୋଲି ଡାକୁଥିଲେ । ପ୍ରତିମାସରେ ମହେନ୍ଦ୍ର ବାବୁ, ଶରତ ବାବୁ ଥରେ ଅନ୍ତତଃ ଗାଁକୁ ଆସୁଥିଲେ । ସେମାନେ ଆସିଲେ ଆମ ଘରକୁ ଆସନ୍ତି । ଖରାଦିନ ହୋଇଥିଲେ ବେଲପଣା ହେଉ କିମ୍ବା ବସାଦହି ସରବତ୍ ଖା'ନ୍ତି । ସେମାନେ ଆସିବା ଖବର ପ୍ରଚାର ହୋଇଗଲେ ଆମ ଗାଁରେ ଲୋକେ ଲାଇନ୍ ବାନ୍ଧି ନିଜ ଦିହ କଥା ପାଇଁ ଜମା ହୁଅନ୍ତି । ଦୁହେଁ ମଧ ଦାଣ୍ଡ ବାରଣ୍ଡାରେ ଚଉକିରେ ବସି ସମସ୍ତଙ୍କୁ ଦେଖନ୍ତି ଏବଂ ପ୍ରେସ୍କ୍ରିପସନ୍ ଦିଅନ୍ତି ।

ଦଦେଇ ମତେ ଅନେକ ସମୟରେ କୁହନ୍ତି ତୁମେ ଯାଇ ମହେନ୍ଦ୍ରବାବୁ ଶରତ ବାବୁଙ୍କ ସାଙ୍ଗରେ ଦେଖା କରିବ । ସେମାନେ ଦେବୋପମ ବ୍ୟକ୍ତି । ସେମାନଙ୍କ ସାଙ୍ଗରେ ସମ୍ପର୍କ ରଖିଲେ ତୁମର ମଙ୍ଗଳ ହେବ । ମୁଁ ଶୁଣେ । କିନ୍ତୁ କିଛି କହେ ନାହିଁ । ଥରେ ବୋଧେ ୧୯୭୦ ମସିହା ନଭେମ୍ବର ମାସ ହେବ । ଦଦେଇ ମୋ ପାଖକୁ ଭୁବନେଶ୍ୱର ଆସିଥିଲେ । ସେତେବେଳେ ମୋ ସାନଭାଇ ଧୀର ମୋ ପାଖରେ ରହି ବାଣୀବିହାରରେ ପଢୁଥିଲା । ମୋ ପାଖରେ ଅନାମ ନନା ନାମରେ ରାଜ୍ୟ ବିଦ୍ୟୁତ୍ ବୋର୍ଡ଼ର ଜଣେ ପିଅନ ରହି ରୋଷେଇବାସ କରୁଥିଲେ । ଅନାମ ନନା ବେଶ୍ ନୈଷ୍ଠିକ ବ୍ରାହ୍ମଣ । ସକାଳୁ ସକାଳୁ ଗାଧୋଇ ଠାକୁର ପୂଜା କରି କପାଳରେ ଚନ୍ଦନ ଚିତା ମାରି ରୋଷେଇ କରନ୍ତି । ଦଦେଇ ଅନାମ ନନାଙ୍କ କାର୍ଯ୍ୟକଳାପରେ ଖୁସି ହେଉଥିଲେ । ଦଦେଇ ସେଥର କଟକ ଯାଇ ମହେନ୍ଦ୍ର ବାବୁ ଶରତ ବାବୁଙ୍କୁ ଦେଖା କରିବାକୁ ଯିବେ ବୋଲି କହିଲେ । ଦୁହିଁଙ୍କ ଘର ପାଇଁ ବାଙ୍କୀରୁ ବଡ଼ ବଡ଼ ଦୁଇ ତାଳପତ୍ର ଭୋଗେଇରେ ଛେନା ଖଇ ଧରି ଆସିଥିଲେ । ବାଙ୍କୀ ଛେନାଖଇର ଖୁବ୍ ସୁଖ୍ୟାତି ରହିଛି । ସେ ବସ୍‌ରେ ଯିବା ପାଇଁ ବାହାରିଥିଲେ । ମାତ୍ର ମୁଁ ଗୋଟିଏ କାର୍ ଯୋଗାଡ଼ କରି ତାଙ୍କୁ ନେଇ କଟକ ଗଲି । ମୋର ମନେ ହେଲା କାର୍‌ରେ ମହେନ୍ଦ୍ର ବାବୁ ଶରତ ବାବୁଙ୍କ ଘରକୁ ଯିବାକୁ ତାଙ୍କୁ କିପରି ଅସ୍ୱସ୍ତିବୋଧ ହେଲା । ମତେ କହିଲେ ବସ୍‌ରେ ଯାଇ ରିକ୍ସାରେ ଯାଇଥିଲେ ଭଲ ହୋଇଥାନ୍ତା । ମୁଁ କହିଲି ବସ୍‌ରେ ଯାଇ ଦୁହିଁଙ୍କ ଘରୁ ଆସିବା ବେଳକୁ ସନ୍ଧ୍ୟା ହୋଇଯିବ । ସେ ଆଉକିଛି କହିଲେ ନାହିଁ ।

ଆମେ ପ୍ରଥମେ ମହେନ୍ଦ୍ରବାବୁଙ୍କ ଦୋଳମୁଣ୍ଡେଇ ଛକ ପାଖ ଘରକୁ ଗଲୁ । ମହେନ୍ଦ୍ର ବାବୁ ମେଡ଼ିକାଲ୍‌ରୁ ଅବସର ନେଇଥିଲେ । ଆମକୁ ଦେଖି ଭାରି ଖୁସି ହୋଇଗଲେ । ବାଙ୍କୀ ଛେନା ଖଇ ଦେଖି ଖୁସି ହୋଇ ତାଙ୍କୁ ଖୋଲି

ଆଗ ଦି'ତିନିଟା ପାଟିରେ ପକାଇଲେ । ମୋତେ ପଚାରିଲେ ବରି ତୁ ଏବେ ଭୁବନେଶ୍ୱରରେ ରହୁଛୁ । ଯା ହେଉ ମୁଁ ଭାରି ଖୁସି । ତୋ ନା ଶୁଣୁଛି । ତା'ପରେ ତାଙ୍କ ସ୍ତ୍ରୀକୁ ଡାକ ପକାଇ କହିଲେ ଦମୟନ୍ତୀ ସୁର ଆଉ ବରି ଆସିଛନ୍ତି । ଆମ ସମସ୍ତଙ୍କ ପାଇଁ ଭାତ ବାଢ଼ । ମୁଁ ମନା କରୁଥିଲି । ମାତ୍ର ଦଦେଇ କହିଲେ ମହେନ୍ଦ୍ରବାବୁ ଖରାପ୍ ଭାବିବେ । ଅଗତ୍ୟା ବାଧ ହୋଇ ଖାଇଲି । ଖାଇସାରି କିଛି ସମୟ କଥାବାର୍ତ୍ତା କରି ସେଠାରୁ ଶରତବାବୁଙ୍କ କାଜୀବଜାର ଘରକୁ ଆସିଲୁ । ଶରତ ବାବୁ ମତେ ସ୍ନେହରେ ବରିଆ ବୋଲି ଡାକନ୍ତି । ମୁଁ ଭୁବନେଶ୍ୱର ଯିବାପରେ ସେ ତାଙ୍କର ପୂର୍ବରୁ ଥିବା ଜଣେ ଫାର୍ମାସିଷ୍ଟଙ୍କ ବଦଳି ବନ୍ଦ କରିବା ପାଇଁ ମୋ ପାଖକୁ ଖଣ୍ଡିଏ ଚିଠି ଦେଇଥିଲେ । ମୁଁ ତାଙ୍କ ଫାର୍ମସିଷ୍ଟଙ୍କୁ ମଧ ଜାଣିଥିଲି । ସେ ଶରତବାବୁଙ୍କୁ କହି ମୋ ପାଖକୁ ଚିଠି ଲେଖାଇ ସେ ଚିଠି ଧରି ଆସିଥିଲେ । ମୁଁ ଶରତ ବାବୁଙ୍କ ଚିଠି ପଢ଼ି ତାଙ୍କୁ ସାଙ୍ଗରେ ଧରି ସ୍ୱାସ୍ଥ୍ୟମନ୍ତ୍ରୀଙ୍କ ପାଖକୁ ଯାଇ ବଦଳି ବନ୍ଦ କରି ଦେଇଥିଲି । ସେ ସବୁକଥା ଶରତବାବୁଙ୍କୁ କହିଥିଲେ । ଆମେ ଶରତ ବାବୁଙ୍କ ଘରେ ପହଞ୍ଚିବା ବେଳେକୁ ଶରତବାବୁ ତାଙ୍କ ଦାଣ୍ଡଘରେ ବସି ରୋଗୀ ଦେଖୁଥିଲେ । ଆମକୁ ଦେଖି ପାଖରେ ବସାଇଲେ । ରୋଗୀ ବେଶୀ ନଥିଲେ । ଛେନାଖଇ ଦେଖି ସିଏ ମଧ ଖୁସି ହୋଇ ପାଟିରେ ଦି'ଟା ପକାଇଲେ । ତା'ପରେ ଦଦେଇଙ୍କୁ କହିଲେ ସୁର- ବରିଆ ଆମ ବାଙ୍କୀର ଗର୍ବ । ତା'ର ଏତେ ସୁଖ୍ୟାତି ଭୁବନେଶ୍ୱରରେ ମୁଁ ଶୁଣି ଭାରି ଖୁସି । ଯାହାହେଉ ତମ ବଂଶର ସେ ମୁଖ ଉଜ୍ଜ୍ୱଳ କରିଛି । ସମ୍ଭବତଃ ମୋ ଜୀବନରେ ତାହାହିଁ ସବୁଠାରୁ ଆନନ୍ଦର ମୁହୂର୍ତ୍ତ ଥିଲା । ଦଦେଇଙ୍କ ସମ୍ମୁଖରେ ଶରତବାବୁଙ୍କ ମୋ ପ୍ରତି ପ୍ରଶଂସା ଶୁଣି ଦଦେଇ ସେଦିନ ମନ ଭିତରେ ଭାରି ଖୁସି ହୋଇଥିଲେ । ପରେ ମୁଁ ସେ କଥା ବୋଉଠାରୁ ଶୁଣିଥିଲି ।

ମୋ ବାହାଘର ପରେ ଦଦେଇ ଆଉ ବୋଉ ମୋ ସ୍ତ୍ରୀକୁ ଭାରି ଭଲ ପାଉଥିଲେ । ଯେତେବେଳେ ଭୁବନେଶ୍ୱର ଆସୁଥିଲେ ସବୁ ଅରୁଆ ଚାଉଳ, ମୁଗଡାଲି, ଜାମୁଡ଼ି ସାରୁ ଆଦି ଆଣି ଆସୁଥିଲେ । ମତେ ବୋଉ କହେ ସ୍ନେହ ଆମ ଘରର ଲକ୍ଷ୍ମୀ । ତା' ମନରେ କେବେ ତୁ କଷ୍ଟ ଦେବୁ ନାହିଁ ।

ବିବାହ ଜଣେ ମଣିଷର ଜୀବନକୁ ସୁଖମୟ କରେ ବା ବିଷମୟ କରେ ଏକଥା ଅନେକ କୁହନ୍ତି । ବିବାହକୁ ଅନେକ ସମୟରେ ଅନେକ ଲୋକ କନ୍ୟାର ଭାଗ୍ୟ ଉପରେ ପୁରୁଷର ଭାଗ୍ୟକୁ ଯୋଡ଼ିଥାନ୍ତି । ପୁରୁଷର ଜୀବନ ବିବାହ ପରେ ଉର୍ଦ୍ଧ୍ୱମୁଖୀ ହୁଏ ବା ନିମ୍ନମୁଖୀ ହୁଏ । ମୋର ବିବାହ ମୋ ଜୀବନରେ ସୁଖକର ଦାମ୍ପତ୍ୟ ଜୀବନର ମୂଳଦୁଆ ପକାଇଥିଲା । ମୋ ପତ୍ନୀ ସ୍ନେହଲତା ମୋ ଜୀବନରେ ସୁଖ-ଶାନ୍ତି ଓ ଉନ୍ନତିର ଉତ୍ସ ଥିଲେ । ମୋ ଦଦେଇ ମୋ ଜାତକ ଆଉ ସ୍ନେହ ଜାତକ ଦେଖି ଯେଉଁ ଭବିଷ୍ୟବାଣୀ କରିଥିଲେ ତାହା ସତ୍ୟରେ ପରିଣତ ହେଲା । ମୁଁ ଈଶ୍ୱର ବିଶ୍ୱାସୀ । ତାହାହିଁ ମୁଁ ପାଇଥିଲି ମୋ ଦଦେଇ ଆଉ ବୋଉଙ୍କ ଚରିତ୍ରରୁ ।

ସାମ୍ବାଦିକ ରୂପେ ମୁଁ ନିଜର ପେଶାଗତ କାର୍ଯ୍ୟ ସଙ୍ଗେ ସଙ୍ଗେ ସାମ୍ବାଦିକ ସଂଗଠନ କାମରେ ମଧ ମାତି ଯାଇଥିଲି । ୧୯୭୦-୭୧ ମସିହା ପର୍ଯ୍ୟନ୍ତ ଭାରତ ବର୍ଷରେ ଗୋଟିଏ ସାମ୍ବାଦିକ ସଂଗଠନ ଥିଲା । ତା' ହେଲା ଇଣ୍ଡିଆନ୍ ଫେଡେରେସନ ଅଫ୍ ୱାର୍କିଂ ଜର୍ଣ୍ଣାଲିଷ୍ଟସ୍ । ଓଡ଼ିଶାରେ ଏହାର ସ୍ୱୀକୃତି ପ୍ରାପ୍ତ ସଂଗଠନ ହେଲା ଉତ୍କଳ ସାମ୍ବାଦିକ ସଂଘ । ମୁଁ ଯେଉଁ ସମୟର କଥା କହୁଛି ଅର୍ଥାତ୍ ଷାଠିଏ ଦଶକରେ ଏହାର ଯେଉଁମାନେ ନେତା ଥିଲେ ସେମାନେ ହେଲେ ଏନ୍.କେ. ସ୍ୱାମୀ(ଟାଇମ୍ସ ଅଫ୍ ଇଣ୍ଡିଆ), ଗୋପାଳ ମିଶ୍ର(ଅମୃତ ବଜାର ପତ୍ରିକା), ବାଳକୃଷ୍ଣ କାନୁନ୍‌ଗୋ(ମାତୃଭୂମି, ପରେ ପ୍ରଜାତନ୍ତ୍ର), ରାମକୃଷ୍ଣ ବେହେରା(ପି.ଟି.ଆଇ.), ନାରାୟଣ ରଥ(ସମାଜ) ପ୍ରମୁଖ । ମୁଁ ସାମ୍ବାଦିକତାରେ ଆରମ୍ଭରୁ ନିଜପାଇଁ ଏକ ପରିଚୟ ସୃଷ୍ଟି କରି ପାରିଥିଲି । ତେଣୁ ମୋତେ ଏହାର କର୍ମକର୍ତ୍ତାମାନେ

ଏକପ୍ରକାର ବାଧ କରି ଏଥିରେ ସଭ୍ୟ କରିଥିଲେ । ସଂଘର ମୁଖପତ୍ର ପାଇଁ ମୁଁ କଟକରୁ କିଛି ବଡ଼ବଡ଼ କମ୍ପାନୀ ପାଖରୁ ବିଜ୍ଞାପନ ଆଣୁଥିଲି । ୧୯୬୬ରେ ଆଇ.ଏଫ୍.ଡବ୍ଲ୍ୟୁ.ଜେ.ର ହାଇଦ୍ରାବାଦ ବାର୍ଷିକ ସମ୍ମିଳନୀରେ ଯୋଗଦେବାପାଇଁ ମୁଁ ଓଡ଼ିଶା ପ୍ରତିନିଧି ଦଳରେ ହାଇଦ୍ରାବାଦ ଯାଇଥିଲି । ସେଠାରେ ମୋର ଯାହା ମନେଅଛି ଆମେ ସମସ୍ତେ ଏମ୍.ଏଲ୍.ଏ. ହଷ୍ଟେଲରେ ରହିଥିଲୁ । ଗାନ୍ଧୀ ମେଡ଼ିକାଲ୍ କଲେଜ ପାଖରେ ଏହି ଏମ୍.ଏଲ୍.ଏ. ହଷ୍ଟେଲ୍ ଥିଲା । ସେତେବେଳେ ଅଧିର ବିଶ୍ୱାସ ନାମରେ କଲିକାର ଜଣେ ସାମ୍ବାଦିକ ସର୍ବଭାରତୀୟ ସଭାପତି ଥିଲେ । ଏହାପରେ ମୁଁ ୧୯୬୮ରେ ବମ୍ବେଠାରେ ଜାତୀୟ ପରିଷଦ ବୈଠକରେ ଯୋଗ ଦେଇଥିଲି । ମୁଁ ଭୁବନେଶ୍ୱରରେ ୧୯୬୬ରେ ମାତୃଭୂମି ପ୍ରତିନିଧି ହୋଇ ବିଧିବଦ୍ଧଭାବେ ଯୋଗଦେବା ପରେ ଏମାନଙ୍କ ସହ ଅର୍ଥାତ୍ ଉତ୍କଳ ସାମ୍ବାଦିକ ସଂଘ କର୍ମକର୍ତ୍ତାଙ୍କ ସହ ମୋର ଆଉ ପଟିଲା ନାହିଁ । ସେ କଥା ମୁଁ ପୂର୍ବରୁ କହିଛି । ଥରେ ମୁଁ ସଂସ୍କୃତି ବିଭାଗରୁ ଉତ୍କଳ ସାମ୍ବାଦିକ ସଂଘ ନାମରେ ତିନିହଜାର ଟଙ୍କାର ଏକ ଲାଇବ୍ରେରୀ ଗ୍ରାଣ୍ଟ ଚେକ୍ ଆଣି ତତ୍କାଳୀନ ସଭାପତି ଏନ୍.କେ. ସ୍ୱାମୀଙ୍କୁ ଦେଇଥିଲି । ପରବର୍ଷ ଅର୍ଥାତ୍ ୧୯୬୮ରେ ଭୁବନେଶ୍ୱର କଳାମଣ୍ଡପରେ ବାର୍ଷିକ ସାଧାରଣ ସଭାରେ ଆୟ-ବ୍ୟୟ ହିସାବ ବେଳେ ଏ ତିନିହଜାର ଟଙ୍କାର ଉଲ୍ଲେଖ ନଥିବା ଦେଖି ମୁଁ ଏ ଟଙ୍କା କୁଆଡ଼େ ଗଲା ବୋଲି ସଭାରେ ପଚାରିଲି । ଟଙ୍କା-ପଇସା ହିସାବରେ ଗଫଲତି ଥିବା କଥା ମୁଁ ଜୋର୍‌ରେ ପାଟିତୁଣ୍ଡ କରିବାରେ ସଭାରେ ଉପସ୍ଥିତ ଅଧିକାଂଶ ସାମ୍ବାଦିକ ମୋତେ ସମର୍ଥନକରି ହିସାବ ଯାଞ୍ଚ୍ କରିବା ପାଇଁ ଦାବି କଲେ । ଏଥିପାଇଁ ତିନିଜଣିଆ ସମୀକ୍ଷକ କମିଟି ଗଢ଼ା ହେଲା । ସମସ୍ତଙ୍କ ଦାବି ଫଳରେ ଏହି କମିଟିରେ ମୋତେ ଜଣେ ସଭ୍ୟରୂପେ ରଖାଗଲା । ଅନ୍ୟ ଦୁଇଜଣ ହେଲେ ପ୍ରଜାତନ୍ତ୍ରର ବାଳକୃଷ୍ଣ କାନୁନ୍‌ଗୋ ଏବଂ ଗୋପାଳ ମିଶ୍ର । ନିଷ୍ପତ୍ତି ହେଲା ସଂଘର ଆୟ-ବ୍ୟୟ ଆମେ ତିନିଜଣ ଏକତ୍ର ଯାଞ୍ଚ୍ କରିବୁ । ଏବଂ ଚାନ୍ଦା ଆଦାୟ ପାଇଁ ଆମେ ଏକତ୍ର ଯିବୁ । ମାତ୍ର କାର୍ଯ୍ୟକ୍ଷେତ୍ରରେ ତା' ହେଲା ନାହିଁ । ମୋତେ ନନେଇ ମୋ ବଦଳରେ ପି.ଟି.ଆଇ.ର ରାମକୃଷ୍ଣ ବେହେରାଙ୍କୁ ଏ ଦୁହେଁ ନିଜ ସାଙ୍ଗରେ ନେଲେ । ଥରେ ମୁଁ ଜଳ ସମ୍ପଦ ମନ୍ତ୍ରୀ ସୁରେନ୍ଦ୍ର ପଟ୍ଟନାୟକଙ୍କ ଘରକୁ ଯାଇଥିଲି । ମୁଁ ତାଙ୍କ ଘରେ ପହଞ୍ଚିଲା ବେଳକୁ ଏ ତିନିଜଣ ତାଙ୍କ ଘରୁ ବାହାରି ଆସିଲେ । ମୁଁ ସେମାନଙ୍କୁ ଦେଖା ନଦେଇ ଲୁଚିଗଲି । ସେମାନେ ଯିବାପରେ ମୁଁ ସୁରେନ୍ଦ୍ର ବାବୁଙ୍କ କୋଠରୀକୁ ଗଲି । ମୋତେ ଦେଖି ପଚାରିଲେ ବରେନ୍ଦ୍ର କ'ଣ ଖବର । ବାଙ୍କୀର ଗୋଲକ ମହାରଣା ନାମକ ଜଣେ ଗାନ୍ଧିବାଦୀ ନେତାଙ୍କ ସହ ସୁରେନ୍ଦ୍ର ବାବୁଙ୍କର ଅତ୍ୟନ୍ତ ଘନିଷ୍ଠ ସମ୍ପର୍କ ଥିଲା । କାରଣ ସ୍ୱାଧୀନତା ଆନ୍ଦୋଳନ ସମୟରେ ସୁରେନ୍ଦ୍ରବାବୁ, ବନମାଳୀ ପଟ୍ଟନାୟକ ଏପରିକି ଡଃ ମହତାବ ଗୋଲକ ମହାରଣାଙ୍କ ବଗିଚାରେ ଅଣ୍ଡର ଗ୍ରାଉଣ୍ଡରେ ରହୁଥିଲେ । ମୋର ଯେତେବେଳେ ତାଙ୍କ ସହ ଦେଖା ହୁଏ ସେ ଗୋଲକ ମହାରଣାଙ୍କ ସମ୍ପର୍କରେ ପଚାରନ୍ତି । ସେଦିନ ଯାଡୁ ସ୍ୟାଡୁ କଥାବାର୍ତ୍ତା ପରେ ମୁଁ ପଚାରିଲି ଗୋପାଳବାବୁହେରିକା କୁଆଡ଼େ ଆସିଥିଲେ ? ସେ କହିଲେ ତମ ସାମ୍ବାଦିକ ସଂଘର କ'ଣ ଜାତୀୟ ସମ୍ମିଳନୀ କଟକରେ ହେଉଛି । ସେଥିଲାଗି ଚାନ୍ଦା ପାଇଁ ଆସିଥିଲେ । ମୁଁ ବୁଦ୍ଧ ରାଜା କଣ୍ଟ୍ରାକ୍ଟରକୁ ଦଶହଜାର ଟଙ୍କା ଦେବାପାଇଁ କହିଦେଲି । ଆଉ ଆମ ଚିଫ୍ ଇଞ୍ଜିନିୟର ବୀରେନ ପଟ୍ଟନାୟକଙ୍କୁ ପାଞ୍ଚହଜାର ଟଙ୍କା ଯୋଗାଡ଼ କରିଦେବାକୁ କହିଛି । ମୁଁ ଯେଉଁକାମରେ ଯାଇଥିଲି ସେ ସମ୍ପର୍କରେ କଥାବାର୍ତ୍ତା ହୋଇ ଫେରିଲି । ଚାରି/ପାଞ୍ଚ ଦିନ ପରେ ମୁଁ ଜଳସମ୍ପଦ ଠିକାଦାର ଜଗଦିଶ ବୁଦ୍ଧରାଜଙ୍କ ପାଖକୁ ଯାଇ ସୁରେନ୍ଦ୍ରବାବୁ କହିଥିବା ଟଙ୍କା କଥା ପଚାରିଲି । ସେ କହିଲେ ଗୋପାଳବାବୁ ଆଉ ଦୁଇଜଣ ଆସି ମୋ ପାଖରୁ ଟଙ୍କା ନେଇ ଯାଇଛନ୍ତି । ତାଙ୍କୁ ରସିଦ୍ ଦିଆଯାଇଛି କି ବୋଲି ପଚାରିବାରୁ ସେ ଘରୁ ରସିଦ୍ ଆଣି ଦେଖାଇଲେ । ମୁଁ ରସିଦ୍ ନମ୍ବର ଟିପି ଆଣି ଆସିଲି । ବୀରେନ ବାବୁଙ୍କ ସହ ଯୋଗାଯୋଗ କରି ଜାଣିଲି ସେ ମଧ ପାଞ୍ଚହଜାର ଟଙ୍କା ଦେଇଛନ୍ତି ।

୧୯୭୧ ଜାନୁଆରୀ ମାସରେ କଟକ ବାରବାଟି ଷ୍ଟାଡିୟମ୍‌ର କ୍ଲବ୍ ହାଉସ୍‌ରେ ଆଇ.ଏଫ୍.ଡବ୍ଲ୍ୟୁ.ଜେ. ଜାତୀୟ ପରିଷଦ ସମ୍ମିଳନୀ ହୋଇଥିଲା । ଏହି ସମ୍ମିଳନୀ ପାଇଁ ପ୍ରବଳ ଚାନ୍ଦା ଆଦାୟ ହୋଇଥିବା ବିଷୟ ଚାରିଆଡ଼େ ପ୍ରଚାର ହୋଇଥିଲା । ଏ ସମସ୍ତ ଟଙ୍କା ଚାରି/ପାଞ୍ଚଜଣ ଆଦାୟ କରୁଛନ୍ତି । ସମ୍ମିଳନୀ ଶେଷହେବାପରେ ମୁଁ ହିସାବ-ପତ୍ର ଦାଖଲ ପାଇଁ ଦାବି କଲି । ମୋର ସ୍ପଷ୍ଟ ମନେ ଅଛି ଦୁଇନମ୍ବର ୟୁନିଟ୍ ଲଳିତ କଳାପୀଠରେ କାର୍ଯ୍ୟକାରୀ କମିଟି ବୈଠକ ବସିଥିଲା । ଆମେ କେତେଜଣ ହିସାବ ମାଗିବାରେ କର୍ମକର୍ତ୍ତାମାନେ ହିସାବ ଦେଲେ । ମୁଁ ରସିଦ୍ ବହି ମାଗିଲି । ମୋତେ ରସିଦ୍ ବହି ଦିଆଗଲା । କାରଣ ହିସାବ ଯାଞ୍ଚ ପାଇଁ ମୋତେ ଆମ ଜେନେରାଲ୍ ବଡ଼ି ମିଟିଂରେ ଦାୟିତ୍ୱ ଦିଆଯାଇଥିଲା । ମୁଁ ରସିଦ୍ ବହିରୁ ଜଗଦିଶ ବୁନ୍ଧରାଜଙ୍କ ରସିଦ ନମ୍ବର ଯେତେବେଳେ ବାହାର କଲି ଦେଖିଲି ସେଥିରେ ମୁଣ୍ଡା ରସିଦ୍‌ରେ ଦଶହଜାର ବଦଳରେ ଏକ ହଜାର ଟଙ୍କା ପଡ଼ିଛି । ମୁଁ ରସିଦ୍ ବହି ଧରି ପଚାରିଲି ଏ ରସିଦ୍‌ରେ ଦଶହଜାର ସ୍ଥାନରେ ଏକ ହଜାର ଟଙ୍କା କିପରି ପଡ଼ିଛି ? ସେମାନେ ଗାଲୁଆମି କରି ମୋ କଥାକୁ ଉଡ଼ାଇ ଦେଇ କହିଲେ ଯିଏ ଯେତେ ଦେଖିଛି ସେତିକି ପଡ଼ିଛି । ମୁଁ ତା'ପରେ ପାଟିତୁଣ୍ଡ କଲି । ସେଇ ମୁହୂର୍ତ୍ତରେ ଜଗଦିଶ ବୁନ୍ଧରାଜଙ୍କ ପାଖକୁ ଯିବାପାଇଁ ଦାବି କଲି । ମାତ୍ର ସେମାନେ ମୋ କଥାକୁ କର୍ଣ୍ଣପାତ ନକରି କହିଲେ ଯାହା କରିବା କଥା କର । କ'ଣ ବଙ୍କା କରିଦେବ ଆମର ? ମୁଁ ସେଇ ମୁହୂର୍ତ୍ତରେ ମିଟିଂରୁ ବାହାରି ଆସିଲି । ଆସିବା ପୂର୍ବରୁ କହି ଆସିଲି ଦେଖିବେ କ'ଣ କରିବି । ମୁଁ ଚାଲିଆସିବା ପରେ ପରେ ହିନ୍ଦୁସ୍ଥାନ ଷ୍ଟାଣ୍ଡାର୍ଡର ନିତିଶ ଚକ୍ରବର୍ତ୍ତିଏବଂ ନାରାୟଣ ରଥ ମଧ୍ୟ ଚାଲିଆସିଲେ ।

## -ଉତ୍କଳ ସାମ୍ବାଦିକ ସଂଘରୁ ଇସ୍ତଫା-

ମୁଁ ଜାଣେନା ମୋ ଚରିତ୍ରର ଏ ଦିଗଟି ସମ୍ଭବତଃ ଜନ୍ମସୂତ୍ରରେ ପାଇଥିଲି । ତା'ହେଲା ଅନ୍ୟାୟ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା । କେବଳ ସ୍ୱର ଉତ୍ତୋଳନ ନୁହେଁ ତା'ର ଶେଷ ଦେଖିବା ପର୍ଯ୍ୟନ୍ତ କାର୍ଯ୍ୟକରେ । ସେଦିନ ସନ୍ଧ୍ୟାରେ ମୁଁ ଫେରିଆସି କ'ଣ କରିବି ବୋଲି ଚିନ୍ତା କଲି । ରାତିରେ ସେଇ କଥା ଭାବିଭାବି ଭଲ ନିଦ ହେଲା ନାହିଁ । ସକାଳୁ ଉଠି ଗାଧୋଇ ସାରି ନାରଣ କ୍ୟାଣ୍ଟିନ୍‌ରୁ ଜଳଖିଆ ଖାଇ ନିତିଶଦାଙ୍କ ପାଖକୁ ଚାଲିଲି । ସେଠି ବସି କଥାବାର୍ତ୍ତା ବେଳେ ସେ କହିଲେ ବରେନ୍ଦ୍ର ତୁମେ କାଲି ଯେଉଁ ପ୍ରତିବାଦ କଲ ମୁଁ ଭାରି ଖୁସି । ମୁଁ କହିଲି ଦାଦା- ଆମେ ଆଉ ଏକ ଆସୋସିଏସନ୍ ଗଢ଼ିବା । ସେ କହିଲେ ମୁଁ ତୁମ ସାଙ୍ଗରେ ଅଛି । ତୁମେ ନାରଣ ବାବୁ, ଦେବେନ୍ଦ୍ର ମହାନ୍ତି, ବୈରାଗୀ ମହାନ୍ତି, ପ୍ରଶାନ୍ତ ପଟ୍ଟନାୟକ ଇତ୍ୟାଦିଙ୍କ ସହ କଥାବାର୍ତ୍ତା କର । ସେଇଠୁ ମୁଁ ସିଧା ନାରଣବାବୁଙ୍କ ପାଖକୁ ଆସିଲି । ନାରଣ ବାବୁ ମୋ ଘର ଲାଇନ୍‌ରେ ରହୁଥିଲେ । ତାଙ୍କ ପାଖକୁ ଯାଇ ନୂଆ ଆସୋସିଏସନ୍ କଥା କହି ତାଙ୍କୁ ସଭାପତି ହେବା ପାଇଁ କହିଲି । ସେ କହିଲେ ବରେନ୍ଦ୍ର ଆଗେ ଆମେ ସମଭାବାପନ୍ନ ସାମ୍ବାଦିକବନ୍ଧୁମାନଙ୍କ ସହ ଆଲୋଚନା କରି ତା'ପରେ ନିଷ୍ପତ୍ତି ନେବା ।

ମୁଁ ମୋ କାମ ସହ ଏ ଦିଗରେ କଟକ ଆଉ ଭୁବନେଶ୍ୱରରେ ଥିବା ବନ୍ଧୁମାନଙ୍କ ସହ ଯୋଗାଯୋଗ କରୁଥାଏ । ଇତିମଧ୍ୟରେ ହିନ୍ଦୁସ୍ଥାନ ଷ୍ଟାଣ୍ଡାର୍ଡର ନିତିଶ ଚକ୍ରବର୍ତ୍ତିବଦଳି ଯାଇ ତାଙ୍କ ସ୍ଥାନରେ ସୁନିତି ଘୋଷ ଭୁବନେଶ୍ୱର ପ୍ରତିନିଧି ରୂପେ ଯୋଗ ଦେଲେ । ତାଙ୍କ ସହ ଯୋଗାଯୋଗ ପରେ ସେ ଏହି ନୂଆ ସଂଘ ଗଢ଼ିବାରେ ବେଶ୍ ଆଗ୍ରହ ଦେଖାଇଲେ । ୧୯୭୨ ମସିହା ଡିସେମ୍ବର ମାସ ସାତ ତାରିଖରେ ଏହି ନୂଆ ଆସୋସିଏସନ୍ ବିଧିବଦ୍ଧ ଭାବେ ରୂପ ନେଲା । ଏହାର ନାମ ହେଲା ଓଡ଼ିଶା ୟୁନିୟନ୍ ଅଫ୍ ଜର୍ଣ୍ଣାଲିଷ୍ଟ । ପ୍ରଥମ ବୈଠକ ନାରାୟଣ ରଥଙ୍କ ସଭାପତିତ୍ୱରେ

ଅନୁଷ୍ଠିତ ହେଲା । କଟକ ଭୁବନେଶ୍ୱରର ଅନେକ ସାମ୍ବାଦିକ ଓ.ୟୁ.ଜେ.ରେ ଯୋଗଦେଲେ । ମୋ ସ୍ୱପ୍ନ ସଫଳ ହେଲା ।

୧୯୭୩ରେ ଏହି ନୂଆ ୟୁନିୟନ ସେତେବେଳେ ଜାତୀୟ ସ୍ତରରେ ନୂଆ ହୋଇ ଗଢ଼ା ହୋଇଥିବା ଜାତୀୟ ସାମ୍ବାଦିକ ୟୁନିୟନ ସହ ସହବନ୍ଧିତ ହେଲା । ଜାତୀୟ ସାମ୍ବାଦିକ ୟୁନିୟନର ତତ୍କାଳୀନ ସେକ୍ରେଟାରୀ ଏନ୍.କେ. ତ୍ରିଖା ଆମ ୟୁନିୟନକୁ ପତ୍ର ଦେଇ ଏହାକୁ ସ୍ୱୀକୃତି ଦେଲେ । ସେତେବେଳେ ଜାତୀୟ ସାମ୍ବାଦିକ ୟୁନିୟନର ସଭାପତି ଥିଲେ ମାନ୍ଦ୍ରାଜର ବିଖ୍ୟାତ ଇଂରାଜୀ ଦୈନିକ 'ଦି ମେଲ୍'ର ମିନାକ୍ଷୀ ସୁନ୍ଦରମ୍ ଏବଂ ସେକ୍ରେଟାରୀ ଜେନେରାଲ୍ ଥିଲେ ପାର୍ଟନାର ସର୍ଚ୍ଚଲାଇଟ୍ ସମ୍ପାଦକ ଏସ୍.କେ. ରାଓ ।

ଜୀବନରେ ଏ ଅଧ୍ୟାୟ ମୋତେ ଅତ୍ୟନ୍ତ ସନ୍ତୋଷ ଦେଇଥିଲା । ସେଇଦିନ ଠାରୁ ମୋର ଜାତୀୟ ସ୍ତରରେ ଯୋଗାଯୋଗ ଆରମ୍ଭ ହେଲା । ୧୯୭୩ରେ ଓଡ଼ିଶା ୟୁନିୟନ ଅଫ୍ ଜର୍ଣ୍ଣାଲିଷ୍ଟ୍ ପକ୍ଷରୁ ରବିନ୍ଦ୍ର ମଣ୍ଡପରେ ଏକ ଜାତୀୟ ଆଲୋଚନାଚକ୍ର ଅନୁଷ୍ଠିତ ହୋଇଥିଲା । ଏହି ଆଲୋଚନାଚକ୍ରରେ କୁଲ୍‌ଦୀପ ନାୟାର, ଏସ୍.କେ. ରାଓ, ମିନାକ୍ଷୀ ସୁନ୍ଦରମ୍‌ଙ୍କ ସମେତ ପୃଥିବୀଶ୍ ଚକ୍ରବର୍ତ୍ତିପ୍ରମୁଖ ଯୋଗ ଦେଇଥିଲେ । ଓଡ଼ିଶାରୁ ବିଜୁ ପଟ୍ଟନାୟକ, ଡଃ ମହତାବ, ନନ୍ଦିନୀ ଶତପଥୀ(ମୁଖ୍ୟମନ୍ତ୍ରୀ) ପ୍ରମୁଖ ଯୋଗ ଦେଇଥିଲେ । ପୂର୍ବରୁ ଓଡ଼ିଶାରେ ଏତେ ବଡ଼ ଆଲୋଚନାଚକ୍ର ହୋଇନଥିଲା ।

## -ଖାନ୍ନା କମିଶନ-

ଭୁବନେଶ୍ୱରରେ ସାମ୍ବାଦିକ ଭାବେ ଯେଉଁମାନେ କାର୍ଯ୍ୟ କରନ୍ତି ସେମାନେ ମୁଖ୍ୟତଃ ରାଜନୀତି ସମ୍ପର୍କୀୟ ସମ୍ବାଦ ପ୍ରତି ବିଶେଷ ଗୁରୁତ୍ୱ ଦେଇଥା'ନ୍ତି । ୧୯୭୧ ମସିହାରେ ଓଡ଼ିଶାରେ ରାଜନୀତିକ ସ୍ଥିତି ବେଶ୍ ରୋମାଞ୍ଚକର ହୋଇ ଉଠିଥିଲା । ୧୯୬୭ ନିର୍ବାଚନରେ ବିଜୁ ପଟ୍ଟନାୟକଙ୍କ ନେତୃତ୍ୱରେ ଥିବା କଂଗ୍ରେସ ଶୋଚନୀୟ ଭାବେ ପରାସ୍ତ ହେଲା । ବିଧାନସଭାର ୧୪୦ଟି ସ୍ଥାନ ମଧ୍ୟରୁ କଂଗ୍ରେସ ୩୧ଟି ସ୍ଥାନ ଲାଭ କଲାବେଳେ ସ୍ୱତନ୍ତ୍ରଦଳ ୪୯ ଏବଂ ମହତାବଙ୍କ ଜନ କଂଗ୍ରେସ ଦଳ ୨୬ଟି ସ୍ଥାନ ଅଧିକାର କରିଥିଲା । ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ମୁଖ୍ୟମନ୍ତ୍ରୀତ୍ୱରେ ସ୍ୱତନ୍ତ୍ର ଜନ କଂଗ୍ରେସ ମନ୍ତ୍ରିମଣ୍ଡଳ ୧୯୬୭ରେ ଗଠନ ହୋଇଥିଲା । ଏହି ସରକାର ବିଜୁ ପଟ୍ଟନାୟକଙ୍କ ବିରୁଦ୍ଧରେ ଏକ ତଦନ୍ତ କମିଶନ ବସାଇଥିଲେ । ଦିଲ୍ଲୀ ହାଇକୋର୍ଟର ବିଚାରପତି ହଂସରାଜ ଖାନ୍ନା ଏହି ଜଣକିଆ ତଦନ୍ତ କମିଶନ ମୁଖ୍ୟ ଥିଲେ । ଏହି କମିଶନ ସେତେବେଳେ ଡି.ପି.ଆଇ. ଅଫିସ୍ ତଳ ମହଲାର ହଲ୍ (ଅଧୁନା ହରେକୃଷ୍ଣ ମହତାବ ରାଜ୍ୟ ପାଠାଗାର)ରେ ଅନୁଷ୍ଠିତ ହୋଇଥିଲା । ବିଜୁ ପଟ୍ଟନାୟକଙ୍କ ପକ୍ଷରୁ ବିବୁଧେନ୍ଦ୍ର ମିଶ୍ର ସମେତ ପାଞ୍ଚଜଣ ଓକିଲ ମୋକଦ୍ଦମା ଲଢୁଥିବା ବେଳେ ସରକାରଙ୍କ ପକ୍ଷରୁ ଆଡ଼ଭୋକେଟ ଜେନେରାଲ୍ ଅଶୋକ ଦାଶ ମୋକଦ୍ଦମା ଚଳାଉଥିଲେ । ମୁଁ ପ୍ରତିଦିନ କମିଶନ ତଦନ୍ତ ବେଳେ ଉପସ୍ଥିତ ରହି ତା'ର ବିବରଣୀ ମାତୃଭୂମିରେ ଦେଉଥିଲି । ଜେରା ବେଳେ ବହୁ କୌତୁହଳପୂର୍ଣ୍ଣ ଘଟଣାମାନ ଘଟୁଥିଲା । ଦିନେ ଅଶୋକ ଦାଶ ଜେରା ଛଳରେ ବିଜୁବାବୁଙ୍କ ଆଡ଼କୁ ହାତ ଦେଖାଇ କହିଲେ 'ମିଃ ଲର୍ଡ- ଦିସ୍ ମ୍ୟାନ୍ ହାଜ୍ ସ୍ୱଏଲ୍ଡ଼ କ୍ରୋରଃ ଅଫ୍ ରୁପିଜ୍ ଅଫ୍ ଦି ଏକ୍ସ ଚେକର ଫର୍ ହିଜ୍ ହୁଇମ୍ ।'

ବିଜୁବାବୁ ବସିଥିଲେ । ଅଶୋକବାବୁଙ୍କ ଜେରା ଶୁଣି ଠିଆ ହୋଇପଡ଼ି କହିଲେ ମିଃ- ଲର୍ଡ ଆଇ ୱାଣ୍ଟ ଟୁ ଆକ୍ସାଏ କୋଣ୍ଟିନ୍ ଟୁ ମାଇଁ ଲର୍ଣ୍ଣେଡ ଫ୍ରେଣ୍ଡ । ତା'ପରେ ବିଚାରପତି ଖାନ୍ନାଙ୍କୁ ଚାହିଁ ଅଶୋକ ବାବୁଙ୍କ ଉଦ୍ଦେଶ୍ୟରେ କହିଲେ ଆଇ ୱାଣ୍ଟ ଲେଟ୍ ହିମ୍ ଟେଲ୍ ହାଓମେନି ଜିରୋଜ୍ ଆଫଟର ୱାନ୍ ମେକ୍ ୱାନ୍ କ୍ରୋର୍ ?

ଅଶୋକବାବୁ ବିଜୁବାବୁଙ୍କ ପ୍ରଶ୍ନ ଶୁଣି ସାମାନ୍ୟ ହସିଲେ । କହିଲେ ମିଃ ଲର୍ଡ ନେଇଦର ମି ନର ମାଇଁ ଫାଦର ହୁ ୱାଜ୍ ଏ ୱେଲ୍‌ନୋନ୍ ଲିଡର୍ (ପଣ୍ଡିତ ନୀଳକଣ୍ଠ ଦାସ) ହାଭ୍ ନଟ୍ ସିନ୍ କ୍ରୋର୍ ଅଫ୍ ରୁପିଜ୍ । ସୋ କୋଣ୍ଟିନ ଅଫ୍ ଟେଲିଂ ହାଓମେନି ଜିରୋଜ୍ ଆଫଟର୍ ୱାନ୍ ମେକ୍ ଏ କ୍ରୋର୍ ଡଜନଟ୍ ଆରାଇଜ୍ ।' ବିଜୁବାବୁ ମଧ୍ୟ ଛାଡ଼ିବା ଲୋକ ନୁହନ୍ତି । ସେ କହିଲେ ମିଃ ଲର୍ଡ ହ୍ୱେନ୍ ମାଇଁ ଲର୍ଣ୍ଣେଡ ଫ୍ରେଣ୍ଡ୍ ହାଜ୍ ନଟ୍ ସିନ୍ ଏ କ୍ରୋର୍ ଅଫ୍ ରୁପିଜ୍ ସୋ ହାଓ ହି କାଲକୁଲେଟ୍ ଦ୍ୟାଟ୍ ଆଇ ହାଭ୍ ୱେଷ୍ଟେଡ କ୍ରୋରସ୍ ଅଫ୍ ରୁପିଜ୍ । ଆଇ ମେ ମେନସନ ବିଫୋର ଆଇ କମ୍ ଟୁ ପଲିଟିକ୍ସ ଆଇ ହାଭ୍ ଏର୍ଣ୍ଣଡ କ୍ରୋରସ୍ ଅଫ୍ ରୁପିଜ୍ । ସୋ ଦି ଆଲିଗେସନ୍ ଅଫ୍ ମାଇଁ ଫ୍ରେଣ୍ଡମେ କାଇଣ୍ଡଲି ବି ଏକ୍ସପଞ୍ଜଡ୍ । ଏହି ଯୁକ୍ତିତର୍କ ସେତେବେଳେ କୋର୍ଟରୁମ୍‌ରେ ପ୍ରବଳ ହାସ୍ୟରୋଳ ସୃଷ୍ଟି କରିଥିଲା ।

ଓଡ଼ିଶା ରାଜନୀତିରେ ସେତେବେଳେ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କୁ ଚାଣକ୍ୟ ବୋଲି କୁହା ଯାଉଥିଲା । କୂଟବୁଦ୍ଧିରେ ଉଭୟ ଡଃ ମହତାବ ଆଉ ବିଜୁବାବୁଙ୍କୁ ସେ ବେଶ୍ ହଇରାଣ କରି ଦେଇଥିଲେ । ମହତାବଙ୍କ ସହ ମିଶି ସେ ବିଜୁବାବୁଙ୍କ ବିରୁଦ୍ଧରେ ଖାନ୍ନା କମିଶନ ବସାଇ ଦୁର୍ନୀତି ତଦନ୍ତ କରିଥିବା ବେଳେ ବିଜୁବାବୁଙ୍କ ସହ ମିଶି ଡଃ ମହତାବଙ୍କ ବିରୁଦ୍ଧରେ ମୁଧୋଲ କର କମିଶନ ବସାଇ ସିରାଜୁଦ୍ଦିନ ଖଣି ଦୁର୍ନୀତି ତଦନ୍ତ କରିଥିଲେ । ମୁଁ ଜଣେ ସାମ୍ବାଦିକ ରୂପେ ଏହି ଘଟଣାକୁ ସେତେବେଳେ ମାତୃଭୂମିରେ ସ୍ୱତନ୍ତ୍ର ସମ୍ବାଦ ନିବନ୍ଧ ରୂପେ ଲେଖୁଥିଲି । ତେବେ ସିଂହଦେଓ ମଧ୍ୟ ଏହି କମିଶନ ରାଜନୀତିରୁ ବାଦ୍ ଯାଇନଥିଲେ । ଶ୍ରୀମତୀ ନନ୍ଦିନୀ ଶତପଥୀ ସିଂହଦେଓଙ୍କ ବିରୁଦ୍ଧରେ କେନ୍ଦୁପତ୍ର ଦୁର୍ନୀତି ପାଇଁ ସରଜୁ ପ୍ରସାଦ କମିଶନ ବସାଇଥିଲେ । ତେଣୁ ବସ୍ତୁତଃ ୧୯୬୭ରୁ ୧୯୭୪ ମସିହା ପର୍ଯ୍ୟନ୍ତ ଓଡ଼ିଶାରେ ଏହି କମିଶନ ତଦନ୍ତ ରାଜନୀତି ଲୋକଙ୍କ ପାଇଁ ଅତ୍ୟନ୍ତ ମୁଖରୋଚକ ସମ୍ବାଦ ଥିଲା । ମୁଁ ମଧ୍ୟ ଏହି ସମ୍ବାଦକୁ ବେଶ୍ ବନେଇ ଚୁନେଇ ପରିବେଷଣ କରୁଥିଲି ।

୧୯୭୧ ଜାନୁଆରୀ ୧୨ ତାରିଖରେ ସିଂହଦେଓ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଲେ ଏବଂ ଓଡ଼ିଶାରେ ରାଷ୍ଟ୍ରପତି ଶାସନ ଜାରିହେଲା । ନିର୍ବାଚନ ମାର୍ଚ୍ଚ ମାସ ପ୍ରଥମ ସପ୍ତାହରେ ଅନୁଷ୍ଠିତ ହେଲା । ନିର୍ବାଚନରେ କଂଗ୍ରେସ ଦଳ ୫୧ଟି ସ୍ଥାନ ଅଧିକାର କରି ଏକକ ସଂଖ୍ୟା ଗରିଷ୍ଠତା ଲାଭ କଲା । ତେବେ ସରକାର ଗଢ଼ିବା ପାଇଁ ଅନ୍ୟ ଦଳର ସମର୍ଥନ ପାଇଲା ନାହିଁ । ଅନ୍ୟ ଦିଗରେ ସ୍ୱତନ୍ତ୍ର ଦଳ ୩୬ଟି ସ୍ଥାନ ଓ ଉତ୍କଳ କଂଗ୍ରେସ ୩୩ଟି ସ୍ଥାନ ଅଧିକାର କରିଥିଲେ । ସବୁଠାରୁ ଆଶ୍ଚର୍ଯ୍ୟର ବିଷୟ ହେଲା ଯେଉଁ ବିଜୁବାବୁଙ୍କ ବିରୁଦ୍ଧରେ ସିଂହଦେଓଙ୍କ ସରକାର ଖାନ୍ନା କମିଶନ ବସାଇଥିଲେ ସେହି ସିଂହଦେଓଙ୍କ ଆମନ୍ତ୍ରଣରେ ବିଜୁବାବୁ ସରକାର ଗଢ଼ିବାକୁ ରାଜି ହୋଇଗଲେ । ଏ ଦୁଇଦଳକୁ ତୃତୀୟ ଦଳ ରୂପେ ଝାଡ଼ଖଣ୍ଡ ଦଳ(ଦେଶ ସଦସ୍ୟ) ସମର୍ଥନ କଲା । କିନ୍ତୁ ଅସୁବିଧା ସୃଷ୍ଟି ହେଲା ବିଜୁବାବୁଙ୍କୁ ସିଂହଦେଓ କିମ୍ବା ସିଂହଦେଓଙ୍କୁ ବିଜୁବାବୁ ମୁଖ୍ୟମନ୍ତ୍ରୀ ପଦ ଦେବା ପାଇଁ ରାଜି ହେଲେ ନାହିଁ । ତେଣୁ ଏ ଦୁହିଁଙ୍କ ବ୍ୟତୀତ ତୃତୀୟ ବ୍ୟକ୍ତିଙ୍କୁ ଖୋଜାଗଲା । ପ୍ରଥମେ ସମାଜ ସମ୍ପାଦକ ରାଧାନାଥ ରଥଙ୍କ ନାମ ଉଠିଲା । ମାତ୍ର ରାଧାନାଥ ବାବୁ ରାଜି ହେଲେ ନାହିଁ । ତାଙ୍କ ପରେ ଉତ୍କଳ କଂଗ୍ରେସ ନେତା ଗଙ୍ଗାଧର ମହାପାତ୍ରଙ୍କ ନାମ ଉଠିଲା । ମାତ୍ର ସେଥିରେ ସିଂହଦେଓ ରାଜି ହେଲେ ନାହିଁ । କାରଣ ଗଙ୍ଗାଧର ମହାପାତ୍ର ବା ଗଙ୍ଗୁଭାଇନା ବିଜୁବାବୁଙ୍କ ଅନୁଗତ ଲୋକ ଥିଲେ । ଶେଷରେ ୮୨(ବୟାଅଶୀ) ବର୍ଷ ବୟସ୍କ ବିଶ୍ୱନାଥ ଦାଶଙ୍କ ନାମ ଉଠିଲା । ସେ ରାଜି ହେଲେ । ଓଡ଼ିଶାରେ ପ୍ରଥମ ଥର ପାଇଁ ଏକ ତିନିଦଳିଆ ସରକାରରେ ଜଣେ ନିର୍ଦ୍ଦଳୀୟ ବ୍ୟକ୍ତି ନେତା ହେଲେ ଓ ମୁଖ୍ୟମନ୍ତ୍ରୀ ରୂପେ ଶପଥ ନେଲେ । ୧୯୭୧ ଏପ୍ରିଲ୍ ୩ ତାରିଖରେ ବିଶ୍ୱନାଥ ଦାଶ ମୁଖ୍ୟମନ୍ତ୍ରୀ ରୂପେ ଦାୟିତ୍ୱ ଗ୍ରହଣ କଲେ ।

ଏତେସବୁ କଥା ବର୍ଣ୍ଣନା କରିବାର ହେତୁ ହେଲା ଜଣେ ସାମ୍ବାଦିକ ରୂପେ ଓଡ଼ିଶାର ରାଜନୀତି ସମ୍ପର୍କରେ ମୁଁ ପୁରାପୁରି ଅବହିତ ଥିଲି । କେତେବେଳେ କ'ଣ ଘଟୁଥିଲା ତାକୁ ମୁଁ ଅତି ନିକଟରୁ ଲକ୍ଷ୍ୟ ରଖୁଥିଲି ଏବଂ ମାତୃଭୂମିରେ ସେସବୁର ଯଥାର୍ଥ ବିବରଣୀ ଲିପିବଦ୍ଧ କରୁଥିଲି ।

ବିଶ୍ୱନାଥ ବାବୁ ମୁଖ୍ୟମନ୍ତ୍ରୀ ହେବା ବେଳକୁ ବିଧାନସଭାର ସଦସ୍ୟ ନଥିଲେ । ମୁଖ୍ୟମନ୍ତ୍ରୀ ବା ମନ୍ତ୍ରୀ ରୂପେ ଶପଥ ନେବାର ଛ'ମାସ ମଧ୍ୟରେ ବିଧାନସଭାକୁ ନିର୍ବାଚିତ ହେବାର ସମ୍ବିଧାନିକ ବ୍ୟବସ୍ଥା ଅଛି । ବିଶ୍ୱନାଥବାବୁଙ୍କ ପାଇଁ ନିର୍ବାଚନମଣ୍ଡଳୀ ଖୋଜାଗଲା । ସେତେବେଳେ ବିଶ୍ୱନାଥବାବୁଙ୍କର ଅତ୍ୟନ୍ତ ଘନିଷ୍ଠ ଥିଲେ ନାରାୟଣ ରଥ । ନାରଣବାବୁ 'ସମାଜ'ର ଭୁବନେଶ୍ୱର ପ୍ରତିନିଧି ଥିଲେ । ବିଶ୍ୱନାଥ ଦାଶ ଲୋକ ସେବକ ମଣ୍ଡଳର ସର୍ବ ଭାରତୀୟ ସଭାପତି ଥିଲେ । ସମାଜ ଲୋକ ସେବକ ମଣ୍ଡଳର ସମ୍ପତ୍ତି । ତେଣୁ ନାରଣ ବାବୁ ବିଶ୍ୱନାଥ ବାବୁଙ୍କର ଅତ୍ୟନ୍ତ ଘନିଷ୍ଠ ଥିଲେ ।

ନିର୍ବାଚନ ମଣ୍ଡଳୀ ଖୋଜା ହେବାବେଳେ ସେତେବେଳେ ରାଉରକେଲା ବିଧାନସଭା ଆସନରୁ କଂଗ୍ରେସ ନେତା ଶ୍ୟାମ ସୁନ୍ଦର ମହାପାତ୍ର ଇସ୍ତଫା ଦେଇଥା'ନ୍ତି । ତେଣୁ ତାହା ଖାଲି ଥିଲା । ଶ୍ୟାମବାବୁ ବାଲେଶ୍ୱରରୁ ଲୋକସଭାକୁ ଏବଂ ରାଉରକେଲାରୁ ବିଧାନସଭାକୁ ନିର୍ବାଚିତ ହୋଇଥିଲେ । ସେ ଲୋକସଭାରେ ଯୋଗଦେଇ ବିଧାନସଭା ଆସନକୁ ଛାଡ଼ି ଦେଇଥିଲେ । ରାଉରକେଲାରେ ଗଞ୍ଜାମ ଜିଲ୍ଲାର ବହୁ ଲୋକ ରହିଥା'ନ୍ତି । ଇସ୍ପାତ କାରଖାନାରେ ଚାକିରି ଠାରୁ ବ୍ୟବସାୟ ଆଦି କରୁଥା'ନ୍ତି । ତେଣୁ ସ୍ଥିର ହେଲା ବିଶ୍ୱନାଥବାବୁ ରାଉରକେଲା ଆସନରୁ ପ୍ରାର୍ଥୀ ହେବେ । ସେ ଅନୁସାରେ ସେ ପ୍ରାର୍ଥୀପତ୍ର ଦାଖଲ କଲେ । ନାରଣବାବୁ ତାଙ୍କର ନିର୍ବାଚନ ଏଜେଣ୍ଟ ରୂପେ କାର୍ଯ୍ୟ କରିଥିଲେ । ବିଶ୍ୱନାଥବାବୁଙ୍କ ବିରୁଦ୍ଧରେ କଂଗ୍ରେସ ପକ୍ଷରୁ କିଏ ପ୍ରତିଦ୍ୱନ୍ଦ୍ୱିତା କରିଥିଲେ ମୋର ମନେନାହିଁ । ସମ୍ଭବତଃ ମୋର ଯେତେଦୂର ମନେ ପଡୁଛି ବିନାୟକ ଆଚାର୍ଯ୍ୟଙ୍କୁ ପ୍ରାର୍ଥୀ କରାଯାଇଥିଲା । ମାତ୍ର ମୁଖ୍ୟମନ୍ତ୍ରୀ ରୂପେ ବିଶ୍ୱନାଥବାବୁ ନିର୍ବାଚନ ଲଢୁଥିବାରୁ ତାଙ୍କର ଜିତିବା ପାଇଁ ସୁବିଧା ହେଲା । ବିଶ୍ୱନାଥ ବାବୁ ସ୍ୱାଧୀନତା ପୂର୍ବରୁ ୧୯୩୭ ଜୁଲାଇ ୧୯ ତାରିଖରୁ ୧୯୩୯ ନଭେମ୍ବର ୬ ତାରିଖ ପର୍ଯ୍ୟନ୍ତ ଓଡ଼ିଶାର ପ୍ରଧାନମନ୍ତ୍ରୀ ରୂପେ ପ୍ରଥମେ କାର୍ଯ୍ୟ କରିଥିଲେ । ସ୍ୱାଧୀନତା ପରେ ସେ ଦ୍ୱିତୀୟଥର ପାଇଁ ମୁଖ୍ୟମନ୍ତ୍ରୀ ଦାୟିତ୍ୱ ଗ୍ରହଣ କଲେ ।

ସ୍ୱତନ୍ତ୍ର ଉତ୍କଳ କଂଗ୍ରେସ ମନ୍ତ୍ରିମଣ୍ଡଳ ବେଳେ ବିଧାନସଭାରେ ନାନା ଅଘଟଣ ଘଟିଲା । ଡଃ ମହତାବ ସେତେବେଳେ କଂଗ୍ରେସ ନେତା । ତାଙ୍କ ଜନକଂଗ୍ରେସ ଦଳ କିନ୍ତୁ ଭାଙ୍ଗିନଥିଲା । ପବିତ୍ର ମୋହନ ପ୍ରଧାନ ଓ ଉପେନ୍ଦ୍ର ମହାନ୍ତି ଜନକଂଗ୍ରେସ ପତାକା ଧରି ବସି ରହିଥା'ନ୍ତି । ୧୯୭୧ ମେ' ମାସରେ ଓଡ଼ିଶା ବିଧାନସଭାର ପ୍ରଥମ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ବିଶ୍ୱନାଥ ଦାଶ ମୁଖ୍ୟମନ୍ତ୍ରୀ ହେବାପରେ ଡଃ ମହତାବ ତାଙ୍କ ବିରୁଦ୍ଧରେ ନାମ ଅପପ୍ରଚାର ଚଳାଇଥିଲେ । ଡଃ ମହତାବଙ୍କ ସପକ୍ଷରେ କଂଗ୍ରେସ ଦଳରେ ବେଶୀ ସମର୍ଥକ ନଥିଲେ । ୧୯୭୧ ନିର୍ବାଚନ ପରେ ଡଃ ମହତାବ ବିଧାନସଭାରେ କଂଗ୍ରେସ ଦଳର ନେତୃତ୍ୱ ନେଇଥିଲେ । ମାତ୍ର ତାଙ୍କୁ ବହୁ କଂଗ୍ରେସ ବିଧାୟକ ଚାହୁଁ ନଥିବାରୁ ସେ ବିରୋଧୀ ଦଳ ନେତା ପଦରୁ ଇସ୍ତଫା ଦେଇଥିଲେ । ତାଙ୍କ ସ୍ଥାନରେ ବିନାୟକ ଆଚାର୍ଯ୍ୟ ବିରୋଧୀଦଳ ନେତା ହୋଇଥିଲେ ।

ସେତେବେଳେ ଡଃ ମହତାବଙ୍କ ବିରୁଦ୍ଧରେ ସିରାଜୁଦ୍ଦିନ କମ୍ପାନିକୁ ବେଆଇନ୍ ଭାବେ ଖଣି ପଟ୍ଟା ଦେଇ ଦୁର୍ନୀତି ଉପାୟରେ ଅର୍ଥ ଉପାର୍ଜନ କରିଥିବା ଅଭିଯୋଗରେ ମୁଧୋଲକର କମିଶନ ବିଚାର କରିଥିଲେ । ଡଃ ମହତାବଙ୍କୁ ଦୋଷୀ ସାବ୍ୟସ୍ତ କରିଥିଲେ । ମାତ୍ର ଡଃ ମହତାବ ବ୍ୟକ୍ତିଗତ ଭାବେ କୌଣସି ଅର୍ଥ ନନେଇ ପ୍ରଜାତନ୍ତ୍ରରେ ସମସ୍ତ ଅର୍ଥ ବ୍ୟୟ

ହୋଇଥିଲା ବୋଲି ଦର୍ଶାଇଥିଲେ । ଅବଶ୍ୟ ଏ କମିଶନ ରିପୋର୍ଟକୁ ସରକାର କୋର୍ଟକୁ ନେଇ ନଥିଲେ । ଅନ୍ୟ ପକ୍ଷରେ ବିଜୁ ପଟ୍ଟନାୟକଙ୍କ ଦୁର୍ନୀତି ବିରୁଦ୍ଧରେ ବସିଥିବା ଖାନ୍ନା କମିଶନ ବିଜୁବାବୁଙ୍କୁ ଦୁର୍ନୀତି ଅଭିଯୋଗରୁ ସମ୍ପୂର୍ଣ୍ଣ ମୁକ୍ତି କରି ପ୍ରଶାସନିକ ଅସଂଗତି (Administrative Impropriety) ଦୋଷରେ ଦୋଷୀ କରିଥିଲେ ।

## -ବିଶ୍ୱନାଥ ଦାଶଙ୍କ ସରକାର-

୧୯୭୧ ନିର୍ବାଚନରେ ବିଜୁ ପଟ୍ଟନାୟକ ନିଜ ଜନପ୍ରିୟତାକୁ ଯଥାର୍ଥ ଭାବେ କଳନା ନକରି ଏକାବେଳେକେ ଚାରୋଟି ବିଧାନସଭା ଓ ଗୋଟିଏ ଲୋକସଭା ସ୍ଥାନ ପାଇଁ ପ୍ରାର୍ଥୀପତ୍ର ଦାଖଲ କରିଦେଇଥିଲେ । ଏ ସମ୍ପର୍କରେ ମୁଁ ତାଙ୍କ ସାମ୍ବାଦିକ ସମ୍ମିଳନୀରେ ତାଙ୍କର ବିଜୟ ସମ୍ଭାବନା ସମ୍ପର୍କରେ ପଚାରିବାରେ ସେ ଉତ୍ତର ଦେଇଥିଲେ You know who is Biju Pattanaik ? If my shoes will contest, it will also come sucussful. ସେଦିନ ବିଜୁବାବୁଙ୍କର ଏହି ଔଦ୍ଧତ୍ୟ ଅନେକ ପସନ୍ଦ କରି ନଥିଲେ । ନିଜର ଶକ୍ତି ସମ୍ପର୍କରେ ତାଙ୍କର ଅତ୍ୟଧିକ ଆତ୍ମବିଶ୍ୱାସ ତାଙ୍କୁ ବିପଦରେ ପକାଇଥିଲା । ବିଜୁବାବୁ ଏ ପାଞ୍ଚୋଟି ସ୍ଥାନରୁ ପରାସ୍ତ ହୋଇଥିଲେ । ଯେଉଁ ବିଧାନସଭା ଆସନରୁ ସେ ପ୍ରତିଦ୍ୱନ୍ଦ୍ୱିତା କରିଥିଲେ ଏବଂ ଯେଉଁମାନଙ୍କ ନିକଟରୁ ପରାସ୍ତ ହେଲେ ତା' ହେଲା ଚୌଦ୍ୱାର, ପ୍ରତିଦ୍ୱନ୍ଦ୍ୱୀ- କାହ୍ନୁ ଚରଣ ଲେଙ୍କା(କଂଗ୍ରେସ), ପାଟକୁରା- ଚକ୍ରଧର ଶତପଥୀ(ପ୍ରଜା ସୋସାଲିଷ୍ଟ ଦଳ), ଭୁବନେଶ୍ୱର- ଡଃ ହରେକୃଷ୍ଣ ମହତାବ(କଂଗ୍ରେସ) ଏବଂ ଭଞ୍ଜନଗର- ସୋମନାଥ ରଥ(କଂଗ୍ରେସ) । ଏହା ବ୍ୟତୀତ ଆସ୍କା ଲୋକସଭା ଆସନରୁ କମ୍ୟୁନିଷ୍ଟ ପ୍ରାର୍ଥୀ ଦ୍ୟୁତିକୃଷ୍ଣ ପଣ୍ଡାଙ୍କ ନିକଟରୁ ସେ ପରାସ୍ତ ହୋଇଥିଲେ । ଏମାନଙ୍କ ମଧ୍ୟରୁ କେବଳ ଡଃ ମହତାବଙ୍କୁ ଛାଡ଼ିଦେଲେ ଅନ୍ୟ ତିନିଜଣ ପ୍ରଥମଥର ପାଇଁ ବିଧାନସଭା ନିର୍ବାଚନ ଲଢୁଥିଲେ ।

୧୯୭୧ ନିର୍ବାଚନରେ ବହୁ ବଡ଼ବଡ଼ ନେତା ପରାସ୍ତ ହୋଇଥିଲେ । ଏମାନଙ୍କ ମଧ୍ୟରେ ବୀରେନ୍ ମିତ୍ର, ସଦାଶିବ ତ୍ରିପାଠୀ, ପବିତ୍ର ମୋହନ ପ୍ରଧାନ, ବିଜୟ କୁମାର ପାଣି, ଦୀନବନ୍ଧୁ ସାହୁ, ଲୋକନାଥ ଚୌଧୁରୀ, ସୁରେନ୍ଦ୍ର ନାଥ ଦ୍ୱିବେଦୀ ପ୍ରମୁଖ ଅନ୍ୟତମ ଥିଲେ । ପରେ ମୋର ଯାହା ମନେ ପଡୁଛି ବିଜୁବାବୁ ରାଜନଗରରୁ ଉପନିର୍ବାଚନରେ ବହୁ ଅଧିକ ଭୋଟରେ ବିଜୟୀ ହୋଇଥିଲେ । ଓଡ଼ିଶାର ରାଜନୀତିକ ଇତିହାସରେ ଏହି ସମୟଟି ଅତ୍ୟନ୍ତ ଘଟଣାବହୁଳ ସମୟ ଥିଲା । ସାମ୍ବାଦିକମାନଙ୍କ ପାଇଁ ଏହି ସମୟଟି ଅତ୍ୟନ୍ତ ବ୍ୟସ୍ତ ସମୟ ମଧ୍ୟ ଥିଲା । କାରଣ ପ୍ରତି ମୁହୂର୍ତ୍ତରେ ରାଜନୀତିକ ସ୍ଥିତି ଏଭଳି ବଦଳୁଥିଲା ଯେ, ସବୁ ସମୟରେ ଆଖି- କାନ ଖୋଲା ରଖିବା ଆବଶ୍ୟକ ପଡୁଥିଲା । ସେତେବେଳେ ରାଜଧାନୀରେ ମୁଁ ଥିଲି ସାମ୍ବାଦିକମାନଙ୍କ ମଧ୍ୟରେ କନିଷ୍ଠତମ । ୧୯୭୧ ବେଳକୁ ବିଜୁବାବୁଙ୍କ 'କଳିଙ୍ଗ' ଖବରକାଗଜ ଓ ବୀରେନ୍ ମିତ୍ରଙ୍କ ଜନଶକ୍ତି ବନ୍ଦ ହୋଇ ଯାଇଥାଏ । ତେଣୁ ଓଡ଼ିଆ ଖବର କାଗଜ ଭିତରେ ସମାଜ, ପ୍ରଜାତନ୍ତ୍ର, ମାତୃଭୂମି ଏବଂ ସ୍ୱରାଜ୍ୟ ଚାରୋଟି କାଗଜ ପ୍ରକାଶ ପାଉଥିଲା । ଏ ସମସ୍ତ ଖବରକାଗଜ ମଧ୍ୟରୁ ସରକାରଙ୍କୁ ସମର୍ଥନ ଓ ବିରୋଧ କରିବା ପାଇଁ ପ୍ରତିଦ୍ୱନ୍ଦ୍ୱିତା ଲାଗିଥାଏ । ସମାଜ ବିଶ୍ୱନାଥ ଦାସଙ୍କୁ ସମର୍ଥନ କରୁଥିବା ବେଳେ ପ୍ରଜାତନ୍ତ୍ର ତାଙ୍କୁ ତୀବ୍ର ବିରୋଧ କରୁଥିଲା । ସ୍ୱରାଜ୍ୟ ସ୍ୱତନ୍ତ୍ର ଦଳର ମୁଖପତ୍ର ଥିବାରୁ ସରକାରଙ୍କୁ ସମର୍ଥନ କରୁଥିଲା । କେବଳ 'ମାତୃଭୂମି' ନିରପେକ୍ଷ ସମ୍ବାଦପତ୍ର ଥିଲା । ସେହି ଦୃଷ୍ଟିରୁ ମୋର ଦାୟିତ୍ୱ ଅନ୍ୟ ସାମ୍ବାଦିକମାନଙ୍କ ତୁଳନାରେ ଅଧିକ ଥିଲା ।

ବିଶ୍ୱନାଥ ଦାଶଙ୍କ ମନ୍ତ୍ରିମଣ୍ଡଳରେ ତାଙ୍କୁ ଛାଡ଼ି ମୋଟ ପଚିଶଜଣ ମନ୍ତ୍ରୀ ଉପମନ୍ତ୍ରୀ ଥିଲେ । ତେରଜଣ କ୍ୟାବିନେଟ୍ ପାହ୍ୟା ଓ ବାରଜଣ ଉପମନ୍ତ୍ରୀ ନିଯୁକ୍ତି ପାଇଥିଲେ । ମୋର ଯେତିକି ସ୍ମରଣ ଅଛି କେଉଁ ଦଳରୁ କେତେ ମନ୍ତ୍ରୀ ଉପମନ୍ତ୍ରୀ ହେବେ ସେଥିପାଇଁ ବିବାଦ ହୋଇଥିଲା । ତେଣୁ ପ୍ରଥମେ ଅଳ୍ପ କେତେଜଣ କ୍ୟାବିନେଟ୍ ପାହ୍ୟା ମନ୍ତ୍ରୀ ଶପଥ ନେଇଥିଲେ । ପନ୍ଦର/କୋଡ଼ିଏ ଦିନ ପରେ ଅନ୍ୟମାନେ ଶପଥ ନେଲେ । ୧୯୭୧ ଏପ୍ରିଲ ୩ ତାରିଖରେ ବିଶ୍ୱନାଥ ଦାଶଙ୍କ ମନ୍ତ୍ରିମଣ୍ଡଳ

ଶପଥ ନେଇଥିଲେ । କେତେଜଣ କେଉଁ ଦଳରୁ ମନ୍ତ୍ରୀ ହେବେ ସେ ସଂଖ୍ୟା ନେଇ ମଧ୍ୟ ବିବାଦ ହୋଇଥିଲା । ତେବେ ପରେ ସ୍ଥିର ହେଲା ଯେ ଉତ୍କଳ କଂଗ୍ରେସ ଓ ସ୍ୱତନ୍ତ୍ର ଦଳରୁ ଛ'ଜଣ ଲେଖାଏଁ ଏବଂ ଝାଡ଼ଖଣ୍ଡ ଦଳରୁ ଜଣେ କ୍ୟାବିନେଟ୍ ପାହ୍ୟା ମନ୍ତ୍ରୀ ହେବେ । କିଏ କିଏ ମନ୍ତ୍ରୀ ହେବେ ତା' ଜାଣିବା ପାଇଁ ମୁଁ ନୀଳମଣିବାବୁଙ୍କ ଘରକୁ ଯାଇ ବସିଥିଲି । ନୀଳମଣିବାବୁ ମୋତେ ବେଶ୍ ଭଲ ଭଲ ଖବର ଆଗରୁ ଦେଉଥିଲେ । ତା'ର କାରଣ ହେଲା ସମାଜ, ପ୍ରଜାତନ୍ତ୍ର ଓ ସ୍ୱରାଜ୍ୟ ତାଙ୍କ ବିରୋଧୀ ଥିଲେ । 'ମାତୃଭୂମି' ତାଙ୍କର ଯାହାକିଛି ଭିତିରିଆ ରାଜନୀତିକ ଖବର ଦେଉଥିବାରୁ ସେ ମୋତେ ବିଭିନ୍ନ ସମୟରେ ଖବର ଦେବାରେ ସାହାଯ୍ୟ କରୁଥିଲେ । ଉତ୍କଳ କଂଗ୍ରେସର କିଏ ମନ୍ତ୍ରୀ ହେବ ସେ ସମ୍ପର୍କରେ ମୁଁ ତାଙ୍କଠାରୁ ଏପ୍ରିଲ୍ ଦୁଇ ତାରିଖ ଦିନ ପ୍ରାୟ ଗୋଟାଏ ବେଳେ ଛ'ଜଣଙ୍କ ନାମ ପାଇଲି । କିନ୍ତୁ ସେ ଛ'ଜଣଙ୍କ ବଦଳରେ ଆଉ ଦି'ଜଣଙ୍କ ନାମ ଅଧିକା ଦେଇ ଏମାନଙ୍କ ମଧ୍ୟରୁ ଛ'ଜଣ ହେବେ ବୋଲି କୁହାଯାଉଛି ଏହିଭଳି ଏକ ଉଡ଼ଣଙ୍କୁ ସମ୍ବାଦ ଦେବାକୁ କହିଲେ । ସେ ଆଠଜଣଙ୍କ ମଧ୍ୟରେ ବିଧାନସଭାକୁ ପ୍ରଥମଥର ପାଇଁ ନିର୍ବାଚିତ ହୋଇ ଆସିଥିବା ଚାରିଜଣଙ୍କ ନାମ ଥିଲା । ସେମାନେ ହେଲେ ରାମକୃଷ୍ଣ ପଟ୍ଟନାୟକ, ଶରତ କର, ଯଦୁନାଥ ଦାଶ ମହାପାତ୍ର ଓ ଶରତ ଦେବ । ଏମାନଙ୍କ ବ୍ୟତୀତ ନୀଳମଣି ରାଉତରାୟ, ପ୍ରତାପଚନ୍ଦ୍ର ମହାନ୍ତି, ପ୍ରହଲ୍ଲାଦ ମଲ୍ଲିକ ଓ ବୃନ୍ଦାବନ ନାୟକଙ୍କ ନାମ ଦେଇଥିଲି । ସ୍ୱତନ୍ତ୍ର ଦଳର ୧୯୬୭-୭୦ ମନ୍ତ୍ରିମଣ୍ଡଳରେ ଯେଉଁମାନେ ଥିଲେ ଅନ୍ଦାଜ କରି ସେମାନଙ୍କ ନାମ ଦେଇଥିଲି । ତେବେ ଆମ କାଗଜରେ ସମ୍ଭାବ୍ୟ ମନ୍ତ୍ରୀଙ୍କ ନାଁ ପ୍ରକାଶ ପାଇବା ପରେ ମୁଁ ଘନଘନ ଟେଲିଫୋନ୍ ପାଇଲି । ଯେଉଁମାନଙ୍କ ନାମ ପ୍ରକାଶ ପାଇଥିଲା ବିଶେଷ କରି ନୂଆ ସଦସ୍ୟମାନେ ମୋତେ ସେଦିନ ସନ୍ଧ୍ୟାରୁ ଅନବରତ ଫୋନ୍ କରିବାକୁ ଲାଗିଲେ । ଏ ସବୁ ଟେଲିଫୋନ୍ କଲ୍ ପାଇ ମୋ ମନ ବେଶ୍ ସ୍ଫିତ ହୋଇ ଉଠିଲା । କିଛି ସମୟ ପାଇଁ ମୁଁ ଆତ୍ମପ୍ରସାଦ ଅନୁଭବ କଲି । ଏପ୍ରିଲ ତିନି ତାରିଖ ରାତିରେ ନୂଆ ମନ୍ତ୍ରିମଣ୍ଡଳ ଶପଥ ନେଲେ । ଜଣେ ସାମ୍ବାଦିକ ପାଇଁ ଏହା ସ୍ୱାଭାବିକ ଭାବେ ଏକ କୃତିତ୍ୱର କାହାଣୀ ।

୧୯୭୧ ମସିହା ସରକାରରେ ବଲାଙ୍ଗିରର ନନ୍ଦକିଶୋର ମିଶ୍ର ବାଚସ୍ପତି ରୂପେ ନିର୍ବାଚିତ ହୋଇଥିଲେ । ୧୯୬୭ ସ୍ୱତନ୍ତ୍ର-ଜନକଂଗ୍ରେସ ମିଳିତ ମନ୍ତ୍ରିମଣ୍ଡଳ ସରକାରରେ ମଧ୍ୟ ନନ୍ଦ କିଶୋର ମିଶ୍ର ବାଚସ୍ପତି ହୋଇଥିଲେ । ଓଡ଼ିଶାରେ ଲାଗ ଲାଗ ଦୁଇଥର ବାଚସ୍ପତି ହେବାରେ ନନ୍ଦବାବୁ ହେଉଛନ୍ତି ପ୍ରଥମ ବ୍ୟକ୍ତି । ଏଥର ଉପ ବାଚସ୍ପତି ରୂପେ ନିର୍ବାଚିତ ହୋଇଥିଲେ ନାରାୟଣ ବୀରବର ସାମନ୍ତ ।

ସେତେବେଳେ ଗଡ଼ଜାତ ଅଞ୍ଚଳରେ ବିଶେଷକରି ପଶ୍ଚିମାଞ୍ଚଳରେ ପୂର୍ବତନ ଦେଶୀୟ ରାଜ୍ୟଗୁଡ଼ିକରେ ରାଜେନ୍ଦ୍ର ନାରାୟଣ ସିଂହଦେଓ ଏବଂ କଳାହାଣ୍ଡି ମହାରାଜା ପ୍ରତାପ କେଶରୀ ଦେଓଙ୍କର ଅଖଣ୍ଡ ପ୍ରତାପ ଥିଲା । ସେମାନଙ୍କ ଅନୁଗତମାନେ ବିଧାନସଭାକୁ ନିର୍ବାଚିତ ହେଉଥିଲେ । ନନ୍ଦକିଶୋର ମିଶ୍ର, ଅଇଁଠୁ ସାହୁ, ଅଚ୍ୟୁତାନନ୍ଦ ମହାନନ୍ଦ, ଦୟାନିଧି ନାୟକଙ୍କ ଭଳି ତଥାକଥିତ ବଡ଼ବଡ଼ ନେତାମାନେ ଏହି ଦୁଇ ମହାରାଜାଙ୍କ ଆଶୀର୍ବାଦରେ ବିଧାନସଭା ଓ ଲୋକସଭାକୁ ନିର୍ବାଚିତ ହୋଇଥିଲେ । ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ରାଜା- ମହାରାଜାମାନଙ୍କର ପ୍ରଭାବ ସ୍ୱାଧୀନତାର ପଚିଶ/ତିରିଶ ବର୍ଷ ପରେ ମଧ୍ୟ ଅକ୍ଷୁର୍ଣ୍ଣ ଥିଲା । ଧୀରେଧୀରେ ଏହା ହ୍ରାସ ପାଉଥିଲେ ମଧ୍ୟ କେତେକ ଅଞ୍ଚଳ ବିଶେଷକରି ବଲାଙ୍ଗିର ଓ କଳାହାଣ୍ଡିରେ ଏହା ଏବେ ମଧ୍ୟ ବିଦ୍ୟମାନ ।

ବିଶ୍ୱନାଥ ଦାଶ ମୁଖ୍ୟମନ୍ତ୍ରୀ ହେବାପରେ ଡଃ ମହତାବ ତାଙ୍କର ଘୋରତର ଶତ୍ରୁ ହୋଇ ଉଠିଲେ । ବିଶ୍ୱନାଥ ଦାଶଙ୍କ ବୟସ ୮୪ରୁ ଉର୍ଦ୍ଧ୍ୱ ହୋଇଥିଲେ ମଧ୍ୟ ସେ ଜଣେ ସଫଳ ପ୍ରଶାସକ ଥିଲେ ଏଥିରେ ଦ୍ୱିରୁକ୍ତି ନାହିଁ । ଏହି ମିଳିତ ସରକାର ସମୟରେ ୧୯୭୧ ଅକ୍ଟୋବର ୨୯ ତାରିଖରେ ପ୍ରବଳ ଘୂର୍ଣ୍ଣିବାତ୍ୟା ଏବଂ ଝଡ଼ ତୋଫାନ-ବର୍ଷା ଉପକୂଳ

ଅଞ୍ଚଳକୁ ସଂପୂର୍ଣ୍ଣ ଭାବେ ଧ୍ୱସ୍ତବିଧ୍ୱସ୍ତ କରି ଦେଇଥିଲା । କେନ୍ଦ୍ରପଡ଼ା, ପାରାଦ୍ୱୀପ ଓ ଜମ୍ମୁ ବାସୁଦେବପୁର ଅଞ୍ଚଳରେ ପ୍ରବଳ ବନ୍ୟା ସାଙ୍ଗକୁ ଘଣ୍ଟାରେ ୮୦/୯୦ କିଲୋମିଟର ବେଗରେ ପବନ ବହି ବହୁ ଘରଦ୍ୱାର ଗଛ ଭାଙ୍ଗି ଦେଇଥିଲା । ଲୋକଙ୍କର ଏହି ବିପଦ ସମୟରେ ବିଜୁ ପଟ୍ଟନାୟକ ଯୁଦ୍ଧଗତିରେ ସାହାଯ୍ୟ କାର୍ଯ୍ୟ କରିଥିଲେ । ଆମେ ଦୁଇ/ତିନିଜଣ ସାମ୍ବାଦିକ କିଛି ଉତ୍କଳ କଂଗ୍ରେସର କିଛି ଯୁବନେତା ଏହି ଅଞ୍ଚଳକୁ ବିଜୁବାବୁଙ୍କ ସାଙ୍ଗରେ ଯାଇଥିଲୁ । ଗଛପଡ଼ି ରାସ୍ତା ବନ୍ଦ । ଗଛ କାଟି କାଟି ରାସ୍ତା ଖୋଲାଗଲା । ରିଲିଫ୍ ପାଇଁ ସେନାବାହିନୀ ହେଲିକେପ୍ଟର ଭୁବନେଶ୍ୱର ଆସିଲା । ବିଜୁବାବୁଙ୍କର ସେତେବେଳର କାର୍ଯ୍ୟ ଯିଏ ଦେଖିଛି ସେ ଅନୁଭବ କରିଛି ନେତା କାହାକୁ କୁହନ୍ତି । ଭୁବନେଶ୍ୱର ବିମାନ ଘାଟିରେ ଶହଶହ ଖାଦ୍ୟ ପ୍ୟାକେଟ୍ ହେଲିକେପ୍ଟରରେ ବୁହାହୋଇ ବିପନ୍ନ ଅଞ୍ଚଳକୁ ଗଲା । ସେତେବେଳେ ମୁଁ, ହିନ୍ଦୁସ୍ଥାନ ଟାଇମ୍ସର ବଙ୍କିମ୍ ଦାସ ଏବଂ ୟୁଏନ୍ଆଇର ନିଖିଲ ଭଟ୍ଟାଚାର୍ଯ୍ୟ ଡଙ୍ଗାରେ ଚାନ୍ଦବାଲି ଠାରୁ ବାସୁଦେବ ପୁର ଅଞ୍ଚଳର ବିପନ୍ନ ଜନସାଧାରଣଙ୍କୁ ରିଲିଫ୍ ବାଣ୍ଟିବାକୁ ଯାଇଥିଲୁ । ଏହି ମହାବାତ୍ୟାରେ ଦଶହଜାରରୁ ଅଧିକ ଲୋକ ମରିଥିଲେ ।

ଉତ୍କଳ କଂଗ୍ରେସ-ସ୍ୱତନ୍ତ୍ର ମିଳିତ ମନ୍ତ୍ରିମଣ୍ଡଳ ମାତ୍ର ଚଉଦମାସ ତିଷ୍ଠିଥିଲା । ବିଶ୍ୱନାଥ ଦାସ ତା୩/୪/୭୧ରିଖରୁ ତା୧୪/୬/୭୨ରିଖ ପର୍ଯ୍ୟନ୍ତ ମୁଖ୍ୟମନ୍ତ୍ରୀ ଥିଲେ । ମୁଁ ଏହି ସମୟ ମଧ୍ୟରେ ଯାହା ଦେଖିଛି- ସେଥିରେ ମୋର ମନେ ହୋଇଥିଲା ନିଜର ଦଳ ନଥାଇ, ନିଜ ପଛରେ ଆବଶ୍ୟକୀୟ ସଂଖ୍ୟକ ଏମ୍.ଏଲ୍.ଏ. ନଥାଇ ମୁଖ୍ୟମନ୍ତ୍ରୀ ହେବା ଉଚିତ୍ ନୁହେଁ । ବିଶ୍ୱନାଥ ଦାସ ନିର୍ଦ୍ଦଳୀୟ ବ୍ୟକ୍ତି ହୋଇଥିବାରୁ ଡଃ ମହତାବ ଏବଂ ତାଙ୍କ ସମର୍ଥକମାନେ ତାଙ୍କ ପ୍ରତି ବିଧାନସଭା ଅଧିବେଶନ ବେଳେ ଯେପରି ଛିଗୁଲେଇ ଏବଂ ଅସମ୍ବିଧାନିକ ଭାଷା ପ୍ରୟୋଗ କରୁଥିଲେ ସ୍ୱତନ୍ତ୍ର କିମ୍ବା ଉତ୍କଳ କଂଗ୍ରେସ ଦଳର ବିଧାୟକମାନେ ତା'ର ପ୍ରତିବାଦ କରିବା ଦୂରେ ଥାଉ ବରଂ ତାକୁ ଉପଭୋଗ କରୁଥିଲେ । ମୋର ମନେ ହୋଇଥିଲା କେବଳ ନୀଳମଣି ରାଉତରାୟ ତାଙ୍କ ପ୍ରତି ସମ୍ବେଦନଶୀଳ ଥିଲେ । ମାତ୍ର ସେ ମନ୍ତ୍ରୀ ଥିବାରୁ ଯେଉଁ ସ୍ତରକୁ ଯାଇ ମୁଖ୍ୟମନ୍ତ୍ରୀଙ୍କୁ ସମର୍ଥନ କରି ଭାଷଣ ଦେବା କଥା ତାହା ତାଙ୍କ ପକ୍ଷରେ ସମ୍ଭବ ନଥିଲା ଏବଂ କଂଗ୍ରେସ ସଦସ୍ୟମାନଙ୍କର ଆଚରଣର ଖୋଲାଖୋଲି ପ୍ରତିବାଦ କରିବା ପାଇଁ ସାହସ କରି ପାରୁ ନଥିଲେ । ତା'ର କାରଣ ହେଲେ ଡଃ ମହତାବ । ତାଙ୍କର ଭୟ ଥିଲା ପ୍ରତିବାଦ କଲେ ମହତାବ ବାବୁ ସତ-ମିଛ କରି ନାନା ପ୍ରକାର ସମ୍ବାଦ ପରଦିନ ପ୍ରଜାତନ୍ତ୍ରରେ ପ୍ରକାଶ କରିବେ ।

ବିଶ୍ୱନାଥ ଦାସଙ୍କୁ ମୁଖ୍ୟମନ୍ତ୍ରୀ ରୂପେ କାର୍ଯ୍ୟ କରିବା ପାଇଁ ମୁକ୍ତହାତ (ଫ୍ରି ହ୍ୟାଣ୍ଡ) ଦିଆଯାଉ ନଥିଲା । ମନ୍ତ୍ରୀମାନେ ନିଜ ନିଜ ଦଳର ଏବଂ ନିଜର ବ୍ୟକ୍ତିଗତ ସ୍ୱାର୍ଥ ହାସଲ ପାଇଁ କାର୍ଯ୍ୟ କରୁଥିଲେ । ସେମାନେ ମୁଖ୍ୟମନ୍ତ୍ରୀଙ୍କ ଅପେକ୍ଷା ନିଜ ଦଳର ନେତାଙ୍କ ନିର୍ଦ୍ଦେଶ ଅନୁସାରେ କାର୍ଯ୍ୟ କରୁଥିଲେ । ଅଧିକାଂଶ ସମୟରେ ମୁଖ୍ୟମନ୍ତ୍ରୀଙ୍କ ନିର୍ଦ୍ଦେଶକୁ ଅନେକ ମନ୍ତ୍ରୀ ବେଖାତିର କରୁଥିଲେ । ସେତେବେଳେ ସ୍ୱାସ୍ଥ୍ୟ ମନ୍ତ୍ରୀ ରୂପେ କାର୍ଯ୍ୟ କରୁଥିବା ରାମକୃଷ୍ଣ ପଟ୍ଟନାୟକଙ୍କ ବିରୁଦ୍ଧରେ ଡାକ୍ତରଖାନା ଖଟ ଓ ତାରପୋଲିନ୍ (ପାଲ) କିଣା ମାମଲାରେ ଦୁର୍ନୀତି ଅଭିଯୋଗ ହୋଇଥିଲା । ବିଶ୍ୱନାଥ ବାବୁ ତାଙ୍କୁ ମନ୍ତ୍ରିମଣ୍ଡଳରୁ ବାହାର କରିବା ପାଇଁ ଜିଦ୍ ଧରିଥିଲେ । ମାତ୍ର ରାମକୃଷ୍ଣ ପଟ୍ଟନାୟକ ବିଜୁବାବୁଙ୍କ ପ୍ରିୟ ଥିବାରୁ ତାଙ୍କୁ ବାହାର କରିବା ସମ୍ଭବ ହେଲାନି । ରାମକୃଷ୍ଣ ପଟ୍ଟନାୟକ ମୁଖ୍ୟମନ୍ତ୍ରୀଙ୍କ ବିରୁଦ୍ଧରେ ଖୋଲାଖୋଲି ବିଦ୍ରୁପ କରି କଥା କହୁଥିଲେ । ତେବେ ସେ ଘଟଣାରେ ରାମକୃଷ୍ଣ ପଟ୍ଟନାୟକ ଖୁବ୍ ବଦ୍‌ନାମ ହୋଇ ଯାଇଥିଲେ ।

ବିଶ୍ୱନାଥ ଦାସ କିନ୍ତୁ ଅତ୍ୟନ୍ତ ଦୃଢ଼ମନା ବ୍ୟକ୍ତି ଥିଲେ । ମୋର ମନେ ଅଛି ଥରେ ଯୋଜନା ଓ ସମନ୍ୱୟ ବିଭାଗରେ ଏକ ବରିଷ୍ଠ ପଦବୀରେ ବିଭାଗୀୟ ସଚିବ ଜଣେ ବ୍ୟକ୍ତିଙ୍କୁ ନିଯୁକ୍ତି ଦେଇଥିଲେ । ମାତ୍ର ସଂପୃକ୍ତ ବ୍ୟକ୍ତି ବିଭାଗରେ ଜଣେ କନିଷ୍ଠ ଅଫିସର ଏବଂ ତାଙ୍କ ଅପେକ୍ଷା ଅନେକ ବରିଷ୍ଠ ବ୍ୟକ୍ତି ଥିବାବେଳେ ତାଙ୍କ ନିଯୁକ୍ତିରେ ପ୍ରିୟାପ୍ରିତି ତୋଷଣ ହୋଇଛି ବୋଲି ମୁଖ୍ୟମନ୍ତ୍ରୀଙ୍କ ପାଖରେ ଅଭିଯୋଗ ହୋଇଥିଲା । ମୁଖ୍ୟମନ୍ତ୍ରୀଙ୍କ ପାଖରେ ସେହି ସମୟରେ ଆମେ ଦୁଇ/ତିନିଜଣ

ସାମ୍ବାଦିକ ବସିଥିଲୁ । ମୁଖ୍ୟମନ୍ତ୍ରୀଙ୍କ ସଚିବ ବି.ଏମ୍. ପାଢ଼ୀ ଏହି ଫାଇଲ୍‌ଟି ପଢ଼ି ଶୁଣାଉଥିଲେ । ସବୁ ଶୁଣି ସାରିବା ପରେ ମୁଖ୍ୟମନ୍ତ୍ରୀ ପଚାରିଲେ ଏହି ବିଭାଗରେ ସଚିବ କିଏ ? ଶ୍ରୀ ପାଢ଼ୀ କହିଲେ ଆଜ୍ଞା ସଚିବ ଜଣେ ବରିଷ୍ଠ ଆଇ.ଏ.ଏସ୍. ଅଫିସର । ମୟୂରଭଞ୍ଜରେ ଜିଲ୍ଲାପାଳ ଥିଲେ ଇତ୍ୟାଦି ଇତ୍ୟାଦି । ମୁଖ୍ୟମନ୍ତ୍ରୀ କହିଲେ ଆମ ଷ୍ଟେନୋଙ୍କୁ ଡାକ । ଷ୍ଟେନୋବାବୁ ଆସିଲେ । ଫାଇଲ୍ ଆଉଥରେ ପଢ଼ିବା ପାଇଁ ସେ ପାଢ଼ୀବାବୁଙ୍କୁ କହିଲେ । ପାଢ଼ୀବାବୁ ଆଉଥରେ ପଢ଼ିଲେ । ତା'ପରେ ମୁଖ୍ୟମନ୍ତ୍ରୀ ସଂପୃକ୍ତ ଅଫିସରଙ୍କୁ ଏକ କୈଫିୟତ ତଲବ କରି କାହିଁକି ତାଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାନଯିବ ତା'ର ଜବାବ୍ ସାତଦିନ ମଧ୍ୟରେ ଦେବାକୁ ନିର୍ଦ୍ଦେଶ ଦେଲେ । ପାଢ଼ୀବାବୁ ଏଭଳି ଏକ କୈଫିୟତ ନମାଗିବା ପାଇଁ ମୁଖ୍ୟମନ୍ତ୍ରୀଙ୍କୁ ଅନୁରୋଧ କଲେ । ମୁଖ୍ୟମନ୍ତ୍ରୀ କହିଲେ ବିଭାଗରେ ପାଞ୍ଚଜଣ ବରିଷ୍ଠ କର୍ମଚାରୀ ଥିବା ବେଳେ ଜଣେ କନିଷ୍ଠ ବ୍ୟକ୍ତିଙ୍କୁ ଏ ପଦବୀ ଦେବାର କାରଣ କ'ଣ ? ଏଥିପାଇଁ ସାକ୍ଷାତକାର କରାଯାଇଥିଲା କି ? ତେବେ ଏହି ପଦବୀରେ ବିଭାଗୀୟ କର୍ମଚାରୀମାନଙ୍କୁ ବରିଷ୍ଠତା ଭିତରେ ପଦୋନ୍ନତି ଦେବା ବ୍ୟବସ୍ଥା ଥିବାବେଳେ କନିଷ୍ଠ ବ୍ୟକ୍ତିଙ୍କୁ ପଦୋନ୍ନତି ଦିଆଗଲା କିପରି ? ଆମେ ଯେଉଁମାନେ ସେଠି ବସିଥିଲୁ ମୁଖ୍ୟମନ୍ତ୍ରୀଙ୍କ ଏ ପ୍ରକାର କାର୍ଯ୍ୟରେ ଚମତ୍କୃତ ହେଲୁ । ଠିକ୍ ସେହି ସମୟରେ ଆଉ ଏକ ଘଟଣା ଘଟିଲା । ଦି ଷ୍ଟେଟ୍‌ସ ମ୍ୟାନ୍‌ର ଭୁବନେଶ୍ୱର ପ୍ରତିନିଧି ସୁଜୟ ସେନ୍‌ଗୁପ୍ତ ମୁଖ୍ୟମନ୍ତ୍ରୀଙ୍କ କୋଠରୀର କବାଟ ଖୋଲି ଭିତରକୁ ଆସି ଗୋଟିଏ ଚଉକି ଟାଣି ବସିବାକୁ ଗଲାବେଳେ ହଠାତ୍ ମୁଖ୍ୟମନ୍ତ୍ରୀ ପଚାରିଲେ ଆପଣ କିଏ ? ସୁଜୟ ବାବୁ କହିଲେ ଆଇ.ଏମ୍. ସୁଜୟ ସେନ୍‌ଗୁପ୍ତ ଦି ଷ୍ଟେଟସ୍‌ମ୍ୟାନ୍ ରିପ୍ରେଜେଣ୍ଟେଟିଭ୍ ଇନ୍ ଓଡ଼ିଶା । ମୁଖ୍ୟମନ୍ତ୍ରୀ ସାଙ୍ଗେ ସାଙ୍ଗେ କହିଲେ Dont you know the etiqette ? When you enter the chief Minister's room, Should not you ask for Permission ? Please go out and enter after getting the Permission. ସୁଜୟ ବାବୁ ହଠାତ୍ ଏ ପ୍ରକାର ଘଟଣାରେ ହତ୍‌ବତ୍ମେଇ ଗଲେ । ତା'ପରେ କହିଲେ Sir, I am sorry for entering your room without permission. I was told by one of your staff that press confcrence is going on. Only becouse of that I entered your room. Please excuse me. ସୁଜୟ ବାବୁ ଫେରିଯିବାକୁ ବାହାରିଲା ବେଳେ ମୁଖ୍ୟମନ୍ତ୍ରୀ କହିଲେ- Please take your seat. ସୁଜୟ ବାବୁ ବସିଲେ । ଆମେ ମୁଖ୍ୟମନ୍ତ୍ରୀଙ୍କର ଏହି ଭୀମ ମୂର୍ତ୍ତିଦେଖି ଆଶ୍ଚର୍ଯ୍ୟ ହେଲୁ । ସାମ୍ବାଦିକମାନଙ୍କ ସହ ବିଶ୍ୱନାଥ ବାବୁଙ୍କ ସମ୍ପର୍କ ଅତ୍ୟନ୍ତ ଭଲ । କିନ୍ତୁ ଷ୍ଟେଟସ୍‌ମ୍ୟାନ୍‌ର ପ୍ରତିନିଧିଙ୍କ ପ୍ରତି ତାଙ୍କ ଆଚରଣ ବାସ୍ତବରେ ଅତ୍ୟନ୍ତ ଅସ୍ୱାଭାବିକ ଥିଲା । ତେବେ ତା'ର କାରଣ ଜଣାପଡ଼ିଲା ଟିକିଏ ପରେ । ସୁଜୟବାବୁ ବସିବା ପରେ ମୁଖ୍ୟମନ୍ତ୍ରୀ କହିଲେ ମିଃ ସେନ୍‌ଗୁପ୍ତ ଆପଣ ଆପଣଙ୍କ କାଗଜରେ ଦୁଇଦିନ ତଳେ ମୋ ବିରୁଦ୍ଧରେ କେତେକ ଅପ୍ରିତିକର ମନ୍ତବ୍ୟ ଦେଇଛନ୍ତି । ରାଉରକେଲା ନିର୍ବାଚନରେ ମୁଁ ସରକାରୀ କଳକୁ ବ୍ୟବହାର କରିବା ସଙ୍ଗେ ସଙ୍ଗେ ସରକାରୀ ଅର୍ଥ ବ୍ୟୟ କରି ବିଜୟ ଲାଭ କରିଛି ବୋଲି ଆପଣ ରିପୋର୍ଟ କରିଛନ୍ତି । ଆପଣଙ୍କୁ ଏଇଥିପାଇଁ ଡାକି ପଚାରିବାକୁ ଭାବୁଥିଲି । ଯାହା ହେଉ ଆପଣ ଆସିଗଲେ । ଆପଣ ଜାଣନ୍ତି ମୁଁ ଆପଣଙ୍କ କାଗଜ ଏବଂ ଆପଣଙ୍କ ବିରୁଦ୍ଧରେ କୋଟିଏ ଟଙ୍କାର ମାନହାନି ମୋକଦ୍ଦମା କଲେ କ'ଣ ପରିସ୍ଥିତି ହେବ ? ଆପଣ ଯାହା ଲେଖିଛନ୍ତି ଆପଣଙ୍କ ପାଖରେ ପ୍ରମାଣ ଅଛି ? ଆପଣ ମହତାବଙ୍କ ପାଖରୁ ଶୁଣି ଏକଥା ଲେଖିଛନ୍ତି । ମହତାବଙ୍କ ଯୋଗୁ ଆପଣ ବିପଦରେ ପଡ଼ିବେ । ଷ୍ଟେଟସ୍‌ମ୍ୟାନ୍ ଭଳି କାଗଜର ପ୍ରତିନିଧି ହୋଇ ଏ ଧରଣର ଅସତ୍ୟ ସମ୍ବାଦ ଦେଇ କାଗଜକୁ ବଦ୍‌ନାମ କରୁଛନ୍ତି କିପରି ? ମୁଁ ଚାହିଁଲେ ଆପଣଙ୍କ କାଗଜକୁ ଓଡ଼ିଶାରେ ବ୍ୟାନ୍ କରି ଦେଇପାରିବି । ଆପଣଙ୍କ ଗୋଚରାର୍ଥେ ମୁଁ କହୁଛି ମୋ ନିର୍ବାଚନରେ ସରକାରୀ ଗାଡ଼ି, ସରକାରୀ ଲୋକ, ସରକାରୀ ଅର୍ଥ କିଛି ବ୍ୟବହାର ହୋଇନି । ସବୁ ଅର୍ଥ ମୋ ପାଇଁ ଲୋକେ ଦେଇଛନ୍ତି । ମୁଁ ନିଜ ଅର୍ଥବ୍ୟୟ କରିଛି । ମୋ ବିରୁଦ୍ଧରେ ପ୍ରାର୍ଥୀ ଥିବା ବିରୋଧୀ ଦଳ ନେତା ବିନାୟକ ଆଚାର୍ଯ୍ୟଙ୍କୁ ପଚାରିବେ । ଜୀବନରେ ମୁଁ ଅନେକ ପଦ ପଦବୀରେ ରହିଛି । କୌଣସି କ୍ଷେତ୍ରରେ ମୋତେ ଅନ୍ୟାୟ, ଅନୀତି, ଦୁର୍ନୀତି ସ୍ପର୍ଶ କରିନି । ୧୯୩୭ ମସିହାରେ ମୁଁ ଏ ରାଜ୍ୟର ପ୍ରଧାନମନ୍ତ୍ରୀ ଥିଲି । ସେଇଦିନ ଠାରୁ ଆଜି ପର୍ଯ୍ୟନ୍ତ ମୋ ଦେହରେ ସାମାନ୍ୟ ଦାଗ ଲାଗିନି । ମୁଖ୍ୟମନ୍ତ୍ରୀ ସାମାନ୍ୟ ଦମ୍ ନେଲେ । ସୁଜୟ ବାବୁ

ଠିଆ ହୋଇପଡ଼ି କହିଲେ ସାର୍. ଆଇ ଏମ୍ ଏକ୍ସଟ୍ରିମିଲ୍ ସରି । ଆପଣଙ୍କ ବକ୍ତବ୍ୟ ମୁଁ ଆଜି କାଗଜକୁ ପଠାଇ ଦେବି ।

ଜଣେ ସାମ୍ବାଦିକ ରୂପେ ମୁଁ ଏସବୁ ପ୍ରତ୍ୟକ୍ଷ କରିବାର ଯେଉଁ ସୁଯୋଗ ପାଇଥିଲି ମୋର ସାମ୍ବାଦିକ ଜୀବନରେ ଏକ ମୂଲ୍ୟବାନ ସଂଯୋଜନ । ପରଦିନ ଏ ସମସ୍ତ ଘଟଣାକୁ ମୁଁ ବେଶ୍ ବିସ୍ତୃତ ଭାବେ ମାତୃଭୂମିରେ ଦେଇଥିଲି । ଷ୍ଟେଟ୍ସମ୍ୟାନ୍‌ରେ ମଧ ବିଶ୍ୱନାଥବାବୁଙ୍କର ବକ୍ତବ୍ୟ ବଡ଼ ଆକାରରେ ତହିଁ ପରଦିନ ପ୍ରକାଶ ପାଇଥିଲା । ବିଶ୍ୱନାଥ ଦାସଙ୍କ ଏହି ବକ୍ତବ୍ୟ ତାଙ୍କ ପ୍ରତି ଅନେକଙ୍କର ଥିବା ଧାରଣାକୁ ବଦଳାଇ ଦେଇଥିଲା । ତେବେ ବାହାରେ ତାଙ୍କର ଭାବମୂର୍ତ୍ତିଉଜ୍ଜଳଥିଲାବେଳେ ତାଙ୍କ ସରକାରରେ ସେ ଏକ ଘରକିଆ ହୋଇ ପଡ଼ିଥିଲେ । ତାଙ୍କୁ ଉତ୍କଳ କଂଗ୍ରେସ ଦଳର ସଦସ୍ୟମାନେ ସେଭଳି ସମର୍ଥନ କରୁ ନଥିଲେ । କାରଣ ବିଜୁ ପଟ୍ଟନାୟକଙ୍କୁ ମୁଖ୍ୟମନ୍ତ୍ରୀ କରିବା ପାଇଁ କିଛି ନେତା ଉଦ୍ୟମ କରୁଥା'ନ୍ତି । ବିଶ୍ୱନାଥ ଦାସ ଇସ୍ତଫା ଦେଲେ ବିଜୁବାବୁ ମୁଖ୍ୟମନ୍ତ୍ରୀ ହୋଇଯିବେ ବୋଲି ଭାବୁଥା'ନ୍ତି । ମାତ୍ର ରାଜେନ୍ଦ୍ର ନାରାୟଣ ସିଂହଦେଓ ବିଜୁବାବୁଙ୍କୁ ମୁଖ୍ୟମନ୍ତ୍ରୀ କରିବା ବିପକ୍ଷରେ ଥା'ନ୍ତି । ତେଣୁ ବିଜୁବାବୁଙ୍କର ଦ୍ୱିତୀୟଥର ମୁଖ୍ୟମନ୍ତ୍ରୀ ହେବାର ସ୍ୱପ୍ନ ସଫଳ ହୋଇ ପାରୁନଥାଏ ।

ରାଜନୀତିର ଏହି ବାଦବିବାଦକୁ ମୁଁ ଅତି ନିକଟରୁ ଲକ୍ଷ୍ୟ କରୁଥିଲି । ରାଜ୍ୟରେ ତିନିଜଣ ବିଖ୍ୟାତ ରାଜନୀତିକ ନେତାଙ୍କ ମଧ୍ୟରେ ଯେଉଁ ଛକା-ପଞ୍ଝା ଖେଳ ଚାଲିଥାଏ ସେଥିରେ ମଝିରେ ମଝିରେ ନାନା ପ୍ରକାର ଗୁଜବ ଏହାକୁ ଆହୁରି ଅଧିକ ରସାଣିତ କରୁଥାଏ । ଡଃ. ହରେକୃଷ୍ଣ ମହତାବ, ବିଜୁ ପଟ୍ଟନାୟକ ଏବଂ ରାଜେନ୍ଦ୍ର ନାରାୟଣ ସିଂହଦେଓ ସେ ସମୟରେ ଓଡ଼ିଶା ରାଜନୀତିର ମୁଖ୍ୟ ଖେଳାଳି ଥିଲେ । କିଏ କେତେବେଳେ କି ପ୍ରକାର ଚାଲ୍ ଖେଳିବ ତାହା ଜାଣିବା ସଦାବେଳେ ସମ୍ଭବ ହେଉନଥାଏ । ଠିକ୍ ଏତିକିବେଳକୁ କଂଗ୍ରେସ ନେତା ସର୍ଦ୍ଦାର ଯୋଗିନ୍ଦର ସିଂହ ଓଡ଼ିଶାର ରାଜ୍ୟପାଳ(ତା୨୦/୦୯/୭୧ରିଖ)ରୂପେ ଯୋଗ ଦେଲେ । ସେତେବେଳେ ଆଉ ଏକ ଗୁଜବ ସୃଷ୍ଟି ହେଲା । ତା' ହେଉଛି ବିଶ୍ୱନାଥ ଦାସ ମନ୍ତ୍ରିମଣ୍ଡଳ ଖୁବ୍ ଶୀଘ୍ର ଭାଙ୍ଗିଯିବ ଏବଂ ଯୋଗିନ୍ଦର ସିଂହ କଂଗ୍ରେସ ସରକାର ଗଢ଼ିବା ପାଇଁ ଉଦ୍ୟମ କରିବେ । ବିନାୟକ ଆଚାର୍ଯ୍ୟ ପରବର୍ତ୍ତୀ ମୁଖ୍ୟମନ୍ତ୍ରୀ ହେବେ ବୋଲି ଗୁଜବ ଚାଲିଲା ।

ଉତ୍କଳ କଂଗ୍ରେସ ସ୍ୱତନ୍ତ୍ର ମିଳିତ ସାମ୍ମୁଖ୍ୟ ସରକାର ଯେତେଶୀଘ୍ର ଭାଙ୍ଗିଯିବ ବୋଲି ଯେଉଁ ପ୍ରଚାର ହେଉଥିଲା ବାସ୍ତବ କ୍ଷେତ୍ରରେ ତା' ହୋଇ ନଥିଲା । ମୁଖ୍ୟମନ୍ତ୍ରୀ ବିଶ୍ୱନାଥ ଦାସଙ୍କୁ ଜରଦ୍‌ଗବ ଠାରୁ ଆରମ୍ଭ କରି ଯେତେ ବିଶେଷଣ ଦେଇ ପ୍ରଜାତନ୍ତ୍ରରେ ପ୍ରକାଶ ପାଇଥିଲେ ମଧ ସେ ତାକୁ ଖାତିର ନକରି ମହତାବ ମୁଖ୍ୟମନ୍ତ୍ରୀ ହୋଇ ନପାରିବାରୁ ରୋଗ ବାଉଳାରେ ତାଟିଆ କାମୁଡୁଛନ୍ତି ବୋଲି ହସିହସି କହୁଥାନ୍ତି । କେତେକ ପ୍ରଚାର କଲେ ୧୯୭୨ ବିଧାନସଭା ଅଧିବେଶନ ଆଉ ବସିବ ନାହିଁ । ତେବେ ସମସ୍ତଙ୍କ ଆଶଙ୍କାକୁ ଅମୂଳକ କରି ୧୯୭୨ ଜାନୁଆରୀ ୪ ତାରିଖରେ ବିଧାନସଭାର ଏକ ସଂକ୍ଷିପ୍ତ ଅଧିବେଶନ ଆରମ୍ଭ ହୋଇଥିଲା । ପ୍ରକୃତ ପକ୍ଷରେ ୧୯୭୧ ଅକ୍ଟୋବର ଶେଷରେ ହୋଇଥିବା ଭୟଙ୍କର ବାତ୍ୟା ସମ୍ପର୍କରେ ଆଲୋଚନା ପାଇଁ ଏହି ପନ୍ଦରଦିନିଆ ଅଧିବେଶନ ଡକା ଯାଇଥିଲା । ଅଧିବେଶନ ଆରମ୍ଭ ହେବାର ଦୁଇଦିନ ପରେ କଂଗ୍ରେସ, କମ୍ୟୁନିଷ୍ଟ ଓ ପ୍ରଜା ସୋସାଲିଷ୍ଟ ଦଳ ପକ୍ଷରୁ ଏକ ମିଳିତ ଗଣ ବିକ୍ଷୋଭ ଓ ଶୋଭାଯାତ୍ରା ବିଧାନସଭା ଆଡ଼କୁ ଆସିବ ଏବଂ ଏହି ଶୋଭାଯାତ୍ରା ବଧାନସଭା ସମ୍ମୁଖରେ ପହଞ୍ଚିବା ପରେ ସେଠାରେ ଏକ ସଭା ହେବା ପାଇଁ ସ୍ଥିର କରାଯାଇଥିଲା । ଆମକୁ ସେହି ମର୍ମରେ ପତ୍ର ଦିଆଯାଇଥିଲା । ମୋର ଯାହା ମନେ ଅଛି ବନମାଳୀ ପଟ୍ଟନାୟକ, ବିନାୟକ ଆଚାର୍ଯ୍ୟ, ଦୁର୍ଗାଚରଣ ମହାନ୍ତି(କମ୍ୟୁନିଷ୍ଟ), ପ୍ରସନ୍ନ କୁମାର ଦାଶ(ପ୍ରଜା ସୋସାଲିଷ୍ଟ) ଶୋଭାଯାତ୍ରାର ନେତୃତ୍ୱ ନେଇଥିଲେ । ଏ.ଜି. ଛକ ଆଡୁ ଶୋଭାଯାତ୍ରା ଆସିଥିଲା ଏବଂ ବିଧାନସଭାର ପ୍ୟାରେଡ଼ ପଡ଼ିଆ ଗେଟ୍ ପାଖରେ ଅଟକି ସଭା କରିବାର

କାର୍ଯ୍ୟକ୍ରମ ଥିଲା । ଏହି ଶୋଭାଯାତ୍ରରେ ବେଶ୍ ବହୁତ ଲୋକ ଯୋଗ ଦେଇଥିଲେ । ଶୋଭାଯାତ୍ରା ବିଧାନସଭା ଫାଟକ ପାଖରେ ପହଞ୍ଚିବା ବେଳକୁ ହଠାତ୍ ପଛରୁ ବହୁଲୋକ ଆଗକୁ ମାଡ଼ି ଆସିଲେ । ଫଳରେ ସାମ୍ନାରେ ଥିବା ନେତାମାନଙ୍କ ସମେତ ଅନେକ ଲୋକ ପୋଲିସ୍ କର୍ଡନ ଉପରେ ଅଜାଡ଼ି ପଡ଼ିଲେ ।

କଥା ସେତିକିରେ ଶେଷ ହେଲା ନାହିଁ । ଏହି ସମୟରେ ପଛପଟୁ ପ୍ରବଳ ଟେକାପଥର ବୃଷ୍ଟି ହେଲା । ଆମେ ସାମ୍ବାଦିକ ଓ ଅନ୍ୟ ଏମ୍.ଏଲ୍.ଏ.ମାନେ ଭୟରେ ବିଧାନସଭା ଫାଟକ ଭିତରେ ପଶିଗଲୁ । ପୋଲିସ୍ ପକ୍ଷରୁ ପ୍ରଥମେ ଲୁହବୁହା ଗ୍ୟାସ୍ ଓ ପରେ ଲାଠି ଚାଲିଲା । ଏହା ହରେକୃଷ୍ଣ ମହତାବଙ୍କ ଯୋଜନା ଥିଲା ବୋଲି ପରେ ତାଙ୍କ ଅନୁଗତ କଂଗ୍ରେସ ଲୋକେ କହିଲେ । ତେବେ ଟେକାମାଡ଼ ପରେ ଜନତା ଛତ୍ରଭଙ୍ଗ ଦେଲେ ଏବଂ ଲାଠି ଓ ଟେକା ମାଡ଼ରେ ଆଗରେ ଥିବା ନେତାମାନଙ୍କ ସମେତ ଅନେକ ଲୋକ ରକ୍ତାକ୍ତ ହେଲେ । ରାସ୍ତାରେ ବେଶ୍ ରକ୍ତ ପଡ଼ିଥିଲା । ହଠାତ୍ ଏହି ସମୟରେ ଶ୍ୟାମସୁନ୍ଦର ମହାପାତ୍ର(କଂଗ୍ରେସ ନେତା) ରାସ୍ତାରେ ପଡ଼ିଥିବା ରକ୍ତକୁ ହାତରେ ପୋଛି ନେଇ କପାଳରେ ମାରି ବଡ଼ ପାଟିରେ ଭାଷଣ ଦେବାକୁ ଆରମ୍ଭ କରିଦେଲେ । କିଛି ଲୋକ ଜମାହୋଇ ତାଙ୍କ ଭାଷଣ ଶୁଣିଲେ । ଆହତ ନେତା ଓ ଅନ୍ୟଲୋକଙ୍କୁ କ୍ୟାପିଟାଲ୍ ହସ୍‌ପିଟାଲ୍‌ରେ ଭର୍ତ୍ତିକରାଗଲା । ମୁଁ ଏହି ସମସ୍ତ ଘଟଣା ସେଦିନ କାଗଜରେ ଦେଇଦେଲି ।

## -ବିଶ୍ୱନାଥଙ୍କୁ ମାଡ-

ମଧ୍ୟାହ୍ନ ଭୋଜନ ପରେ ବିଧାନସଭା ଆରମ୍ଭ ହେବା ମାତ୍ରେ ବିରୋଧୀ ଦଳ ପକ୍ଷରୁ ସରକାରଙ୍କ ବିରୁଦ୍ଧରେ ଅନ୍ୟ ଅଭିଯୋଗ କରାଯାଇ ଅତି ଅଭଦ୍ରଭାଷାରେ ମୁଖ୍ୟମନ୍ତ୍ରୀ ଓ କେତେକ ମନ୍ତ୍ରୀଙ୍କ ବିରୁଦ୍ଧରେ ନାନା ପ୍ରକାର ସ୍ଲୋଗାନ୍ ଦିଆଯାଇଥିଲା । ମୁଖ୍ୟମନ୍ତ୍ରୀ ବିଧାନସଭାରୁ ତାଙ୍କ ଚେମ୍ବରକୁ ଯିବା ପରେ ସେଠାରେ ଆଉ ଏ ଅତି ଅଶୋଭନୀୟ ଅଗଣତାନ୍ତ୍ରିକ ଦୃଶ୍ୟ ଦେଖିବାକୁ ମିଳିଥିଲା । କେତେକ ଏମ୍.ଏଲ୍.ଏ. ମୁଖ୍ୟମନ୍ତ୍ରୀ ବସିଥିବା ଚଉକିକୁ ଧରି ଉପରକୁ ଟେକୁଥା'ନ୍ତି ଏବଂ ତଳକୁ ଖସାଉଥା'ନ୍ତି । ସେମାନଙ୍କ ମୁହଁରୁ ସ୍ଲୋଗାନ୍ ବାହାରୁଥାଏ 'ହଇରେ ଚେମେଡ଼ା ବୁଢ଼ା ଏଇନେ ଇସ୍ତଫା ଦେ ।' ସେଇ କୋଠରୀରେ ଅନେକ ଲୋକ ଏ ଦୃଶ୍ୟ ଦେଖୁଥା'ନ୍ତି । ମାତ୍ର କେହି ଏହି ଏମ୍.ଏଲ୍.ଏ.ମାନଙ୍କୁ ସେଥିରୁ ନିବୃତ୍ତ କରୁନଥା'ନ୍ତି । ଏ ରାଜ୍ୟର ବିଧାୟକ କେତେ ଅଗଣତାନ୍ତ୍ରିକ ଓ ଗୁଣ୍ଡାଗିରି କରନ୍ତି ତା' ସେଦିନ ନଦେଖିଥିଲେ ବିଶ୍ୱାସ କରି ହୋଇ ନଥା'ନ୍ତା । ଯେଉଁ ବିଧାୟକମାନେ ଏଥିରେ ସଂପୃକ୍ତ ଥିଲେ ସେମାନଙ୍କ ମଧରେ ପ୍ରଫୁଲ ଘଡ଼େଇ, ତ୍ରିଲୋଚନ କାନୁନ୍‌ଗୋ, ଶ୍ରୀବଲ୍ଲଭ ପାଣିଗ୍ରାହୀ, ବେଣୁଧର ବଳିୟାରସିଂହ ଏବଂ ଆଉ ତିନି ଚାରିଜଣ ଥିଲେ । ମୁରଲିଧର କୁଅଁର, ପ୍ରସନ୍ନ କୁମାର ଦାଶ, ଗଙ୍ଗାଧର ପାଇକରାୟ, ମନମୋହନ ଟୁଡୁ ପ୍ରମୁଖ ସେଠି ଠିଆ ହୋଇ ଉତ୍ସାହ ଦେଉଥା'ନ୍ତି । ମୁଁ ସେଠି ପହଞ୍ଚି ଏ ଦୃଶ୍ୟ ଦେଖିବାବେଳେ ତ୍ରିଲୋଚନ ଆଉ ପ୍ରଫୁଲ ମତେ କହିଲେ ସେଠି କ'ଣ ଠିଆ ହୋଇଛି- ଆସ ହାତ ଲଗାଅ । ମୁଁ କିଛି ନକହି ବିଧାନସଭା ଲବିକୁ ଚାଲି ଆସିଲି । ଲବିରେ ଡଃ ମହତାବ ବସିଥା'ନ୍ତି । ତାଙ୍କୁ ଘେରି ତିନି/ଚାରିଜଣ ସାମ୍ବାଦିକ ବସିଥା'ନ୍ତି । ଅନ୍ୟ ଦିଗରେ ବିଜୁ ପଟ୍ଟନାୟକ ତାଙ୍କ ଦୁଇ ହାତକୁ ପଛକୁ ମୁଠାକରି ଏପଟ ସେପଟ ହେଉଥା'ନ୍ତି । ସେ ରାଗରେ ଦାନ୍ତ କାମୁଡ଼ି ଡଃ ମହତାବଙ୍କୁ ଅନାଇ ବ୍ଲଡି ଓଲ୍ଡ ହାଗାର୍ଡ ବୋଲି କହି ଆଗକୁ ପଛକୁ ଦେଉଥା'ନ୍ତି । ମୁଁ ଡଃ ମହତାବଙ୍କ ସାମ୍ନାରେ ଠିଆ ହୋଇଥିଲି । ଡଃ ମହତାବ ବିଜୁ ବାବୁଙ୍କୁ ଚାହିଁ ଦୁଇହାତର ନଖକୁ ଘଷୁଘଷୁ ମୋତେ ଚାହିଁ କହିଲେ ହୋ- ବରେନ୍ଦ୍ର ଚନ୍ଦ୍ର, ବିଜୟାନନ୍ଦଙ୍କୁ କୁହ ବେଶୀ ରାଗିଲେ ମୁଣ୍ଡରେ ରକ୍ତଚାପ ବୃଦ୍ଧି ହେବ । କାହିଁକି ସେ ଏମିତି ରାଗୁଛନ୍ତି । ମହତାବଙ୍କ କଥାରେ ସେଠି ସମସ୍ତେ ହସିଲେ । ବିଜୁବାବୁ କିଛି ସମୟ ପରେ ବାହାରକୁ ଗଲେ ।

ସେଦିନର ଘଟଣା ଆଜି ମଧ୍ୟ ମୋ ଆଖି ଆଗରେ ଜଳଜଳ ହୋଇ ଦେଖାଯାଉଛି । ମୁଁ ପରେ ଯେତେବେଳେ ଏ ଘଟଣାକୁ ଚିନ୍ତାକରେ ଗଣତନ୍ତ୍ର କେତେ ନିମ୍ନଗାମୀ ହୋଇପାରେ ଏହା ତା'ର ଏକ ଉଦାହରଣ । ଜଣେ ମୁଖ୍ୟମନ୍ତ୍ରୀଙ୍କୁ ତାଙ୍କ ଚେୟରରେ ବିନାଅନୁମତିରେ ପଶି ଆକ୍ରମଣ କରିବା ଏବଂ ଧକ୍କା ଦେବା ଏ ଦେଶରେ ସମ୍ଭବତଃ ଏହି ପ୍ରଥମ ଘଟଣା ।

ଏହି ଘଟଣା ଉପରେ ମୁଖ୍ୟମନ୍ତ୍ରୀ ବିଶ୍ୱନାଥ ଦାସ ତହିଁ ପରଦିନ(ଜାନୁଆରୀ ୭ ତାରିଖ ୧୯୭୨) ବିଧାନସଭାରେ ଏକ ବିବୃତ୍ତି ଦେଇଥିଲେ । ମୁଖ୍ୟମନ୍ତ୍ରୀ ଏମାନଙ୍କ ବିରୁଦ୍ଧରେ ଅତି ଗୁରୁତର ଅଭିଯୋଗ ଆଣିଥିଲେ । ସେ କହିଥିଲେ ଗତ ଛ'ତାରିଖ ଦିନ ୨ଘଣ୍ଟା ୪୫ ମିନିଟ୍‌ରେ ଡକ୍ଟର ମହତାବଙ୍କ ନେତୃତ୍ୱରେ କେତେଜଣ ଏମ୍.ଏଲ୍.ଏ. ଓ ବାହାରର ଲୋକ ଆସେମ୍ବ୍ଲିଭବନର ମୋର ବିଶ୍ରାମ କକ୍ଷକୁ ନିରାପତ୍ତା ବିଭାଗ ଲୋକଙ୍କ ବାରଣ ସତ୍ତ୍ୱେ ଜବରଦସ୍ତ ପଶିଥିଲେ । ସେମାନେ ମୋତେ ଗାଳିଗୁଲଜ କଲେ ଓ କେତେକ ଅତ୍ୟନ୍ତ ଅଭଦ୍ର ଭାଷାରେ ଗାଳି କରୁଥିଲେ ଏବଂ କେତେକ ମୋତେ ମାରଧର କରିଥିଲେ । ସେଦିନ ସକାଳେ ଗୋଳମାଳ ଘଟଣା ଜାଣିବା ପାଇଁ ମୁଁ ପୋଲିସ୍ କଣ୍ଟ୍ରୋଲ୍ ସହ ଟେଲିଫୋନ୍‌ରେ କଥାବାର୍ତ୍ତା ହେଉଥିଲି । ହଠାତ୍ ଏମାନେ ପଶି ଆସିଲେ । ସେମାନଙ୍କ ମଧ୍ୟରୁ ଦୁଇଜଣ ମୋ ହାତରୁ ଟେଲିଫୋନ୍ ଛଡ଼ାଇ ନେଇ ଫିଙ୍ଗି ଦେଇଥିଲେ । ସେମାନଙ୍କ ମଧ୍ୟରୁ କେତେଜଣ ମୋତେ ଠେଲାପେଲା କରି ବାହାରକୁ ମୋ ଚଉକି ସହି ଟେକି ନେଇଯିବାକୁ ଉଦ୍ୟମ କରିଥିଲେ । ମୁଁ ସଙ୍ଗେସଙ୍ଗେ ଇସ୍ତଫାପତ୍ର ଲେଖିବା ପାଇଁ ସେମାନେ ଦାବି କରିଥିଲେ । କେତେକ କହୁଥିଲେ ସେମାନେ ମୋତେ ହତ୍ୟା କରିବେ । ତୋତେ ହତ୍ୟା କରିବୁ ବୋଲି କହୁଥା'ନ୍ତି । ମୁଁ ହସ୍‌ପିଟାଲ୍‌କୁ ବିରୋଧୀ ଦଳ ନେତାଙ୍କୁ ଦେଖିବାକୁ ଯିବି କି ନାହିଁ ବୋଲି ଡଃ ମହତାବ ପ୍ରଶ୍ନ କରୁଥିଲେ । ଆନ୍ଦୋଳନକାରୀମାନେ ମୋତେ ବଡ଼ କୁତ୍ସିତ ଭାଷାରେ ଗାଳି ଦେବାକୁ ଲାଗିଥିଲେ । ମୋର ଅଧିକ ଦୁଃଖ ଯେ ଡଃ ମହତାବଙ୍କ ଭଳି ଜଣେ ଅଭିଜ୍ଞ, ମର୍ଯ୍ୟାଦା ସଂପନ୍ନ ବ୍ୟକ୍ତି ଚେମେଡ଼ା ବୁଢ଼ାକୁ ମାଡ଼ ନଦେଲେ ହେବ ନାହିଁ ବୋଲି କହି ସେମାନଙ୍କୁ ପ୍ରରୋଚନା ଦେଉଥା'ନ୍ତି ।' ମୁଖ୍ୟମନ୍ତ୍ରୀ ତାଙ୍କ ବିରୁଦ୍ଧରେ ପୁଣି କହିଥିଲେ ଡକ୍ଟର ମହତାବଙ୍କ ସହ ଯେଉଁ ବିରୋଧୀ ଦଳର ସଦସ୍ୟମାନେ ତାଙ୍କୁ ଆକ୍ରମଣ କରିବାକୁ ଯାଇଥିଲେ ସେମାନଙ୍କ ମଧ୍ୟରେ ସର୍ବଶ୍ରୀ ପ୍ରସନ୍ନ କୁମାର ଦାଶ, ଶ୍ରୀବଲ୍ଲଭ ପାଣିଗ୍ରାହୀ, ତ୍ରିଲୋଚନା କାନୁନ୍‌ଗୋ, ପ୍ରଫୁଲ୍ଲ ଚନ୍ଦ୍ର ଘଡ଼େଇ, ଗଙ୍ଗାଧର ପାଇକରାୟ ଓ ଡକ୍ଟର ବେଣୁଧର ବଳିୟାରସିଂହ ପ୍ରମୁଖ ଥିଲେ ।

ମୁଖ୍ୟମନ୍ତ୍ରୀଙ୍କ ଏହି ବିବୃତ୍ତିର କପି ଆମକୁ ଦିଆଯାଇଥିଲା ଏବଂ ତା' ପରଦିନ ମୁଁ ମାତୃଭୂମି ରେ ଏହାକୁ ବିସ୍ତୃତଭାବେ ବର୍ଣ୍ଣନା କରି ଦେଇଥିଲି । ଦେଶର ସବୁ ଖବର କାଗଜରେ ଏହା ପ୍ରକାଶ ପାଇଥିଲା । ରାଜ୍ୟର ମୁଖ୍ୟମନ୍ତ୍ରୀଙ୍କ ପ୍ରତି ଏ ପ୍ରକାର ବ୍ୟବହାରକୁ କେହି ପସନ୍ଦ କରି ନଥିଲେ । ଡଃ. ମହତାବ ଏ ଘଟଣାରେ ସମଗ୍ର ଦେଶରେ ସମାଲୋଚିତ ହୋଇଥିଲେ । ତେବେ ମୁଁ ପୂର୍ବରୁ ଯାହା କହିଥିଲି ଜଣେ ମୁଖ୍ୟମନ୍ତ୍ରୀ ପଛରେ କୌଣସି ବିଧାୟକ ନଥିଲେ ଏହିଭଳି ଅବସ୍ଥାର ସମ୍ମୁଖୀନ ହେବାକୁ ପଡ଼ିଥାଏ । ଏତେ ଘଟଣା ଘଟିଗଲା ହେଲେ ଉତ୍କଳ କଂଗ୍ରେସ ବା ସ୍ୱତନ୍ତ୍ର ଦଳର କେହି ଜଣେ ହେଲେ ତାଙ୍କୁ ସାହାଯ୍ୟ କରିବା ପାଇଁ ଆଗେଇ ଆସିଲେ ନାହିଁ ।

ବିଶ୍ୱନାଥ ବାବୁ ଆଉ ଛ'ମାସ ମୁଖ୍ୟମନ୍ତ୍ରୀ ଥିଲେ । ଜୁନ୍‌ମାସ ୯ ତାରିଖରେ ସେ ଇସ୍ତଫା ଦେଲେ । ସମ୍ଭବତଃ ନିଜ ପଛର ଜଣେ ହେଲେ ଏମ୍.ଏଲ୍.ଏ. ନଥାଇ ଜଣେ ମୁଖ୍ୟମନ୍ତ୍ରୀ ହେବା ଏହା ପ୍ରଥମ ଘଟଣା ।

## -ନ୍ୟାସନାଲ ହେରାଲ୍ଡ ଓ ଶ୍ୟାମ ବାବୁ-

ଆତ୍ମଜୀବନୀ ଲେଖିବାବେଳେ ଅନେକ କ୍ଷେତ୍ରରେ ଗୋଟିଏ ସମୟରେ ଜୀବନର ଏକାଧିକ ଘଟଣା ଘଟିଥାଏ । କିମ୍ବା ଜୀବନର ଚଲାପଥରେ ଏକ ସମୟରେ ଏକାଧିକ ଚରିତ୍ରଙ୍କ ସହ ଭେଟ ହୋଇଥାଏ । ସେ ଚରିତ୍ର କେତେକ କ୍ଷେତ୍ରରେ ଜୀବନକୁ ଏକ ନୂଆ ମୋଡ଼ ଦିଅନ୍ତି । ମୋ ଜୀବନରେ ସେହିଭଳି ଜଣେ ବନ୍ଧୁ ଶ୍ୟାମ ସୁନ୍ଦର ମହାପାତ୍ର । ଶ୍ୟାମବାବୁ କଂଗ୍ରେସ ନେତା । ୧୯୭୧ ନିର୍ବାଚନରେ ଉଭୟ ଏମ୍.ପି. ଆଉ ଏମ୍.ଏଲ୍.ଏ. ରୂପେ ଯଥାକ୍ରମେ ବାଲେଶ୍ୱର ଓ ରାଉରକେଲାରୁ ନିର୍ବାଚିତ ହୋଇଥିଲେ । ତେବେ ସେ ଏମ୍.ପି. ରୂପେ କାର୍ଯ୍ୟ କରିବାକୁ ପସନ୍ଦ କରିଥିଲେ । ତେଣୁ ରାଉରକେଲା ବିଧାନସଭା ଆସନରୁ ଇସ୍ତଫା ଦେଇଥିଲେ । ୧୯୬୭ରୁ ମୋର ଶ୍ୟାମବାବୁଙ୍କ ସହ ପରିଚୟ ଥିଲା । ଶ୍ୟାମବାବୁ ଜଣେ ଚମତ୍କାର ବକ୍ତା ଥିଲେ । ଓଡ଼ିଆ, ଇଂରାଜୀ, ବଙ୍ଗଳା ଆଉ ହିନ୍ଦୀ ଭାଷାରେ ସେ ଅନର୍ଗଳ ବକ୍ତୃତା ଦେଇପାରୁଥିଲେ । କେମିତି କେଜାଣି ତାଙ୍କୁ ମୋତେ ଭଲ ଲାଗିଥିଲା । ସେ ମଧ୍ୟ ମତେ ଶ୍ରଦ୍ଧା କରୁଥିଲେ । ଶ୍ୟାମବାବୁ ଏମ୍.ପି. ହେବା ପରେ ତାଙ୍କର ଭାଗ୍ୟ ଖୋଲି ଯାଇଥିଲା । ସେ ଇନ୍ଦିରା ଗାନ୍ଧୀଙ୍କର ପ୍ରିୟପାତ୍ର ହୋଇଥିଲେ । ଏବଂ କଂଗ୍ରେସ ଦଳ ସାଧାରଣ ସମ୍ପାଦକ ରୂପେ ମନୋନୀତ ହୋଇଥିଲେ । ତାଙ୍କ ସାଙ୍ଗରେ ମୋର ପରିଚୟ ହେବା ପରେ ସେ ତାଙ୍କର ଅନେକ ଖବର ମାତୃଭୂମିରେ ପ୍ରକାଶ ପାଇଁ ମୋତେ ପଠାଉଥିଲେ । ମୁଁ ସେଗୁଡ଼ିକୁ ଦେଉଥିଲି ।

ଠିକ୍ ଦିନ ବାର ମନେ ନଥିଲେ ମଧ୍ୟ ସମ୍ଭବତଃ ୧୯୭୨ ଜାନୁଆରୀ ମାସ ପ୍ରଥମ ବା ଦ୍ୱିତୀୟ ସପ୍ତାହ । ହଠାତ୍ ଦିନେ ଶ୍ୟାମବାବୁ ମୋର କ୍ୱାର୍ଟରରେ ଆସି ପହଞ୍ଚିଲେ । ମୁଁ ସେତେବେଳେ ମାର୍କେଟ ବିଲ୍ଡିଂ ପଛପଟ ଟାଇପ୍ ଫୋର୍ ଘରେ ରହୁଥିଲି । ସକାଳ ସାଢ଼େ ନଅଟା ବା ଦଶଟା ହେବ । ମୁଁ ଶ୍ୟାମବାବୁଙ୍କୁ ଦେଖି ଆଶ୍ଚର୍ଯ୍ୟ । ବସି କଥାବାର୍ତ୍ତା ହେଲୁ । କଫି ଖାଉଖାଉ ଶ୍ୟାମବାବୁ କହିଲେ ବରେନ୍ଦ୍ର ବାବୁ ମୁଁ ଗୋଟେ ପ୍ରସ୍ତାବ ନେଇ ଆସିଛି । ସବୁ ଦିଗରୁ ବିଚାର କରି ମୁଁ ଆପଣଙ୍କ ନାମ ସୁପାରିଶ କରିଛି । ମୁଁ କହିଲି କୁଆଡ଼େ ସୁପାରିଶ କରିଛନ୍ତି ? ସେ କହିଲେ ନ୍ୟାସନାଲ୍ ହେରାଲ୍ଡ ଖବର କାଗଜ ଓଡ଼ିଶାରେ ଜଣେ ପ୍ରତିନିଧି ଦରକାର କରୁଛନ୍ତି । କାଗଜର ଏମ୍.ଡି. ଯଶପାଲ୍ କାପୁର ମୋତେ ଏଥିପାଇଁ ଦାୟିତ୍ୱ ଦେଇଛନ୍ତି । ମୁଁ ଶ୍ୟାମବାବୁଙ୍କ କଥା ଶୁଣି ଗୋଟିଏ ଦିଗରୁ ଖୁସି ହେଲେ ମଧ୍ୟ ଠିକ୍ ଦାୟିତ୍ୱ ସମ୍ଭାଳି ପାରିବି କି ନାହିଁ ସେ ସମ୍ପର୍କରେ ଚିନ୍ତା କଲି । ଶ୍ୟାମବାବୁ ମୋତେ କହିଲେ କ'ଣ ଭାବୁଛନ୍ତି ? ଏ ପ୍ରକାର ସୁଯୋଗ ପାଇବା ସଦାବେଳେ ସମ୍ଭବ ନୁହେଁ । ତା'ପରେ କହିଲେ ଆପଣ ଆଠ/ଦଶ ଦିନ ମଧ୍ୟରେ ଦିଲ୍ଲୀ ଆସନ୍ତୁ ମୁଁ ଦୁଇଦିନ ପରେ ଯାଉଛି । ସେଠି ପହଞ୍ଚି ମୋତେ ଫୋନ୍ କରିବେ । ମୁଁ ଆପଣଙ୍କୁ ଯଶପାଲ୍ କାପୁରଙ୍କ ନିକଟକୁ ନେଇଯିବି । ଫାଇନାଲ୍ କଥାବାର୍ତ୍ତା ସେଇଠି ହେବ ।

ବିରାଡ଼ି କପାଳକୁ ଶିକା ଛିଡ଼ିବା ଭଳି ତା'ର ଦି'ଦିନ ପରେ ବିଚିବାବୁ(ବିଚିତ୍ରାନନ୍ଦ କର, ମାତୃଭୂମିର ସତ୍ତ୍ୱାଧିକାରୀ) ମୋତେ ଟେଲିଫୋନ୍ କରି କଟକ ଡକାଇଲେ । କ'ଣ କାମ ଅଛି ବୋଲି ପଚାରିବାରୁ ସେ କହିଲେ ଆସନ୍ତୁ ବଡ଼ ଇମ୍ପୋର୍ଟାଣ୍ଟ କାମ ଅଛି । ମୁଁ ସକାଳ ଖବର ଦେଇ ଖାଇପିଇ ଦିନ ଦୁଇଟା ବେଳକୁ କଟକ ଗଲି । ଚାରିଟା ବେଳକୁ 'ମାତୃଭୂମି' ଅଫିସ୍‌ରେ ପହଞ୍ଚିଲି । ବିଚିବାବୁ ବସିଥିଲେ । ମୋତେ ଦେଖି କହିଲେ ବରେନ୍ଦ୍ରବାବୁ ଆପଣଙ୍କୁ ଦିଲ୍ଲୀ ଯିବାକୁ ହେବ । ମୁଁ ହଠାତ୍ ଏ କଥାରେ ଆଶ୍ଚର୍ଯ୍ୟ ହୋଇ ପଚାରିଲି କ'ଣ ହୋଇଛି ? ସେ କହିଲେ ଆମର ଡି.ଏ.ଭି.ପି. ବିଜ୍ଞାପନ ଦର ବହୁତ କମିଯାଇଛି । ଆମର ସବୁ କାଗଜ ଯାଇଛି । ସର୍କୁଲେସନ୍, ଆକାଉଣ୍ଟ ସବୁ କିଛି

ଠିକ୍ ଭାବେ ଯାଇଛି । ବୋଧେ ସେମାନେ କିଛି ପଇସା ଚାହୁଁଛନ୍ତି । ତେବେ ଆମର ଆଉ ପ୍ରଜାତନ୍ତ୍ରର ସର୍କୁଲେସନ୍‌ରେ ମାତ୍ର ହଜାରେ ଫରକ୍ । ମାତ୍ର ପ୍ରଜାତନ୍ତ୍ର ଅପେକ୍ଷା ଆମ ବିଜ୍ଞାପନ ଦର ଅଧାରୁ ସାମାନ୍ୟ ଅଧିକ ଅଛି । ମୁଁ ସବୁ କାଗଜର ଆଉ ଗୋଟିଏ ସେଟ୍ ଆଣି ଆସିଲି । ତା'ପରେ କହିଲି ଦେଖନ୍ତୁ କେତେଦିନ ଲାଗିବ ମୁଁ କହି ପାରୁନି । ଅନ୍ତତଃ ସାତ ଆଠଦିନ ଖୁବ୍ କମ୍‌ରେ ଲାଗିବ । ଯିବା ଆସିବା ଦି'ଦିନ ଲେଖାଏ ଚାରିଦିନ । ମତେ ଆପଣ ଖୁବ୍ କମ୍‌ରେ ଦି'ହଜାର ଟଙ୍କା ଦିଅନ୍ତୁ । ଏତେଟଙ୍କା କଥା ଶୁଣି ସେ କହିଲେ ଏତେଟଙ୍କା କ'ଣ ହେବ ? ଆପଣଙ୍କର ତ ଏମ୍.ପି.ମାନେ ସମସ୍ତେ ଚିହ୍ନା । ସେମାନଙ୍କ ଘରେ ରହି କାମ କରିବାକୁ ପଡ଼ିବ । ମୁଁ କହିଲି ଆଜ୍ଞା କାହାଘରେ ରହି କାହା ପାଖରୁ ଟଙ୍କା ମାଗି ମୁଁ ରହିପାରିବି ନାହିଁ । ବରଂ ଆପଣ ଆଉ କାହାକୁ ପଠାନ୍ତୁ । ବିଚିବାବୁ ଦେଖିଲେ ମୁଁ ଅନ୍ୟପ୍ରକାର ଲୋକ । ବଡ଼ କୁନ୍ଥକୁନ୍ଥ ହୋଇ ହଜାରେ ଟଙ୍କା ଦେଲେ । କହିଲେ ଏଇଥିରେ ଚଳାନ୍ତୁ । ମୁଁ ଦେଖିଲି ଏବେ ଆଉ ଅଧିକା ଟଙ୍କା ମାଗି ଲାଭ ନାହିଁ । ସେତିକି ଟଙ୍କା ଧରି ଭୁବନେଶ୍ୱର ଆସିଲି । ଭୁବନେଶ୍ୱରରେ ସେତେବେଳେ ମୋ ଘରେ ମୋ ସ୍ତ୍ରୀ, ମୋ ସାନ ଭାଇ, ବଡ଼ ଶଳା ସମସ୍ତେ ରହୁଥିଲେ । ତେଣୁ ଦିଲ୍ଲୀ ଯିବା ଅସୁବିଧା ହେଲାନାହିଁ । ଦି'ଦିନ ପରେ ଦିଲ୍ଲୀ ପାଇଁ ଟିକଟ୍ କଲି । ସେତେବେଳେ ଦିଲ୍ଲୀକୁ ତୃତୀୟ ଶ୍ରେଣୀରେ ଯିବା ଆସିବା ଶହେଟଙ୍କା ପଡୁଥିଲା । ଯିବା ଟିକଟ କଲି । କାରଣ କେବେ ଫେରିବି ଠିକ୍ ନଥିଲା । ଦିଲ୍ଲୀ ଯିବା ପୂର୍ବରୁ ଶ୍ୟାମବାବୁଙ୍କୁ ଫୋନ୍ କଲି । ସେ ମୋ ଯିବା କଥା ଶୁଣି ଖୁସି ହେଲେ । ମତେ କହିଲେ ମୁଁ ଆପଣଙ୍କ ପାଇଁ 'ସେଲ୍' ଗେଷ୍ଟ ହାଉସ୍‌ରେ ଗୋଟିଏ ରୁମ୍ ବୁକ୍ କରି ଦେଉଛି । ଆପଣ ଷ୍ଟେସନ୍‌ରୁ ସିଧା ସେଲ୍ ଗେଷ୍ଟହାଉସ୍ ଚାଲି ଆସିବେ । ସେଲ୍ ଗେଷ୍ଟହାଉସ୍ କେଉଁ ସ୍ଥାନରେ ଥିଲା ମୋର ଠିକ୍ ସ୍ମରଣ ନାହିଁ । ତେବେ ଲୋଧି ଇଷ୍ଟେଟ୍‌ରେ ବୋଲି ମନେ ପଡୁଛି । ମୁଁ ଟାକ୍ସିରେ ସେଲ୍ ଗେଷ୍ଟହାଉସ୍ ଗଲି । ପହଞ୍ଚୁ ପହଞ୍ଚୁ ସନ୍ଧ୍ୟା ହୋଇଥିଲା । ତେବେ ରୁମ୍ ବୟ ଗରମ ପାଣି ବ୍ୟବସ୍ଥା କରିଦେଲା । ମୁଁ ସେଠି ଷ୍ଟିଲ୍ ମିନିଷ୍ଟରଙ୍କ ଗେଷ୍ଟ ରୂପେ ରହିଲି । ଏସବୁ ଶ୍ୟାମବାବୁଙ୍କ ଯୋଗୁ ସମ୍ଭବ ହେଲା । କଂଗ୍ରେସର ସାଧାରଣ ସମ୍ପାଦକ । ଦିଲ୍ଲୀରେ କଂଗ୍ରେସ ସରକାର । ତେଣୁ ଅସୁବିଧା ନଥିଲା । ତା'ଛଡ଼ା ମନ୍ତ୍ରୀଙ୍କ ଗେଷ୍ଟମାନେ ସବୁ ମାଗଣା । ଗାଧୁଆ ପାଧୁଆ ସାରି ବେଡ୍‌ରେ ବସି ଗରମ ଗରମ ଚା' ଆଉ ପକୋଡ଼ି ଖାଇଲି । ଜାନୁଆରୀ ମାସରେ ପ୍ରବଳ ଶୀତ । ତେବେ ରୁମ୍ ହିଟର ଯୋଗୁ ରୁମ୍ ବେଶ୍ ଉଷୁମ ଥାଏ । ଦିଲ୍ଲୀ ଶୀତ କଥା ମୁଁ ଆଗରୁ ଜାଣେ । ତେଣୁ ସାଙ୍ଗରେ ଫୁଲ୍ ସୁଇଟର, ସୁଟ୍-ଟାଇ, ସାଲ୍, କାଣ୍ଡିଆ ସବୁ ନେଇଥିଲି । ରାତିରେ ଖାଇପିଇ ଦଶଟା ବେଳକୁ ଶୋଇଗଲି । ସକାଳ ପାଞ୍ଚଟାରେ ନିଦ ଭାଙ୍ଗିଗଲା । ବାହାରକୁ ନ ବାହାରି ଶେଯରେ ପଡ଼ିଥାଏ । ଚମତ୍କାର ଆରାମଦାୟକ ଶେଯ ସାଙ୍ଗକୁ ମୋଟା ଘୋଡ଼ାଇ ହେବା ରେଜେଇ । ଶୀତର ନାଁ ଗନ୍ଧ ନଥାଏ । ମୁଁ ମଙ୍କିକ୍ୟାପ୍ ପିନ୍ଧି ଶୋଇଥାଏ । ସକାଳ ୬ଟା ବେଳକୁ କବାଟରେ ନକ୍ ହେଲା । କବାଟ ଖୋଲି ଦେଖିଲି ଗରମ ଗରମ ଚା' ଆଣି ରୁମ୍ ବୟ ଠିଆ ହୋଇଥିଲା । ତା' ସାଙ୍ଗରେ ଆଉ କ'ଣ ଦରକାର ବୋଲି ପଚାରିଲା । ମୁଁ ପ୍ରକୃତରେ କପେ ଦି'କପ୍ ଗରମ ଚା' ଚାହୁଁଥିଲି । ତାକୁ କହିଲି ଆଉ ଅଧଘଣ୍ଟାକ ପରେ ଆଉ କପେ ଚା' ଆଣିବା ପାଇଁ । ସେ ଚାଲିଗଲା । ଶେଯକୁ ଆସି ସାମ୍ନା ଟିପଏ ଉପରେ ଚା' ରଖି ଧୀରେଧୀରେ ଚା' କପ୍‌ରେ ଓଠ ଲଗାଇଲି । ଜୀବନରେ ସେ ପର୍ଯ୍ୟନ୍ତ ଭି.ଆଇ.ପି. ଟ୍ରିଟ୍‌ମେଣ୍ଟ କ'ଣ ମୁଁ ଜାଣି ନଥିଲି । ସେଦିନ ପ୍ରଥମେ ମୋର ଅନୁଭବ ହେଲା ମୁଁ ଜଣେ ଭି.ଆଇ.ପି. ବୋଲି । ଅଧଘଣ୍ଟାକ ପରେ ରୁମ୍ ବୟ ଏକ ଟ୍ରେ'ରେ ଟି-ସେଟ୍ ଏବଂ କପ୍‌ପ୍ଲେଟ୍ ଆଉ ସେଦିନର ଦୁଇଟି ଇଂରାଜୀ କାଗଜ ଆଣିଦେଲା । ମୋର ସକାଳୁ ଖବର କାଗଜ ପଢ଼ିବା ଏକ ନିୟମିତ ଅଭ୍ୟାସ । ତେଣୁ ସକାଳୁ ସକାଳୁ ଖବର କାଗଜ ଦେଖି ମନଟା ଖୁସି ହୋଇଗଲା । ଟ୍ରେ'ରେ ଥିବା ଟି-ପଟ୍‌ରେ ବୋଧେ ତିନି କପ୍ ଚା' ଥିଲା । ମୁଁ କପେ ଚା' ଢାଳି ପିଉପିଉ କାଗଜ ପଢ଼ିଲି । ସାଢ଼େ ସାତଟା ସୁଦ୍ଧା କାଗଜ ପଢ଼ା ହୋଇଗଲା । ନିତ୍ୟକର୍ମ ଶେଷ କରି ସାଢ଼େ ଆଠଟା ସୁଦ୍ଧା ପ୍ରସ୍ତୁତ ହୋଇଗଲି । ରୁମ୍‌ବୟ ଜଳଖିଆ

ଆଣିବ କି ବୋଲି ପଚାରିଲା । ଅଳ୍ପ ସମୟ ପରେ ଗରମ ଗରମ ପୁରି, ଆଳୁଦମ୍ ଆଉ କୋବି ଭଜା ଆସିଗଲା । ଦୁଇଦିନ ଟ୍ରେନ୍ ଯାତ୍ରାରେ ଯେଉଁ କ୍ଲାନ୍ତି ଅବସାଦ ଥିଲା ସବୁ ଲିଭିଗଲା । ଶ୍ୟାମବାବୁଙ୍କୁ ମନେମନେ ଧନ୍ୟବାଦ ଦେଲି । ଶ୍ୟାମବାବୁଙ୍କୁ ଫୋନ୍ କଲି । ସେ କହିଲେ ଆପଣ ଗେଷ୍ଟ ହାଉସ୍‌ରେ ଥା'ନ୍ତୁ, ମୁଁ ଯାଉଛି । ସେଇଠୁ ଯଶପାଲ୍ କାପୁରଙ୍କ ଘରକୁ ଯିବା । ମୁଁ ସୁଟ୍-ଟାଇ ପିନ୍ଧି ଦଶଟା ବେଳକୁ ପ୍ରସ୍ତୁତ ହୋଇ ବସିଲି । ଦିନ ପ୍ରାୟ ୧୧ଟା ବେଳକୁ ଶ୍ୟାମବାବୁ ଆସିଲେ । କହିଲେ ଆମେ ସିଧା ନ୍ୟାସନାଲ୍ ହାରାଲ୍ଡ ଅଫିସ୍‌କୁ ଯିବା । ଯଶପାଲଜୀ ସାଢ଼େ ୧୧ଟାରେ ଅଫିସ୍ ଆସିବେ ବୋଲି କହିଲେ । ଆମେ ସାଙ୍ଗ ହୋଇ ଅଫିସ୍ ଗଲୁ । ଆମେ ପହଞ୍ଚିବା ବେଳକୁ ଯଶପାଲ୍ କାପୁର ଆସି ସାରିଥିଲେ । ଶ୍ୟାମବାବୁ ତାଙ୍କ ଦରଜା ଖୋଲି କହିଲେ ଯଶପାଲ୍‌ଜୀ କୋ ବନ୍ଦା କା ସଲାମ୍ । ଯଶପାଲ୍ କାପୁର ସାଙ୍ଗେ ସାଙ୍ଗେ କହିଲେ ଆରେ ଆଇଏ ଆଇଏ । ମୁଁ ବାହାରେ ଅପେକ୍ଷା କଲି । ଦୁଇ ମିନିଟ୍ ମଧ୍ୟରେ ମୋତେ ଡାକରା ଆସିଲା । ମୁଁ ଭିତରକୁ ଗଲି । ଯଶପାଲ୍ କାପୁରଙ୍କୁ ନମସ୍କାର କଲି । ଯଶପାଲ୍‌ଜୀ ମୋତେ ତଳ ଉପର ଚାହିଁଲେ । ତା'ପରେ କହିଲେ ଆରେ ଧଲ୍ ସାହେବ ବୈଠିୟେ ନା । ସେ ହାତ ବଢ଼ାଇ ଦେଲେ । ମୁଁ କରମର୍ଦ୍ଦନ କଲି ।

ଶ୍ୟାମବାବୁ ମୋ ସମ୍ପର୍କରେ ବେଶ ବନେଇ ଚୁନେଇ କହିଲେ । ଓଡ଼ିଶାରେ ମୋର ପ୍ରଭାବ ଯଥେଷ୍ଟ ଏବଂ ଉପରସ୍ତରରେ ମୁଖ୍ୟମନ୍ତ୍ରୀ ଓ ମନ୍ତ୍ରୀମାନଙ୍କ ସହ ମୁଁ ବିଶେଷ ଭାବେ ପରିଚିତ ବୋଲି ସେ ମୋର ପରିଚୟ ଦେଇ କହିଥିଲେ । ଯଶପାଲ କାପୁର ମୋ ସାଙ୍ଗରେ କଥାବାର୍ତ୍ତାବେଳେ କହିଲେ ମିଃ ଧଲ୍ ମୁଁ ଚାହୁଁଛି ଆପଣ ଆମ କାଗଜ ପାଇଁ ଭୁବନେଶ୍ୱରରେ ଜଣେ ଏଜେଣ୍ଟ ଠିକ୍ କରିଦେବେ । ତା' ସାଙ୍ଗେ ସାଙ୍ଗେ ଆମ ପାଇଁ କିଛି ବିଜ୍ଞାପନ ଯୋଗାଡ଼ କରିଦେବେ । ଆପଣ ଯେତିକି ବିଜ୍ଞାପନ ଦେବେ ଆମେ ଆପଣଙ୍କୁ ଶତକଡ଼ା ଦଶଭାଗ କମିଶନ ଦେବୁ । ବର୍ଷରେ ଲକ୍ଷେ ଟଙ୍କାରୁ ଅଧିକ ବିଜ୍ଞାପନ ଦେଲେ ଶତକଡ଼ା ୧୫ ଭାଗ କମିଶନ ଦେବୁ । ଯଶପାଲ କାପୁରଙ୍କ କଥା ଶୁଣି ମୁଁ କହିଲି ମିଃ କାପୁର, ଆପଣଙ୍କର କଂଗ୍ରେସ କାଗଜ । ବର୍ତ୍ତମାନ ଓଡ଼ିଶାରେ ଅଣକଂଗ୍ରେସ ସରକାର ଅଛି । ତେଣୁ ବିଜ୍ଞାପନ ମିଳିବ ନାହିଁ । କିନ୍ତୁ ମୁଁ ଜଣେ ସାମ୍ବାଦିକ । ଆପଣଙ୍କ କାଗଜର ସାମ୍ବାଦିକ ହେବା ପାଇଁ ଶ୍ୟାମବାବୁ ମତେ କହିବାରେ ମୁଁ ଆସିଲି । ତା'ନହେଲେ ମୁଁ ଏଠିକି ଆସି ନଥା'ନ୍ତି । ମୋର ସାମ୍ବାଦିକତା ସମ୍ପର୍କରେ ଆପଣ ଆପଣଙ୍କ ଓଡ଼ିଶା ନେତାମାନଙ୍କୁ ପଚାରି ପାରନ୍ତି । ମୁଁ ଆପଣଙ୍କ କାଗଜର ବିଜ୍ଞାପନ, ଏଜେଣ୍ଟ ହେବାପାଇଁ ଆସିନାହିଁ । ଧନ୍ୟବାଦ । ମୁଁ ଉଠିବାର ଉପକ୍ରମ କଲି । ଶ୍ୟାମବାବୁ ମୋ କାନ୍ଧକୁ ଧରି ବସାଇ ଦେଲେ । କହିଲେ ବରେନ୍ଦ୍ରବାବୁ ବସନ୍ତୁ । କଥାବାର୍ତ୍ତା କ'ଣ ସରିଲାଣି ଯେ ଆପଣ ଉଠିଲେଣି । ମୁଁ କହିଲି ଆଉ କ'ଣ କଥା ହେବା ? ଏତିକିବେଳେ ଯଶପାଲ କାପୁର ତାଙ୍କର ଜେନେରାଲ୍ ମ୍ୟାନେଜରଙ୍କୁ ଡାକିଲେ । ଜେନେରାଲ୍ ମ୍ୟାନେଜରଙ୍କ ନାଁ ଯାହା ମୋର ମନେ ପଡୁଛି ସୁଧୀନ୍ଦ୍ର ସିହ୍ନା । ସେ ଆସିବାପରେ ତାଙ୍କୁ ପଚାରିଲେ ଆମର ଭୁବନେଶ୍ୱରରେ କରେସ୍‌ପଣ୍ଡେଣ୍ଟ କିଏ ଅଛି ? ସେ କହିଲେ ନା ଆମର କେହି ନାହାନ୍ତି । ଯଶପାଲ କାପୁର ପଚାରିଲେ ତେବେ ଆମ କାଗଜରେ ଓଡ଼ିଶା ଖବର ଆଦୌ ପ୍ରକାଶ ପାଉନାହିଁ ? ସେ କହିଲେ ଅତି ଗୁରୁତ୍ୱପୂର୍ଣ୍ଣ ଖବର ହେଲେ ଆମେ ପି.ଟି.ଆଇ./ୟୁ.ଏନ୍.ଆଇ.ରୁ ନେଉଛୁ ।

ମୋର ମନେହେଲା ମୁଁ ଯଶପାଲଜୀଙ୍କୁ ଯେଉଁ ଷ୍ଟ୍ରେଟ କଥା ଶୁଣାଇଲି ସେ ସେଥିରେ ପ୍ରଥମେ ସାମାନ୍ୟ ବିରକ୍ତ ହେଲେ ମଧ୍ୟ ପ୍ରଭାବିତ ହୋଇଥିଲେ । ତେଣୁ ପରେ ପରେ ମୋତେ କହିଲେ ମିଃ ଧଲ୍ ଆପଣ ତ ଆମ ଭୁବନେଶ୍ୱର ପ୍ରତିନିଧି ହେବ । ମାତ୍ର କାଗଜ ଯଦି ଭୁବନେଶ୍ୱରରେ ସର୍କୁଲେଟ ନହୁଏ ଆପଣଙ୍କ ସମ୍ବାଦ ଓଡ଼ିଶାରେ ଲୋକେ ପଢ଼ିବେ କିପରି ? ମୁଁ ଉତ୍ତର ଦେଲି ସାର୍ ମୁଁ ଜଣେ ଏଜେଣ୍ଟ ସ୍ଥିର କରିଦେବି । ସେଥିରେ ଅସୁବିଧା ନାହିଁ,

ତା'ଛଡ଼ା କଂଗ୍ରେସ ନେତାମାନେ କାଗଜ ଗ୍ରାହକ ହେବାପାଇଁ କହିଦେବି । ସରକାରଙ୍କ ଅଫିସ୍ ମଧ୍ୟ କାଗଜ କିଣିବ । ମୋ କଥା ଶୁଣି ସେ ଖୁସି ହେଲେ । ତା'ପରେ ମୁଁ ପୁଣି କହିଲି ମୁଁ ଆପଣଙ୍କ ପ୍ରତିନିଧି ହେଲେ ଆପଣ ମତେ ଦରମା ଦେବେ କେତେ ? ଯଶପାଲ୍‌ଜୀ ସିହ୍ନାଙ୍କ ଆଡ଼କୁ ଚାହିଁଲେ । ମୋର ସିଧାସଳଖ ପ୍ରଶ୍ନରେ ଦୁହେଁ କିପରି ବିରକ୍ତ ହେଲାଭଳି ମୋତେ ଲାଗିଲା । ମାତ୍ର ମୁଁ ସେତେବେଳକୁ ସ୍ଥିର କରି ସାରିଲିଣି ନ୍ୟାସନାଲ୍ ହେରାଲ୍ଡର ଓଡ଼ିଶା ପ୍ରତିନିଧି ହେବି ନାହିଁ । ହଠାତ୍ ସିହ୍ନା କହିଲେ ଆମର କଲିକତା ପ୍ରତିନିଧି ଯାହା ପାଉଛନ୍ତି ଆପଣ ସେଇଆ ପାଇବେ । ମୁଁ ପଚାରିଲି କେତେ ? ସେ କହିଲେ ମାସକୁ ଚାରିଶହ ଟଙ୍କା । ମୁଁ ହଠାତ୍ ଏ ପ୍ରକାର ଘଟଣାରେ ମୋର ମତ ପରିବର୍ତ୍ତନ କଲି । ଯଶପାଲ୍‌ଜୀ କହିଲେ ମିଃ ଧଲ୍ ଶ୍ୟାମବାବୁ ଆପଣଙ୍କ ସମ୍ପର୍କରେ ମୋତେ ଯାହା କହିଛନ୍ତି ସେଥିରେ ମୁଁ ନିଶ୍ଚିତ ଆପଣ ଆମକୁ ବିଜ୍ଞାପନରେ କିଛି ସାହାଯ୍ୟ କରିପାରିବେ । ଏଥିରେ ଆପଣଙ୍କରତ ଲାଭ ହେବ । ମୁଁ କହିଲି ଦେଖନ୍ତୁ ସାର୍- ହଠାତ୍ ମୁଁ କିଛି କହି ପାରୁନାହିଁ । ତଥାପି ଚେଷ୍ଟା କରିବି । ଶ୍ୟାମବାବୁ କହିଲେ ସିହ୍ନା ସାହେବ ଧଲଜୀଙ୍କୁ ଆପଣଙ୍କ ନିଉଜ୍ ଏଡିଟର ଆଉ ଅନ୍ୟାନ୍ୟ ସାମ୍ବାଦିକ ବନ୍ଧୁଙ୍କ ସହ ଦେଖା କରାଇ ଦିଅନ୍ତୁ । ମୁଁ ବାହାରକୁ ଆସିଲି । ଏଡିଟୋରିଆଲ୍ ସେକ୍ସନରେ ଜଣେ ତରୁଣ ମୋତେ ନମସ୍କାର କଲେ । ମୁଁ ତାଙ୍କୁ ପ୍ରଶ୍ନିଳ ଦୃଷ୍ଟିରେ ଚାହିଁଲି । ସେ କହିଲେ ମୋ ନାଁ ପ୍ରକାଶ ପାତ୍ର, ମୋ ଘର କେନ୍ଦ୍ରପଡ଼ାରେ । ମୁଁ ଏ କାଗଜରେ ପାଞ୍ଚ/ଛ'ମାସ ହେବ ଜଏନ୍ କରିଛି । ମତେ ସିଏ ପୁଣି କହିଲେ ଆପଣଙ୍କ ନାଁ ଭୁବନେଶ୍ୱରରେ ଶୁଣିଥିଲି । ମାତ୍ର ପରିଚୟ ହୋଇନଥିଲା । ସେ ମୋତେ ତାଙ୍କ ନିଉଜ ଏଡିଟରଙ୍କ ପାଖକୁ ନେଇଗଲେ । ମୋ ସାଙ୍ଗରେ କଥାହୋଇ ନିଉଜ୍ ଏଡିଟର କହିଲେ ଆପଣ ପ୍ରଥମେ ଉଇକ୍ଲି ନିଉଜ୍ ଲେଟର ପଠାନ୍ତୁ । ପରେ ଟେଲିଗ୍ରାଫ୍ ଅଥରିଟି ପାଇବା ପରେ ଖବର ପଠାଇବେ । ପ୍ରକାଶ ମୋତେ ଚଳକୁ ଡାକି ଆଣିଲେ । ତଳେ ଦିହେଁ ଚା' ପିଇଲୁ । ଫେରିବା ପୂର୍ବରୁ ସିହ୍ନା ସାହେବଙ୍କୁ ଦେଖା କଲି । ସେ ମୋତେ ମୋ ନିଯୁକ୍ତ ଆଦେଶ ଧରାଇ ଦେଲେ । ଏତେଶୀଘ୍ର ମୁଁ ନିଯୁକ୍ତି ଆଦେଶ ପାଇଯିବି ମୋର ଧାରଣା ନଥିଲା । ତେବେ ସମ୍ଭବତଃ ଶ୍ୟାମବାବୁଙ୍କ ଯୋଗୁ ତାହା ସମ୍ଭବ ହୋଇପାରିଲା । ଅବଶ୍ୟ ନିଯୁକ୍ତି ଆଦେଶ ବର୍ଷକ ପାଇଁ ଥିଲା ଏବଂ ତାହା ପ୍ରୋବେସନାରୀ ଥିଲା । ସେଥିରେ ମାସକୁ ଚାରିଶହ ଟଙ୍କା ପାଇବି ବୋଲି ଉଲ୍ଲେଖ ରହିଥିଲା । ମନଟା ଖୁସି ହୋଇଗଲା ।

ସେଦିନ ସନ୍ଧ୍ୟାରେ ଫୋନ୍ କଲି ଶ୍ୟାମବାବୁଙ୍କୁ । ସେ ଫୋନ୍ ଧରିଲେ । ସାଙ୍ଗେସାଙ୍ଗେ କହିଲେ ସନ୍ଧ୍ୟାରେ କିଛି କାମ ଅଛି କି ? ଯଦି ଫ୍ରି ଅଛନ୍ତି ତେବେ ଚାଲିଆସନ୍ତୁ । କିଛି ବନ୍ଧୁ ଆସିବେ । ବସିବା-ଗପସପ କରିବା । ଦିଲ୍ଲୀର ବାଘୁଆଶୀତ । ମୁଁ ଟ୍ୟାକ୍ସି ଧରି ସନ୍ଧ୍ୟା ସାତଟାରେ ଶ୍ୟାମବାବୁଙ୍କ ଘରକୁ ଗଲି । ସନ୍ଧ୍ୟାରେ ତାଙ୍କର କିଛି ବନ୍ଧୁ ଆସିଥିଲେ । କକ୍‌ଟେଲ୍ ପାର୍ଟିହେଲା । ସ୍କଚ୍ ହୁଇସ୍କି ସାଙ୍ଗକୁ ଚିକେନ୍‌ର ସ୍ନାକ୍ସ । ଖିଆପିଆ ଚାଲିଲା । ରାତି ପ୍ରାୟ ସାଢ଼େ ଦଶଟାରେ ଶ୍ୟାମବାବୁଙ୍କ ଜଣେ ବନ୍ଧୁ ତାଙ୍କ କାର୍‌ରେ ମୋତେ ଗେଷ୍ଟହାଉସ୍‌ରେ ଛାଡ଼ିଦେଲେ । ମୋତେ ମୋ ରୁମ୍‌ବୟ ଅପେକ୍ଷା କରିଥିଲା । ମୁଁ ଚାବି ଖୋଲିବା ପରେ ରୁମ୍ ହିଟର ଲଗାଇ ଦେଲା ଏବଂ ରେଜେଇ କମ୍ବଳ ଝାଡ଼ିଝୁଡ଼ି ବେଡ୍ ସଫା କରିଦେଲା । ଖାଇବା କଥା ପଚାରିଲା । ମୁଁ ମନାକଲି । କବାଟ୍ ବନ୍ଦ କରି ମୁଁ ଶୋଇଗଲି । ଆରାମ୍ ନିଦ ହୋଇଗଲା ।

ପରଦିନ ସକାଳୁ ସୁଟ୍ ପିନ୍ଧି ଶ୍ୟାମବାବୁଙ୍କ ପାଖକୁ ଗଲି । ଶ୍ୟାମବାବୁଙ୍କୁ ଘେରି ଅନେକ ଲୋକ । 'ଅନଲୁକର' ପତ୍ରିକାର ଗୋଟିଏ ଝିଅ ଏବଂ ଜଣେ ଫଟୋଗ୍ରାଫର ତାଙ୍କ ଇଣ୍ଟରଭ୍ୟୁ ନେଉଥା'ନ୍ତି । ଇଣ୍ଟରଭ୍ୟୁ ସାଙ୍ଗେ ସାଙ୍ଗେ ସେ ଅନ୍ୟମାନଙ୍କ ସହ କଥାବାର୍ତ୍ତା ମଧ କରୁଥା'ନ୍ତି । ଶ୍ୟାମବାବୁ ରହୁଥାନ୍ତି ଏକ ନମ୍ବର ସଫଦରଜଙ୍ଗ ଲେନ୍‌ରେ । ବଡ଼ ଘର

ସାଙ୍ଗକୁ ବିରାଟ ଲନ୍ । ଶୀତଦିନିଆ ଖରାରେ ଲନ୍‌ର ଘାସଗୁଡ଼ାକ ଚିକ୍‌ଚିକ୍ କରୁଛି । ଦିନ ସେତେବେଳକୁ ଏଗାରଟା ପାଖାପାଖି । କିଛି କିଛି ଘାସ ଉପରେ କାକର ବିନ୍ଦୁଲାଗି ମୁକ୍ତା ଭଳି ପ୍ରତ୍ୟୟମାନ ହେଉଛି । ଶ୍ୟାମବାବୁ ମୋତେ ଦେଖି ପାଖକୁ ଡାକିଲେ । ଅନ୍‌ଲୁକର ପତ୍ରିକା ସାମ୍ବାଦିକଙ୍କ ସହ ପରିଚୟ କରାଇ ଦେଲେ ମିଟ୍- ମାଇଁ ଫ୍ରେଣ୍ଡ ଫ୍ରମ୍ ଓଡ଼ିଶା ମିଃ ବରେନ୍ଦ୍ର ଧଳ । ଓଡ଼ିଶା କରେସ୍‌ପଣ୍ଡେଣ୍ଟ ନ୍ୟାସ୍‌ନାଲ୍ ହେରାଲ୍ଡ । ସେମାନେ ମୋତେ ନମସ୍କାର କଲେ । ଶ୍ୟାମବାବୁ ଚା' ମଗାଇଲେ । ଇଣ୍ଟରଭ୍ୟୁ ବେଳେ ମୁଁ ଶ୍ୟାମବାବୁଙ୍କ ନେତୃତ୍ୱ ସମ୍ପର୍କରେ କିଛି କହିଲି । ଇଣ୍ଟରଭ୍ୟୁ ଶେଷ ହେବା ପରେ ମୁଁ ଶ୍ୟାମବାବୁଙ୍କୁ ମାତୃଭୂମି କଥା କହିଲି । ତଥ୍ୟ ବେତାର ମନ୍ତ୍ରୀ ବିଦ୍ୟାଚରଣ ଶୁକ୍ଲାଙ୍କୁ ଭେଟିବା ପାଇଁ ଆମେ ଗଲୁ । ମୁଁ କଟକରୁ ମନ୍ତ୍ରୀଙ୍କ ନାମରେ ଏକ ଦରଖାସ୍ତ ନେଇଥିଲି । ସେଥିରେ ପୁରା ବିଷୟ ବର୍ଣ୍ଣନା ହୋଇଥିଲା । ଏକା ସର୍କୁଲେସନ୍ ଥାଇ କିପରି ଅନ୍ୟ ଓଡ଼ିଆ କାଗଜର ଅଧିକ ବିଜ୍ଞାପନ ଦର ଧାର୍ଯ୍ୟ ହୋଇଛି ତା' ଦର୍ଶାଯାଇଥିଲା । ମନ୍ତ୍ରୀ ଦରଖାସ୍ତ ପଢ଼ି ଡି.ଏ.ଭି.ପି. ମହାନିର୍ଦ୍ଦେଶକଙ୍କୁ ଅର୍ଡ଼ର କଲେ ତଦନ୍ତ କରି ଚୂଡ଼ାନ୍ତ ଦର ଧାର୍ଯ୍ୟ କରିବା ପାଇଁ । ମୁଁ ସେହିଦିନ ମହାନିର୍ଦ୍ଦେଶକଙ୍କୁ ଦେଖା କଲି । ଚାରି/ପାଞ୍ଚଦିନ ପରେ ଆମର ଯେଉଁ ବିଜ୍ଞାପନ ଦର ଥିଲା ସେଥିରେ କଲମ ସେଣ୍ଟିମିଟର ପିଛା ତିନିଟଙ୍କା ବୃଦ୍ଧି ହେଲା । ମୋର ସେତେବେଳକୁ ଦିଲ୍ଲୀରେ ରହିବା ସାତଦିନ ହୋଇଗଲାଣି । ଟଙ୍କା ସରି ଆସିଲାଣି । ବିଚିବାବୁଙ୍କୁ ଟେଲିଫୋନ୍ କଲି । ସବୁ କହିଲି । ମୋ ପାଖରେ ଟଙ୍କା ନାହିଁ ବୋଲି କହିଲି । ତୁରନ୍ତ ପାଞ୍ଚଶହ ଟଙ୍କା ଟେଲିଗ୍ରାମ୍ ମନିଅର୍ଡ଼ର କରି ଓଡ଼ିଶା ଭବନ ମ୍ୟାନେଜରଙ୍କ ଠିକଣାରେ ପଠାଇବା ପାଇଁ କହିଲି । ସେ କ'ଣ ଭାବିଲେ । ତା'ପରେ କହିଲେ ଆଚ୍ଛା ମୁଁ ଆଜି ବ୍ୟବସ୍ଥା କରୁଛି । ଦି'ଦିନ ପରେ ଟଙ୍କା ଆସିଲା । ମୁଁ ଅବଶ୍ୟ ସେତେବେଳକୁ ଟିକେଟ୍ କରିସାରିଥିଲି । ଡି.ଏ.ଭି.ପି. ଅର୍ଡ଼ର ଆଣି ପାଖରେ ରଖିଥିଲି । ଦିଲ୍ଲୀରୁ ମୋ ପାଇଁ ଏବଂ ମୋ ପତ୍ନୀଙ୍କ ପାଇଁ ଦୁଇଟି ଭଲ ସୁଇଟର ଓ ପୁଲଓଭର ଏବଂ ଗୋଟିଏ କାଶ୍ମୀର ସାଲ୍ ଆଣିଥିଲି ।

ଟ୍ରେନ୍‌ରେ ବସିବା ପରେ କେତେବେଳେ ଭୁବନେଶ୍ୱର ଆସିବ ସେଥିପାଇଁ ବ୍ୟଗ୍ର ହୋଇପଡ଼ିଲି । ପୁରୀ-ଦିଲ୍ଲୀ ବଗିରେ ଭୁବନେଶ୍ୱର-କଟକର ବହୁ ବନ୍ଧୁ ଦେଖା ହେଲେ । ଗପ କରି କରି ଘରମୁହାଁ ହେଲୁ । ମୋ ବାକ୍ସରେ ଦିଲ୍ଲୀ ଚାନ୍ଦିନୀଚୌକରୁ ପ୍ରସିଦ୍ଧ ଦିଲ୍ଲୀ ହାଲୁଆ ଦି' କେ.ଜି. ଆଣିଥିଲି । ଦିଲ୍ଲୀ କା ଲଡ୍ଡୁ, ଯୋ ଖାୟା ଓ ପସ୍ତାୟା- ଯୋ ନେହି ଖାୟା ଓ ଭି ପସ୍ତାୟା । ତେବେ ଦିଲ୍ଲୀ ହାଲୁଆ ବେଶ୍ ସୁସ୍ୱାଦୁ ।

ଜାନୁଆରୀ ୪ ତାରିଖ ୧୯୬୪ ମସିହାର । ମୁଁ ସେତେବେଳେ ମାତୃଭୂମିର କଟକ ଷ୍ଟାଫ୍ ରିପୋର୍ଟର । ମୋତେ ମଝିରେ ମଝିରେ ରିପୋର୍ଟିଂ ପାଇଁ ରାଜ୍ୟର ବିଭିନ୍ନ ସ୍ଥାନକୁ ମଧ ଯିବାକୁ ପଡୁଥିଲା । ସେଦିନ ସକାଳେ ପ୍ରେସ୍‌ରେ ପହଞ୍ଚିଲା ପରେ ବିଚିବାବୁ ମୋତେ କହିଲେ ବରେନ୍ଦ୍ର ବାବୁ ଆଜି ଆପଣଙ୍କୁ ଅନୁଗୁଳ ଓ ଟିକରପଡ଼ା ଯିବାକୁ ପଡ଼ିବ । ମୁଁ ପଚାରିଲି କାହିଁକି ? ସେ କହିଲେ କାଲି ସକାଳେ ନେହେରୁ ତାଳଚେର ଠାରେ ଓଡ଼ିଶାର ପ୍ରଥମ ଥର୍ମାଲ ପାୱାର ଷ୍ଟେସନ୍‌ର ଶୁଭଦାନ କରିବେ । ତା'ପରେ ସେଠାରୁ ଟିକରପଡ଼ା ଯାଇ ସେଠାରେ ଟିକରପଡ଼ା ଡ୍ୟାମ ପ୍ରୋଜେକ୍ଟରେ ଶୁଭ ଦେବେ । ବାଳକୃଷ୍ଣ ବାବୁ ମଧ ଯିବେ । ଆପଣ ଦୁହେଁ କଥାବାର୍ତ୍ତା ହୋଇ ଯିଏ ଯେଉଁଠାକୁ ଯିବ ସ୍ଥିର କରିବେ । ଆଜି ଚାରିଟାବେଳକୁ ଏଠିକି ଗାଡ଼ି ଆସିବ ଆପଣଙ୍କୁ ନେବାପାଇଁ । ଆଜି ଆପଣ ସିଧା ଅନୁଗୁଳ ସର୍କିଟ ହାଉସ୍‌କୁ ଯିବେ । ସେଠାରେ ପହଞ୍ଚି ଯାହା ସ୍ଥିର କରିବେ ।

୧୯୬୪ରେ ଭୁବନେଶ୍ୱରରେ ପ୍ରଥମଥର ପାଇଁ ନିଖିଳ ଭାରତ କଂଗ୍ରେସ କମିଟି ଅଧିବେଶନ ଅନୁଷ୍ଠିତ ହେଉଥିଲା । ଜାନୁଆରୀ ୭ ତାରିଖରୁ ଏହି ଅଧିବେଶନ ଆରମ୍ଭ ହୋଇଥିଲା । ପଣ୍ଡିତ ନେହେରୁ ସେତେବେଳେ

ଭାରତର ପ୍ରଧାନମନ୍ତ୍ରୀ ଏବଂ ଇନ୍ଦିରା ଗାନ୍ଧୀ କଂଗ୍ରେସ ସଭାପତି ଥା'ନ୍ତି । ଭୁବନେଶ୍ୱରର ଆଠନମ୍ବର ୟୁନିଟ୍‌ରେ ବିସ୍ତୃତ ଅଞ୍ଚଳରେ ଏହି ଅଧିବେଶନ ଅନୁଷ୍ଠିତ ହୋଇଥିଲା । ଏହି ଅଧିବେଶନ ସ୍ଥାନର ନାମ ରଖାଯାଇଥିଲା ଗୋପବନ୍ଧୁ ନଗର । ୟୁନିଟ୍-୮ ଛକରେ ଯେଉଁ ଗୋପବନ୍ଧୁ ମୂର୍ତ୍ତିରହିଛି ସେତେବେଳେ ସେଇ କଂଗ୍ରେସ ଅଧିବେଶନ ପାଇଁ ନିର୍ମିତ ହୋଇଥିଲା । ଭୁବନେଶ୍ୱର କଂଗ୍ରେସ ଅଧିବେଶନରେ କେ. କାମରାଜ ନୂଆ ସଭାପତି ନିର୍ବାଚିତ ହେଲେ ।

ଅପରାହ୍ଣ ଚାରିଟା ବେଳକୁ ଗାଡ଼ି ଆସିଲା । ତଳକୁ ଆସି ଦେଖିଲି ପୂରା ନୂଆ ଜିପ୍ । ନେପାଳୀ ଡ୍ରାଇଭର । ମୋର ସମବୟସୀ ମାନେ ୨୪/୨୫ବର୍ଷ ବୟସର । ଗାଡ଼ି ଧରି ରାଜା ବଗିଚା ଲେବର କଲୋନିକୁ ଆସିଲି । ଗୋଟେ ମୋଟା ଚାଦର, ସୁଇଟର, ପ୍ୟାଣ୍ଟ, ସାର୍ଟ ଗୋଟେ ଲୁଙ୍ଗି ଆଉ ତଉଲିଆ ଆଟାଚିରେ ରଖି ଅନୁଗୁଳ ଯାତ୍ରା କଲି । ଜାନୁଆରୀ ମାସ କନ୍‌କନ୍ ଶୀତ । ଜିପ୍‌ର ସାଇଡ୍ ପାଲ ବନ୍ଦ କରିଦେଲି । ନେପାଳୀ ଡ୍ରାଇଭର ଟୋକା ଭାରି ମେଳାପି । କହିଲା ସାହେବଜୀ- ଆମେ ଅନୁଗୁଳ ଯିବା । ମୁଁ କହିଲି ହଁ । ମୋତେ ବାଟ ଜଣାନାହିଁ । ବତାଇ ଦେବେ । ମୁଁ ତାକୁ ସାବଧାନରେ ଗାଡ଼ି ଚଳାଇବାକୁ କହିଲି । ସେ କହିଲା ସେଥିପାଇଁ ବେଫିକର ରହନ୍ତୁ । ଏଇ ଗାଡ଼ି ଧରି ମୁଁ ବମ୍ବେରୁ ଆସିଛି । କଟକ ଓ.ଏମ୍.ପି. ଛକରେ ଚାହା ପିଇଲୁ । ତା'ପରେ ସିଧା ଢେଙ୍କାନାଳ । ଭୋକ ହେଉଥିଲା, ଛକ ଉପରେ ଢେଙ୍କାନାଳ ପ୍ରସିଦ୍ଧ ବରା ଛଣା ହେଉଥିଲା । ସେଠି ବରା ଖାଇ ଚାହା ପିଇଲୁ । ନେପାଳୀ ଡ୍ରାଇଭର କହିଲା, ସାହେବଜୀ ବଢ଼ିଆ ବରା, ମୁଁ ଏମିତି ବରା ଖାଇ ନଥିଲି । ଢେଙ୍କାନାଳରୁ ସିଧା ଅନୁଗୁଳ ସର୍କିଟ୍ ହାଉସ୍ । ମୁଁ ପହଞ୍ଚିବାବେଳକୁ ରାତି ୮ଟା ବାଜିଗଲାଣି । ସେତେବେଳକୁ ୭/୮ଜଣ ସାମ୍ବାଦିକ ଆସିଗଲେଣି । ୧୯୬୪ ମସିହାରେ କଟକ ଭୁବନେଶ୍ୱରରେ ହାତଗଣତି ସାମ୍ବାଦିକ ଥିଲେ । ଚାରୋଟି ଓଡ଼ିଆ ଖବରକାଗଜ ଥିଲା । ସମାଜ, ପ୍ରଜାତନ୍ତ୍ର, ମାତୃଭୂମି ଓ କଳିଙ୍ଗ । ଇଂରେଜୀ ଖବର କାଗଜ ମଧ୍ୟରୁ ଷ୍ଟେଟ୍‌ସମ୍ୟାନ୍ ଓ ହିନ୍ଦୁର ଜଣେ ପ୍ରତିନିଧି ଥିଲେ ଏନ୍.ଆର୍.ସ୍ୱାମୀ, ଟାଇମ୍ସ ଅଫ୍ ଇଣ୍ଡିଆର ଥିଲେ ଏନ୍.କେ. ସ୍ୱାମୀ, ଇଣ୍ଡିଆନ୍ ଏକ୍ସପ୍ରେସ୍‌ର କୃପାକରଣ ଏବଂ ପି.ଟି.ଆଇ. ନିଉଜ୍ ଏଜେନ୍ସି । ୟୁ.ଏନ୍.ଆଇ. ସେତେବେଳକୁ ଓଡ଼ିଶା ଆସିନାହିଁ । କଂଗ୍ରେସ ଅଧିବେଶନ ପାଇଁ କଲିକତା ଆଉ ଦିଲ୍ଲୀରୁ ୭/୮ଜଣ ସାମ୍ବାଦିକ ଆସିଥିଲେ ।

## -ତିନି ପ୍ରଧାନମନ୍ତ୍ରୀ ଓ ମୁଁ-

ସେତେବେଳେ ସାମ୍ବାଦିକମାନଙ୍କୁ ଚର୍ଚ୍ଚା କରିବା ଦାୟିତ୍ୱରେ ଥିଲେ ରାଜ୍ୟ ଲୋକସମ୍ପର୍କ ବିଭାଗ ନିର୍ଦ୍ଦେଶକ ଶଶିଭୂଷଣ ମିଶ୍ର । ମୁଁ ଅନୁଗୁଳ ସର୍କିଟ ହାଉସ୍‌ରେ ପହଞ୍ଚିବା ବେଳକୁ ମଦ୍ୟପାନ ଆରମ୍ଭ ହୋଇଗଲାଣି । ମୋର ମନେ ଅଛି ପୂରା ପେଟି ସ୍କଚ୍ ହୁଇସ୍କି ଆସିଥିଲା । ସେତେବେଳେ ବ୍ଲାକ୍‌ଡଗ୍ ଓ ଭାଟ-୬୯ ସ୍କଚ୍ ହୁଇସ୍କି ଖୁବ୍ ପପୁଲାର ଥିଲା । ମୁଁ ସେତେବେଳେ ମଦ୍ୟପାନ ଆରମ୍ଭ କରିନି । ତେଣୁ ମୋତେ ଯେତେବେଳେ ସ୍କଚ୍ ଅଫର ହେଲା ମୁଁ ମନାକଲି । କେବଳ ଗରମ ଚା' ଆଣିବାକୁ କହିଲି । ବାଳକୃଷ୍ଣ କାନୁନ୍‌ଗୋ ମୁଁ ପହଞ୍ଚିବା ପରେ ପରେ ପହଞ୍ଚିଲେ । ଅନ୍ୟମାନେ ସବୁ ପହଞ୍ଚିଗଲେ । ମୁଁ ବାଳକୃଷ୍ଣବାବୁଙ୍କୁ ପଚାରିଲି ଆପଣ ଏଠି ରହିବେ ନା ଟିକରପଡ଼ା ଯିବେ ? ସେ କହିଲେ ଟିକରପଡ଼ା କାହିଁକି ଯିବି । ମୁଁ କହିଲି ନେହେରୁ ଟିକରପଡ଼ା ଡ୍ୟାମ୍ ପ୍ରୋଜେକ୍ଟର ଫାଉଣ୍ଡେସନ୍ ଷ୍ଟୋନ୍ ଲେ କରିବେ । ସେ କହିଲେ ନେହେରୁ ଟିକରପଡ଼ା ଯିବେ ନାହିଁ । ଏଇଠୁ ଭୁବନେଶ୍ୱର ଫେରିଯିବେ । ମୁଁ କହିଲି କିନ୍ତୁ ପ୍ରୋଗ୍ରାମ ତ ଅଛି । ସେ ଏବଂ ସେଠି ଉପସ୍ଥିତ ପ୍ରଜାତନ୍ତ୍ରର ରାମ ପ୍ରସାଦ ମହାନ୍ତି ଏବଂ ଏନ୍.ଆର୍. ସ୍ୱାମୀ କହିଲେ ଟିକରପଡ଼ାରେ ବଉଦ-ସୋନପୁର ଲୋକେ ବହୁ ସଂଖ୍ୟାରେ ବିକ୍ଷୋଭ କରିବା ପାଇଁ ଆସିବେ । କାରଣ ଟିକରପଡ଼ା ବନ୍ଧ ହେଲେ ବଉଦ ଆଉ

ସୋନପୁର ସହର ବୁଡ଼ିଯିବ । ବନ୍ଧ ବିରୁଦ୍ଧରେ ହିମାଂଶୁ ପାଢ଼ୀଙ୍କ ନେତୃତ୍ୱରେ ହଜାର ହଜାର ଲୋକ ଆସି ବିକ୍ଷୋଭ କରିବେ । ନେହେରୁଙ୍କୁ ସେଠାକୁ ନେବାକୁ ସରକାର ଚାହୁଁ ନାହାନ୍ତି । କାରଣ କିଏ ରିସ୍କ ନେବେ ? ତେଣୁ ଟିକରପଡ଼ା ଯାଇ ଲାଭ ନାହିଁ । ତମେ ମଧ୍ୟ ଟିକରପଡ଼ା ନଯାଇ ଏଇଠି ରହ । ମୁଁ କିଛି କହିଲି ନାହିଁ । ପ୍ରେସ୍ ପାର୍ଟିରେ କଟକ ଡି.ପି.ଆର୍.ଓ.(ଜିଲ୍ଲା ଲୋକ ସଂପର୍କ ଅଫିସର) ବିପିନ୍ ବିହାରୀ ପଟ୍ଟନାୟକ ଯାଇଥିଲେ । ମୁଁ ଏମାନଙ୍କ କଥା ଶୁଣି ତାଙ୍କୁ ପଚାରିଲି । ସେ ମୋତେ ରୁମ୍ ବାହାରକୁ ଟାଣି ନେଇ କହିଲେ ବରେନ୍ଦ୍ର ବାବୁ ଏମାନଙ୍କ କଥା ଶୁଣ ନାହିଁ । ଏମାନେ ସ୍କଚ୍ ଦେଖି ପାଗଳା ହେଲେଣି । ଏଇନେ ରାତି ସାରା ଏମାନେ ପିଇବେ । କିନ୍ତୁ ଯେତେବେଳେ ପ୍ରୋଗ୍ରାମ ହୋଇଛି ପ୍ରଧାନମନ୍ତ୍ରୀ ନିଶ୍ଚୟ ଯିବେ । ଆଉ ଯଦି ନଯିବେ ତେବେ ତା' ମଧ୍ୟ ଖବର ହେବ । ବରଂ ପ୍ରଧାନମନ୍ତ୍ରୀ ଯିବା ଅପେକ୍ଷା ତାହା ଆହୁରି ବଡ଼ ଖବର ହେବ । ଆପଣ ଏମାନଙ୍କୁ କିଛି ନକହି ସକାଳୁ ସକାଳୁ ଟିକରପଡ଼ା ପଳାନ୍ତୁ । ମୁଁ ଆମ ଡ୍ରାଇଭରକୁ ସାଙ୍ଗେ ସାଙ୍ଗେ ସେଇଆ କହିଲି । ସେ କହିଲା ବାବୁ- ମୁଁ ସକାଳ ସାଢ଼େ ୬ଟା ସୁଦ୍ଧା ରେଡି ହୋଇ ବସିଥିବି ।

ମୁଁ ସାଢ଼େ ଦଶଟା ଏଗାରଟା ସୁଦ୍ଧା ଡିନର ଖାଇ ଶୋଇଗଲି । ଅନ୍ୟ ସାମ୍ବାଦିକବନ୍ଧୁମାନେ ସ୍କଚ୍ ପାନ କରି ମସ୍‌ଗୁଲରେ ଥା'ନ୍ତି । ସକାଳ ସାଢ଼େ ପାଞ୍ଚଟା ସୁଦ୍ଧା ଉଠି ମୁଁ ନିତ୍ୟକର୍ମକୁ ସାରିଲି । ସେତେବେଳକୁ ଅନ୍ୟ ବନ୍ଧୁମାନେ ପୁରା ନିଘୋଡ଼ ନିଦରେ । ଶୁଣିଲି ରାତି ୩ଟା ପର୍ଯ୍ୟନ୍ତ ସ୍କଚ୍ ପାର୍ଟିଚାଲିଥିଲା । ସାଢ଼େ ୬ଟା ସୁଦ୍ଧା ମୁଁ ବାହାରି ପଡ଼ିଲି ଟିକରପଡ଼ା । ମଝିରେ ମଝିରେ ବାଟ ବାଟ ପଚାରି ଆମେ ଚାଲିଥାଉ । ପ୍ରଧାନମନ୍ତ୍ରୀଙ୍କ ସଭାପାଇଁ ରାସ୍ତାରେ ଚିହ୍ନ ବି ଦିଆଯାଇଥିଲା । ସକାଳ ଆଠଟା ବେଳକୁ ମୁଁ ପହଞ୍ଚିଗଲି । ଟିକରପଡ଼ା ମହାନଦୀ ଗଣ୍ଡ ଉପରେ ଯେଉଁ ପାହାଡ଼ ଅଛି ତା' ଉପରେ ସଭା ଆଉ ଶୁଭଦାନ ମାର୍ବଲ ପଥର ଲାଗିଛି । ତଳେ ଜିପ୍ ରଖି ମୁଁ ଉପରକୁ ଉଠିଲି । ପୋଲିସ୍ ଭର୍ତ୍ତିହୋଇଛନ୍ତି । ଦୁଇ/ତିନି ଜାଗାରେ ମୋର ଆଇଡେଣ୍ଟିଟ୍‌କାର୍ଡ଼ ଚେକ୍ କରାଗଲା । ଆମକୁ ପ୍ରଧାନମନ୍ତ୍ରୀଙ୍କ ସଭାପାଇଁ ସ୍ୱତନ୍ତ୍ର ସିକ୍ୟୁରିଟି ପାଶ୍ ମିଳିଥାଏ । ତାକୁ ଦେଖି ପୋଲିସ୍ ଅଫିସରମାନେ ହସି କରମର୍ଦ୍ଦନ କରି ଉପରକୁ ଛାଡୁଥା'ନ୍ତି । ଉପରକୁ ମୁଁ ଉଠିଲି । ସଭାମଞ୍ଚ ଯେଉଁଠି ନିର୍ମାଣ ହୋଇଥାଏ ତା'ର ଦୁଇଶହ ଗଜ ଉପରେ ପାହାଡ଼ର ଚୂଡ଼ା ଦେଶକୁ କାଟି ହେଲିପ୍ୟାଡ଼ ତିଆରି ହୋଇଥାଏ । ମୁଁ ସେ ହେଲିପ୍ୟାଡ଼ରେ ପହଞ୍ଚିଲି । ସେଠି ଠିଆହୋଇ ତଳକୁ ଚାହିଁଲି । ଚାରିଆଡ଼େ ସବୁଜ ବନାନୀ । ତଳେ ମହାନଦୀ ଭୀମ ଗର୍ଜନ କରି ବହି ଯାଉଥାଏ । ଟିକେ ଦୂରରେ ଘଞ୍ଚ ଜଙ୍ଗଲ ମହାନଦୀର ଗୋଟିଏ ପଟେ ଦଶପଲ୍ଲା ଗଣିଆ ଅଞ୍ଚଳ । ଅନ୍ୟପଟେ ଟିକରପଡ଼ା । ହେଲିପ୍ୟାଡ଼ର ପାହାଡ଼ କାଟି ପାହାଚ ପାହାଚ କରାଯାଇଛି । ଏବଂ ଗାଡ଼ି ଯିବାପାଇଁ ରାସ୍ତା ହୋଇଛି । ସେ ରାସ୍ତା ପାହାଚ ଶ୍ରେଣୀ ସଭାମଞ୍ଚ ପାଖରେ ଶେଷ ହୋଇଛି । ସଭାମଞ୍ଚ ଏବଂ ସମ୍ମୁଖ ଭାଗରେ ଦର୍ଶକଙ୍କ ପାଇଁ କିଛି ଅଞ୍ଚଳ ସମତଳ କରାଯାଇଛି । ଶହେ ପାଖାପାଖି ଚଉକି ପଡ଼ିଛି । ସଭାମଞ୍ଚ ପାଖରୁ ପାହାଡ଼ ତଳ ଆଡ଼କୁ ସେହିଭଳି ପାହାଚ ପାହାଚ ଭଳି ଚଉଡ଼ା କରି କଟା ଯାଇଛି । ସେଠି ସ୍ତ୍ରୀ-ପୁରୁଷ ବିଭିନ୍ନ ରଙ୍ଗର ଶାଢ଼ୀ ଆଉ ଧୋତି ସାର୍ଟ ପିନ୍ଧି ବସିଛନ୍ତି । ତଳେ ମହାନଦୀର ଟିକରପଡ଼ା ଗଣ୍ଡ । ମୁଁ ଟିକେ ତଳକୁ ଓହ୍ଲାଇଲି । ଦେଖିଲି ଗଣ୍ଡରେ ଦୁଇ/ତିନୋଟି କୁମ୍ଭୀର ଖେଳୁଛନ୍ତି । ସେଠି ମହାନଦୀର ଚଉଡ଼ା ଖୁବ୍ କମ୍ । କିନ୍ତୁ ଗଭୀରତା ଅଧିକ । ସମ୍ଭବତଃ ସେଇଥିପାଇଁ ସେଠି ଡ୍ୟାମ କରିବା ପାଇଁ ପ୍ରସ୍ତାବ ଦିଆ ଯାଇଥିଲା । ଟିକରପଡ଼ାରେ ଡ୍ୟାମ ବା ବନ୍ଧ ବାନ୍ଧି ହୀରାକୁଦ ଭଳି ଜଳସେଚନ ଓ ବିଦ୍ୟୁତ୍‌ଶକ୍ତି ଉତ୍ପାଦନ ପାଇଁ ଓଡ଼ିଶାର ରାଜ୍ୟପାଳ ବିଖ୍ୟାତ ଇଂଜିନିୟର ଡଃ. ଅଯୋଧ୍ୟା ନାଥ ଖୋସଲା ଏକ ଯୋଜନା ପ୍ରସ୍ତୁତ କରି ବିଜୁବାବୁଙ୍କୁ ଦେଇଥିଲେ । ଏହି ପ୍ରକଳ୍ପ କାର୍ଯ୍ୟକାରୀ କରାଗଲେ ମହାନଦୀରେ ବନ୍ୟା ନିୟନ୍ତ୍ରଣ କରିବା ସମ୍ଭବ ହେବ ବୋଲି

କୁହାଯାଇଥିଲା । ଆମେ ଅପେକ୍ଷା କରିଥିଲୁ ନେହେରୁଙ୍କ ଆସିବା ପଥକୁ । ତା' ସାଙ୍ଗେ ସାଙ୍ଗେ ହିମାଂଶୁ ପାଢ଼ୀଙ୍କ ନେତୃତ୍ୱରେ ବିକ୍ଷୋଭକାରୀଙ୍କୁ । ଜଣେ ପୋଲିସ୍ ଅଫିସରଙ୍କୁ ଏ ସମ୍ପର୍କରେ ପଚାରିଲୁ । ସେ କହିଲେ ସେମାନେ ଆସିବେ ନାହିଁ। କାରଣ ବାଟରେ ପୋଲିସ୍ ବନ୍ଦୋବସ୍ତ ହୋଇଛି।

ଦଶଟା ବାଜିଲା । ଶୀତ ଦିନର କଅଁଳ ଖରା ବେଶ୍ ଆରାମ୍ ଲାଗୁଥାଏ । ଚାରିଆଡ଼େ ସୂର୍ଯ୍ୟ କିରଣରେ ଝଲମଲ କରୁଥାଏ । ସାଢ଼େ ଦଶଟା ବେଳକୁ ଏକ ହେଲିକେପ୍ଟର ଆକାଶରୁ ତଳକୁ ଖସିଲା । ହେଇ ଆସିଗଲେ, ହେଇ ଆସିଗଲେ ବୋଲି ହୁରି ହେଲା । କିନ୍ତୁ ସେ ହେଲିକେପ୍ଟରଟି ଓହ୍ଲାଇଲା ନାହିଁ। ଉପରେ ଚକ୍କର କାଟି ଫେରିଗଲା । ଜଣେ ପୋଲିସ୍ ଅଫିସର କହିଲେ ଏହା ପାଇଲଟ୍ ହେଲିକେପ୍ଟର । ଆମ ମନରେ ଛନକା ପଶିଲା । ସତରେ ପ୍ରଧାନମନ୍ତ୍ରୀ ଆସିବେ ନାହିଁକି ? ଏଣେ ବିକ୍ଷୋଭର ନାଁ ଗନ୍ଧ ନାହିଁ । ତେଣେ ପ୍ରଧାନ ମନ୍ତ୍ରୀଙ୍କ ହେଲିକେପ୍ଟରର ଚିହ୍ନବର୍ଣ୍ଣ ନାହିଁ । ଆମେ ଏକଥା ସେଠି ଦାୟିତ୍ୱରେ ଥିବା ଜଣେ ପୋଲିସ୍ ଅଫିସରଙ୍କୁ ପଚାରିଲୁ । ସେ ଆମ ମୁହଁକୁ ଚାହିଁଲେ । ତା'ପରେ ପ୍ରଧାନମନ୍ତ୍ରୀଙ୍କ ପରିଦର୍ଶନ ପାଇଁ ଆମକୁ ମିଳିଥିବା ସିକ୍ୟୁରିଟି ପାଶ୍‌ଟିକୁ ଆମ ଛାତିରେ ଝୁଲୁଥିବା ଦେଖିଲେ । ଶେଷରେ କହିଲେ ପ୍ରଧାନମନ୍ତ୍ରୀ ଆସିବେ ବୋଲି ଖବର ଆସିଛି । ଯେକୌଣସି ମୁହୂର୍ତ୍ତରେ ଆସି ପାରନ୍ତି । ତାଙ୍କ ପାଟିରୁ କଥା ସରିଛି କି ସରିନି ଆକାଶରେ ହେଲିକେପ୍ଟରର ଶବ୍ଦ ଶୁଣାଗଲା । ହେଇ ଆସିଗଲେ । ତା'ପରେ ନେହେରୁଙ୍କ ଜୟ ଧ୍ୱନି । ହେଲିକେପ୍ଟର ପାହାଡ଼ ଉପର ହେଲିପ୍ୟାଡ଼ରେ ଓହ୍ଲାଇଲା ।

ଆମେ ସମସ୍ତେ ଅପେକ୍ଷା କଲୁ । ଏକା ଆଖିରେ ଆମେ ହେଲିପ୍ୟାଡ଼ ଆଡ଼କୁ ଚାହିଁଲୁ । ତା'ପରେ ଗୋଟିଏ ଜିପ୍ ତଳକୁ ଆସିଲା । ସଭାସ୍ଥଳର ଅଳ୍ପ ଦୂରରେ ତା' ରହିଲା । ତା' ଭିତରୁ ଓହ୍ଲାଇ ଆସିଲେ ପ୍ରଥମେ ବିଜୁ ପଟ୍ଟନାୟକ, ତାଙ୍କ ପଛେ ପଛେ ରାଜ୍ୟପାଳ ଡଃ ଖୋସଲା ଏବଂ ଶେଷରେ ପଣ୍ଡିତ ନେହେରୁ । ପରିଧାନ ସେଇ ଚିରାଚରିତ ଦଳା ଚୁଡ଼ିଦାର ଓ ଧୂଷର ରଙ୍ଗର ସେରୱାନୀ । ଛାତିରେ ଲାଲ୍ ଗୋଲାପ । ନେହେରୁଙ୍କୁ ଦେଖି ଆମେ ପ୍ରଥମେ ନିଜ ଆଖିକୁ ବିଶ୍ୱାସ କରିପାରିଲୁ ନାହିଁ। ରୁଗ୍ଣ, ନଇଁ ପଡ଼ିଥିବା କାନ୍ଧ, ବିମର୍ଷ ଚେହେରା ଆଉ ଦୁର୍ବଳ । ତାଙ୍କ ଦୁଇପଟେ ଦୁଇ ହାତକୁ ଧରି ବିଜୁବାବୁ ଓ ଡଃ ଖୋସଲା ଧୀରେ ଧୀରେ ସଭାମଞ୍ଚରେ ଚଢ଼ାଇ ଦେଲେ । ସଭା ଆରମ୍ଭ ହେଲା । ହଠାତ୍ ଦେଖିଲୁ ପଛେ ପଛେ ମୁଖ୍ୟମନ୍ତ୍ରୀ ବୀରେନ୍ ମିତ୍ର ଏବଂ ନୀଳମଣି ରାଉତରାୟ ଆସି ପହଞ୍ଚିଲେ । କେଉଁଠି ଅଟକି ଥିଲେ ସମ୍ଭବତଃ । ପ୍ରଥମେ ବିଜୁ ବାବୁ ଟିକରପଡ଼ା ବନ୍ଧ ଯୋଜନା କଥା କହି ନେହେରୁଙ୍କୁ ଶୁଭଦାନ ପାଇଁ ଅନୁରୋଧ କଲେ । ସେଇ ମଞ୍ଚ ନିକଟରେ ଏକ ମାର୍ବଲ ଫଳକ ଗୋଟିଏ ଖୁମ୍ବ ଉପରେ ଥିଲା । ପ୍ରଧାନମନ୍ତ୍ରୀ ସେଇଠିକୁ ଯାଇ ତା' ଉପରେ ଥିବା କନାଟିକୁ ମନ୍ତ୍ରଧ୍ୱନୀ ମଧ୍ୟରେ ଖୋଲିଥିଲେ । ତା'ପରେ ଡଃ ଖୋସଲା ଟିକରପଡ଼ା ବନ୍ଧ ଯୋଜନା କିପରି ବନ୍ୟା ନିୟନ୍ତ୍ରଣ ପାଇଁ ଓ ଜଳସେଚନ ପାଇଁ ସହାୟକ ହେବ ସେ କଥା କହିଥିଲେ । ପ୍ରଧାନମନ୍ତ୍ରୀ ନେହେରୁ ନିଜ ଆସନରେ ବସି ତାଙ୍କ ଭାଷଣ ଦେଲେ । ସେ କହିଲେ ଟିକରପଡ଼ା ବନ୍ଧ ପ୍ରକଳ୍ପ ଓଡ଼ିଶାର ପ୍ରଗତିରେ ସହାୟକ ହେବ । ଆପଣମାନେ ଏହାକୁ ସମର୍ଥନ କରନ୍ତୁ । କେନ୍ଦ୍ର ସରକାର ଓଡ଼ିଶା ଭଳି ପଛୁଆ ରାଜ୍ୟର ଉନ୍ନତି ପାଇଁ ସମସ୍ତ ସାହାଯ୍ୟ କରିବ ବୋଲି କହିବାରେ ପ୍ରଚଣ୍ଡ କରତାଳୀ ଧ୍ୱନି ହୋଇଥିଲା । ନେହେରୁଙ୍କ ସ୍ତିମିତ କଣ୍ଠସ୍ୱର ଶୁଣି ନପାରି ମୁଁ ମଞ୍ଚର ଗୋଟିଏ କଣକୁ ଉଠିଯାଇ ତାଙ୍କ ଭାଷଣ ଟିପୁଥିଲି । ମୋର ଯାହା ମନେଅଛି ମାତ୍ର ଚାରି/ପାଞ୍ଚ ମିନିଟ୍‌ରେ ନେହେରୁ ତାଙ୍କ ଭାଷଣ ଶେଷ କଲେ । ଶେଷରେ ମୁଖ୍ୟମନ୍ତ୍ରୀ ବୀରେନ୍ ମିତ୍ର ଧନ୍ୟବାଦ ଦେଲେ । ମୋଟ କୋଡ଼ିଏ ମିନିଟ୍‌ରେ ସଭା ଶେଷ ହେଲା । ତା'ପରେ ସେଇ ଜିପ୍‌ରେ ନେହେରୁଙ୍କୁ ବସାଇ ହେଲିପ୍ୟାଡ଼କୁ ନିଆଗଲା । ନେହେରୁ ଫେରିଗଲେ ଭୁବନେଶ୍ୱର ।

ମୋ ଘଣ୍ଟାକୁ ଚାହିଁଲି । ଘଣ୍ଟାରେ ଏଗାରଟା ପନ୍ଦର ମିନିଟ୍ । ସାଙ୍ଗେ ସାଙ୍ଗେ ତଳକୁ ଓହ୍ଲାଇ ଆସିଲି । ତଳେ ଜିପ୍ ଥିଲା । ବସି ନେପାଳୀ ଡ୍ରାଇଭରକୁ କହିଲି ଭାୟା ଚଲୋ ଅନୁଗୁଳ । ସେ ଜିପ୍ ଷ୍ଟାର୍ଟ କଲାବେଳକୁ ଦେଖିଲି ସାମ୍ନାରେ ପ୍ରେସ୍ ଲେଖାଥିବା ଦୁଇଟି ଜିପ୍ ଅଟକିଲା । ଚାରି/ପାଞ୍ଚଜଣ ସେଥିରୁ ଓହ୍ଲାଇଲେ । ସମ୍ଭବତଃ କଲିକତା ବା ଦିଲ୍ଲୀର ସାମ୍ବାଦିକ । ମାତ୍ର ସେତେବେଳକୁ ସେଠି ଆଉ କେହି ନଥିଲେ । ମୁଁ ସେମାନଙ୍କୁ ଦେଖା ନକରି ଅନୁଗୁଳକୁ ଗାଡ଼ି ଛୁଟାଇଲି । କାରଣ ଅନୁଗୁଳ ଠାରୁ ଟେଲିଗ୍ରାଫ୍ ନକଲେ ଦିନ ଦି'ଟା ପୂର୍ବରୁ ଖବର ପହଞ୍ଚିବ ନାହିଁ । ସେତେବେଳେ ଅନୁଗୁଳ ଠାରୁ ଟେଲିଫୋନ୍ ଲାଇନ୍ ନଥିଲା । ନେପାଳୀ ଡ୍ରାଇଭରକୁ କହିଲେ ଟିକେ ସ୍ପିଡ୍‌ରେ ଗାଡ଼ି ନେବାପାଇଁ । ଦିନ ବାରଟା ସୁଦ୍ଧା ଅନୁଗୁଳ ପୋଷ୍ଟ ଅଫିସ୍‌ରେ ପହଞ୍ଚିଗଲି । ସାଙ୍ଗେ ସାଙ୍ଗେ ସେଇଠି ବସି ନେହେରୁଙ୍କ ଭାଷଣକୁ ଲିଡ୍ କଲି । ପରେ ପରେ ଖୋସଲା ଏବଂ ବିଜୁବାବୁଙ୍କ ଭାଷଣ ଅଳ୍ପରେ ଦେଲି । ପୋଷ୍ଟମାଷ୍ଟର ବାବୁ ପଚାରିଲେ ଆପଣ କ'ଣ ଟିକରପଡ଼ା ଯାଇଥିଲେ । ମୁଁ ହଁ କଲି । ପଚାରିଲି ଏଠି ଯେଉଁମାନେ ଥିଲେ ସେମାନେ ଆପଣଙ୍କୁ ଟେଲିଗ୍ରାଫ୍ କରିବାକୁ କିଛି ଦେଇ ନାହାନ୍ତି ? ସେ କହିଲେ ଦିଲ୍ଲୀ ପାଇଁ କେବଳ ଜଣେ ବାବୁ ଦେଇଥିଲେ । ବାକି କେହି ଦେଇ ନାହାନ୍ତି । ମୁଁ ସେଇଠି ବସି ଆଉ ଯାହା ମନରେ ଆସିଲା ବିଶେଷକରି ଦର୍ଶକ ଏବଂ ବିକ୍ଷୋଭକାରୀଙ୍କ ଅନୁପସ୍ଥିତି ସମ୍ପର୍କରେ ଲେଖି ପୋଷ୍ଟମାଷ୍ଟରଙ୍କୁ ଦେଲି । ପୋଷ୍ଟମାଷ୍ଟର ବାବୁ ଟେଲିଗ୍ରାଫ୍ ଯନ୍ତ୍ରରେ ମୋ କପି ଦେଖି ଟିକ୍ ଟିକ୍ କରି ହାତ ଚଳାଇଲେ । ସେତେବେଳ ପର୍ଯ୍ୟନ୍ତ ମୋ ମୁଣ୍ଡରେ ଢୁକିନି ଯେ ନେହେରୁଙ୍କ ସଭାରେ ମୁଁ ଏକମାତ୍ର ସାମ୍ବାଦିକ ଥିଲି । ପ୍ରାୟ ଘଣ୍ଟାକ ପରେ ଟେଲିଗ୍ରାଫ୍ ଶେଷ ହେଲା । ମୁଁ ତାଙ୍କ ଟଙ୍କା ଛିଣ୍ଡାଇ ଦେଇ ରସିଦ୍ ଧରି କଟକ ଅଭିମୁଖେ ବାହାରିଲି ।

ଦିନ ସେତେବେଳକୁ ସାଢ଼େଗୋଟାଏ ବାଜିବ । ଡ୍ରାଇଭରକୁ କହିଲି ଗୋଟାଏ ଢାବା ପାଖରେ ରଖ । ଖାଇଦେଇ ଯିବା । ସେଇଆ ହେଲା । ଆମେ କଟକରେ ପହଞ୍ଚୁ ପହଞ୍ଚୁ ଦିନ ସାଢ଼େ ତିନିଟା । ପ୍ରେସ୍‌ରେ ପହଞ୍ଚିଲି । ଦେଖିଲି ମୋ ନିଉଜ୍ କମ୍ପୋଜ ହୋଇ ବସିବାକୁ ଯାଉଛି । ବିଚିବାବୁ ପଚାରିଲେ ବରେନ୍ଦ୍ର ବାବୁ ଟିକରପଡ଼ାରେ ଆଉ ସାମ୍ବାଦିକ କିଏ ଯାଇଥିଲେ ? ସେତେବେଳେ ମୋର ମୁଣ୍ଡରେ ଢୁକିଲା । ମୁଁ ଚିନ୍ତା କଲି । ସେଠି କଟକ-ଭୁବନେଶ୍ୱରର ତ କେହି ନଥିଲେ । ଦିଲ୍ଲୀ କଲିକତାର ମଧ୍ୟ କେହି ନଥିଲେ । କାରଣ ଯେଉଁମାନଙ୍କୁ ତଳକୁ ଆସି ଦେଖିଲି ସେମାନେ ସେତେବେଳେ ନଗଦ୍ ପହଞ୍ଚିଥିଲେ । ମୁଁ ବିଚିବାବୁଙ୍କୁ କହିଲି ମୋର ଯାହା ମନେ ହେଉଛି ସେଠି ମୋ ଛଡ଼ା ଆଉ କୌଣସି ଦ୍ୱିତୀୟ ସାମ୍ବାଦିକ ନଥିଲେ । ବିଚିବାବୁ କ'ଣ ଚିନ୍ତା କଲେ । ତା'ପରେ ଟିକରପଡ଼ା ବନ୍ଧ ଯୋଜନା ଶିଳାନ୍ୟାସ ଉତ୍ସବକୁ ଫାଷ୍ଟ ଷ୍ଟୋରି କରି ତାଳଚେରକୁ ଦ୍ୱିତୀୟ ଷ୍ଟୋରି କଲେ । ସେ ଦିନ ସନ୍ଧ୍ୟା କାଗଜରେ ପ୍ରକୃତରେ ଟିକରପଡ଼ା ବନ୍ଧ ଯୋଜନାର ସ୍ୱତନ୍ତ୍ର ବିସ୍ତୃତ ଖବର ମାତୃଭୂମି ଛଡ଼ା ଅନ୍ୟ କୌଣସି କାଗଜରେ ନଥିଲା । ତାଳଚେର ତାପଜ ବିଦ୍ୟୁତ୍ କେନ୍ଦ୍ର ଷ୍ଟୋରି ସହ କେବଳ ଦୁଇ ଲାଇନ୍ ଯୋଡ଼ା ହୋଇ ଟିକରପଡ଼ା ବନ୍ଧ ଯୋଜନାର ଶିଳାନ୍ୟାସ ଉତ୍ସବ ମଧ୍ୟ ନେହେରୁଙ୍କ ଦ୍ୱାରା ସମ୍ପନ୍ନ ହେଲା ବୋଲି ଲେଖା ହୋଇଥିଲା । ମୁଁ ଟିକରପଡ଼ା ଷ୍ଟୋରି ମଧ୍ୟରେ ନେହେରୁଙ୍କ ପରେ ଡ. ଖୋସଲା ଟିକରପଡ଼ା ବନ୍ଧ ହେଲେ ମହାନଦୀରେ ବନ୍ୟା ନିୟନ୍ତ୍ରଣ କିପରି ହେବ ଏବଂ କେତେ ଏକର ଜମି ଜଳସେଚିତ ହେବ ତା'ର ବିବରଣୀ ଦେଇ ଷ୍ଟୋରିକୁ ଟିକେ ବଡ଼କରି ଦେଇଥିଲି ।

ପରଦିନ ଅର୍ଥାତ୍ ଜାନୁଆରୀ ୬ ତାରିଖରେ ନେହେରୁ ପାରାଦ୍ୱୀପ ଯିବା କଥା । ଅପରାହ୍ଣ ତିନିଟାରେ କାର୍ଯ୍ୟକ୍ରମ ଥିଲା । ଆମେ ଯେଉଁ ଜିପ୍ ପାଇଥିଲୁ ସେ ଜିପ୍ ସକାଳ ୯ଟାରେ ଆସି ପହଞ୍ଚିଥିଲା । ସମସ୍ତଙ୍କୁ ମହାନଦୀ

ବ୍ରିଜ୍ ପାଖକୁ ଦିନ ଦଶଟାରୁ ସାଢ଼େଦଶଟା ମଧ୍ୟରେ ଆସିବାକୁ କୁହାଯାଇଥିଲା । ମୁଁ ଜିପ୍ ଧରି ଦଶଟା ବେଳକୁ ମହାନଦୀ ବ୍ରିଜ୍ ପାଖରେ ପହଞ୍ଚିଲି । କଟକ ଡି.ପି.ଆର୍.ଓ. ବିପିନ ପଟ୍ଟନାୟକ ଓ ତାଙ୍କ ସହକାରୀ ସମସ୍ତେ ସେଠି ଥା'ନ୍ତି । ମୁଁ ପହଞ୍ଚି ତାଙ୍କ ପାଖକୁ ଗଲି । ସେ ମତେ ଦେଖି କହିଲେ ନା- ପାରାଦ୍ୱୀପ ନେହେରୁଙ୍କ କାର୍ଯ୍ୟକ୍ରମ ବାତିଲ ହୋଇ ଯାଇଛି । ମୁଁ ପଚାରିଲି କାହିଁକି ? ସେ କହିଲେ ସେ କଥା ମୁଁ କହିପାରିବି ନାହିଁ । କିନ୍ତୁ ଆମ ପାଖକୁ ସକାଳୁ ଖବର ଆସିଲା କାର୍ଯ୍ୟକ୍ରମ ନହେବା କଥା । ମୁଁ ଘରୁ ବାହାରି ଆସିଥିଲି । ତା'ପରେ ପ୍ରେସ୍‌କୁ ଯାଇ ବିଚିବାବୁଙ୍କୁ ସେ କଥା କହିଲି । ସେ କହିଲେ ଆପଣ ଭୁବନେଶ୍ୱର ଯାଇ ଏ.ଆଇ.ସି.ସି. ଅଧିବେଶନର ଆୟୋଜନ, ସାଜସଜ୍ଜା, କିଏ କିଏ ନେତା ଆସିଛନ୍ତି ସବୁ ବୁଝି ଗୋଟେ ଷ୍ଟୋରି କରନ୍ତୁ । ଦିନ ଦ'ଟା ସୁଦ୍ଧା ଟେଲିଫୋନ୍‌ରେ ଡାକିଦେବେ । ମାତୃଭୂମିକୁ ଗୋଟେ ଘର ମିଳିଛି । ଆମକୁ ଟେଲିଫୋନ୍ ମଧ୍ୟ ଦିଆଯାଇଛି । ବାଳକୃଷ୍ଣବାବୁଙ୍କ ପାଖରୁ ଘରଚାବି ନେଇଯିବେ ।

ମୁଁ ସେଇ ଜିପ୍ ନେଇ ଭୁବନେଶ୍ୱର ଆସିଲି । କଂଗ୍ରେସ ଅଧିବେଶନ-ଗୋପବନ୍ଧୁ ନଗରକୁ ଗଲି । ମୋର ସୌଭାଗ୍ୟକୁ ଲାଲ୍‌ବାହାଦୁର ଶାସ୍ତ୍ରୀ ସେତେବେଳେ ଆୟୋଜନ ତଦାରଖ କରୁଥା'ନ୍ତି । ତାଙ୍କ ପାଖରେ ନୀଳମଣି ରାଉତରାୟ, ସ୍ୱାସ୍ଥ୍ୟମନ୍ତ୍ରୀ ଜଗନ୍ନାଥ ରାଓ, ଓଡ଼ିଶା କଂଗ୍ରେସ କମିଟି ସଭାପତି ବିଜୟ ପାଣି ପ୍ରମୁଖ ଥା'ନ୍ତି । ମୁଁ ଯାଇ ସେମାନଙ୍କୁ ଦେଖି ମଞ୍ଚ ଏବଂ ପ୍ରେକ୍ଷାଳୟ ଦେଖିଲି । ପାଞ୍ଚହଜାର ଲୋକ ବସିବା ପାଇଁ ବ୍ୟବସ୍ଥା ହୋଇଥାଏ । ଏତେ ବିରାଟ ମଞ୍ଚ ଓ ପ୍ରେକ୍ଷାଳୟ ମୁଁ ପୂର୍ବରୁ କେବେ ଦେଖିନଥିଲି । କାମ ଚାଲିଥାଏ । ହତା ମଧ୍ୟରେ ଜଳଖିଆ ଦୋକାନ, ଚା' ଦୋକାନ, ପାନ ଦୋକାନ ସବୁ ଖୋଲି ଯାଇଥାଏ । ସେତେବେଳକୁ ପ୍ରାୟ ସବୁ ନେତାମାନେ ଆସିଗଲେଣି । ସେଠି ଗୋଟିଏ ଜାଗାରେ ଆଉ କେତେଜଣ ବଡ଼ ବଡ଼ ନେତା ବସି କ'ଣ ସବୁ ଆଲୋଚନା କରୁଥାନ୍ତି । ସବୁଠାରୁ ମଜାଦାର ଘଟଣା ହେଲା ଯିଏ ଭିତରକୁ ଯିବାପାଇଁ ପାଶ୍ ପାଇଥିବ ଭିତରେ ଖାଇବା ପିଇବା ଠାରୁ ଚାହା ଆଉ ପାନ ଖାଇବା ପର୍ଯ୍ୟନ୍ତ ସବୁ ମାଗଣା । ଯେତେ ଯିଏ ଖାଇ ପାରିବ । ତା'ର ଠିକା ନେଇଥାନ୍ତି ରାଜୁ ସାହୁ । ସେଠି ଲେଖା ହୋଇଥାଏ ରାଜମହଲ ହୋଟେଲ । ଆଜି ଭୁବନେଶ୍ୱରର ରାଜମହଲ ହୋଟେଲ ସେଇ ଅଧିବେଶନ ପରେ ପରେ ତିଆରି ହେଲା । ଆଜି ଏତିକି ।

ଜାନୁଆରୀ ୮ ତାରିଖରେ ନିଖିଳ ଭାରତ କଂଗ୍ରେସ କମିଟିର ଅଧିବେଶନ ବିଧିବଦ୍ଧ ଭାବେ ଆରମ୍ଭ ହେଲା । ସକାଳ ସାଢ଼େ ଦଶଟା ବେଳକୁ ଅଧିବେଶନ ମଞ୍ଚ ଓ ପ୍ରେକ୍ଷାଳୟରେ ନେତା ଆଉ କର୍ମୀ ଭର୍ତ୍ତିହୋଇଯାଇ ଥା'ନ୍ତି । ସମସ୍ତେ ଅପେକ୍ଷା କରିଥା'ନ୍ତି ନେହେରୁଙ୍କୁ । ଅଧିବେଶନ ମଣ୍ଡପ ଓ ପ୍ରେକ୍ଷାଳୟର ସାଜସଜ୍ଜା ଦେଖିଲେ ଆଖି ଖୋସି ହୋଇ ଯାଉଥାଏ । ଏତେ ସୁନ୍ଦର ପ୍ରେକ୍ଷାଳୟ କରାଯାଇପାରେ । ନଦେଖିଲେ ବିଶ୍ୱାସ କରି ହେବ ନାହିଁ । ଭୁବନେଶ୍ୱର କଂଗ୍ରେସ ଅଧିବେଶନ ସେତେବେଳେ ସମଗ୍ର ଦେଶରେ କଂଗ୍ରେସର ନୂତନ ସମାଜବାଦୀ ନୀତି ଉପରେ ଚର୍ଚ୍ଚାର ବିଷୟ ହୋଇଥିଲା ।

ଦିନ ପ୍ରାୟ ଏଗାରଟା ବେଳକୁ ପଣ୍ଡିତ ନେହେରୁ ରାଜଭବନର ଧଳା ପ୍ଲାଇମାଉଥ ଇମ୍ପାଲା ଗାଡ଼ିରେ ସଭାସ୍ଥଳକୁ ଆସିଲେ । ଲୋକେ ନେହେରୁଙ୍କୁ ଦେଖିବାପାଇଁ ଇମ୍ପାଲା ଗାଡ଼ିର ହୁଡ୍ ଖୋଲା ହୋଇଥିଲା । ମଞ୍ଚ ଉପରକୁ ନେହେରୁଙ୍କୁ ଧରି ଧରି ଇନ୍ଦିରା ଗାନ୍ଧୀ ଆଉ ବିଜୁ ପଟ୍ଟନାୟକ ନେଇଗଲେ । ଚାରିଆଡୁ ପ୍ରବଳ କରତାଳି ଧ୍ୱନି । ନେହେରୁ ଜିନ୍ଦାବାଦ ଧ୍ୱନି । ନେହେରୁ ବସିଲେ । କାମରାଜ ନାଦର ଖଣ୍ଡି ଖଣ୍ଡି ହିନ୍ଦିରେ ସମସ୍ତଙ୍କୁ ସ୍ୱାଗତ କରି ନେହେରୁଙ୍କୁ ତାଙ୍କ ଅଭିଭାଷଣ ଦେବାପାଇଁ ଅନୁରୋଧ କଲେ । ନେହେରୁ କହିବାକୁ ଠିଆହେଲେ । ମାତ୍ର କିଛି କହିବା

ପୂର୍ବରୁ ସାମ୍ନାପଟକୁ ଝୁଙ୍କିଯାଇ ପଡ଼ିଯିବାର ଉପକ୍ରମ କଲେ । କେହି କିଛି ବୁଝିବା ପୂର୍ବରୁ ଇନ୍ଦିରା ଗାନ୍ଧୀ ତାଙ୍କ ସ୍ଥାନରୁ ଡେଇଁପଡ଼ି ନେହେରୁଙ୍କୁ ଧରି ପକାଇଲେ । ତଥାପି ନେହେରୁ ସେଇ ମଞ୍ଚରେ ଅଧା ପଡ଼ିବା ଅବସ୍ଥାରେ ଥିଲାବେଳେ ଅନ୍ୟ ନେତାମାନେ ତାଙ୍କୁ ଧରିନେଲେ । ଜଣେ ଡାକ୍ତର( ସମ୍ଭବତଃ ଦିଲ୍ଲୀରୁ ଆସିଥିଲେ ) ତାଙ୍କୁ ପରୀକ୍ଷା କରି ସାଙ୍ଗେ ସାଙ୍ଗେ ଗୋଟିଏ ଇଞ୍ଜେକ୍ସନ ଦେଲେ । ତା'ପରେ ତାଙ୍କୁ ରାଜଭବନକୁ ସେଇ ଇମ୍ପାଲା ଗାଡ଼ିରେ ନିଆଗଲା ।

ସମଗ୍ର ଅଧିବେଶନଟି ନିରବ ନିଷ୍ପନ୍ଦ ହୋଇଗଲା । କିଛି ସମୟପାଇଁ ମାତ୍ର ସେତେବେଳକୁ ରାଜଭବନ ଫାଟକ ବନ୍ଦ କରିଦିଆଯାଇ କାହାରିକୁ ଆଉ ଭିତରକୁ ଛଡ଼ାଗଲା ନାହିଁ । ମୋର ସେତେବେଳେ ଭୁବନେଶ୍ୱର ଓ ରାଜଭବନ ସମ୍ପର୍କରେ ସେତେ ଧାରଣା ନଥିଲା । ଗୋପାଳ ମିଶ୍ର ଏନ୍.ଆର୍. ସ୍ୱାମୀ, ବାଳକୃଷ୍ଣ କାନୁନ୍‌ଗୋ, ରାମକୃଷ୍ଣ ବେହେରା ପ୍ରମୁଖ ସାମ୍ବାଦିକ ଯେଉଁମାନେ ଭୁବନେଶ୍ୱରରେ ରହୁଥିଲେ ସେମାନେ କଂଗ୍ରେସ ଅଧିବେଶନକୁ ଫେରି ଆସିଲେ । ମୁଁ ମଧ ସେମାନଙ୍କ ପଛେପଛେ ଫେରି ଆସିଲି ।

ମୁଁ ଗୋପବନ୍ଧୁ ନଗରରେ ପହଞ୍ଚି ଏଣେତେଣେ ବୁଲୁଛି । କାରଣ ସେତେବେଳେ ଗୋପାଳବାବୁ, ବାଳକୃଷ୍ଣବାବୁ ଓ ଅନ୍ୟ ବରିଷ୍ଠ ସାମ୍ବାଦିକମାନେ କେଉଁଠି କ'ଣ କରୁଛନ୍ତି ମୁଁ ଜାଣିପାରିଲି ନାହିଁ । କେବଳ ବିଚିବାବୁଙ୍କୁ ଫୋନ୍ କରି ନେହେରୁଙ୍କ କଥା କହିବା ବେଳକୁ ସେ କହିଲେ ବାଳକୃଷ୍ଣବାବୁ ଏଇ ଟିକେ ଆଗରୁ ସେକଥା କହିଛନ୍ତି । ମୁଁ ଆଉ କିଛି କହିବା ବେଳକୁ ସେ କହିଲେ ଆପଣ ସେଠି କିଏ କ'ଣ କରୁଛନ୍ତି । ବଡ଼ ବଡ଼ ନେତାମାନେ କ'ଣ କଥାବାର୍ତ୍ତା ହେଉଛନ୍ତି, ନେହେରୁଙ୍କର ଦେହ ଖରାପ ସମ୍ପର୍କରେ କିଏ କ'ଣ କଥାବାର୍ତ୍ତା ହେଉଛନ୍ତି ସେ କଥା ବୁଝି ଷ୍ଟୋରି କରିବାକୁ କହିଲେ । ମୁଁ ଫୋନ୍ କରି ସାରି ବାହାରକୁ ଆସି କଂଗ୍ରେସ ଅଧିବେଶନ ଗେଟ୍ ନିକଟରେ ଠିଆ ହୋଇଛି ଏତିକି ବେଳେ ବଙ୍କିମ ଦାସ ଗୋଟିଏ ଜିପ୍‌ରୁ ଓହ୍ଲାଇବାର ଦେଖିଲି । ମୁଁ ବଙ୍କିମବାବୁଙ୍କୁ ଦେଖି ନମସ୍କାର କଲି । ମୋତେ ବଙ୍କିମ୍‌ବାବୁ ଦେଖି ଟିକେ ଆଶ୍ଚର୍ଯ୍ୟ ହେଲାଭଳି ଚାହିଁଲେ । କହିଲେ ଆପଣ ମାତୃଭୂମିର କଟକ ଷ୍ଟାଫ ରିପୋର୍ଟର ତ । ମୋର ବଙ୍କିମବାବୁଙ୍କ ସାଙ୍ଗରେ କଟକ ବାରବାଟି ଷ୍ଟାଡିୟମ୍‌ରେ ପରିଚୟ ହୋଇଥିଲା । ସେତେବେଳେ ସେ ଷ୍ଟାଡିୟମ୍‌କୁ ପ୍ରାୟ ଆସୁଥିଲେ । ବଙ୍କିମ୍ ଦାସ ଥିଲେ ବିଜୁ ପଟ୍ଟନାୟକଙ୍କ ପଲିଟିକାଲ୍ ସେକ୍ରେଟାରୀ । ମୁଁ ତାଙ୍କୁ କହିଲି ମୋତେ ଏଠିକି ପଠାଯାଇଛି କିଛି କିଛି ସ୍ୱତନ୍ତ୍ର ଷ୍ଟୋରି କରିବା ପାଇଁ । ସେ ପଚାରିଲେ ଆପଣ ବାଳକୃଷ୍ଣ ଜରିଆରେ ଖବର ପଠାଉଛନ୍ତି ନା ସିଧା ପଠାଉଛନ୍ତି ? ମୁଁ କହିଲି ନା- ମୁଁ ମୋର ଖବର ସିଧା ମାତୃଭୂମିକୁ ପଠାଇବି । ବାଳକୃଷ୍ଣବାବୁଙ୍କ ସହ ମୋର କୌଣସି ସମ୍ପର୍କ ନାହିଁ । ତାଙ୍କ ଷ୍ଟୋରି ସିଏ ପଠାଇବେ ମୋର ମୁଁ । କ'ଣସବୁ ପଠାଉଛନ୍ତି ? ମୁଁ ତାଙ୍କୁ ହଠାତ୍ ପଚାରିଲି ସାର୍ ନେହେରୁଙ୍କର କ'ଣ ହୋଇଛି ? ସେ ମୋତେ ଚୁପ୍ କରି କହିଲେ ନେହେରୁଙ୍କୁ ହାଟ୍‌ଷ୍ଟ୍ରୋକ୍ ହୋଇଛି । ତାଙ୍କ ବାଁପଟ ଆଂଶିକ ପାରାଲିସସ୍ ହୋଇଯାଇଛି । ସେ ଖୁବ୍ ଦୁର୍ବଳ ହୋଇପଡ଼ିଛନ୍ତି । ଦିଲ୍ଲୀରୁ Special Planeରେ ସ୍ପେଶାଲିଷ୍ଟ ଡାକ୍ତରମାନେ ଆସୁଛନ୍ତି । ଘଣ୍ଟାଏ/ଦି'ଘଣ୍ଟାରେ ପହଞ୍ଚିବେ । ଏକଥା ଆପଣ କାହାରିକୁ କହିବେ ନାହିଁ । ବାଳକୃଷ୍ଣ, ଗୋପାଳ କାହାରିକୁ ଆଦୌ କହିବେ ନାହିଁ । ମୁଁ ପଚାରିଲି ଏକଥା ମୁଁ କାଗଜରେ ଦେଇପାରିବି ? ସିଏ କହିଲେ ଆପଣଙ୍କ ରିସ୍କରେ ଦେବେ । ମୁଁ କହିଛି ବୋଲି କେହି ଯେପରି ନଜାଣନ୍ତି । ପରେ କଥାବାର୍ତ୍ତା ହେବା । ସେ ଚାଲିଗଲେ ।

ନେହେରୁଙ୍କ ଗୁରୁତର ଅସୁସ୍ଥତା ବିଷୟ ନଜଣାଇବା ପାଇଁ କଂଗ୍ରେସ ନେତାଏ ନିଷ୍ପତ୍ତି ନେଇଥିଲେ । ସେଇଥିପାଇଁ କଂଗ୍ରେସ ମୁଖପାତ୍ର ଦିନ ୨ଟା ବେଳେ ସାମ୍ବାଦିକମାନଙ୍କୁ କହିଲେ ନେହେରୁ ସୁସ୍ଥ ଅନୁଭବ କଲେଣି । କାଲି କଂଗ୍ରେସ ଅଧିବେଶନରେ ଯୋଗଦେଇ ପାରନ୍ତି ।

ବଙ୍କିମବାବୁ ମୋତେ ଯାହା କହିଥିଲେ ସେ କଥା ଦେବାପାଇଁ ନିଷ୍ପତ୍ତି କଲି । ତେବେ ଦିଲ୍ଲୀରୁ ଡାକ୍ତର ଆସୁଛନ୍ତି କି ନାହିଁ ତାକୁ ଖବର ନେବାକୁ ଚେଷ୍ଟା କଲି । ହଠାତ୍ ମୋର ମନେପଡ଼ିଲା ରାଜଭବନରେ ଆମ ବାଙ୍କୀର ରାଜୁଭାଇ(ରାଜକିଶୋର ଦାସ) ଡାକ୍ତର ଅଛନ୍ତି । ତାଙ୍କୁ କଣ୍ଟାକ୍ଟ କଲେ ଠିକ୍ ଖବର ମିଳି ପାରିବ । ମୁଁ ରାଜଭବନ ଅଭିମୁଖେ ଚାଲିଲି । ରାଜଭବନ ଫାଟକ ପାଖରେ ଥିବା ପୋଲିସ୍ ଗାର୍ଡ଼ଙ୍କୁ ମୁଁ ବାଙ୍କୀରୁ ଆସିଛି । ଟିକେ ଡାକ୍ତର ରାଜକିଶୋର ଦାସଙ୍କୁ ଖବର ଦେବାକୁ କହିଲି । ପୋଲିସ୍‌ବାବୁ ମୋତେ ଗେଟ୍ ପାଖ ରିସିପ୍‌ସନ୍ ରୁମ୍‌କୁ ଯାଇ ଏକଥା ପଚାରିବାକୁ କହିଲେ । ମୁଁ ସେଇଆ କଲି । ରିସିପ୍‌ସନ୍‌କୁ ଯାଇ ରାଜୁଭାଇଙ୍କ କଥା କହିବାରେ ସେ ରାଜୁଭାଇଙ୍କୁ ଟେଲିଫୋନ୍ କରି ମୋ ନାଁ କହିଲେ । ରାଜୁଭାଇ ମୋ ନାଁ ଶୁଣି କହିଲେ ତାକୁ ଫୋନ୍ ଦିଅ । ମୁଁ ଫୋନ୍‌ରେ ତାଙ୍କ ସହ କିପରି ଦେଖା କରିବି ସେକଥା ପଚାରିଲି । ସେ ମୋତେ କହିଲେ ଏଇନେ ତ ସମ୍ଭବ ନୁହେଁ । ନେହେରୁଙ୍କୁ ଚିକିତ୍ସା କରିବା ପାଇଁ ଦିଲ୍ଲୀରୁ ଡାକ୍ତର ଦଳ ଆସିଛନ୍ତି । ମୁଁ ଯାଇପାରିବି ନାହିଁ । ତୁ ବରଂ ସନ୍ଧ୍ୟାବେଳକୁ ଘରକୁ ଆସ । ରାଜଭବନ ତଳେ ମୁଁ ରହୁଛି । ମୁଁ ସେଇ ଫୋନ୍‌ରେ ତାଙ୍କୁ ବଙ୍କିମ୍ ବାବୁ ଯାହା କହିଥିଲେ ସେ କଥା ଚୁପ୍‌ଚୁପ୍ ପଚାରିଲି । ସେ କହିଲେ ତୁ ଏକଥା କିପରି ଜାଣିଛୁ ? ତେବେ ଯାହା ଶୁଣିଛୁ ସବୁ ଠିକ୍ ।

ମୁଁ ଏକଥା ଏଠି ଉଲ୍ଲେଖ କରିବାର ଏକମାତ୍ର କାରଣ ହେଉଛି ଏହା ଏକ ଐତିହାସିକ ଘଟଣା । ଅନେକ ଲୋକ ଏକଥା ଜାଣି ନଥିବେ ବା ଜାଣି ନାହାନ୍ତି । ତେବେ ରାଜୁଭାଇଙ୍କ ସାଙ୍ଗରେ କଥା ହୋଇ ବଙ୍କିମବାବୁଙ୍କ ଖବରର ସତ୍ୟତା ସମ୍ପର୍କରେ ନିଶ୍ଚିତ ହେବାପରେ ପୋଷ୍ଟ ଅଫିସ୍‌ରୁ ବିଚିବାବୁଙ୍କୁ ଫୋନ୍ କରି ସବୁ କଥା ଜଣାଇଲି । ଖବରର ସତ୍ୟତା ସମ୍ପର୍କରେ ଏବଂ ବଙ୍କିମବାବୁ ବା ରାଜୁଭାଇଙ୍କ ସଂପର୍କରେ କାହାରିକୁ କିଛି ନକହିବା ପାଇଁ ଅନୁରୋଧ କଲି । କାରଣ ଥରେ ଏମାନଙ୍କ ନାମ ଜଣାପଡ଼ିଲେ ଆଉ ଖବର ମିଳିବ ନାହିଁ । ସେଦିନ ସନ୍ଧ୍ୟାରେ ମାତୃଭୂମିରେ ଏ ଖବର ବିସ୍ତୃତ ଭାବେ ପ୍ରକାଶ ପାଇଲା । ପରଦିନ କଂଗ୍ରେସ ଅଧିବେଶନରେ କେବଳ ମାତୃଭୂମି ଖବର ଚର୍ଚ୍ଚାର ବିଷୟ ହେଲା । ପଣ୍ଡିତ ନେହେରୁ ରାଜଭବନରେ ରହି ଚିକିତ୍ସିତ ହେବାପରେ ଜାନୁଆରୀ ୧୨ ତାରିଖରେ ଦିଲ୍ଲୀ ଫେରିଲେ । ତାଙ୍କୁ ନେବାପାଇଁ ଏକ ସ୍ୱତନ୍ତ୍ର ବିମାନ ଚାରବାଟିଆ ଆସିଥିଲା । ବିମାନବାହିନୀର ଏକ ହେଲିକେପ୍ଟର ଭୁବନେଶ୍ୱର ରାଜଭବନ ହତାରେ ଜାନୁଆରୀ ୧୨ ତାରିଖ ମଧ୍ୟାହ୍ନରେ ଅବତରଣ କଲା । ସେଇ ହେଲିକେପ୍ଟରରେ ଏକ ସ୍ୱତନ୍ତ୍ର ଚେୟାରରେ ନେହେରୁଙ୍କୁ ବସାଇ ଚାରିବାଟିଆ ଏବଂ ସେଠାରୁ ଦିଲ୍ଲୀ ନିଆଗଲା । ତା'ପରେ ନେହେରୁ ଆଉ ଉଠି ନାହାନ୍ତି । ୧୯୬୪ ମେ' ୨୭ ତାରିଖରେ ତାଙ୍କର ପରଲୋକ ହୋଇଗଲା । ତାଙ୍କ ଜୀବନର ସର୍ବଶେଷ ଜନସଭା ଭାଷଣ ଟିକରପଡ଼ାରେ ସେ ଦେଇଥିଲେ । ଆଜି ଏତେବର୍ଷ ପରେ ସେ ସ୍ମୃତି ମନକୁ ଆସିଲେ ମନରେ ରୋମାଞ୍ଚ ଜାତ ହୁଏ ଏବଂ ପୃଥିବୀର ଏହି ବିଶିଷ୍ଟ ଜନନେତାଙ୍କ ଜୀବନର ଶେଷ ବକ୍ତବ୍ୟ ମୁଁ ଏକମାତ୍ର ପ୍ରତିବେଦକ ଯେ ରିପୋର୍ଟ କରିଥିଲା । ତାହାହିଁ ମୋ ସାମ୍ବାଦିକ ଜୀବନର ସବୁଠାରୁ ରୋମାଞ୍ଚକର ଘଟଣା ।

ନେହେରୁଙ୍କ ପରେ ଆଉ ଯେଉଁ ଦୁଇ ବିଖ୍ୟାତ ନେତା ତାଙ୍କ ଜୀବନର ଶେଷ ଅଧ୍ୟାୟ ଓଡ଼ିଶାରେ ବିତାଇଥିଲେ ସେମାନେ ହେଲେ ନେହେରୁଙ୍କ କନ୍ୟା ଭାରତର ଅନ୍ୟତମ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଏବଂ ତାଙ୍କ ପୁତ୍ର ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧୀ । ମୋର ସୌଭାଗ୍ୟ ବା ଦୁର୍ଭାଗ୍ୟ ଯାହା ହେଉ ଏମାନଙ୍କ ଅନ୍ତିମ ଭାଷଣ ଏବଂ ବକ୍ତବ୍ୟ ମୋ ପ୍ରତିବେଦନରେ ଯଥାକ୍ରମେ ମାତୃଭୂମି ଓ ସ୍ୱରାଜ୍ୟରେ ପ୍ରକାଶ ପାଇଥିଲା ।

## -ଇନ୍ଦିରା ଗାନ୍ଧୀଙ୍କ ଶେଷ ଜନ ସଭା-

୧୯୮୪ ଅକ୍ଟୋବର ୨୯ ତାରିଖ । ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଓଡ଼ିଶା ପରିଦର୍ଶନରେ ଆସିଥିଲେ । ବଲାଙ୍ଗୀର ସଇଁତଳାଠାରେ କେନ୍ଦ୍ର ପ୍ରତିରକ୍ଷା ବିଭାଗର ଗୋଳାବାରୁଦ କାରଖାନା ଶୁଭ ଦେବାପାଇଁ, ଗଞ୍ଜାମ ଜିଲ୍ଲା ଗୋପାଳପୁର ଠାରେ ନୂଆ କାଣ୍ଟନମେଣ୍ଟରେ ସୈନିକ ଅବସର ବିନୋଦନ କେନ୍ଦ୍ର ଉଦ୍‌ଘାଟନ ପାଇଁ ଏବଂ ଭୁବନେଶ୍ୱରରେ ସାଧାରଣ ସଭାରେ ଉଦ୍‌ବୋଧନ ପାଇଁ ତାଙ୍କର କାର୍ଯ୍ୟକ୍ରମ ଥିଲା । ମୁଁ ବଲାଙ୍ଗୀର ସଇଁତଳା ଗୋଳାବାରୁଦ କାରଖାନା ଶୁଭଦାନ ଉତ୍ସବ ରିପୋର୍ଟିଂ ପାଇଁ ଯାଇଥିଲି । ସେତେବେଳେ କାମାକ୍ଷାପ୍ରସାଦ ସିଂହଦେଓ କେନ୍ଦ୍ର ପ୍ରତିରକ୍ଷା ରାଷ୍ଟ୍ରମନ୍ତ୍ରୀ ଥିଲେ । ତାଙ୍କରି ଉଦ୍ୟମରେ ଏହି କାରଖାନା ଓଡ଼ିଶାକୁ ଆସିଥିଲା ।

ଶ୍ରୀମତୀ ଗାନ୍ଧୀ ଏହି କାରଖାନା ଶୁଭଦାନ କରି ଏକ ବିରାଟ ଜନସଭାରେ ଉଦ୍‌ବୋଧନ ଦେଇ କହିଥିଲେ ପ୍ରତ୍ୟେକ ଭାରତବାସୀ ନିଜକୁ ଜଣେ ଜଣେ ସୈନ୍ୟ ବୋଲି ବିଚାର କରି ଏ ଦେଶକୁ ରକ୍ଷା କରିବାପାଇଁ ଏ ଦେଶକୁ ଶକ୍ତିଶାଳୀ କରିବା ପାଇଁ କାର୍ଯ୍ୟ କରିବା ଉଚିତ୍ । ପ୍ରାୟ ପନ୍ଦର ମିନିଟ୍ କାଳ ଭାଷଣରେ ଶ୍ରୀମତୀ ଗାନ୍ଧୀ ଦେଶର ଅବସ୍ଥା ଓ ଲୋକଙ୍କ ଆର୍ଥିକ ସ୍ଥିତି ସମ୍ପର୍କରେ ଆଲୋଚନା କରିଥିଲେ । ଓଡ଼ିଶାର ଉନ୍ନତି ପାଇଁ ସମସ୍ତ ପ୍ରକାର ସହଯୋଗ କରିବେ । ଶ୍ରୀମତୀ ଗାନ୍ଧୀ ଭାଷଣ ଦେଇ ଗାଡ଼ିରେ ବସି ହେଲିକେପ୍ଟର ପାଖକୁ ଗଲେ । ସେଇଠୁ ସେ ଗଞ୍ଜାମ ଗୋପାଳପୁର ଯିବା କାର୍ଯ୍ୟକ୍ରମ ଥିଲା । ସେଦିନ ରାତିରେ ସେ ଗୋପାଳପୁରରେ ରହିବା ବ୍ୟବସ୍ଥା ହୋଇଥିଲା । କାରଣ ତା' ପରଦିନ ଗଞ୍ଜାମ ଓ କୋରାପୁଟରେ ଦୁଇଟି ଜନସଭାରେ ଭାଷଣ ଦେଇ ଭୁବନେଶ୍ୱର ଆସିବାର କାର୍ଯ୍ୟକ୍ରମ ଥିଲା ।

ସଇଁତଳା ସଭା ଠାରେ ମୁଁ ବଲାଙ୍ଗୀରର କଂଗ୍ରେସ ନେତା ମୁଜାଫର ହୁସେନ୍ ଖାଁଙ୍କୁ ଦେଖିଲି । ସେ ଗୋପାଳପୁର ବାହାରିଥିଲେ । ତାଙ୍କର ଆଉ ଦୁଇଜଣ ବନ୍ଧୁଙ୍କ ସହ । ମୁଜାଫରଙ୍କୁ ମୁଁ ଅନୁରୋଧ କଲି ମୋତେ ଗୋପାଳପୁର ନେବାପାଇଁ । ସେ ସାଙ୍ଗେ ସାଙ୍ଗେ ତାଙ୍କର ଜଣେ ସାଙ୍ଗକୁ ମୋ ପାଇଁ ଏକ ଗାଡ଼ି ଦେବା ପାଇଁ କହିଲେ । ସେମାନେ ଦୁଇଟି ଗାଡ଼ି ନେବାପାଇଁ ସ୍ଥିର କରିଥିଲେ । ତେଣୁ ଦ୍ୱିତୀୟ ଗାଡ଼ି ମୋତେ ଏବଂ ମୁଜାଫରଙ୍କର ଜଣେ ବନ୍ଧୁକୁ ନେଇ ଗୋପାଳପୁର ଗଲା ।

ଗୋପାଳପୁର କ୍ୟାଣ୍ଟନମେଣ୍ଟରେ ଶ୍ରୀମତୀ ଗାନ୍ଧୀ ଭାଷଣ ଦେଇ ସୈନିକମାନଙ୍କ ବଡ଼ାଖାନାରେ ଯୋଗଦେଲେ । ମୋର ସିକ୍ୟୁରିଟି ପାଶ୍ ଥିବାରୁ ସଭାରେ ଯୋଗଦେଇ ବଡ଼ାଖାନାରେ ଡିନର ଖାଇ ରାତି ଦଶଟା ବେଳକୁ ଭୁବନେଶ୍ୱର ବାହାରିଲୁ । ରାତି ଗୋଟାଏରେ ଭୁବନେଶ୍ୱରରେ ପହଞ୍ଚିଲୁ ।

ପରଦିନ ସନ୍ଧ୍ୟାରେ (ଅକ୍ଟୋବର ୩୦ ତାରିଖ ୧୯୮୪) ଭୁବନେଶ୍ୱର ପ୍ୟାରେଡ଼ ପଡ଼ିଆ(ଅଧୁନା ଇନ୍ଦିରା ଗାନ୍ଧୀ ପାର୍କ)ରେ ଶ୍ରୀମତୀ ଗାନ୍ଧୀଙ୍କ ସଭା । ଶ୍ରୀମତୀ ଗାନ୍ଧୀ ପାଞ୍ଚଟାରେ ଆସିବାର ଥିଲା । ମାତ୍ର ସେ ସାମାନ୍ୟ ବିଳମ୍ବରେ ଆସିଲେ । ହଜାର ହଜାର ଲୋକ ଶ୍ରୀମତୀ ଗାନ୍ଧୀଙ୍କୁ ଅପେକ୍ଷା କରିଥିଲେ । ଆମେ ସାମ୍ବାଦିକମାନେ ମଞ୍ଚର ଦକ୍ଷିଣ ପାର୍ଶ୍ୱରେ ବସିଥିଲୁ । ଶ୍ରୀମତୀ ଗାନ୍ଧୀ ଛ'ଟା ବେଳକୁ ଆସିଲେ । ସେ କିପରି ଅବଶ ଦେଖା ଯାଉଥିଲେ । ଜାନକୀବାବୁ ସ୍ୱାଗତ ଭାଷଣ ଦେବାପରେ ଶ୍ରୀମତୀ ଗାନ୍ଧୀ ଭାଷଣ ଆରମ୍ଭ କରିଥିଲେ । ଭାଷଣ ଦେଉ ଦେଉ ସେ କିପରି ଉତ୍ତେଜିତ ହୋଇ ପଡ଼ିଲେ । ଭୁବନେଶ୍ୱର ପ୍ୟାରେଡ଼ ପଡ଼ିଆରେ ଜୀବନର ଶେଷ ଜନସଭା ବୋଲି ସେ କ'ଣ ଜାଣି ପାରିଥିଲେ ? ଜୀବନକୁ ନେଇ ସେ ବେଶ୍ ବିହ୍ୱଳିତ ହୋଇ ପଡ଼ିଥିଲେ । ଭାରତୀୟ ଇତିହାସ, ଦର୍ଶନକୁ ନେଇ ଶ୍ରୀମତୀ ଗାନ୍ଧୀ ଅନର୍ଗଳ କହି ଚାଲିଲେ । ଭାରତର ପ୍ରାଚୀନ ସଭ୍ୟତା ଠାରୁ ଆରମ୍ଭ କରି ସ୍ୱାଧୀନତା ସଂଗ୍ରାମ ପର୍ଯ୍ୟନ୍ତ ମହାନ ବଳିଦାନ ସମ୍ପର୍କରେ ସବୁକିଛି ସେ କହି ଚାଲିଲେ । ଆଜି ଯେତେବେଳେ ପୁରୁଣା ଡାଇରିରୁ ତାଙ୍କ ଭାଷଣ ଖୋଜି ଖୋଜି ମୁଁ ବାହାର କଲି

ସେଥିବରେ ସବୁକିଛି ଲେଖିବା ସମ୍ଭବ ହୋଇପାରିନି ମୋ ପକ୍ଷରେ । ମୁଁ ତାଙ୍କ ଭାଷଣରୁ କିଛି କିଛି ଶବ୍ଦ ଲେଖିଛି । ସେ କହିଲେ Eternal vigilance is the price of freedom. it asked rhetorical questions such as what is meaning of freedom if somebody is hungry ? ତା'ପରେ ତାଙ୍କ କଣ୍ଠସ୍ୱର ପରିବର୍ତ୍ତନ ହୋଇ ପୁଣି ତାଙ୍କ ନିଜ ଜୀବନ ଦର୍ଶନ ଭିତରକୁ ନେଇ ଯାଇଛନ୍ତି । ସେ ଭାବବିହ୍ୱଳହୋଇ ପଡ଼ିଛନ୍ତି । ତାଙ୍କ ପାଟିରୁ ବାହାରି ଆସିଛି

I am here today. I maynot be here tommorow... Nobody knows how many attempts have been made to shoot me... I do not care whether I live or die. I have lived a long life and I am proud that I spent the whole of my life in the service of my people. I am only proud of this and of nothing else. I shall continue to serve until my last breath and when I die, I can say, that every drop of my blood will invigorate ladia and strengten it.

ଆଜି ମୁଁ ଏଠି ଅଛି, କାଲି ମୁଁ ଏଠି ନଥାଇ ପାରେ । ମୋତେ ହତ୍ୟା କରିବା ପାଇଁ କେତେଥର ଉଦ୍ୟମ ହୋଇଛି କେହି ଜାଣି ନାହାନ୍ତି । ମୁଁ ବଞ୍ଚେ କିମ୍ବା ମରେ ସେଥିପ୍ରତି ମୋର ଭ୍ରୁକ୍ଷେପ ନାହିଁ । ମୁଁ ଅନେକ ଦିନ ବଞ୍ଚିଲିଣି ଏବଂ ମୁଁ ଗର୍ବିତ ଯେ ମୋର ସମଗ୍ର ଜୀବନ ମୁଁ ଲୋକଙ୍କ ସେବାରେ ଉତ୍ସର୍ଗ କରିଛି । ମୁଁ ଏଇଥିପାଇଁ ଗର୍ବିତ ଆଉ କୌଣସିଥିରେ ନୁହେଁ । ମୋର ଶେଷ ନିଶ୍ୱାସ ଚାଲୁଥିବା ପର୍ଯ୍ୟନ୍ତ ମୁଁ ଲୋକଙ୍କ ସେବା କରି ଚାଲୁଥିବି । ଏବଂ ଯେତେବେଳେ ମୁଁ ମୃତ୍ୟୁଲାଭ କରିବି- ମୁଁ କହିପାରେ, ମୋର ପ୍ରତ୍ୟେକ ରକ୍ତବିନ୍ଦୁ ଭାରତବର୍ଷକୁ ତେଜୋଦୀପ୍ତ କରିବ ଓ ଶକ୍ତିଶାଳୀ କରିବ ।

ଜୀବନର ଏହି ସର୍ବଶେଷ ଅଭିବ୍ୟକ୍ତି ସମ୍ଭବତଃ ତାଙ୍କର ବିଧିପ୍ରେରିତ ଥିଲା । ପ୍ରାୟ ପଇଁଚାଳିଶ ମିନିଟ୍ କାଳ ସେ ଭାଷଣ ଦେଇଥିଲେ । ସନ୍ଧ୍ୟା ସାତଟା ବେଳକୁ ସେ ଫେରି ଯାଇଥିଲେ ଓଡ଼ିଶା ରାଜଭବନକୁ । ସେଦିନ ସେ ରାଜଭବନରେ ରାତ୍ରିଯାପନ କରିବାର ଥିଲା । ହଠାତ୍ ଦିଲ୍ଲୀରୁ ଖବର ଆସିଲା ତାଙ୍କ ନାତି-ନାତୁଣୀ(ରାହୁଲ ଓ ପ୍ରିୟଙ୍କା) ସ୍କୁଲରୁ ଫେରିବାବେଳେ ଏକ କାର୍ ଦୁର୍ଘଟଣାରେ ପଡ଼ିଥିଲେ । କିନ୍ତୁ ଦୁହିଁଙ୍କର କିଛି ହୋଇନି । ତେବେ ଶ୍ରୀମତୀ ଗାନ୍ଧୀ ବ୍ୟସ୍ତ ହୋଇ ପଡ଼ିଲେ ଏବଂ ସାଙ୍ଗେ ସାଙ୍ଗେ ଦିଲ୍ଲୀ ଯିବାପାଇଁ ବାହାରିଲେ ।

ଦୁଇଦିନ ପରେ ଓଡ଼ିଶାର ରାଜ୍ୟପାଳ ଶ୍ରୀ ବିଶ୍ୱମ୍ଭର ନାଥ ପାଣ୍ଡେଙ୍କ ସହ ସାକ୍ଷାତ ବେଳେ ସେ ଶ୍ରୀମତୀ ଗାନ୍ଧୀଙ୍କ ଅକାଳ ମୃତ୍ୟୁରେ କାନ୍ଦି ପକାଇ କହିଲେ ଏଠି ସେ ରାତିରେ ରହିଥିଲେ ସମ୍ଭବତଃ ଶ୍ରୀମତୀ ଗାନ୍ଧୀଙ୍କ ଗ୍ରହଦୋଷ କଟି ଯାଇଥା'ନ୍ତା । କିନ୍ତୁ ଯେତେବେଳେ ଯାହା ହେବା କଥା ତାହା ହେବ । ବିଧିର ବିଧାନକୁ କେହି ଭାଙ୍ଗି ପାରିବେ ନାହିଁ ।

ଶ୍ରୀମତୀ ଗାନ୍ଧୀଙ୍କ ସମ୍ପର୍କରେ ରାଜ୍ୟପାଳ ପାଣ୍ଡେ ଆଉ ଏକ ଗୁରୁତ୍ୱପୂର୍ଣ୍ଣ କଥା କହିଲେ । ରାଜ୍ୟପାଳ କହିଲେ ଶ୍ରୀମତୀ ଗାନ୍ଧୀ ରାଜଭବନକୁ ଫେରି ଆସିବା ପରେ ମୁଁ ତାଙ୍କୁ ପଚାରିଲି ଆପଣଙ୍କ ଏ ପ୍ରକାର ହିଂସାପୂର୍ଣ୍ଣ ମୃତ୍ୟୁକାମନା ଶୁଣି ମୁଁ ବିବ୍ରତ ହୋଇପଡ଼ିଲି । ଇନ୍ଦିରା ଗାନ୍ଧୀ ସାମାନ୍ୟ ଗମ୍ଭୀର ହୋଇ କହିଲେ ସେ ଅତ୍ୟନ୍ତ ବାସ୍ତବବାଦୀ ଓ ଜୀବନକୁ ଚିହ୍ନିଛନ୍ତି । ସେ ତାଙ୍କ ଜେଜେବାପା ମୋତିଲାଲ, ମା' କମଳା ଓ ବାପା ଜବାହରଙ୍କ ଧୀରେଧୀରେ କଷ୍ଟଦାୟକ ମୃତ୍ୟୁ ଦେଖିଛନ୍ତି । ସ୍ୱାଭାବିକ ଭାବେ ତାଙ୍କ ଗୋଡ଼ ହାତ ଚାଲୁଥିବା ସମୟରେ ସେ ମୃତ୍ୟୁବରଣ କରିବାକୁ ଚାହାନ୍ତି । ରାଜ୍ୟପାଳ କହିଲେ ମୁଁ ଯେତେବେଳେ ଶ୍ରୀମତୀ ଗାନ୍ଧୀଙ୍କୁ ଡାକ୍ତରଖାନାରେ ଦେଖିଲି ସେଇ ନିର୍ମମ ସତ୍ୟ କଥା ମୋର ମନେ ପଡ଼ିଗଲା । ସେ ଯାହା ଚାହିଁଥିଲେ ତାହାହିଁ ହୋଇଛି । ରାଜ୍ୟପାଳ ଆଖିରୁ ଅଶ୍ରୁ ପୋଛିଲେ ।

ଇନ୍ଦିରା-ସଂଜୟ-ରାଜୀବ । ଅଭୁତପୂର୍ବ ମୃତ୍ୟୁ । ସମ୍ଭବତଃ ବିଶ୍ୱ ଇତିହାସରେ ଏହାର ପଟାନ୍ତର ନାହିଁ । ଇନ୍ଦିରାଙ୍କ ପରଲୋକ ପରେ ରାଜୀବ ଗାନ୍ଧୀ ଭାରତର ସପ୍ତମ ପ୍ରଧାନମନ୍ତ୍ରୀ ହେଲେ । ଇତିହାସର ଅଦ୍ଭୁତ ଖେଳ । ଇନ୍ଦିରାଙ୍କୁ ତାଙ୍କ ସିକ୍ୟୁରିଟି ବିୟନ୍ତ ସିଂହ-ସତଓ୍ୱନ୍ତ ସିଂହ ସେମାନଙ୍କ ବନ୍ଧୁକରୁ ଗୁଳିକରି ମାରିବା ବେଳେ ରାଜୀବ ଗାନ୍ଧୀ ଥିଲେ ପଶ୍ଚିମବଙ୍ଗର ନିପଟ ମଫସଲ ଗାଁରେ । ନିର୍ବାଚନ ପ୍ରଚାର କରୁଥିଲେ । ତାଙ୍କୁ ଗୋଟିଏ ସ୍ଥାନରେ ଅଟକାଇ ଏକ ପୋଲିସ୍

ଭିତରୁ ଜଣେ ଅଫିସର ଓହ୍ଲାଇ ଏକ ପତ୍ର ଦେଲେ । ସେଥିରେ ଲେଖାଥିଲା- "There has been an accident in Prime Minister's hanse. Cancel all appointments and return to Delhi immediaheds.' ରାଜୀବ ଏବଂ ତାଙ୍କ ବନ୍ଧୁ ଏକ ମର୍ସିଡେସ୍ ଗାଡ଼ିରେ ବସି ଖୁବ୍ ଜୋର୍‌ରେ ଗାଡ଼ି ଚଳାଇଲେ । ମର୍ସିଡେସ୍ ଗାଡ଼ି ଚଳାଉଥିବା ଡ୍ରାଇଭର କାର୍ ରେଡିଓରୁ ବି.ବି.ସି. ୱାର୍ଲଡ ସର୍ଭିସ ଷ୍ଟେସନ ଲଗାଇଲା । ଦିନ ୧୦ଟା ବେଳେ ଖବର ବୁଲେଟିନ୍‌ରେ କହିଲା ଇନ୍ଦିରା ଗାନ୍ଧୀଙ୍କୁ ତାଙ୍କ ଦେହରକ୍ଷୀ ଗୁଳି କରିଛନ୍ତି ଓ ତାଙ୍କୁ AIIMSକୁ ନିଆଯାଇଛି । (The Staesman 18th Nov 1984). ଏହି ସମ୍ବାଦରେ ପୁଣି ଲେଖାଯାଇଛି ବାଟରେ ତାଙ୍କ ଗାଡ଼ିକୁ ପଶ୍ଚିମବଙ୍ଗ ପୋଲିସ୍‌ର ଏକ ହେଲିକେପ୍ଟର ଅଟକାଇ ଥିଲା । ରାଜୀବ ଏବଂ ତାଙ୍କ ବନ୍ଧୁ ସେହି ହେଲିକେପ୍ଟରରେ କଲିକତା ବିମାନ ବନ୍ଦରକୁ ଆସିଥିଲେ । ସେଠାରେ ତାଙ୍କୁ ଅପେକ୍ଷା କରିଥିବା ଇଣ୍ଡିଆନ୍ ଏୟାରଲାଇନ୍ସର ଏକ ବୋଇଂ ବିମାନ ଦିଲ୍ଲୀ ଆଣିଥିଲା । ବିମାନ କକ୍‌ପିଟ୍‌ରେ ବସିଥିବା ରାଜୀବ ଗାନ୍ଧୀ ଏୟାରକ୍ରାଫ୍ଟ ରେଡିଓରୁ ସାଢ଼େ ୨ଟାରେ ଶୁଣିଲେତାଙ୍କ ମା' ଆଉ ନାହାନ୍ତି । ସେହିଦିନ ସନ୍ଧ୍ୟା ସାଢ଼େ ୬ଟା ବେଳେ ରାଜୀବ ଗାନ୍ଧୀ ପ୍ରଧାନମନ୍ତ୍ରୀ ରୂପେ ଶପଥ ନେଲେ । ଆଉ ଏକ ଉଲ୍ଲେଖନୀୟ ଘଟଣା ହେଲା ରାଷ୍ଟ୍ରପତି ଜ୍ଞାନୀ ଜୈଲ ସିଂହ ଗତକାଲି (୨୧/୭/୮୪) ଇନ୍ଦିରାଙ୍କ ମୃତ୍ୟୁ ସମୟରେ ୟେମେନକୁ ଯାଇଥିଲେ । ସେଠାରେ ସେ ଇନ୍ଦିରାଙ୍କ ମୃତ୍ୟୁ ଖବର ଶୁଣି ଦିଲ୍ଲୀ ଫେରି ଆସିଥିଲେ । (ଷ୍ଟେଟସ୍‌ମ୍ୟାନ୍- ତା୧/୧୧/୮୪)

ଆମେ ଇତିହାସର ଏହି ଅଧ୍ୟାୟ ପାଠକବନ୍ଧୁମାନଙ୍କ ଗୋଚରାର୍ଥେ କେବଳ ଦେଲୁ । ଏଥିରେ ଆମର ସାମ୍ବାଦିକତାର ସମ୍ପର୍କ ନାହିଁ ।

## -ରାଜୀବ ଗାନ୍ଧିଙ୍କ ଶେଷ ସାକ୍ଷାତକାର-

୧୯୯୧ ମେ' ୨୦ ତାରିଖରେ ରାଜୀବ ଗାନ୍ଧୀ ନିର୍ବାଚନ ପ୍ରଚାରରେ ଭୁବନେଶ୍ୱର ଆସିଥିଲେ । ଭୁବନେଶ୍ୱର ତିନି ନମ୍ବର ୟୁନିଟ୍ କ୍ୟାପିଟାଲ୍ ହାଇସ୍କୁଲ ପଡ଼ିଆରେ ସନ୍ଧ୍ୟାରେ ବିରାଟ ଜନସଭାରେ ସେ ଭାଷଣ ଦେଉଥିଲେ । ଭାଷଣ ପ୍ରସଙ୍ଗରେ ସେ ତାଙ୍କ ମା'ଙ୍କ ଜୀବନର ସର୍ବଶେଷ ଭାଷଣର ସେଇ ବକ୍ତବ୍ୟ ଉଦ୍ଧାର କରିଥିଲେ । ସେ କହିଲେ ଇନ୍ଦିରା ଗାନ୍ଧୀ ଏଇ ଭୁବନେଶ୍ୱରରେ ଜୀବନର ଅନ୍ତିମ ଭାଷଣରେ କହିଥିଲେ ତାଙ୍କ ଶେଷ ରକ୍ତବିନ୍ଦୁ ଭାରତକୁ ଶକ୍ତିଶାଳୀ କରିବ । ସେ ତାଙ୍କ ଶେଷ ନିଶ୍ୱାସ ପର୍ଯ୍ୟନ୍ତ ଏ ଦେଶର ସେବା କରି ଯାଇଛନ୍ତି । ଇନ୍ଦିରା ଗାନ୍ଧୀ ଆଉ ନାହାନ୍ତି କିନ୍ତୁ ତାଙ୍କ ଆତ୍ମା ବଞ୍ଚି ରହିଛି । ତାଙ୍କର ଓଡ଼ିଶା ପ୍ରତି ଶ୍ରଦ୍ଧା, ପ୍ରେମ ଆଜି ମଧ୍ୟ ଆମ ଭିତରେ ରହିଛି । ରାଜୀବ ଗାନ୍ଧୀ ଭାଷଣ ଶେଷକରି ମଞ୍ଚ ଉପରୁ ଓହ୍ଲାଇ ଆସିବା ବେଳେ ମୁଁ ପାଟିକରି କହିଲି ମି. ଗାନ୍ଧୀ ଉଇ ଆର୍ ଫ୍ରମ୍ ଦି ପ୍ରେସ୍ । ଉଇ ୱାଣ୍ଟ ଟୁ ମିଟ୍ ୟୁ । ରାଜୀବ ଗାନ୍ଧୀ ମତେ ଅନେଇ କହିଲେ, ଫ୍ରେଣ୍ଡସ୍- ହାଓ କ୍ୟାନ୍ ଉଇ ମିଟ୍ ହିୟର୍ ? ପ୍ଲିଜ୍ କମ୍ ଟୁ ଗେଷ୍ଟ ହାଉସ୍ । କ୍ୟାପିଟାଲ୍‌ପଡ଼ିଆରେ ମୋ ସାଙ୍ଗରେ ସମାଜର ପ୍ରଦୋଷ ପଟ୍ଟନାୟକ ଓ ଆଉ ତିନି/ଚାରିଜଣ ସାମ୍ବାଦିକ ବନ୍ଧୁ ଥିଲେ । ମୁଁ ସମସ୍ତଙ୍କୁ ଗେଷ୍ଟ ହାଉସ୍‌କୁ ଯିବାକୁ କହିଲି । ସମସ୍ତେ ଆସିଲୁ । ଗେଷ୍ଟହାଉସ୍‌ରେ କଂଗ୍ରେସ ବାଲାଙ୍କ ପ୍ରବଳ ଭିଡ଼ । ରାଜୀବ ଗାନ୍ଧୀ ଗେଷ୍ଟ ହାଉସ୍‌ର ପୁରୁଣା ଭି.ଆଇ.ପି. ୨୦ ନମ୍ବର ସୁଇଟ୍‌ରେ ରହୁଥିଲେ । ସେତେବେଳେ ନୂଆ ବିଲ୍‌ଡିଂ ତିଆରି ହୋଇ ନଥିଲା । ଆମେ ଉପର ମହଲାକୁ ଗଲୁ । କଡ଼ା ପୋଲିସ୍ ପହରା । କାହାରିକୁ ଭିତରକୁ ଛଡ଼ା ଯାଉନଥାଏ । ଜାନକୀବାବୁ, ଗମାଙ୍ଗ ଆଦି ଭିତରକୁ ଯାଇଥା'ନ୍ତି ।

ଏ ଅବସ୍ଥା ଦେଖି ଆମ ଭିତରୁ ଚାରି/ପାଞ୍ଚଜଣ ସାମ୍ବାଦିକ ଚାଲିଗଲେ । କେବଳ ମୁଁ ଆଉ ପ୍ରଦୋଷ ପଟ୍ଟନାୟକ ରହିଲୁ । ପ୍ରଦୋଷ ମଧ୍ୟ ଦୋ ଦୋ ପାଞ୍ଚ ହେଲା । କହିଲା ସେଠି ସିନା କହିଦେଲେ ଏଠି ଦେଖା କରିବା ସମ୍ଭବ ନୁହେଁ । ମୁଁ କହିରଖେ ୧୯୯୧ରେ ମୁଁ ନ୍ୟାସନାଲ୍ ୟୁନିୟନ ଅଫ୍ ଜର୍ଣ୍ଣାଲିଷ୍ଟ(ଇଣ୍ଡିଆ)ର ସର୍ବଭାରତୀୟ

ସଭାପତି ଥିଲି । ୧୯୯୦ରୁ ୧୯୯୨ ମସିହା ପର୍ଯ୍ୟନ୍ତ ମୁଁ ଏହି ସଂସ୍ଥାର ସଭାପତି ରୂପେ କାର୍ଯ୍ୟ କରିବା ସଙ୍ଗେ ସଙ୍ଗେ ସାର୍କ ଜର୍ଣ୍ଣାଲିଷ୍ଟ କନ୍‌ଫରେନ୍ସର ସଭାପତି ମଣ୍ଡଳୀର ସଦସ୍ୟ ଥିଲି ।

ଆମେ କ'ଣ କରିବୁ ନକରିବୁ କଥାବାର୍ତ୍ତା ହେଉଛୁ । ହଠାତ୍ ରାଜୀବ ଗାନ୍ଧୀଙ୍କ ପ୍ରେସ୍ ସେକ୍ରେଟାରୀ ସୁମନ ଦୁବେ ଆମ ଆଡ଼କୁ ଆସିଲେ । ମତେ ଦେଖି ସୁମନ ଦୁବେ କହିଲେ- ମିଃ ଧଲ- ପ୍ଲିଜ୍ କମ୍ । ମୁଁ ପ୍ରଦୋଷକୁ ନେଇ କୋଡ଼ିଏ ନମ୍ବର ରୁମ୍ ଆଡ଼କୁ ଗଲି । ସୁମନ ଦୁବେ ରାଜୀବଙ୍କ ମନ୍ତ୍ରିମଣ୍ଡଳରେ ତଥ୍ୟ ଓ ବେତାର ମନ୍ତ୍ରୀ ଥିଲେ । ୧୯୯୦ ନିର୍ବାଚନ ପରେ କଂଗ୍ରେସ ଗାଦିଚ୍ୟୁତ ହେଲା ଏବଂ ଭି.ପି. ସିଂହଙ୍କ ନେତୃତ୍ୱରେ ମିଳିତ ମନ୍ତ୍ରିମଣ୍ଡଳ ଦେଶରେ ଶାସନ କଲା । ଛାଡ଼ନ୍ତୁ ସେତେବେଳେ ସୁମନ ଦୁବେ ରାଜୀବ ଗାନ୍ଧୀଙ୍କର ପ୍ରେସ ସେକ୍ରେଟାରୀ ହୋଇଥିଲେ । ସୁମନ ଦୁବେ ଅକ୍ସଫୋର୍ଡ଼ ୟୁନିଭରସିଟି ଗ୍ରାଜୁଏଟ୍ । ରାଜୀବ ଗାନ୍ଧୀଙ୍କର ଡୁନ୍ ସ୍କୁଲ ସଙ୍ଗୀ । ଆମକୁ ନେଇ ସୁମନ ଦୁବେ ଅତିଥି ଭବନରେ ୨୧ ନମ୍ବର ରୁମ୍‌ରେ ବସାଇଲେ । ସେତେବେଳେ ରାତି ସାଢ଼େ ଦଶଟା । ଆମେ ଅପେକ୍ଷା କରିଥାଉ । ଅଧଘଣ୍ଟାଏ/ ଚାଳିଶ ମିନିଟ୍ ପରେ ରାଜୀବ ଗାନ୍ଧୀ ଆସିଲେ । ସୁମନ ଦୁବେ ଆମ ପରିଚୟ କରାଇ ଦେଲେ । ମୁଁ ଏନ୍.ୟୁ.ଜେ.ର ସଭାପତି ବୋଲି ମଧ୍ୟ କହିଦେଲେ । ଆଜିଏତେ ବର୍ଷ ପରେ ମୁଁ ଯେତେବେଳେ ସେ ରାତିର କଥା ମନେ କରୁଛି ମୋ ଆଖି ଆଗରେ ରାଜୀବ ଗାନ୍ଧୀଙ୍କ ସେଇ ହସହସ ମୁହଁ ଏବଂ ନିଷ୍କପଟ କଥା ଖେଳି ଯାଉଛି । ନେହେରୁ ଗାନ୍ଧୀ ପରିବାରର ଦାୟଦ ଭାରତର ପ୍ରଧାନମନ୍ତ୍ରୀ ରୂପେ କାର୍ଯ୍ୟ କରିଥିବା ରାଜୀବ ଗାନ୍ଧୀ ପହଞ୍ଚୁ ପହଞ୍ଚୁ ସୁମନ ଦୁବେଙ୍କୁ କହିଲେ ଆରେ ଦୁବେଜୀ ହମ୍ ଲୋଗକୋ କୁଚ୍ ଦିଜିଏ । ଆଚ୍ଛା କୋଲ୍ଡ କଫି କରନେ କୋ ବୋଲିଏ । ଆମେ ଦୁଇଜଣ ବସି ତା'ପରେ କଥା ହେଲୁ । ରାଜୀବ ଗାନ୍ଧୀ ସେଦିନ କେଜାଣି କାହିଁକି ବେଶ୍ ଖୋଲା କଥାବାର୍ତ୍ତା କରୁଥିଲେ । ମୁଁ କହିଲି ଆପଣ ସାରା ଦିନ ଘୁରୁଛନ୍ତି । କ୍ଲାନ୍ତ ହୋଇ ପଡୁ ନାହାନ୍ତି । ସେ କହିଲେ ରାଜନୀତିରେ କ୍ଲାନ୍ତ ହେଲେ ଚଳିବ ନାହିଁ । ଲୋକଙ୍କର ଅନେକ ଆଶା ଭରସା ଆପଣଙ୍କ ଉପରେ । ସ୍ୱାଭାବିକ ଭାବେ ସେମାନଙ୍କ ପାଖକୁ ଯିବାକୁ ହେବ । ପ୍ରଦୋଷ ପଚାରିଲେ କେଉଁ ଜୀବନ ଆପଣଙ୍କୁ ଭଲ ଲାଗୁଛି ? ଜଣେ ପାଇଲଟ ହୋଇ ବଞ୍ଚିବା ପାଇଁ ନା ଜଣେ ରାଜନୀତିଜ୍ଞ ଭାବେ କାର୍ଯ୍ୟ କରିବା ପାଇଁ ? ରାଜୀବ ଉତ୍ତର ଦେଲେ ଜଣେ ପାଇଲଟ ଭାବେ ମୋର ବିମାନରେ ଥିବା ଯାତ୍ରୀମାନଙ୍କର ସୁରକ୍ଷା ନିର୍ଭର କରୁଥିଲା । ସେମାନଙ୍କୁ ନିରାପଦରେ ନେବା ଆଣିବା ମୋର କର୍ତ୍ତବ୍ୟ ଥିଲା । ଜଣେ ରାଜନୈତିକ ନେତା ରୂପେ ସମଗ୍ର ଦେଶବାସୀଙ୍କୁ ସୁରକ୍ଷା ଦେବା ମୋର କର୍ତ୍ତବ୍ୟ । ମୁଁ ଶାସନରେ ଥାଏ ବା ନଥାଏ ।

ମୁଁ ପଚାରିଲି ଶ୍ରୀମତୀ ଗାନ୍ଧୀ ଆପଣଙ୍କୁ ସକ୍ରିୟ ରାଜନୀତିକୁ ଆଣିବା ବେଳେ ସୋନିଆଜୀ ତା'ର ବିରୋଧ କରିଥିଲେ ବୋଲି କେତେକ ଖବର କାଗଜରେ ପ୍ରକାଶ ପାଇଥିଲା । ସେ କଥା ସତ୍ୟ ? ରାଜୀବ ଗାନ୍ଧୀ ଟିକେ ହସିଲେ । ତା'ପରେ କହିଲେ ହଁ ସତ । ସୋନିଆ ଚାହୁଁ ନଥିଲେ ମୁଁ ରାଜନୀତିକୁ ଆସେ ବୋଲି । ସେ ମୋତେ ବାରମ୍ବାର କହିଲେ ଆମେ ଭଲରେ ଅଛେ । ଶାନ୍ତିରେ ଅଛେ । ସୋନିଆ ମତେ କହିଥିଲେ ଆମେ ସାଙ୍ଗ ହୋଇ ଜୀବନ ଆରମ୍ଭ କରିଛେ । ରାଜନୀତିରେ ପଶିଲେ ତାଙ୍କ ସୁଖ-ଶାନ୍ତି ସବୁ ନଷ୍ଟ ହୋଇଯିବ । କିନ୍ତୁ ମୋତେ ଆସିବାକୁ ହେଲା । ସୋନଆଁକୁ ମୁଁ ବୁଝାଇଲି । ମା'ଙ୍କ କଥା କହିଲି । ସୋନିଆ ବୁଝିଲେ । ଆପଣ କେବେ ସକ୍ରୀୟ ରାଜନୀତିରେ ପ୍ରବେଶ କଲେ ? ରାଜୀବ କ'ଣ ଭାବିଲେ । ତା'ପରେ କହିଲେ ଠିକ୍ ତାରିଖ ମନେ ନ ପଡୁଥିଲେ ମଧ୍ୟ ୧୯୮୧ ମେ' ମାସ । କାରଣ ମୁଁ ଜୁନ୍ ମାସରେ ଆମେଥି ଉପ ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କଲି । ରାଜୀବ ଗାନ୍ଧୀ ଯାହା କହୁଥବଲେ ମୁଁ ମୋ ଡାଇରିରେ ଟିପୁଥିଲି । ପ୍ରଦୋଷ ପଟ୍ଟନାୟକଙ୍କ ପାଖରେ ମଧ୍ୟ ଥାଇପାରେ । ସେ ପୁଣି କହିଲେ ପ୍ରଥମେ ପ୍ରଥମେ

ରାଜନୀତି ମତେ ବନ୍ଦୀଶାଳା ଭଳି ଲାଗିଥିଲା । ଏହି ଆଲୋଚନା ବେଳେ କୋଲ୍ଡ କଫି ଆସିଲା । ସେତେବେଳକୁ ଅଧଘଣ୍ଟାଏରୁ ଊର୍ଦ୍ଧ୍ୱ ହୋଇଗଲାଣି । ମୁଁ କହିଲି ଆପଣଙ୍କୁ କ୍ଳାନ୍ତ ଲାଗୁଥିବ । ଆମେ ଆସୁଛୁ । ଆମକୁ ଆଶ୍ଚର୍ଯ୍ୟ କରିଦେଇ ରାଜୀବଜୀ କହିଲେ ଆରେ- ବୈଠିଏ ବୈଠିଏ, ଡୁ ୟୁ ଫିଲ୍ ବୋର୍ । ମୁଁ କହିଲି ନୋ ସାର୍ ଇଟ୍‌ଇଜ୍ ଏ ପ୍ଲିଜର ଟୁ ସିଟ୍ ଉଇଥ ୟୁ । ତାଙ୍କୁ କଥାବାର୍ତ୍ତା ପ୍ରସଙ୍ଗରେ ଶ୍ରୀମତୀ ଗାନ୍ଧୀଙ୍କ ପରେ ତାଙ୍କର ପ୍ରଧାନମନ୍ତ୍ରୀ ହେବା ସମ୍ପର୍କରେ ସୋନିଆ ଗାନ୍ଧୀ ତାଙ୍କୁ ପୁଣି ସେ ପଦ ନନେବା ପାଇଁ ପ୍ରବର୍ତ୍ତାଇ ଥିଲେ ବୋଲି ଖବର କାଗଜରେ ପ୍ରକାଶ ପାଇଥିଲା । ସେ କଥା କେତେଦୂର ସତ୍ୟ ? ରାଜୀବ ଜୀ କହିଲେ ମୁଁ ଦେଖୁଛି ମୋ ସମ୍ପର୍କରେ ଅନେକ ଖବର ରଖିଛନ୍ତି । ହଁ ଏକଥା ସତ୍ୟ । କାରଣ ସେତେବେଳେ ଅପରେସନ ବ୍ଲୁ ଷ୍ଟାରକୁ ନେଇ ଆମ ଉପରେ ଗୋଟିଏ ଶିଖ୍ ଗୋଷ୍ଠି ଉତ୍‌କ୍ଷିପ୍ତ ହୋଇଥିଲେ । ଯେଉଁଥିପାଇଁ ମା'ଙ୍କୁ ପ୍ରାଣ ଦେବାକୁ ପଡ଼ିଲା । ସେଇଥିପାଇଁ ମା'ଙ୍କ ମୃତ୍ୟୁ ପରେ ଯେତେବେଳେ ମୋତେ ପ୍ରଧାନମନ୍ତ୍ରୀ ହେବାପାଇଁ ବାଧ କରାଗଲା ସେତେବେଳେ ସୋନିଆ ମୋତେ କାନ୍ଦି କାନ୍ଦି କହିଲେ ତୁମେ ପ୍ରଧାନମନ୍ତ୍ରୀ ହେବାକୁ ମନାକର । କାରଣ ପ୍ରଧାନମନ୍ତ୍ରୀ ହେଲେ ସେମାନେ ତୁମକୁ ମାରିଦେବେ । ମୁଁ ତାଙ୍କୁ ବୁଝାଇଥିଲି । ମା' ମୋତେ ଯେଉଁ ଦାୟିତ୍ୱ ଦେଇ ଯାଇଛନ୍ତି ତାକୁ ମୋତେ ପୂର୍ଣ୍ଣ କରିବାକୁ ହେବ । I have no choice. ଯଦି କେବେ ମରିବାକୁ ହୁଏ ତେବେ ତାକୁ କେହି ଅଟକାଇ ପାରିବେ ନାହିଁ । ରାଜୀବ ହସି ହସି କହିଲେ ମୁଁ ପ୍ରଧାନମନ୍ତ୍ରୀ ହୋଇ ପାଞ୍ଚବର୍ଷ ରହିଲି । ଏବେ ଥରେ ସୋନିଆଙ୍କୁ ତାଙ୍କ ପୂର୍ବ ଆଶଙ୍କା କହି ମୁଁ ହସିଥିଲି ।

ରାଜୀବ ଗାନ୍ଧୀ ସେଦିନ ଏତେ କଥା ଆମ ସମ୍ମୁଖରେ କହିଥିଲେ ସେ କଥା ଅନେକ ବିଶ୍ୱାସ କରି ନପାରନ୍ତି । ମୁଁ ତା'ପରଦିନ ସ୍ୱରାଜ୍ୟରେ ଏହି ଆଲୋଚନା କଥା ଲେଖିଥିଲି ବିସ୍ତୃତଭାବେ । କିନ୍ତୁ କିଏ ଜାଣିଥିଲା ସେହିଦିନ ମେ' ୨୧ ତାରିଖ ସନ୍ଧ୍ୟାରେ ତାମିଲନାଡୁର ଶ୍ରୀପେରୁମ୍ବୁଦୁର ଜନସଭାରେ ଭାଷଣ ଦେବାକୁ ଯିବାବେଳେ ମଞ୍ଚ ତଳେ ତାଙ୍କୁ ଧନୁ ନାମରେ ଜଣେ ତାମିଲ୍ ଯୁବତୀ ଫୁଲମାଳ ଦେଲେ । ତା'ପରେ ନଇଁପଡ଼ି ତାଙ୍କ ପାଦଧୂଳି ନେବା ବାହାନା କରି ତା' ସାଲ୍‌ୱାର କମିଜ୍ ଭିତରେ ଥିବା ଏକ ବୋମାର ସୁଇଚ୍ ଟିପିଦେଇ ସେ ନିଜେ, ରାଜୀବ ଗାନ୍ଧୀ ଓ ଆଉ ଅଠର ଜଣଙ୍କ ପ୍ରାଣ ନେଇଗଲା । ପୃଥିବୀ ପୃଷ୍ଠରୁ ଜଣେ ସମ୍ବେଦନଶୀଳ ନେତାଙ୍କୁ ଚିରଦିନ ପାଇଁ ଶେଷକରି ଦେଲା ।

ଦୂରଦର୍ଶନରେ ଏ ସମ୍ବାଦ ଦେଖି ମୁଁ ହତ୍‌ବାକ ହୋଇଗଲି । ଗତ ରାତିର ଘଟଣା ମନେ ପଡ଼ିଗଲା । ସୌମ୍ୟଦର୍ଶନ ରାଜୀବ ଗାନ୍ଧୀଙ୍କ କଥା ସବୁ କାନରେ ଢାଇ ଢାଇ ବାଜି ଉଠିଲା । ସେ କହିଥିଲେ 'ସୋନିଆ ଯେଉଁ ଭୟ କରିଥିଲେ ମୋର ପାଞ୍ଚବର୍ଷର ପ୍ରଧାନମନ୍ତ୍ରୀତ୍ୱ ସମୟରେ କିଛି ହେଲା ନାହିଁ ବୋଲି କହି ତାଙ୍କୁ ଥରେ ଉପହାସ କରିଥିଲି ।' କିନ୍ତୁ କିଏ ଜାଣିଥିଲା ତାଙ୍କର ମୃତ୍ୟୁ ଏତେ ପାଖରେ । ଆଉ ମାତ୍ର ସତର/ ଅଠର ଘଣ୍ଟା ପରେ । ଭୁବନେଶ୍ୱରରେ ତାଙ୍କର ଶେଷ ରାତ୍ରୀଯାପନ । ବିଧିର ଅଦ୍ଭୁତ ବିଧାନ । ରାଜୀବଙ୍କ ପାଇଁ ସ୍ୱତଃ ମୋ ଆଖିରୁ ଦି'ଧାର ଲୁହ ବୋହି ଆସିଲା । ହଠାତ୍ ଟେଲିଫୋନ୍‌ଟା ବାଜି ଉଠିଲା । ମୋ ସ୍ତ୍ରୀ ଟେଲିଫୋନ୍‌ଟା ଉଠାଇ କଥାବାର୍ତ୍ତା ହୋଇ କହିଲେ ଆଜକାଲ୍‌ରୁ ଫୋନ୍ ଆସିଛି । ଫୋନ୍ ଧରିଲି । ଅନ୍ୟପଟୁ ସମ୍ପାଦକ ଅଶୋକ ଦାଶଗୁପ୍ତଙ୍କ ଗଳା । ମିଃ ଧଲ- ଶୁନେଛେନ୍‌ତ । ରାଜୀବ ଗାନ୍ଧୀ ମାରାଗେଛେନ୍ । ପ୍ରାଇମ ମିନିଷ୍ଟର ଚନ୍ଦ୍ର ଶେଖର ଏଖନ ଭୁବନେଶ୍ୱରତେ ଆଛେନ୍ । ତାକେ ସାକ୍ଷାତ କରେ ଓର ମତାମତଟା ପାଠାନ୍ । ହାଁ ବିଜୁ ପଟ୍ଟନାୟକ ଏକକାଳେ ଇନ୍ଦିରା ଗାନ୍ଧୀର ଖୁବ୍ କାଛେର ଲୋକ ଛିଲେ । ଯା' ଶୁନେଛି ଭନି ରାଜୀବ ଆର ସଞ୍ଜୟ କେ ନିଏ ଲଣ୍ଡନ ତେ ଆଡ୍‌ମିଶନ କରିଏ ଛିଲେନ୍ । ଓର ଏକଟା ମତାମତ ବୁଝେ ପାଠାନ୍ । ଫୋନ୍ କଟିଗଲା ।

ମୁଁ ରାଜଭବନକୁ ରାଜ୍ୟପାଳଙ୍କ ଏ.ଡି.ସି.କୁ ଫୋନ୍ କଲି । ଓଡ଼ିଶା କ୍ୟାଡରର ଆଇ.ପି.ଏସ୍. ଅଫିସର । ରାଜ୍ୟପାଳ ଥିଲେ ଯଜ୍ଞଦତ୍ତ ଶର୍ମା । ଏବଂ ମୋର ଯେତେଦୂର ମନେପଡୁଛି ତାଙ୍କ ପର୍ସନାଲ୍ ସେକ୍ରେଟାରୀ ଥିଲେ ଦୁବେ ନାମରେ ଜଣେ ଅଫିସର । ଏ.ଡି.ସି.କୁ ନପାଇ ଦୁବେଙ୍କୁ ଫୋନ୍ କଲି । ସେ କହିଲେ ପ୍ରାଇମ ମିନିଷ୍ଟର ମିଟିଂକୁ ଯାଇଛନ୍ତି । ଫେରିବେ ରାତି ନ'ଟା ବେଳକୁ । ମୁଁ ତାଙ୍କୁ ଅନୁରୋଧ କଲି ମୋତେ ଟିକେ ରାଜଭବନ ଭିତରକୁ ଯିବା ପାଇଁ ସୁବିଧା କରିଦେବାକୁ । ଯାହାହେଉ ମୁଁ ସାଢ଼େ ଆଠଟା ସୁଦ୍ଧା ରାଜଭବନରେ ପହଞ୍ଚି ଚନ୍ଦ୍ରଶେଖରଙ୍କୁ ଅପେକ୍ଷା କଲି । ଚନ୍ଦ୍ରଶେଖର ଠିକ୍ ୯ଟା ୧୫ ମିନିଟ୍‌ରେ ଫେରିଲେ । ମୁଁ ତାଙ୍କୁ ରାଜଭବନ ଲାଉଞ୍ଜ ମୁହଁରେ ଭେଟି ରାଜୀବ ଗାନ୍ଧୀଙ୍କ ସମ୍ପର୍କରେ ତାଙ୍କ ମତାମତ ପଚାରିଲି । ସେ ଠିଆ ହୋଇ ପଡ଼ିଲେ ।

ଏଇମିତି ଚନ୍ଦ୍ରଶେଖର ଖୁବ୍ ସାଧା ସିଧା । ସେ ମୋ ମୁହଁକୁ ଚାହିଁଲେ । କହିଲେ What should, I say. It is a great loss to the country. Rajib Gandhi was a true democrat and morever a man of the masses. It is beyond my words what a loss the country has suffered. I am recalls stunned. ମୁଁ ପଚାରିଲି ଆପଣ କେତେବେଳେ ତାଙ୍କ ମୃତ୍ୟୁ ଖବର ଶୁଣିଲେ ? ସେ କହିଲେ ଯବ୍ ମୈଁ ୟହାଁ ଏୟାରପୋର୍ଟ ମେ ପହୁଁଞ୍ଚା । ତା'ପରେ ସେ ଚାଲି ଯାଉ ଯାଉ ପୁଣି ଫେରି ପଡ଼ି କହିଲେ It is because of his help I could be the prime minister ଚନ୍ଦ୍ରଶେଖର ଭିତରକୁ ଚାଲିଗଲେ । ସେହି ରାତିରେ ଚନ୍ଦ୍ରଶେଖର ଦିଲ୍ଲୀ ଫେରିଗଲେ । ମୁଁ ସେଇ ରାଜଭବନରୁ ଆଜ୍‌କାଲ୍‌କୁ ଚନ୍ଦ୍ରଶେଖରଙ୍କ ପ୍ରତିକ୍ରିୟା ଟେଲିଫୋନ୍‌ରେ ଜଣାଇ ଦେଲି ।

ସେଇଠୁ ମୁଁ ସିଧା ସ୍କୁଟର ଛୁଟାଇଲି ନବୀନ ନିବାସକୁ । ନବୀନ ନିବାସରେ ପହଞ୍ଚି ଶୁଣିଲି ବିଜୁବାବୁ ଯାଇଛନ୍ତି ଭଞ୍ଜନଗର ବୁଗୁଡ଼ା । ଫେରୁଫେରୁ ରାତି ହେବ । ସେଇଠୁ ବିଜୁବାବୁଙ୍କ ଅଫିସ୍ ଫୋନ୍‌ରୁ ଆଜ୍‌କାଲ୍‌କୁ ଫୋନ୍ କରି କହିଲି ବିଜୁବାବୁ ଫେରୁ ଫେରୁ ରାତି ବାରଟା ବାଜିପାରେ । ସେ ପଟୁ ଉତ୍ତର ଆସିଲା ରାତ ତିନିଟେ ପର୍ଯ୍ୟନ୍ତ ଆମରା ଅଛି । ଓର ମଧ୍ୟେ ଦେଖୁନ୍ । ମୁଁ ଘରକୁ ଫେରି ଆସିଲି । ବିଜୁବାବୁ ସେତେବେଳେ ଓଡ଼ିଶାର ମୁଖ୍ୟମନ୍ତ୍ରୀ । ମୁଁ ବାରମ୍ବାର ଘରୁ ଫୋନ୍ କରି ଖବର ନେଉଥେ । ରାତି ସାଢ଼େ ୧୧ଟା ବେଳକୁ ବିଜୁବାବୁଙ୍କ ଖାସ୍ ପିଅନ୍ ବୀର କହିଲା ପଳେଇ ଆସନ୍ତୁ । ବାବୁ ଖଣ୍ଡଗିରିରେ ପହଞ୍ଚିଲେଣି । ମୁଁ ସାଙ୍ଗେ ସାଙ୍ଗେ ସ୍କୁଟର ନେଇ ନବୀନ ନିବାସରେ ପହଞ୍ଚିଲି । ରାତି ଠିକ୍ ବାରଟା ବାଜିବାକୁ ୫ ମିନିଟ୍ ଅଛି ବିଜୁବାବୁଙ୍କ କଳିଙ୍ଗ ରଥ ତାଙ୍କ ପୋର୍ଟିକୋରେ ଲାଗିଲା । ମତେ ସେଠି ଏତେ ରାତିରେ ଦେଖି ପଚାରିଲେ କିରେ ଏତେ ରାତିରେ କୁଆଡ଼େ ? ମୁଁ ରାଜୀବ ଗାନ୍ଧୀଙ୍କ ମୃତ୍ୟୁ ଖବର ଦେଇ ତାଙ୍କ ପ୍ରତିକ୍ରିୟା ଜାଣିବାକୁ ଚାହିଁଲି । ସେ ଠିଆ ହୋଇ ପଡ଼ିଲେ । କହିଲେ, Is it true ? ମୁଁ କହିଲି ଆଜ୍ଞା । ଚନ୍ଦ୍ରଶେଖରଙ୍କ କଥା ତାଙ୍କୁ କହିଲି । ସେ କହିଲେ, 'ଚନ୍ଦ୍ରଶେଖର ରାଜୀବକୁ କ'ଣ ଜାଣିଛି ? ରାଜୀବ- ସଞ୍ଜୟ ମୋର ପୁଅ ଭଳିଆ ଥିଲେ । ବିଜୁବାବୁ ଉପର ମହଲାକୁ ଯିବା ବାଟରେ କହି କହି ଯାଉଥା'ନ୍ତି ନେହେରୁଙ୍କ ନିର୍ଦ୍ଦେଶରେ ମୁଁ ରାଜୀବକୁ ଲଣ୍ଡନର କ୍ୟାମ୍ବ୍ରିଜ୍‌ର ଟ୍ରିନିଟ୍ କଲେଜରେ ନାଁ ଲେଖାଇବା ପାଇଁ ନେଇଥିଲି । ଅନେକ ଘଟଣା ମୋ ମନକୁ ଆସୁଛି । I am shocked and stunned. ଏତେ ପିଲା ବୟସରେ ସେ ଚାଲିଗଲା । ସେ ଠିକ୍ ନେହେରୁଙ୍କ ଢାଞ୍ଚାରେ ନିଜକୁ ଗଢ଼ି ଆଣୁଥିଲା । ଈଶ୍ୱର ତା' ଆତ୍ମାକୁ ଶାନ୍ତି ଦିଅନ୍ତୁ । "Today is really a bad day for the country." ବିଜୁବାବୁ ଆଉ କିଛି କହି ପାରିଲେ ନାହିଁ । ତାଙ୍କ ଆଖି କିପରି ଛଳଛଳ ହୋଇ ଆସିଲା । ସେ ଉପର ମହଲାକୁ ଗଲେ । ମୁଁ ଫେରିଆସି ତାଙ୍କ ତଳ ଅଫିସ୍‌ଘରୁ ଆଜ୍‌କାଲ୍‌କୁ ଫୋନ୍ କରି ବିଜୁବାବୁଙ୍କ ପ୍ରତିକ୍ରିୟା ଜଣାଇ ଦେଲି ।

ପରଦିନ ଆଜକାଲ୍(ମେ୨୨-୧୯୯୧)ରେ ପ୍ରଥମ ପୃଷ୍ଠାରେ ଏହି ଦୁଇ ବିଖ୍ୟାତ ନେତାଙ୍କ ପ୍ରତିକ୍ରିୟା ପ୍ରକାଶ ପାଇଥିଲା ।

ଆଜି ଏହି ସ୍ମୃତି ରୋମନ୍ଥନ କଲାବେଳେ ସାମ୍ବାଦିକ ଜୀବନର ଏହି ରୋମାଞ୍ଚକର ଅଧ୍ୟାୟ ମନକୁ ଆଚ୍ଛନ୍ନ କରି ପକାଏ ଏବଂ ଚିନ୍ତାକରେ ପ୍ରକୃତରେ ଜୀବନର ଏହି ମୁହୂର୍ତ୍ତଗୁଡ଼ାକ ଆଉ ଫେରି ଆସନ୍ତା କି ?

## -ଓଡିଆ ଚଳଚ୍ଚିତ୍ରର ସୁବର୍ଣ୍ଣ ଜୟନ୍ତୀ-

ତିନି ପ୍ରଧାନମନ୍ତ୍ରୀଙ୍କ ସମ୍ପର୍କରେ ସେମାନଙ୍କ ଶେଷ ଜୀବନର ସମସ୍ତ ଘଟଣା ବର୍ଣ୍ଣନା କରିବାର ଏକମାତ୍ର ହେତୁ ହେଲା ଜଣେ ସାମ୍ବାଦିକ ରୂପେ ସାଧାରଣ ଲୋକଙ୍କୁ ଅବଗତ କରିବା । ଘଟଣାର ସ୍ଥାନ କାଳ ପାତ୍ର ଯାହା ସବୁ ମୁଁ ଲିପିବଦ୍ଧ କରିଛି ତାହା ସତ୍ୟ । କାରଣ ମୁଁ ନିଜେ ବିଭିନ୍ନ ସ୍ଥାନରେ ଉପସ୍ଥିତ ରହିଥିଲି । ତେବେ ଇଏ ଗଲା ରାଜନୀତିକ ଘଟଣାବଳୀ । ଏହା ମଧ୍ୟରେ ଆଉ ଅନେକ ଘଟଣା ଘଟି ଯାଇଛି । ତା' ହେଲା ମୋର ଭୁବନେଶ୍ୱର ଆସିବା ପରେ ଏଠାରେ ଏକାଧିକ ଅନୁଷ୍ଠାନ ସହ ସମ୍ପର୍କ ସ୍ଥାପିତ ହେଲା । ଏଥିମଧ୍ୟରୁ ଗୋଟିଏ ହେଲା ବାପୁଜୀ ନଗର ମାରୁଓ୍ୱାଡ଼ି ହୋଟେଲ ନିକଟରେ ବିଜେବି କଲେଜ, ଭେଟେରିନାରୀ କଲେଜ, କୃଷି କଲେଜରେ ପଢୁଥିବା କିଛି ଛାତ୍ର ବନ୍ଧୁ, ବ୍ୟାଙ୍କରେ, ସେକ୍ରେଟେରିଏଟ୍‌ରେ ଚାକିରି କରୁଥିବା ବ୍ୟବସାୟ କରୁଥିବା କିଛି ଯୁବବନ୍ଧୁ ସଂଖ୍ୟାରେ ପ୍ରାୟ କୋଡ଼ିଏରୁ ବାଇଶ ହେବେ ସଂସ୍କୃତି ନାମରେ ଏକ ଅନୁଷ୍ଠାନ ଗଠନ କଲେ । ଦିନେ ସକାଳୁ ସକାଳୁ ସେମାନଙ୍କ ମଧ୍ୟରୁ ପାଞ୍ଚଜଣ ମୋ ପାଖକୁ ଆସି କହିଲେ ଆମ ଅନୁଷ୍ଠାନର ଆପଣ ସଭାପତି ହେବେ । ମୁଁ ରାଜି ହେଲି । ଅନୁଷ୍ଠାନ ବିଧିବଦ୍ଧ ଭାବେ ଚାଲିଲା । ମଝିରେ ମଝିରେ ରବିନ୍ଦ୍ର ମଣ୍ଡପରେ ଅନୁଷ୍ଠାନ ପକ୍ଷରୁ ବିଭିନ୍ନ ଜନହିତକର କାର୍ଯ୍ୟ ପାଇଁ ଚାରିଟି ସୋ' ହୁଏ । ମୋର ଠିକ୍ ତାରିଖ ମନେ ପଡୁନଥିଲେ ମଧ୍ୟ ସମ୍ଭବତଃ ୧୯୭୮ ବା ୭୯ରେ ଧାନବାଦ କୋଇଲା ଖଣିରେ କୋଇଲା ଧସ ପଡ଼ି ପ୍ରାୟ ପାଞ୍ଚଶହରୁ ଊର୍ଦ୍ଧ୍ୱ ଶ୍ରମିକ ମରିଗଲେ । ସେମାନଙ୍କ ପରିବାରଙ୍କୁ ସାହାଯ୍ୟ ପାଇଁ ଚାରିଆଡୁ ନିବେଦନ ହେଲା । ଆମ ସମସ୍ତେ ଓଡ଼ିଆ ଚଳଚ୍ଚିତ୍ର ତାରକାମାନଙ୍କୁ ନେଇ ଦୁଇଦିନିଆ ଚାରିଟି ସୋ' ରବିନ୍ଦ୍ର ମଣ୍ଡପରେ ମଞ୍ଚସ୍ଥ କଲୁ । ଟିକେଟ ପ୍ରୁସେଲ୍ କଲୁ । ମୋର ସ୍ପଷ୍ଟ ମନେ ଅଛି ସେତେବେଳେ ବୁଲିବୁଲି ଆମେ ପାଖାପାଖି କୋଡ଼ିଏ ହଜାର ଟଙ୍କାର ଟିକେଟ ବିକ୍ରି କରିଥିଲୁ । ସେଇ ଅର୍ଥକୁ ମଞ୍ଚରେ ଆମେ ମୁଖ୍ୟମନ୍ତ୍ରୀ ନୀଳମଣି ରାଉତରାୟଙ୍କ ହାତରେ ଦେଇଥିଲୁ । ଓଡ଼ିଶାରେ ସମ୍ଭବତଃ ତାହାହିଁ ପ୍ରଥମ ବଡ଼ ଧରଣର ସାହାଯ୍ୟ । ସବୁ ଖବରକାଗଜରେ ଫଟୋ ସହ ବିସ୍ତୃତ ବିବରଣୀ ପ୍ରକାଶ ପାଇଥିଲା । ଏହି ଅନୁଷ୍ଠାନ ପକ୍ଷରୁ ୧୯୮୪ ମସିହା ଏପ୍ରିଲ ମାସରେ ସୂଚନା ଭବନରେ ଓଡ଼ିଆ ଚଳଚ୍ଚିତ୍ରର ସୁବର୍ଣ୍ଣ ଜୟନ୍ତୀ ଉତ୍ସବ ପାଳନ କରାଯାଇଥିଲା । ସେତେବେଳେ ଓଡ଼ିଆ ଚଳଚ୍ଚିତ୍ର ଶିଳ୍ପର ଏହା ହିଁ ସବୁଠାରୁ ବଡ଼ ଅନୁଷ୍ଠାନ ଥିଲା । ଏହି ଉତ୍ସବକୁ ଓଡ଼ିଶାର ସମସ୍ତ ଅଭିନେତା-ଅଭିନେତ୍ରୀ ଆସିଥିଲେ । ମୋର ଅଧ୍ୟକ୍ଷତାରେ ଗଠିତ ଏକ କମିଟିରେ ଆମ ଅନୁଷ୍ଠାନର ସଦସ୍ୟଙ୍କ ମଧ୍ୟରୁ କିଛି ବିଶିଷ୍ଟ ସଦସ୍ୟଙ୍କ ସମେତ କିଛି ଚିତ୍ର ସାମ୍ବାଦିକ ସଦସ୍ୟ ଥିଲେ । ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଅନୁଷ୍ଠାନକୁ ଉଦ୍‌ଘାଟନ କରିଥିଲେ । ତତ୍‌କାଳୀନ ଅର୍ଥମନ୍ତ୍ରୀ ରଘୁନାଥ ପଟ୍ଟନାୟକ ବିଶିଷ୍ଟ ଅତିଥି ରୂପେ ଯୋଗ ଦେଇଥିଲେ । ସୂଚନା ଭବନ ଭିତରେ ବାହାରେ ଲୋକାରଣ୍ୟ । ବହୁ ବିଶିଷ୍ଟ ଲୋକ ସ୍ଥାନ ନପାଇ ଫେରିଗଲେ । କେହି କେହି ଠିଆ ହୋଇ ମଧ୍ୟ ଅନୁଷ୍ଠାନ ଦେଖିଲେ । ଏହି ଅନୁଷ୍ଠାନରେ ପ୍ରାୟ ଷାଠିଏ ଜଣ ସିନେ କଳାକାରଙ୍କୁ ସିନେ କ୍ରିଟିକ୍ ଆୱାର୍ଡ଼ ଦେଇ ସମ୍ବର୍ଦ୍ଧିତ କରାଯାଇଥିଲା । ସମ୍ବର୍ଦ୍ଧନୀୟ ଫଳକ ଆମେ କଲିକତାରେ ଏକ ବିଖ୍ୟାତ ଆର୍ଟିଷ୍ଟଙ୍କୁ ନିର୍ମାଣ କରିବାକୁ ଅନୁରୋଧ କରିଥିଲୁ । ପ୍ରତ୍ୟେକ ଫଳକ ଥିଲା କାଠରେ ଏକ ନାରୀ ମୂର୍ତ୍ତି । ପ୍ରତ୍ୟେକ ଫଳକ ପାଇଁ ସେତେବେଳେ ପାଞ୍ଚଶହ ଟଙ୍କା ଲେଖାଏଁ ପଡ଼ିଥିଲା । ଫଳକ ତିଆରି ବେଳେ ଏକ ମଜା କଥା ଘଟିଥିଲା । ଦି'ଜଣ ପିଲା ପ୍ରଥମେ କଲିକତା ଯାଇ ବରାଦ ଦେଲେ । ତା'ପରେ ଆମର ପ୍ରତିଦିନ ଯେତିକି ଚାନ୍ଦା ଆଦାୟ ହେଉଥାଏ ତାକୁ ନେଇ ପରଦିନ ଆଉ ଜଣେ ପିଲା କଲିକତା

ଯାଏ । ଏଇମିତି ପ୍ରାୟ ଏହା ତିଆରି ଶେଷ କରି ଆଣିବା ପାଇଁ କୋଡ଼ିଏ/ ବାଇଶି ଦିନ ସମୟ ଲାଗିଥିଲା ଓ ସାତଜଣ ପିଲା କଲିକତା ଯାଇଥିଲେ ଏହା ଆଣିବା ପାଇଁ । ଯେଉଁମାନଙ୍କୁ ସମ୍ବର୍ଦ୍ଧନା କରାଯାଇଥିଲା ସେମାନଙ୍କ ମଧ୍ୟରେ ଥିଲେ ଗୋବିନ୍ଦ ତେଜ, ନିତାଇ ପାଲିତ, ଧୀର ବିଶ୍ୱାଳ, ବାଳକୃଷ୍ଣ ଦାଶ, ହେମନ୍ତ ଦାସ, ପ୍ରଶାନ୍ତ ନନ୍ଦ, ଅକ୍ଷୟ ମହାନ୍ତି, ପ୍ରଫୁଲ କର, ମହାଶ୍ୱେତା, ଅପରାଜିତା, ଜୟା ସ୍ୱାମୀ, ସାଧୁ ମେହେର, ଦେବଦାସ ଛୋଟରାୟ, ଶ୍ରୀରାମ ପଣ୍ଡା, ଉତ୍ତମ ମହାନ୍ତି, ମହମ୍ମଦ ମହସିନ୍, ପାର୍ବତୀ ଘୋଷ, ଗୌର କିଶୋର ଘୋଷ, ସାମୁଏଲ୍ ସାହୁ(ବାବି), ପ୍ରିୟନାଥ ମିଶ୍ର, ଦୁର୍ଲଭ ସିଂହ, ମନସ୍ୱୀନୀ ରାୟ, ନିରଦ ମହାପାତ୍ର, ମନମୋହନ ମହାପାତ୍ର ପ୍ରମୁଖ । ସମସ୍ତଙ୍କ ନାଁ ଏବେ ମନେ ନାହିଁ । ଏ ସମସ୍ତଙ୍କ ଫଟୋ ଏବେ ସୁଦ୍ଧା ମୋ ପାଖରେ ଅଛି । ଏଥିରୁ ଦୁଇ/ତିନୋଟି ଦେଲୁ ।

## -ଜୀବନର ଏକ ନୂତନ ଅଧ୍ୟାୟ-

ଉଣେଇଶ ଶହ ନବେ ମସିହା ଅଗଷ୍ଟ ପନ୍ଦର ତାରିଖ । ଆଜି ଷୋଳବର୍ଷ ପରେ ଏ ଦିନ, ତାରିଖ, ମାସ ଆଉ ବର୍ଷ ଆମର ମନେ ନଥା'ନ୍ତା । ମାତ୍ର ଜୀବନରେ ଯେଉଁ କେତୋଟି ଦିନ ଏଭଳି ସ୍ମରଣୀୟ ହୋଇ ରହେ ଯାହା ସମଗ୍ର ଜୀବନକାଳ ମଧ୍ୟରେ ଏକ ବିଶେଷ ଘଟଣାର ସାକ୍ଷୀ ହୋଇ ରହିଯାଏ । ସେଦିନ ଆମେ ଘରେ ବସିଛୁ । ସମୟ ମଧ୍ୟାହ୍ନ ବାରଟା ସାଢ଼େ ବାରଟା । ସକାଳୁ ଗୋଟିଏ ସ୍ଥାନରେ ମୁଖ୍ୟ ଅତିଥି ହୋଇ ଜାତୀୟ ପତାକା ଉତ୍ତୋଳନ କରି ଘରକୁ ଫେରି ଗାଧୁଆ ପାଧୁଆ ଶେଷ କରି କଫି ପିଉଛୁ । ହଠାତ୍ ଟେଲିଫୋନ୍ ରିଂ ହେଲା । ଉଠାଇ ନେଇ ହ୍ୟାଲୋ କହିବା ପରେ ସେ ପଟରୁ ଯାହାର କଣ୍ଠ ଶୁଣିଲି ସେଥିରେ ଆଶ୍ଚର୍ଯ୍ୟ ହେଲି । ଧଲ୍ ସାହେବ, କ୍ୟା କରତେ ହୈ ? ଆମେ ଅନ୍ଦାଜ କଲୁ ସମ୍ଭବତଃ ଗୁପ୍ତାଜୀ । ଆମେ ଉତ୍ତର ଦେଲୁ ଗୁପ୍ତାଜୀ କ୍ୟା ବାତ୍ ହୈ । ଆପ୍ କହାଁସେ ? ସେ ପଟୁ ପୁଣି କଣ୍ଠସ୍ୱର । ଆପ୍ ଜଲ୍‌ଦି ଭୁବନେଶ୍ୱର ଏୟାରପୋର୍ଟ ଭି.ଆଇ.ପି. ଲାଉଞ୍ଜ୍ କୋ ଚଲେ ଆଇଏ । ଆମେ ଆହୁରି ଆଶ୍ଚର୍ଯ୍ୟ ହୋଇ ପଚାରିଲୁ What's the matter. Are you in Bhubaneswar ? Then came down to my house । ଗୁପ୍ତାଜୀ କହିଲେ ମୋ ସାଙ୍ଗରେ ରାଜେନ୍ଦ୍ର ପ୍ରଭୁ ଅଛନ୍ତି । ଆମେ ୨.୩୦ ଫ୍ଲାଇଟ୍‌ରେ କଲିକତା ଫେରିଯିବୁ । କଲିକତା ଫ୍ଲାଇଟ୍ ଭାଇଜାଗରୁ ଆସି କଲିକତା ଯିବ । ଆପଣ ଶୀଘ୍ର ଅସନ୍ତୁ । ବଡ଼ ଜରୁରୀ କାମ । ପାରିବେ ଯଦି ନାରାୟଣ ରଥଙ୍କୁ ସାଙ୍ଗରେ ନେଇ ଆସନ୍ତୁ । ଆମେ କହି ରଖୁ । ଏ ବାର୍ତ୍ତାଳାପ ଯିଏ ଆମ ସାଙ୍ଗରେ କରୁଥିଲେ ସେ ହେଉଛନ୍ତି ଶ୍ରୀ କେ.ଏନ୍. ଗୁପ୍ତା । ସେତେବେଳେ ଇକୋନୋମିକ୍ ଟାଇମ୍ସର ଦିଲ୍ଲୀ ଆବାସିକ ସମ୍ପାଦକ । ଆଉ ତାଙ୍କ ସାଙ୍ଗରେ ଯିଏ ଥିଲେ ରାଜେନ୍ଦ୍ର ପ୍ରଭୁ । ହିନ୍ଦୁସ୍ଥାନ ଟାଇମ୍ସର ଦିଲ୍ଲୀ ବ୍ୟୁରୋ ମୁଖ୍ୟ । ସାମ୍ବାଦିକମାନଙ୍କର ସର୍ବଭାରତୀୟ ଅନୁଷ୍ଠାନ ନ୍ୟାସନାଲ୍ ୟୁନିୟନ ଅଫ୍ ଜର୍ଣ୍ଣାଲିଷ୍ଟ(ଇଣ୍ଡିଆ)ର ଯଥାକ୍ରମେ ସେକ୍ରେଟାରୀ ଜେନେରାଲ୍ ଓ ସଭାପତି । ଦୁହେଁ ଭାରତବର୍ଷର ବିଖ୍ୟାତ ସାମ୍ବାଦିକ । ହଠାତ୍ ଏ ଦୁହେଁ ଭୁବନେଶ୍ୱର ବିମାନ ଘାଟିରେ ପହଞ୍ଚି ଆମକୁ ଡାକିବା ଏବଂ ନାରାୟଣ ରଥ(ସମାଜର ଭୁବନେଶ୍ୱର ପ୍ରତିନିଧି ଓ ଓଡ଼ିଶା ୟୁନିୟନ ଅଫ୍ ଜର୍ଣ୍ଣାଲିଷ୍ଟର ସଭାପତି)ଙ୍କୁ ସାଙ୍ଗରେ ନେଇ ସେମାନଙ୍କୁ ଦେଖା କରିବାର କାରଣ ନିଛକ ସୌଜନ୍ୟ ବାର୍ତ୍ତାଳାପ ବୋଲି ଧରିନେଲି । ନାରଣ ବାବୁ ଫୋନ୍ କଲି । ସେ ଘରେ ଥିଲେ । ତାଙ୍କୁ ଗୁପ୍ତାଜୀ ଆଉ ମିଃ ପ୍ରଭୁଙ୍କ କଥା କହିଲି । ସେ କହିଲେ ତୁମେ ଆସ- ମୁଁ ପ୍ରସ୍ତୁତ ହେଉଛି । ଆମେ ଅଧଘଣ୍ଟାକ ମଧ୍ୟରେ ଏୟାରପୋର୍ଟରେ ପହଞ୍ଚିଲୁ । ମିଃ ଗୁପ୍ତା ଆଉ ମିଃ ପ୍ରଭୁ ଭି.ଆଇ.ପି. ଲାଉଞ୍ଜରେ ଆମକୁ ଅପେକ୍ଷା କରିଥିଲେ । ଆମକୁ ଦେଖି ଖୁସି ହେଲେ । ଆମେ ପଚାରିଲୁ ହଠାତ୍ ଏଠି କିପରି ? ମିଃ ପ୍ରଭୁ କହିଲେ We came all the way only to meet you. ଆମେ ଆହୁରି ଆଶ୍ଚର୍ଯ୍ୟ ହେଲୁ । ଏନ୍.ୟୁ.ଜେ. (ଆଇ)ର ଆମେ ସେତେବେଳେ ବରିଷ୍ଠ ଉପସଭାପତି । ଦୁଇଟି ଟର୍ମ ଆମେ ଉପସଭାପତି । ତେଣୁ ଦୁହିଁଙ୍କ ସହ ଆମର ଘନିଷ୍ଠତା

ଅନେକ ବର୍ଷ ଧରି । ୧୯୭୨ ମସିହାରେ ଏନ୍.ୟୁ.ଜେ. ଗଠନ ହେବା ପରଠାରୁ ଆମେ ପରସ୍ପର ସହ ବେଶ୍ ଘନିଷ୍ଠ । ଗୁପ୍ତାଜୀ ତାଙ୍କ ବ୍ରିଫ୍‌କେଶ୍‌ରୁ ଗୋଟିଏ ଫର୍ମ ବାହାର କଲେ । କହିଲେ ଯାକୁ ପଢ଼ି ଦସ୍ତଖତ କରନ୍ତୁ । ଆମେ ଦେଖିଲୁ ଯେଉଁଠି ଗୁପ୍ତାଜୀ ଆଙ୍ଗୁଠି ଦେଖାଇ ଦସ୍ତଖତ ଦେବାକୁ କହିଲେ ସେ ଫର୍ମଟି ହେଉଛି ଏନ୍.ୟୁ.ଜେ.(ଆଇ)ର ସର୍ବଭାରତୀୟ ସଭାପତି ପଦ ପାଇଁ ପ୍ରାର୍ଥୀପତ୍ର ଫର୍ମ । ଆମେ ହଠାତ୍ କିଛି କହି ପାରିଲୁ ନାହିଁ । ଏନ୍.ୟୁ.ଜେ.(ଆଇ)ର ସଭାପତି ପଦର ଗୁରୁତ୍ୱ ଆମେ ଜାଣୁ । ଦେଶର କୋଡ଼ିଏଟି ରାଜ୍ୟରେ ଏନ୍.ୟୁ.ଜେ.(ଆଇ)ର ଆଫିଲିଏଟେଡ ୟୁନିଟ୍ ଅଛି । ଦେଶର ପ୍ରମୁଖ ସାମ୍ବାଦିକ ଏହାର ସଦସ୍ୟ । ସେମାନଙ୍କ ତୁଳନାରେ ଆମେ ନିଜକୁ ଅଧିକ ଯୋଗ୍ୟ ବୋଲି ଚିନ୍ତା କେବେ କରିନାହୁଁ । ଫର୍ମଟି ଦେଖି ଆମେ ପଚାରିଲୁ ଇଏ କ'ଣ ? ଆମେ ସଭାପତି ହୋଇ ଚଳାଇ ପାରିବୁ ନାହିଁ । ମୋତେ ଏ ଦାୟିତ୍ୱ ଦିଅନ୍ତୁ ନାହିଁ । ବରଂ ଆଉ କାହାକୁ ଦିଅନ୍ତୁ । ଦୁହେଁ କିନ୍ତୁ ନଛୋଡ଼ବନ୍ଧା । ଗୁପ୍ତାଜୀ କହିଲେ ଆମେ କେବଳ ଏଇଥିପାଇଁ ଦିଲ୍ଲୀରୁ ଆସିଛୁ । ଆପଣ ୟୁନିୟନର ସିନିୟର ମୋଷ୍ଟ ସଦସ୍ୟ । ସମସ୍ତଙ୍କ ସହ ଆପଣଙ୍କର ସଦ୍‌ଭାବ ରହିଛି । ଆମେ ଇତିମଧ୍ୟରେ ବାରୋଟି ରାଜ୍ୟ ୟୁନିଟ୍‌କୁ ଆପଣଙ୍କ ସହ ଆଉ ଚାରିପାଞ୍ଚଜଣଙ୍କ ନାମ ପ୍ରସ୍ତାବ କରି ଆଲୋଚନା କରିଥିଲୁ । କିନ୍ତୁ ସମସ୍ତେ ଆପଣଙ୍କୁ ବାଛିଲେ । ଆପଣ ଏଇମିତି ମନା କରିବେ ବୋଲି ଆମେ ଜାଣିଥିଲୁ । ସେଇଥିପାଇଁ ଏଠିକି ଆସିଲୁ । ସେମାନେ ନାରଣବାବୁଙ୍କୁ ଏ ବିଷୟ କହିଲେ । ନାରଣବାବୁ ସବୁ ଶୁଣିବା ପରେ ଆମକୁ କହିଲେ ବରେନ୍ଦ୍ର- ଏ ସୁଯୋଗ ସଦାବେଳେ ଆସେ ନାହିଁ । ତା'ର ସଦ୍‌ବ୍ୟବହାର କର । ମୁଁ କ'ଣ କରିବି ହଠାତ୍ ବୁଝି ପାରିଲି ନାହିଁ । ଗୋଟିଏ ପଟେ ଆମ ସାମର୍ଥ୍ୟ ଉପରେ ଆମର ଭରସା ଅଣ୍ଟୁ ନଥିବା ବେଳେ ଆଉ ଗୋଟିଏ ପଟେ ଲୋଭ । ଏନ୍.ୟୁ.ଜେ. ସଭାପତିମାନେ ଦେଶ ବିଦେଶରେ ବିଭିନ୍ନ ସଭା ସମିତିରେ ଯୋଗଦାନ, କେନ୍ଦ୍ର ସରକାରଙ୍କ ଠାରୁ ଆରମ୍ଭ କରି ଜାତୀୟତମ ଜୁରୀ ବୋର୍ଡ଼, ପ୍ରେସ୍ କାଉନ୍‌ସିଲ୍, ଶ୍ରମ ମନ୍ତ୍ରଣାଳୟର କୋର୍ କମିଟିର ଏକ୍ସ ଅଫିସ୍ ଓ ସଦସ୍ୟ ଆଦି ଅନେକ ଦାୟିତ୍ୱ । ବିଦେଶରେ ଆମ ୟୁନିୟନ ସହ ଆଫିଲିଏଟେଡ ରାଷ୍ଟ୍ରରେ ବିଭିନ୍ନ ସମୟରେ ହେଉଥିବା ବୈଠକରେ ଯୋଗଦାନ ଆଦି ଅନେକ ଧରଣର ମର୍ଯ୍ୟାଦାଜନକ ବ୍ୟବସ୍ଥା । ଆମେ ଗୁପ୍ତାଜୀଙ୍କ ମୁହଁକୁ ଚାହିଁଲୁ । ପ୍ରଭୁଜୀ କହିଲେ ମିଃ ଧଲ୍ ଆମେ ସବୁ ଦୃଷ୍ଟିରୁ ବିଚାର କରି ଆପଣଙ୍କୁ ପ୍ରାର୍ଥୀ କରିବାକୁ ନିଷ୍ପତ୍ତି ନେଇଛୁ । ଦିଲ୍ଲୀରେ ଆମେ ବିଭିନ୍ନ ରାଜ୍ୟର କେତେକ ସଭାପତି ଓ ଅନ୍ୟ କର୍ମକର୍ତ୍ତା ବସି ଆଲୋଚନା କରିଛୁ । ସମସ୍ତେ ଆପଣଙ୍କ ପାଇଁ ପୂର୍ଣ୍ଣ ସମର୍ଥନ ଦେଇଛନ୍ତି । ତେଣୁ ଆଉ ଚିନ୍ତା ନକରି ଦସ୍ତଖତ କରନ୍ତୁ ।

ଗୁପ୍ତାଜୀଙ୍କ ପରିବାର ଓ ଆମ ପରିବାର ମଧ୍ୟରେ ଏକ ପାରିବାରିକ ସମ୍ପର୍କ ଗଢ଼ି ଉଠିଥିଲା । ତାଙ୍କ ଶ୍ରୀମତୀ ଦୁଇ ଝିଅ ମଝିରେ ଭୁବନେଶ୍ୱର ଆସି ଆମର ଅତିଥି ହୋଇଥିଲେ । ଆମେ ମଧ୍ୟ ଆମ ପରିବାର ନେଇ ଦିଲ୍ଲୀ ଗଲେ ପ୍ରାୟ ଭାବିଜୀ(ମିସେସ୍ ଗୁପ୍ତା) ଆମକୁ ତାଙ୍କ ଘରକୁ ଡାକି ଆପ୍ୟାୟନ କରନ୍ତି । ଗୁଲ୍‌ମୋହର ପାର୍କରେ ଗୁପ୍ତା ସାହେବଙ୍କ ଘର । ପ୍ରଭୁ ରୁହନ୍ତି କାଲ୍‌କାଜିରେ ।

ସମୟ ଅତିକ୍ରାନ୍ତ ହେଉଥିଲା । ମୁଁ ସେତେବେଳେ ଭୁବନେଶ୍ୱରରୁ ପ୍ରକାଶ ପାଉଥିବା ସ୍ୱରାଜ୍ୟ ଦୈନିକ ଖବର କାଗଜର ସମ୍ପାଦକ । ଏନ୍.ୟୁ.ଜେ.(ଆଇ)ରେ ପ୍ରଭୁଙ୍କ ପୂର୍ବରୁ ଅରୁଣ ବାଗ୍‌ଚୀ ସଭାପତି ଥିଲେ । ବାଗ୍‌ଚୀ ଦା ଥିଲେ କଲିକତା ଆନନ୍ଦ ବଜାର ପତ୍ରିକା ଦୈନିକ ଖବର କାଗଜର ଆସୋସିଏଟେଡ ଏଡିଟର । ମିଃ ପ୍ରଭୁ ଆଉ ବାଗ୍‌ଚୀ ଦା ମାସିକ ତିରିଶ ହଜାର ଟଙ୍କା ଦରମା ପାଉଥିଲେ । ୟୁନିୟନ ମିଟିଂରେ ଯୋଗ ଦେବାପାଇଁ ଯୁଆଡ଼େ ଯାଉଥିଲେ ପ୍ରେସ୍ ତାଙ୍କୁ ପ୍ଲେନ୍ ଫେୟାର ଓ ଷ୍ଟାର୍‌ହୋଟେଲ୍‌ରେ ରହିବା ପାଇଁ ଟଙ୍କା ଦେଉଥିଲା । ସ୍ୱରାଜ୍ୟ ପ୍ରେସ୍‌ରୁ ଆମେ

ସେତେବେଳେ ଦରମା ପାଉଥିଲୁ ମାସିକ ପାଞ୍ଚହଜାର ଟଙ୍କା । ତା' ପୁଣି ବିଜ୍ଞାପନ ଦେୟ ଉପରେ ନିର୍ଭରଶୀଳ ଥିଲା । ଯେଉଁ ମାସରେ ବିଜ୍ଞାପନ ଦେୟ ପୁରା ମିଳୁଥିବା ସେ ମାସରେ ପୁରା ଦରମା ତା' ନହେଲେ ଅଧା ବା ତିନି ଚଉଠ ଦରମା ମିଳେ । କହିବାକୁ ଗଲେ ମୋ ଦରମା ମୁଁ ହିଁ ସଂଗ୍ରହ କରୁଥିଲି । ଏ ଅବସ୍ଥାରେ ୟୁନିୟନ ମିଟିଂରେ ଯୋଗଦେବା ପାଇଁ ବା ବିଦେଶ ଯିବା ପାଇଁ ଆମ ପ୍ରେସ୍‌ରୁ ଅର୍ଥ ମିଳିବା ସମ୍ଭବ ନଥିଲା । ଆମେ ସବୁଆଡ଼କୁ ବିଚାର କରି ଏକଥା ମଧ କହିଲୁ । ଦୁହେଁ କହିଲେ ଆପଣ ସେଥିପାଇଁ ବ୍ୟସ୍ତ ହେବା ଆବଶ୍ୟକ ନାହିଁ । ଆପଣଙ୍କ ଯାତାୟତ ଓ ରହିବା ଖର୍ଚ୍ଚ ୟୁନିୟନ ବହନ କରିବ । ଏଇ କଥାବାର୍ତ୍ତା ବେଳେ ଦି'ଟା ବାଜି ଗଲାଣି । ଘୋଷଣା ହେଲାଣି ଖୁବ୍‌ଶୀଘ୍ର କଲିକତା ଯିବା ପାଇଁ ଫ୍ଲାଇଟ୍ ଆସିବ । ଗୁପ୍ତାଜୀ ଏକ ପ୍ରକାର ମୋ ହାତକୁ ଟାଣିନେଇ ଦସ୍ତଖତ କରିଦେଲେ । ନାରଣବାବୁ ଆଗରୁ ପ୍ରସ୍ତାବକ ଥିଲେ । ଆମେ ଏୟାରପୋର୍ଟ ଆସିଛୁ ଶୁଣି 'ଦିନଲିପି' ଷ୍ଟାଫ୍ ରିପୋର୍ଟର ରତିକାନ୍ତ ମହାନ୍ତି ଠିକ୍ ସେତିକିବେଳେ ଏୟାରପୋର୍ଟରେ ପହଞ୍ଚିଲେ । ତାଙ୍କୁ ଦେଖି ଗୁପ୍ତାଜୀ କହିଲେ, ଆରେ ରତିକାନ୍ତଜୀ, ଯଲ୍‌ଦି ଆଓ । ଇହାଁ ଦସ୍ତଖତ କର । ରତିକାନ୍ତ କିଛି ନବୁଝି ସମର୍ଥକ ସ୍ଥାନରେ ଦସ୍ତଖତ କରିଦେଲେ । ଗୁପ୍ତାଜୀ, ପ୍ରଭୁଜୀ ମୋ ସାଙ୍ଗରେ ହାତ ମିଳେଇଲେ । କହିଲେ, କଂଗ୍ରାଚ୍ୟୁଲେସନ୍ ଇନ୍ ଆଡ଼ଭାନ୍ସ We will meet at Haridwar on September 13th in Biennial Conference.

ଆମେ ତିନିଜଣ ଫେରିଲୁ । ମୁଁ ନିଜେ ଜାଣିପାରୁ ନଥିଲି ଠିକ୍ କରିଛି କି ଭୁଲ୍ କରିଛି । ଘଣ୍ଟାକ ମଧ୍ୟରେ ଆମର ଭବିଷ୍ୟତ ପାଇଁ ଏକ ନୂଆ ଦାୟିତ୍ୱ ନୂଆ ସମ୍ମାନ ଆଉ ମର୍ଯ୍ୟାଦା ଆସିବାର ଉପକ୍ରମ ହେଲା । ଫଳବତୀ ହେବ କି ନା ଆମେ ଜାଣିନୁ । ରତିକାନ୍ତ ଯେତେବେଳେ ସବୁ ବୁଝିଲା ଆନନ୍ଦରେ ସେ ଡେଇଁଲା । କହିଲା ଏତେ ବଡ଼ ପୋଜିସନ୍ ପାଇଁ ଆପଣ ମନା କରୁଥିଲେ କିପରି ? ଆମେ କହିଲୁ ରତିକାନ୍ତ ତୁ ତ ନିଜେ ଦେଖିଛୁ ଏନ୍.ୟୁ.ଜେ.ରେ ସଭାପତିର ଦାୟିତ୍ୱ ଆଉ ମର୍ଯ୍ୟାଦା । ସେଠି ଆମେ ଖାପ୍ ଖାଇ ପାରିବା ? ରତିକାନ୍ତ କହିଲା ଆପଣ ଠିକ୍ ପାରିବେ । ତା' ନହେଲେ ଗୁପ୍ତାଜୀ ଆଉ ପ୍ରଭୁଜୀଙ୍କ ଭଳି ଲୋକ ଆପଣଙ୍କ ପାଖକୁ ଏ ପ୍ରସ୍ତାବ ନେଇ ଆସି ନଥା'ନ୍ତେ । ଆମେ ଠାକୁରଙ୍କ ଉଦ୍ଦେଶ୍ୟରେ ପ୍ରଣାମ କଲୁ । ପ୍ରଭୁ ହନୁମାନଜୀଙ୍କ ଶରଣ ନେଲୁ । ଆମ ମନରେ ତଥାପି ପ୍ରତ୍ୟୟ ଆସୁ ନଥାଏ । ବେଳେବେଳେ ସଭାପତି ହୋଇ ବସିବାର ଯେଉଁ ମର୍ଯ୍ୟାଦାଜନକ ଦୃଶ୍ୟ ତାକୁ ଚିନ୍ତାକରି ଏକ ଦୁର୍ଦମନୀୟ ଆନନ୍ଦ ମନକୁ ଆଚ୍ଛାଦିତ କରି ପକାଉଥିଲା ।

ମନ ଭିତରେ ସୃଷ୍ଟି ହେଉଥିବା ଭାବନା ବାହାରକୁ ପ୍ରକାଶ କରିଲି ନାହିଁ । ନାରଣବାବୁ ଆଉ ରତିକାନ୍ତକୁ ଅନୁରୋଧ କଲି ଏକଥା ଯେପରି ବାହାରେ ପ୍ରଘଟ ନହୁଏ । କାରଣ ଗୃହଶତ୍ରୁଙ୍କର ଅଭାବ ନଥିଲା । ଆମେ ଏତେବଡ଼ ସମ୍ମାନଜନକ ପଦବୀରେ ଆସୀନ ହେବୁ ଅନେକ ହୁଏତ ଚିନ୍ତାକରି ଈର୍ଷାନ୍ୱିତ ହୋଇ ଆମ ବିରୁଦ୍ଧରେ ଲେଖିବାର ଉଦ୍ୟମ କରି ପାରନ୍ତି । ନାରଣ ବାବୁ କିନ୍ତୁ ଅତ୍ୟନ୍ତ ଦୃଢ଼ମନା । ସେ କହିଲେ ବରେନ୍ଦ୍ର ତୁମେ ଏନ୍.ୟୁ.ଜେ.(ଆଇ)ର ପରବର୍ତ୍ତିସଭାପତି ହେଉଛ ଏକଥା ନିଶ୍ଚିତ ବୋଲି ଧରିନିଅ । ଓଡ଼ିଶା ପାଇଁ ଏହାଠାରୁ ବଡ଼ ସୌଭାଗ୍ୟ ଆଉ କ'ଣ ଥାଇପାରେ ?

ଜୀବନର ଗତିପଥରେ ଖାଲଢିପ, ଅନ୍ଧକାର ପଥରେ ଯାଉଯାଉ ହଠାତ୍ ଆଲୋକର ରେଖା ଦେଖିଲେ ମନରେ ଯେଉଁ ଆନନ୍ଦର ଆଭାସ ସୃଷ୍ଟି ହୁଏ ଇଏ ସେହିଭଳି ଆମ ଜୀବନର ଚଳାପଥର ଏକ ଅଧ୍ୟାୟ । ଆମ ଜୀବନରେ ଏଭଳି ଏକ ମୁହୂର୍ତ୍ତ ଆସିବ ସେକଥା କେବେ କଳ୍ପନାରେ ନଥିଲା । ମୁଁ ଘରକୁ ଆସିଲି । ଘରେ ମୋ ସ୍ତ୍ରୀ ସ୍ନେହଲତାଙ୍କୁ ସବୁ କହିଲି । ସେ ଠାକୁରଙ୍କ ଉଦ୍ଦେଶ୍ୟରେ ପ୍ରଣାମ କଲେ । କହିଲେ କାଲି ଯାଇ ପ୍ରଭୁ ହନୁମାନଙ୍କ ମନ୍ଦିରରେ ନଡ଼ିଆ ବସେଇ ଆସିବି ।

## -ଏନ୍.ୟୁ.ଜେ(ଆଇ)ର ସର୍ବଭାରତୀୟ ସଭାପତି-

ସମୟ ଗଡ଼ି ଚାଲିଲା । ମୁଁ ମଝିରେ ମଝିରେ ଦିଲ୍ଲୀ ଫୋନ୍ କରି ପରିସ୍ଥିତି ସମ୍ପର୍କରେ ଖବର ରଖୁଥାଏ । ପ୍ରାର୍ଥୀପତ୍ର ଦାଖଲ ଶେଷ ଦିନ ଥିଲା ଅଗଷ୍ଟ ପଚିଶ ତାରିଖ । କଲିକତାରୁ ଅସୀମ ମିତ୍ର ସେଦିନ ମୋତେ ଫୋନ୍ କରି କହିଲେ ବରେନ୍ଦ୍ର ବାବୁ, ଆପଣଙ୍କ ବିରୁଦ୍ଧରେ ତିନିଜଣ କଡ଼ା ପ୍ରାର୍ଥୀ ଛିଡ଼ା ହୋଇଛନ୍ତି । ମୁଁ ହଠାତ୍ ଟିକେ ଦବିଗଲି । ତା'ପରେ ପଚାରିଲି କିଏ ସବୁ ଠିଆ ହୋଇଛନ୍ତି । ସେ କହିଲେ ନିତିଶ ଚକ୍ରବର୍ତ୍ତି ଇଣ୍ଡିଆନ୍ ଏକ୍ସପ୍ରେସ୍‌ର ମୁଖ୍ୟ ସମ୍ପାଦକ ହୀରନ୍ମୟ କାର୍ଲେକର(ପୂର୍ବରୁ ହିନ୍ଦୁସ୍ଥାନ ଟାଇମ୍ସର ସମ୍ପାଦକ ଥିଲେ), ନବ ଭାରତ ଟାଇମ୍ସର ଆବାସିକ ସମ୍ପାଦକ ଏନ୍.କେ. ତ୍ରିଖା ଏବଂ ବମ୍ବେ ସଂସ୍କରଣ ଟାଇମ୍ସ ଅଫ୍ ଇଣ୍ଡିଆର ବ୍ୟୁରୋ ମୁଖ୍ୟ ସଦାନନ୍ଦ କାଲେ । ଏ ଖବର ଶୁଣି ମୋ ଛାତିଟା ଥରି ଉଠିଲା । ମନରେ ଏନ୍.ୟୁ.ଜେ.ର ସଭାପତି ହେବାପାଇଁ ଯେଉଁ ସୁନେଲି ସ୍ୱପ୍ନ ଦେଖୁଥିଲି ହଠାତ୍ ତା' କିପରି ଉଭେଇ ଗଲା । କାରଣ ଭାରତ ବର୍ଷର ଏହି ବିଖ୍ୟାତ ସାମ୍ବାଦିକମାନଙ୍କ ସମ୍ମୁଖରେ ମୋର ପ୍ରାର୍ଥୀତ୍ୱ ମଳିନ ପଡ଼ିଯିବ । ମୁଁ ଅସୀମ ବାବୁଙ୍କୁ କହିଲି ଠିକ୍ ଅଛି ଯାହା ହେବ ହେବ । ସେ ମୋତେ କହିଲେ ଡୋଣ୍ଟ ଗେଟ୍ ଡିସ୍‌ହାଟନ୍‌ଡ । ଆପଣ ଟିକେ ଅରୁଣ ବାଗ୍‌ଚୀଙ୍କ ସହ କଥା ହୁଅନ୍ତୁ । ମୁଁ କହିଲି ଠିକ୍ ଅଛି । ମୁଁ ଏଇନେ ଫୋନ୍ କରୁଛି । ଅସୀମ ବାବୁ ଫୋନ୍ ଛାଡ଼ି ଦେଲେ । ମୁଁ ଅରୁଣ ବାଗ୍‌ଚୀଙ୍କୁ ଫୋନ୍ ଲଗାଇଲି । ସେ ଫୋନ୍ ଧରିଲେ । ମୁଁ କିଛି କହିବା ପୂର୍ବରୁ ସେ କହିଲେ ବରେନ୍ଦ୍ର ୱେଷ୍ଟ ବେଙ୍ଗଲ ୟୁନିୟନ ତୁମକୁ ପୁରା ସମର୍ଥନ ଦେବ । ମୁଁ ସବୁ ଜାଣିଛି । ପ୍ରଭୁ ଆଉ ଗୁପ୍ତା ତୁମ କଥା କହିଛନ୍ତି । ଡୋଣ୍ଟ ଓରି । ମୁଁ କହିଲି ଥ୍ୟାଙ୍କ୍ୟୁ ଦାଦା । ସେ ମତେ କହିଲେ ମୁଁ ଠିଆ ହେଲାବେଳେ ତୁମେ ମୋତେ ଯେଉଁ ସପୋର୍ଟ ଦେଇଥିଲ ସେ କଥା ମୁଁ ଭୁଲିନି । I am interested to see you as the next N.U.J.(I) President. ମୁଁ ଆସାମ ୟୁନିୟନ ସହ କଥା ହେଉଛି । ସମୟ ଯେତିକି ଗଡୁଥାଏ ମୋ ମନ ସେତିକି ଅସ୍ଥିର ହେଉଥାଏ । ମୁଁ N.U.J.(I) ସଭାପତି ପଦ ପାଇଁ ପ୍ରତିଦ୍ୱନ୍ଦ୍ୱିତା କରୁଥିବା କଥା ଓଡ଼ିଶାରେ ମଧ ପ୍ରଚାର ହୋଇଗଲା । ଏଠି କିଛି ସାମ୍ବାଦିକ ବନ୍ଧୁ ଏକଥା ଶୁଣି କହିଲେ କାହିଁକି ଭାଇ ଏହା ଭିତରକୁ ପଶିଲେ । ଅଯଥା ଓଡ଼ିଶା ନାଁ ବଦ୍‌ନାମ ହେବ । ସବୁଠୁ କମ୍ ଭୋଟ୍ ପାଇବେ । ମୁଁ ସବୁ ଶୁଣୁଥାଏ । କିନ୍ତୁ କାହାକୁ କିଛି କହୁ ନଥାଏ । ଆମ ନିର୍ବାଚନର ରିଟର୍ଣ୍ଣିଂ ଅଫିସର ଥାନ୍ତି ନିତିଶ ଚକ୍ରବର୍ତ୍ତି । ନିତିଶ ଦା ଦିଲ୍ଲୀ 'ଦି ହିନ୍ଦୁ' ଖବରକାଗଜର ଡେପୁଟି ଚିଫ୍ ଅଫ୍ ବ୍ୟୁରୋ ଥିଲେ । ସେତେବେଳେ ହିନ୍ଦୁର ଚିଫ୍ ଅଫ୍ ବ୍ୟୁରୋ ଥିଲେ ବିଖ୍ୟାତ ସାମ୍ବାଦିକ ଜି.କେ. ରେଡ୍ଡି । ନିତିଶ ଦା ପୂର୍ବରୁ ଭୁବନେଶ୍ୱରରେ ହିନ୍ଦୁସ୍ଥାନ ଷ୍ଟାଣ୍ଡାର୍ଡ ଓ ଆନନ୍ଦ ବଜାର ପତ୍ରିକାର ବ୍ୟୁରୋ ମୁଖ୍ୟ ଥିଲେ । ୧୯୯୦ ସେପ୍ଟେମ୍ବର ୪ ତାରିଖ ଶେଷ ପ୍ରତ୍ୟାହାର ଦିବସ ଥିଲା । ସେଦିନ ଭୁବନେଶ୍ୱର ସ୍ୱସ୍ତି ହୋଟେଲ୍‌ରେ ବସନ୍ତ ବିଶ୍ୱାଳ କଂଗ୍ରେସ ବିଧାୟକ ଦଳର ନେତା ରୂପେ ମନୋନୀତ ହୋଇଥିବାରୁ ସାମ୍ବାଦିକମାନଙ୍କୁ ଏକ ମଧ୍ୟାହ୍ନ ଭୋଜନରେ ଆପ୍ୟାୟିତ କରୁଥିଲେ ୧୯୯୦ ବିଧାନସଭା ନିର୍ବାଚନରେ କଂଗ୍ରେସ ଦଳ ମାତ୍ର ଦଶୋଟି ସ୍ଥାନ ଲାଭ କରିଥିଲେ । ତେଣୁ ବିରୋଧୀଦଳ ନେତା ପଦବୀ ପାଇଁ କେହି ଯୋଗ୍ୟ ନଥିଲେ । କାରଣ ସଂସଦୀୟ ବ୍ୟବସ୍ଥା ଅନୁସାରେ ମୋଟ ଆସନର ଏକ ଦଶମାଂଶ ସ୍ଥାନ ଲାଭ ନକଲେ ବିରୋଧୀଦଳ ନେତା ପଦବୀ ମିଳିବ ନାହିଁ । ତେଣୁ କଂଗ୍ରେସ ଦଳ ବିରୋଧୀଦଳ ନେତା ଆସନ ବା ପଦବୀ ପାଇବା ସମ୍ଭବ ନଥିଲା । ତେବେ କଂଗ୍ରେସ ବିଧାୟକ ଦଳ ନେତା ରୂପେ ମନୋନୀତ ହୋଇଥିବାରୁ ବସନ୍ତ ବାବୁ ଭାରି ଖୁସି ହୋଇଥିଲେ ।

ଆମେ ମୂଳ ପ୍ରସଙ୍ଗରୁ ଅନ୍ୟ ଆଡ଼କୁ ଚାଲି ଆସିଲୁ । କଥା ହେଉଥିଲା ଆମର ଏନ୍.ୟୁ.ଜେ.(ଆଇ)ର ସଭାପତି ପ୍ରସଙ୍ଗକୁ ନେଇ । ଦିନ ଠିକ୍ ସାଢ଼େ ଗୋଟାଏ ବେଳେ ସ୍ୱସ୍ତି ହୋଟେଲ ବାଙ୍କ୍ୱେଟ୍ ହଲ୍ ଫୋନ୍ ରିଙ୍ଗ୍‌ହେଲା ।

ହୋଟେଲର ଫୋନ୍ ଆଟେଣ୍ଡାଣ୍ଟ ମୋତେ ଡାକିଲା ସାର୍ ଆପଣଙ୍କୁ ଦିଲ୍ଲୀରୁ କିଏ ଡାକୁଛନ୍ତି । ମୁଁ ସାଙ୍ଗେସାଙ୍ଗେ ଯାଇ ଫୋନ୍ ଧରିଲି । ସେପଟେ ନୀତିଶ ଦାଙ୍କ ଗଳା । କ'ଣ ନିଉ ପ୍ରେସିଡେଣ୍ଟ ଲଞ୍ଚ୍ ଖାଉଛନ୍ତି ? ମୁଁ ହଠାତ୍ କିଛି ବୁଝି ପାରିଲିନି । କହିଲି ଦାଦା କ'ଣ ହେଲା । ସିଏ କହିଲେ, କ'ଣ ହେବ You have been elected uncontested as next President of N.U.J.(I). ମୁଁ କହିଲି ଅନ୍ୟମାନେ ? ସେ କହିଲେ ସମସ୍ତେ ତୁମକୁ ସମର୍ଥନ ଜଣାଇ ସେମାନଙ୍କ ପ୍ରାର୍ଥୀପତ୍ର ପ୍ରତ୍ୟାହାର କରିନେଲେ । Congratulations. We will meet at Haridwar. ଫୋନ୍ କଟିଗଲା । ପରେ ପରେ ଗୁପ୍ତାଜୀ ଆଉ ମିଃ ପ୍ରଭୁଙ୍କ ଫୋନ୍ । ସ୍ୱସ୍ତି ହୋଟେଲ୍‌ର ବାଙ୍କୁଏଟ୍ ହଲ୍‌ରେ ଏହା ପ୍ରଚାର ହୋଇଗଲା । ଉପସ୍ଥିତ ସମସ୍ତେ ମୋତେ ଅଭିନନ୍ଦନ ଜଣାଇଲେ । ପରଦିନ ସନ୍ଧ୍ୟାରେ ସେଇଠି ମୋତେ ଅଭିନନ୍ଦନ ଜଣାଇବା ପାଇଁ ଏକ ସମାବେଶର ଆୟୋଜନ ହେଲା । ବନ୍ଧୁ ସୁଭାଷ ପଟ୍ଟନାୟକ, ରତିକାନ୍ତ ମହାନ୍ତି ପ୍ରମୁଖ ଏହାର ଆୟୋଜନରେ ଲାଗି ପଡ଼ିଲେ ।

ପରଦିନ ସକାଳୁ ସମସ୍ତ ଓଡ଼ିଆ ଖବରକାଗଜର ପ୍ରଥମ ପୃଷ୍ଠାରେ ମୋର ଫଟୋ ସହ ସମ୍ବାଦ ପ୍ରକାଶ ପାଇଲା । ଜୀବନରେ ଏଭଳି ମୁହୂର୍ତ୍ତ ଆସିବ ଏବଂ ମୁଁ ପ୍ରଥମ ଓଡ଼ିଆ ସାମ୍ବାଦିକ ଭାବେ National Union of Journalists(India)ର ସର୍ବଭାରତୀୟ ସଭାପତି ରୂପେ ନିର୍ଦ୍ୱନ୍ଦ୍ୱରେ ନିର୍ବାଚିତ ହେବି, ଆଜି ଏତେବର୍ଷ ପରେ ଏକଥା ଭାବିବା ବେଳକୁ ମନରେ ରୋମାଞ୍ଚ ଜାତ ହେଉଛି । ସେପ୍ଟେମ୍ବର ୫ ତାରିଖ ସନ୍ଧ୍ୟାରେ ସ୍ୱସ୍ତି ହୋଟେଲର ବାଙ୍କୁଏଟ୍ ହଲ୍‌ରେ ବହୁ ସାମ୍ବାଦିକଙ୍କ ଉପସ୍ଥିତିରେ ଏକ ଅଭିନନ୍ଦନ ସଭା ଅନୁଷ୍ଠିତ ହେଲା । ମୋର ମନେ ଅଛି ଶ୍ରୀମତୀ ମନୋରମା ମହାପାତ୍ର, ପ୍ରଜାତନ୍ତ୍ର ସମ୍ପାଦକ ଭର୍ତ୍ତୃହରି ମହତାବ, ସମ୍ବାଦ ସମ୍ପାଦକ ସୌମ୍ୟରଞ୍ଜନ ପଟ୍ଟନାୟକ, ପ୍ରଗତିବାଦୀ ସମ୍ପାଦକ ପ୍ରଦ୍ୟୁମ୍ନ ବଳଙ୍କ ସମେତ ଏଥିରେ ଶତାଧିକ ସାମ୍ବାଦିକ ଯୋଗ ଦେଇଥିଲେ । ରାଜ୍ୟ ଲୋକ ସମ୍ପର୍କ ବିଭାଗ ମନ୍ତ୍ରୀ ଶ୍ରୀ ଶରତ କର ମଧ୍ୟ ଏହି ସଭାରେ ଯୋଗ ଦେଇ ମୋର ଉତ୍ତରୋତ୍ତର ଉନ୍ନତି କାମନା କରିଥିଲେ ।

## -ବିଜୁ ପଟ୍ଟନାୟକଙ୍କ ଅଭିନନ୍ଦନ-

ସେପ୍ଟେମ୍ବର ୧୩ ତାରିଖରୁ ୧୫ ତାରିଖ ପର୍ଯ୍ୟନ୍ତ ହରିଦ୍ୱାରଠାରୁ ଏନ୍.ୟୁ.ଜେ.(ଆଇ)ର ଜାତୀୟ ସମ୍ମିଳନୀ । ମୁଁ ଓ ମୋର ସ୍ତ୍ରୀ ସେପ୍ଟେମ୍ବର ୧୧ ତାରିଖ ସକାଳେ ଦିଲ୍ଲୀରେ ପହଞ୍ଚି ଓଡ଼ିଶା ଭବନରେ ରହିଲୁ । ସେଦିନ ଦିନ ପ୍ରାୟ ବାରଟା ବେଳକୁ ଗୁପ୍ତାଜୀ, ପ୍ରଭୁ, ଦିଲ୍ଲୀ ୟୁନିୟନ୍‌ର ସଭାପତି ବଲ୍‌ବିର୍ ପୁଞ୍ଜ ଏବଂ ବିଖ୍ୟାତ ସାମ୍ବାଦିକ ତଥା ହିନ୍ଦୁସ୍ଥାନ ଟାଇମ୍ସର ଆସୋସିଏଟ୍ ଏଡିଟର ପୃଥ୍ୱିଶ ଚକ୍ରବର୍ତ୍ତିନୂଆ ହୋଇ ଆମ ସେକ୍ରେଟାରୀ ଜେନେରାଲ ଅଚ୍ୟୁତାନନ୍ଦ ମିଶ୍ର ମୋ ପାଖରେ ପହଞ୍ଚିଲେ । ଏମାନଙ୍କୁ ଦେଖି ମୁଁ କରମର୍ଦ୍ଦନ କଲି ଏବଂ ହଠାତ୍ ସେମାନଙ୍କ ଉପସ୍ଥିତି ସମ୍ପର୍କରେ ଜାଣିବାକୁ ଚାହିଁଲି । ପ୍ରଭୁ କହିଲେ ଏବେ ବିଜୁ ପଟ୍ଟନାୟକ ଓଡ଼ିଶା ଭବନରେ ଅଛନ୍ତି । ତାଙ୍କ ପାଖରେ ମୁଲାୟମ ସିଂହ ଯାଦବ, ଚନ୍ଦ୍ରଶେଖର, ବୋମାଇ ପ୍ରମୁଖ ଅଛନ୍ତି । ତାଙ୍କୁ ଦେଖାକରି ପ୍ରଧାନମନ୍ତ୍ରୀ ଭି.ପି. ସିଂହଙ୍କୁ ହରିଦ୍ୱାର ଯିବାପାଇଁ ସେ ଆମ ପକ୍ଷରୁ ଟିକେ ଅନୁରୋଧ କରିବା ପାଇଁ ଆପଣ କୁହନ୍ତୁ । ଆମେ ସମସ୍ତେ ବିଜୁବାବୁଙ୍କ ପାଖକୁ ଗଲୁ । ମୁଁ ମୋ କାର୍ଡ଼ରେ ଏ ସମସ୍ତଙ୍କ ନାଁ ଲେଖି ଭିତରକୁ ପଠାଇ ଦେଲି । ବିଜୁବାବୁ ସାଙ୍ଗେସାଙ୍ଗେ ଆମକୁ ଡକାଇ ପଠାଇଲେ । ମୋତେ ଦେଖି ପଚାରିଲେ, 'କିରେ ତୁ କୁଆଡ଼େ ଆସିଛୁ ?' ପ୍ରଭୁ ଆଉ ଗୁପ୍ତାଙ୍କୁ ବିଜୁବାବୁ ଜାଣିଥିଲେ । ପ୍ରଭୁ କହିଲେ This time Mr. Dhal has been elected President N.U.J.(I). ବିଜୁବାବୁ ମତେ ଚାହିଁଲେ । କହିଲେ ବାଃ

Congratulations. ତୁ ଆସି ଏଠି ପ୍ରେସିଡେଣ୍ଟ ହେଲୁଣି । ପ୍ରଭୁ ଅଚ୍ୟୁତାନନ୍ଦ ମିଶ୍ରଙ୍କୁ ଦେଖାଇ କହିଲେ ଏବଂ ପରିଚୟ ଦେଇ କହିଲେ ଅଚ୍ୟୁତବାବୁ is the Editor of Amar Ujjala > ସିଏ ଏଥର ଆମର ନୂଆ ସେକ୍ରେଟାରୀ ଜେନେରାଲ୍ । ବିଜୁବାବୁ ମୁଲାୟମ ସିଂହଙ୍କୁ ହସିହସି କୌତୁକରେ କହିଲେ Mulayam my boy is the President, Your boy is Secretary. ମୁଲାୟମ ସିଂହ, ସେହିପରି ହସିହସି କହିଲେ ଆପ୍ ଏକ କାମ କିଜିଏ ମୁଝେ ଆପକା ସେକ୍ରେଟାରୀ ବନା ଦିଜିଏ । ଏହାପରେ ମୁଁ ଆମ ଆସିବା ଉଦ୍ଦେଶ୍ୟ କହିଲି । ଏବଂ ଭି.ପି. ସିଂହଙ୍କୁ ହରିଦ୍ୱାର ଯିବା ପାଇଁ ଆମପକ୍ଷରୁ ଅନୁରୋଧ କରିବାକୁ କହିଲି । ବିଜୁବାବୁ କହିଲେ ଏସବୁ ଆଗରୁ କହିଲନି । ଆଚ୍ଛା ଦେଖୁଛି । ସେ ଭି.ପି.ଙ୍କୁ ଫୋନ୍ ଲଗାଇବାକୁ ତାଙ୍କ ପି.ଏ.ଙ୍କୁ କହିଲେ । ଫୋନ୍ ଲାଗିଲା । ଭାରତବର୍ଷରେ ବହୁ ରାଜନୀତିଜ୍ଞଙ୍କୁ ଆମେ ଦେଖିଛୁ । କିନ୍ତୁ ବିଜୁ ପଟ୍ଟନାୟକଙ୍କର ଏକ ନିଆରା ବ୍ୟକ୍ତିତ୍ୱ ।

ବିଜୁ ପଟ୍ଟନାୟକଙ୍କ ବ୍ୟକ୍ତିତ୍ୱ, ତାଙ୍କର କଥା କହିବାର ଦୃପ୍ତ ଭଙ୍ଗି ଆଉ ଷ୍ଟାଇଲ୍ ଖୁବ୍ କମ୍ ନେତାଙ୍କର ଅଛି । ଆଜି ମୋର ସେଦିନର ବାକ୍ୟାଳାପ ସ୍ପଷ୍ଟ ମନେ ଅଛି । ବିଜୁବାବୁ କହିଲେ Hallow V.P. What are you doing. Listen some journalists are here. They are interested to invite you go to Haridwar to inagurate the N.U.J.(1) Canference on 15th Spt. ସେପଟୁ ଭି.ପି. କ'ଣ କହିଲେ । କିନ୍ତୁ ବିଜୁବାବୁ କହିଲେ, What cabinet meeting ? You are the Prime Minister you can shift it for 2/3 hours. No. No. you should go. ମାତ୍ର V.P. କ'ଣ କହିଲେ । Then ok ok. Why don't you go some other day. Oh. you are going to west Bengal this evening. Your I & B Minister will attend N.U.J.(I) meeting. Who is now your 1& B. Minister ? Oh that telgu chap ? ତା'ପରେ ଲାଇନ୍ କଟିଗଲା । ମୁଲାୟମ୍ ସିଂହ କହିଲେ ଉପେନ୍ଦ୍ର ମୋ ସାଙ୍ଗରେ ହରିଦ୍ୱାରା ଯିବେ । ଅଚ୍ୟୁତବାବୁ ମତେ ଗତକାଲି କହିଥିଲେ । ସେ ଅନୁସାରେ ମୁଁ ଉପେନ୍ଦ୍ରଙ୍କୁ କହି ସବୁ ଠିକ୍ କରି ଦେଇଛି ।

ଭାରତର ପ୍ରଧାନମନ୍ତ୍ରୀ ଭି.ପି. ସିଂହଙ୍କ ସହ ବିଜୁବାବୁଙ୍କ କଥାବାର୍ତ୍ତା ମୋତେ ଏବଂ ମୋ ସାଙ୍ଗରେ ଯାଇଥିବା ଅନ୍ୟ ବନ୍ଧୁମାନଙ୍କୁ ଏଭଳି ପ୍ରଭାବିତ କରିଥିଲା ଯାହା ଆମେ ଫେରି ଆସି ତାକୁ ଚର୍ଚ୍ଚା କରିଥିଲୁ । ବିଜୁବାବୁଙ୍କର ସେହି କଥାବାର୍ତ୍ତା ପରେ ନିଜକୁ ଜଣେ ଓଡ଼ିଆ ରୂପେ ମୁଁ ଗର୍ବବୋଧ କଲି । ପୃଥିଶ ଚକ୍ରବର୍ତ୍ତିକହିଲେ ଏଇ ହେଉଛି ବିଜୁ ପଟ୍ଟନାୟକ- ଯାହାର ଭାରତୀୟ ରାଜନୀତିରେ ତୁଳନା ହୁଏନା । ଆମେ ବିଜୁବାବୁଙ୍କୁ ହରିଦ୍ୱାର ଡାକିଥିଲୁ । ମାତ୍ର ଓଡ଼ିଶା ବିଧାନସଭା ସେପ୍ଟେମ୍ବର ୧୪ ତାରିଖରୁ ବସୁଥିବାରୁ ସେ ଆସିବା ସମ୍ଭବ ହେଲା ନାହିଁ ।

ସେଦିନ ସନ୍ଧ୍ୟାରେ ମୋ ପାଇଁ ସବୁଠାରୁ ପରମ ବିସ୍ମୟ ଆଉ ଏକ ମର୍ଯ୍ୟାଦାଜନକ ଘଟଣା ଅପେକ୍ଷା କରିଥିଲା । ସନ୍ଧ୍ୟା ପାଞ୍ଚଟା ବେଳକୁ ବିଜୁବାବୁଙ୍କ ପି.ଏ. ମୋତେ ଟେଲିଫୋନ୍ କଲେ । କହିଲେ ସାର୍ ଚିଫ୍ ମିନିଷ୍ଟର ଆପଣଙ୍କୁ ଡାକୁଛନ୍ତି । ବ୍ୟସ୍ତ ନାହାନ୍ତି ତ ? ମୁଁ କହିଲି ନା ନା ମୁଁ ଆସୁଛି । ମୁଁ ସାଙ୍ଗେ ସାଙ୍ଗେ ପ୍ୟାଣ୍ଟ ସାର୍ଟ ପିନ୍ଧି ବାହାରିଲି । ବିଜୁବାବୁଙ୍କ ରୁମ୍ ବାହାରେ ଥିବା ଚପରାଶି ମୋତେ ଦେଖି ସାଙ୍ଗେ ସାଙ୍ଗେ ଡୋର ଖୋଲି ଦେଲା । ମୁଁ ଭିତରକୁ ଗଲି । ନମସ୍କାର କରି ଠିଆ ହେଲି । ବିଜୁବାବୁଙ୍କ ପାଖରେ ଚନ୍ଦ୍ରମୋହନ ସିଂହ ବସିଥିଲେ । ଏବଂ ମୁଁ ପହଞ୍ଚିବା ପରେ ପରେ ନୀଳମଣି ରାଉତରାୟ ଆସି ପହଞ୍ଚିଲେ । ସେତେବେଳେ ନୀଳମଣି ବାବୁ କେନ୍ଦ୍ରରେ ଜଙ୍ଗଲ ଓ ପରିବେଶ ବିଭାଗ ମନ୍ତ୍ରୀ ଥା'ନ୍ତି । ନୀଳମଣି ବାବୁ ମତେ ଦେଖି ପଚାରିଲେ ଆରେ ବରେନ୍ଦ୍ର କେବେ ଆସିଛୁ ? ମୁଁ କିଛି କହିବା ପୂର୍ବରୁ ବିଜୁବାବୁ ମୋତେ ତାଙ୍କ ପାଖକୁ ଡାକିଲେ । ତା'ପରେ ତାଙ୍କ ଟି-ପଏ ଉପରେ ଥିବା ଏକ ପ୍ୟାକେଟ୍କୁ ମୋତେ

ବଢ଼େଇ ଦେଇ କହିଲେ ଯାଅ, blessing & good wishes is with you. ନୀଳମଣିବାବୁ ବିଜୁବାବୁଙ୍କୁ ପଚାରିଲେ କ'ଣ କଥା କ'ଣ ? ବିଜୁବାବୁ କହିଲେ ଧଳ ଏନ୍.ୟୁ.ଜେ.(ଆଇ)ର ପ୍ରେସିଡେଣ୍ଟ ହୋଇଛି । I am really proud of you. ନୀଳମଣିବାବୁ ହସିହସି ମୋ ସହିତ କରମର୍ଦ୍ଦନ କଲେ । କହିଲେ ବରେନ୍ଦ୍ର, ମୋର ଅଭିନନ୍ଦନ । ଯାହା ହେଉ ତମର ଏ କୃତିତ୍ୱ ଓଡ଼ିଶାକୁ ଗର୍ବିତ କରିବ । ମୁଁ ବିଜୁବାବୁଙ୍କ ପାଦ ଛୁଇଁଲି । ନୀଳମଣିବାବୁଙ୍କ ପାଦଛୁଇଁ ବାହାରି ଆସିଲି । ରୁମ୍‌ରେ ମୋ ସ୍ତ୍ରୀଙ୍କୁ ସବୁ କହି ପ୍ୟାକେଟ୍‌ଟା ଖୋଲିଲି । ଦେଖିଲି ଗୋଟିଏ MONT BLANC ବଲ୍ ପେନ୍ । ଆଜି ପର୍ଯ୍ୟନ୍ତ ସେ ପେନ୍‌ଟି ମୁଁ ଅତି ଯତ୍ନର ସହ ରଖିଛି । ବିଜୁବାବୁଙ୍କର ମୋ ପ୍ରତି ସେଦିନର ଏହି ଆଶୀର୍ବାଦ କଥା ମନେ ପଡ଼ିଲେ ଆଜି ବି ମୋ ଆଖିରେ ଲୁହ ଓ ମନରେ ଆନନ୍ଦର କୋହ ଆସେ ।

ମୁଁ ଦିଲ୍ଲୀରେ ପହଞ୍ଚିବା ପରେ ଆମ ୟୁନିୟନ ପକ୍ଷରୁ ମୋର ଯିବା ଆସିବା ପାଇଁ ଏକ ମାରୁତି ଭ୍ୟାନ୍ ଦିଆଯାଇଥିଲା । ଅଫିସ୍ ସେକ୍ରେଟାରୀ ମୋତେ ଓଡ଼ିଶା ଭବନରେ ଦେଖା କରି କହିଲେ ସାର୍ ଆପଣ ଏଇ ଗାଡ଼ିରେ ହରିଦ୍ୱାର ଯିବେ । ଆପଣଙ୍କ ପାଇଁ BHEL(Bharat Henvy Electrical Ltd.) ର V.I.P. Guest House ରେ V.I.P. Suite ରହିଛି । କାଲି ସକାଳ ୧୦ଟାରେ ଗୁପ୍ତାଜୀଙ୍କ ଗାଡ଼ି, ପ୍ରଭୁ ସାହେବଙ୍କ ଗାଡ଼ି ବାହାରିବ । ଆପଣ ସେମାନଙ୍କ ସାଙ୍ଗରେ ଯିବେ । ସେମାନେ ସକାଳେ ଆପଣଙ୍କ ପାଖକୁ ଆସିବେ ।

ପରଦିନ ଅର୍ଥାତ୍ ସେପ୍ଟେମ୍ବର ୧୨ ତାରିଖରେ ମୁଁ ଦିନ ୧୦ଟା ସୁଦ୍ଧା ସବୁକାମ ଶେଷ କରି ଗୁପ୍ତା ଆଉ ପ୍ରଭୁଙ୍କୁ ଅପେକ୍ଷା କଲି । ଦିନ ୧୦ଟା ୧୫/୨୦ ମିନିଟ୍ ବେଳକୁ ଦୁହେଁ ଆସିଲେ । ଗୁପ୍ତା, ଭାବିଜୀ, ତାଙ୍କ ଦୁଇ ଝିଅ ମାନୁ ଆଉ ନିଧି । ପ୍ରଭୁ, ମିସେସ୍ ପ୍ରଭୁ ଏବଂ ତାଙ୍କ ଝିଅ ସମସ୍ତେ ଆସିଲେ । ଆମେ ଏକା ସାଙ୍ଗେ ହରିଦ୍ୱାର ବାହାରିଲୁ ଦିନ ଗୋଟାଏ ଦେଢ଼ଟା ବେଳକୁ । ବାଟରେ ଏକ ଗାର୍ଡେନ ରେଷ୍ଟୁରାଣ୍ଟରେ ସମସ୍ତେ ଲଞ୍ଚ୍ କଲୁ । ସେଇ ଗାର୍ଡେନ ରେଷ୍ଟୁରାଣ୍ଟର କିଛିବାଟ ତଳକୁ ଚନ୍ଦ୍ରଶେଖରଙ୍କ ବିରାଟ ଆଶ୍ରମ । ଗୁପ୍ତାଜୀ ମତେ ଦେଖାଇ ଦେଲେ । କହିଲେ ଚନ୍ଦ୍ରଶେଖର ଏଠି ଶହେ ଏକର ଜମିରେ ଆଶ୍ରମ ବନେଇଛନ୍ତି ।

## -ହରିଦ୍ୱାରରେ ଏନ୍.ୟୁ.ଜେ ସମ୍ମିଳନୀ-

ଦିନ ଚାରିଟା ବେଳକୁ ସମସ୍ତେ ହରିଦ୍ୱାରରେ ପହଞ୍ଚିଲୁ । ମୋର ଏହା ପ୍ରଥମ ହରିଦ୍ୱାର ଯାତ୍ରା । ଆମେ ସିଧା ଯାଇ ଭେଲ୍ ଭି.ଆଇ.ପି. ଗେଷ୍ଟହାଉସ୍‌ରେ ପହଞ୍ଚିଲୁ । ମୋ ପାଇଁ ଏକ ଭି.ଆଇ.ପି. ସୁଇଟ୍ ରହିଥାଏ । ଏହି ସୁଇଟ୍‌ରେ ଗୋଟିଏ ବୈଠକଖାନା ଯେଉଁଠି ଅନ୍ତତଃ କୋଡ଼ିଏ ଜଣ ବସିବା ଭଳି ସୋଫାସେଟ୍ ଥାଏ । ଗୋଟିଏ ଫ୍ରିଜ୍ । ଫ୍ରିଜ୍ ଭିତରେ ତିନିବୋତଲ ବିୟର, ଦୁଇ ବୋତଲ ହୁଇସ୍କି, ଯାହା ମନେ ପଡୁଛି ଗୋଟିଏ ପିଟର୍‌ସ୍କଟ ଆଉ ଗୋଟିଏ ରୟାଲ୍ ଚାଲେଞ୍ଜ୍ । ବାକି ଛ' ବୋତଲ ସୋଡ଼ା ଏବଂ ଛ' ବୋତଲ ସଫ୍ଟଡ୍ରିଙ୍କ୍ । ଟେବୁଲ୍ ଉପରେ ଗୋଟିଏ ବଡ଼ ଗାଡୁଆ ଚାଇନିଜ୍ ପ୍ଲେଟ୍‌ରେ ସେଉ, କମଳା ଆଦି ଫଳ । ଡ୍ରଇଁରୁମ୍‌ର କବାଟ ଖୋଲିଲେ ପ୍ରଶସ୍ତ ବେଡ଼୍‌ରୁମ୍ । ଚମତ୍କାର ସାଜସଜ୍ଜା ଏବଂ ଟେବୁଲ୍ ଚେୟାର୍ । ଚାରିଜଣ ବସିବା ଭଳି ସୋଫା ସେଟ୍ । ଟେବୁଲ୍ ଉପରେ ସେ ଡ୍ରଇଁରୁମ୍ ଭଳି ଗୋଟିଏ ଗାଡୁଆ କାଚ ପାତ୍ରରେ ଫଳ । ଗୋଟିଏ ଛୋଟ ଫ୍ରିଜ୍ । ତା' ଭିତରେ ଛ' ବୋତଲ ସଫ୍ଟଡ୍ରିଙ୍କ୍ । (କୋକାକୋଲା-ଫାଣ୍ଟା) । ବେଡ଼୍‌ରୁମ୍‌କୁ ଲାଗି ଡ୍ରେସିଂରୁମ୍ । ତା' ଭିତରେ ଆଲ୍‌ମିରା । ହାଙ୍ଗର ଏବଂ ଚାରୋଟି ଛୋଟ-ବଡ଼ ଟର୍‌କିସ୍ ଟାଉଲିଆ, ସୁଗନ୍ଧିତ ସାବୁନ୍ । ତା' ପାଖରେ ବାଥ୍‌ରୁମ୍ । ବାଥ୍‌ରୁମ୍ ଭିତରେ ବାଥ୍‌ଟବ୍- ପ୍ରଶସ୍ତ

ବାଥ୍‌ରୁମ୍ । ବାଥ୍‌ଟବ୍‌ରେ ଗାଧୋଇବା ପାଇଁ ସୁଗନ୍ଧିତ ସେଣ୍ଟ । ଛୋଟ ଛୋଟ ଶିଶି । ନାକରେ ନେଇ ଶୁଙ୍ଘିଲି ଚମତ୍କାର ବାସ୍ନା । ବାଥ୍‌ଟବ୍‌ରେ ସାବୁନ୍ ପାଣିରେ ଗାଧୋଇ ସାରିବା ପରେ ପରିଷ୍କାର ପାଣିରେ ଏହି ବାସ୍ନା ସେଣ୍ଟଗୁଡ଼ିକ ପକାଇ ଗାଧୋଇବାକୁ ହୁଏ । କିଛି ସମୟ ଏହି ପରିଷ୍କାର ପାଣି ଭିତରେ ରହି ଉଠିବା ବେଳକୁ ତୁମ ଦେହ ସୁଗନ୍ଧରେ ଭରି ଯାଇଥିବ ।

'ଭେଲ୍'ର ଏହି ଭି.ଆଇ.ପି. ଅତିଥିଭବନରେ ଏହିଭଳି ସ୍ୱତନ୍ତ୍ର ସୁଇଟ୍ ଛ'ଟି ଥିଲା । ବାକି ଚଉଦଟି ସୁଇଟ୍ ମଧ ଆରାମ୍‌ଦାୟକ ଥିଲା । ସବୁ ରୁମ୍‌ରେ ଶୀତତାପ ନିୟନ୍ତ୍ରିତ ବ୍ୟବସ୍ଥା ଥିଲା । ସବୁ ସ୍ୱତନ୍ତ୍ର ସୁଇଟ୍ ପାଇଁ ଜଣେ ଜଣେ ରୁମ୍‌ବୟ ଆଟାଚ୍ ଥାଏ । ଆମେ ଏତେସବୁ ବଖାଣିବାର ଏକମାତ୍ର ହେତୁ ହେଲା ଭେଲ୍ ହେଉଛି କେନ୍ଦ୍ର ସରକାରଙ୍କର ଏକ ସାଧାରଣ ଉଦ୍ୟୋଗ । ସରକାରୀସ୍ତରରେ ଏଇ ଯେଉଁ ବ୍ୟବସ୍ଥା ରହିଛି ତା'ର ରକ୍ଷଣାବେକ୍ଷଣ ପାଇଁ ଯେଉଁ ବିପୁଳ ଖର୍ଚ୍ଚ ହୁଏ ତାହା ଏ ଦେଶର ଜନସାଧାରଣ ବହନ କରନ୍ତି । କିଏ ଆସି ଏଠି ରୁହନ୍ତି ? ଛାଡ଼ନ୍ତୁ- ଆମେ ପାଞ୍ଚ ଦିନର ଅତିଥି ।

ପରଦିନ ଭେଲ୍ ଅଡିଟୋରିୟମ୍‌ରେ ଆମର ଦ୍ୱିବାର୍ଷିକ ଅଧିବେଶନ ବିରାଟ ସୁସଜ୍ଜିତ ଅଡିଟୋରିୟମ୍ । ଦୁଇ ହଜାରରୁ ଅଧିକ ଦର୍ଶକ ବସିବାର ବ୍ୟବସ୍ଥା । ବାଲ୍‌କୋନି ଲାଗି ଆସିଥିଲା ହଲ୍‌ର ଅଧାଯାଏ । ମଞ୍ଚ ମଧ ବେଶ୍ ବଡ଼ । ଆମ ସମ୍ମିଳନୀ ଆରମ୍ଭ ହେଲା ସାଢ଼େ ୧୧ଟାରେ । ମଞ୍ଚାସୀନ ଥିଲେ ଉତ୍ତରପ୍ରଦେଶ ମୁଖ୍ୟମନ୍ତ୍ରୀ ମୁଲାୟମ ସିଂହ ଯାଦବ, ସମ୍ମାନିତ ଅତିଥି ଥିଲେ କେନ୍ଦ୍ର ତଥ୍ୟ ଓ ବେତାର ମନ୍ତ୍ରୀ ପି. ଉପେନ୍ଦ୍ର, ଅନ୍ୟତମ ଅତିଥି ଥିଲେ ବ୍ରସେଲ୍ସସ୍ଥିତ ଆନ୍ତର୍ଜାତିକ ସାମ୍ବାଦିକ ମହାସଂଘର ସାଧାରଣ ସମ୍ପାଦକ ଏଡେନ୍ ହ୍ୱାଇଟ୍, ପାର୍ଲ୍ୟାମେଣ୍ଟ ସଦସ୍ୟ ରାଜମୋହନ ଗାନ୍ଧୀ(ମହାତ୍ମା ଗାନ୍ଧୀଙ୍କ ନାତି), ଜନତାଦଳ ନେତା ଜୟପାଲ ରେଡ୍ଡି, ଏନ୍.କେ.ପି. ସାଲ୍‌ଭେ (କଂଗ୍ରେସ ଏମ୍.ପି. ଓ ପୂର୍ବତନ ତଥ୍ୟ ଓ ବେତାର ମନ୍ତ୍ରୀ) ଏବଂ ହରିଦ୍ୱାର ଗୁରୁକୁଳ ବିଶ୍ୱବିଦ୍ୟାଳୟ କୁଳପତି ସୁଭାଷ ବିଦ୍ୟାଲାଙ୍କାର । ସମ୍ମିଳନୀରେ ବାଂଲାଦେଶର ଏକ ଛ'ଜଣିଆ ପ୍ରତିନିଧି ଦଳ ମଧ ଯୋଗ ଦେଇଥିଲେ ।

ଅଡିଟୋରିୟମ୍‌ରେ କାଶ୍ମୀରରୁ କନ୍ୟାକୁମାରୀ ପର୍ଯ୍ୟନ୍ତ ଉପସ୍ଥିତ ଅଛନ୍ତି ସାମ୍ବାଦିକ । ଦେଶର ବହୁ ବିଶିଷ୍ଟ ସାମ୍ବାଦିକ ମଧ ଏହି ଅଧିବେଶନରେ ଉପସ୍ଥିତ । ମଞ୍ଚାସୀନ ଅଛନ୍ତି ଭାରତର ବହୁ ବିଖ୍ୟାତ ଜନନେତା । ଏଇ ପରିବେଶରେ ମୁଁ ବରେନ୍ଦ୍ର କୃଷ୍ଣ ଧଳ ସଭାପତି ଆସନ ଅଳଙ୍କୃତ କରିଛି । ଈଶ୍ୱରଙ୍କ ଆଶୀର୍ବାଦ ନଥିଲେ ପ୍ରଭୁ ହନୁମାନଙ୍କ କୃପା ନଥିଲେ ବାଙ୍କୀ ଚର୍ଚ୍ଚିକା ଗ୍ରାମର ଏକ ନିମ୍ନ ମଧବିତ୍ତ ପରିବାରର ସନ୍ତାନ ଏଭଳି ମର୍ଯ୍ୟାଦାଜନକ ଆସନରେ ଏଠି ପହଞ୍ଚିବା ସମ୍ଭବ ନଥିଲା । ମୋ ପଛରେ ବିଶ୍ୱବିଦ୍ୟାଳୟର କୌଣସି ସମ୍ମାନଜନକ ଡିଗ୍ରୀ ନଥିଲା । ସମ୍ଭବତଃ ଥିଲା ଈଶ୍ୱର ବିଶ୍ୱାସ, ଅଧବସାୟ, ମୋର ପରିଶ୍ରମ, ମୋର ସଂଗଠନ ପ୍ରତି ଅକୃତ୍ରିମ ସେବା ଆଉ ଥିଲା ଭାରତବର୍ଷର ବିଭିନ୍ନ ରାଜ୍ୟର ଶହ ଶହ ସାମ୍ବାଦିକ ବନ୍ଧୁମାନଙ୍କର ସ୍ନେହ, ଶ୍ରଦ୍ଧା, ଅକପଟ ଭଲ ପାଇବା ।

ବିଦାୟୀ ସଭାପତି ଶ୍ରୀ ରାଜେନ୍ଦ୍ର ପ୍ରଭୁ ତାଙ୍କ ଅଭିଭାଷଣରେ କହିଲେ ମୁଁ ଅତ୍ୟନ୍ତ ଆନନ୍ଦିତ ଯେ ଆମେ ଏଭଳି ଜଣେ ସଭାପତିଙ୍କୁ ପାଇଛୁ ଯେ ଓଡ଼ିଶାର କେବଳ ଜଣେ ବିଖ୍ୟାତ ସାମ୍ବାଦିକ ନୁହଁନ୍ତି, ଜଣେ ପ୍ରଖ୍ୟାତ ଓଡ଼ିଆ ସାହିତ୍ୟିକ ଆଉ ଜଣେ ନିରଳସ ସଂଗଠକ ନ୍ୟାସନାଲ୍ ୟୁନିୟନ୍ ଅଫ୍ ଜର୍ଣ୍ଣାଲିଷ୍ଟ (ଇଣ୍ଡିଆ) ଗଠନ ହେବା ପରେ ୧୯୭୩ ରେ ଯେଉଁ ପ୍ରଥମ ଦୁଇଟି ରାଜ୍ୟ ୟୁନିୟନ ଏହା ସହ ଅଙ୍ଗିଭୂତ ହେଲେ ସେଥିମଧରୁ ଓଡ଼ିଶା ୟୁନିୟନ ଅଫ୍ ଜର୍ଣ୍ଣାଲିଷ୍ଟ ଅନ୍ୟତମ । ଶ୍ରୀ ଧଳ ସେହି ପ୍ରସ୍ତାବ ନେଇ ପ୍ରଥମେ ଆସିଥିଲେ । ବସ୍ତୁତଃ ଏନ୍.ୟୁ.ଜେ.(ଆଇ)ର ସମ୍ଭବତଃ

ବର୍ତ୍ତମାନ ସବୁଠାରୁ ବରିଷ୍ଠତମ ସଦସ୍ୟ । ଆଉ ସେଇଥିପାଇଁ ତାଙ୍କ ସହ ପ୍ରତିଦ୍ୱନ୍ଦ୍ୱିତା କରୁଥିବା ଜୀବନ୍ମୟ କାର୍ଲେକାର, ନନ୍ଦକିଶୋର ତ୍ରିଖା ଆଉ ଶ୍ରୀ କାଲେ ତାଙ୍କ ପ୍ରତି ସମ୍ମାନ ଜଣାଇ ନିଜ ନିଜ ପ୍ରାର୍ଥୀପତ୍ର ପ୍ରତ୍ୟାହାର କରିନେଲେ । ଶ୍ରୀ ପ୍ରଭୁଙ୍କ ଭାଷଣକୁ ସମଗ୍ର ପ୍ରେକ୍ଷାଳୟରେ ବିପୁଳ କରତାଳି ଧ୍ୱନିରେ ସ୍ୱାଗତ କରାଗଲା । ଶ୍ରୀ ପ୍ରଭୁ କହିଲେ ବର୍ତ୍ତମାନ ମୁଁ ଆମର ନୂତନ ସଭାପତି ଶ୍ରୀ ବରେନ୍ଦ୍ରକୃଷ୍ଣ ଧଳଙ୍କୁ ସଭା ପରିଚାଳନା ପାଇଁ ନିମନ୍ତ୍ରଣ କରିବା ସଙ୍ଗେସଙ୍ଗେ ତାଙ୍କ ସଭାପତି ଅଭିଭାଷଣ ପାଇଁ ଅନୁରୋଧ କରୁଛି ।

ମୁଁ ସଭାପତି ଭାଷଣ ଦେବା ପାଇଁ ଉଠିବା ପୂର୍ବରୁ ହରିଦ୍ୱାର ସାମ୍ବାଦିକ ୟୁନିୟନ୍ ପକ୍ଷରୁ ମୋତେ ଫୁଲମାଳ, ସାଲ୍ ଓ ଏକ ବଡ଼ ତମ୍ବା କମଣ୍ଡଳୁରେ ଗଙ୍ଗାଜଳ ଦେଇ ସମ୍ବର୍ଦ୍ଧନା କରାଗଲା । କରତାଳି ଧ୍ୱନି ମଧ୍ୟରେ ପୋଡ଼ିୟମ ନିକଟକୁ ଗଲି ମୋର ସଭାପତି ଅଭିଭାଷଣ ଦେବାପାଇଁ । ପୋଡିୟମ୍ ପାଖରେ ଠିଆହୋଇ କିଛି ମୁହୂର୍ତ୍ତ ପାଇଁ ସମ୍ମୁଖ ଭାଗକୁ ଚାହିଁଲି । ମଞ୍ଚରେ ଉପବିଷ୍ଟ ବିଶିଷ୍ଟ ବ୍ୟକ୍ତିମାନଙ୍କୁ ଚାହିଁଲି । ମୋ ହାତରେ ଟାଇପ୍ ହୋଇ ରହିଥିଲା ଇଂରାଜୀ ଭାଷାର ସଭାପତି ଅଭିଭାଷଣ । ପୋଡ଼ିୟମ୍ ଉପରେ ତାକୁ ରଖିଲି । ମାଇକ୍ରୋଫୋନ୍ ଲୋକ ମୋ ସାମ୍ନା ସ୍ପିକରକୁ ମୋ ମୁହଁ ପାଖକୁ ନୁଆଇଁ ଦେଲା । ମୁଁ ସାମ୍ନାକୁ ଚାହିଁ କେମିତି କେଜାଣି ଅଭିଭୂତ ହୋଇ ପଡ଼ିଲି । ଇଂରାଜୀ ଭାଷାର ସଭାପତି ଅଭିଭାଷଣ ପାଠ କରିବା ପୂର୍ବରୁ କିପରି ମୋର ଅବଚେତନ ମନ ଭିତରୁ ଓଡ଼ିଆରେ ମୁଁ କହିବାକୁ ଆରମ୍ଭ କରିଦେଲି । ହରିଦ୍ୱାର ସମ୍ମିଳନୀକୁ ଓଡ଼ିଶାରୁ ପ୍ରାୟ ଅଶୀରୁ ଉର୍ଦ୍ଧ୍ୱ ପ୍ରତିନିଧି ଯାଇଥିଲେ । ସମସ୍ତେ ଓଡ଼ିଆ ଭାଷଣ ଶୁଣି ହଠାତ୍ କିଛି ମୁହୂର୍ତ୍ତ ପାଇଁ ସ୍ତମ୍ଭିତ ହୋଇଗଲେ । ତା'ପରେ ଆମ ଓଡ଼ିଶା ପ୍ରତିନିଧିମାନେ ପ୍ରବଳ କରତାଳି ଧ୍ୱନି ଦେଇ ମୋର ଭାଷଣକୁ ସ୍ୱାଗତ କଲେ । ତିନି/ଚାରି ମିନିଟ୍ କହିବା ପରେ ମୁଁ ମୋର ଓଡ଼ିଆ ଭାଷଣ ବନ୍ଦ କଲି । ତା'ପରେ ଇଂରେଜୀରେ କହିଲି, Friends, I am sorry to make you wait for some time. Because except my Oriya firends others are not in a position to understand my speech. I spoke in my mother tongue in Oriya. I thought it proper to start my speech in Oriya because this language journlism virtually has braught me to this prestigions position. So I thought it proper to pay my respect to my mothertongue. I am sorry for giving you some uncomfatable moment.

ମୋର ଏହି କୈଫିୟତକୁ ଉପସ୍ଥିତ ବିଶିଷ୍ଟ ଅତିଥି, ପ୍ରେକ୍ଷାଳୟରେ ଉପସ୍ଥିତ ଦର୍ଶକମାନେ କରତାଳି ଧ୍ୱନିରେ ସ୍ୱାଗତ କଲେ । ଏହି ସମୟରେ ଆଉ ଏକ ଘଟଣା ଘଟିଲା । ସମ୍ମୁଖଭାଗରେ ବସିଥିବା ନବଭାରତ ଟାଇମ୍ସ ଦିଲ୍ଲୀ ଆବାସିକ ସମ୍ପାଦକ ଶ୍ରୀ ନନ୍ଦକିଶୋର ତ୍ରିଖା ଠିଆ ହୋଇ ଇଂରାଜୀରେ ବଡ଼ ପାଟିରେ କହିଲେ Mr. Dhal you can continue your speech in Oriya, I will translate it in English or Hindi because I feel Oriya is one of the finest Lyrical languages of this country. ତ୍ରିଖାଙ୍କ କଥା ଶୁଣି ମୁଁ ରୀତିମତ ଆଶ୍ଚର୍ଯ୍ୟ ହୋଇଗଲି । ସେଇ ଷ୍ଟେଜ୍ ଉପରୁ ପଚାରିଲି ଆପଣ ଓଡ଼ିଆ ଜାଣନ୍ତି ? ସେ କହିଲେ ମୁଁ ୧୯୫୮ରୁ ୧୯୬୨ ପର୍ଯ୍ୟନ୍ତ କଟକରେ ହିନ୍ଦୁସ୍ଥାନ ସମାଚାରର ମୁଖ୍ୟ ଥିଲି । ସେଇଠି ମୁଁ ଓଡ଼ିଆ ଶିଖିଛି । ମୋର ଗୁରୁ ଥିଲେ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ । ମୁଁ ତାଙ୍କୁ ମୋ ମାତୃଭାଷା ପ୍ରତି ତାଙ୍କର ଶ୍ରଦ୍ଧା ଦେଖି ଧନ୍ୟବାଦ ଜଣାଇଲି ଏବଂ ଇଂରେଜୀରେ ମୋର ଲିଖିତ ସଭାପତି ଅଭିଭାଷଣ ପ୍ରଦାନ କଲି । ମୁଁ ଏଠି ଯାହା ଲେଖୁଛି ତାହା ଅତିଶୟୋକ୍ତି ନୁହେଁ । ଏହାର କ୍ୟାସେଟ୍ ମଧ୍ୟ ମୋ ପାଖରେ ରଖିଛି ।

ଜାତୀୟ ସାମ୍ବାଦିକ ୟୁନିୟନ୍‌ର ସର୍ବଭାରତୀୟ ସଭାପତି ରୂପେ ନିର୍ଦ୍ୱନ୍ଦ୍ୱରେ ନିର୍ବାଚିତ ହେଲି ୧୯୯୦ ସେପ୍ଟେମ୍ବର ୧୩ ତାରିଖରେ । ହରିଦ୍ୱାର ଠାରେ ଭାରତ ହେଭି ଇଲେକ୍‌ଟ୍ରୋନିକ୍ ସଂସ୍ଥାର ପ୍ରେକ୍ଷାଳୟରେ ଏହି

ଅଧିବେଶନ ଅନୁଷ୍ଠିତ ହୋଇଥିଲା । ଭାରତ ବର୍ଷର ବୃହତ୍ତମ ସାମ୍ବାଦିକ ସଂସ୍ଥାର ସଭାପତି ନିର୍ବାଚିତ ହେବାପରେ ମନରେ ଏକ ରୋମାଞ୍ଚ ସୃଷ୍ଟି ହୋଇଥିଲା । କିନ୍ତୁ ପର ମୁହୂର୍ତ୍ତରେ ମନରେ ଭୟ ହେଲା ଯେ ମୁଁ ଯଥାର୍ଥ ଭାବେ ଏ ଦାୟିତ୍ୱ ପାଳନ କରିପାରିବି ତ ? ସବୁଠୁ ବଡ଼ ବିପଦ ହେଲା ଭାଷା । ଇଂରାଜୀ ଭାଷାରେ ମୋର ବ୍ୟୁତ୍ପତ୍ତି ବିଶେଷ ନଥିଲା । ମୋ ଆଗରେ ସବୁଠୁ ବଡ଼ ଚାଲେଞ୍ଜ ହେଲା ଇଂରାଜୀ ଭାଷାକୁ ଆୟତ୍ତ କରିବା । ଘରକୁ ଫେରିଆସି ଜଣେ ଇଂରେଜୀ ପ୍ରଫେସର୍ ବନ୍ଧୁଙ୍କୁ ଏ ସମ୍ପର୍କରେ କହିଲି । ସେ କହିଲେ ଯେ କୌଣସି ଇଂରାଜୀ ଖବରକାଗଜର ସମ୍ପାଦକୀୟ ପୃଷ୍ଠାରେ ପ୍ରକାଶିତ ନିବନ୍ଧ ଓ ସମ୍ପାଦକୀୟକୁ ସ୍ପଷ୍ଟଭାବେ ଉଚ୍ଚାରଣ କରି ଭାଷଣ ଦେବାଭଳି ଢଙ୍ଗରେ ପଢ଼ନ୍ତୁ । ତା'ଛଡ଼ା ଇଂରେଜୀ ଅଭିଧାନରେ ଥିବା କିଛି କିଛି ନୂଆ ଶବ୍ଦ ଓ ତା'ର ପ୍ରୟୋଗକୁ ଲକ୍ଷ୍ୟ କରନ୍ତୁ । ସେଇଆ କଲି । ପ୍ରତିଦିନ ରାତିରେ ପ୍ରାୟ ଦୁଇଘଣ୍ଟା ଅଭ୍ୟାସ କଲି । ମାସକ ପରେ ମୁଁ ଇଂରାଜୀ କହିବାରେ ଏବଂ ଉଚ୍ଚାରଣ କରିବାରେ ଅନେକ ସହଜବୋଧ କଲି । ଅକ୍ଟୋବର ପୂଜା ପୂର୍ବରୁ ଏନ୍.ୟୁ.ଜେ. ଅଫିସ୍‌ରୁ ଆମ ସେକ୍ରେଟାରୀ ଜେନେରାଲ୍ ଏ.ଏନ୍.ମିଶ୍ର (ଅଚ୍ୟୁତାନନ୍ଦ ମିଶ୍ର) ମୋ ପାଖକୁ ଟେଲିଫୋନ୍ କରି କହିଲେ ଧଳ ସାହେବ ଡିସେମ୍ବର ୧୪ ତାରିଖ ବେଳକୁ ସିମଲାରେ ପ୍ରଥମ କାର୍ଯ୍ୟ ନିର୍ବାହିକା କମିଟି ବୈଠକ ବସିବ । ଆମେ ନୂଆ ହୋଇ ଯେଉଁମାନେ କର୍ମକର୍ତ୍ତା ହେଲେ ନଭେମ୍ବର ୩ ତାରିଖରେ ଦିଲ୍ଲୀରେ ବସି କ'ଣ କ'ଣ କାର୍ଯ୍ୟକ୍ରମ ହେବ ସେ ସବୁ ଆଲୋଚନା କରିବା । ଆପଣ ନଭେମ୍ବର ପହିଲା ବେଳକୁ ଦିଲ୍ଲୀ ଆସନ୍ତୁ । ଆପଣଙ୍କ ଯିବା ଆସିବା ଖର୍ଚ୍ଚ ୟୁନିୟନ ବହନ କରିବ । ମୁଁ ନଭେମ୍ବର ପହିଲାରେ ନୀଳାଚଳ ଏକ୍ସପ୍ରେସ୍‌ରେ ବସିଲି । ଦୁଇ ତାରିଖ ସନ୍ଧ୍ୟାରେ ଦିଲ୍ଲୀରେ ପହଞ୍ଚିଲି ।

## -ସିମଲାରେ ପ୍ରଥମ ବୈଠକ-

ସିମଲା ମୁଁ ପୂର୍ବରୁ ଦେଖିନଥିଲି । ୧୯୮୭ରେ ଥରେ ସିମ୍‌ଲାରେ କାର୍ଯ୍ୟକାରୀ ବୈଠକ ହୋଇଥିଲା । ସେତେବେଳେ ମୁଁ ୟୁନିୟନ୍‌ର ଭାଇସ୍-ପ୍ରେସିଡେଣ୍ଟ୍ ଥିଲି । ମାତ୍ର ସିମ୍‌ଲା ଯାଇନଥିଲି । ତେଣୁ ଏଥରର ବୈଠକ ମୋ ପାଇଁ ଆକର୍ଷକ ଥିଲା । ନଭେମ୍ବର ୩ ତାରିଖ ବୈଠକରେ ସିମ୍‌ଲାଠାରେ ୧୯୯୦ ଡିସେମ୍ବର ୧୪ ଓ ୧୫ ତାରିଖରେ କାର୍ଯ୍ୟନିର୍ବାହୀ ବୈଠକ ବସିବା ପାଇଁ ନିଷ୍ପତ୍ତି ହେଲା । ଏହି ବୈଠକରେ କ'ଣ କ'ଣ ଆଲୋଚନା ହେବ ତାହା ସ୍ଥିର କରାଗଲା । ମୁଁ ସିମ୍‌ଲାକୁ ମୋ ପତ୍ନୀକୁ ନେଇ ଯିବାପାଇଁ ଇଚ୍ଛା କରିଥିଲି । ମାତ୍ର ସିମ୍‌ଲାରେ ସ୍ଥାନାଭାବ ଯୋଗୁ କେହି କାହାରି ପରିବାରକୁ ନେଇ ପାରିବେ ନାହିଁ ବୋଲି ନିଷ୍ପତ୍ତି ହେଲା । ଓଡ଼ିଶାରୁ କାର୍ଯ୍ୟକାରୀ କମିଟିକୁ ସ୍ୱତନ୍ତ୍ର ନିମନ୍ତ୍ରିତ ସଭ୍ୟ ରୂପେ ବନ୍ଧୁ ସାମ୍ବାଦିକ ସୁବାସ ଚନ୍ଦ୍ର ପଟ୍ଟନାୟକଙ୍କୁ ମୁଁ ସଭାପତି କୋଟାରେ ମନୋନୀତ କରିଥିଲି । ତେଣୁ ମୁଁ ଓ ସୁବାସ ସିମ୍‌ଲା ସମ୍ମିଳନୀ ପାଇଁ ଡିସେମ୍ବର ୧୦ ତାରିଖରେ ଦିଲ୍ଲୀ ଯାତ୍ରା କଲୁ । ମୁଁ ଫାଷ୍ଟକ୍ଲାସ୍ ଏ.ସି.ରେ ଯାଇଥା'ନ୍ତି । ମାତ୍ର ସୁବାସ ତୃତୀୟ ଶ୍ରେଣୀରେ ଯିବାପାଇଁ କହିଲା । ଅବଶ୍ୟ ଶୀତଦିନ ହୋଇଥିବାରୁ ତୃତୀୟ ଶ୍ରେଣୀ ଏ.ସି.ରେ ଯିବା ଅସୁବିଧା ହେଲାନାହିଁ । ବେଡିଂ ନେଇ ଯାଇଥିଲୁ । ମୋଟା କମଳ ନେଇଥିଲି । ତେଣୁ ଆରାମରେ ଦିଲ୍ଲୀରେ ପହଞ୍ଚିଲୁ ।

୧୨ ତାରିଖରେ ଦିଲ୍ଲୀର ଯନ୍ତର ମନ୍ତର ରୋଡ଼ରେ ଥିବା ଏନ୍.ୟୁ.ଜେ. ଅଫିସ୍‌ରେ ସକାଳ ୧୧ଟାରେ ମୁଁ ଆଉ ସୁବାସ ପହଞ୍ଚିବା ବେଳକୁ ଅଚ୍ୟୁତ ମିଶ୍ର, କେ.ଏନ୍.ଗୁପ୍ତା, ରାଜେନ୍ଦ୍ର ପ୍ରଭୁ, ବଳବିର ପୁଞ୍ଜ, ଏନ୍.କେ. ତ୍ରିଖା ଏବଂ ପି.କେ. ରାୟ ପ୍ରମୁଖ ବନ୍ଧୁମାନେ ପହଞ୍ଚି ସାରିଥିଲେ । ମୋତେ ଦେଖି ସମସ୍ତେ ହୋ ହୋ ହୋଇଉଠି ପଡ଼ିଲେ ।

ଗୁପ୍ତାଜୀ ମୋତେ କୁଣ୍ଢାଇ ପକାଇଲେ । ସମସ୍ତଙ୍କ ସାଙ୍ଗରେ କରମର୍ଦ୍ଦନ କରି ମୁଁ ମୋ ଚେୟାର୍‌ରେ ବସିଲି । ଚା' ଆସିଲା । ଗରମ ଗରମ ସିଙ୍ଗଡ଼ା ଆସିଲା । ତା'ର ସଦ୍‌ବ୍ୟବହାର କରି ସିମଲା କିପରି ଯିବାକୁ ପଡ଼ିବ ସେ କଥା ଆଲୋଚନା ହେଲା । ସ୍ଥିର ହେଲା ମୋଟ ୨୭ଜଣ ସଦସ୍ୟଙ୍କ ମଧ୍ୟରୁ କାଲ୍‌କାଠାରୁ ତିନୋଟି ଆମ୍ବାସାଡାର କାର୍‌ରେ ବାରଜଣ ଯିବେ । ବାକି ପନ୍ଦର ଜଣ ଟ୍ରେନ୍‌ରେ ଯିବେ । ମୁଁ କାର୍‌ରେ ଯିବାପାଇଁ ସ୍ଥିର କଲି । ମୋ କାର୍‌ରେ ସୁବାସ, କେ.ଏନ୍. ଗୁପ୍ତା ଓ ରାଜେନ୍ଦ୍ର ପ୍ରଭୁ ଯିବା ସ୍ଥିର ହେଲା । ସକାଳ ସାଢ଼େ ୭ଟାରେ ଆମେ ଦିଲ୍ଲୀରୁ କାଲ୍‌କାମେଲ୍ ଧରି ଏଗାରଟା ବେଳକୁ କାଲ୍‌କାରେ ପହଞ୍ଚିଲୁ । ସେଇଠୁ ସିମ୍‌ଲା ଆସୋସିଲସନ୍‌ର ତିନିଜଣ ସଦସ୍ୟ କାର୍ ଆଣିଥିଲେ ଏବଂ ପନ୍ଦର ଜଣଙ୍କର ଟିକେଟ କରି ଆମକୁ ଅପେକ୍ଷା କରିଥିଲେ । ଟ୍ରେନ୍ ବାରଟା ବେଳେ ଛାଡ଼ିବ । ଆମେ ସାଢ଼େ ଏଗାରଟା ବେଳକୁ କାର୍ ଛାଡ଼ିଲୁ । ବେଶ୍ ଆରାମପ୍ରଦ କାର୍ । ଡ୍ରାଇଭରସବୁ ସିମ୍‌ଲାର । ତେଣୁ ପୁରା ଏକ୍ସପଟ ।

ଦିନ ଦୁଇଟା ବେଳକୁ ବାଟରେ ଏକ ସହର ପାଖ ଫରେଷ୍ଟ ରେଷ୍ଟୁରାଣ୍ଟରେ ଲଞ୍ଚ୍ କଲୁ । ସାଙ୍ଗରେ ଗୁପ୍ତାଜୀ ଜନିଓ୍ୱକର ରେଡ୍ ଲେଭଲ ଷ୍କଚ୍ ନେଇଥିଲେ । ଥଣ୍ଡା ବେଶ୍ ଲାଗିଲାଣି । ତେଣୁ ସମସ୍ତେ ଦି/ ତିନିପେଗ୍ ଷ୍କଚ୍ ପିଇ ଲଞ୍ଚ୍ ଖାଇ ସିମ୍‌ଲା ଯାତ୍ରା କଲୁ । ସିମ୍‌ଲାକୁ ଯିବା ସମଗ୍ର ପଥ ପାହାଡ଼ ଉପରେ । ତଳେ ତିନିଶହ ଚାରିଶହ ଫୁଟ ବା ଆହୁରି ବେଶି ହେବ । ତଳକୁ ଚାହିଁଲେ ଭୟ ଲାଗୁଥାଏ । ପାହାଡ଼ରେ କେଉଁଠି ପଥର କେଉଁଠି ପୂରା ଜଙ୍ଗଲ । ପ୍ରାକୃତିକ ଶୋଭାରେ ଭରି ଯାଇଛି ସମଗ୍ର ଅଞ୍ଚଳ । ଗପ କରି କରି ସନ୍ଧ୍ୟା ପାଞ୍ଚଟା ବେଳକୁ ସିମ୍‌ଲାରେ ପହଞ୍ଚିଲୁ । ସରକାରୀ ଅଞ୍ଚଳ ମଧ୍ୟରେ ଆମ ରହିବା ବ୍ୟବସ୍ଥା କରାଯାଇଥିଲା । ରାଜ୍ୟ ସଚିବାଳୟ ପାଖରୁ ଅଧମାଇଲ ଦୂରରେ ଏକ ପାଞ୍ଚ ମହଲା ଗେଷ୍ଟ ହାଉସ୍‌ରେ ଆମ ରହିବା ହୋଇଥିଲା । ସବା ତଳ ମହଲା ଭି.ଆଇ.ପି. ମହଲା । ଆମକୁ ସିମ୍‌ଲା ବନ୍ଧୁମାନେ କହିଲେ ଏହି ଗେଷ୍ଟ ହାଉସ୍‌ରେ ଇନ୍ଦିରାଗାନ୍ଧୀ ଓ ଭୁଟୋଙ୍କ ମଧ୍ୟରେ ଚୁକ୍ତି ସ୍ୱାକ୍ଷରିତ ହୋଇଥିଲା । ସେଇ ଗେଷ୍ଟ ହାଉସ୍‌ର ପାଖରେ ଆଉ ଏକ ଗେଷ୍ଟ ହାଉସ୍‌ରେ ଇନ୍ଦିରା ଗାନ୍ଧୀ ଓ ଭୁଟୋ ରହୁଥିଲେ ।

ମୋତେ ଏକ ଭି.ଆଇ.ପି. ସୁଇଟ୍ ଦିଆଯାଇଥିଲା । ପ୍ରଶସ୍ତ ରୁମ୍, ଦୁଇଟି ବେଡ୍ । ଗୋଟିଏ ପୂରା ସୋଫାସେଟ୍ । ରୁମ୍ ଓ୍ୱାର୍ମିଂ ଏ.ସି. ଏବଂ ଗୋଟିଏ ରୁମ୍ ହିଟର ମଧ ଥିଲା । ସିମ୍‌ଲାରେ ସେତେବେଳେ ଭାରତୀୟ ଜନତା ଦଳର ସରକାର ଥିଲା । ଶାନ୍ତାକୁମାର ମୁଖ୍ୟମନ୍ତ୍ରୀ । ଆମେ ରହୁଥିବା ଗେଷ୍ଟ ହାଉସ୍ ଏବଂ ପାଖ ଆଖ ସମସ୍ତ ସରକାରୀ ଗେଷ୍ଟହାଉସ୍‌ରେ ମଦ୍ୟପାନ ସମ୍ପୂର୍ଣ୍ଣ ନିଷିଦ୍ଧ ଥିଲା । ପ୍ରବଳ ଶୀତ । ଅବଶ୍ୟ ମୁଁ ରହୁଥିବା ସୁଇଟ୍‌ଟି ଉଷୁମ ଥିଲା । ସୁବାସକୁ ଉପର ମହଲା ବୋଧେ ଚତୁର୍ଥ ମହଲାରେ ରହିବା ପାଇଁ ବେଡ୍ ଦିଆଯାଇଥିଲା । ସୁବାସ କିଛି ସମୟ ପରେ ମତେ ଫୋନ୍ କଲା । କହିଲା ଭାଇ ଏ ରୁମ୍‌ରେ ହିଟର ଅବଶ୍ୟ ଅଛି ମାତ୍ର ଏଠି ଯେଉଁ ଶୀତ ପଡ଼ିଛି ସେଥିପାଇଁ ଏ ହିଟର କାମ କରିବ ନାହିଁ । ମୁଁ ତାକୁ କହିଲି ତୁ ତୋର ବାକ୍ସ ଧରି ମୋ ରୁମ୍‌କୁ ଚାଲିଆ । ଆମ ଖଟରେ ବେଶ୍ ମୋଟା ମୋଟା ଘୋଡ଼େଇ ହେଲା ରେଜେଇ ଏବଂ ରେଜେଇ ତଳେ ଉଲେନ୍ କମ୍ବଳ ଥିଲା । ସୁବାସ ତା'ର ବାକ୍ସ ଧରି ମୋ ରୁମ୍‌କୁ ଆସିଲା । ରୁମ୍ ଭିତରେ ପହଞ୍ଚି କହିଲା ବାଃ ଏଠି ତ ବେଶ୍ ଉଷୁମ । ଆପଣ ମୋତେ ରକ୍ଷା କରିଦେଲେ । ସୁବାସ ଆସିବା ଫଳରେ ମୋର ଏକ ଲାଭ ହେଲା । ପରଦିନ ସମ୍ମିଳନୀରେ ମୋତେ କ'ଣ କହିବାକୁ ହେବ ସେ ସମ୍ପର୍କରେ ଆଲୋଚନା କଲୁ ।

ସନ୍ଧ୍ୟା ୭ଟାରୁ ଶୀତ ପ୍ରବଳ ହେଲା । ସନ୍ଧ୍ୟା ସାଢ଼େ ସାତଟା ବେଳକୁ ମୋର ରୁମ୍‌କୁ ଗୁପ୍ତାଜୀ, ପ୍ରଭୁ, ଅଚ୍ୟୁତବାବୁ ଆସିଲେ । ସମସ୍ତେ ବସି ପରଦିନ କାର୍ଯ୍ୟକ୍ରମ ସମ୍ପର୍କରେ ଆଲୋଚନା କଲୁ । ହିମାଚଳ ପ୍ରଦେଶ

ସାମ୍ବାଦିକ ୟୁନିୟନ୍‌ର ସଭାପତି, ସମ୍ପାଦକ ଆସି ଆମ ସାଙ୍ଗରେ ଯୋଗଦେଲେ । ଗେଷ୍ଟହାଉସ୍‌ରେ ଯଦିଓ ମଦ୍ୟପାନ ସମ୍ପୂର୍ଣ୍ଣ ନିଷିଦ୍ଧ, କିନ୍ତୁ ସିମ୍‌ଲା ସାମ୍ବାଦିକ ବନ୍ଧୁମାନେ ଦି' ବୋତଲ ସ୍କଚ୍ ହୁଇସ୍କି ଆଣି ଆସିଥିଲେ । ତା' ସାଙ୍ଗରେ ମିକ୍ସଚର ଏବଂ ଲୁଣି କାଜୁ ଆଣିଥିଲେ । ଟ୍ରେନ୍‌ରେ ଆସୁଥିବା ବନ୍ଧୁମାନେ ଆସି ପହଞ୍ଚିଲେ କି ନାହିଁ ମୁଁ ଖୋଜ୍ ଖବର ନେଲି । ଶୁଣିଲି ସନ୍ଧ୍ୟା ସାଢ଼େ ୭ଟାରେ ସମସ୍ତେ ପହଞ୍ଚିଛନ୍ତି ।

ମୁଁ ମୋର ଭାଷଣରେ ହିମାଚଳ ପ୍ରଦେଶ ସମ୍ପର୍କରେ ବିଶେଷ କରି ହିମାଚଳର ମୁଖ୍ୟ ଆକର୍ଷଣ କ'ଣ ଏବଂ ଲୋକଙ୍କ ସାଂସ୍କୃତିକ ଜୀବନ ଭାଷା ଆଦି ସମ୍ପର୍କରେ ସିମ୍‌ଲା ବନ୍ଧୁମାନଙ୍କ ସହ ଆଲୋଚନା କରି ଟିପିନେଲି । ସେମାନେ ଆମକୁ ଜଣାଇଲେ ଯେ ନ'ଟା ସୁଦ୍ଧା ଡିନର ଶେଷ କରିବାକୁ । ଆମ ରୁମ୍‌ରୁ ଦି'ଟା ରୁମ୍ ପରେ ଡାଇନିଂ ହଲ୍। ଆମେ ସମସ୍ତେ ବାଥ୍‌ରୁମ୍‌ରେ ଗରମ ପାଣିରେ ହାତ ମୁହଁ ଧୋଇ ଖାଇବାକୁ ବାହାରିଲୁ । ଗରମ ଗରମ ପରଟା ସାଙ୍ଗରେ ଆଳୁ କୋବି ତରକାରୀ, ଡାଲ୍ ଫ୍ରାଇ ଏବଂ ସବୁ ପରିବା ମିଶି ଏକ ମିକ୍ସ ଭେଜିଟେବୁଲ୍ ଯାହାକୁ ଅକ୍ଷର ଘାଣ୍ଟିଆ କୁହନ୍ତି ପରଷା ଗଲା । ଶୁଦ୍ଧ ନିରାମିଷ ଖାନା କିନ୍ତୁ ଭାରି ସୁସ୍ୱାଦୁ । ଖାଇ ସାରି ଫେରିଲୁ ।

ରାତି ପ୍ରାୟ ଦଶଟା ହେବ ମୋ ରୁମ୍ କବାଟ ଖଟ୍‌ଖଟ୍ ହେଲା । ସୁବାସ କବାଟ ଖୋଲିଲା । ଆପାଦମସ୍ତକ ଘୋଡ଼େଇ ହୋଇ ଜଣେ ଭଦ୍ରବ୍ୟକ୍ତି ରୁମ୍ ଭିତରକୁ ପଶି ଆସିଲା । ମୁହଁରୁ ସେ ଚାଦର କାଢ଼ିବା ପରେ ଦେଖିଲି ଆମ ଦିଲ୍ଲୀ ଅଫିସ୍ ସେକ୍ରେଟାରୀ ମିଃ ଅଶୋକ ଭାରତୀ । ସେ ଚାଦର ଭିତରୁ ଗୋଟିଏ ସ୍କଚ୍ ବୋତଲ ବାହାର କରି କହିଲେ ସାର୍ ଗୁପ୍ତାଜୀ କହିଲେ ଆପଣଙ୍କୁ ଦେବାପାଇଁ । ଶୀତକାଳେ କାମରେ ଲାଗିବ । ଆଉ ଦରକାର ହେଲେ ମତେ କହିବେ । ସୁବାସ କହିଲା ଯାହାହେଉ ଏ ପ୍ରବଳ ଶୀତ ପାଇଁ ଭଲ ବ୍ୟବସ୍ଥା ।

ପରଦିନ ବିଧାନସଭା ନିକଟସ୍ଥ ସମ୍ମିଳନୀ କକ୍ଷରେ କାର୍ଯ୍ୟନିର୍ବାହିକା କମିଟି ବୈଠକକୁ ମୁଖ୍ୟମନ୍ତ୍ରୀ ଶ୍ରୀ ଶାନ୍ତା କୁମାର ଉଦ୍‌ଘାଟନ କଲେ । ସିମ୍‌ଲାର ସାମ୍ବାଦିକ ୟୁନିୟନ୍‌ର ସଭାପତି ଶ୍ରୀ ମହାଦେବ ଚୌହାନ ସ୍ୱାଗତ ଭାଷଣ ଦେବାପରେ ମୁଁ ସଭାପତି ଅଭିଭାଷଣ ଦେଇ ହିମାଚଳ ପ୍ରଦେଶର ସଂସ୍କୃତି, ସଭ୍ୟତା ଲୋକଙ୍କର ଆଚାର, ବ୍ୟବହାର ଏବଂ ବିଶ୍ୱର ଅନ୍ୟତମ ଆକର୍ଷଣୀୟ ପର୍ଯ୍ୟଟନ କେନ୍ଦ୍ର ଆଦି ସମ୍ପର୍କରେ ଉଲ୍ଲେଖ କଲି । ମୋ ପରେ ମୁଖ୍ୟମନ୍ତ୍ରୀ ତାଙ୍କ ଭାଷଣ ଦେଲେ । ଶ୍ରୀ ରାଜେନ୍ଦ୍ର ପ୍ରଭୁ ଧନ୍ୟବାଦ୍ ଅର୍ପଣ କରିଥିଲେ । ଦିନ ଗୋଟାଏ ବେଳେ ବିଧାନସଭା ସଂଲଗ୍ନ ଏକ ହଲ୍‌ରେ ମୁଖ୍ୟମନ୍ତ୍ରୀ ସମସ୍ତଙ୍କୁ ମଧ୍ୟାହ୍ନ ଭୋଜନରେ ଆପ୍ୟାୟିତ କରିଥିଲେ । ମଧ୍ୟାହ୍ନ ଭୋଜନ ପରେ ସାଢ଼େ ୨ଟାରୁ ସନ୍ଧ୍ୟା ୬ଟା ପର୍ଯ୍ୟନ୍ତ କାର୍ଯ୍ୟକାରିଣୀ ବୈଠକ ଚାଲିଲା । ସେଦିନ ( ୧୪ ତାରିଖ ) ପୂର୍ବତନ ମୁଖ୍ୟମନ୍ତ୍ରୀ ବୀରଭଦ୍ର ସିଂହ ସିମ୍‌ଲା ଓବ୍‌ରାଇ ହୋଟେଲ୍‌ରେ ରାତ୍ରି ଭୋଜନ ଦେଇଥିଲେ ।

ଆମେ ସିମ୍‌ଲାରେ ୧୬ ତାରିଖ ପର୍ଯ୍ୟନ୍ତ ରହିଲୁ । ୧୫ ତାରିଖରେ ସିମ୍‌ଲା ସହରଠାରୁ କୋଡ଼ିଏ କିଲୋମିଟର ଦୂର ଏକ ପାହାଡ଼ ଉପରେ ଥିବା ଗେଷ୍ଟ ହାଉସ୍‌ରେ ଲଞ୍ଚ୍ ଏବଂ ରାତିରେ ବାଚସ୍ପତି ଡିନର ଦେଇଥିଲେ ।

ପୂର୍ବତନ ମୁଖ୍ୟମନ୍ତ୍ରୀ ବୀରଭଦ୍ର ସିଂହଙ୍କ ଡିନର ମିଟିଂରେ ଓଡ଼ିଶାରେ ଆଇ.ଏ.ଏସ୍. ପଦବୀରେ ଥିବା ଜଣେ ବନ୍ଧୁ ରାମ ପାଲ୍ ସିଂହ ଦେଖାହେଲେ । ସେ ଚାକିରୀରୁ ଅବସର ନେଇ ସିମ୍‌ଲା ପାଖରେ ଥିବା ତାଙ୍କ ଘରେ ରହୁଥିଲେ । ସେ ରାଜବଂଶର ଏବଂ ବୀରଭଦ୍ର ସିଂହଙ୍କ ସାଙ୍ଗରେ ପରିଚୟ କରାଇଦେଲେ । ସିମ୍‌ଲାରେ ଜଣେ ବିଶିଷ୍ଟ ଓଡ଼ିଆ ବନ୍ଧୁ ଦେଖାହେଲେ । ଆମର ଉଦ୍‌ଘାଟନ ଉତ୍ସବକୁ ସେ ଆସିଥିଲେ । ସେ ହେଉଛନ୍ତି ଅଶୋକ ମହାପାତ୍ର ଆଇ.ଏ.ଏସ୍. ।

ସେତେବେଳେ ସେ ସିମ୍ଲାର ସ୍ୱରାଷ୍ଟ୍ର ବିଭାଗ ପ୍ରମୁଖ ସଚିବ ଥିଲେ । ଭୁବନେଶ୍ୱର ସହରର ମୋ ଘର ପଛ ଲାଇନ୍‌ରେ ତାଙ୍କ ବାପା ଧୃନ ଚନ୍ଦ୍ର ମହାପାତ୍ର(ଡେପୁଟି କଲେକ୍ଟର) ରହୁଥିଲେ । ଅଶୋକ ବାବୁ ବାଣୀବିହାରରେ ପଢ଼ିବା ଦିନୁ ମୋ ସହ ପରିଚିତ । ସେ ମୋତେ ଦେଖି ଏବଂ ଏନ୍.ୟୁ.ଜେ.ର ମୁଁ ସଭାପତି ହୋଇଥିବା ଦେଖି ଭାରି ଆନନ୍ଦିତ ହେଲେ । ତାଙ୍କର ଦୁଇଜଣ ଆଇଏଏସ୍ ବନ୍ଧୁଙ୍କ ସହ ପରିଚୟ କରାଇଦେଇ କହିଲେ ମୋର ବଡ଼ଭାଇ ଭଳି । ଆମ ଓଡ଼ିଶାର । ମୋତେ ଅଶୋକ ବାବୁ ତାଙ୍କ ଘରକୁ ଡିନର ପାଇଁ ନିମନ୍ତ୍ରଣ କରିଥିଲେ । ମାତ୍ର ସଭାପତି ରୂପେ ସିମ୍ଲାର ବାଚସ୍ପତି ବିରୋଧୀଦଳ ନେତା, ପୂର୍ବତନ ମୁଖ୍ୟମନ୍ତ୍ରୀଙ୍କ ଡିନରକୁ ଯିବାକୁ ହେବ । ତେଣୁ ଅଶୋକବାବୁଙ୍କ ଘରେ ଖାଇବାକୁ ପରଦିନ ସନ୍ଧ୍ୟାରେ ମୁଁ ଆଉ ସୁବାସ ଯାଇଥିଲୁ । ଅଶୋକ ବାବୁ କଥା ପ୍ରସଙ୍ଗରେ କହିଲେ ଆପଣଙ୍କୁ ସଭାପତି ରୂପେ ଦେଖି ବାସ୍ତବିକ ମୁଁ ଭାରି ଗର୍ବ ଅନୁଭବ କଲି । ଓଡ଼ିଶା ଏକ ଅନୁନ୍ନତ ଓ ଦରିଦ୍ର ରାଜ୍ୟ ବୋଲି ସମସ୍ତେ ଜାଣନ୍ତି । ମାତ୍ର ଏବେ ରଙ୍ଗନାଥ ମିଶ୍ର(ସୁପ୍ରିମକୋର୍ଟ ମୁଖ୍ୟ ବିଚାରପତି), ରବି ରାୟ(ଲୋକସଭା ବାଚସ୍ପତି) ଆଉ ଆପଣ ଏନ୍‌ୟୁଜେର ସର୍ବଭାରତୀୟ ସଭାପତି । ଗଣତନ୍ତ୍ରର ତିନୋଟି ସ୍ତମ୍ଭର ମୁଖ୍ୟ ରୂପେ ଓଡ଼ିଆମାନେ ରହିଥିବାରୁ ଓଡ଼ିଶା ଆଜି ଗର୍ବିତ ।

ସିମ୍ଲାରେ ଆମର ରହଣି ବେଶ୍ ଉପଭୋଗ୍ୟ ହୋଇଥିଲା । ୧୭ ତାରିଖରେ ଆମେ ସିମ୍ଲା ଛାଡ଼ିଲୁ । ଯେଉଁ କାର୍ ଆମକୁ ନେଇଥିଲା ସେଇ କାର୍ ଆମକୁ ସିଧା ଦିଲ୍ଲୀରେ ଆଣି ଛାଡ଼ିଦେଲା । ଦିଲ୍ଲୀରେ ମୁଁ ଆଉ ସୁବାସ ଓଡ଼ିଶା ଭବନରେ ରହିଲୁ । ସେତେବେଳେ ଓଡ଼ିଶା ନିବାସ ନିର୍ମାଣ ହୋଇନଥିଲା । ପରଦିନ ଆମେ ଓଡ଼ିଶା ଫେରି ଆସିଲୁ ।

ସଭାପତି ରୂପେ ମୁଁ ପ୍ରତ୍ୟେକ କାର୍ଯ୍ୟକାରୀ କମିଟି ବୈଠକରେ ଯୋଗଦେବାକୁ ଏକ ପ୍ରକାର ବାଧ୍ୟ । ଅତି ଅସୁବିଧା ନହେଲେ ମୋତେ ଯିବାପାଇଁ ହେଉଥାଏ । ସିମଲା ପରେ ଆମର ପରବର୍ତ୍ତୀ କାର୍ଯ୍ୟକାରୀ କମିଟି ବୈଠକ ନୂଆଦିଲ୍ଲୀରେ ଏପ୍ରିଲ୍(୧୯୯୧ ମସିହା) ୧୩ ଓ ୧୪ ତାରିଖରେ ଅନୁଷ୍ଠିତ ହୋଇଥିଲା । ଏହି ବୈଠକରେ କାଠମାଣ୍ଡୁ(ନେପାଳ) ପରେ ପ୍ରଥମ ଦକ୍ଷିଣ ଏସିଆ ସାମ୍ବାଦିକ ସମ୍ମିଳନୀ ପାଇଁ ନିଷ୍ପତ୍ତି ହେଲା । କାଠମାଣ୍ଡୁରେ ଜୁନ୍ ୧୯ ରୁ ୨୧ ତାରିଖ ପର୍ଯ୍ୟନ୍ତ ଏହି ସମ୍ମିଳନୀ ପାଇଁ ସମସ୍ତ ଖର୍ଚ୍ଚ ଜର୍ମାନ୍‌ର ଏଫ୍.ଇ.ଏସ୍. ସଂସ୍ଥା ଯୋଗାଇ ଦେବେ ବୋଲି ସମ୍ମତି ପ୍ରକାଶ କରିଥିଲେ । ଏପ୍ରିଲ୍ ବୈଠକ ଦିଲ୍ଲୀ ଉଇଣ୍ଡର ପ୍ଲେସ୍‌ରେ ଥିବା ହୋଟେଲ୍ ମେରିଡିୟନ୍‌ରେ ପ୍ରଥମ ଦିନ ଅନୁଷ୍ଠିତ ହୋଇଥିବା ବେଳେ ଦ୍ୱିତୀୟ ଦିନ ଗାନ୍ଧୀ ପିସ୍ ଫାଉଣ୍ଡେସନ୍ ସଭାଗୃହରେ ଅନୁଷ୍ଠିତ ହୋଇଥିଲା ।

ଏନ୍‌ୟୁଜେ ପକ୍ଷରୁ ଏକ ଆନ୍ତର୍ଜାତିକ ସାମ୍ବାଦିକ ପ୍ରତିଷ୍ଠାନ ପ୍ରତିଷ୍ଠା କରିବା ପାଇଁ ପୂର୍ବରୁ ଏକ ପ୍ରସ୍ତାବ ଗୃହୀତ ହୋଇଥିଲା । ଉତ୍ତର ପ୍ରଦେଶ ସରକାର ମିରଟରେ ଶତାବ୍ଦି ନଗରରେ ପାଞ୍ଚ ଏକର ଜମି ଏଥିପାଇଁ ଏନ୍‌ୟୁଜେକୁ ଦେଇଥିଲେ ଏବଂ ଏନ୍‌ୟୁଜେ ସେ ଜମି ଦଖଲ ନେଇଥିଲା । କାର୍ଯ୍ୟକାରୀ କମିଟି ବୈଠକ ଶେଷରେ ଆମେ ସମସ୍ତେ ଶତାବ୍ଦି ନଗର ଯାଇ ସେ ଜମି ପରିଦର୍ଶନ କରିଥିଲୁ । ଅବଶ୍ୟ ଶେଷ ପର୍ଯ୍ୟନ୍ତ ସେଠାରେ ଏହି ପ୍ରତିଷ୍ଠାନ ନକରି ନୋଏଡ଼ାଠାରେ କରିବା ପାଇଁ ସ୍ଥିର ହେଲା ଏବଂ ସେ ଜମି ପ୍ରତିବଦଳରେ ନୋଏଡ଼ାଠାରେ ଏକ ଜମି ଉତ୍ତର ପ୍ରଦେଶ ସରକାର ପ୍ରଦାନ କଲେ । ମୋ ସଭାପତିତ୍ୱ ସମୟରେ ଏହି ଇଣ୍ଡର ନ୍ୟାସ୍‌ନାଲ ସ୍କୁଲ୍ ଅଫ୍ ଜର୍ଣ୍ଣାଲିଜମ୍ ଆରମ୍ଭ ହେଲା । ତେବେ ଏନ୍‌ୟୁଜେ ସଭାପତି ରୂପେ ଦିଲ୍ଲୀ ଠାରେ ଅନୁଷ୍ଠିତ ଦକ୍ଷିଣ ଏସିଆ ଆଞ୍ଚଳିକ ସମ୍ମିଳନୀରେ ସଭାପତି ମଣ୍ଡଳୀ ସଦସ୍ୟ ରୂପେ କାର୍ଯ୍ୟକରିବା ମୋ ଜୀବନର ଏକ ଉଲ୍ଲେଖଯୋଗ୍ୟ ଅଧ୍ୟାୟ । ୧୯୯୧ ନଭେମ୍ବର ୧୪,୧୫ ଓ ୧୬ ତାରିଖରେ ଦିଲ୍ଲୀର 'ଜନପଥ' ହୋଟେଲ୍‌ରେ ଏହି ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ସଭାପତି ମଣ୍ଡଳୀରେ

ଆନ୍ତର୍ଜାତିକ ସାମ୍ବାଦିକ ସଂଘର ସାଧାରଣ ସମ୍ପାଦକ ଏଡେନ୍ ହ୍ୱାଇଟ୍, ମୁଁ ଏକ ଜର୍ମାନ ଏଫ୍.ଇ.ଏସ୍. ସଂସ୍ଥାର ପ୍ରତିନିଧି ଡି. ନାଇଟ୍‌ସ୍ଲେଲ୍ ରହିଥିଲୁ । ବନ୍ଧୁ କେ.ଏନ୍. ଗୁପ୍ତା ଏହି ସମ୍ମିଳନୀର କୋଅଡିନେଟ ଥିଲେ । ତତ୍କାଳୀନ କେନ୍ଦ୍ର ତଥା ବେତାର ମନ୍ତ୍ରୀ ଅଜିତ୍ କୁମାର ପାଞ୍ଜା ଏହି ସମ୍ମିଳନୀକୁ ଉଦ୍‌ଘାଟନ କରିଥିଲେ ।

ମୁଁ କାଠମାଣ୍ଡୁ ସମ୍ମିଳନୀକୁ ଯିବା ଅବସ୍ଥାରେ ହଠାତ୍ ମୋର ଦେହ ଅସୁସ୍ଥ ହୋଇଯିବାକୁ ବାଧ ହୋଇ ଯିବା ବାତିଲ୍ କରିଥିଲି । ମନଟା ଖରାପ ହୋଇ ଯାଇଥିଲା । ଜୀବନରେ ଇଏ ଗୋଟିଏ ଅଧ୍ୟାୟ । କାଠମାଣ୍ଡୁ ନଯାଇ ମନ ଖୁବ୍ ଖରାପ୍ ହୋଇଥିଲା । ଯାହାହେଉ ଦିଲ୍ଲୀରେ ଏହି ସମ୍ମିଳନୀର ତାରିଖ ସ୍ଥିର ହେବା ପରେ ଏହାର କୋଅଡିନେଟର କେ.ଏନ୍.ଗୁପ୍ତା ମୋତେ ଟେଲିଫୋନ୍ କରି ନଭେମ୍ବର ୧୨ ତାରିଖ ସୁଦ୍ଧା ଆସିବା ପାଇଁ କହିଥିଲେ । ମୁଁ ୧୨ ତାରିଖରେ ଦିଲ୍ଲୀ ଯାଇଥିଲି । କାରଣ ୧୩ ତାରିଖରେ ଆନ୍ତର୍ଜାତିକ ସାମ୍ବାଦିକ ମହାସଂଘର ସେକ୍ରେଟାରୀ ଜେନେରାଲ୍ ଏଡେନ୍ ହ୍ୱାଇଟ୍ ଆସୁଥିବାରୁ ତାଙ୍କୁ ଦିଲ୍ଲୀ ବିମାନଘାଟିରେ ରିସିଭ୍ କରିବା ଦାୟିତ୍ୱ ମୋର ଥିଲା ।

## -ଦିଲ୍ଲୀ ସାର୍କ ସାମ୍ବାଦିକ ସମ୍ମିଳନୀ-

ଦିଲ୍ଲୀ ସାର୍କ ସମ୍ମିଳନୀରେ ଏନ୍.ୟୁ.ଜେ.ର ମୋ ସମେତ ଦଶଜଣ, ଆଇ.ଏଫ୍.ଡବ୍ଲ୍ୟୁ.ଜେ.ର ସଭାପତି ବିକ୍ରମ ରାଓଙ୍କ ସମେତ ଚାରିଜଣ, ଆଇ.ଜେ.ୟୁ.ର ଚାରିଜଣ ଏହିଭଳି ଭାରତର ୧୮ ଜଣ ପ୍ରତିନିଧି, ପାକିସ୍ଥାନର ଫେଡେରାଲ୍ ୟୁନିୟନ୍ ଅଫ୍ ଜର୍ଣ୍ଣାଲିଷ୍ଟ ସଭାପତି ଆଇ.ଏଚ୍.ରସିଦ୍‌ଙ୍କ ସମେତ ଚାରିଜଣ, ଶ୍ରୀଲଙ୍କା, ବାଙ୍ଗଲା ଦେଶର ପାଞ୍ଚଜଣ ଲେଖାଏଁ ଏବଂ ନେପାଳର ଚାରିଜଣ ସାମ୍ବାଦିକ ଯୋଗ ଦେଇଥିଲେ । ଏମାନଙ୍କ ବ୍ୟତୀତ ଅଷ୍ଟ୍ରେଲିଆ ସାମ୍ବାଦିକ ସଂଘର ସମ୍ପାଦକ ୱାଲ୍‌ଟର୍ ପିୟର୍‌ସନ୍, ଜର୍ମାନ ଏଫ୍.ଇ.ଏସ୍.ର ପ୍ରତିନିଧି । ୟୁନିସେଫ୍, ୟୁନେସ୍କୋ, ସାର୍କ ଅନୁଷ୍ଠାନର ନେପାଳ ମୁଖ୍ୟ ଏବଂ ପ୍ରେସ୍ କାଉନ୍‌ସିଲର ଚେୟାରମ୍ୟାନ୍ ଭାରତର ନିଉଜ କ୍ୟାମେରାମ୍ୟାନ୍ ଆସୋସିଏସନ୍‌ର ଦୁଇଜଣଙ୍କୁ ମିଶାଇ ମୋଟ୍ ପଚାଶ ଜଣ ପ୍ରତିନିଧି ଯୋଗ ଦେଇଥିଲେ ।

ଜୀବନରେ ଏ ସୁଯୋଗ ସବୁବେଳେ ଆସେ ନାହିଁ । ଭାରତ ସମେତ ଏତେଗୁଡ଼ିଏ ଦେଶର ବିଶିଷ୍ଟ ସାମ୍ବାଦିକ ଏବଂ ଜାତିସଂଘ ତଥା ଅନ୍ୟାନ୍ୟ ପ୍ରମୁଖ ସମ୍ବାଦପତ୍ର ସଂସ୍ଥା ସହ ସଂପୃକ୍ତ ଅନୁଷ୍ଠାନର ପ୍ରତିନିଧିମାନଙ୍କ ବୈଠକରେ ସଭାପତିତ୍ୱ କରିବା ଜୀବନରେ ଏକ ଅବିସ୍ମରଣୀୟ ଅଧ୍ୟାୟ । ୧୯୯୧ ପରେ ଆଜି ସୁଦ୍ଧା ଭାରତରେ ଆଉ ସାର୍କ ସମ୍ମିଳନୀ ଅନୁଷ୍ଠିତ ହୋଇନାହିଁ । ଭବିଷ୍ୟତରେ କେବେ ହେବ ମୋର ଧାରଣା ନାହିଁ । ସେ ଦୃଷ୍ଟିରୁ ଏଭଳି ଏକ ଆନ୍ତର୍ଜାତୀୟ ସମ୍ମିଳନୀର ତିନିଜଣିଆ ସଭାପତି ମଣ୍ଡଳୀର ସଦସ୍ୟ ହେବା କ୍ଷେତ୍ରରେ ମୁଁ ପ୍ରଥମ ଭାରତୀୟ ସାମ୍ବାଦିକ ।

ସାର୍କ ସମ୍ମିଳନୀ ପ୍ରତିଦିନ ସକାଳେ ସାଢ଼େ ଦଶଟାରେ ଆରମ୍ଭ ହୋଇ ସନ୍ଧ୍ୟା ପାଞ୍ଚଟାରେ ଶେଷ ହୁଏ । ସମ୍ମିଳନୀରେ ସଭାପତି ମଣ୍ଡଳୀରେ ଆମେ ତିନିଜଣ ଥିଲେ ମଧ ମୁଖ୍ୟତଃ ମୁଁ ସଭା ପରିଚାଳନା କରୁଥିଲି । ମିଃ ଗୁପ୍ତା କାର୍ଯ୍ୟକ୍ରମ ଦେଖାଶୁଣା କରୁଥିଲେ । ପ୍ରତିଦିନ ଭାରତର ବଡ଼ ବଡ଼ ସଂସ୍ଥାର ପ୍ରତିନିଧିମାନଙ୍କୁ ଡିନର ଦେଉଥିଲେ । ୱାକିଂ ଥିବା ସଭାସ୍ଥଳରେ ଦିଆଯାଉଥିଲା । ସବୁ ଡିନର ସହ ଡ୍ରିଙ୍କସ୍ ଦିଆଯାଉଥିଲା ।

ସମ୍ମିଳନୀର ଦ୍ୱିତୀୟ ଦିନ କାର୍ଯ୍ୟକ୍ରମ ଶେଷରେ ଆମେ ଫେରୁଛୁ । ମୁଁ, ମିଃ ଗୁପ୍ତା, ମୋ ସାଙ୍ଗରେ ମୋ ସୁଇଟ୍‌ରେ ଥିବା ଏନ୍‌ୟୁଜେ ସେକ୍ରେଟାରୀ ସି.ଏସ୍. ଜୟରାମ୍(ହିନ୍ଦୁସ୍ଥାନ ଟାଇମ୍ସର ସ୍ୱତନ୍ତ୍ର ପ୍ରତିନିଧି, ମାଡ୍ରାସ)

ବିଲବିର ପୁଞ୍ଜ(ଚିପ୍ ଅଫ୍ ବ୍ୟୁରୋ ଫାଇନାନ୍‌ସିଆଲ୍ ଏକ୍ସପ୍ରେସ୍, ନୂଆଦିଲ୍ଲୀ) କଥାବାର୍ତ୍ତା ହୋଇ ଫେରିବା ବେଳେ ହଠାତ୍ ପଛରୁ କିଏ ଡାକିଲା ମିଃ ଧଲ... । ମୁଁ ପଛକୁ ଚାହିଁଲି । ଦେଖିଲି ପଛରେ ପାକିସ୍ଥାନର ମିଃ ରସିଦ୍ । ଆମେ ସମସ୍ତେ ଅଟକି ଗଲୁ । ରସିଦ୍‌ଙ୍କ ସହ ଆସୁଥିଲେ ତାଙ୍କ ଦେଶର ମହମ୍ମଦ ଜମାନ । ରସିଦ୍ ପାକିସ୍ଥାନର ବିଖ୍ୟାତ ଇଂରାଜୀ ଖବର କାଗଜ 'ଦି ଡନ୍'ର ଆସୋସିଏଟ୍ ଏଡିଟର୍ । ଜମାନ ହେଉଛନ୍ତି ସେହି କାଗଜର କରାଚି ସ୍ପେଶାଲ୍ କରେସ୍‌ପଣ୍ଡେଣ୍ଟ । ଆମ ପାଖକୁ ଆସି ରସିଦ୍ କହିଲେ ଆରେ ଭାଇ- ଅଭି ତୁମ୍‌କୋ ଯାକର କ୍ୟା କରୋଗେ । ଲେଟ୍ ଅସ୍ ଗୋ ଫର୍ ଏ ଡ୍ରିଙ୍କ୍ । ସମସ୍ତଙ୍କୁ ଏକ ପ୍ରକାର ବାଧ କରି ସେ ନେଇଗଲେ । ଆମେ ମନା କରିପାରିଲୁ ନାହିଁ । ଆମେ ବାର୍‌ରେ ଢୁକିବା ବେଳକୁ ଆମ ପଛେପଛେ ବାଙ୍ଗଲା ଦେଶର ଦି ଡେଲି ଷ୍ଟାର୍ ଖବର କାଗଜର ନିଉଜ୍ ଏଡିଟର୍ ଅମାନୁଲା କବିର ଏବଂ ବାଂଲାଦେଶର ମୁଖ୍ୟ ନିଉଜ୍ ଏଜେନ୍ସି ବି.ଏସ୍.ଏସ୍.ଇ. ସ୍ପେଶାଲ କରେସ୍‌ପଣ୍ଡେଣ୍ଟ୍ ଗିଆସ୍ କମଲ ଚୌଧୁରି ମଧ୍ୟ ବାର୍‌ରେ ଢୁକିଲେ ।

ସେମାନଙ୍କୁ ଦେଖି ଆମେ ହୋ ହୋ ହୋଇ ହସିଲୁ । ବଲ୍‌ବିର ପୁଞ୍ଜ ରସିକତା କରି କହିଲେ ଦିସ୍ ଇଜ୍ ଏ ଗୁଡ୍ ସାଇନ୍ । ଆଟଲିଷ୍ଟ୍ ଦି ବାର୍ଡସ୍ ଅଫ୍ ସେମି ପିଦର ଇନ୍‌କ୍ରିଜିଙ୍ଗ୍ । ସେଇଠି ବସି ସାଢ଼େ ସାତଟା ହୋଇଗଲା । ସମସ୍ତଙ୍କ ବିଲ୍ ରସିଦ୍ ଚେକ୍‌ରେ ଦେଲେ । ସେତେବେଳେ କାର୍ଡ଼ ପ୍ରଚଳନ ହୋଇନଥିଲା । ଆମେରିକାନ୍ ଏକ୍ସପ୍ରେସ୍ ବ୍ୟାଙ୍କର ସେ ଚେକ୍ । ମୁଁ ଏ ବିଷୟ ଉତ୍‌ଥାପନ କରିବାର ଏକ କାରଣ ରହିଛି । ଆମ ସମସ୍ତଙ୍କ ବିଲ୍ ହେଲା ସାଢ଼େ ଅଠର ହଜାର ଟଙ୍କା । ସେତେବେଳେ ଭାରତର ବଡ଼ବଡ଼ ଇଂରେଜୀ କାଗଜ ବିଶେଷ କରି ଟାଇମ୍ସ ଅଫ୍ ଇଣ୍ଡିଆ, ହିନ୍ଦୁସ୍ଥାନ ଟାଇମ୍ସ, ହିନ୍ଦୁ ଷ୍ଟେଟସ୍‌ମ୍ୟାନ୍ ବା ବଙ୍ଗଳା କାଗଜ ଆନନ୍ଦ ବଜାର ପତ୍ରିକାରେ ବଡ଼ବଡ଼ ସାମ୍ବାଦିକମାନଙ୍କର ଦରମା ସର୍ବାଧିକ ଚାଳିଶ/ପଚାଶ ହଜାର ଥିଲା । ମାତ୍ର ଡନ୍‌ରେ ରସିଦ୍ ଲକ୍ଷେ ଟଙ୍କାରୁ ଅଧିକ ଟଙ୍କା ଦରମା ପାଉଥିଲେ । ବଙ୍ଗଳା ଦେଶରେ ମଧ୍ୟ ଦରମା କମ୍ ନୁହେଁ । ସେମାନେ ଚାଳିଶ/ପଚାଶ ହଜାର ଟଙ୍କା ପର୍ଯ୍ୟନ୍ତ ପାଉଥିଲେ । ମୁଁ ନିଜ କଥା କହିବାରେ ଅବଶ୍ୟ ଲଜ୍ଜା ନାହିଁ । କାରଣ ସ୍ୱରାଜ୍ୟ ଏକ କର୍ମଚାରୀ ପରିଚାଳିତ ଖବରକାଗଜ ଥିଲା । ସମ୍ପାଦକ ରୂପେ ମୁଁ ମାସକୁ ପାଞ୍ଚହଜାର ଟଙ୍କା ଦରମା ନେଉଥିଲି । ଓଡ଼ିଶାରେ ବଡ଼ ବଡ଼ ଖବରକାଗଜର ମୁଖ୍ୟ ସାମ୍ବାଦିକମାନେ ସେତେବେଳେ ଦଶହଜାର ଟଙ୍କା ପର୍ଯ୍ୟନ୍ତ ଦରମା ପାଉଥିଲେ । ତେଣୁ ଆମ ପଡ଼ୋଶୀ ରାଷ୍ଟ୍ରର ସାମ୍ବାଦିକ କେଉଁ ସ୍ତରରେ ଅଛନ୍ତି ତାହା ଏହି ଲେଖାର ଉଦ୍ଦେଶ୍ୟ ।

## -କନ୍‌ଷ୍ଟିଚ୍ୟୁଏଣ୍ଟ ହଲରେ ଭାଷଣ-

ମୋର ସଭାପତିତ୍ୱ ବେଳେ ଆଉ ଏକ ଉଲ୍ଲେଖଯୋଗ୍ୟ ଘଟଣା ହେଲା ଦିଲ୍ଲୀର କନ୍‌ଷ୍ଟିଚ୍ୟୁଏଣ୍ଟ ହଲ୍‌ରେ ଏକ ଗୁରୁତ୍ୱପୂର୍ଣ୍ଣ ଆଲୋଚନାଚକ୍ରରେ ମୁଁ ଯୋଗଦେଇ ଭାରତର ବିଶିଷ୍ଟ ସାମ୍ବାଦିକ ଏବଂ କିଛି ପାର୍ଲାମେଣ୍ଟ ସଦସ୍ୟଙ୍କ ଉପସ୍ଥିତିରେ ମୋର ମତାମତ ରଖିଥିଲି । ଏହା ବିଷୟବସ୍ତୁ ଥିଲା ରୋଲ୍ ଅଫ୍ ନ୍ୟାସନାଲ୍ ଡେଲି ଏଣ୍ଡ୍ ଲାଙ୍ଗୁଏଜ୍ ଡେଲି ଇନ୍ ଡେଭେଲପ୍‌ମେଣ୍ଟ୍ ଅଫ୍ ଇଣ୍ଡିଆ । ଏନ୍.ୟୁ.ଜେ.ର ସଭାପତି ରୂପେ ମୋତେ ଏହି ସଭାପତି ମଣ୍ଡଳୀରେ ସଦସ୍ୟ କରାଯାଇଥିଲା । ଏହି ଆଲୋଚନାଚକ୍ରରେ ଭାରତର ବିଖ୍ୟାତ ସାମ୍ବାଦିକ ସର୍ବଶ୍ରୀ ଏସ୍. ସିହାଲ ସିଂହ, ଇନ୍ଦର ମାଲହୋତ୍ରା, ହିରନ୍ମୟ କାଲେକାର, ରାଜେନ୍ଦ୍ର ପ୍ରଭୁ, ପ୍ରମୁଖ ଇଂରାଜୀ ପତ୍ରିକାର ସମ୍ପାଦକ ଏବଂ ଲାଙ୍ଗୁଏଜ୍ ପେପର ପକ୍ଷରୁ ମୁଁ, ଅରୁଣ ବାଗ୍‌ଚୀ(ଆନନ୍ଦ ବଜାର ପତ୍ରିକା ଆସୋସିଏଟ୍ ଏଡିଟର୍) ଆର୍.କେ. ଚୌଧୁରୀ(ନବଭାରତ ଟାଇମ୍ସର ମୁଖ୍ୟ ସମ୍ପାଦକ) ଏବଂ ଦୈନିକ ଜାଗରଣର ସମ୍ପାଦକ(ନାଁ ମନେ ପଡୁନାହିଁ) ଅଂଶ ନେଇଥିଲୁ ।

କୋଅର୍ଡିନେଟର ବା ସଂଯୋଜନାକାରୀ ଥିଲେ କୁଲଦୀପ ନାୟାର, ଏବଂ ପ୍ରଣ୍ ଚୋପ୍ରା । ପ୍ରାୟ ଚାରିଘଣ୍ଟା ଧରି ଏ ତର୍କ ଚାଲିଲା । ସମସ୍ତ ବକ୍ତାଙ୍କୁ କୋଡ଼ିଏ ମିନିଟ୍ କରି ସମୟ ଦିଆଯାଇଥିଲା । ମୁଁ ଏହି ଆଲୋଚନାଚକ୍ର ପାଇଁ ପାଞ୍ଚ/ଛ'ଦିନ ପୂର୍ବରୁ ନିଜକୁ ନିଜେ ପ୍ରସ୍ତୁତ କରିଥିଲି । ଆଞ୍ଚଳିକ ଭାଷା କାଗଜର ଯେତେ ଭଲ ଦିଗ ଏବଂ ଇଂରାଜୀ ଖବରକାଗଜର ବିଯୁକ୍ତ ଦିଗଗୁଡ଼ିକୁ ସଂଗ୍ରହ କରି ମୋର ନୋଟ୍ ପ୍ରସ୍ତୁତ କରିଥିଲି ଏବଂ ତାକୁ ମନେମନେ ପ୍ରାୟ ମୁଖସ୍ଥ କରିଦେଇଥିଲି । ଏହି ଆଲୋଚନାଚକ୍ରରେ ମୁଁ ସବୁଠାରୁ କନିଷ୍ଠ ଥିଲି । ମୋ ବୟସ ସେତେବେଳେ ପଚାଶ ବର୍ଷ ଛୁଇଁବାକୁ ଆଉ ବର୍ଷେ ଥିଲା । ତେବେ ମୋର ଯୁକ୍ତି ଗ୍ରହଣୀୟ ଢଙ୍ଗରେ ମୁଁ ଉପସ୍ଥାପିତ କରିପାରିଥିଲି । ଏହି ଆଲୋଚନା ଚକ୍ର ୧୯୯୨ ସେପ୍ଟେମ୍ବର ୧୪ ତାରିଖରେ ଅନୁଷ୍ଠିତ ହୋଇଥିଲା । ଏହା ମୋତେ ବିଶେଷ ସନ୍ତୋଷ ଦେଇଥିଲା ।

ମୋର କାର୍ଯ୍ୟକାଳ ଶେଷ ହେବା କଥା ୧୯୯୨ ସେପ୍ଟେମ୍ବର ମାସରେ । ମାତ୍ର ନିର୍ବାଚନ ହୋଇ ନଥିବାରୁ ମୁଁ ୧୯୯୩ ଅଗଷ୍ଟ ମାସ ପର୍ଯ୍ୟନ୍ତ ସଭାପତି ରହିଥିଲି ।

ଦିଲ୍ଲୀ ଠାରେ ଅନୁଷ୍ଠିତ ଆଲୋଚନାଚକ୍ର ପରେ ପରେ ଚଣ୍ଡୀଗଡ଼ ଟ୍ରିବ୍ୟୁନାଲ୍ ନିଉଜ୍ ଏଡିଟର ଅଶୋକ ମଲ୍ଲିକ୍ ଜଣେ ଭଦ୍ରଲୋକଙ୍କୁ ନେଇ ଏନ୍.ୟୁ.ଜେ. ଅଫିସ୍‌କୁ ଆସିଲେ । ମୁଁ ଅଫିସ୍‌ରେ ବସିଥିଲି । ମୋତେ ପରିଚୟ କରିଦେଲେ । ଭଦ୍ରଲୋକ ଚଣ୍ଡୀଗଡ଼ର ବିଖ୍ୟାତ ନୃତ୍ୟ-ସଂଗୀତ ବିଶ୍ୱବିଦ୍ୟାଳୟର ରେଜିଷ୍ଟ୍ରାର ମଦନଲାଲ୍ କୋଶର । ଶ୍ରୀ କୋଶରଙ୍କ ବୟସ ୫୫/୬୦ ବର୍ଷ ହେବ । ଅଶୋକ ମଲ୍ଲିକ୍ ମୋତେ କହିଲେ ମିଃ ଧଲ- ମିଷ୍ଟର କୋଶର ଚାହୁଁଛନ୍ତି ତାଙ୍କ ବିଶ୍ୱବିଦ୍ୟାଳୟ ସମାବର୍ତ୍ତନ ଉତ୍ସବରେ ଆପଣ ମୁଖ୍ୟ ଅତିଥି ହୋଇ ଯୋଗଦେବା ପାଇଁ । ସେ ଆପଣଙ୍କୁ ଏଠାରୁ କାର୍‌ରେ ନେଇଯିବେ ଏବଂ ଆଣି ଛାଡ଼ିଦେବେ । ଆପଣଙ୍କୁ ୧୬ ତାରିଖ ସକାଳେ ଏଠାରୁ କାର୍ ଆସି ନେଇଯିବ । ୧୭ ତାରିଖ ଦିନ ସମାବର୍ତ୍ତନ ଉତ୍ସବ । ୧୮ ତାରିଖରେ ଆପଣ ଫେରିବେ ।

ମୁଁ ରାଜି ହେଲି । କାରଣ ଚଣ୍ଡୀଗଡ଼ ପ୍ରାଚୀନ କଳାକେନ୍ଦ୍ର ଭାରତର ବିଖ୍ୟାତ ବିଶ୍ୱବିଦ୍ୟାଳୟ । ଓଡ଼ିଶାର ଅନେକ ନୃତ୍ୟ-ସଂଗୀତ ଅନୁଷ୍ଠାନ ଏହା ସହ ସହବନ୍ଧିତ ହୋଇଛନ୍ତି । ୧୬ ତାରିଖ ଦିନ ପ୍ରାୟ ୧୧ଟା ବେଳକୁ ତାଙ୍କ ଅନୁଷ୍ଠାନର ଜଣେ ଭଦ୍ରଲୋକ କାର୍ ନେଇ ଓଡ଼ିଶା ଭବନରେ ପହଞ୍ଚିଲେ । ମୁଁ ଏବଂ ମୋ ସାଙ୍ଗରେ ଦିଲ୍ଲୀର ଇକୋନୋମିକ୍ସ ଟାଇମ୍‌ସର ଜଣେ ସାମ୍ବାଦିକ ବନ୍ଧୁ ଚଣ୍ଡିଗଡ଼ ମଧ ଗଲେ । ୧୭ ତାରିଖରେ ତାଙ୍କର ସମାବର୍ତ୍ତନ ଉତ୍ସବ ଅନୁଷ୍ଠିତ ହେଲା । ଚମତ୍କାର ପରିବେଶ । ପ୍ରାୟ ଛ'ଶହ ଛାତ୍ରଛାତ୍ରୀ ସାର୍ଟିଫିକେଟ୍ ନେଲେ ।

ପ୍ରାଚୀନ କଳାକେନ୍ଦ୍ର ଏହାର ଚାରିବର୍ଷ ପରେ କଲିକତା ଠାରେ ରବୀନ୍ଦ୍ର ଭାରତୀ ବିଶ୍ୱବିଦ୍ୟାଳୟ ପ୍ରେକ୍ଷାଳୟରେ ସେମାନଙ୍କର ସମାବର୍ତ୍ତନ ଉତ୍ସବରେ ମୋତେ ସଂବର୍ଦ୍ଧିତ କରିଥିଲେ । ମୋ ସହ ସାହିତ୍ୟିକ ବିଭୂତି ପଟ୍ଟନାୟକଙ୍କୁ ମଧ ଏହି ଉତ୍ସବରେ ସମ୍ବର୍ଦ୍ଧିତ କରାଯାଇଥିଲା ।

ମୋ କାର୍ଯ୍ୟକାଳ ସମୟରେ ବାଲେଶ୍ୱରଠାରେ ୧୯୯୧ ଡିସେମ୍ବର ୭ ଓ ୮ ତାରିଖରେ ଜାତୀୟ ପରିଷଦ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଆଜି କାଲିର ସଂପାଦକ ବିସ୍ମୟ ମହାନ୍ତି, ସାମ୍ବାଦିକ ଦେବ ଦାସ କୁଣ୍ଡୁ, ଅମୀୟ ନନ୍ଦ ପ୍ରମୁଖ ସାମ୍ବାଦିକ ବନ୍ଧୁ ଏବଂ ସେମାନଙ୍କ ବନ୍ଧୁମାନଙ୍କ ଯୋଗୁ ଏହା ଅତି ସଫଳତାର ସହ ଅନୁଷ୍ଠିତ ହୋଇଥିଲା । ଓଡ଼ିଶାର ବହୁ ମନ୍ତ୍ରୀଙ୍କ ସମେତ କେନ୍ଦ୍ରମନ୍ତ୍ରୀ ଗିରିଧର ଗମାଙ୍ଗ ପ୍ରମୁଖ ଯୋଗଦେଇଥିଲେ । ବାହାରୁ ଆସିଥିବା ବନ୍ଧୁମାନଙ୍କ ମତରେ ଏନ୍.ୟୁ.ଜେ.ର ସବୁଠାରୁ ସଫଳତମ ଅଧିବେଶନ ମଧ୍ୟରେ ଏହା ଅନ୍ୟତମ ।

୧୯୯୦ ସେପ୍ଟେମ୍ବର ୧୩ ତାରିଖରୁ ୧୯୯୩ ଅଗଷ୍ଟ ମାସ ପର୍ଯ୍ୟନ୍ତ ଏନ୍.ୟୁ.ଜେ.ର ସଭାପତି ରୂପେ ମୁଁ ମୋର ସାଧ୍ୟ ମୁତାବକ କାର୍ଯ୍ୟ କରିଛି । ଏବଂ ଏହା ମୋତେ ସନ୍ତୋଷ ଦେଇଛି ମଧ୍ୟ ।

ଈଶ୍ୱରଙ୍କ ଆଶୀର୍ବାଦ ହିଁ ଏଥିପାଇଁ ଦାୟୀ ।

୧୯୯୩ରେ ଏନ୍.ୟୁ.ଜେ.ର ସଭାପତି ପଦରୁ ବିଦାୟ ନେବା ପରେ ପରେ ଅନୁବାଦ ପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କଲି । ମୋ ପୁରସ୍କାର ପ୍ରାପ୍ତିରେ ଏନ୍.ୟୁ.ଜେ. ମୁଖପତ୍ର ଇଙ୍କ୍ ଓ୍ୱାର୍ଲ୍ଡରେ ଅଧପୃଷ୍ଠା ବ୍ୟାପୀ ଏକ ଛୋଟ ନିବନ୍ଧ ପ୍ରକାଶ କରିଥିଲେ । ସେଥିରେ ଏନ୍.ୟୁ.ଜେ.ର ପୂର୍ବତନ ଅଧ୍ୟକ୍ଷ ବରେନ୍ଦ୍ର କୃଷ୍ଣ ଧଳ ଏହି ପୁରସ୍କାର ଲାଭ କରିଥିବାରୁ ଏହା ଏନ୍.ୟୁ.ଜେ. ପାଇଁ ଏକ ଗର୍ବର ବିଷୟ ବୋଲି କୁହାଯାଇଥିଲା ।

ଜୀବନରେ ଗୋଟିଏ ଗୋଟିଏ ଅଧ୍ୟାୟ ଆସେ ଯାହା ସାରା ଜୀବନର ସ୍ମୃତିକୁ ଆଚ୍ଛନ୍ନ କରି ରଖେ । ଜୀବନର ଚଲାପଥରେ ଏହା ହିଁ ପୁଞ୍ଜି । ଈଶ୍ୱରଙ୍କ ଆଶୀର୍ବାଦରୁ ଜୀବନରେ ଅନେକ ପଥ ଅଗ୍ରସର ହୋଇ ଆସିଲାଣି । ବାକି ଜୀବନ ଏହିଭଳି କଟିଯାଉ ଏତିକି କାମନା କରୁଛି ।

ଜୀବନରେ କିଛି କିଛି ନୂଆ କାମ ପାଇଁ ମୁଁ ସଦାବେଳେ ଆଗ୍ରହୀ ଥାଏ । ଗୋଟିଏ ପଟେ ସାମ୍ବାଦିକତା, ଅନ୍ୟପଟେ ସାହିତ୍ୟ, ସଂଗଠନ ଆଦି ଚାଲିଥାଏ । ଗଳ୍ପ ଲେଖା ଚାଲିଥାଏ । ମାତ୍ର ଗଳ୍ପ ସଂକଳନ ପ୍ରକାଶ ପାଇ ନଥାଏ । କଟକ ବିନୋଦ ବିହାରୀ ବହି ବଜାରରେ ସମସ୍ତେ ମୋର ବନ୍ଧୁ । ଥରେ ବୋଧହୁଏ ୧୯୭୯ ଅପ୍ରେଲ ମାସ ହେବା ଆଗରୁ ସକାଳୁ ସକାଳୁ କଲିଷ୍ଟ ଷ୍ଟୁଡେଣ୍ଟସ୍ ଷ୍ଟୋର୍ ବହି ଦୋକାନ ମାଲିକ କାଳୀ ତ୍ରିପାଠୀଙ୍କ ସାନଭାଇ ଭ୍ରମର ମୋ ଘରେ ପହଞ୍ଚିଲେ । କହିଲେ ଆପଣଙ୍କ ପାଖକୁ ଖାସ୍ ଆସିଛି । ଆପଣଙ୍କର ଅନେକ ଗଳ୍ପ ପ୍ରକାଶ ପାଇଲାଣି । ସବୁ ଗଳ୍ପ ମୋତେ ଦିଅନ୍ତୁ । ମୁଁ ଆପଣଙ୍କର ଗୋଟିଏ ଗଳ୍ପ ସଂକଳନ ପ୍ରକାଶ କରିବି । ଆପଣ ସଂଗ୍ରହ କରି ରଖନ୍ତୁ । ମୁଁ ଦୁଇଦିନ ପରେ ଆସି ନେବି । ମୁଁ ମଧ୍ୟ ମୋର ଗଳ୍ପ ସଂକଳନ ପାଇଁ ଆଗ୍ରହୀ ଥିଲି । ମାତ୍ର ହେଲା ବଶତଃ ତାକୁ କରି ପାରି ନଥିଲି । ଭମର ଦି'ଦିନ ପରେ ଆସି ପହଞ୍ଚିଲା । ମୁଁ ମୋଟ୍ ଚଉଦଟି ଗଳ୍ପ ଯାହା ବିଭିନ୍ନ ପତ୍ର-ପତ୍ରିକାରେ ପ୍ରକାଶ ପାଇଥିଲା ତାକୁ ଦେଲି । ଏ ଗଳ୍ପଗୁଡ଼ିକ ସେତେବେଳେ ଝଙ୍କାର, ନବରବି, ସହକାର, ସଂସ୍କୃତି, ସାରଥି, ଅନେକ କଦମ୍ବ, ଧରିତ୍ରୀ ପୂଜା ଓ ଜନ୍ମଦିନ ବିଶେଷାଙ୍କରେ ପ୍ରକାଶ ପାଇଥିଲା । ତେବେ ଅନେକ ଗଳ୍ପ ମୁଁ ହଜାଇ ଦେଇଥିବାରୁ ସେଗୁଡ଼ିକ ପାଇ ପାରିଲି ନାହିଁ ।

## -ମୋର ପ୍ରଥମ କ୍ଷୁଦ୍ର ଗଳ୍ପ ସଂକଳନ-

ଗଳ୍ପ ବହି ପ୍ରକାଶକୁ ଅପେକ୍ଷା କଲି । ଏ ବହିର ଗୋଟିଏ ଗଳ୍ପର ନାମାନୁସାରେ ଏହାର ନାମକରଣ କଲି 'ପାଣିଗାର' । ଏହାର ମୁଖବନ୍ଧ ଲେଖିଥିଲେ ପ୍ରଖ୍ୟାତ ଗାଳ୍ପିକ ଓ ଔପନ୍ୟାସିକ ଡଃ. ବିଭୂତି ପଟ୍ଟନାୟକ । ୧୯୭୯ ଗଣେଶ ଚତୁର୍ଥୀରେ 'ପାଣିଗାର' ଗଳ୍ପ ପୁସ୍ତକ ପ୍ରକାଶ ପାଇଲା । ମୋଟ ପୃଷ୍ଠା ସଂଖ୍ୟା ଥିଲା ୧୫୯ । ମୋର ପ୍ରଥମ ଗଳ୍ପ ସଂକଳନ 'ପାଣିଗାର'କୁ ଉତ୍ସର୍ଗ କରିଥିଲି ମୋର ସ୍ୱର୍ଗରେ ଥିବା ପିତା-ମାତା ସୁରେନ୍ଦ୍ର ନାଥ ଧଳ ଶ୍ରୀଚନ୍ଦନ ଓ ନିଶାମଣି ଦେବୀଙ୍କୁ । ମୋର ପ୍ରଥମ ପୁସ୍ତକ ମୋତେ ବେଶ୍ ଉତ୍ସାହିତ କରିଥିଲା । ପରେ ପରେ ମୁଁ ମୋର ବାକି ଗଳ୍ପଗୁଡ଼ିକୁ ସଂଗ୍ରହ କରିବାକୁ ଲାଗିଲି ।

୧୯୮୦ ମସିହା ସରସ୍ୱତୀ ପୂଜା ବେଳକୁ ମୁଁ ଦୁଇ ନମ୍ବର ୟୁନିଟ୍‌ର ଟାଇପ୍-୪ ଘରୁ ରାଜମହଲ ଛକ ପାଖ ଟାଇପ୍-୫ ଘରକୁ ଆସିଲି । ସେତେବେଳେ ରାଜଧାନୀରେ ଦୁଇଟିକିଆ ରାସ୍ତା ହୋଇନଥାଏ । ମୁଁ ରହୁଥିବା ଘର ସମ୍ମୁଖରେ ବିସ୍ତିର୍ଣ୍ଣ ପଡ଼ିଆ ଥାଏ । ଘରଟିର ଅବସ୍ଥିତି ଚମତ୍କାର ଥିଲା । ମୁଁ ନୂଆ ଘରକୁ ଆସିବାବେଳେ ମୋର ତିନି ସନ୍ତାନ ଥିଲେ । ଦୁଇଟି ଝିଅ ଗୋଟିଏ ପୁଅ । ସମସ୍ତେ ସର୍ଦ୍ଦାର ପଟେଲ ହଲ୍ (ପୁରୁଣା ବିଧାନସଭା) ହତାରେ ଥିବା ଶ୍ରୀ ଅରବିନ୍ଦ ସ୍କୁଲ୍‌ରେ ପଢୁଥା'ନ୍ତି । ମୋର ବଡ଼ଝିଅ ରୁପ୍‌ଲୁ, ତା' ତଳ ଝିଅ ମାମା ଏବଂ ସବା ସାନ ପୁଅ ଲକୁ ସମସ୍ତେ ସ୍କୁଲକୁ ଯାଉଥା'ନ୍ତି । ରୁପ୍‌ଲକୁ ଆଠବର୍ଷ, ମାମାକୁ ସାଢ଼େ ପାଞ୍ଚବର୍ଷ ଆଉ ଲକୁ ଚାରିବର୍ଷର ହୋଇଥାଏ । ପ୍ରତିଦିନ ମୁଁ ସମସ୍ତଙ୍କୁ ସ୍କୁଟରରେ ନେଇ ଛାଡ଼ୁଥାଏ ଏବଂ ଆଣୁଥାଏ । ଇଏ ଥିଲା ମୋର ନିତିଦିନିଆ କାମ ।

୧୯୭୯ରେ ମୋର ପତ୍ନୀ ସ୍ନେହଲତା ଓଡ଼ିଆରେ ୫୯ ଶତାଂଶ ରଖି ଉତ୍କଳ ବିଶ୍ୱବିଦ୍ୟାଳୟରୁ ଏମ୍.ଏ. ପାଶ୍ କଲେ । ମୋର ଜଣେ ବନ୍ଧୁ ଧୀରେନ୍ଦ୍ର ନାଥ ପଟ୍ଟନାୟକ ସେତେବେଳେ ରାଜଧାନୀ ମହିଳା କଲେଜ ନାମରେ ଏକ ମହିଳା କଲେଜ ସ୍ଥାପନ କରିଥିଲେ । ମୁଁ ନୂଆ ଘରକୁ ଆସିବା ପରେ ଦିନେ ମୋ ଘରକୁ ଆସି କହିଲେ ଭାଉଜ ତ ଏମ୍.ଏ. ପାଶ୍ କରିଛନ୍ତି । ମୋ କଲେଜରେ ଲେକ୍ଚରରହୋଇ ଜଏନ୍ କରନ୍ତୁ । ମୁଁ ରାଜି ହେଲି । ପ୍ରତିଦିନ ମୋର କାମ ହେଲା ତାକୁ କଲେଜକୁ ସକାଳୁ ନେଇ ଛାଡ଼ିବା ଆଉ ଦିନ ଦୁଇଟାରେ ଆଣିବା । ଅବଶ୍ୟ ଆମ ଘର ପାଖରେ ଥିବା ଏକ ରିକ୍ସାବାଲାକୁ ପରେ ଏ କାମରେ ଲଗାଇଲି । ମାସକୁ ସେ ଏଥିପାଇଁ ଶହେଟଙ୍କା ନେଲା । ମାତ୍ର ଛ'ମାସ ପରେ ମୁଁ ଦେଖିଲି ଏହା ଫଳରେ ମୋର ଚାକିରି ଚାଲିଯିବ । ତେଣୁ ତାକୁ ଆଉ କଲେଜ ନଯିବା ପାଇଁ କହିଲି । ସେ ମଧ୍ୟ ପିଲାଙ୍କୁ ଛାଡ଼ି ପ୍ରତିଦିନ କଲେଜ ଯିବାକୁ ଚାହୁଁ ନଥିଲେ । ତେଣୁ ଚାକିରି ଛାଡ଼ିଦେଲେ । ଘର ସଂସାରର ଦାୟିତ୍ୱ ସ୍ତ୍ରୀଙ୍କ ଉପରେ ଛାଡ଼ିଦେଇ ମୋର କାମରେ ଲାଗିଲି ।

ପୂର୍ବରୁ କହିଛି ମୁଁ ଉତ୍କଳ ସାମ୍ବାଦିକ ସଂଘ ଛାଡ଼ି ଦେଇ କିଛି ସାମ୍ବାଦିକ ବନ୍ଧୁଙ୍କ ସହ ୧୯୭୨ ମସିହାରେ ଓଡ଼ିଶା ସାମ୍ବାଦିକ ୟୁନିୟନ ବା ଓଡ଼ିଶା ୟୁନିୟନ ଅଫ୍ ଜର୍ଣ୍ଣାଲିଷ୍ଟ ପ୍ରତିଷ୍ଠା କଲି । ସେତେବେଳେ ଉତ୍କଳ ସାମ୍ବାଦିକ ସଂଘ ତିନି ନମ୍ବର ୟୁନିଟ୍‌ରେ ସେମାନଙ୍କ ଅଫିସ୍ ପାଇଁ ଏକ ସ୍ଥାନ ପାଇଥିଲେ । ମୁଁ ଆମ ୟୁନିୟନ୍ ପାଇଁ ଖଣ୍ଡିଏ ଜାଗା ଦେବାକୁ ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କୁ ଅନୁରୋଧ କରି ପତ୍ର ଦେଲି । ନାରଣ ରଥ (ସମାଜ ପ୍ରତିନିଧି) ଆମ ୟୁନିୟନର ସଭାପତି ଥିଲେ । ତାଙ୍କୁ ଧରି ନନ୍ଦିନୀ ଦେବୀଙ୍କୁ ଦୁଇଥର ଭେଟିବାପରେ ମାର୍କେଟ ବିଲ୍‌ଡିଂ ଇଷ୍ଟର୍ଣ୍ଣ ଟାୱାରର ପଛପଟ ସ୍ଥାନ ଆମକୁ ମିଳିଲା । ମାତ୍ର ଏଥିପାଇଁ ଆଠହଜାର ଟଙ୍କା ଦରକାର ହେଲା । ଆମ ୟୁନିୟନ ଗଢ଼ାହେବା ବେଳେ ଆମେ ନିଷ୍ପତ୍ତି ନେଇଥିଲୁ ଚାନ୍ଦା ଆଦାୟ କରିବୁ ନାହିଁ । ତେଣୁ ସ୍ଥିର ହେଲା ସୋଭେନିଅର୍ ବାହାର କରି ତା'ର ବିଜ୍ଞାପନ ବାବଦରୁ ଏ ଅର୍ଥ ସଂଗ୍ରହ କରାଯିବ । ସମସ୍ତେ ସିନା କହିଦେଲେ ଅସଲ ବେଳକୁ କେହି ଧରାଛୁଆଁ ଦେଲେନି । ସେ ଯାହା ହେଉ କ୍ୱାଲିଟି ପ୍ରେସ୍ ସତ୍ତ୍ୱାଧିକାରୀ ବନ୍ଧୁ ଜଗଦିଶ ପାଣିଙ୍କ ସାହାଯ୍ୟରେ ସୋଭେନିଅର ବାହାରିଲା । ମୋଟ୍ ଆୟ ହୋଇଥିଲା ଏଗାର ହଜାର ଟଙ୍କା । ଦେଢ଼ ହଜାର ଟଙ୍କା ଛାପାଖର୍ଚ୍ଚ ପରେ ବାକି ଜାଗା ରେଜିଷ୍ଟ୍ରେସନରେ ସାଢ଼େ ଆଠ ହଜାର ଖର୍ଚ୍ଚ ହେଲା । ବାକି ଦେଢ଼ ହଜାର ବ୍ୟାଙ୍କ ଆକାଉଣ୍ଟରେ ରହିଲା । ଜାଗା ହୋଇଗଲା ପରେ ତା' ପାରେ ଥିବା ଏକ ସରକାରୀ ଲାଟ୍ରିନ୍‌କୁ ମିଶାଇ ଦି'ବଖରା ଆଜବେଷ୍ଟସ୍ ଘର କଲୁ । ପାଇକାନା ପଛପଟକୁ ଭାଙ୍ଗି ସାମ୍ନା ପଟ ବନ୍ଦ କରି ଅଫିସ୍ ସାଙ୍ଗରେ ଆଟାଚ୍ଡ ବାଥ୍-ଲାଟ୍ରିନ୍ କଲୁ । ସେଇଠି ଆରମ୍ଭ ହେଲା ଓଡ଼ିଶା ୟୁନିୟନ ଅଫ୍ ଜର୍ଣ୍ଣାଲିଷ୍ଟର ପ୍ରଥମ ଅଫିସ୍ ୧୯୭୭ ମସିହାରେ । ପରେ ସେହି ଡିହରେ ୧୯୭୮ ମସିହାରେ ଏନ୍.ୟୁ.ଜେ.(ଆଇ)ର ଜାତୀୟ ଦ୍ୱିବାର୍ଷିକ ସମ୍ମିଳନୀ ବେଳେ ମୁଖ୍ୟମନ୍ତ୍ରୀ ନୀଳମଣି

ରାଉତରାୟ ମୁଖ୍ୟ କୋଠା ପାଇଁ ନିଅଁର ଶୁଭ ଦେଲେ । ଜୀବନରେ ଇଏ ଗୋଟିଏ ଅଧ୍ୟାୟ । ପରେ ମୁଁ ନାସନାଲ୍ ୟୁନିୟନ୍ ଅଫ୍ ଜର୍ଣ୍ଣାଲିଷ୍ଟ(ଇଣ୍ଡିଆ)ର ସର୍ବ ଭାରତୀୟ ସଭାପତି ହେଲି । ସେ ବିଷୟ ପୂର୍ବରୁ ବର୍ଣ୍ଣନା କରିଛି ।

## -ଭୁବନେଶ୍ୱରରେ କରାଟେ ସ୍କୁଲ-

୧୯୮୦ ମସିହାରେ ସମ୍ଭବତଃ ମାର୍ଚ୍ଚ ମାସରେ ୟୁନିଟ୍ ଦୁଇର ଦୁଇଜଣ ଛାତ୍ର ସଂଜୟ ଦାସ ଓ ଲୁଲୁ ମୋ ପାଖକୁ ଆସିଲେ । ମୁଁ ସେମାନଙ୍କୁ ଦେଖି କ'ଣ ପାଇଁ ଆସିଛ ପଚାରିବାରେ ଦୁହେଁ କହିଲେ ବରିଭାଇ ଆମେ ଚାହୁଁଛୁ ଭୁବନେଶ୍ୱରରେ ଏକ କରାଟେ ସ୍କୁଲ ଖୋଲିବା ପାଇଁ । ଆମେ ମାନ୍ଦ୍ରାଜରେ ପଢୁଛୁ । ସେଠି କରାଟେ ଶିଖୁଛୁ । ଏବେ ନାସ୍‌ନାଲ୍ ଚାମ୍ପିୟନ୍‌ସିପ୍‌ରେ କେବଳ ଓଡ଼ିଶା ବ୍ୟତୀତ ଅନ୍ୟ ସମସ୍ତ ରାଜ୍ୟ ଭାଗ ନେଇଥିଲେ । ଆମେ ପ୍ରକୃତରେ ବଡ଼ ଲଜ୍ଜିତ ହେଲୁ । ମୁଁ ପଚାରିଲି ଆରେ ନା- ମୁଁ କରାଟେ ଜାଣିଛି କି ସେ ସମ୍ପର୍କରେ କିଛି ବୁଝିଛି । ମୋ ପାଖକୁ ଆସିଲେ ମୁଁ କ'ଣ କରିବି ? ସେ ଦୁହେଁ କହିଲେ ଆପଣ ଚାହିଁଲେ ସବୁ ହେବ । ଆପଣ ଆମ ପ୍ରେସିଡେଣ୍ଟ ହେବେ । ମାର୍କେଟ ବିଲ୍‌ଡିଂ ପଛପଟ ଜାଗାରେ ଆମ ସ୍କୁଲର ପ୍ରାକ୍ଟିସ୍ ଗ୍ରାଉଣ୍ଡ ହେବ । କେବଳ ମାନ୍ଦ୍ରାଜରୁ ଯେଉଁ କୋଚ୍ ଆସିବେ ତାଙ୍କ ଖର୍ଚ୍ଚ ଯୋଗାଡ଼ କରିବାକୁ ହେବ । ସେଥିପାଇଁ କେତେ ଖର୍ଚ୍ଚ ହେବ ବୋଲି ମୁଁ ପଚାରିବାରେ ଦୁହେଁ କହିଲେ ତାଙ୍କ ମାସିକ ଦରମା ଖାଇବା ପିଇବା ରହିବା ସବୁ ମିଶି ଦି'ହଜାର ଟଙ୍କା ଖର୍ଚ୍ଚ ହେବ । ମୁଁ ମନେମନେ କ'ଣ ଭାବିଲି । ସେତିକିବେଳକୁ କଟକ ମେଡ଼ିକାଲ୍ କଲେଜରେ ପଢୁଥିବା ଗୋଟିଏ ମଣିପୁରୀ ଝିଅ କରାଟେ ଶିଖିଥିବାରୁ ଦଳେ ଅସାମାଜିକ ଟୋକାଙ୍କ କବଳରୁ କିପରି ରକ୍ଷା ପାଇଲା ତା'ର ବିସ୍ତୃତ ଖବର ସବୁ କାଗରେ ପ୍ରକାଶ ପାଇଥିଲା । ମୁଁ କହିଲି କିନ୍ତୁ ଆମର ପିଲା ହେବେ ତ ? ସେ ଦୁହେଁ କହିଲେ ପିଲା ନିଶ୍ଚୟ ହେବେ । ସବୁକଥା ଆମେ ବିଚାର କଲୁ । ଶେଷରେ ସ୍ଥିର କଲୁ ସବୁ ଠିକ୍ ଠାକ୍ କରି ରଥଯାତ୍ରା ଦିନଠାରୁ ଆରମ୍ଭ କରିବୁ । ସଂଜୟ, ଲୁଲୁ ଏବଂ ସେମାନଙ୍କର ଆଉ ଆଠ/ଦଶଜଣ ସାଙ୍ଗ ମାର୍କେଟ ବିଲ୍‌ଡିଂ ପଛପଟ ଅମରି ବାଡ଼ ଘେରାଇ ଦେଇ ଗୋଟେ ସାଇନ୍‌ବୋର୍ଡ଼ ମାରିଦେଲେ ଓଡ଼ିଶା କରାଟେ ସ୍କୁଲ । ସବୁ କାଗଜକୁ ସମ୍ବାଦ ଦିଆଗଲା । ମାନ୍ଦ୍ରାଜରୁ କନଗରାଜ ନାମରେ ଜଣେ କୋଚ୍ ଭୁବନେଶ୍ୱର ଆସିଲେ । ଏବେ ଚିନ୍ତା ପଡ଼ିଲା ତାଙ୍କ ଖର୍ଚ୍ଚ କିପରି ଉଠାଯିବ ? ମୁଁ ଯାଇ ସେତେବେଳେ ଚିଫ୍ ସେକ୍ରେଟାରୀ ଥିବା ସୁଧାଂଶୁ ମୋହନ ପଟ୍ଟନାୟକଙ୍କୁ ସବୁକଥା କହିଲି । ସେ ହସିଲେ, କହିଲେ ଭଲ କାମ ପାଇଁ ସାହାଯ୍ୟ କରିବାରେ ଅସୁବିଧା ନାହିଁ । ସାଙ୍ଗେ ସାଙ୍ଗେ ସେ ବିଶିଷ୍ଟ ଜଳସେଚନ ଠିକାଦାର ଜଗଦିଶ୍ ବୁନ୍ଧରାଜାଙ୍କୁ ଟେଲିଫୋନ୍ କରି କହିଲେ ଛ'ମାସର ଖର୍ଚ୍ଚ ବହନ କରିବା ପାଇଁ ସେ ଆନନ୍ଦରେ ରାଜି ହେଲେ । ମୁଁ ସଂଜୟ ଆଉ ଲୁଲୁକୁ ପଠାଇଲି ଟଙ୍କା ଆଣିବା ପାଇଁ । ବାକି ଛ' ମାସ ପାଇଁ ଶିକ୍ଷ ବିଭାଗ ସଚିବ ସୁଧାଂଶୁ ମିଶ୍ରଙ୍କୁ ଅନୁରୋଧ କଲି । ସେ ଫାକର କମ୍ପାନିର ମାଲିକ ନାରାୟଣ ଦାସ ସରାଫ୍‌କୁ ଏଥିପାଇଁ କହିଲେ । ସେ ମଧ୍ୟ ରାଜି ହେଲେ । ବର୍ଷକର ଖର୍ଚ୍ଚ ଉଠିଗଲା ପରେ ପିଲାମାନେ କହିଲେ ଆଉ ଅସୁବିଧା ହେବ ନାହିଁ ।

୧୯୮୦ ମସିହା ପରେ ପରେ ମୁଁ ଅନେକ କାମରେ ହାତ ଦେଲି । ପୂର୍ବରୁ କହିଛି କରାଟେ କ୍ରୀଡ଼ା ଓଡ଼ିଶାରେ ମୁଁ ଆରମ୍ଭ କଲି । କ୍ରମେ କ୍ରମେ ତାହା ବିଭିନ୍ନ ସ୍ଥାନକୁ ବ୍ୟାପିଗଲା । ସେଥିପାଇଁ ଆଉ ଚାନ୍ଦା ଆଦାୟ ଦରକାର ପଡ଼ିଲା ନାହିଁ । ୧୯୮୦ ମସିହା ପୂଜା ପରେ ପରେ ମ୍ୟୁଜିୟମ୍ ହତାରେ ଥିବା ଭଞ୍ଜ କଳା ମଣ୍ଡପରେ ଓଡ଼ିଶା ଯୁବ ଲେଖକ ସମ୍ମିଳନୀ ଅନୁଷ୍ଠିତ ହେଲା । ମୋତେ ଏହି ସମ୍ମିଳନୀ ପାଇଁ ଅଭ୍ୟର୍ଥନା ସମିତି ଅଧ୍ୟକ୍ଷ ରୂପେ ଦାୟିତ୍ୱ ଦିଆଗଲା । ସେଇ

ସମ୍ମିଳନୀ ପରେ ଦ୍ୱିତୀୟ ଦିନ ସନ୍ଧ୍ୟାରେ ସାହିତ୍ୟୋତ୍ସବ ଅନୁଷ୍ଠିତ ହେଲା । ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଏହି ଉତ୍ସବକୁ ଉଦ୍‌ଘାଟନ କଲେ । ମୁଁ ମନରେ ଚିନ୍ତା କଲି ପ୍ରତିବର୍ଷ ରାଜ୍ୟର ଏକ ସୀମାନ୍ତ ଅଞ୍ଚଳରେ ସାହିତ୍ୟୋତ୍ସବ କଲେ କିପରି ହୁଅନ୍ତା । ଲେଖକ ସାମ୍ମୁଖ୍ୟ ଜରିଆରେ ଏହି ସାହିତ୍ୟୋତ୍ସବ କରାଗଲେ ଭଲ ହେବ । ସାତକଡ଼ି ହୋତା ସେତେବେଳେ ନୂଆ ହୋଇ ସ୍ପେଶାଲ ଟ୍ରାନ୍ସପୋର୍ଟ କମିଶନର ରୂପେ ଓଡ଼ିଶା ସରକାରରେ ଯୋଗ ଦେଇଥାନ୍ତି । ସେ ହସ୍ପିଟାଲ୍ ରୋଡ୍‌ରେ ରହୁଥା'ନ୍ତି । ଦିନେ ସନ୍ଧ୍ୟାରେ ତାଙ୍କ ଘରେ ଆମେ କେତେଜଣ ମିଳିତ ହୋଇ ଏ ସମ୍ପର୍କରେ ଆଲୋଚନା କଲୁ । ସେତେବେଳେ ଏ.ଏନ୍. ତିୱାରୀ ରାଜ୍ୟ ସଂସ୍କୃତି ବିଭାଗର ସଚିବ ଥା'ନ୍ତି । ପ୍ରଥମେ କେଉଁ ସ୍ଥାନରେ କରିବା ପାଇଁ ଆଲୋଚନା କରୁକରୁ କୋରାପୁଟ ଜିଲ୍ଲା ସୁନାବେଡ଼ା ମିଗ୍ କାରଖାନା ପରିସରରେ କରିବା ପାଇଁ ନିଷ୍ପତ୍ତି କଲୁ ।

## -ସାହିତ୍ୟୋତ୍ସବ-

ଏ ସମ୍ପର୍କରେ ମୁଁ ଆଉ ସାତକଡ଼ି ବାବୁ ମୁଖ୍ୟମନ୍ତ୍ରୀ ଜାନକୀ ବାବୁଙ୍କ ସହ ଆଲୋଚନା କଲୁ । ଜାନକୀବାବୁ ଆମକୁ ଉତ୍ସାହିତ କଲେ । ରାଜ୍ୟର ବିଭିନ୍ନ ସ୍ଥାନକୁ ଯେପରି ସାହିତ୍ୟିକମାନେ ଯୋଗ ଦିଅନ୍ତି ସେ ଦିଗରେ ଦୃଷ୍ଟି ଦେବାକୁ ପରାମର୍ଶ ଦେଲେ । ଜାନକୀବାବୁଙ୍କ ସହ କଥା ହେବା ପରେ ତିୱାରୀ ସାହେବଙ୍କ ସାଙ୍ଗରେ କଥା ହେଲୁ । ତିୱାରୀ ପୂର୍ବରୁ ସୁନାବେଡ଼ା ମିଗ୍ କାରଖାନାରେ ମୁଖ୍ୟ ପ୍ରଶାସନିକ ଅଫିସର ରୂପେ କେନ୍ଦ୍ରୀୟ ଡେପୁଟେସନରେ ଯାଇ ତିନିବର୍ଷ ପାଇଁ କାମ କରୁଥିଲେ । ତେଣୁ ସୁନାବେଡ଼ା ସମ୍ପର୍କରେ ସେ ସବୁ କଥା ଜାଣିଥିଲେ । ସେ ଟେଲିଫୋନ୍ କରି ମିଗ୍ କାରଖାନା ଜେନେରାଲ୍ ମ୍ୟାନେଜରଙ୍କ ସହ କଥାବାର୍ତ୍ତା ହୋଇ ସବୁ ଠିକ୍ ଠାକ୍ କଲେ । କଥାହେଲା ପୂର୍ବରୁ ଆମେ ତିନି/ଚାରିଜଣ ସୁନାବେଡ଼ା ଯାଇ ଆୟୋଜନ ସବୁ ଦେଖିବା ପାଇଁ ଯିବା ସ୍ଥିର ହେଲା । ତଦନୁସାରେ ୧୯୮୧ ଡିସେମ୍ବର ୨୪, ୨୫ ଓ ୨୬ ତାରିଖ ତିନିବର୍ଷ ଧରି ସାହିତ୍ୟୋତ୍ସବ ହେବା ସ୍ଥିର ହେଲା । ଡିସେମ୍ବର ୨ ତାରିଖରେ ଆମେ ତିନିଜଣ କାର୍ ନେଇ ସକାଳୁ ସକାଳୁ ସୁନାବେଡ଼ା ଗଲୁ । ରାତି ପ୍ରାୟ ଦଶଟା ବେଳକୁ ମିଗ୍ କାରଖାନା ଗେଷ୍ଟ ହାଉସ୍‌ରେ ପହଞ୍ଚିଲୁ । ଆମପାଇଁ ରୁମ୍ ବୁକ୍ ହୋଇଥିଲା । ଖାଇଦେଇ ଶୋଇଗଲୁ । ତା' ପରଦିନ ଅଡିଟୋରିୟମ୍, ସାହିତ୍ୟିକମାନେ ରହିବା ସ୍ଥାନ ଆଦି ଦେଖିଲୁ । ସେତେବେଳେ ମିଗ୍ କାରଖାନା କର୍ମଚାରୀଙ୍କ ପାଇଁ ନୂଆ ଦିମହଲା କୋଠା ପ୍ରାୟ ଚାଳିଶ/ପଚାଶଟା ତିଆରି ହୋଇ ରହିଥିଲା । ଡିସେମ୍ବର ମାସ ପ୍ରବଳ ଶୀତରୁ ରକ୍ଷା ପାଇବା ପାଇଁ ସ୍ଥିର ହେଲା ସବୁ କୋଠରୀରେ ଛ'ଇଞ୍ଚ୍ ନଡ଼ା ବିଛାଇ ତା' ଉପରେ ପାଲ ପକାଇ ଦେଇ ତା' ଉପରେ ଗଦି ପଡ଼ିବ । ଶହେଟି କୋଠରୀରେ ଏହି ବ୍ୟବସ୍ଥା ହେଲା । ମିଗ୍ କାରଖାନାର ଗେଷ୍ଟହାଉସ୍, ଭି.ଆଇ.ପି. ଗେଷ୍ଟ ହାଉସ୍‌ର ସମସ୍ତ କୋଠରୀ ମଧ୍ୟ ସଂରକ୍ଷିତ ରହିଲା । ଆମେ ସେଦିନ ରହି ପରଦିନ ବଡ଼ିଭୋର୍‌ରୁ ବାହାରି ପଡ଼ିଲୁ । ଦିନ ଦୁଇଟା ସୁଦ୍ଧା ଆସି ବ୍ରହ୍ମପୁରରେ ପହଞ୍ଚି ମଧ୍ୟାହ୍ନ ଭୋଜନ କଲୁ । ସନ୍ଧ୍ୟା ସନ୍ଧ୍ୟା ଭୁବନେଶ୍ୱରରେ ପହଞ୍ଚିଲୁ ।

ପ୍ରଥମ ସାହିତୋତ୍ସବ । ରାଜ୍ୟର ସାହିତ୍ୟିକମାନଙ୍କ ମନରେ ଅଦ୍ଭୁତ ଉତ୍ସାହ ଆଉ ଉଦ୍ଦୀପନା ସୃଷ୍ଟି ହେଲା । ଏଥିପାଇଁ ପାଞ୍ଚଟି ବସ୍‌ର ବ୍ୟବସ୍ଥା ହୋଇଥିଲା । ଗୋଟିଏ ରାଉରକେଲା, କେନ୍ଦୁଝର, ଯାଜପୁର ସାହିତ୍ୟିକମାନଙ୍କୁ ନେଇ, ଦୁଇଟି କଟକ, ଭୁବନେଶ୍ୱର, ଗୋଟିଏ ସମ୍ବଲପୁର, ବଲାଗିର, କଳାହାଣ୍ଡି ସାହିତ୍ୟିକଙ୍କୁ ନେଇ ଏବଂ ଆଉ ଗୋଟିଏ ପୁରୀ, ବ୍ରହ୍ମପୁର ପର୍ଯ୍ୟନ୍ତ ସବୁ ସାହିତ୍ୟିକମାନଙ୍କୁ ନେଇ ଯିବା ପାଇଁ ବ୍ୟବସ୍ଥା ହେଲା ।

ଏ ସାହିତ୍ୟୋତ୍ସବର ଅନୁଭୂତି ଅନନ୍ୟ । ସୁରେନ୍ଦ୍ର ମହାନ୍ତି, ରାଧାମୋହନ ଗଡ଼ନାୟକ, ରାଜକିଶୋର ରାୟ, ମହାପାତ୍ର ନୀଳମଣି ସାହୁଙ୍କ ଠାରୁ ଆରମ୍ଭ କରି ପ୍ରାୟ ପାଞ୍ଚଶହରୁ ଅଧିକ ପ୍ରବୀଣ ଓ ତରୁଣ ସାହିତ୍ୟିକ ଏହି ଉତ୍ସବରେ ଯୋଗ ଦେଇଥିଲେ । କହିବା ବାହୁଲ୍ୟ ସମସ୍ତ ଦାୟିତ୍ୱରେ ମୁଁ ରହିଥିଲି ।

ଡିସେମ୍ବର ୨୩ ତାରିଖ ରାତି ଆରମ୍ଭ ମାତ୍ରେ ଗୋଟିକ ପରେ ଗୋଟିଏ ବସ୍ ଆସି ପହଞ୍ଚିଲା । ଅଭ୍ୟର୍ଥନା କମିଟିର ସଦସ୍ୟମାନେ କିଏ କେଉଁଠାରେ ରହିବେ ତା'ର ତାଲିକା କରି ରଖିଥା'ନ୍ତି । ପ୍ରବୀଣ ଓ ଖ୍ୟାତନାମା ସାହିତ୍ୟିକମାନଙ୍କୁ ମିଗ୍ କାରଖାନା ଗେଷ୍ଟ ହାଉସ୍‌ରେ ରହିବା ପାଇଁ ଏବଂ ଅନ୍ୟମାନଙ୍କୁ ନୂଆ ଘରର କୋଠରୀଗୁଡ଼ିକରେ ବ୍ୟବସ୍ଥା ହୋଇଥାଏ । ମୁଁ, ସାତକଡ଼ିବାବୁ, ତିୱାରୀ ସାହେବ ବସି ଆଲୋଚନା କରି ରାତି ଗୋଟାଏ ବେଳେ ଶୋଇବାକୁ ଗଲୁ । ମୁଁ ଶୋଇବାକୁ ଉପକ୍ରମ କରୁଛି ଏହି ସମୟରେ ମୋ ରୁମ୍ କବାଟରେ କେହି ନକ୍ କଲା । ମୋ ପତ୍ନୀ ସ୍ନେହଲତା ମୋ ସାଙ୍ଗରେ ଥିଲେ । ସେ କହିଲେ ତୁମେ ଆଉ ଯାଅନି । ରାତିରେ ନଶୋଇଲେ ତମ ଦେହ ଖରାପ ହେବ । ମୁଁ ପଚାରିଲି କିଏ ? ସେପଟୁ ଉତ୍ତର ଆସିଲା ସାର୍ ମୁଁ ଅଭ୍ୟର୍ଥନା କମିଟିର ସତ୍ୟନାରାୟଣ । କିଛି ସାହିତ୍ୟିକ ବସ୍‌ଷ୍ଟାଣ୍ଡ ପାଖରେ ଅଛନ୍ତି । ଆପଣଙ୍କୁ ଡକାଇ ପଠାଇଛନ୍ତି । ଆପଣ ନଗଲେ ସେମାନେ ଫେରିଯିବେ ବୋଲି କହୁଛନ୍ତି । ମୁଁ ପଚାରିଲି ସେମାନେ କିଏ ? ସେ ଯାହାହେଉ ପତ୍ନୀଙ୍କ ବୋଲ ନମାନି ମୁଁ ବାଧହୋଇ ପ୍ୟାଣ୍ଟସାର୍ଟ ପିନ୍ଧି ସାଲ୍ ଘୋଡ଼େଇ ହୋଇ ତଳକୁ ଆସିଲି । ଆମ କାର୍‌ରେ ବସି ବସ୍‌ଷ୍ଟାଣ୍ଡ ପାଖକୁ ଗଲି । ସେଠି ଏକ ଅଦ୍ଭୁତ ଦୃଶ୍ୟ । ମଝିରେ ନିଆଁ ହୁତୁହୁତୁ ହୋଇ ଜଳୁଛି । ଚାରିପଟେ ଆଦିମ ସଭ୍ୟତାର କିଛି ବ୍ୟକ୍ତି ଘୁରି ବୁଲୁଛନ୍ତି । ଅଧିକାଂଶ ଅର୍ଦ୍ଧ ଉଲଗ୍ନ । ମୁଁ ଏ ଦୃଶ୍ୟ ଦେଖି ପ୍ରକୃତରେ ଚମତ୍କୃତ ହେଲି । ନିରୀକ୍ଷଣ କଲି । ଆଶ୍ଚର୍ଯ୍ୟରେ ମୋ ଆଖି କପାଳକୁ ଉଠିଗଲା । ଏହି ଅର୍ଦ୍ଧ ଉଲଗ୍ନ ମଣିଷଙ୍କ ମଧ୍ୟରୁ ଜଣେ ଉପେନ୍ଦ୍ର ଭଞ୍ଜଙ୍କ 'ଚେତି ଗ୍ଭେରୀ ଚାହିଁଲା ନିଶିବାସେ' ଗୀତ ଉଚ୍ଚ ସ୍ୱରରେ ଆବୃତ୍ତି କରିବା ବେଳେ ଅନ୍ୟମାନେ ତାଙ୍କୁ ପାଳି ଧରୁଛନ୍ତି । ଓଡ଼ିଆ ସାହିତ୍ୟର ବର୍ତ୍ତମାନ ଭବିଷ୍ୟତମାନଙ୍କୁ ଦେଖି ହସିଲି । ଏମାନେ ଥିଲେ କବି ସୌଭାଗ୍ୟ ମିଶ୍ର, କବି ଫନୀ ମହାନ୍ତି, କବି ହରପ୍ରସାଦ ପରିଚ୍ଛା ପଟ୍ଟନାୟକ, କବି ହରିହର ମିଶ୍ର, ଗାଳ୍ପିକ ହରିହର ଦାଶ(ପ୍ରଫେସର ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ) ପ୍ରାବନ୍ଧିକ ପ୍ରଫେସର ପ୍ରଫୁଲ୍ଲ ମହାନ୍ତି ଏବଂ ଗାଳ୍ପିକ ପ୍ରଭାତ ମହାପାତ୍ର । ମୁଁ ଗାଡ଼ିରୁ ଓହ୍ଲାଇ ଧୀରେଧୀରେ ସେମାନଙ୍କ ନିକଟକୁ ଗଲି । ଉପେନ୍ଦ୍ର ଭଞ୍ଜଙ୍କ ଗୀତର ସ୍ୱର ଲମ୍ବାଇ ଥିବା ବନ୍ଧୁ ସୌଭାଗ୍ୟ ମିଶ୍ରଙ୍କ କାନ୍ଧରେ ହାତ ଦେଲି । ସେ ବୁଲିପଡ଼ି ମତେ ଦେଖି ହୋ ହୋ ହୋଇ କହିଲେ ହେ- ଆସାମୀ ହାଜିର । ମତେ ଦେଖି ହର ବଡ଼ ପାଟିରେ କହିଲା- ବରିଭାଇ ତମେ କୋଉ ଅକଲରେ ଆମକୁ ନଡ଼ାଗଦା ଉପରେ ଶୋଇବାକୁ ଅର୍ଡ଼ର ଦେଇଛ ? ଫନୀ କହିଲା ସକାଳକୁ ଛତୁ ହୋଇ ଫୁଟିବା । ମୁଁ ହସିଲି । ସମସ୍ତଙ୍କୁ ନେଇ ମିଗ୍ ଗେଷ୍ଟ ହାଉସ୍‌କୁ ଆସିଲି । ଉଦୟନାଥ ଷଡ଼ଙ୍ଗୀ ଆଉ ବିଚିତ୍ରାନନ୍ଦ କର ଆସିନଥିଲେ । ସେ ଦୁହିଁଙ୍କର ଦୁଇଟିଯାକ ରୁମ୍ ଖୋଲି ସମସ୍ତଙ୍କୁ ଭର୍ତ୍ତିକରିଦେଲି । ମୁଁ ଫେରିଲା ବେଳକୁ ସୌଭାଗ୍ୟ ମିଶ୍ର କହିଲେ ତୁ ଯାଉଛୁ କ'ଣ । ଆମ କଥା କିଏ ବୁଝିବ ? ମୁଁ କହିଲି ପୁଣି କ'ଣ ? କ'ଣ ମାଲ୍ ଅଛି ପଠା । ଅଗତ୍ୟା ଅଭ୍ୟର୍ଥନା କମିଟିର ସତ୍ୟ ନାରାୟଣ ହାତରେ ଦୁଇଟି ଓଲ୍ଡମଙ୍କ ରମ୍ ପଠାଇ ଦେଲି ।

ସକାଳ ୬ଟାରେ କବାଟ ପୁଣି କିଏ ବାଡ଼େଇଲା । ପତ୍ନୀ ପଚାରିଲେ କିଏ ? ମୁଁ ମିତ୍ରଭାନୁ । ବାପା ବରେନ୍ଦ୍ରବାବୁଙ୍କୁ ଡାକୁଛନ୍ତି । ପତ୍ନୀ ପଚାରିଲେ କିଏ ? ମିତ୍ରଭାନୁ କହିଲା ସୁରେନ୍ଦ୍ର ମହାନ୍ତି ତଳେ ଲନ୍‌ରେ ବସିଛନ୍ତି ।

ସୁନାବେଡ଼ାରେ ସାହିତ୍ୟୋତ୍ସବ ଅଭୂତପୂର୍ବ ସଫଳତା ଲାଭ କଲା । ଓଡ଼ିଆ ଭାଷା-ସାହିତ୍ୟ ସମ୍ମିଳନୀ

ହେଉଛି ବୋଲି ଶୁଣି କୋରାପୁଟ-ଜୟପୁର, ପାରଳାଖେମୁଣ୍ଡି, ରାୟଗଡ଼ା ଆଦି ବିଭିନ୍ନ ସ୍ଥାନରୁ ଅନେକ ଲୋକ କ'ଣ ହେଉଛି ବୋଲି ଦେଖିବାକୁ ଆସିଲେ । କୋରାପୁଟ ଅଞ୍ଚଳରେ ତେଲଗୁ ଭାଷାଭାଷୀଙ୍କ ସଂଖ୍ୟା କମ୍ ନୁହେଁ । ଅନେକ ସ୍ଥାନରେ ଦୋକାନ ବଜାରରେ ତେଲୁଗୁ ଭାଷାରେ ସାଇନ୍‌ବୋର୍ଡ଼ ମରାଯାଇଥାଏ । ଇଏ ୧୯୮୧ ଡିସେମ୍ବର ୨୪, ୨୫ ଓ ୨୬ ତାରିଖ କଥା । ସେତେବେଳେ ନାଲ୍‌କୋ ନିର୍ମାଣ ହୋଇନଥାଏ । ସୁନାବେଢ଼ା ମିଗ୍ କାରଖାନା ପୁରାଦମ୍‌ରେ ଚାଲୁଥାଏ । ବିଜୁ ପଟ୍ଟନାୟକ ମୁଖ୍ୟମନ୍ତ୍ରୀତ୍ୱ ସମୟ(୧୯୬୧-୬୩)ବେଳେ ହିନ୍ଦୁସ୍ଥାନ ଏରୋନଟିକ୍ସ ଲିମିଟେଡ ପୁରା କାରଖାନା ଓଡ଼ିଶାକୁ ଆସିବାର ଥିଲା । ମାତ୍ର ୱାଇ.ବି. ଚୌହାନ ଦିଲ୍ଲୀରେ କେନ୍ଦ୍ର ପ୍ରତିରକ୍ଷା ମନ୍ତ୍ରୀ ଥିବାରୁ ପ୍ରଭାବ ବିସ୍ତାର କରି କାରଖାନାର ଅର୍ଦ୍ଧେକ ମହାରାଷ୍ଟ୍ର ନାସିକ୍‌କୁ ନେଇଗଲେ । ଏହି କାରଖାନାଗୁଡ଼ିକରେ ପ୍ରତିରକ୍ଷା ବିଭାଗର ବିମାନ ପାଇଁ ଯନ୍ତ୍ରପାତି ତିଆରି ହୁଏ । ସାହିତ୍ୟୋତ୍ସବ ପରେ ସେତେବେଳେ ଲୋକେ ତେଲୁଗୁ ଭାଷା ସାଇନ୍‌ବୋର୍ଡ଼ ଭାଙ୍ଗି ଓଡ଼ିଆରେ ଲେଖିବାକୁ ବାଧ କରିଥିଲେ ।

ସାହିତ୍ୟୋତ୍ସବର ସଫଳତା ପରେ ଯେଉଁମାନେ ଏହାକୁ ବିରୋଧ କରୁଥିଲେ ସେମାନେ କ୍ରମେ ଏଥିରେ ଯୋଗ ଦେଲେ । ରାଜ୍ୟର କେତେକ ନାମକରା ସାହିତ୍ୟିକ ଏହାକୁ କିଛି ଗୋଡ଼ାଣିଆଙ୍କ ସାହିତ୍ୟମେଳା ବୋଲି ଆଖ୍ୟା ଦେଇଥିଲେ । ସେଇମାନଙ୍କ ମଧ୍ୟରୁ ୧୯୮୨ ରାଉରକେଲା ସାହିତ୍ୟୋତ୍ସବକୁ ଯିବା ପାଇଁ ଜଣେ ବିଖ୍ୟାତ ସାହିତ୍ୟିକ ମତେ ଫୋନ୍ କରି ପଚାରିଲେ କ'ଣ ବରେନ୍ଦ୍ର ରାଉରକେଲା ସାହିତ୍ୟୋତ୍ସବ ପାଇଁ ବସ୍ ଫସ୍ ବ୍ୟବସ୍ଥା ହୋଇଛି ? ମୁଁ ପଚାରିଲି ଆପଣ କ'ଣ ଆମ ମାନଙ୍କର ଗୋଡ଼ାଣିଆ ସାହିତ୍ୟମେଳାରେ ଯୋଗ ଦେବେ ? ସେ ପଟୁ ସେ ହସିଲେ । କହିଲେ ଆହେ ଯେଉଁମାନେ ତମ ମେଳକୁ ଗୋଡ଼ାଣିଆ କହୁଥିଲେ ମୁଁ ସେ ଦଳର ନୁହେଁ । କିନ୍ତୁ ସେମାନେ ସମସ୍ତେ ଏଥର ଗୋଡ଼ାଣିଆ ହୋଇ ରାଉରକେଲା ଯିବାପାଇଁ ଗୋଡ଼ଟେକି ବସିଲେଣି । କିଏ କ'ଣ କହିଦେଲା ତାକୁ ତମେ ଧରି ବସିଲେ ହେବ ? ମୁଁ କହିଲି ମୁଁ ସେଥିରେ ବ୍ୟସ୍ତ ନୁହେଁ ସାର୍ । ଆପଣ କିଏ କିଏ ଯିବେ ମୋତେ କହିଦେଲେ ମୁଁ ଆପଣମାନଙ୍କ ପାଇଁ ଭଲ ବସ୍‌ର ବ୍ୟବସ୍ଥା କରିଦେବି । କହିବା ବାହୁଲ୍ୟ ଯେତେ ବଡ଼ ସାହିତ୍ୟିକ ନାକ ଟେକୁଥିଲେ ସମସ୍ତେ ରାଉରକେଲା ଗଲେ । ସୁନାବେଢ଼ା ସାହିତ୍ୟୋତ୍ସବରେ ଜାନକୀବାବୁ ଉଦ୍‌ଘାଟକ, ସୁରେନ୍ଦ୍ର ମହାନ୍ତି ମୁଖ୍ୟ ଅତିଥି ଓ ରାଧାମୋହନ ଗଡ଼ନାୟକ ସମ୍ମାନିତ ଅତିଥି ରୂପେ ଯୋଗ ଦେଇଥିଲେ ।

ରାଉରକେଲାରେ ଜାନକୀବାବୁଙ୍କ ସହ ମୁଖ୍ୟ ଅତିଥି ଥିଲେ ରାଜକିଶୋର ରାୟ । ରାଉରକେଲାରେ ପାଞ୍ଚଶହରୁ ଊର୍ଦ୍ଧ୍ୱ ସାହିତ୍ୟିକ ଯୋଗ ଦେଇଥିଲେ । ରାଜକିଶୋର ରାୟ ଜଣେ ମଜାଦାର ଲୋକ ଥିଲେ । ଏତେବଡ଼ ସାହିତ୍ୟିକ, ପ୍ରଫେସର କିନ୍ତୁ ସମସ୍ତଙ୍କ ସହ ଚମତ୍କାର ସମ୍ପର୍କ ରଖନ୍ତି । ରାଉରକେଲା ସମ୍ମିଳନୀରେ ମୋ ଉପରେ ଏକ କବିତା ଲେଖି ତାକୁ ସ୍ୱର ଦେଇ ମଞ୍ଚରେ ବୋଲିଲେ । ମୁଁ ତାଙ୍କୁ ସାର୍ ବୋଲି ଡାକୁଥିଲି । ତାଙ୍କ ଗୀତ ଶୁଣି ବହୁ ଦିନ ଧରି ରବି ସିଂହ ତାକୁ ବ୍ୟଙ୍ଗ କରି ଗାଉଥିଲେ । ରାଉରକେଲା ସାହିତ୍ୟୋତ୍ସବର ମାଦକତା ସାରା ରାଜ୍ୟରେ ପ୍ରଚାର ହୋଇଗଲା । ଏହାପରେ ସାହିତ୍ୟିକମାନେ ଅପେକ୍ଷା କରି ରହିଥାନ୍ତି ପର ସାହିତ୍ୟୋତ୍ସବକୁ । ୧୯୮୩ରେ ତୃତୀୟ ସାହିତ୍ୟୋତ୍ସବ ହେଲା ବାଲେଶ୍ୱରରେ । ବର୍ଷକୁ ବର୍ଷ ସାହିତ୍ୟିକମାନଙ୍କ ସଂଖ୍ୟା ବୃଦ୍ଧି ପାଇବାରେ ଲାଗିଲା । ମୋ ସାଙ୍ଗରେ ମୋର ପତ୍ନୀ ସ୍ନେହଲତା ସାହିତ୍ୟୋତ୍ସବକୁ ପ୍ରାୟ ଯାଉଥିଲେ । ସେତେବେଳକୁ ମୋ ପୁଅ ଝିଅ ସମସ୍ତେ ଛୋଟ ହୋଇଥିବାରୁ ସେମାନଙ୍କୁ ଭୁବନେଶ୍ୱରରେ ଛାଡ଼ିଥାଏ । ଭୁବନେଶ୍ୱରରେ ମୋ ଶାଶୁ ଏବଂ ଦୁଇଜଣ ଶଳାଙ୍କୁ ସେମାନଙ୍କ ଦାୟିତ୍ୱ ଦେଇ ଆସେ । ବଡ଼ଝିଅ ରୁପଲ୍, ତା' ତଳ ମାମା ଏବଂ ପୁଅ ଲକୁ ସମସ୍ତେ ଦଶବର୍ଷରୁ କମ୍ ଥିଲେ ।

ବାଲେଶ୍ୱର ସାହିତ୍ୟୋତ୍ସବରେ ଦୁଇଜଣ ବିଶିଷ୍ଟ ବଙ୍ଗଳା ଔପନ୍ୟାସିକ ବିମଳ ମିତ୍ର ଓ ଶଙ୍କର ଅତିଥି ଭାବେ ଯୋଗ ଦେଇଥିଲେ । ସାହିତ୍ୟୋତ୍ସବର ଆୟୋଜନ ଓ ଜନପ୍ରିୟତା ଦେଖି ସେମାନେ ଏହାକୁ 'ଆସାମ ସାହିତ୍ୟ ସଭା' ସହ ତୁଳନା କରିଥିଲେ । ସାହିତ୍ୟୋତ୍ସବର ମାଦକତା ଏପରି ଯେ ସେଠି ବଡ଼ ସାନ ବା ପ୍ରବୀଣ ନବୀନ ସାହିତ୍ୟିକଙ୍କ ମଧ୍ୟରେ କୌଣସି ପ୍ରଭେଦ ନଥାଏ । ମୋର ମନେ ଅଛି ବାଲେଶ୍ୱରରେ ଖାଇବା ପାଇଁ ପ୍ଲେଟ ଧରି ଲାଇନ୍‌ରେ ଠିଆହୋଇଥିଲେ ରାଧାମୋହନ ଗଡ଼ନାୟକ, ରାଜକିଶୋର ରାୟ, ଅଚ୍ୟୁତାନନ୍ଦ ପତି, ନାଟ୍ୟକାର ରାମଚନ୍ଦ୍ର ମିଶ୍ର ଏବଂ ମହାପାତ୍ର ନୀଳମଣି ସାହୁ । ମୁଁ ସେମାନଙ୍କୁ ଲାଇନ୍‌ରୁ ଡାକି ଆଣି ଖାଇବା ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା କରିବା ପାଇଁ ଯେତେବେଳେ ବାହାରିଲି ଗଡ଼ନାୟକ ତା'ର ପ୍ରତିବାଦ କରି କହିଲେ ହଇଏ ବରେନ୍ଦ୍ରବାବୁ- ଶହଶହ ସାହିତ୍ୟିକ ଲାଇନ୍‌ରେ ପ୍ଲେଟ ଧରି ଠିଆ ହୋଇଛନ୍ତି । ଆମ ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା କାହିଁକି ? ଆମେ ଏଇମାନଙ୍କ ସାଙ୍ଗରେ ଏକାଠି ଖାଇବୁ । ତମେ ଯେଉଁ ସାହିତ୍ୟୋତ୍ସବର ସର୍ଜନା କଲ ତୁମକୁ କେଉଁ ଭାଷାରେ ଧନ୍ୟବାଦ ଦେବି ଜାଣିପାରୁ ନାହିଁ । ବହୁଦିନ ଧରି ଏହା ମନେ ରହିବ । ଗଡ଼ନାୟକଙ୍କ କଥାଶୁଣି ଲାଇନ୍‌ରେ ଥିବା ସାହିତ୍ୟିକମାନେ ତାଳିମାରି ହୋ ହୋ ହେଲେ । ଏଇ ଥିଲା ସାହିତ୍ୟୋତ୍ସବର ପ୍ରକୃତ ସ୍ୱରୂପ ।

ମୁଁ ସେତେବେଳେ ପ୍ରଚୁର ସିଗାରେଟ ଟାଣୁଥାଏ । ଇଣ୍ଡିଆ କିଙ୍ଗ୍‌ସ ସିଗାରେଟ୍ ମୁଁ ଟାଣୁଥିଲି । ପ୍ରତିଦିନ ପାଖାପାଖି ତିନିରୁ ସାଢ଼େତିନି ପ୍ୟାକେଟ୍ ଅର୍ଥାତ୍ ଷାଠିଏରୁ ସତୁରି ସିଗାରେଟ୍ ଟାଣୁଥିଲି । ମୋ ସିଗାରେଟ୍ ଟଣା ସେତେବେଳେ ଅନେକ ଲୋକଙ୍କୁ ମୋ ପ୍ରତି ଈର୍ଷାନ୍ୱିତ କରିଥାଏ । ଇଣ୍ଡିଆ କିଙ୍ଗ୍‌ସ ସେତେବେଳେ ଭାରତର ସବୁଠାରୁ ମୂଲ୍ୟବାନ ସିଗାରେଟ୍ ଥିଲା । ମଝିରେ ମଝିରେ ମୁଁ ଡ୍ରିଙ୍କ୍ ମଧ୍ୟ କରୁଥିଲି । ପିଟର ସ୍କଟ୍ ହୁଇସ୍କି ମୁଁ ପ୍ରାୟ ପିଉଥିଲି । ମୋର ସିଗାରେଟ୍ ଏବଂ ମଦ ପିଆକୁ ଲକ୍ଷ୍ୟକରି ମୋ ବିରୋଧୀ ଜଣେ ସାମ୍ବାଦିକ ତାଙ୍କର କାଗଜରେ ଛାପିଲେ ଲେଖକ ସାମ୍ମୁଖ୍ୟ ସାହିତ୍ୟୋତ୍ସବ ପାଇଁ ପିଟର ସ୍କଟ୍ ମଦ ଓ ଇଣ୍ଡିଆକିଙ୍ଗ୍‌ସ ସିଗାରେଟ ବାଲେଶ୍ୱର ବଜାରରେ ମିଳୁନାହିଁ । ଏ ଖବର ପଢ଼ି ଆମେ ସମସ୍ତେ ହସିଲୁ । ସାତକଡ଼ିବାବୁ ଆମ ପାଖରେ ଠିଆ ହୋଇଥିବା ବାଲେଶ୍ୱରର ଜଣେ ସାମ୍ବାଦିକ ଏବଂ ସାହିତ୍ୟିକଙ୍କୁ ପଚାରିଲେ ଏ କାଗଜର ସମ୍ପାଦକ କ'ଣ କରୁଥିଲେ ? ସାମ୍ବାଦିକ କହିଲେ ନା ସାର୍ ସିଏ ଗୋଟେ ବାଜେଲୋକ । ଅମିନ୍ ଚାକିରି କରୁଥିଲା । ପଇସା ଖାଇ ଚାକିରି ଗଲା । ଏବେ ଏଇଭଳି କାଗଜ ବାହାର କରି ବ୍ଲାକ୍‌ମେଲ୍ କରୁଛି । ସାତକଡ଼ିବାବୁ କହିଲେ ଅମିନ ଥିଲେ । ଅର୍ଥାତ୍ ଅ-ଅନିଷ୍ଟକାରୀ, ମି-ମିଥ୍ୟାବାଦୀ ଏବଂ ନ-ନଷ୍ଟ ଚରିତ୍ର । ତାଙ୍କ କଥା ଶୁଣି ସମସ୍ତେ ହୋ ହୋ ହୋଇ ହସିଲେ । ବହୁଦିନ ପର୍ଯ୍ୟନ୍ତ ସାତକଡ଼ିବାବୁଙ୍କର ଏହି ଜୋକ୍ ଚାଲିଥିଲା । ଏକଥା ପ୍ରଚାର ହେବା ପରେ ସଂପୃକ୍ତ ସାମ୍ବାଦିକ ଆଉ ସାହିତ୍ୟୋତ୍ସବ ମାଡ଼ି ନାହାନ୍ତି ।

ବାଲେଶ୍ୱର ସାହିତ୍ୟୋତ୍ସବ ପରେ ଏକ ମଜାଦାର ଘଟଣା ଘଟିଲା । ଡଃ ହରେକୃଷ୍ଣ ମହତାବ ତାଙ୍କ ଗାଁ ମଜଲିସ୍‌ରେ ଲେଖିଲେ ବାଲେଶ୍ୱରରେ ଲେଖକ ସାମ୍ମୁଖ୍ୟ ପକ୍ଷରୁ ଯେଉଁ ସାହିତ୍ୟୋତ୍ସବ ହେଲା ସେଥିରେ ମ୍ୟୁନିସିପାଲିଟି ଅତିଥିଭବନ ଛାତରେ ଶହଶହ ଖାଲି ମଦବୋତଲ ଗଡୁଥିବା ଦେଖି ବାଲେଶ୍ୱର ଲୋକେ ଏବେ କହୁଛନ୍ତି ତିନିଦିନ ଭିତରେ ଏତେ ମଦ ପିଉଥିବା ଲୋକ ବର୍ଷରେ କେତେ ମଦ ପିଉ ନାହାନ୍ତି ? ଏହା ସହ ଆଉ କିଛି ଯାତୁ ସିଆତୁ ଲେଖିଥିଲେ । ଗାଁ ମଜଲିସ୍ ଏହି ନିବନ୍ଧ ପଢ଼ିବା ପରେ ତା'ର ଏକ ପ୍ରତିବାଦପତ୍ର ଲେଖି ସାତକଡ଼ିବାବୁ, କୃଷ୍ଣପ୍ରସାଦ ମିଶ୍ର, ସୁଧାଂଶୁ ରାଉତରାୟଙ୍କୁ ସାଙ୍ଗରେ ନେଇ ମୁଁ ଡଃ ମହତାବଙ୍କ ଏକାମ୍ର ନିବାସ ଘରକୁ ଗଲି । ଆମ ସମସ୍ତଙ୍କୁ ଦେଖି ଡଃ ମହତାବ ଖୁସି ହେଲେ । ମୁଁ ତାଙ୍କ ଗାଁ ମଜଲିସ୍‌ରେ ଯେଉଁ ତ୍ରୁଟିପୂର୍ଣ୍ଣ ଲେଖା ବାହାରିଛି ସେଭଳି କୌଣସି ଘଟଣା ଘଟିନଥିବା କଥା କହିଲି । ଯେଉଁମାନେ ମ୍ୟୁନିସିପାଲିଟି ଅତିଥିଭବନରେ ଥିଲେ ସେମାନଙ୍କର ଏକ ତାଲିକା ଦେଲି । ତାଲିକା ଦେଖି ମହତାବବାବୁ କ'ଣ ଭାବିଲେ । ତା'ପରେ କହିଲେ ଏତେସବୁ କଥା ମୁଁ ଜାଣିନି ।

ମୋତେ ତୁମେମାନଙ୍କ ବିରୁଦ୍ଧରେ ସେ ଅଭିଯ ଆସି କହିଲା । ଏବେ ବୁଝୁଛି ସିଏ ବଡ଼ ଦୁଷ୍ଟ ପ୍ରକୃତିର ଲୋକ । ମତେ ପଚାରିଲେ ତମେ କିଛି ପ୍ରତିବାଦ ଲେଖିକରି ଆଣିଛ ? ମୁଁ ଲେଖାଟି ବାହାର କରି ଦେଲି । ମହତାବବାବୁ ତାକୁ ପଢ଼ିଲେ । ତା'ପରେ କହିଲେ ଠିକ୍ ଅଛି, ଏହା ଅବିକଳ ବାହାରିବ । ତା' ପରଦିନ ପ୍ରଜାତନ୍ତ୍ରରେ ମୋ ପ୍ରତିବାଦପତ୍ରଟି ପୁରା ଆକାରରେ ପ୍ରକାଶ ପାଇଥିଲା । ଡଃ ମହତାବ ମତେ ଶ୍ରଦ୍ଧା କରୁଥିଲେ । ମୋତେ ଦେଖିଲେ କୁହନ୍ତି କିହୋ ବରେନ୍ଦ୍ର ଚନ୍ଦ୍ର ସେ ଯୋଗେଶ ଚନ୍ଦ୍ର(ବାଙ୍କୀର ପୂର୍ବତନ ବିଧାୟକ ଓ ଡଃ ମହତାବଙ୍କ ଅନୁଗତ ଡଃ ଯୋଗେଶ ଚନ୍ଦ୍ର ରାଉତ)ଟି କିପରି ଅଛନ୍ତି ।

ଜଣେ ସାମ୍ବାଦିକ ରୂପେ ମୁଁ ଓଡ଼ିଶାରେ ମୋ ପେଶା ଆରମ୍ଭ କରିବାର ଦୁଇ/ତିନି ବର୍ଷ ମଧ୍ୟରେ ପ୍ରାୟ ପରିଚିତ ହୋଇ ଯାଇଥିଲି । ତା'ର କାରଣ ହେଲା ମତେ ମାତୃଭୂମି ପକ୍ଷରୁ ରାଜ୍ୟର ବିଭିନ୍ନ ସ୍ଥାନକୁ ଗୁରୁତ୍ୱପୂର୍ଣ୍ଣ ଘଟଣାର ରିପୋର୍ଟିଂ ପାଇଁ ପଠାଯାଉଥିଲା । ଯେମିତି ୧୯୬୪ ଜାନୁଆରୀ ୫ ତାରିଖରେ ପଣ୍ଡିତ ନେହେରୁଙ୍କ ଟିକରପଡ଼ା ବନ୍ଧ ଶିଳାନ୍ୟାସ ଉତ୍ସବର ରିପୋର୍ଟିଂ କରିବାକୁ ପଠାଯାଇଥିଲା । ସେହିପରି ୧୯୬୨ରେ ସେପ୍ଟେମ୍ବରରେ ପାରାଦ୍ୱୀପ ବନ୍ଦରରେ ପ୍ରଥମ ଯୁଗୋସ୍ଲୋଭାକିଆ ଯାହାଜ ପଣ୍ୟନେବାପାଇଁ ଆସିବା ଘଟଣା ରିପୋର୍ଟିଂ ପାଇଁ ପଠାଯାଇଥିଲା । ଏ ସମସ୍ତ ଘଟଣାର ମୁଁ ଯେଉଁ ରିପୋର୍ଟିଂ କରୁଥିଲି ତାହା ମୋ ନାଁରେ ଯାଉଥିଲା । ଯେପରି 'ଟିକରପଡ଼ା ହେଲେ ମହାନଦୀ ବନ୍ୟା ସମ୍ପୂର୍ଣ୍ଣ ନିୟନ୍ତ୍ରଣ ହେବ- ନେହେରୁ' । ଏହି ଶିରୋନାମା ତଳେ ଲେଖା ହେଉଥିଲା(ଆମ ସ୍ୱତନ୍ତ୍ର ପ୍ରତିନିଧି ବରେନ୍ଦ୍ର କୃଷ୍ଣ ଧଳଙ୍କ ଠାରୁ) ଫଳରେ ରାଜ୍ୟରେ ମୋର ସାମ୍ବାଦିକ ରୂପେ ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି ହୋଇଥିଲା ।

ରାଜ୍ୟ ଭିତରେ ମୁଁ ସାମ୍ବାଦିକ ବୋଲି ପ୍ରାୟ ପରିଚିତ ହେବା ପରେ ରାଜ୍ୟ ବାହାରେ ମୋର ଏକ ନୂଆ ଅଧ୍ୟାୟ ସୃଷ୍ଟି ହେଲା ଜାତୀୟ ସାମ୍ବାଦିକ ୟୁନିୟନର କାର୍ଯ୍ୟକାରୀ କମିଟିକୁ ୧୯୭୯ରେ ନିର୍ବାଚିତ ହେବା ପରେ । ସେତେବେଳେ ମୁଁ ଥିଲି ଏନ୍.ୟୁ.ଜେ.ର ସର୍ବକନିଷ୍ଠ କାର୍ଯ୍ୟକାରୀ କମିଟି ସଦସ୍ୟ । ମୋ ବୟସ ସେତେବେଳେ ମାତ୍ର ୩୯ବର୍ଷ । ତେବେ ମୋତେ ବେଶୀ ସାମ୍ବାଦିକ ବନ୍ଧୁ ଜାଣିଲେ ଯେତେବେଳେ ଭୁବନେଶ୍ୱରରେ ୧୯୭୮ରେ ଏନ୍.ୟୁ.ଜେ.ର ଦ୍ୱିବାର୍ଷିକ ସମ୍ମିଳନୀ ଆୟୋଜନ କରିଥିଲି । ସେତେବେଳେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିଲେ ନୀଳମଣି ରାଉତରାୟ । ମୁଁ ଥିଲି ଓଡ଼ିଶା ୟୁନିୟନ୍ ଅଫ୍ ଜର୍ଣ୍ଣାଲିଷ୍ଟର ସାଧାରଣ ସମ୍ପାଦକ । ସଭାପତି ଥିଲେ ସମାଜର ଭୁବନେଶ୍ୱର ପ୍ରତିନିଧି ନାରାୟଣ ରଥ । ଏନ୍.ୟୁ.ଜେ.ର ସଭାପତି ଥିଲେ କପିଳ ବର୍ମା । କପିଲ୍ ହିନ୍ଦୁସ୍ଥାନ ଟାଇମ୍ସର ଲକ୍ଷ୍ନୌ ସ୍ୱତନ୍ତ୍ର ପ୍ରତିନିଧି ଥିଲେ । ୧୯୭୮ରେ ଓଡ଼ିଶାରେ ବେଶ୍ ଜାକଜମକରେ ଏହି ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ସମ୍ମିଳନୀ ଶେଷହେବା ପରେ ପୁରୀରେ ସମସ୍ତ ଡେଲିଗେଟ୍‌ଙ୍କ ପାଇଁ ମହାପ୍ରସାଦ ଭୋଜନର ଆୟୋଜନ ହୋଇଥିଲା । ଅନେକ ସଦସ୍ୟ ପୁରୀ ଶଙ୍ଖୁଡ଼ି ମହାପ୍ରସାଦ ସେମାନଙ୍କ ଘରକୁ ନେଇଥିଲେ । ଅବଶ୍ୟ ଆମ ପକ୍ଷରୁ ସମସ୍ତ ସଦସ୍ୟଙ୍କ ପାଇଁ ଶୁଖିଲା ମହାପ୍ରସାଦ ପୁଡ଼ିଆ ଦିଆଯାଇଥିଲା ।

୧୯୮୪ରେ ବନାରସଠାରେ ଦ୍ୱିବାର୍ଷିକ ସମ୍ମିଳନୀର ଆୟୋଜନ କରାଯାଇଥିଲା । ଏହି ସମ୍ମିଳନୀ ବନାରସ ମ୍ୟୁନିସ୍‌ପାଲ କର୍ପୋରେସନ ପ୍ରେକ୍ଷାଳୟରେ ଅନୁଷ୍ଠିତ ହୋଇଥିଲା । ମୁଁ ଏବଂ ମୋର ପତ୍ନୀ ସ୍ନେହଲତା ଏହି ସମ୍ମିଳନୀରେ ଯୋଗ ଦେଇଥିଲୁ । ବନାରସ ସର୍କିଟ୍ ହାଉସ୍‌ରେ ମୋର ରହିବା ବ୍ୟବସ୍ଥା ହୋଇଥିଲା । ମୁଁ ପ୍ରଥମ ଦିନ ସମ୍ମିଳନୀକୁ ଆସିବା ବାଟରେ ହଠାତ୍ ଏସ୍.ଏନ୍. ଦାସ ମହାପାତ୍ର ଦେଖା ହୋଇଗଲେ । ଏସ୍.ଏନ୍. ଦାସ ମହାପାତ୍ର

ପୂର୍ବରୁ ଭୁବନେଶ୍ୱରରେ ଆଇ.ଡି.ସି.ର ଏମ୍.ଡି. ଥିଲେ । ମୋ ସାଙ୍ଗରେ ତାଙ୍କର ଅତ୍ୟନ୍ତ ଘନିଷ୍ଠତା ଥିଲା । ମୋତେ ହଠାତ୍ ବନାରସରେ ଦେଖି ସେ ଗାଡ଼ି ଅଟକାଇଲେ । ମୁଁ ମଧ୍ୟ ତାଙ୍କୁ ଦେଖି ଆଶ୍ଚର୍ଯ୍ୟ । ସେ ସେତେବେଳେ ସେଠି ଡାଲମିଆ କମ୍ପାନୀର ହରି ଫର୍ଟିଲାଇଜର କାରଖାନାର ଏମ୍.ଡି. ଥିଲେ । ଗଙ୍ଗାନଦୀ କୂଳରେ ହରି ଫର୍ଟିଲାଇଜର କାରଖାନା ଅବସ୍ଥିତ । ବିରାଟ କାରଖାନା । ମୁଁ ସେତେବେଳେ ନିୟମିତ ଇଣ୍ଡିଆ କିଙ୍ଗସ୍ ସିଗାରେଟ୍ ଟାଣୁଥାଏ । ପ୍ରତିଦିନ ହାରାହାରି ତିନି ପ୍ୟାକେଟ୍ ସିଗାରେଟ୍ ମୋର ଖର୍ଚ୍ଚ ହୁଏ । ଦାସ ମହାପାତ୍ର ସାହେବ ସେକଥା ଜାଣନ୍ତି । ମୁଁ କେଉଁଠି ଅଛି ମୋ ପାଖରେ ଗାଡ଼ି ଅଛି କି ନାହିଁ ଇତ୍ୟାଦି ପଚାରି ବୁଝିଲେ । ଠିକ୍ ଦିନ ୧୨ଟା ବେଳକୁ ହରି ଫର୍ଟିଲାଇଜର କାରଖାନାର ଜଣେ ଅଫିସର ମୋତେ ଖୋଜି ମ୍ୟୁନିସିପାଲ୍ ପ୍ରେକ୍ଷାଳୟକୁ ଆସିଲେ । ଦାସ ମହାପାତ୍ର ସାହେବ ମୁଁ ବନାରସରେ ଥିବା ପର୍ଯ୍ୟନ୍ତ ଏକ ଆମ୍ବାସାଡାର କାର୍ ମୋ ପାଖରେ ରହିବାର ବ୍ୟବସ୍ଥା କରିଦେଲେ । ତା' ସାଙ୍ଗରେ ମୋ ପାଇଁ ଗୋଟିଏ କାର୍ଟୁନ (ଦଶ ପ୍ୟାକେଟ୍) ଇଣ୍ଡିଆ କିଙ୍ଗସ ସିଗାରେଟ୍ ପଠାଇଥିଲେ । ବନାରସରେ ଇଣ୍ଡିଆ କିଙ୍ଗସ ମିଳୁନଥିଲା । ତେଣୁ ସେ ଯୋଗାଡ଼ କରି ମୋ ପାଖକୁ ଗୋଟିଏ କାର୍ଟୁନ ସିଗାରେଟ୍ ପଠାଇଥିଲେ । ସେତେବେଳେ ଭୁବନେଶ୍ୱରରେ ଅନେକ ବନ୍ଧୁ ଜାଣିଥିଲେ ମୁଁ ଇଣ୍ଡିଆ କିଙ୍ଗସ ସିଗାରେଟ୍ ଟାଣେ ବୋଲି ।

ସେଇ ସମ୍ମିଳନୀରେ ମୁଁ ଜାତୀୟ ସାମ୍ବାଦିକ ୟୁନିୟନର ପୂର୍ବାଞ୍ଚଳ ସମ୍ପାଦକ ରୂପେ ନିର୍ଦ୍ୱନ୍ଦ୍ୱରେ ନିର୍ବାଚିତ ହେଲି । ସେତେବେଳେ ଦେଶର ବହୁ ବିଶିଷ୍ଟ ସାମ୍ବାଦିକଙ୍କ ସହ ମୋର ପରିଚୟ ହୋଇଥିଲା । ସେଇଠି ମୋତେ କଲିକତା ଆଜକାଲ୍ ଦୈନିକ ବଙ୍ଗଳା ଖବରକାଗଜର ସହକାରୀ ସମ୍ପାଦକ ଅସୀମ ମିତ୍ର ପରିଚୟ କରାଇ ଦେଲେ ଅମୃତବଜାର ପତ୍ରିକାର ମୁଖ୍ୟ ସବ୍-ଏଡିଟର ପ୍ରଦ୍ୟୋତ ଭଦ୍ରଙ୍କ ସହ । ଆରମ୍ଭରୁ ପ୍ରଦ୍ୟୋତ ଭଦ୍ର ମୋତେ ଟିକେ ବେଖାତିର ଢଙ୍ଗରେ କଥାବାର୍ତ୍ତା କଲେ । ମାତ୍ର ମୋର ଇଣ୍ଡିଆ କିଙ୍ଗସ ସିଗାରେଟ୍ ଟାଣିବା ଏବଂ ମୋ ପାଇଁ ଥିବା କାର୍ ଦେଖି ସେ ତାଙ୍କ ବ୍ୟବହାର ବଦଳାଇ ଦେଲେ । ମୋ ଠାରୁ ମାଗି ଇଣ୍ଡିଆ କିଙ୍ଗସ ସିଗାରେଟ୍ ଟାଣିଲେ । ଅସୀମ ବାବୁଙ୍କ ସହ ମୋର ପରିଚୟ ୧୯୭୭ରୁ । ଭୁବନେଶ୍ୱରରେ ମୋର ପ୍ରଭାବ କଥା ସେ ଜାଣନ୍ତି । ବିଶେଷ କରି ୧୯୭୮ ଦ୍ୱିବାର୍ଷିକ ସମ୍ମିଳନୀରେ ମୋର ସାଙ୍ଗଠନିକ ବ୍ୟକ୍ତି ଏବଂ ଓଡ଼ିଶା ୟୁନିୟନ ଅଫ୍ ଜର୍ଣ୍ଣାଲିଷ୍ଟ ଘର ପାଇଁ ମାର୍କେଟ ବିଲ୍ଡିଂ ପଛପଟେ ଜାଗା ଦେଖି ଏନ୍.ୟୁ.ଜେ.(ଆଇ) ନ୍ୟାସନାଲ୍ ୟୁନିୟନ ଅଫ୍ ଜର୍ଣ୍ଣାଲିଷ୍ଟ(ଇଣ୍ଡିଆ) ବା ଜାତୀୟ ସାମ୍ବାଦିକ ୟୁନିୟନ(ଭାରତ)ର ନେତାମାନେ ମୋତେ ପ୍ରଶଂସାରେ ପୋତି ପକାଇଥିଲେ । ୧୯୭୮ରେ ସେଇ ସମ୍ମିଳନୀ ବେଳେ ମୁଖ୍ୟମନ୍ତ୍ରୀ ନୀଳମଣି ରାଉତରାୟ ଓୟୁଜେ ଭବନ ପାଇଁ ଶିଳାନ୍ୟାସ କରିଥିଲେ ।

ବନାରସ ସମ୍ମିଳନୀରେ ସେଇ ଦୃଷ୍ଟିରୁ ମୋର ବେଶ୍ ଗୁରୁତ୍ୱ ଥିଲା । ଓଡ଼ିଶାରୁ ଆମର ପ୍ରାୟ ପଚାଶ ଜଣ ପ୍ରତିନିଧି ଯାଇଥିଲେ । ସମସ୍ତଙ୍କୁ ଗଙ୍ଗାନଦୀ କୂଳରେ ଏକ ଲଜ୍‌ରେ ରଖାଯାଇ ଥିଲା । ସମସ୍ତେ ସକାଳୁ ନିତ୍ୟକର୍ମ ଶେଷ କରି ଗଙ୍ଗାରେ ଗାଧୋଉଥିଲେ । ବନାରସ୍‌ରେ ପ୍ରଦ୍ୟୋତ ଭଦ୍ରଙ୍କ ସହ ମୋର ପରିଚୟ ପରବର୍ତ୍ତି ସମୟରେ କଲିକତାରେ ମୋର ଅନେକ ବନ୍ଧୁ ସୃଷ୍ଟିକରିବାରେ ସାହାଯ୍ୟ କରିଥିଲା । ବିଖ୍ୟାତ ଦନ୍ତ ଚିକିତ୍ସକ ଡାକ୍ତର ବାରିନ୍ ରାୟ, ବିଖ୍ୟାତ ରସଗୋଲା ବ୍ୟବସାୟୀ କେ.ସି. ଦାସଙ୍କ ସମେତ ବିଖ୍ୟାତ ସାହିତ୍ୟିକ ସମରେଶ ବସୁ, ଶକ୍ତି ଚଟ୍ଟୋପାଧ୍ୟାୟ, ସମରେଶ ମଜୁମଦାର, ବୁଦ୍ଧଦେବ ଗୁହ, ଗୌର କିଶୋର ଘୋଷ, ସଞ୍ଜିବ ଚଟ୍ଟୋପାଧ୍ୟାୟ, ବିଶିଷ୍ଟ ଅଭିନେତା ରବି ଘୋଷ ଏବଂ ଆହୁରି ଅନେକ । ଉଭୟ ବାରିନ୍ ରାୟ ଓ କେ.ସି. ଦାସଙ୍କ ପରିବାର କଲିକତାର ଅତ୍ୟନ୍ତ ଅଭିଜାତ ପରିବାର । ସେମାନଙ୍କ ଘର ଗୋଟିଏ ଗୋଟିଏ ସାଂସ୍କୃତିକ କେନ୍ଦ୍ର କହିଲେ ଅତ୍ୟୁକ୍ତି ହେବନାହିଁ । ବାରିନ୍ ଦାଙ୍କ ସାନଭାଇ ଅମିତ୍ କଲିକତା ମେଡ଼ିକାଲ୍ କଲେଜର ପ୍ରଫେସର । ତାଙ୍କର ଆଉଜଣେ ଭାଇ ଅଚିନ୍ ରାୟ

ଢାକାରେ ପି.ଟି.ଆଇ. ପ୍ରତିନିଧି । କେ.ସି. ଦାସ ପରିବାରର ବଡ଼ପୁଅ ରବି ଦାସ ବାରିଷ୍ଟର, ତାଙ୍କ ତଳଭାଇ ନରେନ୍ ଦାସ କମ୍ପାନିର ଏମ୍.ଡି. । ମୁଁ ଯେତେବେଳେ କଲିକତା ଯାଏ ମୋର ଏବଂ ମୋ ପତ୍ନୀଙ୍କ ସମ୍ମାନାର୍ଥେ ବାରିନ୍ ଦା ଏବଂ କେ.ସି. ଦାସଙ୍କ ଘରେ ରାତିରେ ଆସର ଜମେ । ବହୁ ବିଶିଷ୍ଟ ଲୋକ ଏହି ଆସରରେ ଯୋଗ ଦିଅନ୍ତି । କକ୍‌ଟେଲ୍ ପାର୍ଟିହୁଏ । ପ୍ରଦ୍ୟୋତ ଭଦ୍ର ଥିଲେ ବଙ୍ଗଳାର ଘରେ ଘରେ ପରିଚିତ ବୀରେନ୍ଦ୍ର କୃଷ୍ଣ ଭଦ୍ରଙ୍କ ଏକମାତ୍ର ପୁଅ । ମୋ ସାଙ୍ଗରେ ତାଙ୍କ ଘନିଷ୍ଠତା ଏଭଳି ହେଲା ଯେ ସେ ସମସ୍ତଙ୍କୁ ମୁଁ ତାଙ୍କର ସାନଭାଇ ବୋଲି ଅନେକ ସମୟରେ କହୁଥିଲେ । ପ୍ରଦ୍ୟୋତ ଦା ଚମତ୍କାର ଇଂରେଜୀ କୁହନ୍ତି । ଅନର୍ଗଳ ଭାବେ ସେ ଇଂରାଜୀରେ ଭାଷଣ ଦେଇ ପାରନ୍ତି । ସେ ଆଉ ନାହାନ୍ତି, ପରଲୋକଗତ । କଲିକତାରେ ମୋର ସମ୍ପର୍କ ଭୁବନେଶ୍ୱରର ଅନେକ ବନ୍ଧୁ ଜାଣନ୍ତି । ଏହା ଏପର୍ଯ୍ୟନ୍ତ ଅତୁଟ ରହିଛି ।

କଲିକତା ବହିମେଳାକୁ ଆମେ ଭୁବନେଶ୍ୱରରୁ ଚାରି/ପାଞ୍ଚଜଣ ପ୍ରତିବର୍ଷ ପ୍ରାୟ ଯାଉ । ଆମେ ପହଞ୍ଚିବା ଖବର ପାଇଲେ ବାରିନ୍ ଦା ଆଉ ରବି ଦାଙ୍କ ପାଖରୁ ନିମନ୍ତ୍ରଣ ଆସେ । ରାତିରେ ନିଶ୍ଚିତ ଭାବେ ଆମପାଇଁ ସେମାନଙ୍କ ଘରେ ପାର୍ଟିହୁଏ । ଏସବୁ ମୋର ସମ୍ପର୍କକୁ ନେଇ । କଲିକତାରେ ମୋର ଆଉ କେତେକ ବନ୍ଧୁ ମଧ ଥିଲେ । ମୁଁ ଷ୍ଟେସ୍‌ମ୍ୟାନ୍‌ର ଭୁବନେଶ୍ୱର ବିଜିନେସ୍ ରିପ୍ରେଜେଣ୍ଟେଟିଭ୍ ଏବଂ 'ଆଜ୍‌କାଲ୍'ର ପ୍ରତିନିଧି ରୂପେ କାର୍ଯ୍ୟ କରୁଥିଲି । ସେଇ ଦୃଷ୍ଟିରୁ ଆଜ୍‌କାଲ୍‌ର ଏବଂ ଷ୍ଟେଟସ୍‌ମ୍ୟାନ୍‌ର ବହୁ ବନ୍ଧୁ ମୁଁ କଲିକତା ଗଲେ ମୋ ପାଖକୁ ଆସୁଥା'ନ୍ତି । ମୁଁ କଲିକତା ଉତ୍କଳ ଭବନରେ ଭି.ଆଇ.ପି. ସୁଟ୍‌ରେ ପ୍ରାୟ ରହେ । ଅନେକ ସମୟରେ ସେଠି ମଧ ପାର୍ଟିହୁଏ । ଷ୍ଟେଟସ୍‌ମ୍ୟାନ୍‌ର କୌସ୍ତୁଭ ଭଟ୍ଟାଚାର୍ଯ୍ୟଙ୍କ ସହ ମୋର ଅତି ଘନିଷ୍ଠତା ହୋଇଥିଲା । କୌସ୍ତୁଭ କଲିକତାର ନାମକରା ପରିବାର ପିଲା । ମୋ ସାଙ୍ଗରେ ପରିଚୟ ହେବା ପରେ ସେ ମୋତେ ଦାଦା ଦାଦା ବୋଲି ସମ୍ବୋଧନ କରୁଥିଲେ । ମୁଁ ତାକୁ କୌସ୍ତୁଭ ବୋଲି ଡାକୁଥିଲି । କୌସ୍ତୁଭ ଓ ତା'ର ପତ୍ନୀ ଝୁମ୍‌କା ଆମ ପରିବାର ସହ ଅତ୍ୟନ୍ତ ଘନିଷ୍ଠ ଥିଲେ । ଏହା ଏବେ ମଧ ଅତୁଟ ରହିଛି । କୌସ୍ତୁଭ ପରେ ଇଣ୍ଡିଆ ଟୁଡେ ପତ୍ରିକାର କଲିକତା ଅଫିସ୍ ଜେନେରାଲ ମ୍ୟାନେଜର ରୂପେ କାର୍ଯ୍ୟ କରୁଛନ୍ତି । ତାଙ୍କ ପତ୍ନୀ ଏକ ବିଦେଶୀ ଦୂତାବାସରେ ପି.ଆର୍.ଓ. ଭାବେ କାର୍ଯ୍ୟରତ ।

ପୁରୁଣା ଫାଇଲ୍ ଏବଂ କାଗଜପତ୍ର ଘାଣ୍ଟୁଘାଣ୍ଟୁ ଓଡ଼ିଶା ସାମ୍ବାଦିକ ୟୁନିୟନର ଗଢ଼ାହେବା ପୂର୍ବର କାଗଜପତ୍ର ଦେଖିଲି । ମୋତେ ମନେ ଅଛି ଭୁବନେଶ୍ୱର ଲଳିତକଳା ପୀଠରେ ଉତ୍କଳ ସାମ୍ବାଦିକ ସଂଘର କାର୍ଯ୍ୟକାରୀ କମିଟି ବୈଠକ ବସିଥିଲା । ହିସାବପତ୍ରକୁ ନେଇ ଗୋଳମାଳ ହେଲା । ସେତେବେଳେ ଉତ୍କଳ ସାମ୍ବାଦିକ ସଂଘର ଗୋପାଳ ମିଶ୍ର, ଏନ୍.କେ. ସ୍ୱାମୀ, ବାଳକୃଷ୍ଣ କାନୁନ୍‌ଗୋ, ରାମକୃଷ୍ଣ ବେହେରା ପ୍ରମୁଖ ମୁଖ୍ୟ କର୍ମକର୍ତ୍ତା ଥିଲେ । ଏମାନେ ଦଳବଳ ହୋଇ ଚାରି ଆଡ଼େ ବୁଲି ସଂଘ ପାଇଁ ଚାନ୍ଦା ଆଦାୟ କରୁଥିଲେ । ମୁଁ ଦୁଇଟି ଘଟଣାରେ ହିସାବ ଗୋଳମାଳକୁ ନେଇ ସେମାନଙ୍କୁ ଚାଲେଞ୍ଜ୍ କଲି । ଇଯେ ୧୯୭୨ ମେ' ମାସ ଘଟଣା । ସେଠି ସଂଘ ନେତାମାନେ ମୋତେ ଜବାବ୍ ଦେଲେ କ'ଣ କରିବ ଆମର କର । ହୁ କେୟାରସ୍ ୟୁ ? ୟୁ ମେ ଗୋ ଆଉଟ୍ । ମୁଁ ସେଇଠି ସେମାନଙ୍କୁ ଚାଲେଞ୍ଜ୍ ଦେଇଥିଲି ଏକ ନୂଆ ସଂଘ ଗଢ଼ିବା ପାଇଁ ।

## -ଓଡିଶା ସାମ୍ବାଦିକ ୟୁନିୟନ-

ଗୋଟିଏ ଅନୁଷ୍ଠାନ ଗଢ଼ିବା ଯେତିକି କଷ୍ଟ ସେ କଥା ଗଢ଼ିବା ଲୋକ ଜାଣେ । ମାତ୍ର ଥରେ ଗଢ଼ା ହୋଇଗଲା ପରେ ଅନେକ ଦାବିଦାର ବାହାରି ପଡ଼ନ୍ତି । ସେ ଦିନ ଘଟଣା ପରେ ମୋର ଯାହା ମନେ ପଡୁଛି ମୁଁ ବାହାରି ଆସିବା

ପରେ ଆଉ ଚାରି/ପାଞ୍ଚଜଣ ବନ୍ଧୁ ମିଟିଂ ଛାଡ଼ି ବାହାରି ଆସିଥିଲେ । ପରଦିନ ମୁଁ ଏନ୍.ଆର୍. ସ୍ୱାମୀଙ୍କ ପାଖରେ ପହଞ୍ଚିଥିଲି । ଏନ୍.ଆର୍. ସ୍ୱାମୀ ସେତେବେଳେ 'ଦି ହିନ୍ଦୁ'ର ଭୁବନେଶ୍ୱର ପ୍ରତିନିଧି ଥିଲେ । ସେ ସବୁ ଶୁଣି ମୋତେ କହିଲେ ତୁମେ ଲାଗିପଡ଼ । ମୁଁ ପଛରେ ଅଛି । ମତେ ସ୍ୱାମୀବାବୁଙ୍କ କଥା ସାହସ ଦେଲା । ତାଙ୍କ ପରେ ମୁଁ ସମାଜ ପ୍ରତିନିଧି ନାରାୟଣ ରଥଙ୍କ ପାଖକୁ ଗଲି । ନାରଣ ବାବୁ ମଧ୍ୟ ନୂଆ ସଂଗ ପାଇଁ ସମ୍ମତି ଦେଲେ । ତାଙ୍କ ପରେ ପରେ ହିନ୍ଦୁସ୍ଥାନ ଷ୍ଟାଣ୍ଡାର୍ଡ ପ୍ରତିନିଧି ସୁନିତି ଘୋଷ, ହିନ୍ଦୁସ୍ଥାନ ସମାଚାରର ପ୍ରଶାନ୍ତ ପଟ୍ଟନାୟକ ଏହିଭଳି ପ୍ରାୟ ପନ୍ଦର ଜଣ ସାମ୍ବାଦିକ ବନ୍ଧୁଙ୍କ ସହ ଯୋଗାଯୋଗ କଲି । ସେତେବେଳେ ଉତ୍କଳ ସାମ୍ବାଦିକ ସଂଘ କର୍ମକର୍ତ୍ତାଙ୍କ ବିରୁଦ୍ଧରେ ଅନେକ ସାମ୍ବାଦିକ ଖୋଲାଖୋଲି ମତ ଦେଉଥିଲେ । ମୁଁ ପ୍ରାୟ ମାସେ କାଳ କଟକ-ଭୁବନେଶ୍ୱର ଏବଂ ଅନ୍ୟାନ୍ୟ ସ୍ଥାନର ସାମ୍ବାଦିକମାନଙ୍କ ସହ ଯୋଗାଯୋଗ କଲି । ଶେଷରେ ୧୯୭୨ ନଭେମ୍ବର ୭ ତାରିଖରେ ହିନ୍ଦୁସ୍ଥାନ ଷ୍ଟାଣ୍ଡାର୍ଡ ଅଫିସ୍(୧୦୧ ଜନପଥ, ୟୁନିଟ୍-୩)ରେ ଏକ ବୈଠକ ବସିଲା । ଏଥିରେ ଏନ୍.ଆର୍.ସ୍ୱାମୀ ଅଧ୍ୟକ୍ଷତା କରିଥିଲେ । ଶ୍ରୀ ସ୍ୱାମୀଙ୍କ ସମେତ ମୋଟ ୧୪ଜଣ ସାମ୍ବାଦିକ ଏହି ବୈଠକରେ ଯୋଗ ଦେଇଥିଲେ । ପ୍ରଥମ ବୈଠକରେ ଏତେ ଲୋକ ଯୋଗ ଦେବେ ମୁଁ ଆଶା କରିନଥିଲି । ବହୁ ବରିଷ୍ଠ ସାମ୍ବାଦିକ ଏଥିରେ ଯୋଗଦେଇ ଏକ ସ୍ୱତନ୍ତ୍ର ସାମ୍ବାଦିକ ସଂଘ ଗଠନର ଆବଶ୍ୟକତା ସମ୍ପର୍କରେ ମତ ଦେଇଥିଲେ । ମତେ ଏହି ବୈଠକରେ ଆବାହକ ରୂପେ ନିର୍ବାଚିତ କରାଗଲା । ଏହି ବୈଠକରେ ନୂଆ ଅନୁଷ୍ଠାନର ନାମ ଓଡ଼ିଶା ୟୁନିୟନ ଅଫ୍ ଜର୍ଣ୍ଣାଲିଷ୍ଟ ରଖାଯିବା ପାଇଁ ସ୍ଥିର ହେଲା । ମାସକ ପରେ ବିଧିବଦ୍ଧ ସମ୍ମିଳନୀ କରିବା ପାଇଁ ସ୍ଥିର ହେଲା ।

ମାତ୍ର ଇତିମଧ୍ୟରେ ଅନ୍ୟ ଗୋଷ୍ଠିର ଚାପରେ ଏନ୍.ଆର୍. ସ୍ୱାମୀ ଆମ ପାଖରୁ ନିଜକୁ ପ୍ରତ୍ୟାହାର କରିନେଲେ । ଆମେ ଡିସେମ୍ବର ୭ ତାରିଖ (୧୯୭୨) ବୈଠକରେ ନାରାୟଣ ରଥଙ୍କୁ ସଭାପତି ରୂପେ ନିର୍ବାଚିତ କଲୁ । ଏହି ବୈଠକରେ ଉପ-ସଭାପତି ରୂପେ ବୈରାଗୀ ଚରଣ ମହାନ୍ତି, ସାଧାରଣ ସମ୍ପାଦକ ଦେବେନ୍ଦ୍ର ନାଥ ମହାନ୍ତି, ସମ୍ପାଦକ ସ୍ୱରୂପ ଜେନା ଓ କୋଷାଧ୍ୟକ୍ଷ ରୂପେ ମୋତେ ନିର୍ବାଚିତ କରାଗଲା । ନୂଆ ସଂଘ ହୋଇଥିବାରୁ ଆବଶ୍ୟକୀୟ ପାଣ୍ଠି ସଂଗ୍ରହ ପାଇଁ ମୋତେ ଦାୟିତ୍ୱ ଦିଆଗଲା ।

ଜୀବନରେ ଯେକୌଣସି କାର୍ଯ୍ୟରେ ହାତ ଦେଇଛି ତା'ର ସଫଳତା ପାଇଁ ଯଥାସମ୍ଭବ ଚେଷ୍ଟା କରିଛି ଏବଂ ସଫଳ ହୋଇଛି । ଆମେ ଏହି ନୂଆ ଅନୁଷ୍ଠାନ ଗଢ଼ିବା ପରେ ଓଡ଼ିଶାର ବିଭିନ୍ନ ଆଡୁ ବହୁ ସାମ୍ବାଦିକ ଆମ ସହ ଯୋଗ ଦେଲେ । ସେତେବେଳକୁ ୟୁନିଟ୍-୩ରେ ଉତ୍କଳ ସାମ୍ବାଦିକ ସଂଘକୁ ସରକାର ଘର କରିବାକୁ ସ୍ଥାନ ଯୋଗାଇ ଦେଇଥା'ନ୍ତି । ମୁଁ ଆମ ୟୁନିୟନ ପାଇଁ ଏକ ପ୍ଲଟ୍ ଦେବାପାଇଁ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀଙ୍କୁ ଅନୁରୋଧ କଲି । ୧୯୭୫ ମସିହା କଥା । ସେତେବେଳେ ଦେଶରେ ଜରୁରୀକାଳୀନ ପରିସ୍ଥିତି ଜାରି ହୋଇଥାଏ । ମୋତେ ନନ୍ଦିନୀ ଦେବୀ ଶ୍ରଦ୍ଧା କରୁଥିଲେ । ୧୯୭୪ ମସିହାରେ ସେ ଧରିତ୍ରୀ ଖବର କାଗଜ ପ୍ରକାଶ କଲେ । ୧୯୭୫ରେ ମୋତେ ଦିନେ ପ୍ରସ୍ତାବ ଦେଲେ ଧରିତ୍ରୀରେ ମୁଖ୍ୟ ରିପୋର୍ଟର ରୂପେ ଯୋଗ ଦେବାପାଇଁ । ମୁଁ 'ମାତୃଭୂମି'ର ସମ୍ପାଦକ ବିଚିତ୍ରାନନ୍ଦ କରଙ୍କୁ ଏ ବିଷୟ କହିଲି । ସେ ଆସି ନନ୍ଦିନୀଦେବୀଙ୍କ ପାଖରେ ପହଞ୍ଚି କହିଲେ ଆପଣଙ୍କ କାଗଜକୁ 'ମାତୃଭୂମି'ର ତିନିଜଣ ସାମ୍ବାଦିକ ଆସିଛନ୍ତି । ଏବେ ଆପଣ ଯଦି ବରେନ୍ଦ୍ରବାବୁଙ୍କୁ ନେବେ ତେବେ ମୁଁ 'ମାତୃଭୂମି'କୁ ବାଧ୍ୟହୋଇ ବନ୍ଦ କରିଦେବି । ଦୁଇଦିନ ପରେ ସଚିବାଳୟରେ ନନ୍ଦିନୀ ଦେବୀଙ୍କ ସାଙ୍ଗରେ ଦେଖା ହେବାବେଳେ ସେ ଏକଥା ମୋତେ କହିଲେ । ମୋର ଧରିତ୍ରୀକୁ ଯିବା ଆଉ ନୋହିଲା । ମାତ୍ର ନନ୍ଦିନୀ ଦେବୀଙ୍କ ସହ ମୋର ସୁସମ୍ପର୍କ ରହିଥିଲା । ମୁଁ ଯେତେବେଳେ ଆମ ୟୁନିୟନ ପାଇଁ ପ୍ଲଟ୍ ଦେବା କଥା କହିଲି ସେ ପଚାରିଲେ ଆମର କର୍ମକର୍ତ୍ତା ସବୁ

କିଏ ଅଛନ୍ତି ? ମୁଁ ନାରାୟଣ ରଥ ସଭାପତି ଅଛନ୍ତି ବୋଲି କହିଲି । ମାତ୍ର ଦେବେନ୍ଦ୍ର ମହାନ୍ତି, ସ୍ୱରୂପ ଜେନା ଓ ପ୍ରଶାନ୍ତ ପଟ୍ଟନାୟକଙ୍କ ନାଁ ଶୁଣି ଖୁସି ହେଲେ ନାହିଁ । ତେବେ ନାରଣବାବୁଙ୍କୁ ଧରି ମୁଁ ତାଙ୍କ ପାଖକୁ ଯାଇ ସ୍ଥାନ ପାଇଁ ତାଙ୍କ ସମ୍ମତି ଆଣିଲି । ଇଷ୍ଟର୍ଣ୍ଣ ଟାୱାର ମାର୍କେଟ ପଛପଟେ ମୁଁ ସ୍ଥାନ ବାଛି ଇଷ୍ଟେଟ ଡାଇରେକ୍ଟରଙ୍କୁ କହିଲି । ପ୍ରଥମେ ସେ ଅମଙ୍ଗ ହେଉଥିଲେ । ମାତ୍ର ପରେ ରାଜି ହେଲେ ।

ସମସ୍ୟା ହେଲା ଏହି ଜାଗା ପାଇଁ ସରକାର ୪୦୭୫ ଟଙ୍କା ଦାଖଲ କରିବାକୁ କହିଲେ । ସେତେବେଳେ ଚାନ୍ଦା ଉଠାଇବା ସମ୍ଭବ ନଥିଲା । ଆମେ ଯେଉଁ ନୀତିରେ ଉତ୍କଳ ସାମ୍ବାଦିକ ସଂଘରୁ ଅଲଗା ହୋଇ ନୂଆ ସଂଗଠନ ଗଢ଼ିଲୁ ତା'ର ମୂଳ ଅଭିଯୋଗଟି ଥିଲା ଚାନ୍ଦା ଆଦାୟ ହେବ ନାହିଁ । ତେଣୁ ଚାନ୍ଦା ନ ଉଠାଇ ଅନ୍ୟ ଉପାୟରେ ଅର୍ଥ ସଂଗ୍ରହ ପାଇଁ ସ୍ଥିର ହେଲା । ସ୍ମରଣୀକା ଛାପି ବିଜ୍ଞାପନ ଜରିଆରେ ଅର୍ଥ ସଂଗ୍ରହ କରିବାକୁ ସ୍ଥିର ହେଲା । ଏଥିପାଇଁ ଏକ ତିନିଜଣିଆ କମିଟି ହେଲା । ମାତ୍ର କେହି ଅସଲ କାମ ବେଳକୁ ଧରାଛୁଆଁ ଦେଲେ ନାହିଁ । ସେ ଯାହାହେଉ ମୁଁ ମଝିରେ ନାରଣବାବୁଙ୍କୁ ଧରି ଦୁଇ/ତିନୋଟି ସ୍ଥାନକୁ ଯାଇ ବିଜ୍ଞାପନ ସଂଗ୍ରହ କଲି । ସେତେବେଳେ ଓଡ଼ିଶାର ପରିବହନ, ଖଣି ଓ ଭୂତତ୍ତ୍ୱ ବିଭାଗ ମନ୍ତ୍ରୀ ଥିଲେ ଡଃ କୃପାସିନ୍ଧୁ ଭୋଇ । ସେ ମୋର ଅତ୍ୟନ୍ତ ଘନିଷ୍ଠ ବନ୍ଧୁ ଥିଲେ । ତାଙ୍କ ଜରିଆରେ ମୁଁ ପ୍ରାୟ ପାଞ୍ଚହଜାର ଟଙ୍କାର ବିଜ୍ଞାପନ ପାଇଥିଲି । ଲେଖା ସଂଗ୍ରହ କରି ଛାପିବା ପାଇଁ ଜଗଦିଶ ପାଣିଙ୍କ କ୍ୱାଲିଟି ପ୍ରେସ୍‌କୁ ଦେଲୁ । ଉତ୍କଳ ସାମ୍ବାଦିକ ସଂଘ କର୍ମକର୍ତ୍ତାଙ୍କର ଆଡ୍ଡା କିନ୍ତୁ କ୍ୱାଲିଟି ପ୍ରେସ୍‌ରେ । ମୋର ଜଗଦିଶ ବାବୁଙ୍କ ସହ ମଧ୍ୟ ଭଲ ସମ୍ପର୍କ । ସେ ମୋତେ କୁହନ୍ତି ଯାହା ହେଉ ବରେନ୍ଦ୍ର ତୁମେ ଏମାନଙ୍କ ମୁହଁରେ ଭଲ ଚାପୁଡ଼ା ଦେଲ ।

ସୋଭନିୟର ଛାପା ହେଲା । ଯେଉଁଦିନ ମୁଁ କ୍ୱାଲିଟି ପ୍ରେସ୍‌ରୁ ସୋଭନିୟର ଆଣିଲି ସେଦିନ ମୋର ଯେଉଁ ଆନନ୍ଦ ଆଜି ସେ କଥା ମନେ ପଡ଼ିଲେ ମନରେ ରୋମାଞ୍ଚ ଜାତ ହୁଏ । ସୋଭନିୟର ସିନା ଛାପା ହେଲା । ଏବେ ସମସ୍ୟା ହେଲା ବିଜ୍ଞାପନ ଦେୟ ଆଦାୟ କରିବା । ମୋ ମୁଣ୍ଡରେ ସେତେବେଳେ ନିଶା ଧରିଛି ଜମି କିଣିବା ପାଇଁ । ନାରଣ ବାବୁ, ପ୍ରଶାନ୍ତ ପଟ୍ଟନାୟକ, ସ୍ୱରୂପ କେହି ବିଜ୍ଞାପନ ଦେୟ ଆଦାୟ କରିବାକୁ ଗଲେ ନାହିଁ । ମୁଁ ସେତେବେଳେ ନୂଆ ସ୍କୁଟର କିଣିଥାଏ । ସେତେବେଳେ ଭେସ୍‌ପା ଆଉ ଲାମ୍ବ୍ରେଟା ସ୍କୁଟର ପାଇଁ ସରକାରୀ ପରମିଟ୍ ଦରକାର ହେଉଥିଲା । ଡଃ ଭୋଇ ପରବହନ ମନ୍ତ୍ରୀ ରୂପେ ମୋତେ ଗୋଟିଏ ଭେସ୍‌ପା ସ୍କୁଟର ପରମିଟ୍ ଦେଇଥିଲେ । ମୁଁ ବ୍ୟାଙ୍କରୁ ଋଣକରି ସ୍କୁଟରଟି କିଣିଥିଲି । କଟକ କ୍ୟାଣ୍ଟନମେଣ୍ଟ ରୋଡ଼୍‌ରେ ଉତ୍କଳ ଅଟୋ ନାମରେ ଏକ କମ୍ପାନୀ ଭେସ୍‌ପା ସ୍କୁଟର ଡିଲର ଥିଲା । ବ୍ୟାଙ୍କ୍ ଚେକ୍ ନେଇ ସ୍କୁଟର୍ କିଣି କଟକ ଚଣ୍ଡୀମନ୍ଦିରରେ ପୂଜା କରି ଭୁବନେଶ୍ୱର ଆସିଲି । ସେତେବେଳେ ଭୁବନେଶ୍ୱରରେ ଖୁବ୍ କମ୍ ସାମ୍ବାଦିକଙ୍କର ସ୍କୁଟର ଥିଲା । ସେଇ ସ୍କୁଟର ମୋତେ ବିଜ୍ଞାପନ ଦେୟ ଆଦାୟ କରିବାରେ ସାହାଯ୍ୟ କଲା । ଆମ ୟୁନିୟନ ବ୍ୟାଙ୍କ୍ ଆକାଉଣ୍ଟ ଇଣ୍ଡିଆନ୍ ଓଭରସିଜ୍ ବ୍ୟାଙ୍କରେ ଥିଲା । ଏବେ ଏ ବ୍ୟାଙ୍କ ପୁରୁଣା ଚେକ୍ ବହି ଖେଳାଉ ଖେଳାଉ ୧୯୭୬ ଫେବୃୟାରୀ ୨୬ ତାରିଖରେ ମାର୍କେଟ ବିଲ୍ଡିଂ ପଛପଟ ଜାଗା ପାଇଁ ୪୦୭୫ ଟଙ୍କାର ଚେକ୍ ଦେଇଥିଲି । ଚେକ୍‌ରେ ମୋର ଆଉ ନାରାୟଣ ରଥଙ୍କ ଦସ୍ତଖତ ରହୁଥିଲା । ପାଞ୍ଚଶହ ଟଙ୍କା ରେଜିଷ୍ଟ୍ରେସନ ଫି' ଦିଆଯାଇଥିବା ମଧ୍ୟ ଏଥିରେ ଉଲ୍ଲେଖ ରହିଛି ।

ସୋଭନିୟର ଛାପା ପାଇଁ କ୍ୱାଲିଟି ପ୍ରେସ୍‌କୁ ମୁଁ ଦୁଇହଜାର ଟଙ୍କା ଦେଇଥିଲି । ସେତେବେଳେ କ୍ୱାଲିଟି ପ୍ରେସ୍ କ୍ୱାଲିଟି ଛାପା ପାଇଁ ପ୍ରସିଦ୍ଧ ଥିଲା । ଜୀବନରେ ଏହା ମୋର ଏକ ନୂଆ ଅଧ୍ୟାୟ ।

ତା'ପରେ ଆଲୋଚନା ହେଲା ଓଡ଼ିଶା ୟୁନିୟନ ଅଫ୍ ଜର୍ଣ୍ଣାଲିଷ୍ଟକୁ ଦିଲ୍ଲୀରେ ନୂଆକରି ୧୯୭୧ରେ ଗଢ଼ା

ହୋଇଥିବା ନ୍ୟାସନାଲ୍ ୟୁନିୟନ ଅଫ୍ ଜର୍ଣ୍ଣାଲିଷ୍ଟ ସହ ଅନୁବନ୍ଧିତ କରିବା ପାଇଁ । ଏଥିପାଇଁ ପତ୍ର ଲେଖାଗଲା । ସେତେବେଳେ ଏନ୍.ୟୁ.ଜେ.ର ସମ୍ପାଦକ ଥିଲେ ଏନ୍.କେ. ତ୍ରିଖା । ସେକ୍ରେଟାରୀ ଜେନେରାଲ୍ ଥିଲେ ପାଟନା 'ସର୍ଚ୍ଚ ଲାଇଟ୍' କାଗଜର ସମ୍ପାଦକ ଏସ୍.କେ. ରାଉ ଏବଂ ସଭାପତି ଥିଲେ ମାନ୍ଦ୍ରାଜର 'ଦି ମେଲ୍' କାଗଜର ସମ୍ପାଦକ ଏଲ୍. ମିନାକ୍ଷୀ ସୁନ୍ଦରମ୍ । ୧୯୭୪ରେ ଫେବୃଆରୀରେ ମୁଁ ଦିଲ୍ଲୀ ଯାଇଥିବା ବେଳେ ଏ ପତ୍ର ଏନ୍.ୟୁ.ଜେ. ଅଫିସ୍‌ରେ ଦେଲି ।

ଓଡ଼ିଶା ୟୁନିୟନ ଅଫ୍ ଜର୍ଣ୍ଣାଲିଷ୍ଟ ଗଢ଼ା ହେଲା । ୧୯୭୨ ଡିସେମ୍ବର ମାସରେ ଯଦିଓ ଆମର ନିର୍ବାଚନ ହେଲା ବିଧିବଦ୍ଧ ଭାବେ କାର୍ଯ୍ୟକଲା ୧୯୭୩ ମସିହାରୁ । ସେ ଯାହାହେଉ ଆମେ ଯେଉଁ ସରକାରୀ ଜାଗାଟି ପାଇଲୁ ତା'ର ଦି'ପଟେ ରାସ୍ତା, ଗୋଟିଏ ପଟେ ଇଷ୍ଟର୍ଣ୍ଣଟାଓ୍ୱାର ମାର୍କେଟ ବିଲ୍‌ଡିଂର ପଛପଟ ଏବଂ ଆଉ ଗୋଟିଏ ପଟେ ଅଳକା ସମବାୟ ଭଣ୍ଡାରର ଷ୍ଟୋର ଘର । ଅଳକା ଷ୍ଟୋର ଆଉ ମାର୍କେଟ ବିଲ୍‌ଡିଂ ପଛପଟେ ଗୋଟେ ପାଇଖାନା ଥାଏ । ପାଇଖାନା ଆଉ ଷ୍ଟୋର୍ ମଧ୍ୟରେ ପନ୍ଦରଫୁଟ ଜାଗା ଥାଏ । ମୁଁ ସେଇ ଜାଗାଟି ଆମ ପୂର୍ଣ୍ଣାଙ୍ଗ ବିଲ୍‌ଡିଂ ହେବା ପର୍ଯ୍ୟନ୍ତ ଅଫିସ୍ ଘର କରିବାପାଇଁ ମନେ ମନେ ସ୍ଥିର କଲି । ସୋଭେନିୟର ବିଜ୍ଞାପନରୁ ଆମ ପାଖରେ ଆଉ ଚାରିହଜାର ଟଙ୍କା ବଳିଥାଏ । ସେଇ ଟଙ୍କାରେ ସେଠାରେ ଦୁଇବଖରା ଘର ଏବଂ ଘର ସାଙ୍ଗରେ ସେଇ ପାଇଖାନାର ପଛପଟ ଭାଙ୍ଗି ଆଟାଚଡ୍ ବାଥ୍-ଲାଟ୍ରିନ୍ କରିଦେଲୁ । ମାର୍କେଟ ସାମ୍ନା ପେଟ୍ରୋଲ ପମ୍ପ ମାଲିକ ଓମ୍ ପ୍ରକାଶ ଲାଠଙ୍କ ପାଖରେ ଜଣେ ଛୋଟକାଟିଆ ଠିକାଦାର ବସନ୍ତି । ମୁଁ ମଝିରେ ମଝିରେ ଯାଇ ସେଠି ଆଡ୍ଡା ଦିଏ । ସେଇ ଠିକାଦାରଙ୍କ ଜରିଆରେ ଏ ଘର ହେଲା । ଗୋଟିଏ ରୁମ୍ ଗେଷ୍ଟରୁମ୍ ଏବଂ ଆଉ ଗୋଟିଏ ଅଫିସ୍ ରୁମ୍ । ବେଶ ଭଲଭାବେ ତିଆରି ହେଲା । ଆଜବେଷ୍ଟସ୍ ଘର । କୋଡ଼ିଏ ଖଣ୍ଡ ଚେୟାର ଗୋଟିଏ ଟେବୁଲ୍, ଦୁଇଟି ସିଙ୍ଗଲ୍ ଖଟ, ଶେଯ ସବୁ ଯୋଗାଡ଼ ହୋଇଗଲା । ୟୁନିୟନର ମୁଣ୍ଡ ଗୁଞ୍ଜିବା ପାଇଁ ସ୍ଥାନ ମିଳିଗଲା ।

ଓଡ଼ିଶା ୟୁନିୟନ୍ ଅଫ୍ ଜର୍ଣ୍ଣାଲିଷ୍ଟ ବିଧିବଦ୍ଧ ଭାବେ ୧୯୭୩ ମସିହା ଜୁନ୍‌ମାସରେ ଟ୍ରେଡ ୟୁନିୟନ ଆଇନ୍‌ରେ ରେଜେଷ୍ଟ୍ରି ହେଲା । ସବୁ କାମ ବେଶ୍ ଭଲଭାବରେ ଚାଲିଲା । ମୁଁ କହିବାରେ ଦ୍ୱିଧା ନାହିଁ ଯେ ୟୁନିୟନ ପାଇଁ ମୁଁ ମୋର ସମସ୍ତ ଶକ୍ତି ଖଟାଇ ଦେଇଥିଲି । ନୂଆ ସଭ୍ୟ ସଂଗ୍ରହ ପାଇଁ ଆମେ ସମ୍ବଲପୁର, ରାଉରକେଲା, ବ୍ରହ୍ମପୁର, ପୁରୀ, ଅନୁଗୁଳ, କୋରାପୁଟ ଆଦି ଅନେକ ସ୍ଥାନରେ ୟୁନିୟନର ଦ୍ୱିବାର୍ଷିକ ଉତ୍ସବ ଆୟୋଜନ କଲୁ ।

ଆମର ୟୁନିୟନ ଜାତୀୟ ସାମ୍ବାଦିକ ୟୁନିୟନ(ଭାରତ) ସହ ଅନୁବନ୍ଧିତ ହେଲା । ଜାତୀୟ ସାମ୍ବାଦିକ ୟୁନିୟନର ଗଠନ ଏକ ବିଚିତ୍ର ପରିସ୍ଥିତିରେ ହୋଇଥିଲା । ୧୯୭୧ ପର୍ଯ୍ୟନ୍ତ ଭାରତରେ ଗୋଟିଏ ସାମ୍ବାଦିକ ସଂଗଠନ ଥିଲା । ତା' ହେଲା ଇଣ୍ଡିଆନ୍ ଫେଡେରେସନ୍ ଅଫ୍ ଓ୍ୱାର୍କିଂ ଜର୍ଣ୍ଣାଲିଷ୍ଟ ବା ଆଇ.ଏଫ.ଡବ୍ଲ୍ୟୁ.ଜେ. । ୧୯୭୦ ମସିହାରେ ଏହି ସଂଗଠନ ଓ୍ୱାର୍ସୀର ଏକ ଆନ୍ତର୍ଜାତିକ ସାମ୍ବାଦିକ ସଂଘ ସହ ଅନୁବନ୍ଧିତ ହେଲା । ଏହି ସଂଗଠନ କମ୍ୟୁନିଷ୍ଟ ମତବାଦୀ ଏବଂ ସୋଭିଏସ୍ ରୁଷ୍ ରାଷ୍ଟ୍ର ସମୂହର ସାମ୍ବାଦିକମାନଙ୍କର ପ୍ରମୁଖ ସଂଗଠନ ଥିଲା । ଆଇ.ଏଫ୍.ଡବ୍ଲ୍ୟୁ.ଜେ. ଏହି ଅନୁଷ୍ଠାନ ସହ ଅନୁବନ୍ଧିତ ହେବା ଫଳରେ ଭାରତର ବହୁ ବିଶିଷ୍ଟ ସାମ୍ବାଦିକ ଏଥିରୁ ଇସ୍ତଫା ଦେଇ ୧୯୭୧ରେ ଏନ୍.ୟୁ.ଜେ.(ଆଇ) ବା ନ୍ୟାସନାଲ୍ ୟୁନିୟନ୍ ଅଫ୍ ଜର୍ଣ୍ଣାଲିଷ୍ଟ(ଇଣ୍ଡିଆ) ନାମରେ ଏକ ନୂଆ ସଂଗଠନ ଗଢ଼ିଲେ । ଆମେ ଓ.ୟୁ.ଜେ. ଗଢ଼ିବା ପରେ ଏହି ଅନୁଷ୍ଠାନ ସହ ଅନୁବନ୍ଧିତ ହେଲୁ ।

୧୯୭୪ ମସିହାରେ ଆମର ପ୍ରଥମ ଦ୍ୱିବାର୍ଷିକ ସମ୍ମିଳନୀ ଉପଲକ୍ଷେ ଏକ ସର୍ବଭାରତୀୟ ଆଲୋଚନାଚକ୍ରର

ଆୟୋଜନ କରିଥିଲୁ । ରବୀନ୍ଦ୍ର ମଣ୍ଡପରେ ଏହା ଅନୁଷ୍ଠିତ ହୋଇଥିଲା । ଏଥିରେ ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀ, ବିଜୁ ପଟ୍ଟନାୟକ, ଡଃ ମହତାବ, ରାମକୃଷ୍ଣ ପତି, ସୁରେନ୍ଦ୍ର ନାଥ ଦ୍ୱିବେଦୀ, ବାଙ୍କବିହାରୀ ଦାସଙ୍କ ଭଳି ସ୍ଥାନୀୟ ବିଶିଷ୍ଟ ଲୋକଙ୍କ ସହ ବିଖ୍ୟାତ ସାମ୍ବାଦିକ କୁଲ୍‌ଦୀପ ନାୟାର, ମିନାକ୍ଷୀ ସୁନ୍ଦରମ୍, ପୃଥିଶ ଚକ୍ରବର୍ତ୍ତିପ୍ରମୁଖ ଯୋଗ ଦେଇଥିଲେ । ଏହି ଆଲୋଚନାଚକ୍ର ଆମ ପାଇଁ ଖୁବ୍ ଲାଭଦାୟକ ହୋଇଥିଲା । କାରଣ ଏହାପରେ ରାଜ୍ୟର ଅନେକ ସାମ୍ବାଦିକ ଆମ ୟୁନିୟନରେ ଯୋଗ ଦେଇଥିଲେ ।

ଓଡ଼ିଶା ସାମ୍ବାଦିକ ୟୁନିୟନର ଗଠନ ଠାରୁ ଆରମ୍ଭ କରି ଏହାକୁ ରାଜ୍ୟର ବଡ଼ ସାମ୍ବାଦିକ ସଂଗଠନ ରୂପେ ଠିଆ କରିବାର ପୁରସ୍କାର ମୁଁ ପାଇଲି ଯେତେବେଳେ ୧୯୯୦ ମସିହା ସେପ୍ଟେମ୍ବର ୧୩ ତାରିଖରେ ହରିଦ୍ୱାର ଠାରେ ମୋତେ ନିର୍ଦ୍ୱନ୍ଦ୍ୱରେ ଏହାର ସଭାପତି ରୂପେ ନିର୍ବାଚିତ କରାଗଲା । ମୋର ବିଶ୍ୱାସ ଯେକୌଣସି କାର୍ଯ୍ୟ ନିଷ୍ଠା ଓ ବିନା ସ୍ୱାର୍ଥରେ କଲେ ତା'ର ଫଳ ନିଶ୍ଚୟ ମିଳିଥାଏ । ମୁଁ ପ୍ରଥମ ଓଡ଼ିଆ ସାମ୍ବାଦିକ ରୂପେ ଜାତୀୟ ସାମ୍ବାଦିକ ୟୁନିୟନର ସର୍ବଭାରତୀୟ ସଭାପତି କେବଳ ହୋଇ ନଥିଲି, ୧୯୯୧ ନଭେମ୍ବର ୧୪, ୧୫ ଓ ୧୬ ତାରିଖରେ ଦିଲ୍ଲୀ ଠାରେ ଅନୁଷ୍ଠିତ ଦକ୍ଷିଣ ଏସିଆ ରାଷ୍ଟ୍ର ସମୂହର ସାମ୍ବାଦିକ ସମ୍ମିଳନୀରେ ତିନିଜଣିଆ ସଭାପତି ମଣ୍ଡଳୀର ଭାରତୀୟ ସଦସ୍ୟ ରୂପେ ମନୋନୀତ ହେଲି । ଅନ୍ୟ ଦୁଇଜଣ ସଦସ୍ୟ ଥିଲେ ଆନ୍ତର୍ଜାତିକ ସାମ୍ବାଦିକ ସଂଘର ସାଧାରଣ ସମ୍ପାଦକ ଏଡେନ୍ ହ୍ୱାଇଟ୍ ଓ ଜର୍ମାନର ଫିକ୍‌ଚର । ୧୯୯୧ ପରେ ଆଉ ଭାରତ ବର୍ଷରେ ଦକ୍ଷିଣ ଏସିଆ ରାଷ୍ଟ୍ର ସମୂହର ସାମ୍ବାଦିକ ସମ୍ମିଳନୀ ହୋଇନାହିଁ । ଏହାପରେ ୧୯୯୨ ମସିହା ଜୁନ୍ ମାସ ୫ରୁ ୭ ତାରିଖ ପର୍ଯ୍ୟନ୍ତ ଦ୍ୱିତୀୟ ଥର ପାଇଁ ବାଲାଂଦେଶ ରାଜଧାନୀ 'ଢାକା'ରେ ଏହି ସମ୍ମିଳନୀ ହୋଇଥିଲା । ମୋର ସୌଭାଗ୍ୟ ଯେ ପ୍ରଥମଥର ଢାକା ପାଇଁ ନିମନ୍ତ୍ରଣ ପାଇ ଯାଇପାରି ନଥିଲି । ମାତ୍ର ଏଥର ଗଲି ଏବଂ ଏହି ସମ୍ମିଳନୀରେ ମୁଁ ସଭାପତି ମଣ୍ଡଳୀର ସଦସ୍ୟ ରୂପେ ମଧ୍ୟ ମନୋନୀତ ହୋଇଥିଲି । ଏଠାରେ ମୁଁ ସଭାପତି ମଣ୍ଡଳୀରେ ରହିବି କି ନାହିଁ ସେ କଥାକୁ ନେଇ ଆଲୋଚନା ହେଲା । ଆତିଥ୍ୟ ଦେଉଥିବା ଦେଶର ସଂଗଠନର ସଭାପତି, ଆନ୍ତର୍ଜାତିକ ସାମ୍ବାଦିକ ସଂଘର ପ୍ରତିନିଧି ଏବଂ ପୃଷ୍ଠପୋଷକତା ଦେଉଥିବା ଅନୁଷ୍ଠାନର ପ୍ରତିନିଧି ସଭାପତି ମଣ୍ଡଳୀର ସଭ୍ୟ ରହିବାର ନିୟମ ଥିଲା । ଢାକାରେ ପୃଷ୍ଠପୋଷକତା ପାଇଁ ଜର୍ମାନ ସାମ୍ବାଦିକ ସଂଘ ସମ୍ମତି ପ୍ରକାଶ କରିଥିଲେ ଏବଂ ଅର୍ଥ ଯୋଗାଇ ଦେଇଥିଲେ । ମାତ୍ର ଶେଷ ମୁହୂର୍ତ୍ତରେ ତାଙ୍କ ପ୍ରତିନିଧି ଆସିପାରି ନଥିଲେ । ଫଳରେ ଛ'ଟି ରାଷ୍ଟ୍ର (ଭାରତ, ପାକିସ୍ଥାନ, ବାଲାଂଦେଶ, ନେପାଳ, ମରିସସ୍ ଓ ଭୂଟାନ)ର ପ୍ରତିନିଧିମାନଙ୍କର ସମ୍ମତିକ୍ରମେ ମୋତେ ତିନିଜଣିଆ ସଭାପତି ମଣ୍ଡଳୀର ସଦସ୍ୟ କରାଗଲା । ଜୀବନରେ ଏ ପ୍ରକାର ଅଧ୍ୟାୟ ଖୁବ୍ କମ୍ ଆସେ । ମୁଁ ଅତ୍ୟନ୍ତ ଭାଗ୍ୟବାନ ଏବଂ ମୋ ଜୀବନରେ ଏହା ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା ।

ପ୍ରକୃତ ପକ୍ଷରେ ୧୯୯୧ ଫେବୃଆରୀ ମାସ ଶେଷ ସପ୍ତାହରେ ଏହି ସମ୍ମିଳନୀ ଅନୁଷ୍ଠିତ ହେବା ପାଇଁ ସ୍ଥିର ହୋଇଥିଲା । ମୁଁ ଜାତୀୟ ସାମ୍ବାଦିକ ୟୁନିୟନର ସଭାପତି ରୂପେ ଏଥିରେ ଯୋଗ ଦେବାପାଇଁ ନିମନ୍ତ୍ରଣ ପାଇଥିଲି । ମାତ୍ର ଆମେ ସେତେବେଳେ ଭୁବନେଶ୍ୱର ପୁସ୍ତକମେଳା ଫେବୃଆରୀ ୨୬ ତାରିଖରୁ ମାର୍ଚ୍ଚ ୭ ତାରିଖ ପର୍ଯ୍ୟନ୍ତ କରୁଥିବାରୁ ଏବଂ ସମସ୍ତ ଆୟୋଜନ ଠାରୁ ଆରମ୍ଭ କରି ଟଙ୍କା ପଇସା ବ୍ୟବସ୍ଥା ମୋ ଉପରେ ନ୍ୟସ୍ତ ଥିବାରୁ ଏ ସମ୍ମିଳନୀରେ ଯୋଗଦେବା ପାଇଁ ଅକ୍ଷମତା ପ୍ରକାଶ କରିଥିଲି । ଫଳରେ ମୋ ମନରେ ଗୋଟେ ବଡ଼ ଅବସୋସ ରହିଯାଇଥିଲା । କାରଣ ଏତେବଡ଼ ଗୋଟାଏ ଆନ୍ତର୍ଜାତିକ ସମ୍ମିଳନୀରେ ଯୋଗଦେବା ପାଇଁ ସୁଯୋଗ ହାତଛଡ଼ା କରିବା ମୋତେ ଭାରି ବାଧିଥିଲା । ମାତ୍ର ସେହିବର୍ଷ ଦିଲ୍ଲୀରେ ଏହା ଅନୁଷ୍ଠିତ ହେବାରୁ ମୋର ମନରେ ଯାହା ଦୁଃଖ

ଥିଲା ତାହା ଦୂର ହୋଇଗଲା । ଶେଷରେ ଢାକାରେ ପୁଣି ଯେତେବେଳେ ଏହା ଜୁନ୍‌ରେ ହେଲା ମୋର ଜୀବନରେ ଏକ ଅଭୁଲା ସ୍ମୃତି ହୋଇ ରହିଗଲା ।

ଏତେସବୁ ବଖାଣିବାର ଉଦ୍ଦେଶ୍ୟ ହେଲା ଜୀବନରେ କେତେବେଳେ ଈଶ୍ୱର କି ପ୍ରକାର ସୁଯୋଗ ଦିଅନ୍ତି ତାହା ତାଙ୍କୁଇ ଜଣା । ତା' ନହୋଇଥିଲେ ମୋ ଭଳି ଜଣେ ବ୍ୟକ୍ତି ଏତେସବୁ ପାହାଚ ଚଢ଼ି ଶୀର୍ଷକୁ ଯାଇନଥା'ନ୍ତା । ପ୍ରତ୍ୟେକ କାର୍ଯ୍ୟରେ ନିଜର ନିଷ୍ଠା ଆନ୍ତରିକତା ଏବଂ ନିସ୍ୱାର୍ଥପରତା ହିଁ ଈଶ୍ୱରଙ୍କୁ ତୁଷ୍ଟ କରିଥାଏ ବୋଲି ମୋର ବିଶ୍ୱାସ । ଯାହାଫଳରେ ମୁଁ ଜୀବନରେ ଯେତେଗୁଡ଼ିଏ ରାଜ୍ୟସ୍ତରୀୟ ଅନୁଷ୍ଠାନ ଗଢ଼ିଛି ପ୍ରାୟ ପ୍ରତ୍ୟେକଟି ଗତ ତିରିଶ ବର୍ଷ ଧରି ସଫଳତାର ସହ ଚାଲିଛି । କରାଟେ, ଲେଖକ ସାମ୍ମୁଖ୍ୟ, ସାହିତ୍ୟୋତ୍ସବ, ଭୁବନେଶ୍ୱର ପୁସ୍ତକ ମେଳା, ଓଡ଼ିଶା ୟୁନିୟନ ଅଫ୍ ଜର୍ଣ୍ଣାଲିଷ୍ଟ ଏବେ ମଧ୍ୟ ଚାଲିଛି ଏବଂ ଭବିଷ୍ୟତରେ ମଧ୍ୟ ଚାଲିବ ବୋଲି ମୋର ବିଶ୍ୱାସ ଏବଂ ଆଶା ।

ଜାତୀୟ ସାମ୍ବାଦିକ ୟୁନିୟନର ସଭାପତି(୧୯୯୦-୧୯୯୩) ପଦରେ ମୁଁ ରହିବା ଭିତରେ ବର୍ଷକ ପରେ ଏକ ବିବାଦର ଗନ୍ଧ ପାଇଲି । ଦିଲ୍ଲୀ ଠାରେ ଅନୁଷ୍ଠିତ ହେଉଥିବା ଏକ ବୈଠକରେ ଆନନ୍ଦ ବଜାର ପତ୍ରିକା ଦିଲ୍ଲୀ ବ୍ୟୁରୋ ମୁଖ୍ୟ ସୁନୀତି ଘୋଷ ଏକ ଅଭିଯୋଗ କଲେ । ସେ ମୋତେ ପଚାରିଲେ ମିଃ ପ୍ରେସିଡେଣ୍ଟ ଆପଣ ଇତିମଧ୍ୟରେ ବ୍ରସେଲ୍ସ, ଲଣ୍ଡନ ଓ କରାଚିରେ ଆନ୍ତର୍ଜାତିକ ସାମ୍ବାଦିକ ସମ୍ମିଳନୀରେ ଯୋଗଦେଇ ଫେରିଛନ୍ତି । ଅଥଚ କାର୍ଯ୍ୟକାରୀ କମିଟି ବୈଠକରେ ଆପଣ ଆପଣଙ୍କ ରିପୋର୍ଟ ଦେଇ ନାହାନ୍ତି କାହିଁକି ? ମୁଁ ସୁନୀତିବାବୁଙ୍କ କଥା ଶୁଣି ରୀତିମତ ଆଶ୍ଚର୍ଯ୍ୟ । ହଠାତ୍ ମୁଁ କିଛି ବୁଝି ପାରିଲି ନାହିଁ । ମୁଁ ତ ଏସବୁ ସ୍ଥାନକୁ ଯାଇନାହିଁ । ତେବେ ସୁନୀତିବାବୁ କାହିଁକି ଏପ୍ରକାର କଥା ଉଠାଉଛନ୍ତି । ମୁଁ କିଛି ଉତ୍ତର ଦେବା ପୂର୍ବରୁ ରାଜେନ୍ଦ୍ର ପ୍ରଭୁ(ମୋର ପୂର୍ବବର୍ତ୍ତିସଭାପତି) ଉଠିପଡ଼ି କହିଲେ ସଭାପତି ଏ ସମସ୍ତ ସମ୍ମିଳନୀକୁ ଯାଇ ନଥିଲେ । ମୁଁ ସଭାପତିଙ୍କୁ ପ୍ରତିନିଧିତ୍ୱ କରିଥିଲି । ସୁନୀତି ବାବୁ ଅତ୍ୟନ୍ତ ରାଗିଯାଇ ପଚାରିଲେ ଆପଣଙ୍କୁ କିଏ ଏ ଅଧିକାର ଦେଲା । ପାଟିତୁଣ୍ଡ ଆରମ୍ଭ ହୋଇଗଲା । ମୁଁ ନିଜେ ମଧ୍ୟ କମ୍ ଆଶ୍ଚର୍ଯ୍ୟ ନୁହେଁ । ମୋ ନାଁରେ ଆଉଜଣେ ଏ ଆନ୍ତର୍ଜାତିକ ସମ୍ମିଳନୀରେ ଯୋଗଦେବା ଘଟଣାକୁ ମୁଁ ମାନିନେଇ ପାରିଲି ନାହିଁ । ମତେ ପରେ କେ.ଏନ୍.ଗୁପ୍ତା, ପି.କେ. ରାୟ ପ୍ରମୁଖ ବୁଝାଶୁଝା କଲେ । ଶେଷରେ ସ୍ଥିର ହେଲା ଜୁନ୍ ମାସରେ(୧୯୯୧) ବ୍ରସେଲ୍ସ (ଆନ୍ତର୍ଜାତିକ ସାମ୍ବାଦିକ ଫେଡେରେସନର ମୁଖ୍ୟ ଦପ୍ତର)ରେ ହେଉଥିବା ସମ୍ମିଳନୀରେ ମୁଁ ଯୋଗଦେବି ।

ଜୁନ୍ ମାସ ୧୪ରୁ ୧୬ ତାରିଖ ପର୍ଯ୍ୟନ୍ତ ଏହି ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ମୁଁ ଏବଂ କେ.ଏନ୍. ଗୁପ୍ତା ଏହି ସମ୍ମିଳନୀରେ ଯୋଗଦେଇ ଫେରିବା ବାଟରେ ପ୍ୟାରିସ୍ ଓ ଲଣ୍ଡନ ଦେଇ ଆସିଲୁ । ଜୀବନରେ ଏହା ମୋର ପ୍ରଥମ ବିଦେଶ ଗସ୍ତ ।

## -ଭୁବନେଶ୍ୱର ପୁସ୍ତକ ମେଳା-

ଜୀବନରେ ଏଭଳି କେତେଗୁଡ଼ିଏ କାମରେ ମୁଁ ହାତ ଦେଇଛି ଯାହା ମୋତେ କେବଳ ଆତ୍ମସନ୍ତୋଷ ଦେଇନି ଓଡ଼ିଶା ପାଇଁ ଏକ ନୂଆ ବାଟ ଖୋଲି ଦେଇଛି । ଭୁବନେଶ୍ୱର ପୁସ୍ତକମେଳା ସେଥିମଧ୍ୟରେ ଅନ୍ୟତମ । ଭୁବନେଶ୍ୱର ପୁସ୍ତକମେଳା ଓଡ଼ିଶାରେ ପ୍ରଥମଥର ପାଇଁ ପୁସ୍ତକମେଳା ସଂସ୍କୃତର ବାଟ ଖୋଲିଲା । ଓଡ଼ିଆ ଭାଷା- ସାହିତ୍ୟ ପାଇଁ

ଏହା ଏକ ନୂଆ ରାହା ଦେଖାଇଲା । ଓଡ଼ିଆ ଭାଷାର ପୁସ୍ତକ ବିକ୍ରି ପାଇଁ ଏହା କେବଳ ବାଟ ଖୋଲିଲା ନାହିଁ ସାରା ଓଡ଼ିଶାରେ ପାଠକ ସଂଖ୍ୟା ବୃଦ୍ଧି କରିବାରେ ମୁଖ୍ୟ ସହାୟକ ହେଲା । ଭୁବନେଶ୍ୱର ପୁସ୍ତକମେଳା ସମଗ୍ର ରାଜ୍ୟରେ ଏକ ଆନ୍ଦୋଳନର ରୂପ ନେଲା । ଲୋକେ ପୁସ୍ତକର ବିଭିନ୍ନତା, ବିଭିନ୍ନ ଭାଷାର ପୁସ୍ତକ ଏବଂ ଓଡ଼ିଶାରେ ପ୍ରସାର ହୋଇଥିବା ବୈଷୟିକ ଶିକ୍ଷାନୁଷ୍ଠାନ ପାଇଁ ପାଠ୍ୟପୁସ୍ତକ ଯୋଗାଇବା କ୍ଷେତ୍ରରେ ମୁଖ୍ୟ ଭୂମିକା ଗ୍ରହଣ କଲା ।

ମାତ୍ର ମୁଁ ପ୍ରଥମେ ଯେତେବେଳେ ଏହି ପୁସ୍ତକମେଳାର ପରିକଳ୍ପନା କଲି ସେତେବେଳେ ମୁଖ୍ୟତଃ ଓଡ଼ିଆ ଗଳ୍ପ, କବିତା, ଉପନ୍ୟାସ ଓ ପ୍ରବନ୍ଧ ଶିଶୁ ସାହିତ୍ୟର ପ୍ରସାର ଏହାର ମୁଖ୍ୟ ଉଦ୍ଦେଶ୍ୟ ଥିଲା । ପରବର୍ତ୍ତିଅବସ୍ଥାରେ ଏହା ଅଧିକ ପ୍ରସାରିତ ହେଲା ।

ଅଶି ଦଶକ ଓଡ଼ିଆ ଭାଷା ସାହିତ୍ୟ ପାଇଁ ଏକ ତିରୋଟିଆ ସମୟ ଥିଲା । କଟକ ବିନୋଦ ବିହାରୀ ବହି ବଜାରରେ ଅଧିକାଂଶ ପ୍ରକାଶକ ବନ୍ଧୁ ବାରମ୍ବାର ଅଭିଯୋଗ କଲେ ବହି ବେପାର ପୁରା ମାନ୍ଦା । ଗୋଟିଏ ଗୋଟିଏ ଗଳ୍ପ ଉପନ୍ୟାସ ବହି ପ୍ରଥମ ସଂସ୍କରଣ ଶେଷ ହେବା ପାଇଁ ପାଞ୍ଚ/ଛ' ବର୍ଷ ସ୍ଥଳବିଶେଷରେ ଦଶବର୍ଷ ଲାଗିଯାଉଛି । ଏପରିକି ବିଭୂତି ପଟ୍ଟନାୟକଙ୍କ ଉପନ୍ୟାସ ଚାରି/ପାଞ୍ଚବର୍ଷ ଲାଗୁଚି ପ୍ରଥମ ସଂସ୍କରଣ ଶେଷ ହେବା ପାଇଁ । ମତେ କେତେକ ବନ୍ଧୁ କହିଲେ ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କୁ ଭେଟି ସ୍କୁଲ-କଲେଜ ପାଠାଗାର ପାଇଁ ଫି' ବୃଦ୍ଧି କରି ରାଜା ରାମମୋହନ ପାଠାଗାର ନ୍ୟାସ ଭଳି କେନ୍ଦ୍ରୀୟ କ୍ରୟ ପାଇଁ ଅନୁରୋଧ କରିବା ପାଇଁ । ଦିନେ ବିଧାନସଭା ଚାଲିଥିଲାବେଳେ ମୁଖ୍ୟମନ୍ତ୍ରୀଙ୍କୁ ତାଙ୍କ ଚେମ୍ବରରେ ଆମେ ଭେଟିଲୁ । ସେତେବେଳେ ଶିକ୍ଷା ବିଭାଗର ସଚିବ ଥିଲେ ସୀତାକାନ୍ତ ମହାପାତ୍ର । ଶିକ୍ଷା ବିଭାଗ ଗୋଟିଏ ଥିଲା । ଗଣଶିକ୍ଷା ଓ ଉଚ୍ଚଶିକ୍ଷା ବିଭାଜନ ହୋଇ ନଥିଲା । ସୀତାକାନ୍ତବାବୁ ସଚିବ ଥିବାରୁ ସମସ୍ତେ ବିଚାରି ଥିଲେ ସହଜରେ ଦାବି ପୂରଣ ହୋଇଯିବ । ମାତ୍ର ସୀତାକାନ୍ତ ବାବୁ ସ୍କୁଲ, କଲେଜ ପାଇଁ କେନ୍ଦ୍ରୀୟ କ୍ରୟ ବ୍ୟବସ୍ଥାକୁ ବିରୋଧ କଲେ । ତେବେ ଜାନକୀ ବାବୁ କହିଲେ ସ୍କୁଲ ପାଠାଗାର ପାଇଁ ଥିବା ବାର୍ଷିକ ପାଞ୍ଚଲକ୍ଷ ଟଙ୍କାକୁ ଦଶଲକ୍ଷ ଟଙ୍କାକୁ ବୃଦ୍ଧି କରିବା ପାଇଁ ସେ ବ୍ୟବସ୍ଥା କରିବେ । ଇଏ ମୋର ଯାହା ମନେହୁଏ ୧୯୮୩ ମସିହା କଥା । ୧୯୮୪ ମସିହାରେ ଫେବୃୟାରୀ ମାସରେ ମୁଁ ଆମ ୟୁନିୟନ(ଏନ୍.ୟୁ.ଜେ.) ମିଟିଂ ପାଇଁ ଦିଲ୍ଲୀ ଯାଇଥିଲି । ମୁଁ ଦିଲ୍ଲୀରେ ପହଞ୍ଚିବା ଦିନକ ପରେ ପରେ ବିଶ୍ୱ ପୁସ୍ତକମେଳା ଆରମ୍ଭ ହେଲା । ମୁଁ ଦି'ଦିନ ପରେ ବହିମେଳା ଦେଖିବାକୁ ଗଲି । ସେଇଠି ମୋର ଅନେକ ପୁସ୍ତକ ପ୍ରକାଶକ ଓ ବିକ୍ରେତାଙ୍କ ସାଙ୍ଗରେ ଦେଖାହେଲା । ହଠାତ୍ ମୋ ମୁଣ୍ଡରେ ଢୁକିଲା ଭୁବନେଶ୍ୱରରେ ଏକ ପୁସ୍ତକମେଳା କଲେ କିପରି ହୁଅନ୍ତା । ପୂର୍ବରୁ ଅବଶ୍ୟ କଲିକତା ବହିମେଳା ଆମେ ଦେଖିଥିଲୁ । କିନ୍ତୁ ବିଶ୍ୱ ପୁସ୍ତକମେଳା ନିଆରା । ବିଶ୍ୱ ପୁସ୍ତକ ମେଳା ପ୍ରତି ଦୁଇବର୍ଷରେ ଥରେ ଦିଲ୍ଲୀରେ ଅନୁଷ୍ଠିତ ହୋଇଥାଏ । ନ୍ୟାସ୍‌ନାଲ୍ ବୁକ୍ ଟ୍ରଷ୍ଟ ଏହା ଆୟୋଜନ କରିଥାଏ । ଏହି ମେଳା ଦାୟିତ୍ୱରେ ଜଣେ ଡେପୁଟି ଡିରେକ୍ଟର ଥାନ୍ତି । ସେତେବେଳେ ମୁନ୍‌ସି(ପୁରା ନା' ମନେ ନାହିଁ) ଜଣେ ଭଦ୍ରଲୋକ ଡେପୁଟି ଡିରେକ୍ଟର ଥାନ୍ତି । ମୁଁ ମେଳା ଭିତରେ ତାଙ୍କ ଅଫିସ୍‌କୁ ଯାଇ ଦେଖାକଲି । ସେ ମୋ ପ୍ରସ୍ତାବ ଶୁଣି କହିଲେ ଦଶବର୍ଷ ମଧ୍ୟରେ ଓଡ଼ିଶାରେ ବହିମେଳା ହେବା ସମ୍ଭବ ନୁହେଁ । କାରଣ ସେଠି ବହି ବିକ୍ରି ହେବ ନାହିଁ । ସେଠି ଲୋକଙ୍କର ବହି କିଣିବା ମେଣ୍ଟାଲିଟ୍ ନାହିଁ । ମୁଁ ଯେତେ ବୁଝାଇବାକୁ ଚେଷ୍ଟାକଲେ ମଧ୍ୟ ସେ ବୁଝିବାକୁ ନାରାଜ । ମୁଁ ଅପମାନିତ ହୋଇ ଫେରିଲି । ପରଦିନ ସକାଳୁ ସକାଳୁ ମୁଁ ଚିନ୍ତାମଣି ପାଣିଗ୍ରାହୀଙ୍କ ପାଖକୁ ଗଲି । ସେ ସେତେବେଳେ ପ୍ରତିରକ୍ଷା ବିଭାଗ ରାଷ୍ଟ୍ରମନ୍ତ୍ରୀ ଥିଲେ ମୋର ଯାହା ମନେ ପଡୁଛି । ମୁଁ ସବୁକଥା ତାଙ୍କୁ କହିଲି । ସେ ମୋତେ ତାଙ୍କ ସାଙ୍ଗରେ ତାଙ୍କ ଅଫିସ୍‌କୁ ନେଲେ । ସେଇଠୁ ସେ ଫୋନ୍ କଲେ ଏନ୍.ବି.ଟି.ର ଚେୟାରମ୍ୟାନଙ୍କୁ । ୧୯୮୫ରେ

ଭୁବନେଶ୍ୱରରେ ଏନ୍.ବି.ଟି. ବହିମେଳା କରିବାକୁ ସେ ପ୍ରସ୍ତାବ ଦେଲେ । ଚେୟାରମ୍ୟାନ ରାଜି ହୋଇଗଲେ । ଏନ୍.ବି.ଟି.ର ନିର୍ଦ୍ଦେଶକ ଥିଲେ ପ୍ରଫେସର ଲୋକନାଥ ଭଟ୍ଟାଚାର୍ଯ୍ୟ । ସେ ମଧ୍ୟ ଭୁବନେଶ୍ୱରରେ ୧୯୮୫ରେ ପୁସ୍ତକମେଳା କରିବା ପାଇଁ ଆନନ୍ଦରେ ରାଜି ହେଲେ । ମୁଁ ସେ ଦୁହିଁଙ୍କୁ ଦେଖା କରିବାରେ ଲୋକନାଥବାବୁ ମେଳା ସମ୍ପର୍କରେ ବିଶଦ୍ କାର୍ଯ୍ୟକ୍ରମ ପାଇଁ ମୁନ୍‌ସିଂଙ୍କ ପାଖକୁ ପଠାଇ ଦେଲେ । ଏଥର ମୁନ୍‌ସିଂଙ୍କ ବ୍ୟବହାର ସମ୍ପୂର୍ଣ୍ଣ ବଦଳି ଯାଇଛି । ମତେ କହିଲେ ଆପଣଙ୍କ ଅନୁଷ୍ଠାନ ପକ୍ଷରୁ ଏକ ପତ୍ର ଲେଖି ଆପଣଙ୍କ ସହ ମିଳିତ ଭାବେ ଏହି ପୁସ୍ତକମେଳା କରାଯିବ ବୋଲି ପ୍ରସ୍ତାବ ଦେବେ । ପ୍ରଚାର, ସାହିତ୍ୟ ସଭା ଆଦି ଆପଣଙ୍କ ଅନୁଷ୍ଠାନ ଆୟୋଜନ କରିବ ।

ମୁଁ ଭୁବନେଶ୍ୱର ଫେରିଆସି ଏ ସମ୍ପର୍କରେ ସାତକଡ଼ିବାବୁଙ୍କ ସମେତ ଅନ୍ୟ ବନ୍ଧୁମାନଙ୍କୁ କହିଲି । ପୂର୍ବରୁ ସାତକଡ଼ି ବାବୁ ଏ ସମ୍ପର୍କରେ ଏକ ପତ୍ର ଏନ୍.ବି.ଟି.କୁ ଲେଖିଥିଲେ । ସମସ୍ତେ ଆଗ୍ରହୀ ହୋଇପଡ଼ିଲେ । ଉତ୍କଳ ସଂଗୀତ ମହାବିଦ୍ୟାଳୟ କୋଠାରେ ଏହି ମେଳା ଜୁନ୍ ଦୁଇ ତାରିଖରେ ଆରମ୍ଭ ହେଲା, ଆଠଦିନ ଚାଲିଥିଲା । ମୁଖ୍ୟମନ୍ତ୍ରୀ ଜାନକୀବାବୁ ଏହାକୁ ଉଦ୍‌ଘାଟନ କରିଥିଲେ । ଲୋକନାଥ ଭଟ୍ଟାଚାର୍ଯ୍ୟ ମୁଖ୍ୟ ଅତିଥି ରୂପେ ଯୋଗ ଦେଇଥିଲେ । ଏହା ହେଉଛି ପ୍ରଥମ ଭୁବନେଶ୍ୱର ପୁସ୍ତକମେଳା । ମୋଟ ୮୦ଟି ଷ୍ଟଲ୍ ହୋଇଥିଲା । ଅଭୂତପୂର୍ବ ସଫଳତା । ଏ ମେଳାରେ ରମାକାନ୍ତ ରଥଙ୍କ ବିଖ୍ୟାତ କାବ୍ୟ 'ଶ୍ରୀରାଧା' ପ୍ରଥମେ ଆତ୍ମପ୍ରକାଶ କଲା । ମହେନ୍ଦ୍ର ମିଶ୍ରଙ୍କ ଲାର୍କ ବୁକ୍ସ ଏହାର ପ୍ରକାଶକ । ରାଜ୍ୟର ବିଭିନ୍ନ ସ୍ଥାନରୁ ବହୁ ସାହିତ୍ୟିକ ଓ ପୁସ୍ତକପ୍ରେମୀ ଏହି ମେଳା ଦେଖିବାକୁ ଆସିଥିଲେ ।

ପରବର୍ଷ ଆମେ ନିଜେ ସ୍ୱାଧୀନଭାବେ ଆରମ୍ଭକଲୁ ଭୁବନେଶ୍ୱର ପୁସ୍ତକମେଳା । ୧୯୮୫ରେ ଓଡ଼ିଶା ବାହାରୁ ଯେଉଁ ପୁସ୍ତକ ପ୍ରକାଶକ ଓ ବିକ୍ରେତା ଆସିଥିଲେ ସମସ୍ତଙ୍କୁ ୧୯୮୬ରେ ଆସିବାକୁ ଅନୁରୋଧ କରି ପତ୍ର ଦେଲୁ । ଆମ ଅନୁରୋଧ ରକ୍ଷାକରି ଅନେକ ବିଖ୍ୟାତ ଅନୁଷ୍ଠାନ ଏଥିରେ ଯୋଗଦେଲେ । ସେମାନଙ୍କ ମଧ୍ୟରେ ଷ୍ଟାଣ୍ଡାର୍ଡ ଲିଟରେଚର, ଭୋଷ୍ଟକ, ପୁଥିଁ ପୁସ୍ତକ, ଫର୍ମା କେ.ଏଲ୍.ମୁଖୋପାଧ୍ୟାୟ, ଏ.ଆଇ.ଟି.ବି.ଏସ୍., ୟୁ.ବି.ଏସ୍. ପବ୍ଲିଶର୍ସ, କଲ୍ୟାଣୀ ପବ୍ଲିଶର୍ସ, ଏନ୍.ବି.ଟି., କେନ୍ଦ୍ର ସାହିତ୍ୟ ଏକାଡେମୀ, ବିଖ୍ୟାତ ବୁକ୍ ସପ୍, ଆଲାଏଡ୍ ପବ୍ଲିଶର୍ସ, ଓରିଏଣ୍ଟ, ଲଙ୍ଗମ୍ୟାନ୍, ଅକ୍ସଫୋର୍ଡ଼ ୟୁନିଭରସିଟ୍ ପ୍ରେସ୍, ମୋତିଲାଲ୍ ବନାରସୀ ଦାସ ପ୍ରଭୃତି ଅନ୍ୟତମ । ଏହି ପ୍ରକାଶକ ସଂସ୍ଥାମାନେ ଅନେକ ଦିନ ଧରି ଯୋଗ ଦେଉଥିଲେ । ତେବେ ଷ୍ଟାଣ୍ଡାର୍ଡ ଲିଟ୍‌ରେଚର, କଲ୍ୟାଣୀ ପବ୍ଲିଶର୍ସ, ଏ.ଆଇ.ଟି.ବି.ଏସ୍., ଏନ୍.ବି.ଟି., କେନ୍ଦ୍ର ସାହିତ୍ୟ ଏକାଡେମୀ ପ୍ରମୁଖ ଆଜିସୁଦ୍ଧା ନିରବଚ୍ଛିନ୍ନ ଭାବେ ଯୋଗଦେଇ ଆସୁଛନ୍ତି । ୧୯୮୬ ଠାରୁ ୧୯୮୮ ପର୍ଯ୍ୟନ୍ତ ଭୁବନେଶ୍ୱର ପୁସ୍ତକମେଳା ସୂଚନା ଭବନର ପଛପଟ ପଡ଼ିଆରେ ଅନୁଷ୍ଠିତ ହୋଇଥିଲା, ମାତ୍ର କ୍ରମେ ଓଡ଼ିଶା ଓ ବାହାରୁ ଅନେକ ପ୍ରକାଶକ ଏଥିରେ ଯୋଗଦେବା ପାଇଁ ଆଗ୍ରହ ପ୍ରକାଶ କରିବାରୁ ୧୯୯୦ରେ ଉତ୍କଳ ସଂଗୀତ ମହାବିଦ୍ୟାଳୟ ସଂଲଗ୍ନ ପଡ଼ିଆରେ ଏହା ଅନୁଷ୍ଠିତ ହେଲା ।

## -ପୁସ୍ତକ ମେଳାରେ ରାତ୍ରି ଯାପନ-

ମୋର ମନେ ଅଛି ୧୯୮୬ରେ ରାତି ପ୍ରାୟ ସାଢ଼େ ଦଶଟା ବେଳକୁ ସୁତୁଲି ଦରକାର ହେଲା । ପରଦିନ ପୁସ୍ତକମେଳା ଉଦ୍‌ଘାଟନ ଉତ୍ସବ । ହାଟ ବନ୍ଦ ହୋଇଯିବଣି । ହଠାତ୍ ବିଜୟକୃଷ୍ଣ ମହାନ୍ତି ବାହାରି ପଡ଼ି କହିଲେ ମୁଁ ସୁତୁଲି ଆଣି ଦେଉଛି । ହାଟରେ ମୋର ଚିହ୍ନା ଦୋକାନୀ ଅଛନ୍ତି । ସେ ସାଇକେଲ୍ ମାରି ଚାଲିଗଲେ । ଆମେ ରାତିରେ

ପ୍ରାୟ ରହିବାକୁ ସ୍ଥିର କରିଥିଲୁ । ଏହା ଥିଲା ମେଳା ପାଇଁ ଆଗ୍ରହ । ମୁଁ, ରବି ପଟ୍ଟନାୟକ, ଖଗେଶ୍ୱର ମହାପାତ୍ର, ଉତ୍ତମ ନାୟକ, ପୂର୍ଣ୍ଣେନ୍ଦୁ ମିଶ୍ର, ଫନି ମହାନ୍ତି, ବିଜୟକୃଷ୍ଣ ମହାନ୍ତି ପ୍ରମୁଖ । ଖଗେଶ୍ୱରବାବୁ ସେତେବେଳେ ବିଶ୍ୱ ଭାରତୀୟ ପ୍ରଫେସର । କେବଳ ପୁସ୍ତକମେଳା ପାଇଁ ଛୁଟି ନେଇ ଆସୁଥିଲେ । ଉତ୍ତମ ଥାଏ ଫୁଲବାଣୀ ଶଙ୍କରାଖୋଲ ଷ୍ଟେଟ୍‌ବ୍ୟାଙ୍କ ଶାଖାର ମ୍ୟାନେଜର । ସିଏ ଛୁଟି ନେଇ ଆସୁଥାଏ । ବିଭୂତି ବାବୁ ସେତେବେଳେ ଦୁଇନମ୍ବର ୟୁନିଟ୍‌ରେ ରହୁଥିଲେ । ମାତ୍ର ରାତିରେ ଘରକୁ ଯା'ନ୍ତି । ଯୁଗଳବାବୁ ମଧ ରାତିରେ ଘରକୁ ଯା'ନ୍ତି । ଆମେ ସବୁ ରାତି ଗୋଟାଏ ପରେ ଘରକୁ ଫେରୁ । ଉତ୍ତମ କିନ୍ତୁ ରହୁଥିଲା । ଏଇ କ୍ରମରେ ପୁସ୍ତକମେଳା ସଂଗୀତ ମହାବିଦ୍ୟାଳୟ ପଡ଼ିଆରେ ହେଲାବେଳେ ପ୍ରଥମେ ଆମ ଅଫିସ୍ ବନ୍ଧାହୁଏ । କାରଣ ତା' ଥିଲା ଆମ ରାତ୍ରି ଆଶ୍ରୟସ୍ଥଳ । ସେଇ ଏକାଟିମ୍, ତେବେ ପୂର୍ଣ୍ଣେନ୍ଦୁକୁ ବାଦ୍ ଦିଆଯାଇଥିଲା । ସେତେବେଳେ ପ୍ରଫୁଲ୍ଲ ରଥ ଥାନ୍ତି ପୋଲିସ୍ ଡି.ଜି. । ଆମ ସାଙ୍ଗରେ ତାଙ୍କର ବେଶ୍ ଘନିଷ୍ଠତା ଥାଏ । ଆମ ଅନୁରୋଧରେ ସେ ମେଳା ହେବାର ତିନିଦିନ ପୂର୍ବରୁ ଦୁଇଜଣ ପୋଲିସ୍ କନ୍‌ଷ୍ଟେବଲଙ୍କୁ ଆମ କ୍ୟାମ୍ପ ଜଗିବା ପାଇଁ ପଠାଇ ଦିଅନ୍ତି । ତେଣୁ ଆମେ ନିଧଡ଼କରେ ଶୋଇଯାଉ । ସକାଳୁ ସକାଳୁ ଉଠି ଘରକୁ ଆସୁ । ଇଏ ଥିଲା ଏକ ନିୟମିତ ଘଟଣା । ଅନ୍ତତଃ ୧୯୯୦ ପର୍ଯ୍ୟନ୍ତ । ୧୯୯୧ରେ ସେଇ ସଂଗୀତ ମହାବିଦ୍ୟାଳୟରେ ମଧ ଅନୁଷ୍ଠିତ ହୋଇଥିଲା । ମେଳା ଫେବୃଆରୀ ୨୬ ତାରିଖରେ ଆରମ୍ଭ ହୁଏ । ସେ ବର୍ଷ ଫେବୃଆରୀ ୨୮ ତାରିଖ ରାତିରେ ପ୍ରବଳ ବର୍ଷା ହେଲା । ମୁଁ ପ୍ରମାଦ ଗଣିଲି । ରାତି ସାଢ଼େ ୩ଟା ବେଳକୁ ଟେଲିଫୋନ୍ ଆସିଲା । ସାର୍ ପାଞ୍ଚ ଛ'ଟା ଷ୍ଟଲ ଭୁଷୁଡ଼ି ପଡ଼ିଛି । ମୁଁ ବି ସେଇଆ ଆଶଙ୍କା କରିଥିଲି । କାହାକୁ ଡାକିବି ? ଉତ୍ତମକୁ ଫୋନ୍ କଲି ।

ଉତ୍ତମ ମେଳା ଅଫିସ୍‌ରେ ଶୋଇଥିଲା । ବହୁ ସମୟ ପରେ ସେ ଫୋନ୍ ଧରିଲା । ସବୁ ଶୁଣି ସାଙ୍ଗେ ସାଙ୍ଗେ ସେ ପ୍ରସ୍ତୁତ ହୋଇ ପଡ଼ିଲା । ମୁଁ ମେଳାରେ ପହଞ୍ଚି ପ୍ରଥମେ ଷ୍ଟଲ୍‌ଗୁଡ଼ିକୁ ଦେଖିଲି । ତା'ପରେ ଟେଣ୍ଟହାଉସ୍‌ର ସମସ୍ତଙ୍କୁ ଡାକି କାମରେ ଲାଗିପଡ଼ିଲୁ । ସକାଳ ଛ'ଟା ସୁଦ୍ଧା ଷ୍ଟଲ ଠିଆ ହୋଇଥିଲା । ବହିଗୁଡ଼ିକ ଶୁଖିଲା କନାରେ ପୋଛି ଥାକରେ ରଖିଦେଲୁ । ସବୁକାମ ସାରି ସାତଟା ବେଳକୁ ବାହାରକୁ ଆସିବା ବେଳକୁ କିଛି ବହିଦୋକାନୀ ଆସି ପହଞ୍ଚିଲେ । ସମସ୍ତଙ୍କ ମୁହଁରେ ଉଦ୍‌ବେଗ । ମୋତେ ଦେଖି ସେମାନଙ୍କ ମନରେ ଆଶାର ଉଦ୍ରେକ ହେଲା । ଧଳବାବୁ ଷ୍ଟଲ ଭାଙ୍ଗିପଡ଼ିଛି ଶୁଣିଲୁ । ମୁଁ ସାମାନ୍ୟ ହସିଲି । ଆମ ସିକ୍ୟୁରିଟି ସହ ଜଣ ଜଣକୁ ଭିତରକୁ ପଠାଇଲି । ସମସ୍ତେ ଦେଖି ଫେରି ଆସି ମୋତେ କୁଣ୍ଢେଇ ପକାଇ  କହିଲେ, 'ଧଳବାବୁ ଆମେ ଅନେକ ବହିମେଳା ଯାଉଛୁ । କିନ୍ତୁ ଭୁବନେଶ୍ୱର ବହିମେଳାର ଆୟୋଜକ ଆଉ ଅରଗାନାଇଜର ଆଉ କେଉଁଠି ଦେଖିନାହୁଁ । ଆପଣଙ୍କୁ କଥା ଦେଉଛୁ ଆମ ଅନୁଷ୍ଠାନ ଥିଲା ପର୍ଯ୍ୟନ୍ତ ଆମେ ନିଶ୍ଚୟ ଭୁବନେଶ୍ୱର ବହିମେଳା ଆସୁଥିବୁ । ଆମ ପରିଶ୍ରମ ସାର୍ଥକ ହେଲା ।'

୧୯୯୨ ଭୁବନେଶ୍ୱର ପୁସ୍ତକମେଳା ପାଇଁ ଏକ ପରୀକ୍ଷାର ବର୍ଷ ଥିଲା । ଏହି ବର୍ଷ ଆମର ପ୍ରତିଦ୍ୱନ୍ଦ୍ୱୀ ରୂପେ ଭୁବନେଶ୍ୱରର ଦୁଇ ତିନିଜଣ ତଥାକଥିତ ବହିଦୋକାନୀ ଓ ବିନା ବହିଦୋକାନ ଥିବା କିଛି ବ୍ୟକ୍ତି ଏକ ଅନୁଷ୍ଠାନ ଗଢ଼ି ବହିମେଳା କରିବା ପାଇଁ ଆୟୋଜନ କଲେ । ମୂଳ କାରଣଟି ହେଲା ଏମାନେ ଆମ କମିଟିର କର୍ମକର୍ତ୍ତା ହେବାପାଇଁ ପ୍ରଥମେ ଆମକୁ ଜବରଦସ୍ତ କଲେ । ଆମେ ଏମାନଙ୍କ ପ୍ରସ୍ତାବକୁ ପୁରାପୁରି ରିଜେକ୍ଟ କରିବା ଫଳରେ ଆମ ମେଳାକୁ ଭଣ୍ଡୁର କରିବା ପାଇଁ ଫେବୃଆରୀ ୨୩ ତାରିଖରୁ ପ୍ରଦର୍ଶନୀ ପଡ଼ିଆରେ ତାଙ୍କ ବହି ମେଳା ଆୟୋଜନ କଲେ । ଏମାନେ ହେଲେ ପ୍ରଦ୍ୟୁମ୍ନ ବଳ, ମହେନ୍ଦ୍ର ମିଶ୍ର, ଭାବଗ୍ରାହୀ ମିଶ୍ର ଓ ବାଦଲ ଭୂୟାଁ ପ୍ରମୁଖ । ଏମାନଙ୍କ ଚକ୍ରାନ୍ତରେ ଉତ୍କଳ ସଂଗୀତ ମହାବିଦ୍ୟାଳୟ ଆମକୁ ପଡ଼ିଆ ଦେବା ପାଇଁ ମନା କରିଦେଲା । ଆମେ ବାଧ ହୋଇ ରବୀନ୍ଦ୍ର ମଣ୍ଡପ ପଡ଼ିଆ ନେଲୁ । ଆମର ସୌଭାଗ୍ୟ ଓ ସେମାନଙ୍କ ଦୁର୍ଭାଗ୍ୟକୁ ଫେବୃଆରୀ ୨୩,୨୪ ଓ ୨୫ ତାରିଖରେ ପ୍ରବଳ ବର୍ଷା

ସାଙ୍ଗକୁ ତୁହାକୁ ତୁହା ପବନ ହୋଇ ସେମାନଙ୍କ ଟେଣ୍ଟ ଉଡ଼ାଇ ନେଲା । ରବୀନ୍ଦ୍ର ମଣ୍ଡପରେ ଆମେ ମୋଟ ଅଣାଶିଟି ଷ୍ଟଲ କରିଥିଲୁ । ସେଥିରୁ ଆଠଟି ଖାଲିଥିଲା । ଯେଉଁମାନେ ସେଠାକୁ ଯାଇଥିଲେ ସମସ୍ତେ ଆମ ପାଖକୁ ଆସି ଷ୍ଟଲ ପାଇଁ ନେହୁରା ହେଲେ । ଆଠଟି ଖାଲି ଷ୍ଟଲ ଭରିଗଲା । ଅନ୍ୟମାନଙ୍କୁ ଦୁଃଖର ସହ ଫେରାଇଦେଲୁ ।

ସେହିବର୍ଷ ଆଉ ଏକ ଅଘଟଣ ଘଟିଲା । ଆମର ଉଦ୍‌ଘାଟନ ଉତ୍ସବ ରବୀନ୍ଦ୍ର ମଣ୍ଡପରେ ହେଉଥିଲା । ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ଥିଲେ ଉଦ୍‌ଘାଟକ ଓ ମୁଖ୍ୟ ଅତିଥି । ସେହି ଅନୁଷ୍ଠାନରେ ରମାକାନ୍ତ ରଥଙ୍କ 'ଶ୍ରେଷ୍ଠ କବିତା' ଶୀର୍ଷକ ଏକ କବିତା ବହି ଉନ୍ମୋଚନ ହେଲା । ବିଜୁବାବୁ ସେ ବହିଟି ଧରି ପଚାରିଲେ 'ହୁଇଜ୍ ଦିସ୍ ରମାକାନ୍ତ ରଥ' । ମୁଁ କହିଲି, 'ସାର୍ ଆପଣଙ୍କ ଚିଫ୍ ସେକ୍ରେଟାରୀ ।' 'ଓଃ ହୋୟାର ଇଜ୍ ହି ?' ମୁଁ କହିଲି 'ସେ ଦିଲ୍ଲୀ ଯାଇଛନ୍ତି ।' ଓଃ ଇଏସ୍ ଇଏସ୍ ଇଜ୍ ହି ଏ ପୋଏଟ୍ ? ମୁଁ କହିଲି, 'ସାର୍ ସେ ଖୁବ୍ ଫେମସ୍ ପୋଏଟ୍ । ଅନେକ ପୁରସ୍କାର ପାଇଛନ୍ତି ।' ବିଜୁବାବୁ ସେହିଭଳି ଉଚ୍ଚସ୍ୱରରେ କହିଲେ, 'ହି ଇଜ୍ ଏ ବିଗ୍ ଅଫିସର । ହି କ୍ୟାନ୍ ମାନିପୁଲେଟ ଫର ଦି ପ୍ରାଇଜ୍ ଦ୍ୟାଟ୍‌ସ ନଟ୍ ଏ ବିଗ୍ ଥିଙ୍ଗ୍ ।' ତା'ପରେ ସେ ବହିଟିକୁ ଓଲଟାଇ 'ଜହ୍ନରାତି' ନାମରେ ଏକ କବିତା ପାଠକଲେ । ସାଙ୍ଗେ ସାଙ୍ଗେ କହିଲେ ହ୍ୱାଟ୍ ଏ ରବିସ୍ ପୋଏମ୍ । ଜହ୍ନ ସାଙ୍ଗରେ ରୁମାଲ୍‌ର ତୁଳନା । ବିଜୁବାବୁଙ୍କ କଥା ଶୁଣି ସମଗ୍ର ପ୍ରେକ୍ଷାଳୟରେ ଅସ୍ୱସ୍ତିର ଭାବ । କେହି କିଛି କହିପାରୁ ନଥାନ୍ତି । ପରଦିନ ସବୁ ଓଡ଼ିଆ ଇଂରାଜୀ ଖବର କାଗଜରେ ଏ ଘଟଣା ବଡ଼ ବଡ଼ ଆକାରରେ ପ୍ରକାଶ ପାଇଲା । ଇଂରାଜୀ ଟେଲିଗ୍ରାଫ୍ କାଗଜରେ ପ୍ରକାଶ ପାଇଲା 'ବିଜୁ ସ୍ନବସ୍ ହିଜ୍ ଚିଫ୍ ସେକ୍ରେଟାରୀ' ।

ସୂଚନା ଭବନରେ ମେଳା ଚାଲିଥିବା ବେଳେ ୧୯୮୮ରେ ଏକ ଗୋଳମାଳ ହେଲା । ଷ୍ଟାଣ୍ଡାର୍ଡ ଲିଟରେଚରର ଜଣେ ବରିଷ୍ଠ କର୍ମକର୍ତ୍ତା ବିଶ୍ୱନାଥ ଯୋଶୀଙ୍କୁ ମେଳା ଗେଟ୍ ପାଖରେ ଦିନେ ଭୁବନେଶ୍ୱରର କେତେଜଣ ଇଂରେଜୀ ପୁସ୍ତକ ବିକ୍ରେତା ଘେରିଯାଇ ଶୋଧାଶୋଧି କରି ମାଡ଼ମାରିବାକୁ ଉଦ୍ୟତ ହେଲେ । ଠିକ୍ ସେହିସମୟରେ ପ୍ରଖ୍ୟାତ ଔପନ୍ୟାସିକ ଗୋପୀନାଥ ମହାନ୍ତି ସେଇବାଟ ଦେଇ ମେଳାକୁ ଆସୁଥିଲେ । ସେ ଏ ବିଷୟ ଦେଖି ଅତ୍ୟନ୍ତ ଉଦ୍‌କ୍ଷିପ୍ତ ହୋଇ ଅତିରିକ୍ତ ମୁଖ୍ୟ ଶାସନ ସଚିବ ରମାକାନ୍ତ ରଥଙ୍କୁ ଫୋନ୍ କରି ମେଳାକୁ ଡାକିଲେ । ରମାକାନ୍ତ ବାବୁ ଆସିବା ପରେ ଗୋପୀବାବୁ ସବୁକଥା ବର୍ଣ୍ଣନା କରି କହିଲେ ଏଭଳି ଗୁଣ୍ଡାମୀ କଲେ ଆଉ ବାହାର ପ୍ରକାଶକ ବା ପୁସ୍ତକ ବିକ୍ରେତା ଭୁବନେଶ୍ୱରକୁ କେହି ଆସିବେ ନାହିଁ । ଘଟଣାଟି ହେଲା ବିଶ୍ୱନାଥବାବୁ ବିଭିନ୍ନ ୟୁନିଭରସିଟ୍, କଲେଜ ଯାଇ ଷ୍ଟାଣ୍ଡାର୍ଡ ଲିଟେରଚରର ବହି ପ୍ଲୁସେଲ କରୁଥିଲେ । ଫଳରେ ଭୁବନେଶ୍ୱରରେ ଯେଉଁମାନେ ଷ୍ଟାଣ୍ଡାର୍ଡର ବହି ରଖୁଥିଲେ ସେମାନେ ଏହାର ପ୍ରତିବାଦ କରି ବିଶ୍ୱନାଥ ବାବୁ ଏଥିରୁ ନିବୃତ୍ତ ହେବାକୁ କହିଲେ, ସେ ନମାନିବାରୁ ତାଙ୍କୁ ମାଡ଼ ଦେବାପାଇଁ କେତେକ ଏ ପ୍ରକାର ଚକ୍ରାନ୍ତ କରିଥିଲେ । ରମାକାନ୍ତ ବାବୁ ସାଙ୍ଗେସାଙ୍ଗେ ଏସ୍.ପି.ଙ୍କୁ ଡାକି ପୁସ୍ତକ ମେଳାରେ ପୋଲିସ୍ ମୁତୟନ ପାଇଁ ନିର୍ଦ୍ଦେଶ ଦେଲେ ଏବଂ ଯେଉଁମାନେ ଏ ଘଟଣାରେ ସଂପୃକ୍ତ ସମସ୍ତଙ୍କୁ ସତର୍କ କରି ଦିଆଗଲା । ସେଇଦିନଠାରୁ ଆଉ ମେଳାରେ କୌଣସି ଗୋଳମାଳ ହୋଇନାହିଁ । ମେଳାରେ ଶାନ୍ତିଶୃଙ୍ଖଳା ରକ୍ଷା ପାଇଁ ମୁଁ ପ୍ରତିଦିନ ଆମ କରାଟେ ସ୍କୁଲର ପ୍ରାୟ କୋଡ଼ିଏଜଣ ପିଲାଙ୍କୁ ନିୟୋଜିତ କରିଥାଏ । ସେମାନଙ୍କର କାମ ହେଲା ଯଦି କୌଣସି ଯୁବକ ଗୋଳମାଳ କରିବାକୁ ଉଦ୍ୟମ କରୁଥିବେ ତା'ର ପ୍ରତିକାର କରନ୍ତି ।

ମଝିରେ ଥରେ ଅଭିଯୋଗ ହେଲା ମେଳା ବନ୍ଦ ହେବା ପରେ ବହି ଚୋରି ହେଉଛି । ପ୍ରଦର୍ଶନୀ ପଡ଼ିଆରେ

ବହିମେଳା ଚାଲୁଥାଏ । ଆମେ ବ୍ୟସ୍ତ ହୋଇପଡ଼ିଲୁ । ସେତେବେଳକୁ ଡଃ ଖଗେଶ୍ୱର ମହାପାତ୍ର ଶାନ୍ତି ନିକେତନରୁ ଅବସର ନେଇ ଭୁବନେଶ୍ୱର ଟ୍ରାଇବାଲ୍ ଏକାଡେମୀର ଡିରେକ୍ଟର ଥିଲେ । ଆମେ ଦିନେ ଏ ବିଷୟ ଆଲୋଚନା କରିବା ବେଳେ ଖଗେଶ୍ୱର ବାବୁ କହିଲେ ବରେନ୍ଦ୍ରବାବୁ ମୋ ପାଖରେ ମୁଣ୍ଡା ଟୋକା ଅଛନ୍ତି । ବହି ସାଙ୍ଗରେ ସେମାନଙ୍କର କିଛି ସମ୍ପର୍କ ନଥାଏ । ସେହିପରି ଚାରିଟା ଟୋକା ପ୍ରତିଦିନ ମେଳା ବନ୍ଦ ହେବାପରେ ଭିତରକୁ ଯିବେ ଏବଂ ସକାଳୁ ଗେଟ୍ ଖୋଲିଲେ ଆସିବେ । ସେଇଆ ହେଲା । ଆଶ୍ଚର୍ଯ୍ୟର କଥା ବହି ଚୋରି ଅଭିଯୋଗ ପୁରା ବନ୍ଦ ହୋଇଗଲା । ମାତ୍ର ତିନି ବର୍ଷ ପରେ ପୁଣି ଏ ଅଭିଯୋଗ ହେଲା । ତା'ପରେ ଆମେ ଜାଣିଲୁ କିଛି ଦୋକାନୀ ଏମାନଙ୍କୁ ଅଳ୍ପ ଅଳ୍ପ କିଛି ଟଙ୍କା ଦେଇ ଏ କାମ କରୁଛନ୍ତି । ଆମେ ପୋଲିସ୍‌ର ଧମକ ଦେବାରୁ ସବୁକଥା ସ୍ୱୀକାର କଲେ । ତା'ପରେ ଆମେ ସେମାନଙ୍କୁ ତଡ଼ି ଦେଇ ଆମ ସିକ୍ୟୁରିଟ୍ ଲୋକଙ୍କୁ ମେଳା ବନ୍ଦ ବେଳେ ସବୁ ଦୋକାନ ତନଖି କରି ବନ୍ଦ କରିବାକୁ ନିର୍ଦ୍ଦେଶ ଦେଲୁ । ଚୋରି ବନ୍ଦ ହେଲା । ଆମ ମୁଣ୍ଡରୁ ଗୋଟେ ବଡ଼ ବୋଝ ଗଲା ।

ଅନେକ ଘଟଣା ଘଟିଛି । ପଚିଶବର୍ଷ ଗତ ହେବାକୁ ବସିଲା । ଈଶ୍ୱରଙ୍କ ଦୟାରୁ ମେଳା ଚାଲିଚି । ୧୯୯୩ରେ ମେଳା ସ୍ଥାନାନ୍ତରିତ ହେଲା ୟୁନିଟ୍-୨ସ୍ଥିତ ପୁରୁଣା ବସ୍‌ଷ୍ଟାଣ୍ଡକୁ । ରବୀନ୍ଦ୍ର ମଣ୍ଡପ ଅପେକ୍ଷା ଏଠି ଅଧିକ ସ୍ଥାନ । ଉଦ୍‌ଘାଟକ ଥିଲେ ବିଜୁବାବୁ । ମୁଖ୍ୟ ଅତିଥି ଥିଲେ ଏନ୍.ବି.ଟି ଚେୟାରମ୍ୟାନ୍ । ଆମ ଉଦ୍‌ଘାଟନ ସମୟ ଥିଲା ଅପରାହ୍ନ ଚାରିଟା । ବିଜୁବାବୁ ଆସି ଠିକ୍ ୩ଟା ୫୮ ମିନିଟ୍‌ରେ ସଭାସ୍ଥଳରେ ହାଜର । ସେତେବେଳକୁ ସାତକଡ଼ି ହୋତା କିମ୍ବା ଏନ୍.ଟି.ବି. ଚେୟାର୍‌ମ୍ୟାନ୍ କେହହିଁ ଆସିନଥାନ୍ତି । ମୁଁ ମଞ୍ଚ ଉପରେ ଏପଟ ସେପଟ ହେଉଥାଏ । ବିଜୁବାବୁଙ୍କୁ ଦେଖି ମୋ ହାଲକ ଶୁଖିଗଲାଣି । ବିଜୁବାବୁ ମୋତେ ଦେଖି ପଚାରିଲେ କିରେ ଧଳ ଆଉ କିଏ କୁଆଡ଼େ ? ସୌଭାଗ୍ୟକୁ ସେତେବେଳକୁ ଲୋକ କିଛି ଆସି ବସିଛନ୍ତି ଏବଂ ଆସୁଛନ୍ତି । ୪ଟା ୫ମିନିଟ୍ ବେଳକୁ ସାତକଡ଼ି ବାବୁ ଆଉ ଏନ୍.ବି.ଟି. ଚେୟାରମ୍ୟାନ ପହଞ୍ଚିଲେ । ବିଜୁବାବୁ ସାତକଡ଼ି ବାବୁଙ୍କୁ କହିଲେ ୟୁ ହାଭ୍ ଗିଭ୍‌ନ ଫୋର୍ ଓ'କ୍ଲକ୍ ଏଣ୍ଡ ୟୁଆର୍ କମିଙ୍ଗ୍ ଫାଇଭ୍ ମିନିଟ୍ ଲେଟ୍ । ବିଜୁବାବୁଙ୍କ ସମୟାନୁବର୍ତ୍ତିତା ପୁରା ପକ୍କା । ମୁଁ ତାଙ୍କୁ ଅନେକ ସଭାକୁ ଡାକିଛି । ଯେଉଁ ଟାଇମ୍ ତାଙ୍କ ପାଇଁ ଦେଇଥିବି ସଭା ନିମନ୍ତ୍ରଣରେ ଅଧଘଣ୍ଟାଏ ପଛୁଆ ଟାଇମ୍ ଥିବ ।

୧୯୯୪ରେ ପୁଣି ସେଇ ପୁରୁଣା ବସ୍‌ଷ୍ଟାଣ୍ଡ୍ । ଏଥର ବିଜୁବାବୁ ଆସି ପାରିଲେନି । ଦିଲ୍ଲୀରେ ନ୍ୟାସନାଲ୍ ଡେଭଲପ୍‌ମେଣ୍ଟ କନ୍‌ଫରେନ୍ସରେ ଯୋଗ ଦେବାପାଇଁ ଗଲେ । ମୁଖ୍ୟ ଅତିଥି ହେଲେ ସୁପ୍ରିମ୍ କୋର୍ଟର ଅବସରପ୍ରାପ୍ତ ପ୍ରଧାନ ବିଚାରପତି ରଙ୍ଗନାଥ ମିଶ୍ର । ଏଥର ଏକ ନୂଆ ଘଟଣା ଘଟିଲା । ତସ୍‌ଲିମା ନାସରିନ୍‌ଙ୍କର 'ଲଜ୍ଜା' ଉପନ୍ୟାସର ଓଡ଼ିଆ ଅନୁବାଦ କରିଥିଲେ ନନ୍ଦିନୀ ଶତପଥୀ । ଫ୍ରେଣ୍ଡସ୍ ପବ୍ଲିଶର୍ସ ଥିଲେ ଏହାର ପ୍ରକାଶକ । ସେତେବେଳେ ତସଲିମାଙ୍କ ଲଜ୍ଜା ଉପନ୍ୟାସକୁ ନେଇ ଭାରତରେ ଖୁବ୍ ଆଲୋଡ଼ନ ସୃଷ୍ଟି ହୋଇଥିଲା । ଓଡ଼ିଆ 'ଲଜ୍ଜା' ଉପନ୍ୟାସ ପାଇବା ପାଇଁ ଲୋକେ ଲାଇନ୍ ବାନ୍ଧି କିଣିଲେ । ପରିସ୍ଥିତି ଏପରି ହେଲା ଫ୍ରେଣ୍ଡସ୍ ତାଙ୍କ ଦୋକାନରେ ଏହାକୁ ନ ବିକି ଏକ ଖୋଲା ସ୍ଥାନରେ ରଖି ବିକ୍ରୟ କଲେ । ଆଠଦିନ ମଧ୍ୟରେ ସମଗ୍ର ପ୍ରଥମ ସଂସ୍କରଣର ହଜାରେ କପି ବିକ୍ରି ହୋଇଗଲା । ସମ୍ଭବତଃ ଏହା ଓଡ଼ିଆ ପୁସ୍ତକ ଇତିହାସରେ ଏକ ରେକର୍ଡ଼ ।

୧୯୯୫ରେ ପୁଣି ଫେରିଲୁ ଉତ୍କଳ ସଂଗୀତ ମହାବିଦ୍ୟାଳୟ ପରିସରକୁ । ମାତ୍ର ଶେଷ ମୁହୂର୍ତ୍ତରେ ଦେଖିଲୁ ସେଠି ସ୍ଥାନ କୁଳେଇଲା ନାହିଁ । ସ୍ଥିର କଲୁ ଆସନ୍ତା ବର୍ଷ ଠାରୁ ପ୍ରଦର୍ଶନୀ ପଡ଼ିଆକୁ । ଏହିଠାରୁ ଆରମ୍ଭ ହେଲା ମେଳାର ଆଉ ଏକ ପ୍ରସ୍ଥ । ନୂତନ ପ୍ରସ୍ଥ ।

ପଚିଶି ବର୍ଷର ଇତିହାସରେ ଉଲ୍ଲେଖନୀୟ ଘଟଣା ହେଲା ଅନୁଷ୍ଠାନକୁ ବିଧିବଦ୍ଧ ଭାବେ ରେଜିଷ୍ଟ୍ରେସନ କରିବା । କେତେକ ବନ୍ଧୁ ଯଦିଓ ଏହା ସପକ୍ଷରେ ନଥିଲେ ଆମେ କେତେଜଣ ବିଚାରିଲୁ ମେଳାକୁ ସୀମାବଦ୍ଧ ସଭ୍ୟସଂଖ୍ୟା ମଧ୍ୟରେ ରଖିବାକୁ ପଡ଼ିବ । ୧୯୮୮ରେ ଏଥିପାଇଁ ଆବେଦନ କରାଗଲା ଏବଂ ୧୯୮୯ ଜାନୁଆରୀ କୋଡ଼ିଏ ତାରିଖରେ ଏହା ରେଜିଷ୍ଟ୍ରେସନ୍ ହେଲା । ଯେଉଁମାନଙ୍କୁ ନେଇ ପ୍ରଥମେ ରେଜିଷ୍ଟ୍ରେସନ୍ ହେଲା ସେମାନେ ହେଲେ: (୧)ସାତକଡ଼ି ହୋତା, ସଭାପତି, (୨)ବରେନ୍ଦ୍ର କୃଷ୍ଣ ଧଳ, ସମ୍ପାଦକ, (୩)ଉତ୍ତମ ଚରଣ ନାୟକ, କୋଷାଧ୍ୟକ୍ଷ,(୪)ଡଃ ଖଗେଶ୍ୱର ମହାପାତ୍ର, (୫)ରବି ପଟ୍ଟନାୟକ, (୬)ଡଃ ବିଭୂତି ପଟ୍ଟନାୟକ, (୭)ଯୁଗଳ କିଶୋର ଦତ୍ତ, (୮)ପ୍ରଭାତ ମହାପାତ୍ର, (୯)ଡଃ ଫନୀ ମହାନ୍ତି ।

ଏମାନଙ୍କ ମଧ୍ୟରୁ ଆମକୁ ଛାଡ଼ି ରବି ପଟ୍ଟନାୟକ ଚାଲି ଯାଇଛନ୍ତି । ଏ କମିଟିର ସଦସ୍ୟ ନଥିଲେ ମଧ୍ୟ ବିଜୟକୃଷ୍ଣ ମହାନ୍ତି ମଧ୍ୟ ଆଉ ନାହାନ୍ତି । ପ୍ରଭାତ ମହାପାତ୍ର ଓ ଫନୀ ମହାନ୍ତି ଇସ୍ତଫା ଦେଇ ଆମଠାରୁ ଅଲଗା ହୋଇଛନ୍ତି । ବିଭିନ୍ନ ସମୟରେ ଅମୂଲ୍ୟ କୃଷ୍ଣ ମିଶ୍ର, ସୌରୀନ୍ଦ୍ର ବାରିକ, ଦାଶ ବେନହୂର, ଅଶୋକ ମହାନ୍ତି ଆମ ସହ ଯୋଗ ଦେଇଛନ୍ତି । ଏହି କମିଟି କେବଳ ଲେଖକମାନଙ୍କୁ ନେଇ ଗଠିତ ।

ପ୍ରଥମଥର ପାଇଁ ଭୁବନେଶ୍ୱର ପୁସ୍ତକ ମେଳା ଯୁବ ଲେଖକମାନଙ୍କୁ ପୁରସ୍କାର ଦେବାପାଇଁ ନିଷ୍ପତ୍ତି କଲା । ଚାଳିଶ ବର୍ଷ ମଧ୍ୟରେ ଜଣେ ପ୍ରତିଭାବାନ ଯୁବ ଲେଖକଙ୍କୁ ପୁସ୍ତକ ମେଳା ସାହିତ୍ୟ ପୁରସ୍କାର ଦେବାପାଇଁ ବ୍ୟବସ୍ଥା ହେଲା । ୧୯୮୯ରୁ ଏହି ପୁରସ୍କାର ପ୍ରବର୍ତ୍ତିତ ହେଲା । ପ୍ରଥମ ବର୍ଷ ଏହି ପୁରସ୍କାର ବିଶିଷ୍ଟ ଯୁବ ଔପନ୍ୟାସିକ ପଦ୍ମଜ ପାଳଙ୍କୁ ତାଙ୍କ 'ଦୁର୍ଗ ପତନର ବେଳ' ପାଇଁ ପ୍ରଦାନ କରାଯାଇଥିଲା । ଦ୍ୱିତୀୟ ବର୍ଷ ଯଶୋଧାରା ମିଶ୍ରଙ୍କୁ ତାଙ୍କ କ୍ଷୁଦ୍ରଗଳ୍ପ ସଂକଳନ 'ଜହ୍ନରାତି' ପାଇଁ ପୁରସ୍କୃତ କରାଯାଇଥିଲା । ପ୍ରଥମାବସ୍ଥାରେ ଏହି ପୁରସ୍କାରର ମୂଲ୍ୟ ପାଞ୍ଚହଜାର ଟଙ୍କା ରଖାଯାଇଥିଲା । ପରେ ଏହାକୁ ଦଶହଜାର ଟଙ୍କାକୁ ବୃଦ୍ଧି ପାଇଛି ।

ରବି ପଟ୍ଟନାୟକ ଆମକୁ ଛାଡ଼ି ୧୯୯୧ରେ ପରପାରିକୁ ଚାଲିଗଲେ । ସେ ଥିଲେ ଆମର ପ୍ରତିଷ୍ଠାତା ସଦସ୍ୟ । ତାଙ୍କ ସମ୍ମାନରେ ପ୍ରତିଷ୍ଠା ହେଲା ୧୯୯୨ରେ ରବି ପଟ୍ଟନାୟକ ସ୍ମୃତି ଗଳ୍ପ ପୁରସ୍କାର । ତିରିଶ ବର୍ଷରୁ କମ୍ ବୟସର ଜଣେ ଗାଳ୍ପିକଙ୍କୁ ଏହି ପୁରସ୍କାର ଦେବାପାଇଁ ନିଷ୍ପତ୍ତି ହେଲା । ପ୍ରଥମ ବର୍ଷ (୧୯୯୨) ବାଲେଶ୍ୱରର ଯୁବ ଗାଳ୍ପିକ କୃଷ୍ଣକୁମାର ମହାନ୍ତିଙ୍କୁ ତାଙ୍କ ଗଳ୍ପ 'ଜଘନ୍ୟ ଜୀବିକାର ଯବନିକା'(ପ୍ରତିବେଶୀ ପତ୍ରିକା) ପାଇଁ ଏହି ପୁରସ୍କାର ଦିଆଗଲା ।

ସେହିଭଳି ଅନେକ ବନ୍ଧୁ ଶ୍ରେଷ୍ଠ ଓଡ଼ିଆ ପୁସ୍ତକ ପ୍ରକାଶକଙ୍କୁ ଏକ ପୁରସ୍କାର ଦେବାପାଇଁ ଅନୁରୋଧ କଲେ । ପୁରୁଣା ଫାଇଲ ଘାଣ୍ଟିଲାବେଳେ ଦେଖିଲି ଶ୍ରଦ୍ଧେୟ ରକ୍ଷକ ନାୟକ 'କୁମାର' ନାମକ ଏକ ପତ୍ରିକାର ୧୯୯୧ ଫେବୃଆରୀ ମାସରେ ମୋର ଏକ ସାକ୍ଷାତକାର ନେଇ ଏଇ ପ୍ରଶ୍ନ କରିଥିଲେ । ମୁଁ ତାଙ୍କୁ ଉତ୍ତର ଦେଇଥିଲି ଆମେ ଆଗ୍ରହୀ । ଆପଣଙ୍କର ପ୍ରସ୍ତାବ ଉପରେ ଶୀଘ୍ର ନିଷ୍ପତ୍ତି ନେବୁ । ସେହିବର୍ଷ (୧୯୯୧) ପୁସ୍ତକ ମେଳା ପୁରସ୍କାର ଉତ୍ସବ(ମାର୍ଚ୍ଚ ୬ ତାରିଖ)ରେ ଶ୍ରେଷ୍ଠ ଓଡ଼ିଆ ପୁସ୍ତକ ପ୍ରକାଶକ ରୂପେ ପୁରସ୍କାର ପାଇଲେ କଟକର ଫ୍ରେଣ୍ଡସ୍ ପବ୍ଲିଶର୍ସ । ପୁରସ୍କାରକୁ ନେଇ ଅନେକ ସମୟରେ ଆମଭିତରେ କଥା କଟାକଟି ହୁଏ । ସେହିଭଳି ଘଟିଥିଲା ୧୯୯୧ ମସିହା ପୁରସ୍କାରକୁ ନେଇ । ସେ ବର୍ଷ ସୁନୀଲ ପୃଷ୍ଟି ତାଙ୍କ କବିତା ପୁସ୍ତକ 'ଚିହ୍ନା ଚିହ୍ନା ନିର୍ଜନତା' କବିତା ପୁସ୍ତକ ପାଇଁ ପୁସ୍ତକ ମେଳା ପୁରସ୍କାର ପାଇଥିଲେ । ମାତ୍ର ତାଙ୍କ ସହ ଆଉ ଯେଉଁ ଦୁଇଜଣ ପ୍ରତିଦ୍ୱନ୍ଦ୍ୱୀ ଥିଲେ ସେମାନଙ୍କୁ ଆମ ଭିତରୁ

କେତେକ ସମର୍ଥନ କଲେ । ମୁଁ ତିନିଜଣଙ୍କୁ ବହିର ପ୍ରଥମ-ଶେଷ ପୃଷ୍ଠା ଚିରି ଦେଇ ଦୁଇଜଣ ବିଶିଷ୍ଟ କବିଙ୍କ ପାଖକୁ ବିଚାର ପାଇଁ ପଠାଇ ଦେଲି । ଦୁହେଁ ସୁନୀଲଙ୍କୁ ମନୋନୀତ କଲେ ।

ମୋର କହିବାର କଥା ହେଉଛି ଭୁବନେଶ୍ୱର ପୁସ୍ତକ ମେଳା ପୁରସ୍କାର ଯେପରି ପକ୍ଷପାତ ଦୁଷ୍ଟ ବୋଲି ଲୋକେ ନ କୁହନ୍ତୁ । ମୋର ମନେହୁଏ ଆଜି ପର୍ଯ୍ୟନ୍ତ ଏହି ପୁରସ୍କାର ଏକ ମର୍ଯ୍ୟାଦାଜନକ ସ୍ଥାନ ହାସଲ କରିଛି ।

ଏ ସମସ୍ତ ପୁରସ୍କାର ସହ କ୍ରମେ ଶିଶୁ ସାହିତ୍ୟ, ପ୍ରଚ୍ଛଦପଟ ଶିଳ୍ପୀ, ବିଜ୍ଞାନ ପ୍ରଯୁକ୍ତି ପୁରସ୍କାର ଯୋଡ଼ାହେଲା । ପୁସ୍ତକ ମେଳା କମିଟିର ସଦସ୍ୟ ନଥିଲେ ମଧ୍ୟ ଯିଏ ଆମ ସାଙ୍ଗେ ଓତଃପ୍ରୋତ ଭାବେ ସଂଯୁକ୍ତ ଥିଲେ ସେ ଦୁଇଜଣ ହେଉଛନ୍ତି କବି ସଚ୍ଚିଦାନନ୍ଦ ରାଉତରାୟ ଓ ଗାଳ୍ପିକ ବିଜୟ କୃଷ୍ଣ ମହାନ୍ତି । ଦୁହେଁ ଆଗପଛ ହୋଇ ଚାଲିଗଲେ । ଦୁହିଁଙ୍କ ସମ୍ମାନରେ ସଚ୍ଚି ରାଉତରାୟ ସାହିତ୍ୟ ସମ୍ମାନ ଓ ବିଜୟକୃଷ୍ଣ ମହାନ୍ତି ଗଳ୍ପ ସମ୍ମାନ ଗତ କେତେବର୍ଷ ହେଲା ପ୍ରଦାନ କରାହୋଇ ଆସୁଛି ।

ଏକଥା କହିବାରେ ମୋର ଦ୍ୱିଧା ନାହିଁ ପୁସ୍ତକ ମେଳା ପାଇଁ ଯୁଗଳ କିଶୋର ଦତ୍ତ ଜଣେ ସମର୍ପିତ ବ୍ୟକ୍ତିତ୍ୱ । ଆଜି ଅଶୀବର୍ଷ ଅତିକ୍ରାନ୍ତ ହୋଇଥିଲେ ମଧ୍ୟ ତାଙ୍କର ସେଇ ଯୁବ ସୁଲଭ ଉତ୍ସାହ ଉଦ୍ଦିପନା ରହିଛି । ପୁସ୍ତକମେଳା ଆୟୋଜନରେ ତାଙ୍କର ଭୂମିକା ପ୍ରଶଂସନୀୟ ।

ମୁଁ, ସାତକଡ଼ିବାବୁ, ବିଭୂତିବାବୁ, ଖଗେଶ୍ୱରବାବୁ, ଯୁଗଳବାବୁ, ଉତ୍ତମ ନାୟକ ଏବଂ ଅଶୋକ ମହାନ୍ତି ଏକ ଦୃଢ଼ ଦଳ ରୂପେ ରହିଛୁ ଏବଂ ପୁସ୍ତକମେଳାର ସଫଳତା ପାଇଁ ସତତ କାର୍ଯ୍ୟରତ । ଉତ୍ତମ ମୋର ଅନୁଜ ସ୍ୱରୂପ । ଯେତେବେଳେ ଡାକିଲେ ବିନା ଦ୍ୱିଧାରେ ସେ ଉପସ୍ଥିତ ହୁଏ । ଏଭଳି ବନ୍ଧୁମାନେ ନଥିଲେ ପୁସ୍ତକମେଳା ସମ୍ଭବ ହୋଇଥାନ୍ତା କି ନାହିଁ ମୋର ସନ୍ଦେହ ରହିଛି । ଆଉ ଗୋଟିଏ କଥା ହେଲା ଭୁବନେଶ୍ୱର ପୁସ୍ତକ ମେଳା ଜରିଆରେ ଓଡ଼ିଶାର ପ୍ରବୀଣ ଓ ତରୁଣ ଅଶୀଜଣଙ୍କର ଗଳ୍ପ ବଙ୍ଗଳା ଭାଷାରେ ପ୍ରକାଶ କରି ବଙ୍ଗୀୟ ପାଠକମାନଙ୍କ ମଧ୍ୟରେ ପ୍ରସାର କରିଛି । ଚାରୋଟି ପୁସ୍ତକ ଆକାରରେ ଏ ଗଳ୍ପଗୁଡ଼ିକ ସଂକଳିତ ହୋଇ ଚାରିବର୍ଷ ଧରି କଲିକତା ବହିମେଳାରେ ବହୁ ଦର୍ଶକ ଓ ପାଠକଙ୍କ ଆଦର ଲାଭ କରିଛି । ପୁସ୍ତକ ମେଳାର ଏହା ଆଉ ଏକ ଅବଦାନ ।

ଆମେ ଫେବୃଆରୀ ୨୬ ତାରିଖରୁ ମାର୍ଚ୍ଚ ୭ ତାରିଖ ପର୍ଯ୍ୟନ୍ତ ମେଳା ଓ ସମୟ ଧାର୍ଯ୍ୟ କରିବାର ଏକ କାରଣ ଥିଲା । ତା' ହେଲା ପ୍ରତିବର୍ଷ ଜାନୁଆରୀ ଶେଷ ବୁଧବାର ଠାରୁ ବାରଦିନ ପର୍ଯ୍ୟନ୍ତ କଲିକତା ବହିମେଳା ଅନୁଷ୍ଠିତ ହୁଏ । ଆମେ ପ୍ରତିବର୍ଷ କଲିକତା ଯାଇ ଓଡ଼ିଶା ବାହାରର ପ୍ରକାଶକ ଓ ପୁସ୍ତକ ବିକ୍ରେତାଙ୍କ ସହ ଯୋଗାଯୋଗ କରି ଭୁବନେଶ୍ୱର ପୁସ୍ତକମେଳାରେ ଯୋଗଦେବା ପାଇଁ ଅନୁରୋଧ କରୁ । ଆମେ ମୁଁ, ବିଭୂତିବାବୁ, ଉତ୍ତମ, ଯୁଗଳବାବୁ ପ୍ରାୟ କଲିକତା ବହି ମେଳାକୁ ପ୍ରତିବର୍ଷ ଯାଉଥିଲୁ । କଲିକତା ବହିମେଳା ଦ୍ୱାରା ଆମେ ଅନେକାଂଶରେ ଉପକୃତ ହୋଇଛୁ ଏକଥା କହିବାରେ ବାଧା ନାହିଁ । ଏବେ ଅବଶ୍ୟ ଆମ ସାଙ୍ଗରେ ଅଶୋକ ଆସୁଛନ୍ତି ।

## -ଭୁବନେଶ୍ୱର ପୁସ୍ତକ ମେଳାର ରଜତ ଜୟନ୍ତୀ-

ଚାହୁଁ ଚାହୁଁ ପଚିଶ ବର୍ଷ ହୋଇଗଲା । ସମଗ୍ର ରାଜ୍ୟରେ ପୁସ୍ତକମେଳା ଆନ୍ଦୋଳନରେ ପରିଣତ ହୋଇଗଲା । ଯେଉଁ ପ୍ରକାଶକ ଓ ପୁସ୍ତକ ବିକ୍ରେତା ବନ୍ଧୁଗଣ ଗତ ପଚିଶ ବର୍ଷ ଧରି ଆମ ସହ ଅଛନ୍ତି ତାଙ୍କୁ କୃତଜ୍ଞତା ଜଣାଇବାର

ଭାଷା ମୋ ପାଖରେ ନାହିଁ । ୧୯୮୬ରେ ଷ୍ଟଲପିଛା ଆଠଶହରୁ ଆଜି ସାଢ଼େ ଚାରିହଜାରରେ ପହଞ୍ଚିଗଲାଣି । ଆଉ କେତେଦିନ ଭୁବନେଶ୍ୱର ପୁସ୍ତକମେଳା ଚାଲିବ ମୋତେ ଜଣାନାହିଁ।

ଭୁବନେଶ୍ୱର ପୁସ୍ତକମେଳା ସ୍ୱଚ୍ଛନ୍ଦ ଗତିରେ ଚାଲିଥିଲା । ମଝିରେ ଫେବୃଆରୀ ୨୬ ତାରିଖରୁ ମାର୍ଚ୍ଚ ୭ ତାରିଖ ବଦଳରେ ମାର୍ଚ୍ଚ ପହିଲାରୁ ବାରଦିନ ପାଇଁ ମେଳା କଲୁ । ଫେବୃଆରୀ ମାସରେ ଯେଉଁ ତିନିଦିନ କରୁଥିଲୁ ସେ ସମୟରେ ବିକ୍ରିବଟା ବିଶେଷ ହେଲାନାହିଁ ବୋଲି କିଛି ପ୍ରକାଶକ ଓ ପୁସ୍ତକ ବିକ୍ରେତା ମତ ଦେଲେ । ଦରମା ପହିଲା ୨ ତାରିଖରେ ମିଳୁଥିବାରୁ ଆମେ ମାର୍ଚ୍ଚ ପହିଲାକୁ ବଦଳାଇଲୁ । ତା' ସାଙ୍ଗେସାଙ୍ଗେ କଲିକତା ବହିମେଳା ଢାଞ୍ଚାରେ ବାରଦିନ କଲୁ । ଏ ବ୍ୟବସ୍ଥା ଅନେକ ପ୍ରକାଶକ ଓ ପୁସ୍ତକ ବିକ୍ରେତାଙ୍କୁ ଖୁସିକଲା ।

ମାର୍ଚ୍ଚ ପହିଲାରେ କରିବା ଫଳରେ ସାଧାରଣ ଗ୍ରାହକଙ୍କର ମଧ୍ୟ ସମ୍ପର୍କ ମିଳିଲା । ମୋର ଆଉ ଏକ କାମ ହେଲା ସ୍କୁଲ, କଲେଜ, ପାଠାଗାର ପାଇଁ ପୁସ୍ତକ ମେଳାରୁ ବହି କିଣିବା ପାଇଁ ଶିକ୍ଷାମନ୍ତ୍ରୀ ଓ ଶିକ୍ଷାବିଭାଗ ଶାସନ ସଚିବଙ୍କୁ ଅନୁରୋଧ କରି ଏକ ସର୍କୁଲାର ଜାରି କରିବା । ମୋ ଅନୁରୋଧରେ କିଛି ବର୍ଷ ଏଭଳି ସର୍କୁଲାର ହୋଇଥିଲା । ତେବେ କିଛିବର୍ଷ ପରେ ଯେତେବେଳେ ରାଜ୍ୟର ସମସ୍ତ ଜିଲ୍ଲା ଆଉ ସବ୍‌ଡିଭିଜନରେ ପୁସ୍ତକମେଳାର ଆୟୋଜନ ହେଲା ସେତେବେଳେ ସେ ସବୁ ଅଞ୍ଚଳର ସ୍କୁଲ କଲେଜ ଆଉ ଭୁବନେଶ୍ୱର ପୁସ୍ତକମେଳାକୁ ବହି କିଣିବା ପାଇଁ ଆସିଲେ ନାହିଁ।

ଆଉଏକ ବଡ଼ ଅସୁବିଧା ସୃଷ୍ଟି ହେଲା ୧୯୯୯ ପରେ । ୧୯୯୮ରେ ଓଡ଼ିଶାରେ ପ୍ରବଳ ଗ୍ରୀଷ୍ମ ପ୍ରବାହ ହୋଇ ଦୁଇ ହଜାରରୁ ଅଧିକ ଲୋକ ପ୍ରାଣ ହରାଇଥିଲେ । ୧୯୯୯ରେ ମହାବାତ୍ୟାରେ ବାର ହଜାରରୁ ଅଧିକ ଲୋକ ପ୍ରାଣ ହରାଇଲେ । ୧୯୯୮ ମସିହା ପର୍ଯ୍ୟନ୍ତ ସ୍କୁଲ, କଲେଜ ପରୀକ୍ଷା ଏପ୍ରିଲ୍ ମାସରେ ହେଉଥିଲା । ବିଶେଷକରି ମାଟ୍ରିକ୍ ଓ ଯୁକ୍ତ ଦୁଇ ପରୀକ୍ଷା ଏପ୍ରିଲ ମାସରେ ହେଉଥିଲା । ୧୯୯୮ ଗ୍ରୀଷ୍ମ ପ୍ରବାହ ପରେ ପରୀକ୍ଷା ତାରିଖ ଫେବୃଆରୀ ଓ ମାର୍ଚ୍ଚ ମାସରେ ସ୍ଥିର ହେଲା ।

ଫଳରେ ଆମ ପୁସ୍ତକ ମେଳାକୁ ମାଟ୍ରିକ୍ ଓ ଯୁକ୍ତ ଦୁଇ ଶ୍ରେଣୀ ଛାତ୍ର, ଅଭିଭାବକ ଓ ଶିକ୍ଷକ କେହି ଆସି ପାରିଲେ ନାହିଁ। ଅନେକ ଅଭିଭାବକ ଆମକୁ ଆପତ୍ତି କଲେ ଏବଂ ତାରିଖ ବଦଳାଇବାକୁ ଦାବି କଲେ । ଏ ସମ୍ପର୍କରେ ଆମ କମିଟି ଏବଂ ଆମ ମେଳାରେ ନିୟମିତ ଯୋଗ ଦେଉଥିବା ପ୍ରକାଶକ ଓ ପୁସ୍ତକ ବିକ୍ରେତାଙ୍କ ମତାମତ ନେଲି । ଅଧିକାଂଶ ବନ୍ଧୁ ଏହାକୁ ନଭେମ୍ବର ମାସକୁ ଘୁଞ୍ଚାଇ ଦେବାକୁ ପରାମର୍ଶ ଦେଲେ । ଆମର ରୌପ୍ୟ ଜୟନ୍ତୀ ୨୦୦୯ରେ ହେବାକଥା । ତେବେ ୨୦୦୮ ମାର୍ଚ୍ଚ ପୁସ୍ତକ ମେଳାପରେ ପୁଣି ନଭେମ୍ବର ୭ ତାରିଖରୁ ୧୮ ତାରିଖ ପର୍ଯ୍ୟନ୍ତ ରୌପ୍ୟ ଜୟନ୍ତୀ ପୁସ୍ତକମେଳା ଆରମ୍ଭ କଲୁ । ଆମେ ବିଚାର କରିଥିଲୁ ଅନେକ ନଆସି ପାରନ୍ତି । ମାତ୍ର ଆମ ଆଶଙ୍କା ଦୂରୀଭୂତ ହେଲା । ଅଢ଼େଇଶହରୁ ଅଧିକ ଷ୍ଟଲ ପାଇଁ ଆବେଦନ ପାଇଲୁ ।

ଭୁବନେଶ୍ୱର ପୁସ୍ତକ ମେଳା ଓଡ଼ିଶାରେ ନୂତନ ପାଠକ କେବଳ ସୃଷ୍ଟିକଲା ନାହିଁ- ଓଡ଼ିଆ ଗଳ୍ପ, କବିତା, ଉପନ୍ୟାସ ତଥା ଅନ୍ୟାନ୍ୟ ପୁସ୍ତକର ଏକ ନୂଆ ଏବଂ ବିରାଟ ବଜାର ସୃଷ୍ଟି କଲା । ପୃଥିବୀରେ ଏତେ ବହି ଅଛି ତାକୁ ଦେଖି ଅନେକ ବିଶିଷ୍ଟ ବ୍ୟକ୍ତି ମଧ୍ୟ ଆଶ୍ଚର୍ଯ୍ୟ ହେଲେ । ମୋର ପ୍ରତିବର୍ଷ କାମ ହେଲା ଦେଶର ବିଖ୍ୟାତ ପ୍ରକାଶନ ଓ ପୁସ୍ତକ ବିକ୍ରେତାମାନଙ୍କ ସହ ଯୋଗାଯୋଗ କରି ସେମାନଙ୍କୁ ଭୁବନେଶ୍ୱର ପୁସ୍ତକ ମେଳାକୁ ଆଣିବା । ମୁଖ୍ୟତଃ

ସଂସ୍କୃତ, ହିନ୍ଦୀ, ବଙ୍ଗଳା, ଇଂରାଜୀ ଭାଷାର ପୁସ୍ତକ ପ୍ରକାଶକମାନଙ୍କୁ ଆମ ପୁସ୍ତକ ମେଳାକୁ ଆଣିବା । ସେତେବେଳେ ସଂସ୍କୃତ ଭାଷାର ବହିର ପ୍ରସିଦ୍ଧ ପ୍ରକାଶକ ଚଉଖମ୍ବା, ମୋତିଲାଲ ବନାରସୀ ଦାସ ଏବଂ ପୁରୁଣା କ୍ଲାସିକ୍ ବହି ଫାର୍ମା, କେ.ଏଲ୍. ମୁଖୋପାଧ୍ୟାୟ ସଂସ୍ଥା ଭଳି ପ୍ରକାଶନ ସଂସ୍ଥା ଭୁବନେଶ୍ୱରକୁ କେବେ ଆସି ନଥିଲେ । ଏମାନଙ୍କର ଓଡ଼ିଶାରେ ଏତେ ଗ୍ରାହକ ଥିବେ ବୋଲି ମୋର ମଧ୍ୟ ଧାରଣା ନଥିଲା । ମାତ୍ର ପ୍ରଥମଥର ପାଇଁ ସେମାନେ ୧୯୮୯ରେ ସଂଗୀତ ମହାବିଦ୍ୟାଳୟ ପଡ଼ିଆରେ ହୋଇଥିବା ପୁସ୍ତକ ମେଳାରେ ଯୋଗଦେଇ ଲକ୍ଷାଧିକ ଟଙ୍କାର ବ୍ୟବସାୟ କରିବାରେ ସେମାନେ ନିଜେ ମଧ୍ୟ ଆଶ୍ଚର୍ଯ୍ୟ ହୋଇଥିଲେ । ବହୁବର୍ଷ ଧରି ଏ ସଂସ୍ଥାମାନେ ମେଳାକୁ ଆସୁଥିଲେ । ପରେ ସେମାନଙ୍କ ସଂସ୍ଥାରେ ଭାଗଭାଗ ଏବଂ ଅସୁବିଧା ସୃଷ୍ଟି ହେବାରେ ସେମାନେ ଆଉ ଆସିଲେ ନାହିଁ ।

ପୁସ୍ତକମେଳା ପାଇଁ ବଡ଼ ବଡ଼ ପ୍ରକାଶକମାନଙ୍କ ସହ ଯୋଗାଯୋଗ ନିମନ୍ତେ ଆମେ ପ୍ରତିବର୍ଷ କଲିକତା ପୁସ୍ତକମେଳାକୁ ଯାଉଥିଲୁ । ପ୍ରତିବର୍ଷ ଆମେ ଚାରିଦିନ କଲିକତାରେ ରହୁଥିଲୁ । ୧୯୭୬ରେ କଲିକତା ବହିମେଳା ଆରମ୍ଭ ହୋଇଥିଲା । ପ୍ରତବର୍ଷ ଜାନୁଆରୀ ମାସ ଶେଷ ବୁଧବାର ଏହି ମେଳା ଆରମ୍ଭ ହୋଇ ବାରଦିନ ଚାଲେ । କଲିକତାରେ ରହିବାବେଳେ ମୋର ପ୍ରଫେସନାଲ୍ କାମରେ ମଧ୍ୟ ସହାୟକ ହୋଇଥାଏ । ୧୯୮୨ରୁ ମୁଁ ଷ୍ଟେଟ୍‌ସମ୍ୟାନ ଖବରକାଗଜର ଭୁବନେଶ୍ୱର ବିଜିନେସ୍ ରିପ୍ରେଜେଣ୍ଟେଟିଭ୍ ଦାୟିତ୍ୱ ନେଇଥାଏ । ୧୯୮୨ରେ ଭୁବନେଶ୍ୱରରେ ଷ୍ଟେଟ୍‌ସମ୍ୟାନ୍‌ର ସାମ୍ବାଦିକ ଥିଲେ ଆର୍.ପି. ବାଗ୍‌ଚୀ । ବାଗ୍‌ଚୀ ଦା ମୋତେ ଖୁବ୍ ଶ୍ରଦ୍ଧା କରୁଥିଲେ । ଦିନେ କଲିକତା ଷ୍ଟେଟ୍‌ସମ୍ୟାନ୍ ଅଫିସ୍‌ରୁ ଜଣେ ଭଦ୍ରଲୋକଙ୍କୁ ଧରି ମୋ ପାଖକୁ ଆସିଲେ । ଭଦ୍ରଲୋକଙ୍କ ନାମ କେ.ପି. ରାୟ ଚୌଧୁରୀ । ସେ ଷ୍ଟେଟସ୍‌ମ୍ୟାନ୍‌ର ବିଜ୍ଞାପନ ବିଭାଗର ଜଣେ ବଡ଼ କର୍ତ୍ତା ଥିଲେ । ବାଗ୍‌ଚୀ ଦା ମୋତେ କହିଲେ, ବରେନ୍ଦ୍ର, ତମର ସରକାରୀ ଅଫିସ୍‌ରେ ଖୁବ୍ ଜଣାଶୁଣା ଓ ଇନ୍‌ଫ୍ଲୁଏନ୍ସ ରହିଛି । ଷ୍ଟେଟସ୍‌ମ୍ୟାନ୍‌କୁ ଟିକେ ସାହାଯ୍ୟ କର । ସୂଚନା ଲୋକ ସମ୍ପର୍କ ବିଭାଗରେ ଷ୍ଟେଟସ୍‌ମ୍ୟାନ୍‌ର ପ୍ରାୟ ପଚାଶ ଲକ୍ଷ ଟଙ୍କା ବିଜ୍ଞାପନ ବିଲ୍ ବାକି ପଡ଼ିଛି । ତାକୁ ଆଦାୟ କରିବାରେ ଟିକେ ସାହାଯ୍ୟ କର । ଯେତେ ଟଙ୍କା ଆଦାୟ ହେବ ତୁମେ ତା'ର ଦଶଭାଗ ପାଇବ । ତା'ଛଡ଼ା ପ୍ରତିବର୍ଷ ଷ୍ଟେଟସ୍‌ମ୍ୟାନ୍‌ର ସ୍ପେଶାଲ୍ ଇସ୍ୟୁ ପାଇଁ କିଛିକିଛି ବିଜ୍ଞାପନ ଯୋଗାଡ଼ କରିଦେଲେ ସେ ବାବଦରେ ମଧ୍ୟ ଦଶଭାଗ ପାଇବ । ମୁଁ ତ ଅଛି । ଏ କାମରେ ମୁଁ ତୁମକୁ ସାହାଯ୍ୟ କରିବି । ତେବେ ଏହା ତୁମ ନାମରେ ନନେଇ ତୁମ ସ୍ତ୍ରୀଙ୍କ ନାମରେ ନିଅ । ସେ ତ ଏମ୍.ଏ. ପାଶ୍ କରିଛନ୍ତି ତେଣୁ ସୁବିଧା ହେବ । କାରଣ ସେଥିରେ କାହାରି କିଛି କହିବାର ନଥିବ । ମୁଁ ରାଜି ହେଲି । ସେତେବେଳେ ମୁଁ ମାତୃଭୂମିରୁ ମାତ୍ର ଦେଢ଼ହଜାର ଟଙ୍କା ପାଉଥିଲି ।

ଷ୍ଟେଟସ୍‌ମ୍ୟାନ୍ ପାଇଁ କାମ କରି ମୋର ବେଶ୍ ଭଲ ରୋଜଗାର ହେଲା । ପ୍ରତି ତିନି/ଚାରି ମାସରେ ମୁଁ ଧରାଧରି କରି ବାକିଆ ବିଲ୍‌ରୁ ପାଞ୍ଚ/ଛ' ଲକ୍ଷ ଟଙ୍କାର ପେମେଣ୍ଟ କରାଉଥିଲି । ଫଳରେ ଚାରିମାସରେ ଟଙ୍କା ପଚାଶ/ଷାଠିଏ ହଜାର ବା ମାସକୁ ହାରାହାରି ବାର/ଚୌଦ ହଜାର ଟଙ୍କା ରୋଜଗାର ହୁଏ । ମୋ ପରିବାରର ଚଳଣୀରେ ମଧ୍ୟ ସୁବିଧା ହେଲା ।

ଯେତେବେଳେ କଲିକତା ବହିମେଳାକୁ ଯାଏ ମୁଁ ଷ୍ଟେଟସ୍‌ମ୍ୟାନ୍ ଅଫିସ୍ ଯାଇ ମୋ ଆକାଉଣ୍ଟରୁ ଦଶ/ପନ୍ଦର ହଜାର ଟଙ୍କା ଆଣେ । ବହିମେଳାବେଳେ ମୋ ସାଙ୍ଗରେ ମୋର ସ୍ତ୍ରୀ ଏବଂ ମୋର ତିନି ପୁଅ-ଝିଅ ଥା'ନ୍ତି । ଉତ୍କଳ ଭବନର ଭି.ଆଇ.ପି. ସ୍ୟୁଟ୍ ମୁଁ ରିଜର୍ଭ କରି ନେଇଥାଏ । ସେଇଠାରେ ରହୁ । ଉତ୍କଳ ଭବନରେ ଥିବା ଡ୍ରାଇଭର ଗୌରାଙ୍ଗ ତା'ର ପ୍ରାଇଭେଟ୍ ଟ୍ୟାକ୍ସିକୁ ମୋ ପାଇଁ ରଖିଥାଏ । କଲିକତାରେ ମୋର ଆଉ ଏକ ପେଶାଗତ କାର୍ଯ୍ୟ

ହେଲା ଆଜ୍‌କାଲ ଖବରକାଗଜ । ମୁଁ ୧୯୮୪ରେ ଆଜ୍‌କାଲ୍‌ର ଭୁବନେଶ୍ୱର ପ୍ରତିନିଧି ହୋଇ ନିଯୁକ୍ତି ପାଇଲି । ଯଦିଓ ମୁଁ ମାତୃଭୂମିର ଭୁବନେଶ୍ୱର ପ୍ରତିନିଧି ରୂପେ ଆକ୍ରିଡିସନ୍ ପାଇଥିଲି ମାତ୍ର ଆଜକାଲ୍‌ର ପ୍ରତିନିଧି ରୂପେ ଯୋଗଦେଲି ଏଇଥିପାଇଁ ଯେ ଭବିଷ୍ୟତରେ ତାହା କାମରେ ଆସିବ । 'ଆଜ୍‌କାଲ୍'ରେ ସେତେବେଳେ ଆସିଷ୍ଟାଣ୍ଟ ଏଡିଟର ଥିଲେ ଅସୀମ ମିତ୍ର । ଅସୀମ ବାବୁଙ୍କ ସହ ମୋର ଏନ୍.ୟୁ.ଜେ.ରୁ ଚିହ୍ନା । ସେଇ ଚିହ୍ନା ପରେ ଘନିଷ୍ଠତା ହୋଇଥିଲା ଏବଂ ତାଙ୍କ ଜରିଆରେ ମୁଁ ଆଜକାଲ୍‌ରେ ପ୍ରବେଶ କଲି । ଆଜ୍‌କାଲ୍ ମୋତେ ସେତେବେଳେ ପାଞ୍ଚଶହ ଟଙ୍କା ଦରମା ଦେଉଥିଲା । ମୋର ସାମ୍ବାଦିକ ଜୀବନରେ 'ଆଜ୍‌କାଲ୍' ମୋତେ ଅନେକ ସାହାଯ୍ୟ କରିଛି । ଓଡ଼ିଶାରେ ଆଜ୍‌କାଲ୍ ପ୍ରତିନିଧି ରୂପେ ୧୯୮୬ ପରଠାରୁ ମୁଁ ପରିଚିତ ଏବଂ ସ୍ୱୀକୃତିପ୍ରାପ୍ତ ସେ ପରିଚୟ ଏ ପର୍ଯ୍ୟନ୍ତ ଚାଲିଛି ।

## -ଆଜ୍‌କାଲ୍‌ର ପ୍ରତିନିଧି-

ତେଣୁ କଲିକତା ଗଲେ ଆଜକାଲ୍ ଅଫିସ୍‌କୁ ମୁଁ ସ୍ୱାଭାବିକ ଭାବେ ଯାଏ । ଆଜ୍‌କାଲ୍ ଆରମ୍ଭ ହେଲା ୧୯୮୦ ମସିହାରେ । ମୁଁ ଚାରିବର୍ଷ ପରେ ଯୋଗଦେଲି । ଆଜ୍‌କାଲ୍‌ରେ ଅସୀମବାବୁ ଆଉ ତିନି/ଚାରିଜଣଙ୍କୁ ବାଦ୍‌ଦେଲେ ଅନ୍ୟ ସମସ୍ତେ ପ୍ରାୟ ଯୁବକ । ମୋତେ ସମସ୍ତେ ଶ୍ରଦ୍ଧା କରନ୍ତି । ସେତେବେଳେ ଆଜକାଲ୍ ଅଫିସ୍ ରାଜା ରାମମୋହନ ସରଣୀରେ ଥିଲା । ପରେ ୨୦୦୫ ମସିହାରେ ଏହା ସଲ୍ଟଲେକ୍‌ରେ ନିଜର ବିରାଟ ପ୍ରାସାଦ ତିଆରି କରି ଉଠି ଆସିଲା । ମୁଁ ଆଜ୍‌କାଲ୍ ଅଫିସ୍ ଗଲାବେଳେ ବହୁ ବଜାରର ବିଖ୍ୟାତ ମିଷ୍ଟାନ୍ନ ଦୋକାନ 'ଭୀମନାଗ'ରୁ ସନ୍ଦେଶ ଏବଂ ରସଗୋଲା କିଣିକରି ନେଇଯାଏ । ଏଡିଟୋରିଆଲରେ ପହଞ୍ଚିଲା ମାତ୍ରେ ବନ୍ଧୁମାନେ ହୋହୋ ହୋଇ କୁହନ୍ତି ଆରେ ଧଲ୍ ଦା' ଏସେଛେ । ଏ କେ ଅଛ ତା' ଲାଓ । ଜୀବନରେ ଏହି ମୁହୂର୍ତ୍ତଗୁଡ଼ିକର ମୂଲ୍ୟ ଅନେକ । ଆଜ୍‌କାଲ୍‌ର ଏଇ ବନ୍ଧୁମାନେ ମୋର ନିଜର ପରିବାର ଭଳି ମନେ ହୁଅନ୍ତି । କିଏ ବରେନ ଦା' କିଏ ଧଲ୍ ଦା' କହି କୁଣ୍ଢାଇ ପକାନ୍ତି । ସ୍ନେହ ଶ୍ରଦ୍ଧାର ଏହି ଫଲ୍ଗୁଧାରା ମୋର ପ୍ରାଣକୁ ସିକ୍ତ କରିପକାଏ । ମୋ ସାଙ୍ଗରେ ବିଭୂତିବାବୁ, ଯୁଗଳବାବୁ । ଉତ୍ତମ ସମସ୍ତେ ପ୍ରାୟ ଯା'ନ୍ତି । ସମସ୍ତେ ଦେଖିଛନ୍ତି ଏହି ଦୃଶ୍ୟ । ରବି ପଟ୍ଟନାୟକ ବଞ୍ଚିଥିବା ପୂର୍ବ ପର୍ଯ୍ୟନ୍ତ (୧୯୯୦ ପର୍ଯ୍ୟନ୍ତ) ମଧ ମୋ ସାଙ୍ଗରେ ଯାଉଥିଲେ ।

'ଆଜ୍‌କାଲ୍'ର ସମ୍ପାଦକ ଅଶୋକ ଦାସଗୁପ୍ତ । ୧୯୯୦ ମସିହା ପରେ ସେ ଏହି ଦାୟିତ୍ୱ ନେଲେ । ସେ ଦାୟିତ୍ୱ ନେବାପରେ ଆଜ୍‌କାଲ୍ ଦୁଇଟି ନୀତି ଗ୍ରହଣ କଲା । କ୍ରୀଡ଼ା ଓ ବାମପନ୍ଥୀ ରାଜନୀତିକୁ ଆଜ୍‌କାଲ୍ ପ୍ରାଧାନ୍ୟ ଦେଲା । ମୋର ଏକଥା କହିବାରେ ଦ୍ୱିଧାନାହିଁ ଯେ ଅଶୋକ ବାବୁ 'ଆଜ୍‌କାଲ୍'କୁ ଏକ ଦୃଢ଼ ଭିତ୍ତିଭୂମି ପ୍ରଦାନ କଲେ । ଆଜି ଆଜ୍‌କାଲ ବଙ୍ଗଳା ଭାଷାରେ ତା'ର ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିଛି ଏବଂ ଏହାର ସମସ୍ତ କୃତିତ୍ୱ ଅଶୋକବାବୁଙ୍କର ପ୍ରାପ୍ୟ ।

ଅଶୋକବାବୁଙ୍କର ଓଡ଼ିଆ ଭାଷା ସାହିତ୍ୟକୁ ବଙ୍ଗଳାରେ ପରିଚୟ କରାଇବାରେ ପ୍ରଧାନ ଭୂମିକା ରହିଛି । ୨୦୦୦ ମସିହାରେ ଭୁବନେଶ୍ୱର ପୁସ୍ତକମେଳାର ପୁରସ୍କାର ବଣ୍ଟନ ଉତ୍ସବକୁ ଅଶୋକବାବୁଙ୍କୁ ମୁଁ ପ୍ରଧାନ ଅତିଥି କରି ଡାକିଥିଲି । ସେଇ ଉତ୍ସବରେ ଓଡ଼ିଆ ଗଳ୍ପ-ଉପନ୍ୟାସ ବଙ୍ଗଳାରେ ଅନୂଦିତ ହେଉନଥିବା ବିଷୟ ଅନେକ ଅଭିଯୋଗ କରିଥିଲେ । ଅଶୋକବାବୁ ସେଇ ସଭାରେ ପ୍ରତିଶ୍ରୁତି ଦେଇଥିଲେ ଯେ ଭୁବନେଶ୍ୱର ପୁସ୍ତକମେଳା ପକ୍ଷରୁ ଓଡ଼ିଆ ଗଳ୍ପର ବଙ୍ଗଳା ଅନୁବାଦ ବ୍ୟବସ୍ଥା ହେଲେ ଆଜ୍‌କାଲ୍ ତା'ର ପ୍ରକାଶଭାର ନେବ । ମୁଁ ଜାଣିଥିଲି ଅଶୋକବାବୁଙ୍କ

କଥାର ଦୃଢ଼ତା । ବଙ୍ଗଳା ଭାଷାକୁ ଅନୁବାଦ ପାଇଁ ମୋର ସମୁଦି(ବଡ଼ଝିଅ ରୁପ୍ଲୁର ଶ୍ୱଶୁର) ପ୍ରଫେସର ଡକ୍ଟର ତାପସ ଚକ୍ରବର୍ତ୍ତିଙ୍କୁ ଅନୁରୋଧ କଲି । ସେ ସାଙ୍ଗେସାଙ୍ଗେ ରାଜି ହୋଇଗଲେ ।

ବିଭୂତିବାବୁ, ମୁଁ, ସାତକଡ଼ିବାବୁ ବସି ପ୍ରଥମ ପୁସ୍ତକ ପାଇଁ ଅଠରଟି ଗଳ୍ପ ବାଛିଲୁ । ଆମ ମେଳା କମିଟିର ଚାରିଜଣ (ସାତକଡ଼ି ହୋତା, ବିଭୂତି ପଟ୍ଟନାୟକ, ମୁଁ ଓ ଉତ୍ତମ ନାୟକ)ଙ୍କ ସମେତ ମୋଟ ଅଠର ଜଣଙ୍କ ଗଳ୍ପ ମନୋନୀତ କଲୁ । ଆଉ ଯେଉଁମାନଙ୍କ ଗଳ୍ପ ସ୍ଥାନିତ ହୋଇଥିଲା ସେମାନେ ହେଲେ ଗୋପୀନାଥ ମହାନ୍ତି, ସୁରେନ୍ଦ୍ର ମହାନ୍ତି, ଅଖିଳ ମୋହନ ପଟ୍ଟନାୟକ, ରବି ପଟ୍ଟନାୟକ, ମନୋଜ ଦାସ, ମହାପାତ୍ର ନୀଳମଣି ସାହୁ, ପ୍ରତିଭା ରାୟ, ଶାନ୍ତନୁ ଆଚାର୍ଯ୍ୟ, ଚନ୍ଦ୍ରଶେଖର ରଥ, ବୀଣାପାଣି ମହାନ୍ତି, ବିଜୟକୃଷ୍ଣ ମହାନ୍ତି, ନନ୍ଦିନୀ ଶତପଥୀ, ପ୍ରଭାତ ମହାପାତ୍ର ଓ ଦାଶ ବେନହୁର ।

କୋଡ଼ିଏ ଜଣଙ୍କ ଗଳ୍ପ ଓ ଡଃ ତାପସ ଚକ୍ରବର୍ତ୍ତିଙ୍କର ଓଡ଼ିଆ ଓ ବଙ୍ଗଳା ସାହିତ୍ୟ ଉପରେ ଏକ ଦୀର୍ଘ ମୁଖବନ୍ଧ ଏବଂ ଲେଖକମାନଙ୍କର ପରିଚୟ ଏ ସମସ୍ତ କାର୍ଯ୍ୟ ସେପ୍ଟେମ୍ବର ସୁଦ୍ଧା ଶେଷ ହୋଇଗଲା । ମୁଁ ପାଣ୍ଡୁଲିପି ଧରି ପୂଜା ପରେ କଲିକତା ଗଲି । ଆଜ୍‌କଲ୍‌ରେ ଅଶୋକବାବୁଙ୍କୁ ଦେଖାକଲି । ସେ ପ୍ରକାଶନ ଦାୟିତ୍ୱରେ ଥିବା ଭଦ୍ରଲୋକଙ୍କୁ ଡାକି ପଠାଇଲେ । ସେ ଆସିବା ପରେ ତାଙ୍କୁ ପାଣ୍ଡୁଲିପି ଧରାଇ ଦେଇ କହିଲେ କଲିକତା ବହିମେଳା ପୂର୍ବରୁ ପ୍ରକାଶ କର । ମନଟା ଭାରି ଖୁସି ହୋଇଗଲା । କଲିକତା ବହି ମେଳାରେ ଓଡ଼ିଆ ଗାଳ୍ପିକମାନଙ୍କର ଗଳ୍ପକୁ ନେଇ ସ୍ୱତନ୍ତ୍ର ଏକ ବହି ପ୍ରକାଶ ପାଇବା ଏହି ପ୍ରଥମ । ବହିର ନାମକରଣ ହେଲା 'ସେରା ଓଡ଼ିଆ ଗଳ୍ପ' ଅର୍ଥାତ୍ 'ଶ୍ରେଷ୍ଠ ଓଡ଼ିଆ ଗଳ୍ପ' । ୨୦୦୧ ବହିମେଳାକୁ ଆମେ ସମସ୍ତେ ଗଲୁ । ମୁଁ, ବିଭୂତିବାବୁ, ଉତ୍ତମ ଓ ଯୁଗଳବାବୁ । ଆଜକଲ୍‌ର ବିରାଟ ଷ୍ଟଲ । ନୂଆ ପ୍ରକାଶନୀ ମଧ୍ୟରେ ଆଖିରେ ପଡ଼ିଲା ଭଳି ଟଙ୍ଗା ହୋଇଛି 'ସେରା ଓଡ଼ିଆ ଗଳ୍ପ' । ଆମେ ସମସ୍ତଙ୍କ ମନ ଆନନ୍ଦରେ ଭରିଗଲା । ପ୍ରଥମଥର ପାଇଁ ଓଡ଼ିଆ ଭାଷାର ପ୍ରତିନିଧିମୂଳକ ଗଳ୍ପବହି ବଙ୍ଗଳାଭାଷାରେ ପ୍ରକାଶ ପାଇଲା । ମୁଁ ଷ୍ଟଲ ଦାୟିତ୍ୱରେ ଥିବା ବନ୍ଧୁଙ୍କୁ ପଚାରିଲି କେମିତି ବିକ୍ରି ହେଉଛି । ସେ କହିଲେ ଭଲ । ଅନ୍ତତଃ ଖାନ୍ ପଚାଶଟା ବିକ୍ରି ହଏଛେ । ଅର୍ଥାତ୍ ପଚାଶଟା କପି ବିକ୍ରି ହୋଇଛି । ମୁଁ କହିଲି ଆମକୁ ତିନି/ଚାରିଖଣ୍ଡ ଦେଇହେବ । ସେ କହିଲେ ସାଢ଼େ ଆଠଟା ବେଳକୁ ଆସନ୍ତୁ । ଯଦି ବଳିଥିବ ତେବେ ନେଇଯିବେ । ସେଦିନ ମୁଁ ଖଣ୍ଡେ ବହି ପାଇଲି । ସମସ୍ତେ ଉତ୍କଳ ଭବନକୁ ଫେରିଲୁ । ମୁଁ କଲିକତା ବହିମେଳାକୁ ପ୍ରାୟ ସସ୍ତ୍ରୀକ ଯାଇଥାଏ । ଉତ୍କଳ ଭବନର ଏକ ଭି.ଆଇ.ପି. ରୁମ୍ ମୁଁ ଭୁବନେଶ୍ୱରରୁ ହୋମ୍ ଡିପାର୍ଟମେଣ୍ଟରୁ ଆଲଟ୍‌ମେଣ୍ଟ କରି ନେଇଥାଏ । ତା'ର କାରଣ ହେଲା ଅନେକ ସମୟରେ କଲିକତାରେ ମୋର ବନ୍ଧୁମାନେ ସନ୍ଧ୍ୟାରେ ସସ୍ତ୍ରୀକ ଆସିଥା'ନ୍ତି । ତେବେ ଆମର ତିନିରାତି ଚାରିଦିନ ରହଣି ମଧ୍ୟରେ ମୁଁ ଅନେକ ବନ୍ଧୁଙ୍କ ନିକଟରୁ ରାତ୍ରଭୋଜନର ନିମନ୍ତ୍ରଣ ପାଇଥାଏ । ଏମାନଙ୍କ ମଧ୍ୟରୁ କେତେଜଣ ଆମ ସମସ୍ତଙ୍କୁ ନିମନ୍ତ୍ରଣ କରିଥା'ନ୍ତି ।

## -ମୋର କଲିକତା ସଂପର୍କ-

କଲିକତାର ବିଖ୍ୟାତ ଦାନ୍ତ ଡାକ୍ତର ବାରିନ୍ ରାୟ, ବିଖ୍ୟାତ କେ.ସି. ଦାସ ରସଗୋଲା ପରିବାରଙ୍କ ଘରକୁ ଦିନେ ଦିନେ ଯାଇ ରାତ୍ରଭୋଜନ ବା କକ୍‌ଟେଲ୍ ଡିନର କରିବା ଏକ ପ୍ରକାର ନିୟମିତ ଘଟଣାରେ ପରିଣତ ହୋଇଯାଇଥାଏ । ଏହି ଆସରରେ କଲିକତାର ଆଉ କେତେଜଣ ବିଖ୍ୟାତ ସାହିତ୍ୟିକ, ସାମ୍ବାଦିକ, କଳାକାର ପ୍ରାୟ ଯୋଗ ଦେଇଥାନ୍ତି । ଯେପରି ସମରେଶ ବସୁ, ବୁଦ୍ଧଦେବ ଗୁହ, ବିଖ୍ୟାତ ଅଭିନେତା ରବି ଘୋଷ, ଗୌରକିଶୋର

ଘୋଷ, ସାମ୍ବାଦିକ ପ୍ରଦ୍ୟୋତ ଭଦ୍ର, ଅସୀମ ମିତ୍ର, ଡାକ୍ତର ଅମିତ ରାୟ, ଡାକ୍ତର ସମୀର ବସୁ ପ୍ରମୁଖ ପ୍ରାୟ ସସ୍ତ୍ରୀକ ଯୋଗଦେଇଥାନ୍ତି । ମୋର କଲିକତା ଯିବା ଉପଲକ୍ଷରେ ଏହା ହୋଇଥାଏ । କେ.ସି. ଦାସ ପରିବାରର ମୁଖ୍ୟ ଥା'ନ୍ତି ବାରିଷ୍ଟର ରବି ଦାସ । ରବି ଦା' ଲଣ୍ଡନରୁ ବାରିଷ୍ଟରୀ ପାଶ୍ କରି ଅଳ୍ପ କିଛିଦିନ କଲିକତା ହାଇକୋର୍ଟରେ ପ୍ରାକ୍ଟିସ୍ କରିଥିଲେ । ତାଙ୍କ ସାନ ଭାଇ ନରେନ୍ ଦାସ । ସେ କେ.ସି. ଦାସ ବ୍ୟବସାୟ ଦେଖାଶୁଣା କରୁଥିଲେ ।

କଲିକତା ଗଲେ ମୁଁ ଆନନ୍ଦ ବଜାର ପତ୍ରିକା ଖବର କାଗଜ ଅଫିସ୍‌କୁ ପ୍ରାୟ ଯାଏ, ଆନନ୍ଦ ବଜାରରେ ଏନ୍.ୟୁ.ଜେ.ର ଅନେକ ବନ୍ଧୁ ଥା'ନ୍ତି । ତା' ବ୍ୟତୀତ ଗୌରକିଶୋର ଘୋଷଙ୍କ ଭଳି ବିଖ୍ୟାତ ସାମ୍ବାଦିକ ଓ ସାହିତ୍ୟିକଙ୍କ ସହ କଥାବାର୍ତ୍ତା କରିବା ପାଇଁ ମୁଖ୍ୟତଃ ଯାଏ । ଗୌର ଦା'ଙ୍କ ସହ ମୋର ପରିଚୟ ବାରିନ୍ ଦା'ଙ୍କ ଘରେ ହୋଇଥିଲା । ମତେ ଖୁବ୍ ଶ୍ରଦ୍ଧା କରୁଥିଲେ । ସେଇଠି କବି ନୀରେନ୍ଦ୍ର ନାଥ ଚକ୍ରବର୍ତ୍ତିଓ ଶକ୍ତ ଚଟ୍ଟୋପାଧ୍ୟାୟଙ୍କ ସହ ମୋର ପରିଚୟ ହୋଇଥିଲା । ପରେ ପରେ ଏହା ଘନିଷ୍ଠତାରେ ପରିଣତ ହୋଇଥିଲା । ଆନନ୍ଦ ବଜାରରେ ଆଉ ଯେଉଁ ଦୁଇଜଣ ବିଖ୍ୟାତ ଲେଖକ ଓ ସମ୍ପାଦକଙ୍କ ସହ ପରିଚୟ ହୋଇଥିଲା । ସେ ଦୁହେଁ ହେଲେ 'ଦେଶ୍'ର ସମ୍ପାଦକ ସାଗରମୟ ଘୋଷ ଏବଂ ଖ୍ୟାତନାମା କବି ଓ ଔପନ୍ୟାସିକ ସୁନିଲ ଗଙ୍ଗୋପାଧାୟ । ୧୯୮୮ରେ ସମରେଶ ବସୁଙ୍କ ପରଲୋକ ପରେ ସୁନିଲବାବୁ ମୋତେ ଟେଲିଫୋନ୍ କରି ସମରେଶ ଦା'ଙ୍କ ସମ୍ପର୍କରେ ଏକ ନିବନ୍ଧ ଲେଖି ପଠାଇବାକୁ ଅନୁରୋଧ କରିଥିଲେ । ସମରେଶ ବସୁଙ୍କୁ ବଙ୍ଗଳା ସାହିତ୍ୟ ଇତିହାସରେ ରବୀନ୍ଦ୍ର ନାଥଙ୍କ ପରେ ଶ୍ରେଷ୍ଠ ଗଦ୍ୟ ସାହିତ୍ୟିକ ରୂପେ ବର୍ଣ୍ଣନା କରାଯାଇଛି । ସମରେଶ ବସୁଙ୍କ 'ଶାମ୍ବ' ଉପନ୍ୟାସର ଓଡ଼ିଆ ଅନୁବାଦ କରି ମୁଁ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଥିଲି । 'ଶାମ୍ବ' ଉପନ୍ୟାସର ଓଡ଼ିଆ ଅନୁବାଦ ପ୍ରକାଶ କରିବା ପାଇଁ ମୋତେ ବେଶ୍ କିଛିଦିନ ହଇରାଣ ହେବାକୁ ପଡ଼ିଥିଲା । ଏ ସମ୍ପର୍କରେ ଏକ କୌତୁହଳ ଘଟଣା ରହିଛି ।

୧୯୭୯ରେ ମୋର ପତ୍ନୀ ସ୍ନେହଲତା ଓଡ଼ିଆ ସାହିତ୍ୟରେ ଏମ୍.ଏ. ପରୀକ୍ଷା ଦେଉଥିଲେ । ଓ.ଏମ୍.ଏ. ପାଠ୍ୟକ୍ରମରେ ଭାରତୀୟ ଭାଷା ସାହିତ୍ୟର ଅନୁବାଦ ଏକ ବିଷୟ ଥିଲା । ପରୀକ୍ଷାରେ ଅନୁବାଦ ପାଇଁ ଶହେ ନମ୍ବର ଥିଲା । ଆମେ ଦୁହେଁ ସ୍ଥିର କଲୁ ବଙ୍ଗଳା ଭାଷାର ଗୋଟିଏ ବହି ଅନୁବାଦ କରିବୁ । ମୁଁ କାର୍ଯ୍ୟ ଉପଲକ୍ଷରେ କଲିକତା ଯାଇଥିଲି । ଆନନ୍ଦ ପବ୍ଲିଶର୍ସର 'ସୋ'ରୁମ୍‌କୁ ଯାଇ ତା'ର ପରିଚାଳକ ବାଦଲ ଘୋଷଙ୍କୁ ଗୋଟିଏ ଛୋଟ ଅଥଚ ଭଲ ବଙ୍ଗଳା ବହି ବାଛିଦେବା ପାଇଁ ଅନୁରୋଧ କଲି । ସେ କିଛି ନକହି ବହି ର୍‍ୟାକ୍‌ରୁ ଏକ ବହି ନେଇ ଆସି ମୋତେ ଦେଲେ । ମୁଁ ବହିଟି ଦେଖିଲି । ନାଁ 'ଶାମ୍ବ' ଏବଂ ଲେଖକ କାଳକୂଟ । କାଳକୂଟ ହେଉଛି ସମରେଶ ବସୁଙ୍କ ଛଦ୍ମନାମ । ଛୋଟ ବହି । ଶହେ ଦଶପୃଷ୍ଠା । ସେହିବର୍ଷ ତାହା କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପାଇଥାଏ । ମୋ ମନ ପାଇଗଲା । ମୁଁ ତିନିଖଣ୍ଡ ବହି କିଣି ଦାମ୍ ଦେଇ ଉତ୍କଳ ଭବନ ଫେରିଲି ।

ମୋ ସ୍ତ୍ରୀ ମଧ୍ୟ ବଙ୍ଗଳା ଜାଣନ୍ତି । ଶାମ୍ବ ବହିର ଅନୁବାଦ କରି ଏମ୍.ଏ. ପରୀକ୍ଷାରେ ଦାଖଲ ହେଲା । ଭଲ ନମ୍ବର ମଧ୍ୟ ମିଳିଲା । ମୁଁ ତା'ପରେ ସେ ବହିକୁ ପ୍ରକାଶ କରିବାକୁ ଅନୁମତି ପାଇଁ ସମରେଶ ବସୁଙ୍କୁ ତିନିଚାରୋଟି ଚିଠି ଲେଖିଲି । ମାତ୍ର କୌଣସି ଜବାବ୍ ପାଇଲି ନାହିଁ । ଶେଷରେ ବହିଟି ପ୍ରକାଶ ନକରିବାକୁ ମନସ୍ଥ କରି ଏକ କଡ଼ା ଚିଠି ଲେଖିଲି । କିଛିଦିନ ପରେ ସମ୍ଭବତଃ ୧୯୮୭ ମସିହାରେ କଲିକତା ବହିମେଳା ବେଳେ କଲିକତା ଯାଇଥିଲି । ସେଇଠି ବାରିନ୍ ଦା'ଙ୍କୁ ଏ ବିଷୟ କହିଲି । ବାରିନ୍ ଦା' କହିଲେ ରବି ଦାସ(କେ.ସି. ଦାସ ରସଗୋଲା ଖ୍ୟାତ)ଙ୍କୁ କହିବା ପାଇଁ । ମୁଁ ରବି ଦା'ଙ୍କୁ ଫୋନ୍ କଲି । ସେ କହିଲେ ତୁମେ କାଲି ଅଛ ? ମୁଁ ହଁ କଲି । ସେ ତା'ପରେ କହିଲେ ଉତ୍କଳ ଭବନରେ ଏକ ପାର୍ଟିଆରେଞ୍ଜ୍ କରିବା ପାଇଁ । କିଛି ସମୟ ପରେ ନରେନ୍ ଦା' (ରବି ଦାସଙ୍କ ସାନ ଭାଇ)

ଫୋନ୍ କରି କହିଲେ ବରେନ୍ ବାବୁ, ଉତ୍କଳ ଭବନରେ ରୋଷେଇ ଭଲ ନୁହେଁ । ମୁଁ କାଲି ସନ୍ଧ୍ୟାରେ ୮/୧୦ଜଣଙ୍କ ପାଇଁ ପ୍ରଥମେ ସ୍ନାକ୍ସ ଏବଂ ପରେ ଡିନର ପଠାଇଦେବି । କେବଳ ଦି' ତିନିଟା ପିଟର ସ୍କଚ୍ ହୁଇସ୍କି ମଗାଇ ରଖିଥିବ । ପରଦିନ ମୁଁ ପ୍ରକୃତରେ ଭୁବନେଶ୍ୱର ଫେରିବା କଥା । ପୁରୀ ଏକ୍ସପ୍ରେସ୍ ସେତେବେଳେ ରାତି ୧୧ଟା ୧୫ ମିନିଟ୍‌ରେ ଛାଡୁଥିଲା । ତେଣୁ ସାଢ଼େ ଦଶଟା ସୁଦ୍ଧା ଷ୍ଟେସନ ବାହାରିବାକୁ ହେବ । ମୁଁ ସେ ବିଷୟ ବାରିନ୍ ଦା'ଙ୍କୁ କହିଲି । ସେ କହିଲେ ଯେ ପ୍ରୋବଲେମ୍ । ତେବେ ତୁମେ ଗଲେ ସେ ରୁମ୍‌ରେ ଆମେ ବସି ଖାଇବା-ପିଇବାରେ କିଛି ଅସୁବିଧା ହେବନାହିଁ ତ ? ମୁଁ କହିଲି ନା, ସେ ବ୍ୟବସ୍ଥା ମୁଁ କରିଦେବି । ସବୁ ଠିକ୍ ହୋଇଗଲା । ମାତ୍ର ତିନୋଟି ପିଟର ସ୍କଚ୍ କିଣିବା ପାଇଁ ମୋ ପାଖରେ ଟଙ୍କା ନଥିଲା । ଷ୍ଟେଟ୍‌ସମ୍ୟାନ୍ ଅଫିସ୍ ଗଲି । ସେଦିନ ରବିବାର ଥିବାରୁ କ୍ୟାସ୍ ସେକ୍ସନ ବନ୍ଦ । ଆଡକାଲ୍ ଗଲି । ଅସୀମବାବୁ ଦେଖାହେଲେ । ସବୁକଥା କହିଲି । ସେ କହିଲେ ମାଲିକଙ୍କ ପୁତୁରା ମୋହର ଘୋଷ ଅଛନ୍ତି । ସେ କମ୍ପାନୀର ଜଏଣ୍ଟ ମ୍ୟାନେଜିଂ ଡିରେକ୍ଟର । ତାଙ୍କୁ କହିଲେ ଆଡ଼ଭାନ୍ସ କରିଦେବେ । ମୋତେ ନେଇ ଅସୀମବାବୁ ମୋହାର ଘୋଷଙ୍କ ପାଖକୁ ଗଲେ । ମୋର ଘୋଷ ମୋତେ ଦେଖି ଠିଆ ହୋଇପଡ଼ି କରମର୍ଦ୍ଦନ କଲେ । ତା'ପରେ ଅସୀମବାବୁ ତାଙ୍କୁ ସବୁ କହିଲେ । ସେ କହିଲେ ଆପଣ ଟଙ୍କା ଆଡ଼ଭାନ୍ସ ନେବା ଦରକାର ନାହିଁ । ଏଇମିତି ମୋ ଉପରେ ଆପଣଙ୍କ ଟଙ୍କା ବାକି ଅଛି । ସେ ବିଜ୍ଞାପନ ସେକ୍ସନରୁ ନିର୍ମଳେନ୍ଦୁ ନାମରେ ଜଣେବାବୁଙ୍କୁ ଡାକିଲେ । ତାଙ୍କୁ କହିଲେ ଆଜି ସନ୍ଧ୍ୟାରେ ତିନି/ଚାରୋଟି ପିଟର ସ୍କଚ୍ ଏବଂ ଭଲ ସିଗାରେଟ୍ ପାଞ୍ଚ/ଛ' ପ୍ୟାକେଟ୍ ଏବଂ ସୋଡ଼ା ଧରି ଉତ୍କଳ ଭବନକୁ ଯିବେ । ଧଲ ସାହେବଙ୍କ ପାର୍ଟିରେ ଉପସ୍ଥିତ ରହି ଆଉ ଯାହା ଦରକାର ତାହା ବ୍ୟବସ୍ଥା କରିବେ । ମୁଁ ମୋହରବାବୁଙ୍କ କଥା ଶୁଣି ରୀତିମତ ଆଶ୍ଚର୍ଯ୍ୟ ହୋଇଗଲି । ଏତେଟା ଆଶା କରି ନଥିଲି । ମୋହରବାବୁ ଅସୀମ ବାବୁଙ୍କୁ କହିଲେ ମିଃ ଧଲ ମୋ ପାଇଁ ଏବଂ ମୋର ବନ୍ଧୁ ଗୋଏଙ୍କା ପାଇଁ ଭୁବନେଶ୍ୱରରେ ଯାହା କରିଛନ୍ତି ମୁଁ ତାଙ୍କ ପାଖରେ ଋଣୀ । ସେ ନଥିଲେ ମୁଁ ବା ଗୋଏଙ୍କା କଲିକତା ଆସିବା ସମ୍ଭବ ହୋଇନଥାନ୍ତା । ମୁଁ କହିଲି ନା' ମୋହରବାବୁ ସେ କିଛି ନୁହେଁ । ସେ ହସିଦେଇ କହିଲେ ଆପଣ ନଥିଲେ ସେଦିନ ଗୋପାଳପୁରରୁ ଯେଉଁ ଟାକ୍ସିରେ ଭୁବନେଶ୍ୱର ଆସିଲି ତା' ଭଡ଼ା ମଧ୍ୟ ମୁଁ ଦେଇପାରି ନଥା'ନ୍ତି । କଲିକତା ପାଇଁ ପ୍ଲେନ୍ ଟିକେଟ୍ ଏବଂ ହୋଟେଲ୍ ସ୍ୱସ୍ତିରେ ଆମ ରହଣୀ ଏସବୁ କିଏ କିରପାରିଥା'ନ୍ତା ? ମୁଁ କହିଲି ଆପଣତ ଏସବୁ ପାଇଁ ଟଙ୍କା ପଠାଇ ଦେଇଥିଲେ । ମୁଁ ଆଉ ଅଧିକା କ'ଣ କଲି ? ମୋହରବାବୁ କହିଲେ ଆପଣ ନଥିଲେ ଭୁବନେଶ୍ୱର ଭଳି ଗୋଟେ ସ୍ଥାନରେ ଯେଉଁଠି ମୋର କେହି ଜଣାଶୁଣା ନାହାନ୍ତି ସେଠି ମୁଁ ମୋ ସ୍ତ୍ରୀ ଏବଂ ମୋ ବନ୍ଧୁ ସଂଜୟ ଗୋଏଙ୍କା ଏବଂ ତା' ସ୍ତ୍ରୀ କ'ଣ କରିଥା'ନ୍ତୁ ? ଏ ତ କିଛି ନୁହେଁ । ମୁଁ ଆଉକିଛି କହିଲି ନାହିଁ । ଚା' ଖାଇ ବିଦାୟ ନେଲି । ସେଦିନ ରାତିରେ ପାର୍ଟିଟା ଚମତ୍କାର ଜମିଲା । ରବି ଦା' ସମରେଶ ବସୁଙ୍କୁ ଧରି ମୋ ରୁମ୍‌କୁ ଆସି କହିଲେ, ନେ- ବରେନ୍ ତୋ ଆସାମୀ ଆସିଗଲା ।

## -ସମରେଶ ବସୁ ଓ ଉତ୍କଳ ଭବନରେ ପାର୍ଟି-

ସମରେଶ ବସୁଙ୍କୁ ମୁଁ ସେଇ ପ୍ରଥମେ ଦେଖିଲି । ସାଧାରଣ ଉଚ୍ଚତାର ଶୀର୍ଣ୍ଣକାୟ ମଣିଷ । ମୁଁ ନମସ୍କାର କରିବା ମାତ୍ରେ ମୋତେ ଧରି ପକାଇ କହିଲେ ବରେନ୍ ବାବୁ ଏଭଳି ଚିଠି ଆପଣ ଲେଖିଛନ୍ତି ଯେ ମୁଁ ଏଠାକୁ ନ ଆସି ରହିପାରିଲି ନାହିଁ । ଚିଠି ପଢ଼ି ମନେ ହେଉଥିଲା ଆପଣ ବଡ଼ କଡ଼ା ମିଜାଜ୍‌ର ଲୋକ । ତେଣୁ ରବି ମୋତେ ଯେତେବେଳେ ଏଠାକୁ ଆସି ଆପଣଙ୍କ ପାର୍ଟିରେ ଯୋଗ ଦେବାକୁ କହିଲା ମୁଁ ବିଚାରିଲି ଯାଇ ଦେଖେ ବରେନ୍ ଧଲ୍ କିପରି ଲୋକ । ମୁଁ ସମରେଶ ବସୁଙ୍କ କଥା ଶୁଣି କହିଲି ଆପଣଙ୍କ ଭଳି ପ୍ରଖ୍ୟାତ ଲୋକଙ୍କୁ ଦେଖିବା ପରମ ଭାଗ୍ୟର

ବିଷୟ । ଆପଣ ଦୟାକରି ମୋ ଚିଠି କଥା ଭୁଲିଯିବେ । ଚିଠିରେ ପ୍ରୟୋଗ କରିଥିବା ଭାଷା ପାଇଁ ମୁଁ ଲଜ୍ଜିତ । ସମରେଶବାବୁ ମୋତେ ମୋ ଲେଟର ପ୍ୟାଡ୍‌ଟା ଦେବାକୁ କହିଲେ । ମୁଁ ଲେଟର ପ୍ୟାଡ୍‌ଟା ମୋ ବାକ୍ସରୁ ବାହାର କରି ଦେଲି । ସେ ସାଙ୍ଗେ ସାଙ୍ଗେ ଲେଖିଦେଲେ 'ମୋର ଶାମ୍ବ ବହିର ଓଡ଼ିଆ ଅନୁବାଦ ଓ ପ୍ରକାଶନ ପାଇଁ ମୁଁ ବରେନ୍ଦ୍ରକୃଷ୍ଣ ଧଳଙ୍କୁ ଅନୁମତି ଦେଲି ।' ସମରେଶ ବସୁ ।

ଯେଉଁ ଦୁଇଟି ବାକ୍ୟ ପାଇଁ ମୁଁ ଗତବର୍ଷେ ହେବ ଉଦ୍ୟମ କରି ଆସୁଥିଲି ତାହା କେତେଟା ମିନିଟ୍‌ରେ ସମ୍ଭବ ହେଲା । ଲେଟରପ୍ୟାଡ୍‌କୁ ବାକ୍ସରେ ରଖି ମୁଁ ଆସି ସମରେଶ ଦା'ଙ୍କ ପାଖରେ ବସିଲି । ବୁଢ଼ୁ(ଡାକ୍ତର ଅମିତ ରାୟ) ମୋ ପକ୍ଷରୁ ସମସ୍ତଙ୍କୁ ଡ୍ରିଙ୍କ୍‌ସ ପରିବେଷଣ କରୁଥିଲେ । ଆଜ୍‌କାଲ୍‌ର ନିର୍ମଳେନ୍ଦୁ ସମସ୍ତଙ୍କୁ ଇଣ୍ଡିଆ କିଙ୍ଗ୍ସ ସିଗାରେଟ୍ ଯାଚୁଥିଲେ । ପାର୍ଟିଜମିଗଲା । ନିର୍ମଳେନ୍ଦୁ ମୋତେ ଚୁପ୍ ଚୁପ୍ ପଚାରିଲେ ବରେନ୍‌ବାବୁ ଆପଣଙ୍କର କଲିକତାରେ ଏତେ ବଡ଼ବଡ଼ ଲୋକ ବନ୍ଧୁ ମୁଁ ଜାଣିନଥିଲି । ଯାହାହେଉ ଆପଣଙ୍କ ଯୋଗୁଁ ମୁଁ ଏତେ ବଡ଼ ବଡ଼ ସାହିତ୍ୟିକ ଅଭିନେତା ଆଉ ଡାକ୍ତରଙ୍କୁ ଦେଖିପାରିଲି । କାଲି ମୋହର ବାବୁଙ୍କୁ ସବୁ କହିବି ।

ମୁଁ ରାତି ସାଢ଼େ ଦଶଟାରେ ଷ୍ଟେସନ୍ ବାହାରିଲି । ବୁଢ଼ୁ, ସମୀର ବସୁ ଆଉ ଅସୀମବାବୁଙ୍କୁ ପାର୍ଟିଦାୟିତ୍ୱ ଦେଲି । ଉତ୍କଳ ଭବନରେ ରାତି ଡ୍ୟୁଟିରେ ଥିବା ଦୁଇଜଣ ଲୋକଙ୍କୁ ପଚାଶ ଟଙ୍କା ଦେଇ ସମସ୍ତଙ୍କୁ ଠିକ୍ ଠିକ୍ ଯିଏ ଯେତେବେଳେ ଚାହିଁବ ବିଦା କରିବା ପାଇଁ କହିଲି । ହାଓଡ଼ା-ପୁରୀ ଏକ୍ସପ୍ରେସ୍‌ରେ ଆସି ଠିକ୍ ସମୟରେ ବସିଲି ।

ତା' ପରଦିନ ସକାଳ ସାଢ଼େ ୬ଟାର ଭୁବନେଶ୍ୱରରେ ପହଞ୍ଚି ଘରକୁ ଆସିଲି । ଦିନ ସାଢ଼େ ଦଶଟା ବେଳକୁ ବୁଢ଼ୁକୁ ଫୋନ୍ କଲି । ବୁଢ଼ୁ କହିଲା ଦାଦା, କାଲି ପାର୍ଟିଟା ଚମତ୍କାର ଜମିଗଲା । ତମେ ଯିବା ପରେପରେ ବୁଦ୍ଧଦେବ ଗୁହ ପହଞ୍ଚିଲେ । ପାର୍ଟିଆହୁରି ଜମିଲା । କିନ୍ତୁ ରାତି ସାଢ଼େ ବାରଟାରେ ବଡ଼ ବିପଦ ଦେଖାଦେଲା । ସମରେଶ ଦା' ଟିକେ ଅଧିକ ପିଇଦେଲେ । ଫଳରେ ହାଈାନି(ଶ୍ୱାସକଷ୍ଟ) ଆରମ୍ଭ ହୋଇଗଲା । ତାଙ୍କୁ ଇନ୍‌ହେଲର୍ ଦେଇ ଟିକେ ସୁସ୍ଥ କରି ତାଙ୍କ ଗାଡ଼ିରେ ଘରକୁ ପଠାଇଦେଲୁ । ରାତି ଦି'ଟା ଯାଏ ପାର୍ଟିଚାଲିଲା । ଚାରିଟା ବୋତଲ ଶେଷ ହୋଇଗଲା । ଯାହାହେଉ ତମ ଆବସେନ୍ସ ଫିଲ୍ ହେଲା । ନେକ୍ସଟାଇମ୍ ତମେ ରହିବା ଭିତରେ ପାର୍ଟିହେବ । ମୁଁ ପଚାରିଲି ସମସ୍ତେ ଖୁସ୍ ତ ? ବୁଢ଼ୁ କହିଲା ଖୁସି ନହୋଇ ଉପାୟ ଅଛି ? ତମେ ଟିକେ ସମରେଶ ଦା'ଙ୍କୁ ଫୋନ୍ କରିଦିଅ ।

ମୁଁ ସମରେଶ ବସୁଙ୍କୁ ଫୋନ୍ କଲି । ସେ ଫୋନ୍ ଧରିଲେ । ମୋ ନାଁ ଶୁଣି କହିଲେ ବରେନ୍‌ବାବୁ ଆପଣଙ୍କ ସାଙ୍ଗରେ ମୋର ଆଗରୁ ପରିଚୟ ହେବା ଉଚିତ୍ ଥିଲା । କାଲି ଆପଣ ଏତେ ଚମତ୍କାର ପାର୍ଟିଦେଲେ ତା' ବାସ୍ତବରେ ଅନବଦ୍ୟ । ମୁଁ କହିଲି ଦାଦା ଆପଣଙ୍କ ଭଳି ଲୋକଙ୍କ ସହ ପରିଚୟ ଆଉ ବନ୍ଧୁତା କେବଳ ଭାଗ୍ୟରେ ଥିଲେ ମିଳେ । ସେ ହସିହସି କହିଲେ ଓଡ଼ିଶାର ମହାରାଜାଙ୍କ ସହ ବନ୍ଧୁତା କେତେଜଣଙ୍କ ଭାଗ୍ୟରେ ଯୁଟେ । ତା'ପରେ ତାଙ୍କ ଅସୁସ୍ଥତା କଥା ପଚାରିଲି । ସେ କହିଲେ ଶରୀର ଥିଲେ ରୋଗ ଆସେ । ସେ କିଛି ନୁହେଁ । ମୁଁ ଏବେ ଠିକ୍ ଅଛି । ଟେଲିଫୋନ୍ ପାଇଁ ଅଶେଷ ଧନ୍ୟବାଦ ।

ଭୁବନେଶ୍ୱରରେ ମୁଁ ଅନ୍ୟ କାମରେ ବ୍ୟସ୍ତ ରହିଗଲି । ଆମ ପୁସ୍ତକମେଳା ଫେବୃଆରୀ ୨୬ରୁ ମାର୍ଚ୍ଚ ୭ ତାରିଖ । ତା'ର ଆୟୋଜନରେ ଲାଗି ପଡ଼ିଲି । ସେଥର ପ୍ରଥମ ଥର ପାଇଁ ଆମେ ସ୍ୱାଧୀନ ଭାବେ ଏହାର ଆୟୋଜନ କରୁଥିଲୁ । ସୂଚନା ଭବନ ପଛପଟ ପଡ଼ିଆରେ ଏହାର ଆୟୋଜନ ହୋଇଥିଲା । ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ

ପଟ୍ଟନାୟକ ଏହାକୁ ଉଦ୍‌ଘାଟନ କରିବାର କାର୍ଯ୍ୟକ୍ରମ ଥିଲା । ଆମେ ଲାଗିପଡ଼ିଲୁ କାମରେ । ଶ୍ରୀ ଚିତ୍ରାଳୟ ଟେଣ୍ଟହାଉସ୍ ଷ୍ଟଲ ତିଆରି ଦାୟିତ୍ୱରେ ଥିଲେ । କୃଷ୍ଣ ମହାରଣା ଇଲେକ୍ଟ୍ରି ସାଜସଜ୍ଜା ଦାୟିତ୍ୱେ ଥିଲେ । ଷ୍ଟଲ୍‌ଗୁଡ଼ିକ ମିଠେଇ ଦୋକାନ ଭଳି ଥାକ ଥାକ ଆକାରରେ ତିଆରି ହୋଇଥିଲା । ମୋଟ୍ ଷାଠିଏଟି ଷ୍ଟଲ ତିଆରି ହୋଇଥିଲା । ପୂର୍ବରୁ ପୁସ୍ତକମେଳା ସମ୍ପର୍କରେ ଆଲୋଚନା କରିଛି । ତେବେ ପୁସ୍ତକମେଳାର ସବୁ ଦାୟିତ୍ୱ ମୋ ଉପରେ ଥିଲା । ତେଣୁ ଷ୍ଟଲ ବନ୍ଧାଠାରୁ ଲାଇଟ୍ ଲଗାହେବା ପର୍ଯ୍ୟନ୍ତ ମୁଁ ସବୁକାମ ତଦାରଖ କରୁଥିଲି । ଷ୍ଟଲ ଭଡ଼ା ଆମେ ଛ'ଶହ ଟଙ୍କା ରଖିଥିଲୁ । ମାତ୍ର ଗୋଟିଏ ଗୋଟିଏ ଷ୍ଟଲ୍ ପାଇଁ (୧୦ଫୁଟରେ ୧୦ଫୁଟ) ବାରଶହ ଟଙ୍କା ପଡୁଥାଏ । ତେଣୁ ଆମେ ସ୍ଥିର କରିଥିଲୁ । ଷାଠିଏଟି ଷ୍ଟଲର ଅବଶିଷ୍ଟ ଅର୍ଥ ଆମେ ବହନ କରିବୁ । ସେତେବେଳେ ଲେଖକ ସାମ୍ମୁଖ୍ୟର ପଚାଶଜଣ ସଦସ୍ୟ । ଆମେ ପ୍ରାୟ ହଜାରେ ଟଙ୍କା ଲେଖାଏଁ କିଏ ପାଞ୍ଚଶହ ଏହିପରି ଦେଲେ ।

ମେଳା ଶେଷ ହେଲା । ଆମେ ସମସ୍ତେ ଉତ୍ସାହିତ ହୋଇ ପଡ଼ିଲୁ । ଲୋକେ ମଧ୍ୟ ପ୍ରଥମ ବହିମେଳାକୁ ତାରିଫ୍ କଲେ । ଟଙ୍କା ପଇସା ଆଦାୟ କରି ସବୁ ବାକି ବୁକ୍‌ର ତୁଟାତୁଟି କରିଦେଲୁ । ଅପେକ୍ଷା କଲୁ ପର ବର୍ଷକୁ ।

ସବୁକାମ ଶେଷ ହେବାପରେ ମୋର 'ଶାମ୍ବ' କଥା ମନେ ପଡ଼ିଲା । 'ଶାମ୍ବ' ଅନୁବାଦ କରି ମୁଁ ହାତରେ ଲେଖିଥିଲି । ତାକୁ ଓଡ଼ିଆରେ ଟାଇପ୍ କରିବା ପାଇଁ ସ୍ୱପ୍ନେଶ୍ୱର ପଣ୍ଡା ନାମରେ ଜଣେ ବନ୍ଧୁଙ୍କୁ ଦେଲି । ପଣ୍ଡାଥିଲେ ଜଣେ ଷ୍ଟେନୋ । ସେତେବେଳେ ଓଡ଼ିଶା ସରକାରରେ ସବୁକାମ ଓଡ଼ିଆରେ କରିବା ପାଇଁ ବିଧାନସଭାରେ ୧୯୮୫ ମସିହାରେ ଏକ ଆଇନ୍ ଓ ନିୟମାବଳୀ ଗୃହୀତ ହୋଇଥିଲା । ସବୁ ଷ୍ଟେନୋଗ୍ରାଫର ଓ ଟାଇପିଷ୍ଟ ଓଡ଼ିଆ ଟାଇପ୍ ଶିଖିଲେ । ପଣ୍ଡାବାବୁ ମଧ୍ୟ ଓଡ଼ିଆ ଟାଇପ୍ ଶିଖିଥିଲେ । ସେ ସଂସ୍କୃତରେ ବି.ଏ. ପାଶ୍ କରିଥିବାରୁ ତାଙ୍କର ଓଡ଼ିଆ ମଧ୍ୟ ଶୁଦ୍ଧ ଓ ନିର୍ଭୁଲ । ପ୍ରତିପୃଷ୍ଠା ପାଇଁ ତାଙ୍କୁ ଦୁଇଟଙ୍କା ଲେଖାଏଁ ଦେଇଥିଲି । ମୋଟ୍ ଟାଇପ୍ ପୃଷ୍ଠା ହୋଇଥିଲା ଶହେ ଚାଳିଶ ପୃଷ୍ଠା । ସବୁ କାମ ଶେଷ କରି ବନ୍ଧେଇ କରିବାକୁ ତିନିମାସ ଲାଗିଗଲା । ତିନୋଟି କପି କରିଥିଲି । ପାଣ୍ଡୁଲିପି ପ୍ରସ୍ତୁତ ହୋଇଯିବା ପରେ ତାକୁ ପ୍ରକାଶ କରିବା ପାଇଁ ପ୍ରକାଶନ ଖୋଜିଲି ।

ଭୁବନେଶ୍ୱର ଅଶୋକ ନଗର ବାଟା ଦୋକାନ ପାଖରେ ବୁକ୍‌ଲ୍ୟାଣ୍ଡ ଇଣ୍ଟରନ୍ୟାସନାଲ୍ ନାମରେ ଏକ ବହି ଓ ପତ୍ରିକା ଦୋକାନ ଥିଲା । ତା'ର ମାଲିକ ଆଶିଷ ମିତ୍ର ମୋର ଜଣେ ବନ୍ଧୁ । ଅତ୍ୟନ୍ତ ସଜ୍ଜନ ବ୍ୟକ୍ତି । ସେ ବହି ଦୋକାନ ସାଙ୍ଗକୁ ଆନନ୍ଦବଜାର ପତ୍ରିକା ଓ ଟେଲିଗ୍ରାଫ୍‌ର ଭୁବନେଶ୍ୱର ଏଜେଣ୍ଟ ଥିଲେ । ମୁଁ ଅଧିକାଂଶ ଦିନ ସନ୍ଧ୍ୟାବେଳେ ତାଙ୍କ ଦୋକାନକୁ ଯାଇ କାଗଜ ପଢ଼େ । 'ଶାମ୍ବ' ପାଣ୍ଡୁଲିପି ପ୍ରସ୍ତୁତ ହୋଇଯିବା ପରେ ଦିନେ ତାଙ୍କୁ କଥାପ୍ରସଙ୍ଗରେ ଏହାକହି ସମରେଶ ବସୁ ପ୍ରକାଶ ପାଇଁ ଅନୁମତି ଦେଇଥିବା କହିଲି । ସେ ସାଙ୍ଗେସାଙ୍ଗେ ମୋତେ କହିଲେ ଆପଣ ସେ ବହି ମୋତେ ଦିଅନ୍ତୁ । ମୁଁ ପ୍ରକାଶ କରିବି । ସେ ତାଙ୍କ ଦୋକାନରେ ମୁଖ୍ୟତଃ ବଙ୍ଗଳା ବହି ରଖୁଥିଲେ । କିଛି ଓଡ଼ିଆ ବହି ମଧ୍ୟ ପ୍ରକାଶ କରିଥିଲେ । ଅତି ଆଗ୍ରହର ସହ ସେ 'ଶାମ୍ବ' ବହି ପ୍ରକାଶନ ଦାୟିତ୍ୱ ନେଲେ । ସବୁକାମ ହେଉହେଉ ୧୯୮୭ ମସିହା ଭୁବନେଶ୍ୱର ପୁସ୍ତକମେଳା ଶେଷ ହୋଇଗଲା ।

୧୯୮୮ରେ ଶାମ୍ବ ପ୍ରକାଶ ପାଇଲା । ସେହିବର୍ଷ ମୋର ଆଉ ଗୋଟିଏ କ୍ଷୁଦ୍ରଗଳ୍ପ ସଂକଳନ 'କ୍ଳାନ୍ତ ନକ୍ଷତ୍ର' ମଧ୍ୟ ପ୍ରକାଶ ପାଇଲା । 'ଶାମ୍ବ' ମୋଟ୍ ୧୧୦ ପୃଷ୍ଠାର ବହି । ଦାମ୍ ରଖାଯାଇଥିଲା କୋଡ଼ିଏ ଟଙ୍କା । କ୍ଳାନ୍ତ ନକ୍ଷତ୍ର ପ୍ରକାଶ କରିଥିଲେ କଟକ ବିନୋଦ ବିହାରୀର ବୁକ୍ସ ଏଣ୍ଡ ବୁକ୍ସ ପ୍ରକାଶନ ସଂସ୍ଥା । ଭୁବନେଶ୍ୱର ପୁସ୍ତକମେଳା ଫେବୃଆରୀ ୨୬ ତାରିଖରେ ଆରମ୍ଭ ହେବା ପୂର୍ବରୁ ଏ ବହି ଦୁଇଟି ପ୍ରକାଶ ପାଇଥିଲା । ସେହିବର୍ଷ ମୁଁ ସମରେଶ

ବସୁଙ୍କୁ ଭୁବନେଶ୍ୱର ପୁସ୍ତକମେଳାର ମୁଖ୍ୟ ଅତିଥି କରି ନିମନ୍ତ୍ରଣ କରିଥିଲି । ସମରେଶ ଦା' ଅସୁସ୍ଥ ଥିଲେ । ମୋତେ କହିଲେ ମୋର ଭୁବନେଶ୍ୱର ଯିବାପାଇଁ ଇଚ୍ଛା, ମୋ ସାଙ୍ଗରେ ମୋର ସ୍ତ୍ରୀ ଏବଂ ଜଣେ ଡାକ୍ତର ଯିବେ । ଆମପାଇଁ ପ୍ଲେନ୍ ଟିକେଟ୍ କରିଦିଅ । ମୁଁ ବୁଝୁ (ଡକ୍ଟର ଅମିତ ରାୟ)କୁ ପ୍ଲେନ୍ ଟିକେଟ୍ କରିଦେବାପାଇଁ କହିଲି । ସେ କହିଲା ମୁଁ ସମସ୍ତଙ୍କୁ ପ୍ଲେନ୍‌ରେ ପଠାଇ ଦେଉଛି । ମୁଖ୍ୟମନ୍ତ୍ରୀ ଜାନକୀବାବୁଙ୍କୁ ସମରେଶ ବସୁ ଆସିବା କଥା କହିଲି । ସେ ସମରେଶବାବୁଙ୍କ ଅନେକ ନଭେଲ୍ ପଢ଼ିଥିଲେ । ତାଙ୍କୁ ଷ୍ଟେଟ୍‌ଗେଷ୍ଟ ରୂପେ ରଖିବା ପାଇଁ ସେ ଅର୍ଡ଼ର କରିଦେଲେ ।

ସମରେଶ ବସୁ ଭୁବନେଶ୍ୱର ଆସିଲେ । ବିମାନଘାଟିରେ ତାଙ୍କୁ ମୁଁ ସ୍ୱାଗତ କଲି । ମୋତେ ଦେଖି ହସିହସି କହିଲେ ବରେନ୍ ଏବେଠାରୁ ମୁଁ ଭୁବନେଶ୍ୱରରେ ରହିବା ପର୍ଯ୍ୟନ୍ତ ମୋର ଠିକଣା ହୋଇଯିବ କ୍ୟାରଫ୍ ବରେନ୍ଦ୍ର କୃଷ୍ଣ ଧଳ । ଭାରି ଭଲ ଲାଗୁଛି ଭୁବନେଶ୍ୱର ଆସି । ଆମ ମେଳା ଉଦ୍‌ଘାଟନର ଦିନକ ପୂର୍ବରୁ ସେ ଆସିଥିଲେ । ଗେଷ୍ଟ ହାଉସ୍‌ରେ ତାଙ୍କ ପାଇଁ ଏକ ଭି.ଆଇ.ପି. ରୁମ୍ ଏବଂ ଡାକ୍ତରଙ୍କ ପାଇଁ ଅନ୍ୟ ଏକ କୋଠରୀରେ ବ୍ୟବସ୍ଥା କରାଗଲା ।

ପରଦିନ ଭୁବନେଶ୍ୱର ପୁସ୍ତକମେଳା ଆରମ୍ଭ ହେଲା । ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଉଦ୍‌ଘାଟକ ଓ ସମରେଶ ବସୁ ମୁଖ୍ୟ ଅତିଥି ରୂପେ ଯୋଗଦେଲେ । ମୋର ପ୍ରକାଶ ପାଇଥିବା ଦୁଇଟି ବହି 'ଶାମ୍ବ' ଓ 'କ୍ଲାନ୍ତ ନକ୍ଷତ୍ର' ସେଇ ଉତ୍ସବରେ ଉନ୍ମୋଚନ ହେଲା । ସମରେଶ ବସୁ ମୋର ଗଳ୍ପ ସଂକଳନ 'କ୍ଲାନ୍ତ ନକ୍ଷତ୍ର' ଏବଂ ଜାନକୀବାବୁ 'ଶାମ୍ବ'ର ଅନୁବାଦ ପୁସ୍ତକ ଉନ୍ମୋଚନ କଲେ । ପୁସ୍ତକ ମେଳାରେ ଏହି ଉଭୟ ବହିର ପ୍ରକାଶକ ବୁକ୍ସ ଏଣ୍ଡ ବୁକ୍ସ ଓ ବୁକ୍‌ଲ୍ୟାଣ୍ଡ୍ ଇଣ୍ଟରନ୍ୟାସ୍‌ନାଲ୍ ସେମାନଙ୍କ ଷ୍ଟଲ୍ ଖୋଲିଥିଲେ ।

ଉଦ୍‌ଘାଟନ ଉତ୍ସବ ଶେଷ ହେଲା । ସେଦିନ ସକାଳେ କଲିକତାରୁ ବୁଝୁ, ଡାକ୍ତର ସମୀର ବସୁ, ତାଙ୍କ ପତ୍ନୀ ସବିତା ବସୁ ସମସ୍ତେ ଭୁବନେଶ୍ୱରରେ ଆସି ପହଞ୍ଚିଲେ । ସମସ୍ତଙ୍କୁସେଇ ଷ୍ଟେଟ ଗେଷ୍ଟ ହାଉସ୍‌ରେ ମଧ୍ୟ ରହିବାର ବ୍ୟବସ୍ଥା କଲି । ମୁଁ ସେଦିନ ଆଉ ରାତିରେ ଗେଷ୍ଟ ହାଉସ୍ ଯାଇନି । ସକାଳୁ ସକାଳୁ ବୁଝୁ ଫୋନ୍ କଲା ଦାଦା ଜଲ୍‌ଦି ଆସନ୍ତୁ । ସମରେଶ ଦା ଅସୁସ୍ଥ । ମୁଁ ପଚାରିଲି କ'ଣ ହୋଇଛି ? ସେ କହିଲା ତମେ ଆସନା ଆଗେ । ମୁଁ ବ୍ୟସ୍ତ ହୋଇ ସାଙ୍ଗେସାଙ୍ଗେ ପ୍ୟାଣ୍ଟ୍ ସାର୍ଟ ପିନ୍ଧି ସ୍କୁଟର ଧରି ଗେଷ୍ଟହାଉସ୍ ଗଲି । ସେଠି ଶୁଣିଲି ସମରେଶ ଦା'ଙ୍କ ଶ୍ୱାସକଷ୍ଟ ହୋଇଛି । ନିଶ୍ୱାସ ନେବାକୁ କଷ୍ଟ ହେଉଛି । ତାଙ୍କ ସାଙ୍ଗରେ ଆସିଥିବା ଡାକ୍ତର କଲ୍ୟାଣ ବସୁ କହିଲେ ସାଙ୍ଗେସାଙ୍ଗେ ଅକ୍ସିଜେନ୍ ଦେବାକୁ ହେବ । ମୁଁ ଟିକେ ଚିନ୍ତା କଲି । ସାଙ୍ଗେସାଙ୍ଗେ ମୁଖ୍ୟମନ୍ତ୍ରୀଙ୍କ ପ୍ରାଇଭେଟ୍ ସେକ୍ରେଟାରୀ ରାଓବାବୁଙ୍କୁ ଫୋନ୍ କଲି । ସେ ନିଜେ ଫୋନ୍ ଧରିଲେ । ତାଙ୍କୁ ସବୁକଥା କହିଲି । ରାଓବାବୁଙ୍କ ସାନଭାଇ ହେଉଛନ୍ତି ଓଡ଼ିଶାର ବିଖ୍ୟାତ ହାର୍ଟ ସ୍ପେଶାଲିଷ୍ଟ ଡକ୍ଟର ଟମ୍ପେ । ସେ କହିଲେ ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ । ମୁଁ ବ୍ୟବସ୍ଥା କରୁଛି । ମୁଁ ସେଇଠି ଅପେକ୍ଷା କଲି । ପନ୍ଦର କୋଡ଼ିଏ ମିନିଟ୍ ମଧ୍ୟରେ ଏକ ଆମ୍ବୁଲାନ୍ସ ଆସି ଗେଷ୍ଟହାଉସ୍‌ରେ ପହଞ୍ଚିଲା । ସେଥିରେ ଅକ୍ସିଜେନ୍ ସିଲିଣ୍ଡର ଏବଂ ତାକୁ ଲଗାଇବା ପାଇଁ ଦୁଇଜଣ ଡାକ୍ତର ଓ ନର୍ସ ଆସିଥିଲେ । ପରେପରେ କ୍ୟାପିଟାଲ୍ ହସ୍‌ପିଟାଲ୍‌ର ହାର୍ଟ ସ୍ପେଶାଲିଷ୍ଟ ଡାକ୍ତର ଆଚାର୍ଯ୍ୟ ଆସି ପହଞ୍ଚିଲେ । ଅକ୍ସିଜେନ୍ ଫିଟ୍ ହୋଇଗଲା । ଡାକ୍ତର ଆଚାର୍ଯ୍ୟ ସମରେଶ ଦା'ଙ୍କ ପରୀକ୍ଷା କଲେ । କିଛି ସମୟ ପରୀକ୍ଷା କଲାପରେ ମୋତେ କହିଲେ ନର୍ମାଲ ଅବସ୍ଥା ଆସିବା ପାଇଁ ପାଞ୍ଚ/ଛ'ଘଣ୍ଟା ଲାଗିବ । ତେବେ ବିପଦ ନାହିଁ । ଡାକ୍ତର ଆଚାର୍ଯ୍ୟଙ୍କ ସହ ଡାକ୍ତର କଲ୍ୟାଣ ବସୁଙ୍କୁ ପରିଚୟ କରାଇ ଦେଲି । ଦୁହେଁ କିଛି କଥାବାର୍ତ୍ତା ହେଲେ । ତା'ପରେ ମୋତେ ଡାକ୍ତର ଆଚାର୍ଯ୍ୟ କହିଲେ ଯଦି କିଛି ଅସୁବିଧା ହୁଏ ମୋତେ ଫୋନ୍ କରିଦେବେ । ସେ ସେଠାରେ ଆଉ ଅଧଘଣ୍ଟାଏ ରହିଲେ । ସମରେଶ ଦା'ଙ୍କୁ ଗୋଟେ ଇଞ୍ଜେକ୍ସନ ଦେଲେ ।

ମୁଁ ସେଠି ବସିଲି । ବୁଦ୍ଧୁ, ଡାଃ ସମୀର ବସୁ, ତାଙ୍କ ପତ୍ନୀ ସବିତା ସମରେଶ ଦା'ଙ୍କ ପତ୍ନୀ ଧରିତ୍ରୀ ବସୁ ସମସ୍ତେ ବସିଲୁ । ଚା'ପାଇଁ ଅର୍ଡ଼ର ଦେଲି । ବୁଦ୍ଧୁ କହିଲା ଦାଦା ତମକୁ ମାନିବାକୁ ପଡ଼ିବ । ଏତେଶୀଘ୍ର ସବୁ ବନ୍ଦୋବସ୍ତ କରିଦେଲ । ପ୍ରକୃତରେ ଆମେ ଆଶ୍ଚର୍ଯ୍ୟ ହୋଇଗଲୁ । ଯାହାହେଉ ସମରେଶ ଦା'ଙ୍କ ରିଷ୍କ କଟିଗଲା । ମୁଁ ଦି'ଘଣ୍ଟା ବସି ଘରକୁ ଆସିଲି । ନିତ୍ୟକର୍ମ ସାରି ଗାଧୋଇ ପାଧୋଇ ପୂଜା କରି ଭାତ ଖାଇଲି । ତା'ପରେ ଗେଷ୍ଟହାଉସ୍‌କୁ ଗଲି । ସେଠାରେ ପହଞ୍ଚି ଶୁଣିଲି କଟକ ମେଡ଼ିକାଲ୍‌ର ହାର୍ଟ ସ୍ପେଶାଲିଷ୍ଟ ଡାକ୍ତର ଟମ୍ପେ ଆସି ସମରେଶ ଦା'ଙ୍କୁ ପରୀକ୍ଷା କରି ଯାଇଛନ୍ତି । ସନ୍ଧ୍ୟା ସୁଦ୍ଧା ସବୁ ଠିକ୍ ହୋଇଯିବ ବୋଲି ସେ କହିଛନ୍ତି । ତଥାପି କାଲି ସକାଳ ପର୍ଯ୍ୟନ୍ତ ବେଡ୍ ନଛାଡ଼ିବା ପାଇଁ ପରାମର୍ଶ ଦେଇଛନ୍ତି । ମୁଁ ପହଞ୍ଚିବା ବେଳକୁ ସମରେଶ ଦା'ଙ୍କ ଚେତା ଫେରି ଆସିଥିଲା । ମତେ ଦେଖି କହିଲେ ବରେନ୍ ଆମି ତୋମାର ଜନ୍ୟବେଞ୍ଚେ ଗେଲାମ । ତୋମାକେ ଧନ୍ୟବାଦ ଦିଏ ଛୋଟ କର୍‌ବୋ ନା । ମୁଁ କହିଲି ଦାଦା - ଏସବୁ କାହିଁକି କହୁଛନ୍ତି । ଆପଣ ପୁରା ସୁସ୍ଥ ହୋଇଯା'ନ୍ତୁ । ଏଠି ବିଶ୍ରାମ କରି ଚାରି/ପାଞ୍ଚଦିନ ପରେ ଯିବେ । ସେ ହସିଲେ । ମୁଁ ତାଙ୍କ ପାଖରୁ ବିଦାୟ ନେଇ ପୁସ୍ତକ ମେଳାକୁ ଆସିଲି । ସମରେଶ ବସୁ ଅସୁସ୍ଥ ହୋଇଥିବା ଖବର ଚାରିଆଡ଼େ ବ୍ୟାପିଗଲା । ଅନେକ ସାହିତ୍ୟିକ ମତେ ଆସି ପଚାରୁଥା'ନ୍ତି । ସନ୍ଧ୍ୟାବେଳେ ବିଖ୍ୟାତ ସାହିତ୍ୟିକ ଗୋପୀନାଥ ମହାନ୍ତି ମେଳା ଅଫିସ୍‌କୁ ଆସି ମୋତେ ସମରେଶ ବସୁଙ୍କ ସ୍ୱାସ୍ଥ୍ୟକଥା ପଚାରିଲେ । କହିଲେ ତାଙ୍କର କିଛି ହେବ ନାହିଁ । ମା' ତାଙ୍କୁ ସହାୟ ହେବେ । ମୁଁ କାଲି ତାଙ୍କୁ ଦେଖିବାକୁ ଯିବି ।

ମୁଁ ମେଳା ବନ୍ଦ କରି ରାତି ଦଶଟା ବେଳକୁ ପୁଣି ଗେଷ୍ଟ ହାଉସ୍ ଗଲି । ବୁଦ୍ଧୁ, ସମୀର, ସବିତା ସମସ୍ତେ ଥିଲେ । ସମରେଶ ଦା' ଶୋଇ ପଡ଼ିଥିଲେ । ବୁଦ୍ଧୁ କହିଲା ଡାକ୍ତର ଆଚାର୍ଯ୍ୟ ସନ୍ଧ୍ୟାବେଳେ ଆସି ଆଉ ଗୋଟେ ଇଞ୍ଜେକ୍ସନ ଦେଇଛନ୍ତି । କହିଛନ୍ତି ଆଉ କିଛି ଅସୁବିଧା ହେବନି । ଅକ୍ସିଜେନ୍ ମୁଖାଖୋଲି ଦିଆହୋଇଛି । ଦାଦା ନର୍ମାଲ ନିଶ୍ୱାସ ପ୍ରଶ୍ୱାସ ନେଉଛନ୍ତି । ବୁଦ୍ଧୁ କହିଲା ଦାଦା, ଏଇଠି ଆମ ସାଙ୍ଗରେ ଡିନର ନିଅ । ମୁଁ ଘରକୁ ଫୋନ୍ କରି କହିଦେଲି । ସେଇଠି ସମସ୍ତେ ଡନର କଲୁ । ମୁଁ ରାତି ସାଢ଼େ ଏଗାରଟା ବେଳକୁ ଫେରି ଆସିଲି ।

ପରଦିନ ସକାଳୁ କାମ ସାରି ସାଢ଼େ ଦଶଟା ବେଳକୁ ଗେଷ୍ଟହାଉସ୍‌କୁ ଗଲି । ଦେଖିଲି ସମରେଶ ଦା' ବେଡ୍‌ରୁ ଉଠି ଆର୍ମଚେୟାରରେ ବସିଛନ୍ତି । ମୋତେ ଦେଖି ହସିଲେ । ମୁଁ ପଚାରିଲି ଦାଦା- ଏଇନେ ଭଲ ଲାଗୁଛି ? ସେ କହିଲେ ତମର ବ୍ୟବସ୍ଥା ପ୍ରକୃତରେ ମୋତେ ଆଶ୍ଚର୍ଯ୍ୟ କରି ଦେଇଛି । ଓଡ଼ିଶାରେ ତମର ଏତେ ଇନ୍‌ଫ୍ଲୁଏନ୍ସ ମୁଁ କଳ୍ପନା କରି ପାରୁନି । ଆଜି ସକାଳେ ଏକ ଅଦ୍ଭୁତ କାଣ୍ଡ ଘଟିଲା । ମୁଁ ଶୋଇଛି ହଠାତ୍ ବିଖ୍ୟାତ ଲେଖକ ଗୋପୀନାଥ ମହାନ୍ତି ଆସିଲେ । ସେ ସିଧା ମନ୍ଦିରରୁ ଆସିଥିଲେ । ମା'ଙ୍କ ଫୁଲ, ଭୋଗ ଆଣିଥିଲେ । ମୋ ମୁଣ୍ଡରେ ଫୁଲ ଛୁଆଁଇ ମୋତେ ଟିକେ ଭୋଗ ଦେଲେ । ମୋର ମୁଣ୍ଡରୁ ପାଦ ଯାଏ ଆଉଁସି ଦେଇ କହିଲେ ମା'ଙ୍କୁ ଆପଣଙ୍କ ପାଇଁ ଡାକିଛି । ଏତେବଡ଼ ଜଣେ ସାହିତ୍ୟିକଙ୍କୁ ସେ ସବୁ ରୋଗରୁ ମୁକ୍ତ କରିବେ । ସମରେଶ ଦା' କହିଲେ ବରେନ୍ ମୋର କ'ଣ ମନେ ହେଲା ଜାଣ ? ଏତେବଡ଼ ଜଣେ ସାହିତ୍ୟିକ ଜ୍ଞାନପୀଠ ବିଜେତା । ମୋର ସମଗ୍ର ଶରୀରରେ ସେ ଯେତେବେଳେ ହାତ ବୁଲାଇ ଆଣିଲେ ମୋର ମନେ ହେଲା ମୋ ନିଜର ବଡ଼ଭାଇ ମୋତେ ସ୍ନେହରେ ଆଉଁସି ଦେଉଛନ୍ତି । ଅଦ୍ଭୁତ ଗୋଟାଏ ଶିହରଣ ମୋ ମନରେ ଜାତ ହେଲା । ଓଡ଼ିଶାର ଲୋକେ ପ୍ରକୃତରେ ଖୁବ୍ ଭଲ । ଗୋପୀନାଥବାବୁଙ୍କୁ ମୋର ପ୍ରଣାମ ଜଣାଇ ଦେବ । ଏତିକି କହିବ ଭଲ ଲୋକ ଆଉ ବିଖ୍ୟାତ ସାହିତ୍ୟିକ କାହାକୁ କହନ୍ତି ଗୋପୀନାଥ ବାବୁଙ୍କୁ ଦେଖିଲେ ଜାଣିହେବ । ଦିନ ଦ୍ୱିପ୍ରହର ବେଳକୁ ସମରେଶ ଦା' ବେଶ୍ ଉଠି ବୁଲାଚଲା କଲେ । ତା'ପରେ ମତେ

କହିଲେ ବରେନ୍ ଆଜି ମୋ ଯିବା ବ୍ୟବସ୍ଥା ଟିକେ କରିଦିଅ । ମୁଁ ତାଙ୍କୁ ଆଉ ଦି'ଦିନ ବିଶ୍ରାମ କରି ତା'ପରେ ଯା'ନ୍ତୁ ବୋଲି କହିଲି । ମାତ୍ର ସେ ଜିଦ୍ ଧରିଲେ ସେଇଦିନ ଯିବାପାଇଁ । ଦିନ ଚାରିଟା ବେଳେ କଲିକତା ଫ୍ଲାଇଟ୍ । ମୁଁ ସାଙ୍ଗେସାଙ୍ଗେ ଟିକେଟ୍ କାଟି ଆଣି ତାଙ୍କୁ ଏୟାରପୋର୍ଟ ନେଇଗଲି । ଏୟାରପୋର୍ଟରେ ସେ ମୋ ଦୁଇହାତକୁ ଧରିପକାଇ କହିଲେ ବରେନ୍ ତୋମାର୍ ଋଣ ଜୀବନେ ଶୁଝ୍‌ତେ ପାରବୋନା । ତାଙ୍କର କଣ୍ଠ ବାଷ୍ପରୁଦ୍ଧ ହୋଇ ଆସିଲା । ଶୁଣି କହିଲେ ବହିମେଳା ପରେ କଲିକତା ନିଶ୍ଚୟ ଆସିବ । ସେଇଠି ଦେଖା ହେବ । ସମରେଶ ଦା' ସିକ୍ୟୁରିଟି ଚେକ୍ ପାଇଁ ଗଲେ । ମୁଁ ଫେରି ଆସିଲି ।

## -ସମରେଶ ବସୁଙ୍କ ତିରୋଧାନ-

ଦଶଦିନ ପରେ ଦିନେ ସକାଳୁ ବୁଢୁର ଫୋନ୍ ପାଇଲି । କହିଲା ଦାଦା ସମରେଶ ଦା'ର ଅବସ୍ଥା ଖୁବ୍ ଖରାପ । ଭୁବନେଶ୍ୱର ଠାରୁ ଫେରିବା ପରେ ଭଲ ଥିଲେ ମାତ୍ର କାଲି ହଠାତ୍ ଅଚେତ୍ ହୋଇଗଲେ । ଆଜି ମଧ୍ୟ ଚେତା ଫେରିନି । ବୋଧେ ଏଇ ଶେଷ ଯାତ୍ରା । ବୁଢୁର ସ୍ୱର କେମିତି କୋହ ମିଶା ଥିଲା । କହିଲା ଭୁବନେଶ୍ୱରରୁ ଫେରି ଖୁବ୍ ଖୁସି ଥିଲେ । ତୁମ 'ଶାମ୍ବ' ଅନୁବାଦ ବହିକୁ ତାଙ୍କ ପାଖକୁ ଯିଏ ଯାଉଥିଲା ତାକୁ ଦେଉଥିଲେ । ତୁମକୁ ଭାରି ପ୍ରଶଂସା କରୁଥିଲେ । ବୁଢୁ ଫୋନ୍ ଛାଡ଼ିଦେଲା । ସେଇଦିନ ସନ୍ଧ୍ୟାରେ ବାରିନ୍ ଦା' (ଡାକ୍ତର ବାରିନ୍ ରାୟ) ଫୋନ୍ କରି ସେଇ ଦୁଃଖଦ ସମ୍ବାଦ ଦେଲେ । କହିଲେ ବରେନ୍, ସମରେଶ ଦା' ଚାଲିଗଲେ । ଆମେ ସମସ୍ତେ ବାହାରିଛୁ ତାଙ୍କୁ ନେଇ ଶେଷ କର୍ମ କରିବା ପାଇଁ । ମୁଁ ଯାହା ଆଶଙ୍କା କରିଥିଲି ତାହା ହେଲା । ମନରେ ଦୁଃଖ ହେଲା । କଷ୍ଟ ହେଲା । ସମରେଶ ଦା'ଙ୍କ ମୁହଁଟା ମନରେ ଭାସି ଉଠିଲା । ତାଙ୍କୁ ବିମାନଘାଟିରେ ବିଦାୟ ଦେବାବେଳେ ତାଙ୍କର ମୋ ପ୍ରତି ସେଇ ସ୍ନେହବୋଳା କଥାଟା ମନରେ ଆସିଲା । ସଂସାରରେ ଏଭଳି ଲୋକ ଖୁବ୍ କମ୍ ମିଳିବେ । କେବଳ ଲେଖକ ରୂପେ ସେ ପ୍ରସିଦ୍ଧ ନଥିଲେ । ବ୍ୟକ୍ତି ହିସାବରେ ସେ ଥିଲେ ଚମତ୍କାର ମଣିଷ । ବନ୍ଧୁ ଭାବେ ଅନବଦ୍ୟ । ମନେ ପଡ଼ିଲା ସେଦିନ କଲିକତା କ୍ଲବ୍‌ରେ ମୁଁ ବୁଢୁ, ସମୀର ଆଉ ଦି'ଜଣ ବନ୍ଧୁ ପ୍ରବେଶ କଲାବେଳେ ସମରେଶ ବସୁ ଆଉ ବାରିଷ୍ଟର ରବି ଦାସ(କେ.ସି. ଦାସ ରସଗୋଲା ଖ୍ୟାତ) ବସି ଡ୍ରିଙ୍କ୍ କରୁଥିଲେ । ଆମ ସମସ୍ତଙ୍କୁ ଦେଖି ସମରେଶ ଦା' ଠିଆ ହୋଇପଡ଼ି କହିଲେ ଆରେ କି ସୌଭାଗ୍ୟ । ବରେନ୍‌ବାବୁ ଏଠି । ମୁଁ କହିଲି ଦାଦା- ମତେ ଖାଲି ବରେନ୍ କହିଲେ ଖୁସିହେବି । ମୁଁ ଆପଣଙ୍କ ମୁହଁରୁ ବାବୁ ଶୁଣିଲେ କେମିତି ଲଜ୍ଜା ଅନୁଭବ କରୁଛି । ସେ ହସିହସି କହିଲେ ଠିକ୍ ଅଛି । ଛୋଟ ଭାଇକୁ ବାବୁ ବୋଲି ଶ୍ରଦ୍ଧାରେ କୁହାଯାଏ । ସମସ୍ତେ ବସିଲୁ । ଡ୍ରିଙ୍କ୍ ପାଇଁ ଅର୍ଡ଼ର ଦିଆଗଲା ।

ସମୟ ଅତିକ୍ରାନ୍ତ ହୋଇ ଯାଇଛି । ଦଶ/ବାର ଦିନ ପରେ ଦିନେ ବିଖ୍ୟାତ ସାହିତ୍ୟିକ ସୁନିଲ୍ ଗଙ୍ଗୋପାଧ୍ୟାୟଙ୍କ ଫୋନ୍ ପାଇଲି । ସୁନିଲ ବାବୁ କହିଲେ ବରେନ୍ ବାବୁ ଦେଶ ପତ୍ରିକାର ମେ' ମାସ ଦ୍ୱିତୀୟ ସଂଖ୍ୟା ସମରେଶ ବସୁ ସଂଖ୍ୟା ରୂପେ ପ୍ରକାଶ ପାଇବ । ସମରେଶ ଦା'ର ଆପଣ ଜଣେ ଘନିଷ୍ଠ ବନ୍ଧୁ ଥିଲେ । ତା'ଛଡ଼ା ଜୀବନର ଅନ୍ତିମ ଭାଷଣ ସେ ଆପଣଙ୍କ ବହିମେଳାରେ ଦେଇଥିଲେ । ଆପଣ ତାଙ୍କ ଉପରେ ଏକ ଲେଖା ଏବଂ ବହିମେଳାରେ ଭାଷଣ ଦେଉଥିବା ବେଳର ଏକ ଛବି ପଠାଇଲେ ଭଲ ହୁଅନ୍ତା ।

## -ଦେଶ ପତ୍ରିକା ପାଇଁ ଲେଖା-

ସୁନିଲ୍ ବାବୁଙ୍କୁ ପ୍ରତିଶ୍ରୁତି ଦେଲି ଲେଖା ଓ ଛବି ଶୀଘ୍ର ପଠାଇ ଦେବି । ସାତ/ଆଠଦିନ ମଧ୍ୟରେ ଲେଖା ଓ ଛବି

ପଠାଇ ଦେଲି । ମେ’ ୧୪ ତାରିଖ ଦେଶର ସ୍ୱତନ୍ତ ସମରେଶ ବସୁ ସଂଖ୍ୟାରେ ତାହା ପ୍ରକାଶ ପାଇଲା । ଏହି ଲେଖା ପାଇଁ ଦେଶ ପକ୍ଷରୁ ମୋତେ ତିନିଶହ ଟଙ୍କା ପାରିଶ୍ରମିକ ମିଳିଥିଲା । ସମରେଶ ବସୁ ଚାଲିଗଲେ । ମାତ୍ର ତାଙ୍କୁ ସ୍ମରଣ କରିବା ପାଇଁ ତାଙ୍କ ସାହିତ୍ୟ ପଢ଼ିବା ପାଇଁ ଆଉ ତାଙ୍କ ଲେଖାର ଅନୁଶୀଳନ କରିବାପାଇଁ ଛାଡ଼ିଗଲେ ଅଜସ୍ର ଗୁଣଗ୍ରାହୀ ବ୍ୟକ୍ତିଙ୍କୁ । ତାଙ୍କ ଉପନ୍ୟାସ ‘ଶାମ୍ୱ’ ଅନୁବାଦ କରି ମୁଁ ମଧ୍ୟ ଅନେକ ଭାବେ ଉପକୃତ । ଓଡ଼ିଆ ଅନୁବାଦ ସାହିତ୍ୟିରେ ‘ଶାମ୍ୱ’ ଏକ ଉଲ୍ଲେଖନୀୟ ସଂଯୋଜନ । ‘ଶାମ୍ୱ’ ମୋତେ ଦେଇଛି ଅନୁବାଦ ସାହିତ୍ୟରେ ଏକ ସ୍ୱତନ୍ତ ମାନ୍ୟତା ।

କଲିକତା ବହିମେଳାର ସମୟ ହେଉଛି ପ୍ରତିବର୍ଷ ଜାନୁଆରୀ ମାସର ଶେଷ ବୁଧବାର ଠାରୁ ବାରଦିନ । ସାଧାରଣତଃ ଜାନୁଆରୀ ୨୫ତାରିଖରୁ ୨୭ ତାରିଖ ମଧ୍ୟରେ ଏହି ଶେଷ ବୁଧବାର ପଡ଼େ । ଶେଷହୁଏ ଫେବୃଆରୀ ୭ ତାରିଖ ମଧ୍ୟରେ । ଆମେ କଲିକତା ପୁସ୍ତକମେଳା ସମୟକୁ ଆଖିରେ ରଖି ଭୁବନେଶ୍ୱର ପୁସ୍ତକମେଳା ତାରିଖ ଠିକ୍ କରୁ । ସାଧାରଣ ଭାବେ ଆମେ ଫେବୃଆରୀ ୨୬ ତାରିଖରୁ ମାର୍ଚ୍ଚ ୭ ତାରିଖ ସମୟ ରଖୁ । କଲିକତା ବହିମେଳାକୁ ଆମେ ପ୍ରତିବର୍ଷ ବଡ଼ବଡ଼ ପ୍ରକାଶକ ଓ ପୁସ୍ତକ ବିକ୍ରେତାଙ୍କ ସହ ଯୋଗାଯୋଗ କରିବାକୁ ଯାଉ । ଆମେ ଯିବା ଫଳରେ ଅନେକ ସମୟରେ ଭଲ ଭଲ ସଂସ୍ଥା ଆମ ପୁସ୍ତକମେଳାକୁ ଆସିଥାନ୍ତି ।

କଲିକତା ଗଲେ ଆମ ଆଶ୍ରୟସ୍ଥଳ ହୋଇଥାଏ ଉତ୍କଳ ଭବନ । ତିନୋଟି କୋଠରୀ ଆମେ ସଂରକ୍ଷଣ କରିଥାଉ । ମୁଁ ପ୍ରାୟ ମୋ ପତ୍ନୀଙ୍କ ସହ ଯାଇଥାଏ । ଗୋଟିଏ ସ୍ପେଶାଲ୍ ରୁମ୍ ବା ଭିଆଇପି ରୁମ୍ ମୁଁ ଭୁବନେଶ୍ୱର ସ୍ୱରାଷ୍ଟ୍ର ବିଭାଗରୁ ରିଜର୍ଭ କରି ନେଇଥାଏ । ଆଉ ଦୁଇଟି ରୁମ୍ ବିଭୂତି ପଟ୍ଟନାୟକ ଓ ଯୁଗଳ ଦତ୍ତ ରିଜର୍ଭ କରିଥା’ନ୍ତି । ସେ ରୁମ୍ ଦୁଇଟିରେ ସେ ଦୁହିଁଙ୍କ ସହ ଉତ୍ତମ ଏବଂ ଆଉ ଯିଏ ଯା’ନ୍ତି ସେମାନେ ରୁହନ୍ତି ।

ମୁଁ ଉଭୟ ଲେଖକ ସାମ୍ମୁଖ୍ୟ ଏବଂ ପୁସ୍ତକମେଳାର ସାଧାରଣ ସମ୍ପାଦକ ଓ ମୁଖ୍ୟ କର୍ମକର୍ତ୍ତା ଥାଏ । ପୁସ୍ତକମେଳା ପାଇଁ କାମ ଆରମ୍ଭ ହୁଏ ଅଗଷ୍ଟ ମାସରୁ । ଡିସେମ୍ବର ୨୪, ୨୫ ଓ ୨୬ ତାରିଖରେ ଲେଖକ ସାମ୍ମୁଖ୍ୟର ସାହିତ୍ୟ ଉତ୍ସବ ହୋଇଥାଏ । ସେଥିପାଇଁ ନଭେମ୍ବର ମାସରୁ ଚିଠି ପତ୍ର ଛପାହୋଇ ରାଜ୍ୟର ବିଭିନ୍ନ ସ୍ଥାନକୁ ପଠାଯାଏ । ସାହିତ୍ୟୋତ୍ସବ ୧୯୮୧ରୁ ବିଧିବଦ୍ଧ ଭାବରେ ଆରମ୍ଭ ହୋଇଥିଲା । ଜାନକୀବାବୁ ମୁଖ୍ୟମନ୍ତ୍ରୀ ଥିବା ପର୍ଯ୍ୟନ୍ତ ଏହା ଜାକ-ଜମକରେ ଚାଲିଥିଲା । ରାଜ୍ୟର ଏକ ପ୍ରାନ୍ତୀୟ ସହରରେ ଏହା ଅନୁଷ୍ଠିତ ହେଉଥିଲା । ଭାରତବର୍ଷର ବହୁ ବିଖ୍ୟାତ ସାହିତ୍ୟିକ ଏଥିରେ ଯୋଗ ଦେଉଥିଲେ । ସେମାନଙ୍କ ଯାତାୟତ ଖର୍ଚ୍ଚ ଆମେ ବହନ କରୁଥିଲୁ । ଓଡ଼ିଶାରେ ଏଭଳି କୌଣସି ସାହିତ୍ୟିକ ନଥିଲେ ଯେଉଁମାନେ ବା ଯିଏ ସାହିତ୍ୟୋତ୍ସବରେ ଯୋଗ ଦେଉନଥିଲେ । ଅନେକ ବିଖ୍ୟାତ ସାହିତ୍ୟିକ ଇତିମଧ୍ୟରେ ସ୍ୱର୍ଗାରୋହଣ କଲେଣି । ତେବେ ସେମାନେ ବଞ୍ଚିଥିବା ପର୍ଯ୍ୟନ୍ତ ଏବଂ ଚଳପ୍ରଚଳ ହେଉଥିବା ପର୍ଯ୍ୟନ୍ତ ସାହିତ୍ୟୋତ୍ସବରେ ଯୋଗ ଦେଇଥିଲେ । ଏମାନଙ୍କ ମଧ୍ୟରେ ରାଜକିଶୋର ରାୟ, ରାଧାମୋହନ ଗଡ଼ନାୟକ, ସୁରେନ୍ଦ୍ର ମହାନ୍ତି, ରବି ପଟ୍ଟନାୟକ, ଅଖିଳ ମୋହନ ପଟ୍ଟନାୟକ, ନଟବର ସାମନ୍ତରାୟ, କିଶୋରୀ ଚରଣ ଦାସ, ନାଟ୍ୟକାର ରାମଚନ୍ଦ୍ର ମିଶ୍ର, ଆନନ୍ଦ ଶଙ୍କର ଦାସ, ଭଞ୍ଜକିଶୋର ପଟ୍ଟନାୟକ, ବିଚିତ୍ରାନନ୍ଦ କର, କୃଷ୍ଣ ପ୍ରସାଦ ମିଶ୍ର, ଦୁର୍ଗାମାଧବ ମିଶ୍ର ପ୍ରମୁଖ ଅନ୍ୟତମ । ଆଉ ଅନେକଙ୍କ କଥା ମନେ ପଡୁନାହିଁ ।

## -ସାହିତ୍ୟ ଉତ୍ସବରେ ବିଖ୍ୟାତ ଲେଖକ-

ଦେଶର ବହୁ ବିଖ୍ୟାତ ଲେଖକ ଲେଖିକା ବିଭିନ୍ନ ସମୟରେ ସାହିତ୍ୟୋତ୍ସବ ମଣ୍ଡପକୁ ଅଳଙ୍କୃତ କରିଛନ୍ତି । ଏମାନଙ୍କ ମଧ୍ୟରେ ବିଖ୍ୟାତ ନାଟ୍ୟକାର ପଦ୍ମଭୂଷଣ ବିଷ୍ଣୁ ପ୍ରଭାକର, ଇନ୍ଦିରା ଗୋସ୍ୱାମୀ, ନବନୀତା ଦେବସେନ, ବଙ୍ଗୀୟ ସାହିତ୍ୟିକ ସୁନିଲ ଗଙ୍ଗୋପାଧ୍ୟାୟ, ନିମାଇଁ ସାଧନ ବସୁ, ସଂଜୀବ ଚଟ୍ଟୋପାଧ୍ୟାୟ, ଅସମୀୟା ସାହିତ୍ୟିକ ନବକାନ୍ତ ବରୁଆ, ନୀଳମଣି ଫୁକନ୍, ହିନ୍ଦି ସାହିତ୍ୟିକ ଅଜ୍ଞେୟ ଅନ୍ୟତମ । ସମ୍ବଲପୁରରେ ୧୯୮୭ ଡିସେମ୍ବର ୨୮, ୨୯ ତାରିଖରେ ସାହିତ୍ୟୋତ୍ସବ ଅନୁଷ୍ଠିତ ହେଲା । ମାତ୍ର ମୁଁ ଏଥିରେ ଯୋଗ ଦେଇ ପାରିନଥିଲି । ତା'ର କାରଣ ହେଲା ହଠାତ୍ ମୋର ହାର୍ନିଆ ବାହାରି ପଡ଼ିଲା ଏବଂ ମୁଁ ଅପରେସନ୍ ପାଇଁ ଡାକ୍ତରଖାନାରେ ଭର୍ତ୍ତିହେଲି । ସର୍ଜନ ହିସାବରେ ମୁଁ ଡାକ୍ତର ଅଜୟ ମିଶ୍ରଙ୍କୁ ବିଶ୍ୱାସ କରୁଥିଲି । ସେତେବେଳେ ସେ ପୁରୁଣା ଭୁବନେଶ୍ୱର ଏନ୍.ଏ.ସି. ହସ୍‌ପିଟାଲ୍‌ର ସୁପରିଟେଣ୍ଡେଣ୍ଟ ଥିଲେ । ମୁଁ ସେଇଠି ତାଙ୍କଦ୍ୱାରା ଅପରେସନ୍ ହେବାପାଇଁ ସ୍ଥିର କଲି । ତେଣୁ ଡିସେମ୍ବର ୨୫ ତାରିଖରେ ମୁଁ ଆଡ଼ମିସନ୍ ନେଇ ୨୭ ତାରିଖରେ ଅପରେସନ୍ ହେଲି । ମୁଁ ପ୍ରଚୁର ସିଗାରେଟ୍ ଟାଣୁଥିଲି । ଦୈନିକ 'ଇଣ୍ଡିଆ କିଙ୍ଗସ୍' ଭଳି ସବୁଠାରୁ ଦାମୀ ସିଗାରେଟ୍‌ରୁ ୬୦ରୁ ୭୦ଖଣ୍ଡ ସିଗାରେଟ୍ ଟାଣୁଥିଲି । ମାତୃଭୂମି ଭଳି ଏକ ଛୋଟ ଖବରକାଗଜର ପ୍ରତିନିଧି ହୋଇ ଏତେ ଦାମୀ ସିଗାରେଟ ପାଇଁ କୋଉଠୁ ଟଙ୍କା ଆଣୁଛି ବୋଲି ଅନେକ ବିସ୍ମୟ ପ୍ରକାଶ କରୁଥିଲେ । ଅନେକ ମଧ୍ୟ ଏଥିପାଇଁ ଈର୍ଷା କରୁଥିଲେ । କେତେକ ପ୍ରଚାର କରୁଥିଲେ ମୁଁ ମନ୍ତ୍ରୀ ଅଫିସରମାନଙ୍କ ପାଖରୁ ଟଙ୍କା ଆଣୁଛି । ଥରେ କ୍ୱାଲିଟ୍ ପ୍ରେସ୍ ମାଲିକ ଜଗଦିଶ ପାଣି ମୋତେ କହିଲେ ହଇଏ ବରେନ୍ଦ୍ର ବାବୁ, ତମେ ଇଣ୍ଡିଆ କିଙ୍ଗସ୍ ସିଗାରେଟ୍ ଟାଣିବା ପାଇଁ ଏତେ ଟଙ୍କା ଆଣୁଛ କେଉଁଠୁ ? ତମର ଇଣ୍ଡିଆ କିଙ୍ଗସ୍ ଟଣା ଅନେକଙ୍କୁ ତୁମର ଶତ୍ରୁ କରୁଛି । ମୁଁ ହସିଲି । କହିଲି ଭାଇନା- ତୁମକୁ ମୋ ବିରୁଦ୍ଧରେ କିଏ କହୁଛି ? ସେ ଦି/ତିନିଜଣଙ୍କ ନାଁ କହିଲେ । ମୁଁ ତାଙ୍କୁ କହିଲି ମୋ ସ୍ତ୍ରୀଙ୍କ ନାମରେ ଏକ ଏଲ୍.ଆଇ.ସି. ଏଜେନ୍ସି ନେଇଛି । ୧୯୭୬ ମସିହାରୁ ଏ ଏଜେନ୍ସି ଆରମ୍ଭ ହୋଇଛି । ପ୍ରତି ରବିବାର ମୁଁ ଏଥିପାଇଁ କାମ କରେ । ବର୍ଷରେ ପ୍ରାୟ ୩୦ଲକ୍ଷରୁ ୩୫ଲକ୍ଷ ଟଙ୍କାର ଏଲ୍.ଆଇ.ସି. ବିଜିନେସ୍ ହୁଏ । ହାରାହାରୀ ବର୍ଷରେ ଦୁଇଲକ୍ଷ ଟଙ୍କା ପ୍ରିମିୟମ ଜମା ହୁଏ । ତା'ର ଶତକଡ଼ା ୨୫ଭାଗ ଅର୍ଥାତ୍ ପଚାଶ ହଜାର ଟଙ୍କା ମୋ ସ୍ତ୍ରୀଙ୍କ ନାମରେ ମିଳେ । ସେଥିରୁ ଶତକଡ଼ା ୧୦ଭାଗ ଇନ୍‌କମ୍ ଟାକ୍ସ ଯାଏ । ବାକି ୪୫ହଜାର ଟଙ୍କା ମୋ ସ୍ତ୍ରୀଙ୍କ ଆକାଉଣ୍ଟକୁ ଆସେ । ଏବେ ବୁଝ ମୋ ଅର୍ଥ ରୋଜଗାର । ଏଇଥିରୁ ମୁଁ ମାସରେ ଦି'ହଜାରରୁ ଅଢ଼େଇ ହଜାର ଟଙ୍କା ସିଗାରେଟ୍ ପିଏ । ମୁଁ କେଉଁ ଅଫିସର ବା ମନ୍ତ୍ରୀଙ୍କର ଏଲ୍.ଆଇ.ସି. କରେ ନାହିଁ । ତେଣୁ କାହାରି କିଛି କରିବାର ନଥାଏ ।

କେବଳ ଏଲ୍.ଆଇ.ସି. ନୁହେଁ । ୧୯୮୩ ମସିହାରୁ ମୋ ସ୍ତ୍ରୀ ସ୍ନେହଲତାଙ୍କୁ ଦି ଷ୍ଟେଟ୍‌ସମ୍ୟାନ୍ କାଗଜ ସୂଚନା ଲୋକସମ୍ପର୍କ ବିଭାଗରେ ବାକିଆ ଥିବା ଟଙ୍କା ଆଦାୟ ପାଇଁ ବିଜିନେସ୍ ରିପ୍ରେଜେଣ୍ଟେଟିଭ୍ ରୂପେ ନିଯୁକ୍ତି ଦେଇଛନ୍ତି । ଯେତିକି ବିଲ୍ ଆଦାୟ ହେବ ସେ ତା'ର ଶତକଡ଼ା ୫ଭାଗ ଅର୍ଥ ପାଇବେ । ପ୍ରତିବର୍ଷ ପ୍ରାୟ ମୁଁ କୋଡ଼ିଏଲକ୍ଷ ଟଙ୍କା ଆଦାୟ କରେ । ତେଣୁ ବର୍ଷରେ ପ୍ରାୟ ଲକ୍ଷେଟଙ୍କା କମିଶନ ମିଳେ । ଜଗଦିଶ ଭାଇନାଙ୍କ ସାଙ୍ଗରେ ମୋର ଏ କଥାବାର୍ତ୍ତା ୧୯୮୫ ମସିହା ଜାନୁଆରୀ ମାସର । ସବୁ ଶୁଣିବା ପରେ ସେ କହିଲେ ବରେନ୍ଦ୍ରବାବୁ ପ୍ରକୃତରେ ତମକୁ ମାନିବାକୁ ପଡ଼ିବ । ଏଗୁଡ଼ାକ ବୁଝି ହେଲେ ତୁମର କ'ଣ କରିବେ ? ସମ୍ଭବତଃ ତମେ ସବୁ ସାମ୍ବାଦିକଙ୍କ ଅପେକ୍ଷା ବେଶୀ ରୋଜଗାର କରୁଛ ?

ମୋର ସିଗାରେଟ୍ ପିଆ ଦେଖି ଅନେକ ବନ୍ଧୁ ମୋତେ ତାହା ଛାଡ଼ିବା ପାଇଁ ପରାମର୍ଶ ଦେଇଥିଲେ । ଆଉ କେତେକ ବନ୍ଧୁ ମୋ ଠାରୁ ନିୟମିତ ଇଣ୍ଡିଆ କିଙ୍ଗସ୍ ନେଇ ଟାଣୁଥିଲେ । ମନା ବି କରିପାରେ ନାହିଁ । ତେବେ ଏଇ ସିଗାରେଟ୍ ମୋତେ ଭବିଷ୍ୟତରେ ଗୁରୁତର ବିପଦରେ ପକାଇଥିଲା । ସେକଥା ପରେ କହିବି । ସେଇଠି ଏନ୍.ଏ.ସି. ହସ୍ପିଟାଲ୍‌ରେ ମୋର ଅପରେସନ୍ ପୂର୍ବରୁ କାଶ ହେଲା । ଅଜୟବାବୁ କହିଲେ ବରେନ୍ଦ୍ରବାବୁ ମୋର ଅନୁରୋଧ ଅନ୍ତତଃ ଅପରେସନ ପୂର୍ବରୁ ଏବଂ ପରେ ଦଶ/ପନ୍ଦରଦିନ ପର୍ଯ୍ୟନ୍ତ ସିଗାରେଟ୍ ଛାଡ଼ି ଦିଅନ୍ତୁ । ମୁଁ ମନରେ ଏକ ପ୍ରତିଜ୍ଞା କଲି । ସିଗାରେଟ୍ ଛାଡ଼ିଦେବି । ୧୯୮୭ ଡିସେମ୍ବର ୨୭ ତାରିଖରୁ ମୁଁ ସିଗାରେଟ୍ ଛାଡ଼ିଦେଲି । ସେଇଦିନ ଠାରୁ ଜୀବନର ଶେଷ ଦିନ ପର୍ଯ୍ୟନ୍ତ ସିଗାରେଟ୍ ଛୁଇଁନି । ଏଇ ଲେଖାର ସମୟ ଆଜି ୨୩.୦୪.୦୯ ଓଡ଼ିଶାରେ ବିଧାନସଭା ଓ ଲୋକସଭା ନିର୍ବାଚନର ଦ୍ୱିତୀୟ ଓ ଶେଷ ପର୍ଯ୍ୟାୟ । ପ୍ରଥମ ପର୍ଯ୍ୟାୟ ଥିଲା ୧୬.୦୪.୦୯ । କିନ୍ତୁ ମୋର ଶେଷ ଦିନ କଥା ଏଇଥିପାଇଁ ଆଜି କହୁଛି ଯେ ସିଗାରେଟ୍ ଆଉ ଛୁଇଁବାର ପ୍ରଶ୍ନ ନାହିଁ ।

ମୁଁ ସାହିତ୍ୟୋତ୍ସବ କଥା କହୁକହୁ ମୋର ସିଗାରେଟ୍‌ଖିଆ ପ୍ରସଙ୍ଗକୁ ଚାଲି ଆସିଲି । ଏବେ ସାହିତ୍ୟୋତ୍ସବ ପ୍ରସଙ୍ଗକୁ ଯିବା । ମୁଁ ପୂର୍ବରୁ ଶାନ୍ତି ନିକେତନ କଥା ବର୍ଣ୍ଣନା କରିଛି । ସେଠି ଲେଖକ ସାମ୍ମୁଖ୍ୟର ତିରିଶଜଣ ସଦସ୍ୟ ଯାଇ ବିଶ୍ୱକବିଙ୍କ ବିଖ୍ୟାତ ଅନୁଷ୍ଠାନ ଦେଖିବା ସାଙ୍ଗେସାଙ୍ଗେ ପ୍ରସିଦ୍ଧ ଓଡ଼ିଆ-ବଙ୍ଗଳା ଲେଖକ ଅନ୍ନଦା ଶଙ୍କର ରାୟଙ୍କ ସହ ସାକ୍ଷାତ ଆଲୋଚନା କରିଥିଲୁ । ସେତେବେଳେ ଶାନ୍ତି ନିକେତନର କୁଳପତି ଥିଲେ ଭାରତର ବିଖ୍ୟାତ ଐତିହାସିକ ପ୍ରଫେସର ନିମାଇଁ ସାଧନ ବସୁ । ନିମାଇଁବାବୁ ଅତ୍ୟନ୍ତ ସଜ୍ଜନ ବ୍ୟକ୍ତି । ଇନ୍ଦିରା ଗାନ୍ଧୀଙ୍କ ମୃତ୍ୟୁ ପୂର୍ବରୁ ସେ ତାଙ୍କ ସହ ଏକ ଦୀର୍ଘ ସାକ୍ଷାତକାର କରିଥିଲେ । ଯାହା ଏକ ପୁସ୍ତକ ଆକାରରେ ପ୍ରକାଶ ପାଇଛି ।

## -ଶାନ୍ତି ନିକେତନରେ ସାହିତ୍ୟ ସଭା-

ସେତେବେଳେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିଲେ ଜାନକୀ ବଲ୍ଲଭ ପଟ୍ଟନାୟକ । ସେ ମଧ୍ୟ ଆମ ସାଙ୍ଗରେ ଯାଇଥିଲେ । ସେଇଠି ନିମାଇଁ ସାଧନ ବାବୁ ମୁଖ୍ୟମନ୍ତ୍ରୀଙ୍କୁ ଶାନ୍ତି ନିକେତନ ଓଡ଼ିଶା ବିଭାଗର ଉନ୍ନତି ପାଇଁ ଓଡ଼ିଶା ସରକାର ସାହାଯ୍ୟ ଦେବାପାଇଁ ଅନୁରୋଧ କରିଥିଲେ ଏବଂ ଜାନକୀବାବୁ ମଧ୍ୟ ସମ୍ମତି ଦେଇଥିଲେ । ଇଏ ୧୯୮୫ ମସିହାର କଥା । ୧୯୮୬ ମସିହାରେ ସାହିତ୍ୟୋତ୍ସବ କେନ୍ଦୁଝର ଠାରେ ଅନୁଷ୍ଠିତ ହେଲା । ସାହିତ୍ୟୋତ୍ସବକୁ ସେ ବର୍ଷ ବିଖ୍ୟାତ ବଙ୍ଗଳା ଔପନ୍ୟାସିକ ଓ କବି ସୁନିଲ ଗଙ୍ଗୋପାଧ୍ୟାୟ ଏବଂ ପ୍ରଫେସର ନିମାଇଁ ସାଧନ ବସୁ ଆସିଥିଲେ । ଷ୍ଟେଜ୍‌ରେ ଜାନକୀବାବୁ ବସିଥିଲେ । ସେତେବେଳେ ରାଜ୍ୟ ସଂସ୍କୃତି ବିଭାଗ ଡେପୁଟି ସେକ୍ରେଟାରୀ ଥିଲେ ସୁଧାଂଶୁ ଭୂଷଣ ରାଉତରାୟ । ଶାନ୍ତି ନିକେତନରେ ଓଡ଼ିଆ ବିଭାଗର ଉନ୍ନତି ପାଇଁ ମୁଖ୍ୟମନ୍ତ୍ରୀ ଯେଉଁ ପ୍ରତିଶ୍ରୁତି ଦେଇଥିଲେ ତା'ର ଫଳଶ୍ରୁତି ସ୍ୱରୂପ ୬ଲକ୍ଷ ଟଙ୍କାର ଏକ ଡ୍ରାଫ୍ଟ ସୁଧାଂଶୁବାବୁ ସାଙ୍ଗରେ ନେଇଥିଲେ । ଷ୍ଟେଜ୍‌ରେ ସେଇ ଡ୍ରାଫ୍ଟ ମୁଖ୍ୟମନ୍ତ୍ରୀ କୁଳପତି ନିମାଇଁ ସାଧନ ବାବୁଙ୍କୁ ପ୍ରଦାନ କରିଥିଲେ । ସେଇ ସଭାରେ ଶାନ୍ତି ନିକେତନ ଓଡ଼ିଆ ବିଭାଗ ଅଧ୍ୟକ୍ଷ ଡଃ ଖଗେଶ୍ୱର ମହାପାତ୍ର ମଧ୍ୟ ଉପସ୍ଥିତ ଥିଲେ । ଏହି ଅର୍ଥ ପାଇଁ ମୁଁ ମୁଖ୍ୟ ସଂଯୋଗକାରୀର ଭୂମିକା ନେଇଥିଲି । ପରେ ଏଥିପାଇଁ ନିମାଇଁ ସାଧନ ବାବୁ ମତେ ଧନ୍ୟବାଦ ଜଣାଇଥିଲେ । କାରଣ ଜାନକୀବାବୁ ଶାନ୍ତି ନିକେତନ ନେବାରେ ମୋର ଭୂମିକା ମୁଖ୍ୟ ଥିଲା ।

## -ସ୍ୱରାଜ୍ୟ ଖବର କାଗଜର ସମ୍ପାଦନା-

'ସ୍ୱରାଜ୍ୟ' ସମ୍ବାଦପତ୍ରର ସମ୍ପାଦକ ରୂପେ ମୁଁ ଯୋଗଦେଲି ୧୯୮୬ ମାର୍ଚ୍ଚ ୧ତାରିଖରେ । କିନ୍ତୁ ମୋର ସମ୍ମତି ନନେଇ ସ୍ୱରାଜ୍ୟର କର୍ମଚାରୀମାନେ ମୋ ନାମକୁ ସମ୍ପାଦକ ରୂପେ ଫେବୃଆରୀ ୨୮ ତାରିଖ ସନ୍ଧ୍ୟା ସଂସ୍କରଣରେ ଛାପି ଦେଇଥା'ନ୍ତି । ସେ ବର୍ଷ ଭୁବନେଶ୍ୱର ପୁସ୍ତକ ମେଳା ଲେଖକ ସାମ୍ମୁଖ୍ୟ ପକ୍ଷରୁ ସ୍ୱାଧୀନ ଭାବେ ଫେବୃଆରୀ ୨୬ ତାରିଖରୁ ମାର୍ଚ୍ଚ ୭ତାରିଖ ପର୍ଯ୍ୟନ୍ତ ଅନୁଷ୍ଠିତ ହେଉଥାଏ । ଫେବୃଆରୀ ୨୮ ତାରିଖରେ ଏକ ଆଲୋଚନାଚକ୍ରରେ ମୁଖ୍ୟ ଅତିଥି କରି ଆମେ 'ମାତୃଭୂମି'ର ସମ୍ପାଦକ ବିଚିତ୍ରାନନ୍ଦ କରଙ୍କୁ ଡାକିଥିଲୁ । ସେ ମଧ ଆସିଥିଲେ । ଆଲୋଚନାଚକ୍ର ଶେଷ ହେବା ପରେ ପରେ ସ୍ୱରାଜ୍ୟର ପନ୍ଦର/ଷୋଳ ଜଣ କର୍ମଚାରୀ ସେଇ ସନ୍ଧ୍ୟାର କାଗଜ ଧରି ପୁସ୍ତକମେଳା ଅଫିସ୍‌କୁ ଆସିଲେ । ସେମାନେ ମୋ ବେକରେ ଫୁଲମାଳ ପିନ୍ଧାଇ ସେଦିନ ସନ୍ଧ୍ୟାର ସ୍ୱରାଜ୍ୟ କାଗଜ ମୋ ହାତକୁ ବଢ଼ାଇ ଦେଲେ । ସେମାନଙ୍କ ମ୍ୟାନେଜର ରଘୁନାଥ ବେହେରା, ଅନ୍ୟ କର୍ମଚାରୀ ଉପେନ୍ଦ୍ର ମହାନ୍ତି, ବିନୋଦ ପଟ୍ଟନାୟକ, ପଣ୍ଡାବାବୁ ସମସ୍ତେ ଏକ ସ୍ୱରରେ କହିଲେ ସାର୍, ଆପଣଙ୍କ ନାଁ ଆମେ ସମ୍ପାଦକ ରୂପେ ଛାପି ଦେଇଛୁ । ଆପଣ କାଗଜର ଦାୟିତ୍ୱ ନନେଲେ କାଗଜ ବନ୍ଦ ହୋଇଯିବ । ଆମ ସତୁରୀ/ପଞ୍ଚସ୍ତରୀ ପରିବାର ଦାଣ୍ଡରେ ବସିବୁ । ମୁଁ ସେମାନଙ୍କ କଥା ଶୁଣି ଖୁବ୍ ଅପ୍ରତିଭ ବୋଧ କଲି । ମୁଁ କହିଲି ତମେସବୁ ମୋତେ ନପଚାରି ମୋ ନାଁ ଛାପିଦେବା ଭଲ ହେଲା ନାହିଁ । ସେମାନେ ସେଇଭଳି ଏକ ସ୍ୱରରେ କହିଲେ ଯଦି ଆପଣ ରାଜି ନହୁଅନ୍ତି ତେବେ କାଲିଠାରୁ ଆମେ କାଗଜ ବନ୍ଦ କରିଦେବୁ । ପଞ୍ଚସ୍ତରୀ ପରିବାରର ନିଶ୍ୱାସ ଆପଣଙ୍କ ଉପରେ ପଡ଼ିବ । ବିଚିବାବୁ ଏ କଥା ଦେଖି ରୀତିମତ ଆଶ୍ଚର୍ଯ୍ୟ । ମୁଁ ତାଙ୍କୁ ମଧ କିଛି କହିପାରୁ ନାହିଁ । ସେ ପର୍ଯ୍ୟନ୍ତ ମୁଁ 'ମାତୃଭୂମି'ର ଭୁବନେଶ୍ୱର ସମ୍ବାଦଦାତା ଅଛି । ନିୟମ ଅନୁସାରେ ମାତୃଭୂମିରୁ ଇସ୍ତଫା ନଦେଇ ମୁଁ ଅନ୍ୟ ଖବର କାଗଜରେ ଯୋଗଦେଇ ପାରିବା କଥା ନୁହେଁ । ସ୍ୱରାଜ୍ୟ ଭୁବନେଶ୍ୱରର ସବୁଠାରୁ ପୁରାତନ ସମ୍ବାଦପତ୍ର । ୧୯୬୬ ମସିହାରୁ ଏହା ପ୍ରକାଶ ପାଇ ଆସୁଥିଲା । ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ଏହାର ପ୍ରତିଷ୍ଠାତା ଥିଲେ । ସେ ବଞ୍ଚିଥିବା ପର୍ଯ୍ୟନ୍ତ ଏହା ଭଲ ଭାବରେ ଚାଲୁଥିଲା । ମାତ୍ର ୧୯୭୫ରେ ତାଙ୍କର ପରଲୋକ ପରେ ଏହାର ଅବସ୍ଥା ଖରାପ ହେଲା । ସିଂହଦେଓଙ୍କ ମୃତ୍ୟୁ ପରେ ଓଡ଼ିଶାରେ ସ୍ୱତନ୍ତ୍ର ପାର୍ଟିର ମଧ ବିଲୟ ଘଟିଲା । ମୋତେ କର୍ମଚାରୀମାନେ ଯାହା କହୁଥିଲେ କଳାହାଣ୍ଡି ପୂର୍ବତନ ମହାରାଜା ପ୍ରତାପ କେଶରୀ ଦେଓ କିଛି ବର୍ଷ ଏହାର ଦାୟିତ୍ୱ ନେଇଥିଲେ । ମାତ୍ର ୧୯୮୦ ପରଠାରୁ କେହି ଏହାର ଦାୟିତ୍ୱ ନେଲେ ନାହିଁ । ସେତେବେଳେ କର୍ମଚାରୀମାନେ ମାଗି ଯାଚି ଏହାକୁ ବଞ୍ଚାଇ ରଖିଲେ ।

ମୋ ଉପରେ କର୍ମଚାରୀମାନଙ୍କର ଆସ୍ଥା, ଭରସା ଓ ନିର୍ଭରତା ଦେଖି ମୁଁ ଚକିତ ହୋଇ ପଡ଼ିଲି । ଗୋଟିଏ ଖବର କାଗଜ ଚଳାଇବା ଏତେ ସହଜ କଥା ନୁହେଁ । ଅବଶ୍ୟ 'ମାତୃଭୂମି'ରେ ୧୯୭୭ରେ କର୍ମଚାରୀମାନେ ଆନ୍ଦୋଳନ କରି କାଗଜ ଦାୟିତ୍ୱ ହାତକୁ ନେଇଥିଲେ । ବସ୍ତୁତଃ ମୁଁ ସେତେବେଳେ ବିଭିନ୍ନ ସଂସ୍ଥାରୁ ବିଜ୍ଞାପନ ଆଣି ଏହାକୁ ଚଳାଇ ରଖିଥିଲି । ମାତ୍ର କଟକରେ ଯେଉଁମାନଙ୍କୁ ଦାୟିତ୍ୱ ଦିଆଯାଇଥିଲା ସେମାନଙ୍କ ମଧ୍ୟରୁ ଦୁଇଜଣ ଲକ୍ଷାଧିକ ଟଙ୍କା ବାଟମାରଣା କରି କାଗଜକୁ ଏଭଳି ଏକ ସ୍ତରକୁ ନେଇ ଆସିଲେ ଯେତେବେଳେ ମୁଁ ସେମାନଙ୍କୁ ହଟାଇ ଦେଇ ପୁଣି କାଗଜର ଦାୟିତ୍ୱ ବିଚିବାବୁଙ୍କୁ ଦେଇଥିଲି । ସେଇ ଦୃଷ୍ଟିରୁ କାଗଜ ପରିଚାଳନା ଅଭିଜ୍ଞତା ମୋର ଥିଲା । ମାତ୍ର ଅର୍ଥ ନଥିଲା । ବିଚିବାବୁ ଏକଥା ଦେଖି ବୋକା ହୋଇ ଗଲେଣି । ସେ କହିଲେ ବରେନ୍ଦ୍ରବାବୁ ଆପଣଙ୍କୁ ଅଭିନନ୍ଦନ । ସ୍ୱରାଜ୍ୟକୁ ଆପଣ ଠିକ୍ ଚଳାଇ ପାରିବେ ।

ତା' ପରଦିନ ସମସ୍ତ ଖବର କାଗଜରେ ମୁଁ ସ୍ୱରାଜ୍ୟର ନୂତନ ସମ୍ପାଦକ ରୂପେ ଦାୟିତ୍ୱ ନେଇଥିବା ବିଷୟ ପ୍ରକାଶ ପାଇଲା । ଗୋଟିଏ ପଟେ ପୁସ୍ତକମେଳାର ପ୍ରତିଷ୍ଠାତା ଏବଂ ଅନ୍ୟ ଦିଗରେ ସ୍ୱରାଜ୍ୟ ଭଳି ଏକ ପୁରୁଣା କାଗଜର ସମ୍ପାଦକ ଦାୟିତ୍ୱ ଅନେକଙ୍କୁ ବିଶେଷକରି କିଛି ସାମ୍ବାଦିକ ଓ ଆଉକିଛି ବନ୍ଧୁଙ୍କୁ ମୋ ପ୍ରତି ଈର୍ଷାଳୁ କରି ପକାଇଲା । ତା' ଭିତରେ ଥିଲେ ମୋ ହାତଗଢ଼ା ଓଡ଼ିଶା ୟୁନିୟନ ଅଫ୍ ଜର୍ଣ୍ଣାଲିଷ୍ଟର କିଛି ସଦସ୍ୟ । କଥାରେ ଅଛି ସ୍ୱଜାତି ପର ହିଂସ୍ରକ । ମୁଁ ସେତେବେଳେ ଏହାର ସାଧାରଣ ସମ୍ପାଦକ ଥିଲି । ନାରାୟଣ ରଥ ଏହାର ସଭାପତି ଥିଲେ । ୧୯୮୬ ମସିହାରେ ମୁଁ ନ୍ୟାସନାଲ୍ ୟୁନିୟନ୍ ଅଫ୍ ଜର୍ଣ୍ଣାଲିଷ୍ଟର ଉପ ସଭାପତି ରୂପେ ନିର୍ବାଚିତ ହୋଇଥିଲି । ସେ ବର୍ଷ ମତେ ଓଡ଼ିଶାରେ ଜାତୀୟ କାର୍ଯ୍ୟକାରୀ କମିଟି ବୈଠକ ଡାକିବାକୁ ୟୁନିୟନ କର୍ତ୍ତାମାନେ ଅନୁରୋଧ କଲେ । ମୁଁ ରାଜି ହେଲି । ଏଥିପାଇଁ ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଏବଂ ବିରୋଧୀ ଦଳ ନେତା ବିଜୁ ପଟ୍ଟନାୟକଙ୍କ ସହଯୋଗ କାମନା କଲି । ବଡ଼ ବଡ଼ କମ୍ପାନି ଓ ନିଗମର କର୍ତ୍ତାମାନଙ୍କୁ ମଧ୍ୟାହ୍ନ ଭୋଜନ ଓ ରାତ୍ରି ଭୋଜନ ଦେବା ପାଇଁ ଅନୁରୋଧ କଲି । ସବୁ ଠିକ୍ ହୋଇଗଲା । ୧୯୮୬ ନଭେମ୍ବର ମାସ ସାତ ଓ ଆଠ ତାରିଖରେ କାର୍ଯ୍ୟକାରୀ କମିଟି ବୈଠକ ହେଲା । ସମଗ୍ର ଦେଶରୁ ଅଶୀଜଣ କାର୍ଯ୍ୟକାରୀ କମିଟି ସଦସ୍ୟ, ବିଭିନ୍ନ ରାଜ୍ୟ ୟୁନିୟନ ସଭାପତି ଓ ସାଧାରଣ ସମ୍ପାଦକମାନେ ଏଥିରେ ଯୋଗ ଦେଇଥିଲେ । ଏମାନଙ୍କ ରହିବା ପାଇଁ ଓଡ଼ିଶା ଷ୍ଟେଟ ଗେଷ୍ଟ ହାଉସ୍‌ରେ କୋଡ଼ିଏଟି କୋଠରୀ, ସତ୍ୟନଗର ଆଇ.ବି.ରେ କୋଡ଼ିଏଟି କୋଠରୀ ଏବଂ ସର୍କିଟ୍ ହାଉସ୍‌ରେ ଛ/ସାତଟି କୋଠରୀ ନିଆଯାଇଥିଲା । ସ୍ୱସ୍ତି ହୋଟେଲରେ କାର୍ଯ୍ୟକାରୀ ବୈଠକ ଅନୁଷ୍ଠିତ ହୋଇଥିଲା । ସ୍ୱସ୍ତିରେ ଦି'ଦିନଯାକ ଲଞ୍ଚ, କୋଣାର୍କ ଓ ପ୍ରାଚୀ ହୋଟେଲ୍‌ରେ କକ୍‌ଟେଲ୍ ଡିନର ହୋଇଥିଲା । ଦୁଇଦିନ ମିଟିଂ ପରେ ସମସ୍ତଙ୍କୁ ଆମୋଦ ଭ୍ରମଣ ପାଇଁ ଧଉଳି, କୋଣାର୍କ ଓ ପୁରୀ ନିଆଗଲା । ପୁରୀ ବି.ଏନ୍.ଆର୍. ହୋଟେଲ୍‌ରେ ବିଜୁବାବୁ କକ୍‌ଟେଲ୍ ଡିନର ଦେଇଥିଲେ । ନିଜେ ଉପସ୍ଥିତ ରହି ସମସ୍ତଙ୍କ କଥା ବୁଝୁଥିଲେ । ମଝିରେ ମଝିରେ ବେଶ୍ ଚମତ୍କାର ଜୋକ୍ କରୁଥିଲେ । କଲିକତାର କିଛି ସାମ୍ବାଦିକ ବନ୍ଧୁ ମଦ୍ୟପାନରେ ଅଭ୍ୟସ୍ତ । ବିଜୁବାବୁ ସେମାନଙ୍କୁ ଦେଖି କହିଲେ କ'ଣ ଗ୍ଲାସ୍‌ରେ ବିଲେଇ ପିଇଲା ଭଳି ଚାକୁଚାକୁ କରୁଛ ? ତମ ବୟସ ବେଳେ ମୁଁ ଗ୍ଲାସ୍ ନୁହେଁ, ବୋତଲରେ ମୁହଁ ଲଗାଇ ପିଉଥିଲି । ପରିସ୍ଥିତି ଏପରି ହେଲା ଅନେକ ବନ୍ଧୁ ଉତ୍ସାହିତ ହୋଇ ବୋତଲରେ ମୁହଁ ଲଗାଇ ଦେଲେ । ଶେଷରେ ଅନେକଙ୍କୁ ଟେକି ଟେକି ନେଇ ବସ୍‌ରେ ବସାଇବାକୁ ପଡ଼ିଲା । ୧୯୮୬ କାର୍ଯ୍ୟକାରିଣୀ ବୈଠକ ଏନ୍.ୟୁ.ଜେ.ର ଏକ ଅତି ସଫଳତମ ବୈଠକ । ତା' ପରେପରେ ଏନ୍.ୟୁ.ଜେ.ରେ ମୋର ଖାତିର ବଢ଼ିଗଲା ।

ପରବର୍ଷ ୧୯୮୭ ଏପ୍ରିଲ୍ ମାସରେ ଏହ୍ଲାବାଦ ଠାରେ କାର୍ଯ୍ୟକାରୀ କମିଟି ବୈଠକ ଅନୁଷ୍ଠିତ ହେଲା । ମୁଁ ଏବଂ ମୋର ପତ୍ନୀ ଏହି ଅଧିବେଶନରେ ଯୋଗ ଦେଇଥିଲୁ । ଭୁବନେଶ୍ୱର ଅଧିବେଶନର ଅଭୁତପୂର୍ବ ସଫଳତା ୟୁନିୟନ୍‌ରେ ମୋର ମର୍ଯ୍ୟାଦା ବଢ଼ାଇ ଦେଇଥାଏ । ମୋ ପାଇଁ ଏହ୍ଲାବାଦ ସର୍କିଟ୍ ହାଉସ୍‌ରେ ଏକ ଭି.ଆଇ.ପି. ସ୍ୟୁଟ୍ ଏବଂ ଗୋଟିଏ କାର୍ ବ୍ୟବସ୍ଥା ହୋଇଥିଲା । ଭୁବନେଶ୍ୱରରେ ମୁଁ ଏବଂ ମୋ ବନ୍ଧୁମାନେ ବିଭିନ୍ନ ମନ୍ତ୍ରୀ ଏବଂ ନିଗମରୁ ପ୍ରାୟ କୋଡ଼ିଏଟି କାର୍ ଆଣି ଆମର କର୍ମକର୍ତ୍ତାମାନଙ୍କ ଯିବା ଆସିବା ପାଇଁ ବ୍ୟବସ୍ଥା କରି ଦେଇଥିଲି । ତେଣୁ ମୋର ସ୍ୱାଚ୍ଛନ୍ଦ୍ୟ ପାଇଁ ଏହ୍ଲାବାଦଠାରେ ୟୁ.ପି. ସାମ୍ବାଦିକ ସଂଘ ଦୃଷ୍ଟି ଦେଇଥିଲେ । ସେମାନଙ୍କୁ ବିଭିନ୍ନ ହୋଟେଲ୍ ଓ ଲଜିଂରେ ରଖିବା ବ୍ୟବସ୍ଥା ହୋଇଥିଲା । ସକାଳୁ ସମସ୍ତଙ୍କୁ ତ୍ରିବେଣୀ ସଂଗମ ସ୍ଥାନକୁ ମୋଟର ବୋଟ୍‌ରେ ନିଆ ଯାଇଥିଲା । ମୁଁ ଏବଂ ମୋ ପତ୍ନୀ ଦୁହେଁ ଏକ ବୋଟ୍‌ରେ ତ୍ରିବେଣୀ ସଂଗମ ସ୍ଥାନକୁ ଯାଇ ମୁଣ୍ଡରେ ପାଣି ଛିଞ୍ଚିଥିଲୁ । ପରେ କୂଳକୁ ଆସି ସ୍ନାନ କରିଥିଲୁ ।

ୟୁନିୟନ୍‌ରେ ମୋର କାଟ୍‌ତି ଦେଖି ଆମର କିଛି ବନ୍ଧୁ ଧୀରେଧୀରେ ମୋ ପ୍ରତି ଈର୍ଷାନ୍ୱିତ ହେଲେ । ସେମାନଙ୍କର ନିଜର ସେ ସ୍ତରକୁ ଯିବାର ଉଦ୍ୟମ ନଥିଲା । ମୁଁ କାର୍ଯ୍ୟକାରୀ କମିଟି ହେଉ ବା ଜାତୀୟ ପରିଷଦ ହେଉ ବିଭିନ୍ନ ରାଜ୍ୟରୁ ଆସିଥିବା ସାମ୍ବାଦିକ ବନ୍ଧୁମାନଙ୍କ ସହ ମିଶିଥାଏ । ଅଧିବେଶନ ସମୟରେ ରାତିରେ କେଉଁଠି କେଉଁଠି କକ୍‌ଟେଲ୍ ପାର୍ଟିହେଲେ ମୋତେ ଡକରା ଆସେ । ବିଶେଷ କରି ପଶ୍ଚିମବଙ୍ଗ, ଉତ୍ତର ପ୍ରଦେଶ, ଦିଲ୍ଲୀ, ଚଣ୍ଡିଗଡ଼, ଜୟପୁର ଓ ମାଡ୍ରାଜର ବନ୍ଧୁମାନଙ୍କର ଯଦି କିଛି ଡିନର ପାର୍ଟିବା ଡ୍ରିଙ୍କ୍ ଆସର ହୁଏ ମୋତେ ନିଶ୍ଚୟ ଡକରା ଆସେ । ଆମର ଅନ୍ୟ ବନ୍ଧୁମାନେ ନିଜକୁ ନିଜ ଭିତରେ ସୀମିତ ରଖିଥା'ନ୍ତି । ଅନ୍ୟ ରାଜ୍ୟର ସାମ୍ବାଦିକ ବନ୍ଧୁଙ୍କ ସହ ମିଳାମିଶା କରିବା କିମ୍ବା ଡ୍ରିଙ୍କ୍ ପାର୍ଟିରେ ଯୋଗ ଦେବା କିମ୍ବା ନିଜେ ଡ୍ରିଙ୍କ୍ ପାର୍ଟିକରି ଅନ୍ୟମାନଙ୍କୁ ଡାକିବାରେ ଅଭ୍ୟସ୍ତ ନଥିଲେ । କହିରଖେ ସାମ୍ବାଦିକ ସମ୍ମିଳନୀ ସନ୍ଧ୍ୟାରେ ଡ୍ରିଙ୍କ ପାର୍ଟିପ୍ରାୟ ହୋଇଥାଏ । ମୁଁ ମୋ ପକ୍ଷରୁ ମଝିରେ ମଝିରେ ଡ୍ରିଙ୍କ୍ ପାର୍ଟିଆୟୋଜନ କରି ୟୁନିୟନ ସଭାପତି, ସାଧାରଣ ସମ୍ପାଦକ ଏବଂ କିଛି ବରିଷ୍ଠ ସାମ୍ବାଦିକଙ୍କୁ ନିମନ୍ତ୍ରଣ କରିଥାଏ । ମୋର ସୌଭାଗ୍ୟ ମୋର କେତେକ ପାର୍ଟିକୁ ଇନ୍ଦର ମାଲହୋତ୍ରା, ପ୍ରେମ ପ୍ରକାଶ, ପି.କେ. ରାୟ, କେ.ଏନ୍. ମଲ୍ଲିକ, ପୃଥ୍ୱିଶ ଚକ୍ରବର୍ତ୍ତି, କେ.ଏନ୍. ଗୁପ୍ତା, ରାଜେନ୍ଦ୍ର ପ୍ରଭୁ, ନିତିଶ ଚକ୍ରବର୍ତ୍ତି, ଶ୍ୟାମ ଖୋସଲା ପ୍ରଭୃତି ଭାରତର ବିଖ୍ୟାତ ସାମ୍ବାଦିକମାନେ ଯୋଗ ଦେଉଥିଲେ । ଏହା ୟୁନିୟନରେ ଅଧିକ ଭାବେ ପ୍ରଚାରିତ କରି ଦେଇଥିଲା ।

## -ଦିଲ୍ଲୀରେ ଆସର-ଖୁରବନ୍ତ ସିଂହ ଓ ଅମିତାଭ ବଚ୍ଚନ-

ଦିଲ୍ଲୀ ଗୁଲମୋହର ପାର୍କରେ ଭାରତ ପ୍ରେସ୍ ଫଟୋଗ୍ରାଫର ଆସୋସିଏସନ୍‌ର ସଭାପତି ପ୍ରେମ ପ୍ରକାଶଙ୍କ ବାସଭବନ । ବିରାଟ ପ୍ରାସାଦ । ସେଇ ଗୁଲ୍‌ମୋହର ପାର୍କରେ ପ୍ରେମ ପ୍ରକାଶଙ୍କ ଘର ପାଖରେ ଅମିତାଭ ବଚ୍ଚନଙ୍କ ଘର । ଅମିତାଭ ବଚ୍ଚନ ଏମ୍.ପି. ଥିବାବେଳେ ଏନ୍.ୟୁ.ଜେ.ର ପୂର୍ବତନ ସଭାପତି କପିଳ ବର୍ମା ରାଜ୍ୟସଭା ସଦସ୍ୟ ଥିଲେ । କପିଳ ହିନ୍ଦୁସ୍ଥାନ ଟାଇମ୍ସର ଲକ୍ଷ୍ନୌ ବ୍ୟୁରୋ ମୁଖ୍ୟ ଥିଲେ । ୧୯୮୮ ଜୁନ୍ ମାସରେ ପ୍ରେମ ପ୍ରକାଶଙ୍କ ଘରେ ଏକ ଡିନର ଥିଲା । ମୁଁ, ମୋର ପତ୍ନୀ ସ୍ନେହଲତା, ମୋ ପୁଅ(ସେତେବେଳେ ତା' ବୟସ ଦଶ ବର୍ଷ) ଲକୁ ଏଥିରେ ଯୋଗ ଦେଇଥିଲୁ । ମିସେସ୍ ପ୍ରକାଶ ଖୁବ୍ ସ୍ନେହୀ ମହିଳା । ସେ ମୋ ସ୍ତ୍ରୀଙ୍କ ସହ ଗପ ଜମେଇ ଦେଇଥା'ନ୍ତି । ମୋ ସାଙ୍ଗରେ ଭୁବନେଶ୍ୱରର ସାମ୍ବାଦିକ ସୁବାଷ ପଟ୍ଟନାୟକ ଓ ରତିକାନ୍ତ ମହାନ୍ତି ମଧ ଥିଲେ । ପ୍ରେମ ପ୍ରକାଶ କପିଲ୍‌ଙ୍କୁ ଫୋନ୍ କଲେ ଅମିତାଭଙ୍କୁ ଧରି ଆସ ।

ଦିଲ୍ଲୀରେ ମୋର ଏଭଳି କିଛି ବନ୍ଧୁ ଥିଲେ ଯେଉଁମାନେ ମୁଁ ଯେଉଁ ତିନି ଚାରିଦିନ ରହେ ମୋର ଯିବା ଆସିବା ପାଇଁ ଗୋଟିଏ ଗାଡ଼ି ବ୍ୟବସ୍ଥା କରି ଦେଇଥିଲେ । ମୁଁ ଗଲେ ପ୍ରାୟ ଓଡ଼ିଶା ଭବନରେ ରହେ । ସେଥର ଦିଲ୍ଲୀରେ କାର୍ଯ୍ୟକାରୀ କମିଟି ବୈଠକ ଥିଲା । ସେଥିପାଇଁ ମୋ ସାଙ୍ଗରେ ସୁଭାଷ ପଟ୍ଟନାୟକ ଓ ରତିକାନ୍ତ ମହାନ୍ତି ଯାଇଥିଲେ । ଗୁଲମୋହର ପାର୍କରେ ପ୍ରେମ ପ୍ରକାଶ ତାଙ୍କ ଘରେ ସେଦିନ ସନ୍ଧ୍ୟାରେ ଏକ ପାର୍ଟିଡାକିଥିଲେ । ଆମେ ସମସ୍ତେ ଯାଇଥିଲୁ । ମାତ୍ର ସେଠାରେ ସେ ଥାଟ-ବାଟ ଦେଖି ସୁଭାଷ, ରତିକାନ୍ତ ଦୁହେଁ କହିଲେ ଭାଇ ଆମକୁ ଓଡ଼ିଶା ଭବନରେ ଛାଡ଼ିଦିଅ । ପ୍ରେମ ପ୍ରକାଶଙ୍କ ଘର ବାହାରେ ଆମେ ଠିଆ ହୋଇ କଥାବାର୍ତ୍ତା ହେଉଛୁ । ଏହି ସମୟରେ ଏକ ଲମ୍ବା ଗାଡ଼ି ଠିଆ ହେଲା । ସେଥିରୁ ଓହ୍ଲାଇ ଆସିଲେ କପିଳ ବର୍ମା ଏବଂ ଅମିତାଭ ବଚ୍ଚନ । ମୁଁ ଯାଇ କପିଳଙ୍କ ସାଙ୍ଗରେ କରମର୍ଦ୍ଦନ କରିବା ବେଳେ ସେ ଅମିତାଭଙ୍କ ସହ ମୋର ପରିଚୟ କରାଇ ଦେଲେ ।

ମୁଁ ସୁଭାଷ ଆଉ ରତିକାନ୍ତକୁ ଡାକିଲା ବେଳକୁ ଦୁହେଁ ଗାଡ଼ି ନେଇ ପାର ହୋଇଥିଲେ । ଆମେ ଭିତରକୁ ଆସିଲୁ । ଭିତରେ ପାର୍ଟିଜମ୍-ଜମାଟ । ଅନ୍ୟମାନଙ୍କ ମଧ୍ୟରେ ରାଜେନ୍ଦ୍ର ପ୍ରଭୁ, କେ.ଏନ୍.ଗୁପ୍ତା, ଟାଇମ୍ସ ଅଫ୍ ଇଣ୍ଡିଆ ଲଣ୍ଡନ ପ୍ରତିନିଧି କେ.ଏନ୍. ମଲ୍ଲିକ । ବିଖ୍ୟାତ ସାମ୍ବାଦିକ ଓ ଇଲୁଷ୍ଟ୍ରେଟେଡ ଉଇକ୍ଲି ସମ୍ପାଦକ ଖୁସ୍‌ବନ୍ତ ସିଂହ, ଇଣ୍ଡିଆନ ଏକ୍ସପ୍ରେସ୍‌ର ସମ୍ପାଦକ ହିରଣ୍ମୟ କାର୍ଲେକର ଆଦି ଉପସ୍ଥିତ ଥିଲେ । ଅମିତାଭ ବଚ୍ଚନ ସମସ୍ତଙ୍କ ସାଙ୍ଗରେ ପରିଚୟ ହୋଇ କ୍ଷମା ମାଗି ଚାଲିଗଲେ । ପାର୍ଟିରାତି ଏଗାରଟା/ବାରଟା ପର୍ଯ୍ୟନ୍ତ ଚାଲିଲା । ଖୁସ୍‌ବନ୍ତ ସିଂହ ଡ୍ରିଙ୍କ୍ କଲାବେଳେ ବହୁ ମଜମଜା ଜୋକ୍ କହୁଥା'ନ୍ତି । ବିଭିନ୍ନ ଜୋକ୍‌କୁ ନେଇ ତାଙ୍କର ଗୋଟିଏ ବହି ପ୍ରକାଶ ପାଇଥିଲା । ମୋ ପାଖରେ ବସିଥିଲେ ଇକୋନୋମିକ ଟାଇମ୍ସର ଦିଲ୍ଲୀ ଆବାସିକ ସମ୍ପାଦକ କେ.ଏନ୍.ଗୁପ୍ତା । ରାତି ବଢ଼ିବା ସଙ୍ଗେସଙ୍ଗେ ପାର୍ଟିଜମୁଥିଲା । ସ୍ତ୍ରୀ ଲୋକମାନେ ଆମ ପାର୍ଟିର ସାମାନ୍ୟ ଦୂରରେ ବସିଥା'ନ୍ତି । ଖୁସ୍‌ବନ୍ତ ସିଂହ ବେଶ୍ ପିଇଲାବାଲା । ପ୍ରେମ ପ୍ରକାଶ ବ୍ଲାକ୍ ଲେବଲ୍ ଜନିୱାକର ବ୍ୟବସ୍ଥା କରିଥା'ନ୍ତି । ଗୁପ୍ତାଜୀ ଡ୍ରିଙ୍କ୍ ନେଉନେଉ ମୋ କାନରେ ଚୁପ୍‌ଚୁପ୍ କହିଲେ ଖୁସ୍‌ବନ୍ତ ସିଂହ ଶାଲା ବଡ଼ ହାରାମୀ । ମୁଁ ତାଙ୍କ ମୁହଁକୁ ଆଶ୍ଚର୍ଯ୍ୟ ହୋଇ ଚାହିଁଲି । ସେ କହିଲେ ତା' ଘରେ ପାର୍ଟିଡାକିଲେ ସାଢ଼େ ଆଠଟା ବେଳେ ପାର୍ଟିବନ୍ଦ କରି କହିବ ଭାୟା- ମେରା ଲେଖନେକା ଟାଇମ୍ ହୋ ଗୟା । ଅଭି ପାର୍ଟିବନ୍ଦ ହୋଗା । ମାତ୍ର ବାହାରକୁ ଗଲେ ରାତି ଏଗାରଟା/ବାରଟା ଏପରିକି ଗୋଟାଏ ପର୍ଯ୍ୟନ୍ତ ବସିବାରେ ତା'ର କିଛି ସଙ୍କୋଚ ନଥାଏ । ଦିଲ୍ଲୀ ପାର୍ଟିରେ ଏଇମିତି ସବୁ ମୁଖରୋଚକ କଥା ଚାଲେ । ପ୍ରେମ ପ୍ରକାଶ ଦିଲ୍ଲୀର ବେଶ୍ ନାମୀ ଦାମୀ ଲୋକଙ୍କ ମଧ୍ୟରୁ ଜଣେ । ତାଙ୍କ ପାର୍ଟିରେ ମଧ୍ୟ ଦିଲ୍ଲୀର ବହୁ ବିଶିଷ୍ଟ ଲୋକ ଆସନ୍ତି । ସେଦିନ ପାର୍ଟି ଶେଷ ହେଉହେଉ କେତେ ରାତି ହେଲା ମୁଁ ଜାଣେନି । କାରଣ ମୁଁ ଏଗାରଟା ବେଳକୁ ଖାଇଦେଇ ଚାଲି ଆସିଥିଲି ।

ଦିଲ୍ଲୀର ଏହି ସବୁ ପାର୍ଟିସମ୍ପର୍କରେ ଭୁବନେଶ୍ୱରରେ ସୁଭାଷ ରତିକାନ୍ତ ବନେଇ-ଚୁନେଇ କହନ୍ତି । ଦିଲ୍ଲୀକୁ ମୁଁ ୧୯୮୪ରୁ ୧୯୯୩ ମସିହା ପର୍ଯ୍ୟନ୍ତ ନିୟମିତ ଯାଉଥିଲି । ୧୯୮୬ରେ ସ୍ୱରାଜ୍ୟର ସମ୍ପାଦକ ଦାୟିତ୍ୱ ନେଲାପରେ ଡି.ଏ.ଭି.ପି. ଅଫିସ୍‌କୁ ବିଜ୍ଞାପନ ଦର ବୃଦ୍ଧି କରିବା ପାଇଁ ଏବଂ ଅଧିକ ବିଜ୍ଞାପନ ଦାୟିତ୍ୱରେ ଥିଲେ ଏବଂ ଯେଉଁମାନେ ବିଲ୍ ପାଶ୍ କରିବା ଦାୟିତ୍ୱରେ ଥା'ନ୍ତି ସେମାନଙ୍କୁ ଅଧିକାଂଶ ସମୟରେ ସମ୍ବଲପୁରୀ ଶାଢ଼ୀ, ପଟ୍ଟଚିତ୍ର ଆଦି ଉପହାର ଦେବାକୁ ପଡୁଥିଲା । ତେବେ ମୁଁ ଏନ୍.ୟୁ.ଜେ.ର ଉପ ସଭାପତି ଏବଂ ପରେ ସଭାପତି ଥିବାରୁ ବଡ଼ ବଡ଼ ଅଫିସରଙ୍କ ପାଖରେ ମୋର କାଟ୍‌ତି ଥିଲା । ତେଣୁ ଅନେକ କାମ ସହଜରେ ହୋଇ ଯାଉଥିଲା ।

୧୯୮୮ ମସିହାରେ ଏକ ଘଟଣା ଘଟିଲା । ସମ୍ଭବତଃ ଅଗଷ୍ଟ ମାସ ହେବ । ଏନ୍.ୟୁ.ଜେ.ର ଦ୍ୱିବାର୍ଷିକ ସମ୍ମିଳନୀ ଦିଲ୍ଲୀର ମାଭେଲଙ୍କର ହଲ୍‌ରେ ହେଉଥାଏ । ସେଇ ସମ୍ମିଳନୀରେ ଦ୍ୱିତୀୟ ଥର ଉପ-ସଭାପତି ପାଇଁ ମୋ ନାମ ପ୍ରସ୍ତାବ ହେଲା । ମୁଁ ସେ ସମ୍ପର୍କରେ ବିନ୍ଦୁ ବିସର୍ଗ ଜାଣି ନଥିଲି । ନିର୍ବାଚନରେ ଦୁଇଟି ଉପ-ସଭାପତି ପଦ ପାଇଁ ଦୁଇଜଣଙ୍କ ନାମ ଥିବାରୁ ମୁଁ ନିର୍ବାଚିତ ହୋଇଗଲି । ମୁଁ ଉପ-ସଭାପତି ଦ୍ୱିତୀୟଥର ପାଇଁ ହୋଇଯିବା ଫଳରେ ଓଡ଼ିଶାରୁ ଯାଇଥିବା କିଛି ସଭ୍ୟ ତା'ର ବିରୋଧ କଲେ । ରବି ମହାନ୍ତି ନାମରେ ପ୍ରଜାତନ୍ତ୍ରର ଭୁବନେଶ୍ୱର ପ୍ରତିନିଧି ଚାରି/ପାଞ୍ଚ ଜଣଙ୍କୁ ମିଳାଇ ମୋ ବିରୁଦ୍ଧରେ ଅଭିଯୋଗ କଲେ । ତାଙ୍କର ଅଭିଯୋଗ ଥିଲା ଓଡ଼ିଶାର ସଦସ୍ୟମାନେ ବରେନ୍ଦ୍ର ବାବୁଙ୍କୁ ବିରୋଧ କରୁଥିବାରୁ ତାଙ୍କୁ ଉପ-ସଭାପତି ପଦ ଦିଆ ନଯାଉ । ସେତେବେଳେ ମୁଁ ନଥିଲି । ଦଶ ମିନିଟ୍ ପରେ ମୁଁ ଆସି ପହଞ୍ଚିବା ପରେ ରତିକାନ୍ତ ମୋତେ ସବୁକଥା କହିଲା । ମୁଁ ଶୁଣି ସାଙ୍ଗେସାଙ୍ଗେ ଷ୍ଟେଜ୍ ଉପରକୁ ଯାଇ ରବି କହିଥିବା କଥାକୁ ଚାଲେଞ୍ଜ୍ କଲି । ମୁଁ କହିଲି ଉପ-ସଭାପତି ମୁଁ କିପରି ହେଲି ଏବଂ ମୋର ନାମ କିଏ ପ୍ରସ୍ତାବ କଲା ମୁଁ ଜାଣେ ନାହିଁ । ମାତ୍ର ମୁଁ ରବି ମହାନ୍ତିଙ୍କୁ ଚାଲେଞ୍ଜ କରୁଛି ଏବଂ ଏଠି ଉପସ୍ଥିତ ଓଡ଼ିଶାର ସଦସ୍ୟମାନଙ୍କୁ

ଅନୁରୋଧ କରୁଛି ଯେ ସେମାନେ ମୋତେ ବିରୋଧ କରୁଛନ୍ତି କି ? ମୁଁ କହିବା ପରେ ପରେ ସୁଭାଷ ପଟ୍ଟନାୟକ ରତିକାନ୍ତ, ସେକ୍ ମନାନ୍ ଏବଂ ବାଲେଶ୍ୱରର ବହୁ ବନ୍ଧୁ ଠିଆହୋଇ ମୋତେ ସମର୍ଥନ କରିବା ସଙ୍ଗେସଙ୍ଗେ ରବି ମହାନ୍ତିର ଘରବୁଡ଼ା ପଣ ପାଇଁ ନିନ୍ଦା କରିଥିଲେ । ଶେଷରେ କରତାଳି ଧ୍ୱନିରେ ମୋ ନାମ ଗୃହୀତ ହେଲା ଏବଂ ମୁଁ ସିନିୟର ମୋଷ୍ଟ ଉପ-ସଭାପତି ରୂପେ ନିର୍ବାଚିତ ହେଲି ।

ଏହି ଘଟଣା ମୋର କିଛି ବିରୋଧୀ ସାମ୍ବାଦିକ ବନ୍ଧୁଙ୍କୁ ବଡ଼ ଲଜ୍ଜିତ ଓ ଅପମାନିତ କରିଥିଲା । ପରଦିନ ସନ୍ଧ୍ୟାରେ ମାଭଲଙ୍କର ହଲ୍ ଲନ୍‌ରେ ମୁଁ ଏବଂ ଆଉ ଦୁଇ/ତିନିଜଣ ବନ୍ଧୁ ବସି କଥାବାର୍ତ୍ତା ହେଉଥିବା ବେଳେ ରତି ମହାନ୍ତିଙ୍କ ସାଙ୍ଗରେ ୪/୫ଜଣ ମୋ ପାଖକୁ ଆସିଲେ । ସେମାନଙ୍କ ପକ୍ଷରୁ ରାଉରକେଲାର ଧରିତ୍ରୀ ସାମ୍ବାଦିକ ବଂଶୀଧର ମହାପାତ୍ର କଥା ଆରମ୍ଭ କରି କହିଲେ ବରେନ୍ଦ୍ରବାବୁ ଆପଣ ଏବେ ସିନିୟର ମୋଷ୍ଟ ଭାଇସ୍-ପ୍ରେସିଡେଣ୍ଟ ହେବା ପରେ ଆପଣଙ୍କ ଉପରେ ଅଧିକ ଦାୟିତ୍ୱ ପଡ଼ିବ । ଦେଶର ବିଭିନ୍ନ ସ୍ଥାନକୁ ଆପଣଙ୍କୁ ଯିବାକୁ ପଡ଼ିବ । ଏନ୍.ୟୁ.ଜେ.ର ସଭାପତିଙ୍କ ଅନୁପସ୍ଥିତିରେ ଆପଣଙ୍କୁ ସଭାପତି ଦାୟିତ୍ୱ ତୁଲାଇବାକୁ ହେବ । ମୁଁ ବଂଶୀବାବୁଙ୍କ କଥା ଶୁଣି କହିଲି ଆପଣ କ'ଣ କହୁଛନ୍ତି ମୋତେ ଖୋଲାଖୋଲି କହନ୍ତୁ । ସେ କହିଲେ ରବିବାବୁ ସୁଧୀରବାବୁ ଇତ୍ୟାଦି କହୁଛନ୍ତି ଆପଣ ଓ.ୟୁ.ଜେ. ସାଧାରଣ ସମ୍ପାଦକ ପଦରୁ ଇସ୍ତଫା ଦେଇଦେଲେ ଭଲ ହୁଅନ୍ତା । ମୁଁ ସେମାନଙ୍କ ମତଲବ ବୁଝିପାରି କହିଲି ଓ.ୟୁ.ଜେ. ଦ୍ୱିବାର୍ଷିକ ସମ୍ମିଳନୀରେ ମୁଁ ସାଧାରଣ ସମ୍ପାଦକ ରୂପେ ନିର୍ବାଚିତ ହୋଇଥିଲି । ତେଣୁ ପରବର୍ତ୍ତୀ ସମ୍ମିଳନୀବେଳେ ସେ କଥା ଦେଖାଯିବ । ତା'ଛଡ଼ା ଆପଣ ଜଣେ/ଦି'ଜଣଙ୍କ କଥାରେ ମୁଁ ସାଧାରଣ ସମ୍ପାଦକ ପଦରୁ ଇସ୍ତଫା କାହିଁକି ଦେଇଦେବି ? ସେ ମତେ କହିଲେ କିନ୍ତୁ ଭଲ ହୋଇଥା'ନ୍ତା ଆପଣ ଯଦି ଇସ୍ତଫା ଦେଇ ଦିଅନ୍ତେ । ମୁଁ କହିଲି ବର୍ତ୍ତମାନ ସେ କଥା ବିଚାର କରିବାର ବେଳ ନୁହେଁ । ଭୁବନେଶ୍ୱର ଯାଇ ସେ ବିଷୟ ବିଚାର କରାଯିବ । ତା'ଛଡ଼ା ଆପଣ ମୋ ପାଇଁ ଏତେ ବ୍ୟସ୍ତ କାହିଁକି ହେଉଛନ୍ତି ? ସେମାନେ ସମସ୍ତେ ଗଲେ । ପରେ ପରେ ରତିକାନ୍ତ, ସୁଭାଷ, ମନାନ ଆଦି ଆସି ପହଞ୍ଚିଲେ । ମୁଁ ସେମାନଙ୍କୁ ସବୁକଥା କହିଲି । ରତିକାନ୍ତ କହିଲା ଆପଣ ପୁଣି ଭାଇସ୍ ପ୍ରେସିଡେଣ୍ଟ ହୋଇଯିବାରୁ ଏମାନେ ରାଗରେ ତାଟିଆ କାମୁଡ଼ି ହେଉଛନ୍ତି । ସେ ଦିନ ସନ୍ଧ୍ୟାରେ ଦିଲ୍ଲୀ ରିଂ ରୋଡ୍‌ରେ ଥିବା ହାୟର ରିଜନ୍ ପାଞ୍ଚତାରକା ହୋଟେଲ୍‌ରେ ଡିନର ଥିଲା । ସେଠାକୁ ଏ ଗୋଷ୍ଠି କେହି ଆସି ନଥିଲେ । ଡିନର ପୂର୍ବରୁ 'ହାୟର ରିଜନ୍' ହଲ୍‌ରେ ନୂଆ କର୍ମକର୍ତ୍ତାମାନଙ୍କୁ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇଥିଲା । ସଭାପତି, ଉପ-ସଭାପତି, ସେକ୍ରେଟାରୀ ଜେନେରାଲ୍‌ଙ୍କୁ କାଶ୍ମୀର ସାଲ୍ ଦେଇ ଦିଲ୍ଲୀ ୟୁନିୟନ ଅଫ୍ ଜର୍ଣ୍ଣାଲିଷ୍ଟ ପକ୍ଷରୁ ସମ୍ମାନିତ କରାଯାଇଥିଲା । ୧୯୮୮ରେ ସଭାପତି ରୂପେ ରାଜେନ୍ଦ୍ର ପ୍ରଭୁ(ହିନ୍ଦୁସ୍ଥାନ ଟାଇମ୍ସ ନୂଆଦିଲ୍ଲୀ ଆସୋସିଏଟ୍ ଏଡିଟର) ଉପ-ସଭାପତି ରୂପେ ବରେନ୍ଦ୍ର କୃଷ୍ଣ ଧଳ(ସମ୍ପାଦକ, ସ୍ୱରାଜ୍ୟ- ଭୁବନେଶ୍ୱର) ଏବଂ ଶ୍ୟାମ ଖୋସଲା (ଦି ଟ୍ରିବୁନ୍-ବ୍ୟୁରୋ ଚିଫ୍- ନୂଆଦିଲ୍ଲୀ) ଏବଂ ସେକ୍ରେଟାରୀ ଜେନେରାଲ୍ ରୂପେ କେ.ଏନ୍. ଗୁପ୍ତା(ଇକୋନୋମିକ୍ସ ଟାଇମ୍ସ ନୂଆଦିଲ୍ଲୀ ସଂସ୍କରଣର ଆବାସିକ ସମ୍ପାଦକ) ନିର୍ବାଚିତ ହୋଇଥିଲେ ।

ଦୁଇଦିନ ପରେ ଆମେ ସମସ୍ତେ ଭୁବନେଶ୍ୱରରେ ପହଞ୍ଚିଲୁ । ମୁଁ ଦ୍ୱିତୀୟଥର ପାଇଁ ଉପ-ସଭାପତି ହୋଇଥିବା ଖବର ସମସ୍ତ ଓଡ଼ିଆ ଖବରକାଗଜରେ ପ୍ରକାଶ ପାଇଲା । ସେଥିରେ ସ୍ୱାଭାବିକ ଭାବେ ଅନେକ ବନ୍ଧୁ ମୋତେ ଅଭିନନ୍ଦନ ଜଣାଇଲେ । ମୁଁ ଓ.ୟୁ.ଜେ. ସାଧାରଣ ସମ୍ପାଦକ ପଦ ଛାଡ଼ିବାକୁ ନେଇ ୟୁନିୟନ ଭିତରେ ବେଶ୍ ବିବାଦ ଦେଖାଦେଲା । ଶେଷରେ ଦ୍ୱିବାର୍ଷିକ ସମ୍ମିଳନୀ ସୂଚନା ଭବନରେ ଡାକି ମୁଁ ଆଉ ପ୍ରତିଦ୍ୱନ୍ଦ୍ୱିତା କଲି ନାହିଁ ।

ନାରାୟଣ ରଥ କିନ୍ତୁ ସଭାପତି ରହିଲେ । ମାତ୍ର ମୁଁ ପ୍ରତିଦ୍ୱନ୍ଦ୍ୱିତା ନକଲେ ମଧ୍ୟ ବାଲେଶ୍ୱର, ସମ୍ବଲପୁର, ଢେଙ୍କାନାଳ, କେଉଁଝର, ପୁରୀ ଆଦି ଜିଲ୍ଲାର ସଦସ୍ୟମାନେ ମୋତେ ଜବରଦସ୍ତ କଲେ ପ୍ରତିଦ୍ୱନ୍ଦ୍ୱିତା କରିବା ପାଇଁ । ମାତ୍ର ମୋ ମନ ଛାଡ଼ି ଯାଇଥିଲା । ତା'ଛଡ଼ା ଦିଲ୍ଲୀରେ ମୋତେ ଚାରୋଟି ରାଜ୍ୟର ଦାୟିତ୍ୱ ଦେଲେ । ଏ ରାଜ୍ୟଗୁଡ଼ିକ ହେଲା ପଶ୍ଚିମବଙ୍ଗ, ବିହାର, ମଧ୍ୟ ପ୍ରଦେଶ ଏବଂ ଆନ୍ଧ୍ର ପ୍ରଦେଶ । ମୋ ଗସ୍ତଖର୍ଚ୍ଚ ସଂପୃକ୍ତ ରାଜ୍ୟ ଆସୋସିଏସନ୍ ଗ୍ରହଣ କରିବା ପାଇଁ ମଧ୍ୟ ମୋତେ ଚିଠି ଆସିଲା । ଫଳରେ ମୁଁ ଆଉ ଓ.ୟୁ.ଜେ. ରାଜନୀତିରେ ପଶିଲି ନାହିଁ । ଗୋଟିଏ ପଟେ ସ୍ୱରାଜ୍ୟର ସଂପାଦନା, ଅନ୍ୟପଟେ ଭୁବନେଶ୍ୱର ପୁସ୍ତକମେଳା, ଓଡ଼ିଶା ରାଜ୍ୟ କରାଟେ ସଂଘ, ଲେଖକ ସାମ୍ମୁଖ୍ୟ ଓ ଡିସେମ୍ବରରେ ସାହିତ୍ୟୋତ୍ସବ ଏବଂ ତା' ସାଙ୍ଗକୁ ଆଜ୍‌କାଲ୍ ବଙ୍ଗଳା ଖବରକାଗଜର ଭୁବନେଶ୍ୱର ପ୍ରତିନିଧି । ଏଥିସହ ମୋର ମୁଖ୍ୟ ଆୟ ଷ୍ଟେଟସ୍‌ମ୍ୟାନ୍ ଖବର କାଗଜର ବିଜ୍ଞାପନ ବିଲ୍ ଆଦାୟ ପାଇଁ ସୂଚନା ଓ ଲୋକସମ୍ପର୍କ ବିଭାଗରେ ତ୍ୱରାନ୍ୱିତ କରିବା ବ୍ୟବସ୍ଥା । ଏ ସମସ୍ତ କାର୍ଯ୍ୟକୁ ମୁଁ ବିଭିନ୍ନ ସମୟ ଏବଂ କିଛି ବନ୍ଧୁଙ୍କ ସାହାଯ୍ୟରେ କରୁଥାଏ । ଏତେଗୁଡ଼ିଏ ଦାୟିତ୍ୱ ସହ ଏନ୍.ୟୁ.ଜେ.ର ଉପ-ସଭାପତି ରୂପେ କାର୍ଯ୍ୟ କରିବା ଏବଂ ବିଭିନ୍ନ ରାଜ୍ୟ ଗସ୍ତ କରିବା । ବର୍ଷସାରା ମୁଁ କାର୍ଯ୍ୟରତ ଥାଏ । ଆଉ ଏ ଚାଲେଞ୍ଜକୁ ଗ୍ରହଣ କରି ଏକ ସଫଳତାର ବାର୍ତ୍ତା ଦେବା ମୋର ଥାଏ ମୂଳ ଉଦ୍ଦେଶ୍ୟ ।

ଜୀବନରେ ଅନେକ ପ୍ରତିଦ୍ୱନ୍ଦ୍ୱିତାର ସମ୍ମୁଖୀନ ହୋଇଛି । କେବେ କେଉଁଠି ଫେଲ୍ ମାରିନି । ସବୁ ପ୍ରଭୁଙ୍କ ଦୟା ।

ସ୍ୱରାଜ୍ୟ ଖବର କାଗଜ ପାଇଁ ମୋତେ ଅଧିକ ସମୟ ଦେବାକୁ ପଡ଼ିଲା । ମୁଁ ଏ କାଗଜରେ ଯୋଗ ଦେବାବେଳେ ଏହାର ପ୍ରସାର ସଂଖ୍ୟା ଥିଲା ପାଞ୍ଚଶହ । ୧୯୮୬ ମସିହାରେ ଓଡ଼ିଶାର ଅଧିକାଂଶ ଖବର କାଗଜର ପ୍ରସାର ସଂଖ୍ୟା ଅନେକ ସୀମିତ ଥିଲା । ବଡ଼ବଡ଼ ଖବର କାଗଜ ତିନି/ଚାରୋଟିକୁ ବାଦ୍ ଦେଲେ ବାକି ଖବରକାଗଜଗୁଡ଼ିକ ତୋକେ ପିଇ- ଦଣ୍ଡେଜିଇ ଅବସ୍ଥା ଥିଲା । କ'ଣ କରିବି ଏବଂ କିଭଳି ଉପାୟରେ ପ୍ରସାର ସଂଖ୍ୟା ଓ ଆୟ ବୃଦ୍ଧି କରିବି ସେ ସମ୍ପର୍କରେ ଚିନ୍ତା କଲି । ବିଜ୍ଞାପନ ବୃଦ୍ଧି ନକଲେ ଆୟ ବୃଦ୍ଧି ହେବ ନାହିଁ । ତେବେ ପ୍ରସାର ସଂଖ୍ୟା ବୃଦ୍ଧି ନକଲେ ବିଜ୍ଞାପନ ଦର ବୃଦ୍ଧି ହେବ ନାହିଁ । ଏକ ସମୟରେ ସ୍ୱରାଜ୍ୟର ପ୍ରସାର ସଂଖ୍ୟା ୧୫ରୁ ୨୦ ହଜାର ଥିଲା । ରାଜେନ୍ଦ୍ର ନାରାୟଣ ସିଂହଦେଓ ଏହାର ସମସ୍ତ ଦାୟିତ୍ୱ ବୁଝୁଥିବା ବେଳେ ସ୍ୱତନ୍ତ୍ର ଦଳ ପ୍ରଭାବିତ ରାଜା ରାଜୁଡ଼ା ଅଞ୍ଚଳରେ ଏହାର ବେଶ୍ ପ୍ରଭାବଶାଳୀ ପ୍ରସାର ଥିଲା । ମୁଁ ସେ ପୁରୁଣା ଫାଇଲ୍ ମଗାଇ ଦେଖିଲି । ବଲାଙ୍ଗିର, କଳାହାଣ୍ଡି, ସମ୍ବଲପୁର, ସୁନ୍ଦରଗଡ଼ ଓ କୋରାପୁଟ ଜିଲ୍ଲାର ବିଭିନ୍ନ ଅଞ୍ଚଳକୁ ପ୍ରାୟ ଦଶ/ଏଗାର ହଜାର ସ୍ୱରାଜ୍ୟ ଯାଉଥିଲା । ମୁଁ ସ୍ୱରାଜ୍ୟରେ ସମ୍ପାଦକ ରୂପେ ଯୋଗ ଦେବାବେଳେ ରାଜ୍ୟ ଯୋଗାଣ ମନ୍ତ୍ରୀ ଜନାବ୍ ହବିବୁଲା ଖାଁ ଏହାର ଚେୟାରମ୍ୟାନ୍ ଥିଲେ । ହବିବୁଲାଙ୍କ ସହ ମୋର ୧୯୬୭ରୁ ପରିଚୟ । ସେତେବେଳେ ସେ ନବରଙ୍ଗପୁର ପଞ୍ଚାୟତ ସମିତିର ଚେୟାରମ୍ୟାନ୍ ଥିଲେ । ମୂଳରୁ ସେ ସ୍ୱତନ୍ତ୍ର ଦଳରେ ଥିଲେ । ସ୍ୱତନ୍ତ୍ର ଦଳ ୧୯୭୭ରେ ଭାଙ୍ଗିଯିବା ପରେ ସେ କଂଗ୍ରେସ ଦଳରେ ଯୋଗ ଦେଇଥିଲେ । ମୁଁ କାଗଜର ଦୂରବସ୍ଥା ସମ୍ପର୍କରେ ତାଙ୍କୁ କହିଲି । ସେ କହିଲେ ମୋର ଯେତିକି ଶକ୍ତି ମୁଁ ସାହାଯ୍ୟ କରୁଛି । ପ୍ରତି ମାସରେ ବେହେରା ଆସି ମୋ ପାଖରୁ କୋଡ଼ିଏ ହଜାର ଟଙ୍କା ନେଉଛି । ଆଉ ଅଧିକ ସାହାଯ୍ୟ କରିବା ମୋ ପକ୍ଷରେ ସମ୍ଭବ ନୁହେଁ । ମୁଁ ଯୋଗ ଦେବା ବେଳକୁ କର୍ମଚାରୀମାନେ ମାସକୁ ତିନିଶହରୁ ପାଞ୍ଚଶହ ଟଙ୍କା ପର୍ଯ୍ୟନ୍ତ ବେତନ ପାଉଥିଲେ । ନିୟମିତ ପ୍ରସାର ସଂଖ୍ୟା ଓ ଅଡିଟ୍ ରିପୋର୍ଟ ନଦେବା ଫଳରେ କେନ୍ଦ୍ର ସରକାରଙ୍କ ତଥ୍ୟ ଓ ବେତାର ମନ୍ତ୍ରଣାଳୟ ସ୍ୱରାଜ୍ୟର ଆର୍.ଏନ୍.ଆଇ. ଓ ଡି.ଏ.ଭି.ପି.

ସଂସ୍ଥାରୁ ସ୍ୱୀକୃତି ପ୍ରତ୍ୟାହାର କରି ନେଇଥିଲେ । ମୁଁ ସବୁ ଦେଖି ବାସ୍ତବରେ ଆଶ୍ଚର୍ଯ୍ୟ ହେଲି । ବାସ୍ତବରେ ଏ କାଗଜ ଚଳିବ କିପରି ? କାଗଜର ହିସାବ କିତାବ ସବୁ ମ୍ୟାନେଜର ରଘୁନାଥ ବେହେରାଙ୍କୁ ଆଣିବାକୁ କହିଲି । ସବୁ ଦେଖିସାରିଲା ପରେ ମୋର ହୃଦ୍‌ବୋଧ ହେଲା କାଗଜର ଅବନତି ପାଇଁ ବେହେରା ହେଉଛି ମୂଳ ସଇତାନ । କାଗଜ ନାଁରେ ଲୋକ ସମ୍ପର୍କ ବିଭାଗ, ହବିବୁଲା ଖାଁ ଅନ୍ୟ କିଛି ବିଜ୍ଞାପନର ସବୁ ଟଙ୍କା ଆଦାୟ କରି ଅଧା ଟଙ୍କା ନିଜେ ନେଉଛି । ବାକି ଅଧକୁ କର୍ମଚାରୀଙ୍କ ମଧ୍ୟରେ ବାଣ୍ଟି ଦେଉଛି । ତା' ନହୋଇଥିଲେ ପୁରୁଣା ଭୁବନେଶ୍ୱରରେ ଦୁଇଟି ଘର କରି ଗୋଟିକରେ ରହି ଆଉ ଗୋଟିଏ ଭଡ଼ା ଦେଇଛି । ପୁଅକୁ ଡିପ୍ଲୋମା ଇଞ୍ଜିନିୟରିଂ ପଢ଼ାଉଛି । ମାସକୁ ତିନିଶ/ଚାରିଶ ଟଙ୍କା ଦରମା ପାଇ ଏହା ସମ୍ଭବ କିପରି ହେବ ? ତେବେ ତାକୁ ସାଙ୍ଗେସାଙ୍ଗେ ବିଦା କରିଦେଇ ମଧ ହେବ ନାହିଁ । ମୁଁ କାଗଜ ଚଳାଇବା ପାଇଁ ଚାଲେଞ୍ଜ ଗ୍ରହଣ କରିଛି । ପ୍ରଥମ କାମ ହେଲା ଆର୍.ଏନ୍.ଆଇ. (ରେଜିଷ୍ଟ୍ରାର ଅଫ୍ ନିଉଜ୍‌ପେପର ଇଣ୍ଡିଆ)ରେ ସ୍ୱୀକୃତ ନେବା । ଆର୍.ଏନ୍.ଆଇ. ସ୍ୱୀକୃତି ପାଇଲେ ନିଉଜ ପ୍ରିଣ୍ଟ ଶସ୍ତାରେ ମିଳିବ । ସେତେବେଳେ ଅଧିକାଂଶ କାଗଜ ପାଞ୍ଚଶହ/ହଜାରେ ଛାପି ପଚାଶ ହଜାର/ଷାଠିଏ ହଜାର ପ୍ରସାର ସଂଖ୍ୟା ଦେଖାଉଥା'ନ୍ତି । କେନ୍ଦ୍ର ସରକାର ଯେଉଁ ନିଉଜ୍‌ପ୍ରିଣ୍ଟ ଦିଅନ୍ତି ତାକୁ କଲିକତା ବଜାରରେ ବିକ୍ରି କରି ଦିଅନ୍ତି । ବର୍ଷରେ ସେଇଥିରୁ ଲକ୍ଷାଧିକ ଟଙ୍କା ରୋଜଗାର ହୁଏ ।

ମୁଁ ପ୍ରଥମେ ମାତୃଭୂମିରେ ଅଡିଟ୍ ଓ ସର୍କୁଲେସନ ଦାୟିତ୍ୱରେ ଥିବା ଜଗବନ୍ଧୁ ପ୍ରଧାନ ଓ ରାଜ କିଶୋର ପ୍ରଧାନଙ୍କୁ ଡାକି ସ୍ୱରାଜ୍ୟ ପାଇଁ ନକଲ କାଗଜପତ୍ର ପ୍ରସ୍ତୁତ କରିବାକୁ ଦାୟିତ୍ୱ ଦେଲି । ସତ୍ୟନଗର ପି.ଡବ୍ଲ୍ୟୁ.ଡି. ଆଇ.ବି.ରେ ସାତଦିନ ପାଇଁ ଗୋଟିଏ କୋଠରୀ ବୁକ୍ କରି ସେଇଠି ଦୁହିଁଙ୍କ ରହିବା ଖାଇବା ବ୍ୟବସ୍ଥା କଲି । ଫଲ୍ସ ରେଲୱେ ଭାଉଚର, ବସ୍ ଟିକେଟ୍ ସବୁ ବଜାରରେ ମିଳୁଥିଲା । ମୁଁ ଏସବୁ ଜାଣି ନଥିଲି । ନୂଆ ଖାତା ତିଆରି ହେଲା । କୋଡ଼ିଏ ହଜାର ପ୍ରସାର ସଂଖ୍ୟା ଦେଖାଇ କାଗଜ ପତ୍ର ତିଆରି ହେଲା । ସାତଦିନ ମଧ୍ୟରେ ସବୁ କିଛି ପ୍ରସ୍ତୁତ ହୋଇଗଲା । ମୁଁ ବେହେରାକୁ ସାଙ୍ଗରେ ନେଇ କଲିକତା ଗଲି । ଉତ୍କଳ ଭବନରେ ରୁମ୍ ବୁକ୍ କରି ସେଠାରେ ରହିଲି । କଲିକତାରେ ଆର୍.ଏନ୍.ଆଇ.ର ଆଞ୍ଚଳିକ ଅଫିସ୍ ସଲ୍ଟଲେକ୍‌ରେ । ସେ ଅଫିସ୍ ପ୍ରଥମେ କାଗଜପତ୍ର ଦେଖି ଓକେ କରିବା ପରେ ଦିଲ୍ଲୀ ଅଫିସ୍ ସାର୍ଟିଫିକେଟ୍ ଦେବ । ସେ ଯାହା ହେଉ କଲିକତାରେ ବଙ୍ଗାଳି ଅଡିଟରଙ୍କୁ ସମ୍ବଲପୁରୀ ଶାଢ଼ୀ ଆଉ କନା ଦେଇ କାମ କରାଇ ନେଲୁ । ସେମାନଙ୍କ ଠାରୁ ଚିଠି ନେଇ ଭୁବନେଶ୍ୱର ଫେରି ଆସି ଟଙ୍କା ଯୋଗାଡ଼ କରି ଦିଲ୍ଲୀ ଗଲୁ ।

କଲିକତା ଉତ୍କଳ ଭବନରେ ରହିବା ବେଳେ ସ୍ୱରାଜ୍ୟ ମ୍ୟାନେଜର ରଘୁନାଥ ବେହେରା ମତେ କହିଲେ- ସାର୍, ମୁଁ ଏଇ ପ୍ରଥମ ଥର ଉତ୍କଳ ଭବନରେ ରହିଲି । ମୁଁ ଆଶ୍ଚର୍ଯ୍ୟ ହୋଇ ପଚାରିଲି ତେବେ ପୂର୍ବରୁ ଯେତେବେଳେ ଆର୍.ଏନ୍.ଆଇ. ଅଫିସ୍‌କୁ ଆସୁଥିଲେ କ'ଣ ହୋଟେଲରେ ରହୁଥିଲେ ? ସେ କହିଲେ ନାଁ ସାର୍ ହୋଟେଲ୍‌ରେ ଏତେ ଟଙ୍କା ଦେଇ କିଏ ରହିବ ? ଆମେ ମୁଁ ଓ ବୈରାଗୀ ବାବୁ (ମୋ ପୂର୍ବର ସମ୍ପାଦକ) ରାମଚନ୍ଦ୍ର ପଟ୍ଟନାୟକଙ୍କ ହାଓଡ଼ାରେ ଥିବା ଢଳେଇ କାରଖାନାର ଶ୍ରମିକମାନେ ରହୁଥିବା ଏକ ଟିଣ ଘରେ ରହୁ । ସେଇଠୁ ବସ୍‌ରେ ବା ଟ୍ରାମ୍‌ରେ କଲିକତା ଆସି କାମ କରୁ । ଆପଣଙ୍କ ପାଇଁ ଉତ୍କଳ ଭବନରେ ଯାହାହେଉ ରହିବାକୁ ସୁଯୋଗ ପାଇଲି । ଦିନେ ବସ୍ ଟ୍ରାମ୍ ଷ୍ଟ୍ରାଇକ୍ ହୋଇଥିଲା । ଆମେ ସେଦିନ ଚାଲି ଚାଲି ହାଓଡ଼ା ଯାଇଥିଲୁ । ମୁଁ ଏକଥା ଶୁଣି ପଚାରିଲି ସେତେବେଳେ ତ ସ୍ୱରାଜ୍ୟର ଭଲ ପଇସା । ତେଣୁ ଏ କୃଚ୍ଛ ସାଧନା କାହିଁକି କରୁଥିଲେ । ବେହେରା କହିଲେ ଯେଉଁ ଟଙ୍କା ମିଳୁଥିଲା ସେଥିରୁ କିଛି ବଞ୍ଚାଇ ନେବା ଥିଲା ଆମର ଉଦ୍ଦେଶ୍ୟ ।

ମୁଁ ଏତେସବୁ କଥା ଲେଖିବାର ଏକମାତ୍ର କାରଣ ହେଲା ଗୋଟିଏ ଖବର କାଗଜକୁ ଠିକ୍ ଭାବେ ଚଳାଇଲେ ଟଙ୍କାର ଅଭାବ ରହିବ ନାହିଁ । ବିଜ୍ଞାପନ ହେଉଛି କାଗଜର ମୁଖ୍ୟ ଆୟ । କିନ୍ତୁ ଭେକ ଥିଲେ ଭିକ । ସ୍ୱରାଜ୍ୟର ଭେକଥିବା ଲୋକ କେହି ନଥିଲେ । ସେଥିପାଇଁ ସିଂହଦେଓଙ୍କ ବିୟୋଗ ପରେ ଏହାକୁ ବଞ୍ଚାଇ ରଖିବା ପାଇଁ ଠିକ୍ ଲୋକ ଦାୟିତ୍ୱ ନେଲେ ନାହିଁ । ତେଣୁ ଯେତିକି ଟଙ୍କା ମିଳିଲା ସେଥିରୁ ବେହେରା ଅଧେ ମାରି ନେଇ କାଗଜକୁ ଦୁର୍ବଳ କରି ଦେଲା । ଅନୁଷ୍ଠାନରେ ଭଲ ଲୋକ ନରହିଲେ ଅନୁଷ୍ଠାନର ଉନ୍ନତି ସମ୍ଭବ ନୁହେଁ । ମୋର ସେତେବେଳେ ଓଡ଼ିଶାର ବିଭିନ୍ନ ଶ୍ରେଣୀର ବିଶିଷ୍ଟ ଲୋକଙ୍କ ସହ ଭଲ ସମ୍ପର୍କ । ତେଣୁ ମଝିରେ ମଝିରେ କିଛି ବିଜ୍ଞାପନ ଆଣି କାଗଜକୁ ଚଳାଇଲି । ଟଙ୍କା ପଇସାର ହିସାବ ଟିକିନିଖି ଦେବାକୁ ବେହେରାକୁ କହିଲି ।

କାଗଜକୁ ଠିକ୍ ଲାଇନ୍‌ରେ ପକାଇବା ପାଇଁ ମୁଁ ଆର୍‌ଏନ୍‌ଆଇ ସ୍ୱୀକୃତି ହାସଲ କଲି ଏବଂ ତା' ସଙ୍ଗେ ସଙ୍ଗେ ଡିଏଭିପି ମଧ ଆମକୁ ବିଜ୍ଞାପନ ଦେବାପାଇଁ ନିଷ୍ପତ୍ତି କଲେ । ଆମର କଲମ ସେଣ୍ଟିମିଟର ପଚିଶ ଟଙ୍କା ଧାର୍ଯ୍ୟ ହେଲା । ଇଯେ ଏକ ଗଡ଼ଜୟ ହେଲାଭଳି ଘଟଣା । ଆର୍‌ଏନ୍‌ଆଇ ଯୋଗୁଁ କଲିକତା ବଜାରରେ କାଗଜ ବିକି ଆମେ ବାର୍ଷିକ ପ୍ରାୟ ୬ଲକ୍ଷ ଟଙ୍କା ପାଇଲୁ । ସେଥରୁ ଆମର ଅନେକ ସମସ୍ୟା ଦୂର ହୋଇଗଲା । ମୁଁ ସେ ଟଙ୍କାର ଚେକ୍ ଆଣି ବ୍ୟାଙ୍କରେ ଜମାଦେଲି । ଡି.ଏ.ଭି.ପି. ମଞ୍ଜୁରୀ ମିଳିବା ଫଳରେ ରେଳବାଇ ଏବଂ ଅନ୍ୟାନ୍ୟ କେନ୍ଦ୍ରୀୟ ଅନୁଷ୍ଠାନର ବିଜ୍ଞାପନ ପାଇବା ପାଇଁ ସ୍ୱରାଜ୍ୟ ହକ୍‌ଦାର ହେଲା । ପୂର୍ବରୁ ଆର୍.ଏନ୍.ଆଇ. ଓ ଡି.ଏ.ଭି.ପି. ସ୍ୱୀକୃତି ନଥିବା ଯୋଗୁଁ ଓଡ଼ିଶା ଲୋକ ସମ୍ପର୍କ ବିଭାଗ ସ୍ୱରାଜ୍ୟକୁ କଲମ ସେଣ୍ଟିମିଟର ପିଛା ସାତଟଙ୍କା ଦେଉଥିଲେ । ଏବେ ଡି.ଏ.ଭି.ପି. ପଚିଶ ଟଙ୍କା ଧାର୍ଯ୍ୟ କରିବା ଫଳରେ ସ୍ୱରାଜ୍ୟ ପାଇଁ ଲୋକ ସମ୍ପର୍କ ବିଭାଗ ସେଇ ଦର ଧାର୍ଯ୍ୟ କରେ ।

ଆୟ ବୃଦ୍ଧି ହେବା ପରେ କର୍ମଚାରୀମାନଙ୍କର ଦରମା ବୃଦ୍ଧି କରାଗଲା । ସର୍ବନିମ୍ନ ଆଠଶହରୁ ସର୍ବୋଚ୍ଚ ପନ୍ଦର ଶହ ଟଙ୍କା ହେଲା । ମୋ ନିଜ ଦରମା ଯଦିଓ ମାସିକ ପାଞ୍ଚ ହଜାର ଟଙ୍କା ମୂଳରୁ ସ୍ଥିର ହୋଇଥିଲା ଅର୍ଥାଭାବରୁ ମୁଁ ପୁରା ଦରମା ପାଉପାରୁ ନଥିଲି । ଦରମା ବୃଦ୍ଧି ସାଙ୍ଗକୁ କାଗଜର ପ୍ରସାର ସଂଖ୍ୟା ବୃଦ୍ଧି କରିବା ପାଇଁ ମୁଁ ସମସ୍ତଙ୍କୁ ଡାକି କହିଲି । ବଲାଙ୍ଗିର, ସମ୍ବଲପୁର, କଳାହାଣ୍ଡି, ସୁନ୍ଦରଗଡ଼, କେନ୍ଦୁଝର, ନବରଙ୍ଗପୁର, ପାରଳାଖେମୁଣ୍ଡି ଆଦି ପୁରୁଣା ସ୍ୱତନ୍ତ୍ର ଦଳ ନେତା ଓ କର୍ମୀଙ୍କ ଅଞ୍ଚଳରେ କାଗଜ ପାଇଁ ସାମ୍ବାଦିକ ତଥା ଏଜେଣ୍ଟ ନିଯୁକ୍ତ କରିବା ପାଇଁ ସମାଜରେ ଏକ ବିଜ୍ଞାପନ ଦେଲୁ । ବେଶ୍ ଆଶାତୀତ ଫଳ ପାଇଲୁ । ବାଛିବାଛି ସବୁ ଅଞ୍ଚଳରେ ଏଜେଣ୍ଟ ତଥା ସାମ୍ବାଦିକ ନିଯୁକ୍ତି ଦେଲୁ । ସର୍ବନିମ୍ନ କୋଡ଼ିଏଟି କାଗଜ ପାଇଁ କସନ୍‌ମନି ଡିପୋଜିଟ୍ କରିବା ପାଇଁ କହିଲୁ । ଏ ସମସ୍ତ ଜିଲ୍ଲାରେ ବ୍ଲକ୍, ସବ୍‌ଡିଭିଜନ ଓ ଜିଲ୍ଲାସ୍ତରରେ ଏଜେଣ୍ଟ ରଖିବା ଫଳରେ ଦୁଇ ହଜାରରୁ ଅଢ଼େଇ ହଜାର କାଗଜ ବିକ୍ରି ହେଲା । କଟକ, ଭୁବନେଶ୍ୱରରେ ପାଞ୍ଚଶହ କପି ମାଗଣାରେ ବାଣ୍ଟିଲୁ । ପାଞ୍ଚଶହରୁ ଏକା ବେଳକେ ତନି ହଜାର କପି ଛପାହେଲା ।

ସେତେବେଳେ ବଡ଼ବଡ଼ ଖବରକାଗଜରେ ସମ୍ପାଦକୀୟ ପୁରା ଦୁଇ କଲମ ପ୍ରକାଶ ପାଉଥିଲା । ମୁଁ କିନ୍ତୁ ସ୍ୱରାଜ୍ୟରେ ବିଭିନ୍ନ ସମସ୍ୟା ଉପରେ ଛୋଟ ଛୋଟ ସମ୍ପାଦକୀୟ ଲେଖିଲି । ସମସ୍ୟାକୁ ସିଧା ସଳଖ ଭାବେ ଉପସ୍ଥାପିତ କଲି । କିଛିଦିନ ପରେ ତା'ର ଫଳ ପାଇଲି । ସେତେବେଳେ ଅଲ୍‌ଇଣ୍ଡିଆ ରେଡିଓରେ ଆଞ୍ଚଳିକ ଖବର କାଗଜର କିଛି ସମ୍ପାଦକୀୟର ମତାମତକୁ ଉଦ୍ଧାର କରାଯାଉଥିଲା । ମୋର ମନେ ଅଛି ମୁଁ ରେଳବାଇ, ଚାଉଳ ଉତ୍ପାଦନ ଓ ବିକ୍ରୟ, ଚକବନ୍ଦି ବା କୃଷିଜମିର ଏକତ୍ରିକରଣ ଆଦି ଉପରେ ଯେଉଁ ସମ୍ପାଦକୀୟ ଦେଇଥିଲି ତା'ର ଅନ୍ତର୍ଭୁକ୍ତ କରାଯାଇଥିଲା । ଓଡ଼ିଆ ଡେଲି ସ୍ୱରାଜ୍ୟ ରାଇଟ୍‌ସ ବୋଲି କୁହାଯାଇ ମୋର ସମ୍ପାଦକୀୟର କିଛି ଅଂଶ

ଇଂରାଜୀ ଅନୁବାଦ କରାଯାଇ ଏଥିରେ କୁହାଯାଉ ଥିଲା । ଚାରି/ପାଞ୍ଚଥର ଏହିଭଳି ବିଭିନ୍ନ ସମୟରେ କୁହାଯିବା ଫଳରେ ବାହାରେ ସ୍ୱରାଜ୍ୟର ସୁନାମ ହୋଇଥିଲା ।

## -ସ୍ୱରାଜ୍ୟର ସମ୍ପାଦକୀୟ-

ସ୍ୱରାଜ୍ୟର ସମ୍ପାଦକୀୟ ଅଲ୍‌ଇଣ୍ଡିଆ ରେଡିଓର 'ଫ୍ରମ୍ ଦି ରିଜିଓନାଲ୍ ନ୍ୟୁଜ୍‌ପେପର' ଆଲୋଚନା ମତେ ବେଶ୍ ସୁନାମ ଆଣି ଦେଇଥିଲା । ଦିଲ୍ଲୀରେ ଏନ୍.ୟୁ.ଜେ.ର ଜାତୀୟ କାର୍ଯ୍ୟକାରୀ କମିଟି ବୈଠକରେ ଥରେ 'ଦି ଟ୍ରିବ୍ୟୁନ୍'ର ସହକାରୀ ସମ୍ପାଦକ ରଣଜିତ୍ ମଲ୍ଲିକ ମତେ ପଚାରିଲେ ଧଲ ସାହେବ ଆପ୍‌କା ଆଖବାରକା ନାମ୍ ତୋ ସ୍ୱରାଜ୍ୟ ହେ ନା ? ଆପ୍‌କା ଆଖବାରକା ଏଡିଟୋରିଆଲ ଅଲ୍‌ଇଣ୍ଡିଆ ରେଡିଓ କା ଡିସ୍‌କସନ୍‌ମେ ତୋ ଆତା ହୈ । ମାଉଁ କଂଗ୍ରାଚ୍ୟୁଲେସନ୍ ଟୁ ୟୁ । ମଲ୍ଲିକ ସେଇଠି ଆଉ ପାଞ୍ଚ/ଛ' ଜଣ ବିଶିଷ୍ଟ ସାମ୍ବାଦିକଙ୍କୁ ଏକଥା ମଧ କହିଲେ । ସେଠି ଆଉ ଜଣେ ବନ୍ଧୁ କହିଲେ ଧଲ ସାହେବ ଆପକା କାଗଜ କିତନା ସାଲ୍ କି ହୈ । କିତନା ସର୍କ୍ୟୁଲେସନ୍ । ଦୋ/ତିନି ଲାଖ ତୋ ହୋଗା । ମୁଁ ଉତ୍ତର ଦେଲି କାଗଜ ତୋ ପଚିଶ ସାଲ୍‌କା ପୁରାନା । ଚଲ୍‌ତା ହୈ । ମୁଁ ଜାଣିଶୁଣି ସର୍କ୍ୟୁଲେସନ୍ ବିଷୟ କିଛି କହିଲି ନାହିଁ । ଯାହା ହେଉ ଅନ୍ତତଃ ମୋ ପରିଶ୍ରମର ଏହା ଏକ ସଫଳ ରୂପ । ଦୁଇ/ତିନିହଜାର ପ୍ରସାର ଥିବା ସ୍ୱରାଜ୍ୟର ଏହି କୃତିତ୍ୱ କମ୍ କଥା ନୁହେଁ । ମୁଁ ଏହାପରେ ଅନୁସନ୍ଧାନ କଲି । କିପରି ମୋର ସମ୍ପାଦକୀୟ ଅଲ୍‌ଇଣ୍ଡିଆ ରେଡିଓର ନ୍ୟାସନାଲ୍ ଡିସ୍‌କସନ୍‌କୁ ଆସିଲା । ସେତେବେଳେ ମୁଁ ଏନ୍.ୟୁ.ଜେ.ର ସିନିୟର ଭାଇସ୍ ପ୍ରେସିଡେଣ୍ଟ (୧୯୮୬-୯୦) ଥିଲି । ଇୟେ ୧୯୮୮ ମସିହା କଥା । ଥରେ କଟକରେ ଥିବା ପି.ଆଇ.ବି. ଅଫିସ୍‌କୁ ଯାଇଥିବା ବେଳେ ସେଠି ଶୁଣିଲି ପି.ଆଇ.ବି. ଅଫିସର୍ ବନ୍ଧୁ ଧୀରେନ ଦାସ ମୋତେ କହିଲେ ବରେନ୍ଦ୍ର ବାବୁ ଆପଣଙ୍କ ସମ୍ପାଦକୀୟ ଭଲ ହେଉଛି । ଆମେ ଆପଣଙ୍କ ସମ୍ପାଦକୀୟରୁ କିଛି କିଛି ଅଂଶ ଅଲ୍‌ଇଣ୍ଡିଆ ରେଡିଓ ନ୍ୟାସନାଲ୍ ବୁଲେଟିନ୍‌କୁ ପଠାଉଛୁ । ଆମ ଉପରେ ଆପଣଙ୍କର କିଛି ବନ୍ଧୁ ଅତ୍ୟନ୍ତ ଖପ୍ପା । ମୁଁ ପଚାରିଲି ଆପଣଙ୍କ ଏ ପ୍ରକାର ମନୋନୟନର ଭିତ୍ତି କ'ଣ ? ସେ କହିଲେ ଓଡ଼ିଶାରେ ଯେତେଗୁଡ଼ିଏ ଖବରକାଗଜ ପ୍ରକାଶ ପାଉଛି ତା'ର ସମ୍ପାଦକଙ୍କ ମଧ୍ୟରେ ଆପଣ ଏକମାତ୍ର ପ୍ରଫେସନାଲ୍ ଜର୍ଣ୍ଣାଲିଷ୍ଟ । ଆଉ ସମସ୍ତ କାଗଜର ସମ୍ପାଦକ କାଗଜର କେବଳ ମାଲିକ ନୁହନ୍ତି- ବିଭିନ୍ନ ରାଜନୀତିକ ଦଳରେ ସଂପୃକ୍ତ । ତେଣୁ ଆମେ ଓଡ଼ିଶାରୁ କେବଳ ଆପଣଙ୍କ କାଗଜର ସମ୍ପାଦକୀୟର ଗୁରୁତ୍ୱପୂର୍ଣ୍ଣ ଅଂଶ ପଠାଉଛୁ । ମୁଁ ବନ୍ଧୁଙ୍କୁ ଧନ୍ୟବାଦ ଦେଇ ଦିଲ୍ଲୀରେ ଏନ୍.ୟୁ.ଜେ. ଜାତୀୟ କାର୍ଯ୍ୟକାରିଣୀ ବୈଠକରେ ଯେଉଁ ଆଲୋଚନା ହୋଇଥିଲା ସେକଥା ଧୀରେନ୍‌ବାବୁଙ୍କୁ କହିଲି । ଧୀରେନ୍‌ବାବୁଙ୍କୁ ଧନ୍ୟବାଦ ଜଣାଇଲି । ଆମ ଅଫିସ୍‌କୁ ଆସିବା ପାଇଁ ଅନୁରୋଧ କଲି ।

ମତେ ଧୀରେନ୍‌ବାବୁ ପ୍ରସ୍ତାବ ଦେଲେ ବରେନ୍ ବାବୁ ଆପଣ ତ ଜଣାଶୁଣା ସାହିତ୍ୟିକ । ଓଡ଼ିଶାର ସାହିତ୍ୟ-ସଂସ୍କୃତି ବିଶେଷ କରି ପ୍ରାଚୀନ କଳାକୃତି ଉପରେ କିଛି ନିବନ୍ଧ ଲେଖୁନାହାନ୍ତି । ଆମକୁ ହଜାରେ ଶବ୍ଦ ମଧ୍ୟରେ ଓଡ଼ିଆରେ ବା ଇଂରେଜୀରେ ଦିଅନ୍ତୁ । ଓଡ଼ିଆ ପାଇଁ ଦୁଇଶହ ଟଙ୍କା ଏବଂ ଇଂରାଜୀ ପାଇଁ ଅଢ଼େଇଶହ ଟଙ୍କା ପାଇବେ । ମୁଁ ଧୀରେନ୍‌ବାବୁଙ୍କ କଥା ଶୁଣି ଟିକେ ଭାବିଲି । ତା'ପରେ ତାଙ୍କୁ ଲେଖା ଦେବାପାଇଁ ପ୍ରତିଶ୍ରୁତି ଦେଇ ଫେରିଲି ।

ଘରେ ପହଞ୍ଚି ମୋର ପୁରୁଣା ଫାଇଲ୍ ଖେଳାଇଲି । ସେଥିମଧ୍ୟରୁ ଧୀରେନ୍‌ବାବୁଙ୍କ ପ୍ରସ୍ତାବ ଅନୁସାରେ ଚାରୋଟି ପ୍ରବନ୍ଧ ବାହାର କଲି । ସେ ଚାରୋଟି ହେଲା ୧ )ଓଡ଼ିଶାର ପ୍ରାଚୀନ ନୌବାଣିଜ୍ୟ ଓ ପାରାଦ୍ୱୀପ ବନ୍ଦର,

୨)ଓଡ଼ିଶାର ଜଳ ସମ୍ପଦ ଓ ହୀରାକୁଦ ବନ୍ଧ, ୩)ଓଡ଼ିଆ ଭାଷା ବନାମ ଆଧୁନିକ ଭାରତୀୟ ଭାଷା, ୪)ଓଡ଼ିଆ ଚଳଚ୍ଚିତ୍ରର କ୍ରମବିକାଶ । ଏ ଚାରୋଟି ନିବନ୍ଧ ପୁଣିଥରେ ନୂଆ ରୂପ ଦେଲି । ବିଧାନସଭା ଲାଇବ୍ରେରୀକୁ ଯାଇ ଆଉ କିଛି ସଂଯୋଗ କଲି । ଏ ଲେଖାଗୁଡ଼ିକ ପୂର୍ବରୁ କିଛି ପତ୍ର ପତ୍ରିକାରେ ପ୍ରକାଶ ପାଇଥିଲା । ମାତ୍ର ପି.ଆଇ.ବି.(ପ୍ରେସ୍ ଇନ୍‌ଫରମେସନ୍ ବ୍ୟୁରୋ)କୁ ଦେବା ପୂର୍ବରୁ ଏହାକୁ ପୁରାପୁରି ଆଉଥରେ ନୂଆକରି ଲେଖିବାକୁ ପଡ଼ିଲା । ମୋର ମନୋନୀତ ହେବା ପରେ ପ୍ରଥମ ନିବନ୍ଧ 'ଓଡ଼ିଶାର ପ୍ରାଚୀନ ନୌବାଣିଜ୍ୟ ଓ ପାରାଦ୍ୱୀପ ବନ୍ଦର' ଧୀରେନ୍‌ବାବୁଙ୍କୁ ଦେଲି । ଦି'ଦିନ ପରେ ଧୀରେନ୍‌ବାବୁଙ୍କ ପାଖରୁ ଉତ୍ତର ଆସିଲା । ନିବନ୍ଧ ମନୋନୀତ ହୋଇଛି । ସେ ମୋ ହାତଲେଖାକୁ ଟାଇପ୍ ଓ ଲିଥୋ କରି ସବୁ କାଗଜକୁ ପଠାଇ ଦେଲେ । ସପ୍ତାହକ ଭିତରେ ମୋ ନିବନ୍ଧ ପ୍ରାୟ ସବୁ ଓଡ଼ିଆ ଖବରକାଗଜରେ ପ୍ରକାଶ ପାଇଲା । ତଳେ (ପି.ଆଇ.ବି.) ବୋଲି ଲେଖାଥିଲା । ଅନେକ ବନ୍ଧୁଙ୍କ ନିକଟରୁ ଚିଠି ଆଉ ଫୋନ୍ ପାଇଲି । ମାସକ ପରେ ଦୁଇଶହ ଟଙ୍କାର ଚେକ୍ ପାଇଲି । ପରେ ପରେ ଅନ୍ୟ ନିବନ୍ଧଗୁଡ଼ିକ ମଧ ଛ'ମାସ ମଧରେ ପ୍ରକାଶ ପାଇଲା । ଏ ନିବନ୍ଧ ପଢ଼ି ଜଣେ ବିଶିଷ୍ଟ ଓଡ଼ିଆ ଭାଷା ସାହିତ୍ୟର ଅଧ୍ୟାପକ ବନ୍ଧୁ କହିଲେ ବରେନ୍ଦ୍ରବାବୁ- ଆପଣ ତ ଚମତ୍କାର ନିବନ୍ଧ ଲେଖୁଛନ୍ତି, ନିୟମିତ ଲେଖୁନାହାନ୍ତି କାହିଁକି ? ଆପଣ ଯେତେ ତଥ୍ୟ ସଂଗ୍ରହ କରି ଦେଇଛନ୍ତି ସେସବୁ କେଉଁଠୁ ପାଇଲେ ? ମୁଁ ବିଧାନସଭା ଲାଇବ୍ରେରୀ କଥା କହିବାରେ ସେ କହିଲେ ଆପଣଙ୍କର ସୁବିଧା ଅଛି, ଭାଷା ଅଛି ନିୟମିତ ଲେଖନ୍ତୁ ।

ଅଧ୍ୟାପକ ବନ୍ଧୁଙ୍କ କଥା ମୋ ମନକୁ ପାଇଲା । ସେତେବେଳେ ମୁଁ ଭୁବନେଶ୍ୱର ପୁସ୍ତକମେଳା ଆରମ୍ଭ କରିଥିଲି । ବେଶ୍ ଜମି ଆସୁଥାଏ । ପ୍ରତିବର୍ଷ ଫେବୃଆରୀ ୨୬ ତାରିଖରୁ ମାର୍ଚ୍ଚ ୭ ତାରିଖ ପର୍ଯ୍ୟନ୍ତ ମେଳା ହେଉଥାଏ । ସେ ବର୍ଷ(୧୯୮୯) ମୁଁ 'ଭାରତରେ ପୁସ୍ତକମେଳା ଓ ତା'ର ଇତିହାସ' ଶୀର୍ଷକ ଏକ ନିବନ୍ଧ ଲେଖି ସମାଜକୁ ପଠାଇଲି । ସାମାନ୍ୟ ବଡ଼ ହୋଇଯାଇଥିଲା । ଭୟଥିଲା ସମାଜବାଲା ତାକୁ ଛାପିବେ କି ନାହିଁ ? କିନ୍ତୁ ଠିକ୍ ଫେବୃଆରୀ ୨୬ ତାରିଖ ସକାଳ କାଗଜରେ ବେଶ୍ ବଡ଼ ଆକାରରେ ତାହା ପ୍ରକାଶ ପାଇଲା । ମଝିରେ ବ୍ରାକେଟ୍ ଭିତରେ ଭୁବନେଶ୍ୱର ପୁସ୍ତକମେଳା ଉପଲକ୍ଷେ ବୋଲି ପ୍ରକାଶ ପାଇଲା । ସମାଜରେ କାଳେ ପ୍ରକାଶ ପାଇବ ନାହିଁ ସେଥିପାଇଁ ମୁଁ ପ୍ରଜାତନ୍ତ୍ର, ଧରିତ୍ରୀ ଓ ସମ୍ବାଦକୁ ମଧ ତା'ର ଗୋଟିଏ ଗୋଟିଏ କପି ପଠାଇ ଦେଇଥିଲି । ସବୁ କାଗଜରେ ସେଦିନ ତାହା ପ୍ରକାଶ ପାଇଥିଲା । ମୋର ସେଇ ପ୍ରଥମ ସ୍ତମ୍ଭ ରଚନା ବୋଲି କହିଲେ ଠିକ୍ ହେବ । ଯଦିଓ ପି.ଆଇ.ବି. ଜରିଆରେ ମୋର ଚାରୋଟି ନିବନ୍ଧ ଅଧିକାଂଶ ଓଡ଼ିଆ ଖବରକାଗଜରେ ପ୍ରକାଶ ପାଇଥିଲା ପୁସ୍ତକମେଳା ନିବନ୍ଧଟି ମୋତେ ଅଧିକ ସନ୍ତୋଷ ଦେଇଥିଲା ।

ସେ ବର୍ଷ ପ୍ରଜାତନ୍ତ୍ର ପରିସର ବିଷୁବ ମିଳନରେ ଭର୍ତ୍ତୃହରି ମହତାବ(ସମ୍ପାଦକ ପ୍ରଜାତନ୍ତ୍ର)ଙ୍କ ସହ ଦେଖାହେଲା । କଥାବାର୍ତ୍ତା ପ୍ରସଙ୍ଗରେ ସେ ମୋତେ କହିଲେ ଆପଣ ତ ଚମତ୍କାର ନିବନ୍ଧ ଲେଖୁଛନ୍ତି । ପ୍ରଜାତନ୍ତ୍ରକୁ ପଠାଉ ନାହାନ୍ତି ? କିନ୍ତୁ ଆମକୁ ଯେଉଁ ଲେଖା ଦେବେ ତାହାକୁ ଅନ୍ୟ କାଗଜକୁ ଦେବେ ନାହିଁ । ମୁଁ କହିଲି ଚେଷ୍ଟା କରିବି । ପ୍ରଜାତନ୍ତ୍ରରେ ମୁଁ ପ୍ରଥମେ 'ଓଡ଼ିଶୀ ନୃତ୍ୟ ସଙ୍ଗୀତର ତୃତୀୟାକ୍ରମ' ଶୀର୍ଷକ ଏକ ନିବନ୍ଧ ଲେଖିଲି । ବେଶ୍ ବଡ଼ବଡ଼ ଅକ୍ଷରରେ ଏହା ପ୍ରକାଶ ପାଇଲା । ଅନେକ ବନ୍ଧୁ ବିଶେଷକରି ଅନେକ ଓଡ଼ିଶୀ ନୃତ୍ୟ ଓ ସଂଗୀତ ଗୁରୁ ମୋ ଘରକୁ ଆସି ମୋତେ ଅଭିନନ୍ଦନ ଜଣାଇଲେ । ପରେପରେ ଅନେକ ଲେଖାଦେଲି । ସବୁଗୁଡ଼ିକ ସାଧାରଣରେ ବେଶ୍ ଆଦୃତ ହେଲା । ମାତ୍ର ମୋର ଗୋଟିଏ ଲେଖା 'ବିଜୁବାବୁ, ଆନନ୍ଦ ମଠ ଓ ଓଡ଼ିଆ ସାହିତ୍ୟ' ରବିବାର ପ୍ରଜାତନ୍ତ୍ରରେ ଆଠକଲମ ହେଡିଂରେ ପ୍ରକାଶ ପାଇଲା । ବିଜୁବାବୁ ମୁଖ୍ୟମନ୍ତ୍ରୀ ହେବା ପରେ ୧୯୯୧ରେ ତାଙ୍କୁ ଭୁବନେଶ୍ୱର

ପୁସ୍ତକମେଳା ଉଦ୍‌ଘାଟନ କରିବା ପାଇଁ ଡାକିଥିଲୁ । ସେଇଠି ସେ ବଙ୍କିମ ଚନ୍ଦ୍ର ଚାଟାର୍ଜୀଙ୍କ ଆନନ୍ଦ ମଠ ବହିର ବହୁ ପ୍ରଶଂସା କରି କହିଲେ ଓଡ଼ିଆରେ ଯଦି ଏଭଳି ବହି ଲେଖାଯାଇ ପାରିବ ତେବେ ସେ ସେଭଳି ବହିକୁ ଲକ୍ଷେଟଙ୍କା ପୁରସ୍କାର ଦେବେ । ବିଜୁବାବୁ ସେଦିନ ଓଡ଼ିଆ ଭାଷାରେ ଉନ୍ନତ ବହି ଲେଖାହେବା ଦରକାର ବୋଲି ଯେଉଁ ମନ୍ତବ୍ୟ ଦେଇଥିଲେ ତାହା ଅନେକ ବିଶିଷ୍ଟ ସାହିତ୍ୟିକ ଓ ଲେଖକଙ୍କୁ ବିସ୍ମିତ କରିଥିଲା । ମୁଁ ବିଜୁବାବୁଙ୍କ ସେଇ ମନ୍ତବ୍ୟ ଓ ଆନନ୍ଦ ମଠ ଏବଂ ଓଡ଼ିଆ ଭାଷାର ସାହିତ୍ୟକୁ ନେଇ ମୁଁ ଏକ ବିସ୍ତୃତ ନିବନ୍ଧ ଲେଖିଥିଲି । ଏ ନିବନ୍ଧ ସେତେବେଳେ ମୋତେ ଅନେକ ପ୍ରଶଂସା ଆଣି ଦେଇଥିଲା । ଏହି ନିବନ୍ଧଟି ମୋର 'ମୁକ୍ତ ବିଚାର' ୨ୟଭାଗ ପୁସ୍ତକରେ ସନ୍ନିବେଶିତ ହୋଇଛି । ପ୍ରଜାତନ୍ତ୍ରରେ ମୁଁ ପ୍ରତି ପ୍ରବନ୍ଧ ପାଇଁ ଶହେଟଙ୍କା ପାଉଥିଲି ।

ସ୍ୱରାଜ୍ୟର ସମ୍ପାଦକ ଥିବା ସମୟରେ ମୁଁ ଭାରତର ଜାତୀୟ ସାମ୍ବାଦିକ ୟୁନିୟନର ସଭାପତି ରୂପେ ୧୯୯୦ ସେପ୍ଟେମ୍ବର ୧୩ ତାରିଖରେ ହରିଦ୍ୱାର ଠାରେ ଦ୍ୱିବାର୍ଷିକ ସମ୍ମିଳନୀରେ ସର୍ବସମ୍ମତ ଭାବେ ନିର୍ବାଚିତ ହେଲି । ଜଣେ ଓଡ଼ିଆ ସାମ୍ବାଦିକ ଏଭଳି ଏକ ସର୍ବଭାରତୀୟ ସାମ୍ବାଦିକ ସଂଘର ସଭାପତି ରୂପେ ନିର୍ବାଚିତ ହେବା ଏହି ପ୍ରଥମ । ଏ ସମ୍ପର୍କରେ ଅନ୍ୟତ୍ର ମୁଁ ବିସ୍ତୃତ ବିବରଣୀ ଦେଇଛି । ସେତେବେଳେ ଭାରତ ବର୍ଷରେ ସମ୍ବିଧାନର ଦୁଇ ସ୍ତମ୍ଭ ସାଂସଦ ଓ ବିଚାର ବିଭାଗର ଦୁଇ ମୁଖ୍ୟ ଥିଲେ ଓଡ଼ିଆ । ଲୋକସଭାର ବାଚସ୍ପତି ଥିଲେ ରବି ରାୟ ଓ ସୁପ୍ରିମକୋର୍ଟର ମୁଖ୍ୟ ବିଚାରପତି ଥିଲେ ରଙ୍ଗନାଥ ମିଶ୍ର । ଚତୁର୍ଥସ୍ତମ୍ଭର ସଭାପତି ମୁଁ ହେଲି ।

## -ସ୍ୱରାଜ୍ୟରେ ଗୋଳମାଳ-

ସ୍ୱରାଜ୍ୟ ଖବରକାଗଜରେ ଟଙ୍କା ପଇସା ଖର୍ଚ୍ଚ ସବୁ ମୁଁ ତଦାରଖ କରୁଥିଲି । ଫଳରେ ମ୍ୟାନେଜର ବେହେରା ଅସୁବିଧାରେ ପଡ଼ିଗଲା । ତଥାପି ବିଭିନ୍ନ ଆକାରରେ ସେ କିଛିକିଛି ଟଙ୍କା ମାରି ନେଉଥିଲା । ବ୍ୟାଙ୍କରେ ମୁଁ ଡବଲ ସିଗ୍‌ନେଚର ବ୍ୟବସ୍ଥା କଲି । ମୋ ଦସ୍ତଖତ ଓ ବେହେରା ଦସ୍ତଖତରେ ଟଙ୍କା ଉଠାଣ ହେଉଥିଲା । ଦିନେ ମୁଁ ଲୋକ ସମ୍ପର୍କ ବିଭାଗକୁ ଯାଇଛି ଶୁଣିଲି ଛ'ହଜାର କେତେ ଟଙ୍କାର ଏକ ଚେକ୍ ବେହେରା ନେଇଛି । ମୁଁ ଚେକ୍ ନମ୍ବର ଓ ତାରିଖ ଲେଖିଆଣି ଆସିଲି । ସେ ଘଟଣା ମୁଁ ପାଶୋରି ଯାଇଥିଲି । କାରଣ ଚେକ୍ ଆଣିଲେ ତ ବ୍ୟାଙ୍କରେ ନିଶ୍ଚିତ ଡିପୋଜିଟ୍ ହୋଇଥିବ । ହଠାତ୍ ଦିନେ ବ୍ୟାଙ୍କ ପାସ୍‌ବୁକ୍ ମଗାଇ କେତେ ଟଙ୍କା ଅଛି ବୋଲି ମୁଁ ଜାଣିବାକୁ ଚାହିଁଲି । ବେହେରା ପାସ୍‌ବୁକ୍ ନିଜ ପାଖରେ ରଖୁଥିଲା । ସେଦିନ ପାସ୍‌ବୁକ୍‌ଟି କ୍ୟାସିୟର ଆଣି ମୋତେ ଦେଲେ । ମୁଁ ପାସ୍‌ବୁକ୍‌ଟି ଦେଖି ଆଶ୍ଚର୍ଯ୍ୟ ହୋଇଗଲି । ଗତ ଦୁଇମାସ ମଧରେ କୌଣସି କଲେକ୍ସନ ସେଥିରେ ନଥିଲା । ମୋର ସନ୍ଦେହ ହେଲା । ମୁଁ ପାସ୍‌ବୁକ୍‌ଟି ନିଜ ପାଖରେ ରଖିଲି । ଲୋକ ସମ୍ପର୍କ ବିଭାଗରୁ ଆଣିଥିବା ଛ'ହଜାର ଟଙ୍କା ଚେକ୍ ମଧ ସେଥିରେ ନଥିଲା । ମୋର ମନେହେଲା ବେହେରା ଆଉ କୌଣସି ବ୍ୟାଙ୍କରେ ସ୍ୱରାଜ୍ୟ ନାମରେ ଏକ ଆକାଉଣ୍ଟ ଖୋଲିଛି । ସେ ଦିନ ମୁଁ କିଛି କହିଲି ନାହିଁ । ତା' ପରଦିନ ବେହେରାକୁ ଡାକି ଏ ସମ୍ପର୍କରେ ପଚାରିଲି । ସେ ବାଧ ହୋଇ ମାନିଲା । ମୁଁ ତାକୁ କହିଲି ଏଇଟା ଆପଣଙ୍କ ବ୍ୟକ୍ତିଗତ ସମ୍ପତ୍ତି ନୁହେଁ । ସେ ବ୍ୟାଙ୍କର ଗତ ଦୁଇବର୍ଷର ମୁଁ ଅଡିଟ୍ କରିବି । ଯଦି ଗୋଳମାଳ ଥିବ ତେବେ ଆପଣଙ୍କୁ ପୋଲିସ୍‌ରେ ଦେବି । ମାତ୍ର ବେହେରା ଗାଲୁଆଙ୍କ ଓସ୍ତାଦ । କହିଲା ଯାହା ଖର୍ଚ୍ଚ ହୋଇଛି ପ୍ରେସ୍‌ପାଇଁ ଖର୍ଚ୍ଚ ହୋଇଛି । ମୁଁ କହିଲି ଠିକ୍ ଅଛି ସେ ପାଶ୍‌ବୁକ୍ ମୋତେ ଦିଅନ୍ତୁ । ମାତ୍ର ନାନା ପ୍ରକାର ଆଳ ଦେଖାଇ ସେ ସେ ପାସ୍‌ବୁକ୍ ଆଉ ଦେଲାନି ।

'ସ୍ୱରାଜ୍ୟ' ଖବର କାଗଜ ଭଲ ଆଡ଼କୁ ଆସୁଥିବା ବେଳେ ବେହେରା କିଛି କର୍ମଚାରୀଙ୍କୁ ଧରି ମୋ ବିରୁଦ୍ଧରେ ଏକ ଗୋପନ ମନ୍ତ୍ରଣା କରୁଥିବା ମୋତେ ଆଉ କେତେକ କର୍ମଚାରୀ ଖବର ଦେଲେ । ଏଇମିତି ସ୍ୱରାଜ୍ୟରେ କାର୍ଯ୍ୟ କରୁଥିବା ବେଳେ ମୋର ଦୁଇଟି କ୍ଷତି ହୋଇଥିଲା । ପ୍ରଥମ କ୍ଷତି ହେଲା ମୋ ପତ୍ନୀଙ୍କ ନାମରେ ଥିବା ଜୀବନବୀମା ଏଜେନ୍ସିକୁ ୧୯୮୬ରେ ଦଶବର୍ଷ ପୂରିଲା । ମୋର ଅଜ୍ଞତା ଯୋଗୁଁ ତାହା କଟିଗଲା । ସେତେବେଳେ ମୁଁ ସେଥିରୁ ବର୍ଷକୁ ପାଖାପାଖି ୩୦ ହଜାର ଟଙ୍କା ପାଉଥିଲି । ଦଶମ ବର୍ଷ ମୁଁ ବାରୋଟି ଜୀବନବୀମା ପଲିସି ସର୍ବନିମ୍ନ ପାଞ୍ଚଲକ୍ଷ ଟଙ୍କାର କରିପାରିଥିଲେ ଜୀବନସାରା ମାସକୁ ହଜାରେ ଟଙ୍କା କରି ପେନ୍‌ସନ ପାଇଥା'ନ୍ତି । ମୋତେ ସେ କଥା ଜଣା ନଥିଲା । ତା'ଛଡ଼ା ସ୍ୱରାଜ୍ୟର ଆର୍‌.ଏନ୍‌.ଆଇ. ଆଉ ଡି.ଏ.ଭି.ପି. କାମ କରୁକରୁ ୧୯୮୬ ବର୍ଷ ଶେଷ ହୋଇଗଲା । ତେଣୁ ମୋର ଗୋଟିଏ ବଡ଼ ଧରଣର ବ୍ୟକ୍ତିଗତ କ୍ଷତି ହେଲା । ମୁଁ ଏକଥା ଜାଣିଲି ପ୍ରାୟ ବର୍ଷକପରେ । ସେତେବେଳକୁ ଆଉ ସମୟ ନଥିଲା । ତେବେ ଠାକୁରଙ୍କ ଦୟା ମୋ ଉପରେ ଥିଲା । ମୋର ବ୍ୟକ୍ତିଗତ ଆୟପନ୍ଥା ଗୋଟିଏ ବନ୍ଦ ହେବା ବେଳକୁ ଆଉ ଗୋଟିଏ ଖୋଲି ଯାଉଥିଲା । ତା' ହେଲା ଷ୍ଟେଟସ୍‌ମ୍ୟାନ୍‌ର ଲୋକାଲ୍ ବିଜିନେସ୍ ରିପ୍ରେଜେଣ୍ଟେଟିଭ୍ କାମ । ୧୯୮୩ରୁ ଯଦିଓ ମୋତେ ଷ୍ଟେଟସ୍‌ମ୍ୟାନ୍‌ର ଭୁବନେଶ୍ୱର ପ୍ରତିନିଧି ଆର୍‌.ପି. ବାଗ୍‌ଚି ମୋତେ ଷ୍ଟେଟ୍‌ସମ୍ୟାନ୍ ପାଇଁ କାମ କରିବାକୁ ପ୍ରବର୍ତ୍ତାଉଥିଲେ ତେବେ ୧୯୮୫ ମସିହାରେ ତାହା ବିଧିବଦ୍ଧ ଭାବେ ରୂପ ନେଲା । ୧୯୮୪ରେ ମୁଁ ଆଉ ବାଗ୍‌ଚିଦା ମିଶି ଷ୍ଟେଟ୍‌ସମ୍ୟାନ୍‌ର ଏକ ଦଶପୃଷ୍ଠିଆ ସ୍ପେଶାଲ୍ ଇସ୍ୟୁ କରିଥିଲୁ । ଏହା ଦୁଇ ପର୍ଯ୍ୟାୟରେ ପ୍ରକାଶ ପାଇଥିଲା । ପ୍ରଥମ ପର୍ଯ୍ୟାୟରେ ଛ'ପୃଷ୍ଠା ଏବଂ ଦ୍ୱିତୀୟ ପର୍ଯ୍ୟାୟରେ ଚାରିପୃଷ୍ଠା ସମ୍ବଳିତ ଥିଲା । ମୋଟ୍ ସାଢ଼େ ସାତପୃଷ୍ଠା ବିଜ୍ଞାପନ ସଂଗ୍ରହ ହୋଇଥିଲା । ସେତେବେଳେ ଗୋଟିଏ ପୃଷ୍ଠା ବିଜ୍ଞାପନ ମୂଲ୍ୟ ଅଶୀହଜାର ଟଙ୍କା ଥିଲା । ସେଇ ସ୍ୱତନ୍ତ୍ର ସଂଖ୍ୟାରୁ ମୁଁ ପାଖାପାଖି ଚାଳିଶ ହଜାର ଟଙ୍କା କମିଶନ ପାଇଥିଲି । ସ୍ୱାଭାବିକ ଭାବେ ମୋର ଆଗ୍ରହ ବଢ଼ିଥିଲା । ତା'ଛଡ଼ା ସେତେବେଳେ ଷ୍ଟେଟସ୍‌ମ୍ୟାନ୍‌ର ମର୍ଯ୍ୟାଦା ସାଧାରଣରେ ଯଥେଷ୍ଟ ଅଧିକ ଥିଲା । ୧୯୮୫ରେ କଲିକତାରୁ ଷ୍ଟେଟ୍‌ସମ୍ୟାନ୍ ବିଜ୍ଞାପନ ବିଭାଗର ଜଣେ ବରିଷ୍ଠ କର୍ତ୍ତା ଶ୍ରୀ କେ.ପି. ରାୟ ଚୌଧୁରୀ ଭୁବନେଶ୍ୱର ଆସିଲେ ସେ ବର୍ଷ ପାଇଁ ଏକ ସ୍ୱତନ୍ତ୍ର ସଂଖ୍ୟା କରିବା ପାଇଁ । ବାଗ୍‌ଚିଦା' ମୋତେ ତାଙ୍କ ସହ ଯୋଟାଇ ଦେଲେ । ମୁଁ ରାୟ ଚୌଧୁରୀଙ୍କୁ ମୋ ସ୍କୁଟରରେ ନେଇ ବିଭିନ୍ନ ସଂସ୍ଥାକୁ ଗଲି । ଭୁବନେଶ୍ୱରରେ ମୋର ପ୍ରାୟ ସବୁ କର୍‌ପୋରେସନ୍‌ଠାରୁ ଆରମ୍ଭ କରି ବେସରକାରୀ ଶିଳ୍ପ ଓ ବ୍ୟବସାୟ ପ୍ରତିଷ୍ଠାନ ସହ ଖୁବ୍ ଭଲ ଯୋଗାଯୋଗ ଦେଖି ସେ ବାଗ୍‌ଚିଦା'ଙ୍କୁ କହିଲେ ବରେନ୍‌ବାବୁ ଆମ ପାଇଁ କାମ କରନ୍ତୁ । ଲୋକ ସମ୍ପର୍କ ବିଭାଗରେ ଷ୍ଟେଟସ୍‌ମ୍ୟାନ୍‌ର ପ୍ରାୟ ତିରିଶଲକ୍ଷ ଟଙ୍କା ବିଜ୍ଞାପନ ବାବଦ ଦେୟ ଆଦାୟ ନହୋଇ ବାକି ପଡ଼ିଥିଲା । ସେ ଦେୟ ଆଦାୟ ପାଇଁ ସେତେବେଳେ ପ୍ରଜାତନ୍ତ୍ର ଖବରକାଗଜର ଜେନେରାଲ୍ ମ୍ୟାନେଜର ପ୍ରଫୁଲ୍ଲ ସାହୁ ଦାୟିତ୍ୱ ନେଇଥିଲେ । ମାତ୍ର ସେ ନିଜେ ନଆସି ତାଙ୍କର ଜଣେ ସମ୍ପର୍କୀୟ ଯୁବକଙ୍କୁ ଦାୟିତ୍ୱ ଦେଇଥିଲେ । ଆମର କଥାରେ ଅଛି- 'ଦେଇଥିଲେ ପାଇ'- ଅର୍ଥାତ୍ ଖର୍ଚ୍ଚ ନକଲେ କେବଳ ଆୟ କରିବା ସମ୍ଭବ ନୁହେଁ । ଇକୋନୋମିକ ଥିଓରି ହେଲା ଥ୍ରୋ ମନି ଏଣ୍ଡ କଲେକ୍ଟ ମନି । ରାୟଚୌଧୁରୀ ମୋତେ କହିଲେ ପ୍ରଫୁଲ୍ଲବାବୁ ନିଜେ ନଆସି ଜଣେ ତରୁଣଙ୍କୁ ଏ ଦାୟିତ୍ୱ ଦେଇଛନ୍ତି । ସେ ପିଲା ଜାଣିପାରୁନି କ'ଣ କରିବ ? ଆପଣ ସେ ଦାୟିତ୍ୱ ନିଅନ୍ତୁ । ଆପଣ ଯେତିକି ଆଦାୟ କରିବେ ତା'ର ଦଶଭାଗ କମିଶନ ପାଇବେ । କିନ୍ତୁ କିପରି ଆଦାୟ କରିବେ ତାହା ଆପଣଙ୍କ ଦାୟିତ୍ୱ । ଷ୍ଟେଟସ୍‌ମ୍ୟାନ୍ ଆପଣଙ୍କ କମିଶନ ବାଦ୍ ଅନ୍ୟ କିଛି ଖର୍ଚ୍ଚ ବହନ କରିବ ନାହିଁ । ମୁଁ ହଠାତ୍ କିଛି କହିପାରିଲି ନାହିଁ । ପରେ ଲୋକ ସମ୍ପର୍କ ବିଭାଗର ମ୍ୟାନେଜର ପବ୍ଲିକେଶନ ଥିବା ବନ୍ଧୁଙ୍କୁ ପଚାରିଲି । ସେ କହିଲେ ବିଜ୍ଞାପନ ବିଭାଗ ବଡ଼ବାବୁଙ୍କୁ କିଛି ଟଙ୍କା ଦେଇ ଆଗେ ବିଲ୍ କାଢ଼ନ୍ତୁ । କେତେ କ'ଣ ବିଲ୍ ଦେଖି ତା'ପରେ ଯାହା କରାଯିବ । କେତେ

ଟଙ୍କା ଦେବାକୁ ପଡ଼ିବ ବୋଲି ପଚାରିବାରୁ ସେ କହିଲେ ହଜାରେ ଟଙ୍କା ଦିଅନ୍ତୁ । କାରଣ ସେଥିରୁ ତିନି ସେକ୍ସନ ବାଲା ନେବେ । ସବୁ କାଗଜ ଟଙ୍କା ଦେଇ ବିଲ୍ ପାଶ୍ କରାଉଛନ୍ତି । ଆପଣଙ୍କ ଷ୍ଟେଟ୍‌ସମ୍ୟାନ୍‌ର କେହି ଆସନ୍ତି ନାହିଁ । ଯିଏ ବି ଆସୁଛନ୍ତି କେବଳ କଥାରେ କହିଲେ କିଛି ହେଉନାହିଁ । ମୁଁ ତାଙ୍କ କଥା ଶୁଣି ବାଗ୍‌ଚିଦା'ଙ୍କୁ ସବୁ କହିଲି । ସେ କହିଲେ ସେ ଟଙ୍କା ତ ତମକୁ ଦେବାକୁ ହେବ । ମୁଁ କହିଲି କିନ୍ତୁ ମୁଁ ଷ୍ଟେଟ୍‌ସମ୍ୟାନ୍‌ରୁ ଏତିକି ପାଇବି ବୋଲି କାଗଜ କଲମରେ ନରହିଲେ ମୁଁ ଟଙ୍କା ଖର୍ଚ୍ଚ କରିବି କାହିଁକି ? ବାଗ୍‌ଚିଦା' ରାୟ ଚୌଧୁରୀଙ୍କୁ ଫୋନ୍ କଲେ । କଥା ହେଲା ମୋ ପତ୍ନୀ ସ୍ନେହଲତାଙ୍କୁ ବିଜିନେସ୍ ରିପ୍ରେଜେଣ୍ଟେଟିଭ୍ ରୂପେ ନିଯୁକ୍ତି ଦେଇ ପ୍ରତି ବିଲ୍ ଆଦାୟ ଅର୍ଥର ଶତକଡ଼ା ଦଶଭାଗ ମିଳିବ ବୋଲି ଲେଖା ହୋଇ ମୋ ପାଖକୁ ଆସିଲା । ମୁଁ କାମରେ ଲାଗିଗଲି । ବିଜ୍ଞାପନ ବିଭାଗ ବିଲ୍ ଦାୟିତ୍ୱରେ ଥିବା ବଡ଼ବାବୁଙ୍କ ସହ କଥା ହେଲି । ହଜାରେ ଟଙ୍କା ଦେଲି । ସେ ନେଉ ନଥିଲେ । ମାତ୍ର ତାଙ୍କୁ କହିଲି ଏ ଟଙ୍କା ଷ୍ଟେଟସ୍‌ମ୍ୟାନ୍‌ର । ତେଣୁ ଆପଣଙ୍କ ନେବାରେ ଅସୁବିଧା ନାହିଁ । କେବଳ ଷ୍ଟେଟସ୍‌ମ୍ୟାନ୍‌ର ପୁରୁଣା ବିଲ୍ କାଢ଼ି ଟିକେ ଆକାଉଣ୍ଟକୁ ପଠାନ୍ତୁ । ସେ ସେହି ସେକ୍ସନ୍‌ର ଜଣେ କନିଷ୍ଠ କିରାଣୀ ଆଉ ପିଅନକୁ ଡାକି ବିଲ୍ ବାହାର କରିବାକୁ କହିଲେ । ମୋତେ କହିଲେ ସାର୍ ଏ ଦିହିଁଙ୍କୁ ଶହେଟଙ୍କା ଲେଖାଏଁ ଦେବେ । ମୁଁ ତାଙ୍କ କଥା ଅନୁସାରେ ଦେଲି । ବେଶ୍ ଭଲ ଫଳ ମିଳିଲା । ସେ ବର୍ଷ ଲୋକ ସମ୍ପର୍କ ବିଭାଗରୁ ମୁଁ ଷ୍ଟେଟସ୍‌ମ୍ୟାନ୍‌ର ପ୍ରାୟ ଛ'ଲକ୍ଷ ଟଙ୍କାର ପୁରୁଣା ବିଲ୍ ବାହାର କରି ଟଙ୍କା ପାଇଲି । ଛ'ଲକ୍ଷ ଟଙ୍କାର ଡ୍ରାଫ୍ଟ ମୁଁ ଷ୍ଟେଟସ୍‌ମ୍ୟାନ୍‌କୁ ପଠାଇ ତା' ଉପରେ ମୋର ଷାଠିଏ ହଜାର ଟଙ୍କାର କମିଶନ ବିଲ୍ ପଠାଇଲି । ଏ ଟଙ୍କା ଦଶହରା ପୂଜା ପୂର୍ବରୁ ମୁଁ ପଠାଇ ଦେଇଥିଲି । ରାୟ ଚୌଧୁରୀ ଡ୍ରାଫ୍ଟ ପାଇ ମୋତେ ଫୋନ୍ କରି ବେଶ୍ ପ୍ରଶଂସା କଲେ । କହିଲେ ଆଜି ପର୍ଯ୍ୟନ୍ତ ଷ୍ଟେଟ୍‌ସ୍‌ମ୍ୟାନ ଏକକାଳୀନ ଛ'ଲକ୍ଷ ଟଙ୍କା ଓଡ଼ିଶା ସରକାରଙ୍କ ଠାରୁ ପାଇବା ଏହି ପ୍ରଥମ । ଯାହାହେଉ ଆପଣ ଅସାଧ ସାଧନ କରିଛନ୍ତି । ମୁଁ କହିଲି ଦାଦା ମୋ କମିଶନ କେବେ ମିଳିବ ? ସେ କହିଲେ ମୁଁ କରି ପଠେଇ ଦେବି । ଆପଣ ଯଦି କଲିକତା ଆସନ୍ତେ ତେବେ ଏଠି ସମସ୍ତଙ୍କ ସହ ପରିଚିତ ହୋଇ ପାରନ୍ତେ ।

ତେବେ ମାସେ/ଦେଢ଼ମାସ ପରେ ମୋର କମିଶନ ଅର୍ଥ ନ ଆସିବାରେ ମୁଁ ଟିକେ ହତୋତ୍ସାହିତ ହୋଇପଡ଼ିଲି । ରାୟଚୌଧୁରୀଙ୍କୁ ଫୋନ୍ କରି ବାରମ୍ବାର ପଚାରୁଥାଏ । ମୋ ବିଲ୍ ଆକାଉଣ୍ଟକୁ ଯାଇଛି । ଶୀଘ୍ର ହୋଇଯିବ ଏହି ଉତ୍ତର କେବଳ ପାଉଥାଏ । ମୁଁ ବାଗ୍‌ଚିଦା'ଙ୍କୁ ପଚାରିଲି ଦାଦା ଇଏ କ'ଣ ? ମୋତେ ଯେତେ ସବୁ କଥା କୁହାଯାଇଥିଲା ଇଯେ ତ ତା'ର ବିପରିତ ବ୍ୟବସ୍ଥା । ବାଗ୍‌ଚିଦା' ମଧ କିଛି ବୁଝିପାରୁ ନଥା'ନ୍ତି । ସେ ଟେଲିଫୋନ୍ କରି ବୁଝାବୁଝି କରିବାରେ ମୋତେ କହିଲେ ପ୍ରକୃତରେ ସେମାନେ ପାଞ୍ଚ ପରସେଣ୍ଟ ଦେବା କଥା । ମାତ୍ର ତମ ଏଗ୍ରିମେଣ୍ଟରେ ତାହା ଦଶ ପରସେଣ୍ଟ ହୋଇଛି । ସେଇଥିପାଇଁ ଟଣା ଓଟରା ଚାଲିଛି । ତେବେ ପୁରୁଣା ବିଲ୍ ପାଇଁ ଦଶ ପରସେଣ୍ଟ ତୁମକୁ ଦିଆଯିବ ବୋଲି ସେମାନେ ଯେଉଁ ଏଗ୍ରିମେଣ୍ଟ କରିଛନ୍ତି ସେ ଅନୁସାରେ ତୁମକୁ ଟଙ୍କା ଦେବେ । ମୁଁ ଅପେକ୍ଷା କରି ରହିଥାଏ ଟଙ୍କାକୁ । ବିଲ୍‌ପାଶ୍ କରିବା ପର୍ଯ୍ୟନ୍ତ ମୁଁ ପାଖାପାଖି ଆଠହଜାର ଟଙ୍କା ଖର୍ଚ୍ଚକରି ସାରିଥାଏ । ତେବେ ସେ ଯାହା ହେଉ ଡିସେମ୍ବର ମାସ ବେଳକୁ ମୋର ଷାଠିଏ ହଜାର ଟଙ୍କାର ଡ୍ରାଫ୍ଟ ଆସିଲା । ଜୀବନରେ ପ୍ରଥମଥର ପାଇଁ ମୁଁ ଏକାଥରକେ ଷାଠିଏ ହଜାର ଟଙ୍କାର ଡ୍ରାଫ୍ଟ ଏହି ପ୍ରଥମେ ଦେଖିଲି । ସେଦିନ ମୋ ମନଟା ବେଶ୍ ଆନନ୍ଦରେ ଭରିଗଲା । ପିଲାମାନଙ୍କୁ ଧରି ସ୍ୱସ୍ତି ହୋଟେଲ୍‌କୁ ଡିନର ଖାଇବାକୁ ଗଲି ।

ବ୍ୟାଙ୍କରେ ଟଙ୍କା ଡିପୋଜିଟ୍ କରି ପ୍ରଭୁ ହନୁମାନଙ୍କ ମନ୍ଦିର ଯାଇ ଭୋଗ ପୂଜା କଲି । ପତ୍ନୀଙ୍କ ପାଇଁ ଭଲ ଶାଢ଼ୀ ଆଉ ପିଲାଙ୍କ ପାଇଁ ନୂଆ ଜାମା-ପ୍ୟାଣ୍ଟ କିଣି ଆଣିଲି ।

ଗୋଟିଏପଟେ ଏଲ୍.ଆଇ.ସି. ଏଜେନ୍ସି ଟର୍ମିନେଟ୍ ହେବାବେଳେ ଷ୍ଟେଟ୍‌ସମ୍ୟାନ୍ ମୋତେ ନୂଆ ରାହା ଦେଖାଇଲା । ମୋର ଆୟ ବଢ଼ିଲା । ଦ୍ୱିତୀୟ କ୍ଷତିଟି ହେଲା ମୋର ଆକ୍ରିଡିସନ୍‌ଟି କଟିଗଲା ।

ସ୍ୱରାଜ୍ୟରେ ଯୋଗଦେବା ଫଳରେ ମୋର 'ମାତୃଭୂମି' ନାମରେ ଥିବା ପ୍ରେସ୍ ଆକ୍ରିଡିସନ୍ କଟିଗଲା । ୟୁନିଟ୍-୨ରେ ମୁଁ ଯେଉଁ ଟାଇପ୍-୫ ଘରେ ରହୁଛି ତାହା ମୋର ପ୍ରେସ୍ ଆକ୍ରିଡିସନ୍ ପାଇଁ ପାଇଛି । ତେଣୁ 'ମାତୃଭୂମି'ର ଆକ୍ରିଡିସନ କଟିଯିବା ପରେ ମୁଁ କଲିକତାର ବଙ୍ଗଳା ଦୈନିକ 'ଆଜ୍‌କାଲ୍'ର ପ୍ରେସ୍ ରିପ୍ରେଜେଣ୍ଟେଟିଭ୍ ରୂପେ ଆକ୍ରିଡିସନ୍ ନେଲି । ସେଇ ଅନୁସାରେ ଏ ଘରକୁ ଆଜ୍‌କାଲ ପ୍ରତିନିଧି ରୂପେ ପାଇବା ପାଇଁ ଆବେଦନ କଲି । ସେତେବେଳେ ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ । ମୋ ଦରଖାସ୍ତଟି ସେ ପକାଇ ରଖିଲେ । ମୁଁ ଇଷ୍ଟେଟ୍ ନିର୍ଦ୍ଦେଶକ କାଳୀପ୍ରସାଦ ମିଶ୍ରଙ୍କୁ ପଚାରିବାରେ ସେ କହିଲେ- ଆପଣଙ୍କ ଫାଇଲ୍ ମୁଖ୍ୟମନ୍ତ୍ରୀଙ୍କ ପାଖରୁ ଆସିନି ।

ମୁଁ କାଳୀବାବୁଙ୍କ କଥା ଶୁଣି ଦିନେ ଜାନକୀ ବାବୁଙ୍କ ପାଖକୁ ଯାଇ ଏକଥା ପଚାରିବାରେ ସେ କହିଲେ ଦେଖିବା, ଟାଇପ୍-୫ ଘର ଅବସ୍ଥା ବହୁତ ଟାଇଟ୍ । ମୁଁ ତାଙ୍କ ମନୋଭାବ ଦେଖି ସେ ବେଆଇନ୍ ଭାବେ ଦେଇଥିବା ଦୁଇଜଣ ଯୁବକଙ୍କ ନାମ ଏବଂ ଜଣେ ମହିଳାଙ୍କ ନାମ ଯେତେବେଳେ କହିଲି ସେ କହିଲେ- କାଳୀମିଶ୍ରଙ୍କୁ କହ ତୋ ଫାଇଲ୍ ନେଇ ଆସିବେ । ମୁଁ କହିଲି ଫାଇଲ୍‌ଆପଣଙ୍କ ପାଖରେ ଅଛି । ତା'ପରେ ମୋ ଘର ସେହିଦିନ ଅର୍ଡ଼ର ହୋଇଗଲା । ଜାନକୀବାବୁଙ୍କ ମୁଖ୍ୟମନ୍ତ୍ରୀତ୍ୱ କାଳରେ ଅନେକ ବେନିୟମ୍ କାର୍ଯ୍ୟ ଏ ରାଜ୍ୟରେ ଚାଲିଥିଲା ।

ସ୍ୱରାଜ୍ୟରେ ରଘୁନାଥ ବେହେରା ଟଙ୍କା ମାରିବାରେ ଅସୁବିଧା ହେଲା । ମୁଁ ଯୋଗଦେବା ଦି' ବର୍ଷ ପରେ ସବୁ ବ୍ୟବସ୍ଥା ଆର୍.ଏନ୍.ଆଇ./ଡି.ଏ.ଭି.ପି./ ରାଜ୍ୟ ସରକାରଙ୍କ ଲୋକ ସମ୍ପର୍କ ବିଭାଗ ଏବଂ ଅନ୍ୟାନ୍ୟ କେନ୍ଦ୍ରୀୟ ବିଭାଗର ବିଜ୍ଞାପନ ସବୁ ରେଗୁଲାରାଇଜ କରି ଦେଇଥିଲି । ଫଳରେ ବିଜ୍ଞାପନ ବାବଦରେ ଏକଦା ସ୍ୱରାଜ୍ୟ ମାସକୁ ହାରାହାରି ଦଶ/ବାର ହଜାର ପାଉଥିବା ବେଳେ ମୁଁ ତାକୁ ମାସକୁ ଦେଢ଼ଲକ୍ଷ ଟଙ୍କାରେ ପହଞ୍ଚାଇ ଦେଲି । କର୍ମଚାରୀମାନଙ୍କ ଦରମା ମଧ୍ୟ ବୃଦ୍ଧି କରାଗଲା । ଏତେ ଟଙ୍କା ଆୟ ଦେଖି ବେହେରା ପାଟିରୁ ଲାଳ ବୋହିଲା । ତଥାପି ମୁଁ ତାକୁ ଜଗିଥାଏ । ତାରି ଭିତରେ ମଧ୍ୟ ସେ କିଛି କିଛି ଗୋଳମାଳ କଲା । ମୁଁ ସହିଦ ନଗର ବ୍ୟାଙ୍କ୍ ଅଫ୍ ଇଣ୍ଡିଆ କର୍ତ୍ତୃପକ୍ଷଙ୍କୁ ବେହେରା ଦସ୍ତଖତରେ ଟଙ୍କା ନଦେବା ପାଇଁ ଗୋପନରେ ଏକ ପତ୍ର ଲେଖିଲି । ଥରେ ମୋ ଅଜଣାତରେ ଦକ୍ଷିଣ-ପୂର୍ବ ରେଳପଥ କଲିକତାରୁ ଆସିଥିବା ପନ୍ଦର ହଜାର ଟଙ୍କାର ଏକ ଚେକ୍ ସେ ଆମର ନିୟମିତ ବ୍ୟାଙ୍କ ଆକାଉଣ୍ଟ(ଆନ୍ଧ୍ର ବ୍ୟାଙ୍କ)ରେ ଜମା ନକରି ସହିଦ ନଗର ବ୍ୟାଙ୍କରେ ଜମା କରି ତା' ବାବଦରେ ପୁରା ଟଙ୍କା ଉଇଥଡ୍ର କରିବା ପାଇଁ ଏକ ଚେକ୍ ଦାଖଲ କଲା । ମାତ୍ର ମ୍ୟାନେଜର ସେ ଚେକ୍‌ରେ ଟଙ୍କା ନଦେଇ ମୋ ସହ କଥାବାର୍ତ୍ତା କରିବା ପାଇଁ ତାକୁ କହିଲେ । ସେ ଏତେଟା ଆଶା କରି ନଥିଲା । ଇତିମଧ୍ୟରେ ସହିଦ ନଗର ବ୍ୟାଙ୍କର ଏକ ଷ୍ଟେଟ୍‌ମେଣ୍ଟ ଅଫ୍ ଆକାଉଣ୍ଟ ଆଣି ନିଜ ପାଖରେ ରଖିଥିଲି । କର୍ମଚାରୀମାନେ ଦରମା ନପାଇବାବେଳେ ସେ ୧୯୮୫/୮୬/୮୭ରେ ସତୁରୀ ହଜାର ଟଙ୍କା ଉଠାଇ ନେଇଛି । ଏ ହିସାବ ପାଇବା ପରେ ଲୋକ ସମ୍ପର୍କ ବିଭାଗରୁ ସେ କେଉଁ କେଉଁ ତାରିଖରେ କେତେ କେତେ ଟଙ୍କାର ଚେକ୍ ଆଣିଛି ତା' ମଧ୍ୟ ସଂଗ୍ରହ କଲି । ସବୁ ତଥ୍ୟ ମୋ ପାଖରେ ରଖି ବେହେରାର ପରବର୍ତ୍ତିଚାଲ୍ କ'ଣ ସେଥିପାଇଁ ଅପେକ୍ଷା କଲି । ମାତ୍ର ବେହେରା ଚାଲାକ ଲୋକ । ମୁଁ ଯାହା ଯାହା କରିଛି ତାହା ଜାଣିବା ପରେ ଚୁପ୍‌ଚାପ୍ ରହିଲା । ୧୯୮୮ରେ କେନ୍ଦ୍ର ପ୍ରୋଭିଡେଣ୍ଟ ଫଣ୍ଡ ବିଭାଗ ଆମକୁ ଏକ ପତ୍ର ପଠାଇଲେ ଯେ କର୍ମଚାରୀମାନଙ୍କ ଦରମା ବାବଦରେ ଯେଉଁ ଅର୍ଥ ଜମା ଦିଆଯିବା କଥା ତାହା ଗତ ପାଞ୍ଚବର୍ଷ ଧରି

ଜମା ଦିଆଯାଇ ନାହିଁ। ସେ ବାବଦରେ ସେମାନେ ଦୁଇଲକ୍ଷ କୋଡ଼ିଏ ହଜାର ଟଙ୍କାର ଏକ ସାର୍ଟିଫିକେଟ୍ କେଶ୍ କରି ତା'ର ସମନ ପଠାଇଥିଲେ। ସେହିବର୍ଷ ପୂଜା ପୂର୍ବରୁ ଆମେ ଲୋକ ସମ୍ପର୍କ ବିଭାଗରୁ ପ୍ରାୟ ଦୁଇଲକ୍ଷ ଟଙ୍କା ପାଇବାର ଥିଲା। ମୁଁ ଏ ସମନ ଦେଖି ସେଥିରୁ ଲକ୍ଷେଟଙ୍କା ପ୍ରୋଭିଡେଣ୍ଟ ଫଣ୍ଡ ବିଭାଗକୁ ଦେଇଦେବା ପାଇଁ ଏକ ପତ୍ର ଲୋକ ସମ୍ପର୍କ ବିଭାଗକୁ ଲେଖିଦେଲି । ଏ ବିଷୟ କର୍ମଚାରୀମାନଙ୍କୁ ଜଣାଇଦେବାରେ ସମସ୍ତେ ଭାରି ଖୁସି । କାରଣ ସେମାନଙ୍କ ଆକାଉଣ୍ଟରେ ହାରାହାରି ତିନିରୁ ଚାରି ହଜାର ଟଙ୍କା ଜମା ହୋଇ ରହିଲା । ମୁଁ ତିନିବର୍ଷ ମଧ୍ୟରେ ପ୍ରୋଭିଡେଣ୍ଟ ଫଣ୍ଡରେ ପାଖାପାଖି କର୍ମଚାରୀମାନଙ୍କ ପାଇଁ ସାଢ଼େ ତିନିଲକ୍ଷ ଟଙ୍କା ଜମା ରଖିଥିଲି। ସ୍ୱରାଜ୍ୟ ପାଇଁ ସମୟ ଦେବା ଯୋଗୁଁ ମୋର ଲେଖାଲେଖି ଏବଂ ୟୁନିୟନ କାମ ଆଦିରେ ଅସୁବିଧା ସୃଷ୍ଟି ହେଲା । ଅନ୍ୟପକ୍ଷରେ ବେହେରା ଆଉ ଚାରି/ପାଞ୍ଚଜଣ କର୍ମଚାରୀଙ୍କୁ ଧରି ସେତେବେଳେ ଜନତା ଦଳର ପ୍ରଭାତ ତ୍ରିପାଠୀ ସହ ଯୋଗାଯୋଗ କରି ତାଙ୍କୁ ସ୍ୱରାଜ୍ୟର ଚେୟାରମ୍ୟାନ କରିବା ପାଇଁ ରାଜି କରାଇଲା । ମୁଁ ଏକଥା ଜାଣିବା ପରେ ସ୍ୱରାଜ୍ୟରେ ଆଉ ରହିବା ନିରାପଦ ମନେ କଲି ନାହିଁ ଏବଂ ୧୯୯୩ ଏପ୍ରିଲ୍ ପହିଲାରେ ଇସ୍ତଫା ଦେଇଦେଲି । ସ୍ୱରାଜ୍ୟ ଅଧ୍ୟାୟ ଶେଷ ହେଲା।

## -ସ୍ୱରାଜ୍ୟ ଛାଡିଲି-

ଜୀବନରେ ଏହା ଏକ ଚମତ୍କାର ଅଭିଜ୍ଞତା। ସ୍ୱରାଜ୍ୟକୁ ସମ୍ପୂର୍ଣ୍ଣ ବୁଡିବା ଅବସ୍ଥାରୁ ଉଦ୍ଧାର କରି ନିଜ ଗୋଡ଼ରେ ଠିଆ କରାଇବାର ଯେଉଁ ବ୍ୟବସ୍ଥା ମୁଁ କରିଥିଲି ସେଥିରୁ ମୋର ଏତିକି ଅଭିଜ୍ଞତା ହେଲା ନିଷ୍ଠାପର ଭାବେ ଯେକୌଣସି କାମରେ ହାତ ଦେଲେ ନିଶ୍ଚୟ ସଫଳତା ମିଳିବ । ମାତ୍ର ସେଠି ବେହେରା ଭଳି ଢୋଲ ଭିତରେ ମୂଷାମାନେ ଥିଲେ ତମେ ଯେତେ କାମ କଲେ ମଧ୍ୟ ତା'ର ସୁଫଳ ପାଇବା ସମ୍ଭବ ନୁହେଁ । ମୁଁ ସ୍ୱରାଜ୍ୟ ଛାଡ଼ିବାର ବର୍ଷକ ମଧ୍ୟରେ ତାହା ବନ୍ଦ ହୋଇଗଲା । ତା' ପରେ ପରେ ପ୍ରାୟ ଦଶ/ବାରଜଣ ପୁରୁଣା କର୍ମଚାରୀ ମୋ ପାଖକୁ ଆସି ପୁଣି ଦାୟିତ୍ୱ ନେବାପାଇଁ କହିଲେ । ବେହେରାକୁ ବାହାର କରିଦେଇ ମୋ ମନ ମୁତାବକ ଲୋକ ମ୍ୟାନେଜର ରଖିବାକୁ ସେମାନେ ମତେ କହିଲେ । ମୁଁ ସେମାନଙ୍କୁ ଗୋଟିଏ କଥା କହି ଫେରାଇ ଦେଲି । ତା' ହେଲା ନ ଗଙ୍ଗାଦତ୍ତ ପୁନରପି କୁପମ୍ । ଅର୍ଥାତ୍ ହେ ବନ୍ଧୁଗଣ ମୋତେ ଆଉ ସେ ଅଫିସ୍ ବା ସଂସ୍ଥାକୁ ଯିବାପାଇଁ କୁହ ନାହିଁ, ମୁଁ ମଧ୍ୟ ଯିବି ନାହିଁ।

## -ମୋର ସ୍ତମ୍ଭ ଲେଖା-

ସ୍ୱରାଜ୍ୟ ଛାଡ଼ିବା ପୂର୍ବରୁ ମୁଁ ପ୍ରଜାତନ୍ତ୍ରରେ ମୋର କେତେ ଗୁଡ଼ିଏ ଫିଚର ପ୍ରକାଶ କରୁଥିଲି । ୧୯୯୦ ମସିହାରେ ବିଜୁବାବୁ ଓଡ଼ିଶାରେ ମନ୍ତ୍ରିମଣ୍ଡଳ ଗଢ଼ିଲେ। ମାର୍ଚ୍ଚ ୫ ତାରିଖରେ ସେ ମୁଖ୍ୟମନ୍ତ୍ରୀ ରୂପେ ଶପଥ ନେଲେ। ମୁଁ ସଚିବାଳୟକୁ ନିୟମିତ ଯାଉଥିଲି । ସେହି ବର୍ଷ ମେ' ଜୁନ୍ ମାସ ବେଳକୁ ଖରା ଟାଣ ହୋଇଥାଏ । ମୁଁ ଦିନେ ସଚିବାଳୟରେ ପହଞ୍ଚିବା ବେଳେକୁ ଦିନ ପାଖାପାଖି ଗୋଟାଏ ହୋଇ ଯାଇଥାଏ । ତିନିଥାକିଆ ମନ୍ତ୍ରୀ ଗଳି ଭିତରେ ପ୍ରଥମ ତାଲାରେ ପଶିବା ବେଳେ ଦେଖିଲି ଅନେକ ମନ୍ତ୍ରୀ ନାହାନ୍ତି । ସେମାନଙ୍କ କୋଠରୀ ସାମ୍ନାରେ ପଡ଼ିଥିବା ବେଞ୍ଚଗୁଡ଼ିକରେ କେତେକ ଲୋକ ଶୋଇ ଘୁଙ୍ଗୁଡ଼ି ମାରୁଥା'ନ୍ତି । ଉପରେ ଫ୍ୟାନ୍ ଘୁରୁଥାଏ ଜଣେ ଦି'ଜଣ ମନ୍ତ୍ରୀଙ୍କ କୋଠରୀ ଭିତରେ ପଶି ଦେଖିଲି ମନ୍ତ୍ରୀଙ୍କ ପିଅନ, କିରାଣି, ଏପରିକି ପି.ଏ. ଏୟାର କଣ୍ଡିସନ୍ ଖୋଲିଦେଇ ଆରାମରେ ଶୋଇଥା'ନ୍ତି। କେତେକ ପର୍ଦ୍ଦା ଖୋଲିଦେଇ ତାକୁ ପାରିଦେଇ ଶୋଇ ପଡ଼ିଥା'ନ୍ତି। ଏସବୁ ଦେଖିଲାପରେ

ମୋ ମନରେ ଏହାକୁ ନେଇ କିଛି ଫିଚର ଲେଖିବା ପାଇଁ ଇଚ୍ଛା ହେଲା । ମାତ୍ର ଏହି ଶୋଇବା-ବସିବା କଥାକୁ ନେଇ ତ ଫିଚର ପୂର୍ଣ୍ଣାଙ୍ଗ ହୋଇପାରିବ ନାହିଁ । ଆଉ କିଛି ପଏଣ୍ଟ ଖୋଜିଲି । ଦି'ତାଲା ମନ୍ତ୍ରୀଗଳିର ପ୍ରଥମ ଘର ଅବକାରୀ ରାଷ୍ଟ୍ରମନ୍ତ୍ରୀ ଜୟରାମ ପାଙ୍ଗି- ତା'ପର ବାଙ୍କ ବୁଲିଲା ବେଳକୁ କାଳିନ୍ଦି ବେହେରାଙ୍କ କୋଠରୀ । କାଳନ୍ଦି ବେହେରାଙ୍କ ନେମ୍‌ପ୍ଲେଟ୍‌ରେ ଲେଖାହୋଇଛି ପ୍ରଫେସର କାଳିନ୍ଦି ଚରଣ ବେହେରା । କାଳନ୍ଦିବାବୁ ଅଳ୍ପ କିଛିବର୍ଷ ଅଧ୍ୟାପକ ବା ଲେକ୍‌ଚରର ଥିଲେ । ମାତ୍ର ଲେକ୍‌ଚରର ଓ ପ୍ରଫେସର ମଧ୍ୟରେ ଯେଉଁ ଯୋଜନ ଯୋଜନ ବ୍ୟାପି ଦୂରତ୍ୱ ସେ କଥା କାଳିନ୍ଦୀ ଚରଣ ଭଲଭାବେ ଜାଣିଥିଲେ । ତେବେ ମନ୍ତ୍ରୀରୂପେ ନିଜ ଅହମିକା ପ୍ରଦର୍ଶନ ପାଇଁ ସେ ନିଜ ନାମ ପଛରେ ପ୍ରଫେସର ପଦବୀ ଲେଖିଦେଲେ । ଏ ସମସ୍ତ ବିଷୟ ବସ୍ତୁକୁ ନେଇ ମୁଁ 'ସଚିବାଳୟ ମନ୍ତ୍ରୀଗଳି' ଶୀରୋନାମାରେ ପାଞ୍ଚଟି ନିବନ୍ଧ ଲେଖି ପ୍ରଜାତନ୍ତ୍ରକୁ ପଠାଇଲି । ପ୍ରଜାତନ୍ତ୍ରରେ ଏହା କ୍ରମାନ୍ୱୟରେ ପ୍ରକାଶ ପାଇଲା । ପ୍ରଥମ ଭାଗ ନିବନ୍ଧ ପ୍ରକାଶ ପାଇବା ପରେ ମୋର ମନେ ଅଛି ଦୁଇ/ତିନିଜଣ ମନ୍ତ୍ରୀ ମୋତେ ଟେଲିଫୋନ୍ କରି କହିଲେ- ବରେନ୍ଦ୍ରବାବୁ ଆମକୁ ବଡ଼ଦାଣ୍ଡରେ ବସାଇ ନାହାନ୍ତି ତ ? ପାଞ୍ଚୋଟିଯାକ ନିବନ୍ଧ ସେତେବେଳେ ବେଶ୍ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା । ବହୁ ବର୍ଷ ପର୍ଯ୍ୟନ୍ତ ଅନେକ ପାଠକ ବନ୍ଧୁ ତାକୁ ମନେ ରଖିଥିଲେ ।

ବିଜୁବାବୁଙ୍କ ମନ୍ତ୍ରିମଣ୍ଡଳରେ ବିଜୟ ମହାପାତ୍ର ଆଉ ନଳିନୀ ମହାନ୍ତିଙ୍କୁ କେନ୍ଦ୍ର କରି ମନ୍ତ୍ରୀମାନଙ୍କ ମଧ୍ୟରେ ଗୋଷ୍ଠି ତିଆରି ହୋଇଥିଲା । ଗୋଟିଏ ଗୋଷ୍ଠିରେ ବିଜୟ ମହାପାତ୍ର, ନଳିନୀ ମହାନ୍ତି, ପ୍ରଫୁଲ ଘଡ଼େଇ ଥିବାବେଳେ ଅନ୍ୟ ଦଳରେ ରାମକୃଷ୍ଣ ପଟ୍ଟନାୟକ, ଜଗନ୍ନାଥ ମଲ୍ଲିକ, ଶରତ କର ଓ ବିଶ୍ୱଭୂଷଣ ହରିଚନ୍ଦନ ପ୍ରମୁଖ ଥିଲେ । ଆଉ ଗୋଟିଏ ଦଳରେ ହରିଶ୍ଚନ୍ଦ୍ର ବକ୍ସିପାତ୍ର, ଭାଗବତ ବେହେରା, ଦାମୋଦର ରାଉତ, ଚୈତନ୍ୟ ପ୍ରସାଦ ମାଝୀ, ବେଦ ପ୍ରକାଶ ଅଗ୍ରୱାଲା ଓ ଘାସିରାମ ମାଝି ପ୍ରମୁଖ ରହିଥିଲେ । ଏମାନେ ମଧ୍ୟ ବିଜୟ-ନଳିନୀ ବିରୋଧୀ ।

୧୯୯୨ ମସିହାରେ ବିଜୁ ପଟ୍ଟନାୟକ ତାଙ୍କ ମନ୍ତ୍ରିମଣ୍ଡଳର ସଂପ୍ରସାରଣ ଓ ବିଭାଗ ଅଦଳ ବଦଳ କଲେ । ଏହି ଅଦଳ ବଦଳରେ ବିଜୟ ମହାପାତ୍ର ଓ ନଳିନୀ ମହାନ୍ତିଙ୍କର କୌଣସି ବିଭାଗ ବଦଳି ନଥିବାବେଳେ ରାମକୃଷ୍ଣ, ଜଗନ୍ନାଥ, ଶରତ କର ଓ ବିଶ୍ୱଭୂଷଣଙ୍କ ବିଭାଗ ଅଦଳ ବଦଳ କରାଯାଇ ସେମାନଙ୍କୁ ଛୋଟଛୋଟ ବିଭାଗ ଦିଆଯାଇଥିଲା । ଫଳରେ ଅପମାନିତ ହୋଇ ଏ ଚାରିଜଣ ବିଜୁବାବୁଙ୍କ ନିକଟରେ ପ୍ରତିବାଦ କଲେ । ମାତ୍ର ବିଜୁବାବୁ ଶୁଣିଲେ ନାହିଁ । ଫଳ ହେଲା ଏ ଚାରିଜଣ ମନ୍ତ୍ରିମଣ୍ଡଳରୁ ଇସ୍ତଫା ଦେଲେ । ସେତେବେଳେ ବିଜୁବାବୁଙ୍କ ମନ୍ତ୍ରିମଣ୍ଡଳରେ ତାଙ୍କ ସମେତ ମୋଟ ୩୨ ଜଣ ମନ୍ତ୍ରୀ ଥିଲେ ।

ଗୋଟାଏ ମୁହୂର୍ତ୍ତର ଉତ୍ତେଜନାରେ ଏମାନେ ସମସ୍ତେ ସିନା ଇସ୍ତଫା ଦେଇଦେଲେ । ମାତ୍ର ପରମୁହୂର୍ତ୍ତରେ ସେମାନେ ନିଜର ଭୁଲ୍ ବୁଝି ପାରିଲେ । କାରଣ ଭାରତ ବର୍ଷରେ ବିନା କ୍ଷମତାରେ ରାଜନୀତିକ ବ୍ୟକ୍ତିମାନଙ୍କର କୌଣସି ମୂଲ୍ୟ ନାହିଁ । ତେଣୁ ମନ୍ତ୍ରିମଣ୍ଡଳରୁ ଇସ୍ତଫା ଦେଲାପରେ ଆଉ ସାଧାରଣରେ ଏମାନଙ୍କର ଆଣ୍ଟପଣ ରହିଲା ନାହିଁ । ଦିନେ ଶରତ କର ମୋ ସାଙ୍ଗରେ ସଚିବାଳୟରେ ଦେଖାହେବାବେଳେ କହିଲେ ବରେନ୍ଦ୍ରବାବୁ ଆପଣଙ୍କରତ ବୁଢ଼ା ସାଙ୍ଗରେ ଭଲ ପଡ଼େ । ଆପଣ ମୋ କଥା ଟିକେ ପଚାରୁ ନାହାନ୍ତି । ମୋ ପ୍ରତି ଏଭଳି ଅନ୍ୟାୟ କାହିଁକି କଲେ ? ପ୍ରକୃତରେ ଶରତବାବୁଙ୍କ ପ୍ରତି ଅନ୍ୟାୟ ହୋଇଥିଲା । ସେ ମୂଳରୁ ପାଇଥିଲେ ପର୍ଯ୍ୟଟନ, ସଂସ୍କୃତି ଓ ଲୋକ ସମ୍ପର୍କ ବିଭାଗ । ଅଦଳ ବଦଳରେ ତାଙ୍କ ହାତରୁ ଲୋକ ସମ୍ପର୍କ ଓ ପର୍ଯ୍ୟଟନ କାଢ଼ିନେଇ କେବଳ ସଂସ୍କୃତି ବିଭାଗ ରହିଲା ।

ମୋତେ ବିଜୁବାବୁ ଶ୍ରଦ୍ଧା କରୁଥିଲେ । ବିଜୁବାବୁଙ୍କ ସହ ମୋର ପରିଚୟ ୧୯୬୩ରୁ ତାଙ୍କ ପ୍ରଥମ ମୁଖ୍ୟମନ୍ତ୍ରୀତ୍ୱ ସମୟରୁ । ୧୯୭୧ ଏବଂ ୧୯୭୭ରେ ଏଇ ଶରତ କର ଓ ଶ୍ରୀମତୀ ମୀରା ଦାସଙ୍କ ଜରିଆରେ

ମୋତେ ତାଙ୍କ ଅଫିସକୁ ଡକାଇ ବାଙ୍କୀରେ ପ୍ରତିଦ୍ୱନ୍ଦ୍ୱିତା କରିବା ପାଇଁ କହିଥିଲେ । ମୁଁ ବିନିତ ଭାବେ ତାହା ଗ୍ରହଣ କରି ନଥିଲି । ୧୯୯୦ରେ ମୁଁ ନ୍ୟାସନାଲ୍ ୟୁନିୟନ ଅଫ୍ ଜର୍ଣ୍ଣାଲ୍‌ର ସର୍ବଭାରତୀୟ ସଭାପତି ହେବାବେଳେ ସେ ଦିଲ୍ଲୀରେ ଥିଲେ । ମୋର ଏ କୃତିତ୍ୱରେ ସେ ଖୁସି ହୋଇ ମୋତେ ଗୋଟିଏ ଦାମୀ ଜର୍ମାନ ଫାଉଣ୍ଟେନ୍ ପେନ୍ ମଣ୍ଟେବ୍ଲାଙ୍କ୍ ଉପହାର ଦେଇଥିଲେ ।

ଦିନେ ସୁବିଧା ଦେଖି ମୁଁ ବିଜୁବାବୁଙ୍କୁ ମୁଖ୍ୟମନ୍ତ୍ରୀ ଚେୟରରେ ଦେଖାକଲି । ସେତେବେଳେ ତାଙ୍କ ପାଖରେ ଚନ୍ଦ୍ରମୋହନ ସିଂହ ବସିଥିଲେ । ୧୯୯୨ ଡିସେମ୍ବରରେ ଜାତୀୟ ସାମ୍ବାଦିକ ୟୁନିୟନର ଜାତୀୟ କାର୍ଯ୍ୟକାରିଣୀ କମିଟି ବୈଠକ ଦିଲ୍ଲୀର ଇଣ୍ଡିଆ ଇଣ୍ଟରନ୍ୟାସନାଲ୍ ସେଣ୍ଟରରେ ଅନୁଷ୍ଠିତ ହେବାପାଇଁ ନିଷ୍ପତ୍ତି ହୋଇଥିଲା । ମୁଁ ସେହିବର୍ଷ ଅଗଷ୍ଟ ମାସରେ ବ୍ରସେଲ୍ସ(ବେଲ୍‌ଜିୟମ୍‌ର ରାଜଧାନୀ) ଠାରେ ଥିବା ଆନ୍ତର୍ଜାତିକ ସାମ୍ବାଦିକ ମହାସଙ୍ଘ(International Federation of Journalists)ର ସମନ୍ୱୟ କମିଟି ବୈଠକରେ ଯୋଗ ଦେଇଥିଲି । ମୋ ସାଙ୍ଗରେ ଏନ୍‌ୟୁଜେର ପୂର୍ବତନ ସଭାପତି ରାଜେନ୍ଦ୍ର ପ୍ରଭୁ, ଟାଇମ୍ସ ଅଫ୍ ଇଣ୍ଡିଆ ଲଣ୍ଡନ ପ୍ରତିନିଧି କେ.ଏନ୍. ମଲ୍ଲିକ, ଏନ୍.ୟୁ.ଜେ.ର ସେକ୍ରେଟାରୀ ଜେନେରାଲ ଅଚ୍ୟୁତ ନନ୍ଦନ ମିଶ୍ର(ଦୈନିକ ଜାଗରଣର ସମ୍ପାଦକ) ଏବଂ ଲକ୍ଷ୍ନୌର ହିନ୍ଦୁ ବ୍ୟୁରୋ ମୁଖ୍ୟ ପି.କେ. ରାୟ ଯାଇଥିଲେ । ଆମେ ବ୍ରସେଲ୍ସରେ ଚାରିଦିନ ରହିବା ପରେ ପ୍ୟାରିସ୍ ଆସିଥିଲୁ । ସେଠି ଦୁଇଦିନ ରହି ଲଣ୍ଡନରେ ନ୍ୟାସନାଲ୍ ୟୁନିୟନ ଅଫ୍ ଜର୍ଣ୍ଣାଲିଷ୍ଟ(ଇଂଲଣ୍ଡ)ର ନିମନ୍ତ୍ରଣ କ୍ରମେ ଲଣ୍ଡନ ଆସିଥିଲୁ । ମୋ ଜୀବନରେ ଏହା ପ୍ରଥମ ୟୁରୋପ ଭ୍ରମଣ ବା ସେଇ ଅର୍ଥରେ ବିଦେଶ ଭ୍ରମଣ । ଲଣ୍ଡନରେ ଆମେ ପାଞ୍ଚଦିନ ରହିଥିଲୁ । ଆମର ରହଣି ଓ ବୁଲାବୁଲି ଦାୟିତ୍ୱ ଇଂଲଣ୍ଡର ଏନ୍.ୟୁ.ଜେ. ସଂସ୍ଥା ବହନ କରିଥିଲେ । ଏଇ ରହଣି ସମୟରେ ଆମେ ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟ, ଲଣ୍ଡନର ପ୍ରସିଦ୍ଧ ଯାଦୁଘର, ବକିଙ୍ଗହାମ୍ ପ୍ୟାଲେସ୍ ଆଦି ବୁଲି ଦେଖିଥିଲୁ ।

ମୂଳ କଥାରୁ ମୁଁ ହୁଡ଼ିଗଲି । ଆଇ.ଏଫ୍.ଜେ. ମିଟିଂରୁ ଫେରିବାବେଳେ ଆମକୁ ଚମତ୍କାର ଏକ ମେମୋଣ୍ଟୋ ଉପହାର ଦିଆ ଯାଇଥିଲା । ଏହା ଏବେ ମଧ୍ୟ ମୋ ପାଖରେ ଏକ ସ୍ମୃତି ରୂପେ ରହିଛି । ସେଠାରେ ସେଇ ରୌପ୍ୟ ନିର୍ମିତ ମେମୋଣ୍ଟୋ ବ୍ରସେଲ୍ସର ବିଶିଷ୍ଟ ବ୍ୟକ୍ତିମାନଙ୍କୁ ଉପହାର ଦିଆଯାଇଥିଲା । ଆମେ ଫେରିବା ବେଳେ ଭାରତ ବର୍ଷରେ କିଛି ବିଶିଷ୍ଟ ବ୍ୟକ୍ତିଙ୍କୁ ଉପହାର ଦେବା ପାଇଁ ସେଥିରୁ ଡଜନେ ମେମୋଣ୍ଟୋ ଆଣିଥିଲୁ । ଦିଲ୍ଲୀରେ ପହଞ୍ଚି କାହାକୁ କାହାକୁ ଦିଆଯିବ ତା'ର ଏକ ତାଲିକା କରାଯାଇଥିଲା । ସେଥିରେ ମୁଁ ବିଜୁ ପଟ୍ଟନାୟକଙ୍କ ନାମ ଯୋଡ଼ିଥିଲି । ବିଜୁବାବୁଙ୍କ ନାଁ ଶୁଣି ସମସ୍ତେ ଏକ ସ୍ୱରରେ ରାଜି ହୋଇଥିଲେ । ଏହି ମେମୋଣ୍ଟୋ ଯାହାକୁ ଦିଆଯିବ ସେଥିରେ ତାଙ୍କ ନାଁ ଖୋଦେଇ କରି ଦିଆଯିବ । ତେଣୁ ନାଁ ଖୋଦେଇ ହୋଇ ଆସୁଆସୁ ନଭେମ୍ବର ହୋଇଗଲା । ବିଜୁବାବୁଙ୍କୁ ଯେଉଁ ମେମୋଣ୍ଟୋଟି ଦିଆଯିବ ତାହା ସମସ୍ତଙ୍କ ଉପସ୍ଥିତିରେ ଦିଲ୍ଲୀରେ ଦିଆଯିବା ପାଇଁ ସ୍ଥିର ହେଲା । ଦିଲ୍ଲୀରେ ଡିସେମ୍ବର ଜାତୀୟ କାର୍ଯ୍ୟକାରିଣୀ କମିଟି ଅଧିବେଶନକୁ ଉଦ୍‌ଘାଟନ କରିବା ପାଇଁ ବିଜୁ ପଟ୍ଟନାୟକଙ୍କୁ ନିମନ୍ତ୍ରଣ କରିବା ପାଇଁ ସ୍ଥିର ହେଲା ।

## -ବିଜୁ ପଟ୍ଟନାୟକ ସଂବର୍ଦ୍ଧନୀ-

ସେଦିନ ମୁଁ ବିଜୁବାବୁଙ୍କୁ ତାଙ୍କ ଚେୟରରେ ଭେଟି ଆମ ନିମନ୍ତ୍ରଣ ଦେଲି । ସଭାପତି ଭାବେ ମୁଁ ଏବଂ

ସାଧାରଣ ସମ୍ପାଦକ ରୂପେ ଅଚ୍ୟୁତ ନନ୍ଦନ ମିଶ୍ର ସେଥିରେ ଦସ୍ତଖତ କରିଥିଲୁ । ବିଜୁବାବୁ ନିମନ୍ତ୍ରଣ ପଢ଼ି କ'ଣ ଟିକେ ଭାବିଲେ । ତା'ପରେ କହିଲେ ଦେଖିବା । ମୁଁ କହିଲି ସାର୍ ଆପଣ ଆଉ ଦେଖିବା କଥା କହନ୍ତୁ ନାହିଁ । ଆମେ ସେଦିନ ଆପଣଙ୍କୁ ସମ୍ବର୍ଦ୍ଧନା ଦେବୁ । ଆଇଏଫ୍‌ଜେ(International Federation of Journalists)ର ସେକ୍ରେଟାରୀ ଜେନେରାଲ୍ ଏଡେନ୍ ହ୍ୱାଇଟ୍ ଆପଣଙ୍କୁ ଆଇଏଫ୍‌ଜେର ମେମୋଣ୍ଟୋ ଦେଇ ସମ୍ମାନିତ କରିବେ । ଆମେ ସମସ୍ତେ ବସି ଆପଣଙ୍କୁ ଏହି ସମ୍ମାନ ପାଇଁ ବାଛିଛୁ । ଆପଣ ଗଲେ ମୋର ଅନ୍ତତଃ ପ୍ରେଷ୍ଟିଜ୍ ବଢ଼ିବ । ବିଜୁବାବୁ ହସିଲେ- କହିଲେ ବ୍ଲଡି ଫୁଲ୍- ତୋ ପ୍ରେଷ୍ଟିଜ୍ ବଢ଼ାଇବା ପାଇଁ ମୋତେ ଡାକୁଛୁ । ମୁଁ କହିଲି- 'ମୋ ଭଳି ଜଣେ ଓଡ଼ିଆ ସାମ୍ବାଦିକ ଏଭଳି ଏକ ସମ୍ମାନଜନକ ଆସନକୁ ଯାଇଛି । ୧୯୯୦ ସେପ୍ଟେମ୍ବର ୧୧ ତାରିଖରେ ଆପଣ ମୋତେ ଦିଲ୍ଲୀ ଓଡ଼ିଶା ଭବନରେ ଆଶୀର୍ବାଦ କରିଥିଲେ । ଆପଣଙ୍କ ଉପହାର ମଣ୍ଟେକାର୍ଲୋ ଫାଉଣ୍ଟେନ ପେନ୍ ସେଟ୍ ମୁଁ ଯତ୍ନ ସହକାରେ ରଖିଛି । ବିଜୁବାବୁ ମୋ କଥା ଶୁଣି ସାମାନ୍ୟ ହସିଲେ । ତା'ପରେ ମୋ ନିମନ୍ତ୍ରଣ ପତ୍ର ଉପରେ ଲେଖିଦେଲେ Fix up programme.

ତାଙ୍କ ମୁଡ୍ ସେଦିନ ବେଶ୍ ଭଲ ଥିଲା । ବିଜୁବାବୁ ମୁଖ୍ୟତଃ ଜଣେ ମୁଡି ଲୋକ । ମୁଡ୍ ଖରାପ ଥିଲେ ସେ କିଛି ଶୁଣିବେ ନାହିଁ । ସେଇ ଅବକାଶରେ କଥା ପ୍ରସଙ୍ଗରେ କହିଲି- ସାର୍ ରାମକୃଷ୍ଣ, ଜଗନ୍ନାଥ ଆଉ ଶରତ କର ଆପଣଙ୍କ ସହ ୧୯୬୭/୬୮ରୁ ଅଛନ୍ତି । ୧୯୭୧ ସ୍ୱତନ୍ତ୍ର- ଉତ୍କଳ କଂଗ୍ରେସ ମିଳିତ ମନ୍ତ୍ରିମଣ୍ଡଳରେ ଆପଣ ସେମାନଙ୍କୁ ମନ୍ତ୍ରୀ କରିଥିଲେ । ଆପଣଙ୍କ ସହ ସେମାନେ ଅତି ନିଷ୍ଠାପର ଭାବେ ଅଛନ୍ତି । ଏବେ ସେମାନଙ୍କୁ ଏଭଳି ଅପମାନ ଦେଇ ବାହାର କରିଦେଲେ ? ବିଜୁବାବୁ କହିଲେ ମୁଁ ତ କାହାରିକୁ ବାହାର କରିନି । ସେମାନେ ନିଜ ପକ୍ଷରୁ ଇସ୍ତଫା ଦେଇଛନ୍ତି । ଏବେ ବି ସେମାନେ ଇସ୍ତଫା ଫେରାଇ ନେଇ ମନ୍ତ୍ରୀ ହୋଇ ରୁହନ୍ତୁ । ମୁଁ ତ ମନା କରୁନି । ଆପଣ ବିଜୟ-ନଳିନୀଙ୍କୁ ଅଧିକ ଗୁରୁତ୍ୱ ଦେଉଥିବା ବେଳେ ଏବଂ ତାଙ୍କର କୌଣସି ବିଭାଗ କାଟି ନଥିବାବେଳେ ଏ ଚାରିଜଣ (ରାମକୃଷ୍ଣ ପଟ୍ଟନାୟକ, ଜଗନ୍ନାଥ ମଲ୍ଲିକ, ବିଶ୍ୱଭୂଷଣ ହରିଚନ୍ଦନ ଓ ଶରତ କର)ଙ୍କୁ ପୁରା ନଣ୍ଡା କରିଦେଲେ । ବିଶେଷକରି ଶରତ କରଙ୍କ ଠାରୁ ଦୁଇଟି ଭଲ ବିଭାଗ କାଢ଼ିନେଇ ଛୋଟ ବିଭାଗ(ସଂସ୍କୃତି)ଟିଏ ଧରାଇ ଦେଲେ । ବିଜୁବାବୁ ମାନିଲେ । କହିଲେ ଶରତ ଆସୁ ତା' କଥା ମୁଁ ବୁଝିବି । ତେବେ ବିଜୟ-ନଳିନୀ ପ୍ରତି ଏମାନଙ୍କର ଏ ଆକ୍ରୋଶ କାହିଁକି ? ସେମାନେ ତ ଦଳ ଚଳାଉଛନ୍ତି । ଦଳ ତ ପାଣିରେ ଚାଲୁନି । ସେଥିପାଇଁ ଅର୍ଥ ଦରକାର । ବିଜୟ ନଳିନୀ ଦୁହେଁ କର୍ମୀମାନଙ୍କ କଥା ବୁଝିବାଠାରୁ ଆରମ୍ଭ କରି ଅନ୍ୟସବୁ କାର୍ଯ୍ୟକ୍ରମ ବୁଝୁଛନ୍ତି । ଏମାନେ ଦଳ ଚଳାଇବା ପାଇଁ କ'ଣ ସାହାଯ୍ୟ କରିଛନ୍ତି । କେତେଟା କର୍ମୀଙ୍କ କଥା ବୁଝନ୍ତି ? ଖାଲି କହିଦେଲେ ତ ହେବ ନାହିଁ । ଓ.କେ.ୟୁ ଟେଲ୍ ଦେମ୍ ଟୁ ମିଟ୍ ମି । ମୁଁ ଫେରି ଆସିଲି ।

ଦି' ଦିନ ପରେ ଶରତ ବାବୁଙ୍କ ସହ ଗୋଟିଏ ମିଟିଂରେ ଦେଖାହେଲା । ମୁଁ ତାଙ୍କୁ ସବୁକଥା କହିଲି । ସେ କହିଲେ ବୁଢ଼ା ମାନିଲା ମୋ ପ୍ରତି ଅନ୍ୟାୟ କରିଛି ବୋଲି ? ମୁଁ କହିଲି ଆପଣ ଯାଇ ଦେଖା କରୁନାହାନ୍ତି । ଭାବୁଛି କିଛି ଫଳ ହେବ । ଶରତବାବୁ କହିଲେ ଆପଣ ଏକଥା ଟିକେ ରାମକୃଷ୍ଣ ହେରିକାଙ୍କୁ କହୁନାହାନ୍ତି । ମୁଁ କହିଲି ଶରତବାବୁ ମୋର ଏହା କାମ ନୁହେଁ । କେବଳ ଆପଣ କହିଥିଲେ ବୋଲି ମୁଁ ଯାଇ ବୁଢ଼ାକୁ ପଚାରିଲି । ଏବେ ଆପଣ ବିଚାର କରନ୍ତୁ କ'ଣ କରିବେ ? ଶରତବାବୁ କହିଲେ ମୁଁ ତ ଏକା ଯିବିନି । ଅନ୍ୟମାନେ ରାଜି ନହେଲେ ମୁଁ ଏକା ଯିବାଟା ବନ୍ଧୁଦ୍ରୋହୀ କାମ ହେବ ।

ମୁଁ କିଛି କହିଲି ନାହିଁ । ସେ ମୋତେ ଚୁପ୍‌ଚୁପ୍ କରି କହିଲେ ଦେଖନ୍ତୁ ଆଉ କାହାରିକୁ କହିବେ ନାହିଁ । ଖୁବ୍‌ଶୀଘ୍ର ବିଜୟ-ନଳିନୀଙ୍କ ପ୍ରାଧାନ୍ୟ ବିରୁଦ୍ଧରେ ବଜ୍ରିପାତ୍ର, ଭାଗବତ ବେହେରା, ଚୈତନ୍ୟ ପ୍ରସାଦ ମାଝୀ ଓ ଦାମ ରାଉତ ଇସ୍ତଫା ଦେଉଛନ୍ତି । ତେଣୁ ମୁଁ ଏକା ଯିବାଟା ଭଲ ହେବନାହିଁ ।

ଶରତ କରଙ୍କ କଥା ଶୁଣି ମୁଁ ମନେମନେ ହସିଲି । ମନେମନେ ଭାବିଲି ହେ ବନ୍ଧୁ ବୋକାଙ୍କ ସ୍ୱର୍ଗରେ ଆଉ କେତେଦିନ ରହିବ । ଥରେ ସୁଯୋଗକୁ ହାତଛଡ଼ା କଲେ ଆଉ ପାଇବା ମୁସ୍କିଲ୍ । ଯେଉଁ ଚାରି ଜଣଙ୍କ ନାଁ ଶରତବାବୁ କହିଲେ ସେମାନଙ୍କ ମଧ୍ୟରେ ହରିଶ୍ଚନ୍ଦ୍ର ବକ୍ସିପାତ୍ରଙ୍କ ସହ ମୋର ଖୁବ୍ ହୃଦ୍ୟତା ଥିଲା । କାରଣ ୧୯୫୬ ସୀମା ଆନ୍ଦୋଳନରୁ ବାଙ୍କୀ ସ୍କୁଲର ଏକାଦଶ ଶ୍ରେଣୀ ଛାତ୍ର ରୂପେ (ବାଙ୍କୀରେ ସେତେବେଳେ କଲେଜ ନଥିଲା) ନେତୃତ୍ୱ ନେଇଥିଲି । ବକ୍ସିପାତ୍ର ଥିଲେ ରେଭେନ୍ସା କଲେଜ ଛାତ୍ର ୟୁନିୟନ୍ ଓ ଷ୍ଟୁଡେଣ୍ଟ ଫେଡ଼େରେସନର ସଭାପତି ।

## -ବିଜୁବାବୁଙ୍କ ମନ୍ତ୍ରିମଣ୍ଡଳ-

ସେ ଥିଲେ ସମଗ୍ର ରାଜ୍ୟର ଛାତ୍ରମାନଙ୍କର ଅବିସମ୍ବାଦିତ ନେତା । ମୁଁ ବାଙ୍କୀରୁ ଆସି ତାଙ୍କୁ ଦେଖା କରେ ଓ ତାଙ୍କ ନିର୍ଦ୍ଦେଶରେ ବାଙ୍କୀରେ ଆନ୍ଦୋଳନ ଚଳାଏ । ସେଇଦିନ ଠାରୁ ତାଙ୍କ ସହ ମୋର ଘନିଷ୍ଠ ସମ୍ପର୍କ ରହିଥିଲା । ମତେ ସେ ସାନଭାଇ ଭଳି ଶ୍ରଦ୍ଧା କରୁଥିଲେ । ଆଉ ଜଣେ ହେଲେ ଭାଗବତ ବେହେରା । ୧୯୬୪ ଛାତ୍ର ଆନ୍ଦୋଳନର ଯେଉଁ ଦୁଇଜଣ ମୁଖ୍ୟ ନେତା ଥିଲେ ସେମାନେ ହେଲେ ଭାଗବତ ବେହେରା ଓ ତ୍ରିଲୋଚନ କାନୁନ୍‌ଗୋ । ମୋର ଏ ଦୁହେଁ ସମସାମୟିକ । ମୁଁ ୧୯୬୪ରେ ମାତୃଭୂମି ଖବର କାଗଜର କଟକ ଷ୍ଟାଫ୍ ରିପୋର୍ଟର । ଏ ଦୁହିଁଙ୍କ ସହ ମୋର ଅତ୍ୟନ୍ତ ଘନିଷ୍ଠତା ଥିଲା ।

ଶରତ କରଙ୍କ ଠାରୁ ଶୁଣିବା ପରେ ମୁଁ ପ୍ରଥମେ ବକ୍ସିବାବୁଙ୍କୁ ପଚାରିଲି । ସେ ମୋତେ ପଚାରିଲେ ଶରତ କ'ଣ କହୁଥିଲେ ? ମୁଁ କହିଲି ଆପଣ ଭାରି ଅସନ୍ତୁଷ୍ଟ । ଇସ୍ତଫା ଦେବାକଥା ବିଚାରୁଛନ୍ତି । ସେ ପ୍ରଶ୍ନ କଲେ ତମେ କ'ଣ କହୁଛ ? ମୁଁ କହିଲି ଆପଣ କ'ଣ ମୋ କଥାରେ ନିଷ୍ପତ୍ତି ନେବେ ? ସେ କହିଲେ ତମେ କହୁନ ତମ ମତ କ'ଣ ? ମୁଁ କହିଲି ଏଥିରେ ମୁଁ କିଛି କହିପାରିବି ନାହିଁ । ମୁଁ ଯାଉଛି । ସେ ହସିଲେ ।

୧୯୯୨ ଡିସେମ୍ବର ୧୦ ତାରିଖରେ ଦିଲ୍ଲୀରେ ଜାତୀୟ କାର୍ଯ୍ୟକାରିଣୀର ବୈଠକ ବସିବା ପାଇଁ ସ୍ଥିର ହେଲା । ଏହା ଏକ ସ୍ୱତନ୍ତ୍ର ବୈଠକ । ଏହି ବୈଠକରେ ବିଜୁ ପଟ୍ଟନାୟକଙ୍କୁ ସମ୍ମାନିତ କରିବା ପାଇଁ ସ୍ଥିର ହେଲା । ଏହି ବୈଠକକୁ ଜାତୀୟ କାର୍ଯ୍ୟକାରିଣୀ ସଦସ୍ୟ ବାଦ୍ ଦିଲ୍ଲୀର ବହୁ ବିଶିଷ୍ଟ ବ୍ୟକ୍ତି ଓ ରାଜନୀତିକ ବ୍ୟକ୍ତିଙ୍କୁ ଡକାଯାଇଥିଲା । ମୋର ସୌଭାଗ୍ୟ ସେ ସଭାରେ ମୁଁ ପୌରହିତ୍ୟ କରିଥିଲି । ବିଜୁବାବୁଙ୍କୁ ସମ୍ମାନ ଦେବାର ଏ ବିରଳ ମୁହୂର୍ତ୍ତରେ ମୁଁ ଏନ୍.ୟୁ.ଜେ.(ଆଇ)ର ସଭାପତି ରୂପେ ପରବର୍ତ୍ତୀ ସଂଖ୍ୟା ଇଙ୍କ୍‌ୱାର୍ଲ୍ଡରେ ଛବି ସହ ପ୍ରକାଶ ପାଇଥିଲା । ଏହି ସଭାରେ ଆନ୍ତର୍ଜାତିକ ସାମ୍ବାଦିକ ସଙ୍ଘର ସେକ୍ରେଟାରୀ ଜେନେରାଲ ଏଡେନ୍ ହ୍ୱାଇଟ୍ ଆଇଏଫ୍‌ଜେର ସ୍ୱତନ୍ତ୍ର ମେମୋଣ୍ଟ ବିଜୁବାବୁଙ୍କ ହାତରେ ଅର୍ପଣ କଲେ । ଏଥିରେ କୁହାଯାଇଥିଲା ଯେ ଭାରତୀୟ ରାଜନୀତିରେ ବିଜୁବାବୁ ଏକ ସ୍ୱତନ୍ତ୍ର ସ୍ଥାନର ଅଧିକାରୀ । ବିଜୁବାବୁ ସମ୍ବର୍ଦ୍ଧନାର ଉତ୍ତରରେ ଭାରତୀୟ ସାମ୍ବାଦିକତା ଏବଂ ସମ୍ବାଦପତ୍ର

ସମ୍ପର୍କରେ ତାଙ୍କ ମତାମତ ଦେଇ ସମ୍ବାଦପତ୍ର ଓ ସାମ୍ବାଦିକମାନଙ୍କର ସ୍ୱାଧୀନତା ଅକ୍ଷୁର୍ଣ୍ଣ ରହିବା ଆବଶ୍ୟକ ବୋଲି କହିଥିଲେ ।

ଏବେ ରାଜ୍ୟ ପର୍ବକୁ ଆସିବା । ଶରତ କର, ରାମକୃଷ୍ଣ ପଟ୍ଟନାୟକ, ଜଗନ୍ନାଥ ମଲ୍ଲିକ ଓ ବିଶ୍ୱଭୂଷଣ ହରିଚନ୍ଦନ ଇସ୍ତଫା ଦେବା ପରେ ମୋତେ ଶରତ କର ଯାହା କହିଥିଲେ ଯେ ବିଜୟ-ନଳିନୀଙ୍କ ପ୍ରାଧାନ୍ୟ ବିରୁଦ୍ଧରେ ଆହୁରି କିଛି ମନ୍ତ୍ରୀ ଇସ୍ତଫା ଦେବେ ବୋଲି ତାହା ଘଟିଲା ନାହିଁ । ମୁଁ ଜାଣିଥିଲି ଏହା ମଧ ହେବ ନାହିଁ । କାରଣ ମନ୍ତ୍ରୀତ୍ୱ ଛାଡ଼ି ବାରଦ୍ୱାର ଶୁଖିପିଣ୍ଡା ହେବାକୁ କେହି ଚାହିଁବେ ନାହିଁ ।

ଅନ୍ୟପକ୍ଷରେ ବିଶ୍ୱଭୂଷଣ ହରିଚନ୍ଦନ ଜନତା ଦଳ ଛାଡ଼ି ସମାଜବାଦୀ ପାର୍ଟିଏବଂ ପରେ ଭାରତୀୟ ଜନତା ଦଳରେ ଯୋଗ ଦେଲେ । ମାତ୍ର ଶରତ କର, ଜଗନ୍ନାଥ ମଲ୍ଲିକ, ରାମକୃଷ୍ଣ ପଟ୍ଟନାୟକ ଦଳରେ ରହିଲେ ।

ମୁଁ ଏନ୍‌ୟୁଜେ(ଆଇ)ର ସଭାପତି ରୂପେ ୧୯୯୦ରୁ ୧୯୯୩ ସେପ୍ଟେମ୍ବର ମାସ ପର୍ଯ୍ୟନ୍ତ ରହିଥିଲି । ପ୍ରକୃତ ପକ୍ଷେ ମୁଁ ୧୯୯୨ ଅକ୍ଟୋବରରେ ଛାଡ଼ିବା କଥା । ମାତ୍ର ୧୯୯୨ରେ ନିର୍ବାଚନ ହୋଇ ନପାରିବାରୁ ମୁଁ ସଭାପତି ରୂପେ ଆମ ସମ୍ବିଧାନ ଅନୁସାରେ ପରବର୍ତ୍ତିନିର୍ବାଚନ ପର୍ଯ୍ୟନ୍ତ କାର୍ଯ୍ୟ କଲି । ୧୯୯୩ ସେପ୍ଟେମ୍ବର ମାସରେ ନିର୍ବାଚନରେ 'ଦି ହିନ୍ଦୁ'ର ଦିଲ୍ଲୀ ବ୍ୟୁରୋ ମୁଖ୍ୟ ନିତିଶ ଚକ୍ରବର୍ତ୍ତିନୂଆ ସଭାପତି ରୂପେ କାର୍ଯ୍ୟଭାର ଗ୍ରହଣ କଲେ ।

୧୯୯୩ ମସିହା ମୋ ପାଇଁ ଏକ ମଙ୍ଗଳମୟ ବର୍ଷ ଥିଲା । ୧୯୯୩ରେ ମୁଁ ଅନୁବାଦ ସାହିତ୍ୟ ପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଥିଲି । ଏହି ଘୋଷଣା କରାଯାଇଥିଲା ୧୯୯୪ ଜାନୁଆରୀ ୩ ତାରିଖରେ । ମାତ୍ର ପ୍ରଥମେ ମୁଁ ସେ ଖବର ପାଇପାରି ନଥିଲି । ସେ ଦିନ ସନ୍ଧ୍ୟାରେ ଭୁବନେଶ୍ୱରରେ ପାୱାର କଟ ପ୍ରାୟ ତିନି ଘଣ୍ଟା ଧରି ହୋଇଥିଲା । ତେଣୁ ପି.ଟି.ଆଇ. ଓ ୟୁ.ଏନ୍.ଆଇ. ସମ୍ବାଦ ଏଜେନ୍ସିର ଟେଲି ପ୍ରିଣ୍ଟର ବନ୍ଦ ଥିଲା । ମୁଁ ନିଜେ ମଧ କିଛି ଜାଣି ନଥିଲି । ସନ୍ଧ୍ୟାରେ ସ୍ୱସ୍ତି ହୋଟେଲ୍‌ରେ ଗୋଟିଏ ମିଟିଂରେ ଯୋଗ ଦେଇ ପ୍ରାୟ ରାତି ସାଢ଼େ ଆଠଟା ବେଳକୁ ବୁକ୍‌ଲ୍ୟାଣ୍ଡ୍ ଇଣ୍ଟରନ୍ୟାସନାଲ୍ ବହି ଦୋକାନକୁ ଆସିଥିଲି । ବୁକ୍‌ଲ୍ୟାଣ୍ଡ ବହି ଦୋକାନ ଅଶୋକ ନଗର ବାଟା ଜୋତା ଦୋକାନ ପାଖରେ । ଆଶୀଷ ମିତ୍ର ଏହାର ମାଲିକ । ମୁଁ ପ୍ରାୟ ପ୍ରତିଦିନ ବୁକ୍‌ଲ୍ୟାଣ୍ଡକୁ ଯାଉଥିଲି । କାରଣ ଆଶୀଷ ବାବୁ ଟେଲିଗ୍ରାଫ୍ ଇଂରାଜୀ ଖବର କାଗଜ, ଆନନ୍ଦ ବଜାର ପତ୍ରିକା, ଆଜ୍‌କାଲ ଓ ବର୍ତ୍ତମାନ ବଙ୍ଗଳା ଖବର କାଗଜର ଏଜେନ୍ସି ନେଇଥିଲେ । ପ୍ରତିଦିନ ସନ୍ଧ୍ୟାରେ ଏସବୁ କାଗଜ ପଢ଼ିବା ପାଇଁ ମୁଁ ତାଙ୍କ ଦୋକାନକୁ ଯାଉଥିଲି । ସେଦିନ(ତା୦୩.୦୧.୧୯୯୪) ବୁକ୍‌ଲ୍ୟାଣ୍ଡରେ ପହଞ୍ଚିବା ମାତ୍ରେ ଆଶୀଷ ବାବୁ ମତେ କହିଲେ ଆପଣଙ୍କୁ ଘରୁ ଦି/ତିନିଥର ଫୋନ୍ ଆସିଲାଣି । ଜଲ୍‌ଦି ଫୋନ୍ କରନ୍ତୁ । ମୁଁ ଆଶିଷ ବାବୁଙ୍କ ଫୋନ୍‌ରୁ ଘରକୁ ଫୋନ୍ କଲି । ମୋ ପତ୍ନୀ ସ୍ନେହଲତା ସେପଟେ ଫୋନ୍ ଧରି କହିଲେ ଆଜ୍‌କାଲ୍‌ରୁ ଦି'ଥର ଫୋନ୍ ଆସିଥିଲା, ତମେ ସାଙ୍ଗେସାଙ୍ଗେ ଫୋନ୍ କର । ତମେ କେନ୍ଦ୍ର ସାହିତ୍ୟ ଏକାଡେମି ଅନୁବାଦ ପୁରସ୍କାର ପାଇଛ ବୋଲି ସେମାନେ କହିଲେ । ମୁଁ ପ୍ରଥମେ ନିଜକୁ ବିଶ୍ୱାସ କରିପାରିଲି ନାହିଁ । ତା'ପରେ ସେଇଠୁ ଆଶୀଷ ବାବୁଙ୍କ ଫୋନ୍‌ରୁ ଆଇ୍‌କାଲ୍‌କୁ ଫୋନ୍ କଲି । ସେପଟୁ ଫୋନ୍ ଅପରେଟର୍ ମୋ ଗଳା ଶୁଣି କହିଲେ ଆପଣଙ୍କୁ ବାରମ୍ବାର ଖୋଜା ପଡ଼ିଛି । କେତେ ନମ୍ବରରେ ଅଛନ୍ତି କୁହନ୍ତୁ । ମୁଁ ସାଙ୍ଗେସାଙ୍ଗେ କନେକ୍ଟ କରିଦେବି । ମୁଁ ଆଶୀଷ ବାବୁଙ୍କ ନମ୍ବର କହି ଫୋନ୍ ଛାଡ଼ିଦେଲି । ସାଙ୍ଗେସାଙ୍ଗେ ଆଜକାଲ୍‌ରୁ ଫୋନ୍ ଆସିଲା । ସେପଟୁ ଡେସ୍କରେ ଥିବା ବନ୍ଧୁ କହିଲେ ଦାଦା- କଂଗ୍ରାଚୁଲେସନ୍ । ଆପଣ 'ଶାମ୍ବ' ପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପାଇଛନ୍ତି । ଆପଣଙ୍କ ରିଆକ୍ସନଟା ଡାକି ଦିଅନ୍ତୁ । ମୁଁ କହିଲି ତମେ କେଉଁଠୁ ଏ ଖବର ପାଇଲ ? ସେ ଉତ୍ତର ଦେଲେ ଦାଦା- ଆପଣ କ'ଣ ଜାଣି ନାହାନ୍ତି ? ପି.ଟି.ଆଇ./ୟୁ.ଏନ୍.ଆଇ. ଆମ ଦିଲ୍ଲୀ

ପ୍ରତିନିଧି ସମସ୍ତେ ଏହା ଦେଇ ସାରିଲେଣି । ଜଲଦି ଜଲଦି ଆପଣଙ୍କ ରିଆକ୍ସନଟା ଡାକି ଦିଅନ୍ତୁ, ମୁଁ ଲେଖିନେବି । ମୋର ସେତେବେଳକୁ ଏକ ପ୍ରକାର ସମ୍ମୋହିତ ଅବସ୍ଥା । ତେବେ ସେଇଥିରେ ମୁଁ ମୋର ପ୍ରତିକ୍ରିୟା ଡାକି ଦେଲି । ପରଦିନ ଆଜକାଲ୍ ବଙ୍ଗଳା ଖବର କାଗଜର ପ୍ରଥମ ପୃଷ୍ଠାରେ ପାଞ୍ଚ କଲମ ହେଡିଂରେ ପ୍ରକାଶ ପାଇଲା 'ଆକାଦେମି ପେଲେନ୍ ଶ୍ୟାମଳ ଗଙ୍ଗୋପାଧ୍ୟାୟ' ଅନୁବାଦେ ମାନବେନ୍ଦ୍ର ବନ୍ଦୋପାଧ୍ୟାୟ, ବରେନ୍ଦ୍ରକୃଷ୍ଣ ଧଳ ପ୍ରମୁଖ' ।

ଭୁବନେଶ୍ୱରରେ ସେଦିନ କେହି ଜାଣି ନଥିଲେ । ପରଦିନ ସକାଳେ ସବୁ ଖବର କାଗଜରେ ଏହା ପ୍ରକାଶ ପାଇଲା । ସେ ବର୍ଷ ଓଡ଼ିଆ ଭାଷାରେ ସାହିତ୍ୟ ଆକାଦେମି ପୁରସ୍କାର ମୌଳିକ ପୁସ୍ତକ ପାଇଁ ପାଇଥିଲେ ଶାନ୍ତନୁ କୁମାର ଆଚାର୍ଯ୍ୟ । ପରଦିନ (ତା୦୪.୦୧.୧୯୯୪) ମୁଁ ସାହିତ୍ୟ ଏକାଡେମି ସେକ୍ରେଟାରୀ ପ୍ରଫେସର ଇନ୍ଦ୍ରନାଥ ଚୌଧୁରୀଙ୍କ ପାଖରୁ ଏକ ଟେଲିଗ୍ରାମ ପାଇଲି । ଛୋଟ ଏକ ଲାଇନ୍‌ର ଟେଲିଗ୍ରାମ- Gets Sahitya Akademi Translation prize- Congratulations letter fallows. Indranath Choudhwry

ଦି' ଦିନ ପରେ ଇନ୍ଦ୍ରନାଥ ଚୌଧୁରୀଙ୍କ ଚିଠି ପାଇଲି । (ଆଜକାଲ୍‌ରେ ପ୍ରକାଶିତ ସମ୍ବାଦର ହେଡିଂ ଏବଂ ଇନ୍ଦ୍ରନାଥ ଚୌଧୁରୀଙ୍କ ପତ୍ରର କପି ଏଠାରେ ସନ୍ନିବେଶିତ କରାଗଲା) । ବୁକ୍‌ଲ୍ୟାଣ୍ଡ ଇଣ୍ଟରନ୍ୟାସ୍‌ନାଲ୍‌ର ମାଲିକ ଆଶୀଷ ମିତ୍ରଙ୍କୁ ମୁଁ ଏ ଖବର ଦେଲି । 'ଶାମ୍ବ' ଓଡ଼ିଆ ଅନୁବାଦର ପ୍ରକାଶକ ଥିଲେ ଆଶୀଷ ବାବୁ । ସେ ମୋ କଥା ଶୁଣି କହିଲେ ମୁଁ ମନେମନେ ଆଗରୁ ଭାବିଥିଲି 'ଶାମ୍ବ' ପୁରସ୍କାର ପାଇବ ବୋଲି । ମୁଁ ଆଶ୍ଚର୍ଯ୍ୟ ହୋଇ ତାଙ୍କ ମୁହଁକୁ ଚାହିଁଲି । ସେ କହିଲେ ସାହିତ୍ୟ ଏକାଡେମି ଶାମ୍ବର ପାଞ୍ଚ କପି ଗତବର୍ଷ ଅଗଷ୍ଟ ମାସରେ ମଗାଇ ଥିଲେ । ମୁଁ ଆପଣଙ୍କୁ କହିବାକୁ ଭୁଲି ଯାଇଛି । ସେ ସାଙ୍ଗେ ସାଙ୍ଗେ ମିଠା ମଗାଇଲେ ।

ବଙ୍ଗଳା ଶାମ୍ବର ମୂଳ ଲେଖକ ହେଉଛନ୍ତି ସମରେଶ ବସୁ । କାଳକୂଟ ଛଦ୍ମ ନାମରେ ସେ ଏହା ଲେଖିଥିଲେ । ୧୯୮୦ ମସିହାରେ ଏହା ବଙ୍ଗଳା ଭାଷାରେ ମୂଳ ସାହିତ୍ୟ ଏକାଡେମୀ ପୁରସ୍କାର ପାଇଥିଲା । ଓଡ଼ିଆ ଅନୁବାଦ ପ୍ରକାଶ ପାଇଥିଲା ୧୯୮୮ରେ । ସୌଭାଗ୍ୟ ବଶତଃ ସେହିବର୍ଷ ଫେବୃଆରୀ ମାସ ୨୭ ତାରିଖରୁ ଆରମ୍ଭ ହେଉଥିବା ଭୁବନେଶ୍ୱର ପୁସ୍ତକ ମେଳାରେ ସମରେଶ ବସୁ ମୁଖ୍ୟ ଅତିଥି ରୂପେ ଯୋଗ ଦେଇଥିଲେ । ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଉଦ୍‌ଘାଟକ ରୂପେ ଯୋଗ ଦେଇଥିଲେ । ସେ ବର୍ଷ ମୋର ଦୁଇଟି ପୁସ୍ତକ ପ୍ରକାଶ ପାଇଥିଲା । ବୁକ୍ସ ଏଣ୍ଡ ବୁକ୍ସ ପ୍ରକାଶ କରିଥିଲେ ମୋର କ୍ଷୁଦ୍ର ଗଳ୍ପ ସଂକଳନ କ୍ଲାନ୍ତ ନକ୍ଷତ୍ର ଏବଂ ବୁକ୍‌ଲ୍ୟାଣ୍ଡ ଇଣ୍ଟର ନ୍ୟାସନାଲ୍ ପ୍ରକାଶ କରିଥିଲେ ଓଡ଼ିଆ ଅନୁବାଦ ଶାମ୍ବ । ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ ଶାମ୍ବ ଏବଂ ସମରେଶ ବାବୁ କ୍ଲାନ୍ତ ନକ୍ଷତ୍ର ଉନ୍ମୋଚନ କରିଥିଲେ ।

## -କେନ୍ଦ୍ର ସାହିତ୍ୟ ଏକାଡେମୀ ଅନୁବାଦ ପୁରସ୍କାର-

ଶାମ୍ବ ଅନୁବାଦ ପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପାଇବା ବେଳକୁ ସମରେଶ ବସୁ ଆଉ ନଥିଲେ । ବସ୍ତୁତଃ ଶାମ୍ବର ଅନୁବାଦ ବହି ଆକାରରେ ଦେଖିବାର ଦଶଦିନ ପରେ ସେ ସ୍ୱର୍ଗାରୋହଣ କଲେ । ଭାରତବର୍ଷରେ ଖୁବ୍ କମ୍ ଲେଖକ ଅଛନ୍ତି ଯେଉଁମାନଙ୍କ ମୂଳ ରଚନା ଓ ଅନୁବାଦ ଉଭୟ କେନ୍ଦ୍ର ସାହିତ୍ୟ ଏକାଡେମି ପୁରସ୍କାର ଲାଭ କରିଛି ।

କେନ୍ଦ୍ର ସାହିତ୍ୟ ଏକାଡେମୀ ଅନୁବାଦ ପାଇଁ ମୋତେ ପୁରସ୍କାର ଦେଇଥିବା ପ୍ରଚାର ହୋଇଯିବା ପରେ ଓଡ଼ିଶାର ବିଭିନ୍ନ ସ୍ଥାନରୁ ମୁଁ ବହୁ ଅଭିନନ୍ଦନ ଟେଲିଫୋନ୍ ଓ ପତ୍ର ପାଇଲି । ବିଭିନ୍ନ ସ୍ଥାନରେ ବହୁ ବନ୍ଧୁ ମୋତେ

ସମ୍ବର୍ଦ୍ଧନା ଦେବା ପାଇଁ ନିମନ୍ତ୍ରଣ କଲେ । ସେହି କ୍ରମରେ ମୁଁ ପ୍ରାୟ ପଚାଶରୁ ଅଧିକ ସମ୍ବର୍ଦ୍ଧନା ସଭାରେ ଯୋଗ ଦେଇଥିଲି । ଏଗୁଡ଼ିକ ମଧ୍ୟରେ ଭୁବନେଶ୍ୱରେ ପନ୍ଦରଟି ସଂସ୍ଥା ମୋତେ ଏବଂ ଶାନ୍ତନୁ ଆଚାର୍ଯ୍ୟଙ୍କୁ ସମ୍ବର୍ଦ୍ଧନା ଦେଇଥିଲେ । ଭୁବନେଶ୍ୱର ବାହାରେ ପାରାଦ୍ୱୀପ ପୋର୍ଟ ଟ୍ରଷ୍ଟ ଶ୍ରମିକ ୟୁନିୟନ, ପ୍ରେସ୍ କ୍ଲବ୍, ବାଲେଶ୍ୱର ଜିଲ୍ଲା ସାମ୍ବାଦିକ ୟୁନିୟନ, କଟକ ପ୍ରଜାତନ୍ତ୍ର ପ୍ରଚାର ସମିତି, ବାଙ୍କୀ ନାଗରିକ ସଂଘ, ପୁରୀ ସାମନ୍ତ ଚନ୍ଦ୍ରଶେଖର କଲେଜ ସାହିତ୍ୟ ସଂସଦ, କେନ୍ଦ୍ରାପଡ଼ା କଲେଜ, ଯାଜପୁର ଏନ୍‌ସି କଲେଜରେ ବିରଜା ବକ୍ତୃତାମାଳାର ମୁଖ୍ୟ ଅତିଥି ରୂପେ, କଲିକତାରେ ମୋର ବନ୍ଧୁ ବିଖ୍ୟାତ ଦନ୍ତ ଚିକିତ୍ସକ ଡଃ ବାରିନ୍ ରାୟ ତାଙ୍କ ତିନିନମ୍ବର ୱାଟରଲୁ ଷ୍ଟିଟ୍ ଘରେ, ପଶ୍ଚିମବଙ୍ଗ ୟୁନିୟନ୍ ଅଫ୍ ଜର୍ଣ୍ଣାଲିଷ୍ଟ କଲିକତା ପ୍ରେସ୍ କ୍ଲବ୍ ଠାରେ ଏବଂ ନ୍ୟାସ୍‌ନାଲ୍ ୟୁନିୟନ୍ ଅଫ୍ ଜର୍ଣ୍ଣାଲିଷ୍ଟ(ଇଣ୍ଡିଆ) ପକ୍ଷରୁ ଦିଲ୍ଲୀ ୭ନମ୍ବର ଯନ୍ତର ମନ୍ତର ରୋଡ଼ରେ ଥିବା ଅଫିସ୍ ହଲ୍‌ରେ, ଗଞ୍ଜାମର ଛତ୍ରପୁର ଠାରେ ଅନ୍ତର୍ଯ୍ୟାମୀ ପତି ଶର୍ମା ସାହିତ୍ୟ ପରିଷଦ ପକ୍ଷରୁ ମୋତେ ସମ୍ବର୍ଦ୍ଧନା ଦେଇଥିଲେ । ଆଉ କେତେକ ଅନୁଷ୍ଠାନ ନାଁ ହଠାତ୍ ମନେପଡୁ ନାହିଁ।

ନ୍ୟାସନାଲ୍ ୟୁନିୟନ୍ ଅଫ୍ ଜର୍ଣ୍ଣାଲିଷ୍ଟ(ଇଣ୍ଡିଆ)ର ମୁଖପାତ୍ର ଇଙ୍କ୍‌ୱାର୍ଲ୍ଡ ପତ୍ରିକାର ଶେଷ ପୃଷ୍ଠାରେ ଅଧ ପୃଷ୍ଠା ବ୍ୟାପୀ ମୋର ପୁରସ୍କାର ପ୍ରାପ୍ତି ଖବର ୧୯୯୪ ସେପ୍ଟେମ୍ବର ୧ ତାରିଖ ସଂଖ୍ୟାରେ ପ୍ରକାଶ ପାଇଥିଲା । ପଶ୍ଚିମବଙ୍ଗ ୟୁନିୟନ ଅଫ୍ ଜର୍ଣ୍ଣାଲିଷ୍ଟ ପକ୍ଷରୁ ମୋର ପୁରସ୍କାର ପ୍ରାପ୍ତିରେ ଆନନ୍ଦ ପ୍ରକାଶ କରି ଏକ ପ୍ରସ୍ତାବ ଗୃହୀତ କରାଯାଇଥିଲା ।

ପୁରସ୍କାର ଘୋଷଣା ହୋଇ ସାରିବା ପରେ କେବେ ପୁରସ୍କାର ପ୍ରଦାନ କରାଯିବ ସେ ସମ୍ପର୍କରେ ମୁଁ ଅନ୍ଧାରରେ ଥିଲି । ଜୁଲାଇ ମାସ ତୃତୀୟ ସପ୍ତାହରେ ପ୍ରଫେସର ଇନ୍ଦ୍ରନାଥ ଚୌଧୁରୀ(ଏକାଡେମୀ ସମ୍ପାଦକ)ଙ୍କ ପତ୍ର ପାଇଲି । ଅଗଷ୍ଟ ୨ ତାରିଖରେ ଇଣ୍ଡିଆ ଇଣ୍ଟର ନ୍ୟାସ୍‌ନାଲ୍ ସେଣ୍ଟର ପ୍ରେକ୍ଷାଳୟ ପୁରସ୍କାର ବିତରଣୀ ଉତ୍ସବ ଅନୁଷ୍ଠିତ ହେବ ।

ମୁଁ ଏବଂ ମୋ ସ୍ତ୍ରୀଙ୍କ ପାଇଁ ସେଇ ଇଣ୍ଡିଆ ଇଣ୍ଟର ନ୍ୟାସନାଲ୍ ସେଣ୍ଟରରେ ରହିବା ବ୍ୟବସ୍ଥା ହୋଇଥିଲା । ଅଗଷ୍ଟ ୨ ତାରିଖରେ ଏକାଡେମୀ ଅଫିସ୍ ରବୀନ୍ଦ୍ର ଭବନରେ ମୋତେ ଓ ମୋ ସ୍ତ୍ରୀଙ୍କୁ ମଧ୍ୟାହ୍ନ ଭୋଜନ ପାଇଁ ଆମନ୍ତ୍ରଣ କରାଯାଇଥିଲା ।

ମୁଁ ଦିଲ୍ଲୀ ଯିବା ପାଇଁ ଟିକେଟ୍ କଲି । ଯଦିଓ ମୋ ପାଇଁ ପ୍ଲେନ୍‌ରେ ଯିବା ବ୍ୟବସ୍ଥା ଥିଲା ମୁଁ ପରିବାର(ମୋର ସ୍ତ୍ରୀ ଓ ତିନିପିଲା) ନେଇ ଯାଉଥିବାରୁ ରାଜଧାନୀ ଏକ୍ସପ୍ରେସ୍‌ର ଦ୍ୱିତୀୟ ଶ୍ରେଣୀ ଏସି କମ୍ପାର୍ଟମେଣ୍ଟରେ ଟିକେଟ୍ କଲି । ସୌଭାଗ୍ୟକୁ ଆମେ ଗୋଟିଏ ପୁରା କୁପେ ପାଇଗଲୁ । ଏବଂ ତା' ପାଖ କୁପେରେ ଗୋଟିଏ ବର୍ଥ ପାଇଲୁ । ଟ୍ରେନ୍ ଯାତ୍ରା ବେଶ୍ ଆରାମଦାୟକ ହୋଇଥିଲା । ଜୁଲାଇ ୩୧ ତାରିଖରେ ଦିଲ୍ଲୀରେ ପହଞ୍ଚିଲୁ । ମୁଁ ଇଣ୍ଡିଆ ଇଣ୍ଟର ନ୍ୟାସନାଲ୍ ସେଣ୍ଟରରେ ନରହି ଓଡ଼ିଶା ଭବନରେ ଦୁଇଟି ରୁମ୍ ନେଇ ରହିଲି ।

ଦିଲ୍ଲୀରେ ପହଞ୍ଚିବା ପରେ ମୋ ପୁଅ-ଝିଅ ଆଗ୍ରା- ଜୟପୁର ଯିବାପାଇଁ କହିଲେ । ମୋ ବଡ଼ଝିଅ ରୁପଲୁ ସେତେବେଳକୁ ୨୧ବର୍ଷ, ଦ୍ୱିତୀୟ ଝିଅ ମାମା-୧୮ବର୍ଷ ଏବଂ ପୁଅ ଲକୁ-୧୬ବର୍ଷ ବୟସର । ରୁପୁଲୁ ଇଂରାଜୀ

ଭାଷା ସାହିତ୍ୟରେ ଏମ୍‌ଏ ପରୀକ୍ଷା ଦେଉଥାଏ । ମାମା ବିଏସ୍‌ସି ଶେଷ ବର୍ଷର ଛାତ୍ରୀ ଏବଂ ଲକୁ ଆଇଏସ୍‌ସି ପଢୁଥିଲା । ଆମେ ଏକାଡେମୀ ପୁରସ୍କାର ବିତରଣ ଉତ୍ସବ ପରେ ଆଗ୍ରା ଓ ଜୟପୁର ଯିବାପାଇଁ ସ୍ଥିର କରି ଗୋଟିଏ ଭଲ ଟାକ୍ସି ବୁକ୍ କଲୁ ।

ଦୁଇ ତାରିଖ ସନ୍ଧ୍ୟାରେ ଇଣ୍ଡିଆ ଇଣ୍ଟର ନ୍ୟାସନାଲ୍ ସେଣ୍ଟରରେ ସାହିତ୍ୟ ଏକାଡେମୀ ପୁରସ୍କାର ବିତରଣୀ ଉତ୍ସବ ଆରମ୍ଭ ହେଲା । ମୁଁ ଦିଲ୍ଲୀ ଆସିବା ପୂର୍ବରୁ ଦିଲ୍ଲୀରେ ଥିବା କିଛି ଓଡ଼ିଆ ବନ୍ଧୁ ଏବଂ ଏନ୍‌ୟୁଜେ କର୍ମକର୍ତ୍ତାମାନଙ୍କୁ ମୋର ପୁରସ୍କାର ସମ୍ପର୍କରେ ଜଣାଇ ଦେଇଥିଲି । ଏନ୍‌ୟୁଜେ ପକ୍ଷରୁ ଏକ ସର୍କୁଲାର ଦିଲ୍ଲୀର ସବୁ ସଦସ୍ୟମାନଙ୍କୁ ପଠାଯାଇଥିଲା । ଅନେକ ସାମ୍ବାଦିକ ବନ୍ଧୁ ବିଶେଷ କରି ରାଜେନ୍ଦ୍ର ପ୍ରଭୁ, କେ.ଏନ୍. ଗୁପ୍ତା, ନିତିଶ ଚକ୍ରବର୍ତ୍ତି, ଆଜ୍‌କାଲ୍‌ର ଦିଲ୍ଲୀ ବ୍ୟୁରୋ ସଦସ୍ୟମାନେ ଯୋଗ ଦେଇଥିଲେ । ମୁଁ ପାଇଜାମା ଓ ପଞ୍ଜାବି ପିନ୍ଧିଥାଏ । ସେଇ ପୁରସ୍କାର ପାଇବା ପାଇଁ ଭୁବନେଶ୍ୱରରୁ ନୂଆ ପାଇଜାମା-ପଞ୍ଜାବୀ ତିଆରି କରିଥିଲି । ହଁ ଭୁଲି ଯାଇଛି । ଦିଲ୍ଲୀଯିବାବେଳେ ଟ୍ରେନ୍‌ରେ ରାତିରେ ଶୋଇବା ବେଳେ ମୁଁ ମୋ ହାତଘଣ୍ଟା ରୁପୁଲୁକୁ ତା' ହାତ ବ୍ୟାଗ୍‌ରେ ରଖିବାକୁ ଦେଇଥିଲି । ରାତିରେ ରୁପୁଲୁ ତା' ହାତ ବ୍ୟାଗକୁ ସମ୍ଭବତଃ ତଳକୁ ପକାଇ ଦେଇଥିଲା । ଯାହା କେହି ଚୋରାଇ ନେଇଗଲା । ସକାଳୁ ଖୋଜିଲାବେଳକୁ ବ୍ୟାଗ୍ ନାହିଁ । ସେଥିରେ ରୁପୁଲୁର ଘଣ୍ଟା, ମୋ ଘଣ୍ଟା, ରୁପୁଲୁର ମୁଦି ଏବଂ କିଛି ଟଙ୍କା ଥିଲା । ଦିଲ୍ଲୀରେ ପହଞ୍ଚିବା ପରେ ସାଉଥ୍ ଏକ୍ସଟେନ୍‌ସନ ମାର୍କେଟରୁ ମୁଁ ମୋ ପାଇଁ ପନ୍ଦରଶହ ଟଙ୍କା ଦେଇ ଏକ ହାତଘଣ୍ଟା ଏବଂ ରୁପୁଲୁ ପାଇଁ ଗୋଟିଏ ହାତଘଣ୍ଟା କିଣିଲି ।

ଇଣ୍ଡିଆ ଇଣ୍ଟର ନ୍ୟାସନାଲ୍ ସେଣ୍ଟର୍‌ରେ ମିଟିଂ ଆରମ୍ଭ ହେବା ପୂର୍ବରୁ ମୋ ପଛପଟ କାନ୍ଧରେ ଜଣେ ହାତ ରଖି କହିଲେ, 'ଆମାର ବନ୍ଧୁ ଯିନି ଆଜ୍‌କେ ଆକାଦେମି ଆୱାର୍ଡ଼ ପାଛେନ୍ ଭଲି ଏଇ ରକମ ପାଇଜାମା ପଞ୍ଜାବୀ ପର୍‌ତେନ । କିନ୍ତୁ ବାଇରେ ଓନାର ଯେ ଫଟୋ ରଇଛେ ଓତେ ସାହେବ ପୋଷାକେ ଓକେ ଦେଖାଯା'ଛେ । ଆମି ଏକ୍‌ଟୁ ସନ୍ଦେହ କରେ ଓଇ ସାହେବ ପୋଷାକେ ପରା ଭଦ୍ରଲୋକ ଆମାର ବନ୍ଧୁ ନା ଅନ୍ୟ କେଉ ଦେଖ୍‌ତେ ଭେତରେ ଢୁକ୍‌ଲାମ୍ ।' ମୁଁ ବୁଲିପଡ଼ି ଦେଖିଲି ମୋ ପଛରେ ଠିଆ ହୋଇଛନ୍ତି ଦୀର୍ଘଦେହି, ପଞ୍ଜାବୀ ଟ୍ରାଉଜର ପରିହିତ ବିଖ୍ୟାତ ଐତିହାସିକ, ବିଶ୍ୱଭାରତୀର କୁଳପତି ପ୍ରଫେସର ନିମାଇଁ ସାଧନ ବସୁ । ମୁଁ ଆନନ୍ଦିତ ହୋଇ ତାଙ୍କୁ ନମସ୍କାର କଲି । କରମର୍ଦ୍ଦନ ପରେ ସେ କହିଲେ ଶୁନ୍‌ଲାମ ଆପନି ଆକାଦେମି ଆୱାର୍ଡ଼ ପାଛେନ୍ । ସେଇ ଜନ୍ୟ ଚଲେ ଏଲାମ । ଆଜ୍ ରାତେ କୋଲକାତା ଫି'ରେ ଯାବୋ । ଭାଲୋ ହଲୋ । ଆପନାର ସଙ୍ଗେ ଦେଖା ହଏ । ପ୍ରଫେସର ବସୁଙ୍କର ମୋ ପ୍ରତି ଏଇ ଶ୍ରଦ୍ଧା ମୋତେ ସେଦିନ ଅଭିଭୂତ କରିଥିଲା । ତାଙ୍କ ସହ ୧୯୮୪ ମସିହାରୁ ମୋର ପରିଚୟ । ପରିଚୟ ପରେ ମୋ ପ୍ରତି ତାଙ୍କର କେଜାଣି କିପରି ଏକ ଅକୃତିମ ବନ୍ଧୁତା ସୃଷ୍ଟି ହୋଇଥିଲା । ଏପରିକି ତାଙ୍କ ପୁଅ ବାହାଘରରେ ଯୋଗ ଦେବାପାଇଁ ମୋତେ ନିମନ୍ତ୍ରଣ ଓ ତା' ସାଙ୍ଗରେ ଏକ ବ୍ୟକ୍ତିଗତ ଚିଠି ଦେଇଥିଲେ । ମୁଁ ତାଙ୍କ ହାଓଡ଼ା ବାସଭବନ (ବାସଭବନ ନକହି ରାଜଭବନ କହିବା ଭଲହେବ)କୁ ଯାଇଥିଲି ଓ ପରଦିନ ସନ୍ଧ୍ୟାରେ କଲିକତାରେ ତାଙ୍କ ରିସିପ୍‌ସନ୍‌ରେ ଯୋଗ ଦେଇଥିଲି ।

ରିସିପ୍‌ସନରେ ମୋତେ ଟାଣି ନେଇ ପଶ୍ଚିମବଙ୍ଗ ମୁଖ୍ୟମନ୍ତ୍ରୀ ଜ୍ୟୋତି ବସୁଙ୍କ ସହ ପରିଚୟ କରାଇ ଦେଇ କହିଲେ ଆମାର ବନ୍ଧୁ ଭୁବନେଶ୍ୱର ଯେକେ ଏସେଛେନ୍ । ଜ୍ୟୋତିବାବୁ ହସିହସି କହିଲେ ଦେଖ୍‌ଚି ଆପନାର ସମଗ୍ର ଦେଶେ ବନ୍ଧୁ ଆଛେନ୍ । ନିମାଇବାବୁ ପୁଣି କହିଲେ ଇନି ଏନ୍.ୟୁ.ଜେ.ର ସର୍ବଭାରତୀୟ

ସଭାପତି । ଜ୍ୟୋତିବାବୁ ମୋ ସାଙ୍ଗରେ କରମର୍ଦ୍ଦନ କଲେ । ମୁଁ ମୋ ପରିଚୟ ଦେଲି । ପ୍ରଫେସର ନିମାଇଁ ସାଧନ ବସୁ ଇନ୍ଦିରା ଗାନ୍ଧୀଙ୍କ ଜୀବନର ଶେଷ ସାକ୍ଷାତକାର ଦେଇଥିଲେ । ଏହି ବିରାଟ ସାକ୍ଷାତକାର ଏକ ବହି ଆକାରରେ ପ୍ରକାଶ ପାଇଛି । ମୁଁ ତାଙ୍କୁକହିଥିଲି ଆପଣ ଇନ୍ଦିରା ଗାନ୍ଧୀଙ୍କ ଜୀବନର ଶେଷ ସାକ୍ଷାତକାର ନେଇଥିଲେ । ଏହି ବିରାଟ ସାକ୍ଷାତକାର ଏକ ବହି ଆକାରରେ ପ୍ରକାଶ ପାଇଛି । ମୁଁ ତାଙ୍କୁ କହିଥିଲି ଆପଣ ଇନ୍ଦିରା ଗାନ୍ଧୀଙ୍କ ଜୀବନର ଶେଷ ସାକ୍ଷାତକାର ନେଇଥିଲେ । ମୁଁ ତାଙ୍କ ଜୀବନର ଶେଷ ଭାଷଣ (ସଇଁତଳା, ବଲାଙ୍ଗୀର) ଗୋପାଳପୁର କାଣ୍ଟନମେଣ୍ଟ (ଗଞ୍ଜାମ) ଏବଂ ଭୁବନେଶ୍ୱରର ରିପୋର୍ଟିକରିଥିଲି ।

ମୁଁ କଥା ଖିଅ ଛାଡ଼ି ଅନ୍ୟ ଆଡ଼େ ପଶିଗଲି । ସାହିତ୍ୟ ଏକାଡେମି ପୁରସ୍କାର ସଭା ଆରମ୍ଭ ହେଲା । ଦେଶର ସତର ଜଣ ସାହିତ୍ୟିକ ଏହି ପୁରସ୍କାର ଲାଭ କରିଥିଲେ । ଓଡ଼ିଶାର ବିଶିଷ୍ଟ କବି ରମାକାନ୍ତ ରଥ ଆଇ.ଏ.ଏସ୍ ସେତେବେଳେ କେନ୍ଦ୍ର ସାହିତ୍ୟ ଏକାଡେମିର ଉପ ସଭାପତି ଥିଲେ । ମୋ ନାମ ଡକା ହେବା ପରେ ମୁଁ ମଞ୍ଚ ଉପରକୁ ଗଲି । ରମାକାନ୍ତବାବୁ ଫୁଲମାଳ ଦେଇ ମୋତେ ସ୍ୱାଗତ କଲେ । ସେତେବେଳେ ରମାକାନ୍ତଙ୍କର ମୋ ପ୍ରତି ବିଦ୍ୱେଷ ମନୋଭାବ ଥିଲା । ତା'ର କାରଣ ହେଲା ମୁଁ 'ସମ୍ବାଦ' କାଗଜରେ ଲେଖୁଥିବା ମୁକ୍ତ ବିଚାର ସ୍ତମ୍ଭରେ ମୁଖ୍ୟମନ୍ତ୍ରୀଙ୍କ 'ସଚିବ ଓ ପ୍ରଶାସନର ବିଷ ବୃକ୍ଷ' ଶୀର୍ଷକ ଏକ ଧାରାବାହିକ ଲେଖୁଥିଲି । ସେଥିରେ ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀଙ୍କ ସଚିବ ରୂପେ ଡାଭେଙ୍କ ଠାରୁ ଆରମ୍ଭ କରି ବିଜୁ ପଟ୍ଟନାୟକଙ୍କ ସଚିବ ପ୍ୟାରୀ ମୋହନ ମହାପାତ୍ର କିପରି ମୁଖ୍ୟମନ୍ତ୍ରୀମାନଙ୍କୁ କୁ-ପରାମର୍ଶ ଦେଇ ଶାସନକୁ ଓ ମୁଖ୍ୟମନ୍ତ୍ରୀଙ୍କୁ ହଇରାଣରେ ପକାଇଛନ୍ତି ତା'ର ଉଦାହରଣ ଦେଇଥିଲି । ସେଥିରେ ରମାକାନ୍ତ ରଥ ନନ୍ଦିନୀ ଶତପଥୀଙ୍କ ସଚିବ ଥିବା ସମୟରେ ମୁଖ୍ୟ ଶାସନ ସଚିବ ଭି.ଏସ୍. ମାଥ୍ୟୁସ୍‌ଙ୍କୁ ବାଧ୍ୟତାମୂଳକ ଅବସର ଦେବାରେ କିପରି ଅସ୍ତ୍ର ସାଜିଥିଲେ ତାହା ବର୍ଣ୍ଣନା କରିଥିଲି ।

ସାହିତ୍ୟ ଏକାଡେମୀର ପୁରସ୍କାର ବିତରଣ ଉତ୍ସବ ଶେଷ ହେଲା । ଦିଲ୍ଲୀ ଦୂରଦର୍ଶନର ଜଣେ ସାମ୍ବାଦିକ ମୋର ସାକ୍ଷାତକାର ନେଲେ । ଆକାଶବାଣୀର ଜଣେ ସାମ୍ବାଦିକ ମଧ୍ୟ ମୋର ସାକ୍ଷାତକାର ନେଲେ । ପରଦିନ ଏହି ସାକ୍ଷାତକାର ପ୍ରସାରିତ ହେଲା । ମୁଁ ପୁରସ୍କାର ଲବ୍ଧ ଦଶହଜାର ଟଙ୍କାର ଡ୍ରାଫ୍ଟ, ଫଳକ ନେଇ ଫେରିଲି । ପରଦିନ ଆମେ ଯିବାକଥା ଆଗ୍ରା ଓ ଜୟପୁର । ମାତ୍ର ମୁଁ ଯିବା ପୂର୍ବରୁ ଦିଲ୍ଲୀରେ ଥିବା ମୋର ବନ୍ଧୁ ଡାକ୍ତର କୃପାସିନ୍ଧୁ ଭୋଇଙ୍କ ପାଖରୁ ଟେଲିଫୋନ୍ ପାଇଲି । ସକାଳ ଖବର କାଗଜରେ ମୋ ଫଟୋ ଦେଖି ଡଃ ଭୋଇ କହିଲା, ବାଃ ଭଲ ବନ୍ଧୁ, ଏଠିକି ଆସି ମୋତେ ନଜଣାଇ ଏତେବଡ଼ ପୁରସ୍କାର ନେଇ ପଳାଇବାକୁ ବସିଛ । ମୁଁ ଗାଡ଼ି ପଠାଉଛି ସାଙ୍ଗେସାଙ୍ଗେ ଆସ । ଡାକ୍ତର ଭୋଇ ଥିଲେ କେନ୍ଦ୍ର ମନ୍ତ୍ରିମଣ୍ଡଳର ସ୍ୱାସ୍ଥ୍ୟ ବିଭାଗର ସ୍ୱାଧୀନ ରାଷ୍ଟ୍ରମନ୍ତ୍ରୀ । ଅଗତ୍ୟା ଯିବାକୁ ହେଲା । ସେତେବେଳେ ମୋ ସ୍ୱର ମଝିରେ ମଝିରେ କମି ଯାଉଥାଏ । ଫଳରେ ସ୍ୱର ପେଟିକାରେ କିଛି ଗୋଳମାଳ ଅଛି ବୋଲି ଭୁବନେଶ୍ୱରରେ ଜଣେ ଇଏନ୍‌ଟି ଡାକ୍ତର ମୋତେ କହିଥିଲେ । ସେ ମୋତେ ମଧ୍ୟ ଔଷଧ ଦେଇଥିଲେ ଖାଇବା ପାଇଁ । ମାତ୍ର ସେଦିନ ଡଃ ଭୋଇଙ୍କ ସାଙ୍ଗରେ ବସି କଥାବାର୍ତ୍ତା କରିବା ବେଳେ ସ୍ୱର ଅସ୍ୱାଭାବିକ ରୂପେ ପଡ଼ିଗଲା । ଡଃ ଭୋଇ ଏକଥା ଦେଖି ମୋତେ କହିଲେ ମୁଁ ଏମ୍‌ସରେ ଇଏନ୍‌ଟି ପ୍ରଫେସର ଡଃ ଡେକାଙ୍କୁ କହି ଦେଉଛି । ତମେ ଯାଇ ସାଙ୍ଗେସାଙ୍ଗେ ଗଳା ପରୀକ୍ଷା କର । ଡଃ ଭୋଇ ଏମ୍‌ସର ଚେୟାରମ୍ୟାନ୍ ଥିଲେ ।

ମୁଁ ମଧ୍ୟ ମୋର ଗଳାର ଅବସ୍ଥା ଦେଖି ଅଲ୍‌ଇଣ୍ଡିଆ ମେଡ଼ିକାଲ୍ ସାଇନ୍ସ (ଏମ୍‌ସ)କୁ ଯିବାପାଇଁ ନିଷ୍ପତ୍ତି ନେଲି ।

ଓଡ଼ିଶା ଭବନକୁ ଟେଲିଫୋନ୍ କରି ଏକଥା ମୋ ପତ୍ନୀଙ୍କୁ ଜଣାଇ ଦେଲି । ସେ ମଧ ମୋ କଥାରେ ରାଜି ହେଲେ । ଏମ୍‌ସରେ ଡଃ ଡେକା ମୋତେ ପରୀକ୍ଷା କଲେ । କହିଲେ ଆପଣ ଚେନ୍ ସ୍ମୋକର୍ କି ? ମୁଁ କହିଲି ହଁ ଥିଲି । ମାତ୍ର ୧୯୮୭ ଡିସେମ୍ବରରୁ ଛାଡ଼ି ଦେଇଛି । ଆଉ ସିଗାରେଟ୍ ଟାଣୁନି । ସେ କହିଲେ ଆପଣଙ୍କ ଗଳାରେ ତା'ର ପ୍ରଭାବ ରହିଛି । କେତେକ ସ୍ଥାନରେ ଧଳାଧଳା ଦାଗ ହୋଇଛି । ତାହା ସ୍ମୋକିଂ ପାଇଁ ହୋଇଥାଏ । ତେବେ ଛୋଟ ଅପରେସନ୍ କରିବାକୁ ପଡ଼ିବ । ଆଜି ଆପଣଙ୍କୁ ଆଡ଼ମିସନ୍ କରି ଦେଉଛି । କାଲି ଅପରେସନ୍ କରିଦେବା । ଅପରେସନ୍ କଥା ଶୁଣି ମୁଁ ଭୟ କଲି । ସେଦିନ ଆଉ ନରହି ଓଡ଼ିଶା ଭବନ ପଳାଇ ଆସିଲି । ସବୁ କଥା ମୋ ସ୍ତ୍ରୀଙ୍କୁ କହିଲି । ସେ ମଧ ଅପରେସନ୍ କଥା ଶୁଣି ଭୟ କଲେ ।

ସେଦିନ ଭୟକରି ମୁଁ ଅପରେସନ ନକରି ଭବିଷ୍ୟତ ପାଇଁ ମୋ ଉପରକୁ ଘୋର ବିପଦ ଡାକି ଆଣିଥିଲି । ଆଉ ଆଗ୍ରା ଜୟପୁର ଯିବା ହେଲା ନାହିଁ । ପରଦିନ ଆମେ ଦିଲ୍ଲୀର ବିଭିନ୍ନ ଦର୍ଶନୀୟ ସ୍ଥାନ ବୁଲି ଦେଖିଲୁ । ଲାଲ୍‌କିଲ୍ଲା, କୁତବ ମିନାର ଆଦି ଦେଖି କରୋଲ ବାଗରୁ ପିଲାଙ୍କ ପାଇଁ ଭଲ ଡ୍ରେସ୍ କିଣିଲି । କନୌଟ୍ ପ୍ଲେସ୍‌ରେ ବୁଲାବୁଲି କରି ଓଡ଼ିଶା ଭବନ ଫେରୁଫେରୁ ରାତି । ତା' ପରଦିନ ସକାଳୁ ଭୁବନେଶ୍ୱର ଫେରିବା ପାଇଁ ଟ୍ରେନ୍ ଧରିଲୁ ।

ଦିଲ୍ଲୀରେ କେ.ଏନ୍. ଗୁପ୍ତା (ଇକୋନୋମିକ୍ ଟାଇମ୍ସର ମୁଖ୍ୟ ବାର୍ତ୍ତା ସମ୍ପାଦକ) ମୋର ଘନିଷ୍ଠ ବନ୍ଧୁମାନଙ୍କ ମଧରୁ ଜଣେ । ତାଙ୍କ ବ୍ୟତୀତ ଭାରତୀୟ ପ୍ରେସ୍ ଫଟୋଗ୍ରାଫର ଆସୋସିଏସନ୍‌ର ସଭାପତି ପ୍ରେମ ପ୍ରକାଶ ମଧ ମୋର ଜଣେ ପାରିବାରିକ ବନ୍ଧୁ ଥିଲେ । ପ୍ରେମ୍ ପ୍ରକାଶଙ୍କର ଗୁଲମୋହର ପାର୍କରେ ବିରାଟ ଅଟ୍ଟାଳିକା । ସେ ଏ.ଏନ୍.ଆଇ.(ଆସୋସିଏଟେଡ ନିଉଜ୍ ଅଫ୍ ଇଣ୍ଡିଆ)ର ମାଲିକ । ଏ.ଏନ୍.ଆଇ. ହେଉଛି ଇଲେକ୍ଟ୍ରୋନିକ୍ ନିଉଜ୍ ଏଜେନ୍ସି । ମୋତେ ପ୍ରେମ ପ୍ରକାଶ ଓଡ଼ିଶା ପାଇଁ ଏ.ଏନ୍.ଆଇ. ଦାୟିତ୍ୱ ନେବାକୁ କହୁଥିଲେ । ମାତ୍ର ମୁଁ ପ୍ରିଣ୍ଟମିଡିଆ ଛାଡ଼ି ଇଲେକ୍ଟ୍ରୋନିକ୍ ମିଡିଆରେ ପଶିବା ପାଇଁ ଇଚ୍ଛା କଲି ନାହିଁ । ତେବେ ଭୁବନେଶ୍ୱରରେ ଦି'ଜଣଙ୍କୁ ସୁପାରିଶ କରି ତାଙ୍କ ପାଖକୁ ପଠାଇଥିଲି । ସେଥର ମୋତେ ଗୁପ୍ତାଜୀ ଆଉ ପ୍ରେମ ସାହେବ ଡିନର ପାଇଁ ନିମନ୍ତ୍ରଣ କରିଥିଲେ । ଆମେ ଚାରିଦିନ ରହିବା ଭିତରେ ଦି'ଦିନ ସେ ଦୁହିଁଙ୍କ ଘରେ ଡିନର କରିଥିଲୁ ।

## -ମୁକ୍ତ ବିଚାର-

ଭୁବନେଶ୍ୱର ଫେରିଆସି ମୁଁ କାମରେ ଲାଗିଗଲି । ମୋ କଣ୍ଠସ୍ୱର ମଝିରେ ମଝିରେ କମ୍ ବେଶୀ ହେଉଥିଲେ ମଧ ମୁଁ ସେଥିକୁ ଭ୍ରୂକ୍ଷେପ କରି ନଥିଲି । ସମୟ ଗଡ଼ି ଚାଲିଥିଲା । ମୋର 'ମୁକ୍ତ ବିଚାର' ସ୍ତମ୍ଭ ବେଶ୍ ଜନପ୍ରିୟ ଲାଭ କରିଥିଲା । ୧୯୯୩ରୁ ୧୯୯୪ ମଧରେ ମୁଁ ମୋ ସ୍ତମ୍ଭରେ ମୁଖ୍ୟମନ୍ତ୍ରୀଙ୍କ ସଚିବ ଓ ପ୍ରଶାସନର ବିଷବୃକ୍ଷ ଶିରୋନାମାରେ ଏଗାରଟି ନିବନ୍ଧ ଲେଖିଥିଲି । ଏ ନିବନ୍ଧଗୁଡ଼ିକ ରାଜ୍ୟରେ ଅସମ୍ଭବ ଜନପ୍ରିୟତା ଲାଭ କରିଥିଲା । ପ୍ରତି ନିବନ୍ଧ ଉପରେ ମୁଁ ଶତାଧିକ ପତ୍ର, ଟେଲିଫୋନ୍ ଆଦି ପାଉଥିଲି । ଏଗୁଡ଼ିକ ଅନେକ ସମୟରେ ବିବଦମାନ ହେଉଥିଲା । ଯେଉଁ ଆଇଏଏସ୍ ଓ ମୁଖ୍ୟମନ୍ତ୍ରୀମାନଙ୍କ ସମ୍ପର୍କରେ ଏହା ଲେଖା ହେଉଥିଲା ସେମାନେ ଯା' ତା' ନାଁରେ କିମ୍ବା ସେମାନଙ୍କ ଦଳର ଲୋକଙ୍କ ନାଁରେ ନାନା ପ୍ରକାର ପ୍ରତିବାଦ ପତ୍ର ପଠାଉଥିଲେ । ତେବେ ଏହି ପର୍ଯ୍ୟାୟରେ ଚତୁର୍ଥ ଓ ପଞ୍ଚମ ନିବନ୍ଧରେ ନନ୍ଦିନୀ ଶତପଥୀଙ୍କ ରାଜତ୍ୱ କାଳ ଏବଂ ତାଙ୍କ ସଚିବ ରମାକାନ୍ତ ରଥଙ୍କ ସମ୍ପର୍କରେ ମୁଁ କେତେକ ଅପ୍ରିୟ ସତ୍ୟର ଅବତାରଣା କରିଥିଲି । ନନ୍ଦିନୀ ଶତପଥୀଙ୍କ ଦ୍ୱିତୀୟ ଶାସନ କାଳ (୧୯୭୪ ମାର୍ଚ୍ଚ ୬ ତାରିଖରୁ ୧୯୭୬ ଡିସେମ୍ବର ୧୭ ତାରିଖ, ମୋଟ ଦୁଇବର୍ଷ ନ'ମାସ)ରେ ଦେଶରେ ଜରୁରୀକାଳୀନ ପରିସ୍ଥିତି(୧୯୭୫ ଜୁନ୍ ୨୬ ତାରିଖ) ଜାରି ହୋଇଥିଲା । ଏହି ସମୟରେ ନନ୍ଦିନୀ ଦେବୀଙ୍କ ସଚିବ ଥିଲେ ରମାକାନ୍ତ ରଥ । ପରେ ସେ ଯେତେ ଯାହା ସଫେଇ ଦିଅନ୍ତୁ ନା କାହିଁକି ଜରୁରୀ ପରିସ୍ଥିତି ସମୟରେ ସେ ହିଁ ଥିଲେ ଓଡ଼ିଶାର ଭାଗ୍ୟବିଧାତା । ଏହି ସମୟରେ ଓଡ଼ିଶାର ମୁଖ୍ୟ ଶାସନ ସଚିବ ଥିବା ଭି.ଏସ୍.

ମାଥ୍ୟୁସ୍‌ଙ୍କୁ ତିନିମାସର ଅଗ୍ରିମ ଦରମା ଦେଇ ୧୯୭୬ ମେ' ମାସ ୩୦ ତାରିଖରେ ଚାକିରିରୁ ବାଧ୍ୟତାମୂଳକ ଅବସର ଦିଆଯାଇଥିଲା । ସେହିଭଳି ବିଖ୍ୟାତ ଶିକ୍ଷାବିତ୍ ବିଧୁଭୂଷଣ ଦାସଙ୍କୁ ଡି.ପି.ଆଇ. ପଦରୁ ବାହାର କରି ଦେଇ କୌଣସି କାର୍ଯ୍ୟ ନଥିବା ଏସ୍.ସି.ଇ.ଆର୍.ଟି.ର ଡିରେକ୍ଟର ରୂପେ ଅବସ୍ଥାପିତ କରାଯାଇଥିଲା । ଶିକ୍ଷା ବ୍ୟବସ୍ଥାରେ ଆଉ ଏକ ଚୋଟ ପଡ଼ିଥିଲା ଉତ୍କଳ ବିଶ୍ୱବିଦ୍ୟାଳୟର ତତ୍‌କାଳୀନ ରାଜନୀତି ବିଜ୍ଞାନର ବିଖ୍ୟାତ ପ୍ରଫେସର ଡଃ ଶ୍ରୀରାମଚନ୍ଦ୍ର ଦାସଙ୍କ ଉପରେ । ଡଃ ଦାଶଙ୍କୁ ମଧ୍ୟ ବାଧ୍ୟତାମୂଳକ ଅବସର ଦିଆଯାଇଥିଲା । ଡଃ ଦାଶ ଏ ସମ୍ପର୍କରେ ଯେତେବେଳେ ରମାକାନ୍ତ ବାବୁଙ୍କ ସାହାଯ୍ୟ ଲୋଡ଼ିଲେ ତାଙ୍କୁ ଅତ୍ୟନ୍ତ ଅପମାନିତ କରାଯାଇଥିଲା ।

ଆମେ ଆମ ନିବନ୍ଧରେ ଏ ସମସ୍ତ ଘଟଣାର ପୁଙ୍ଖାନୁପୁଙ୍ଖ ବିବରଣୀ ଓ ଆଲୋଚନା କରିଥିଲୁ । ଆମ ନିବନ୍ଧ ପ୍ରକାଶ ପାଇବା ପରେ ରମାକାନ୍ତ ବାବୁ ଅତ୍ୟନ୍ତ ଉତ୍‌କ୍ଷିପ୍ତ ହୋଇ ତା'ର ଏକ ଲମ୍ବା ପ୍ରତିବାଦ ପତ୍ର ପଠାଇଲେ । ତାଙ୍କ ପ୍ରତିବାଦର ଉତ୍ତର ଦେବା ପରେ ଆମ ଉତ୍ତରରେ ଉତ୍‌କ୍ଷିପ୍ତ ହୋଇ ଅଧ୍ୟାପକ ଶରତ କୁମାର ମହାନ୍ତି ରମାକାନ୍ତ ରଥଙ୍କୁ ସମର୍ଥନ କରି ଦୁଇଟି ପ୍ରତିବାଦ ପଠାଇଲେ । ଆମେ ଶରତବାବୁଙ୍କୁ ମଧ୍ୟ ତାଙ୍କ ପତ୍ରର ବେଶ୍ କଡ଼ା ଉତ୍ତର ଦେଲୁ । ଆମ ଉତ୍ତର ପ୍ରକାଶ ପାଇଲା ପରେ ପ୍ରଫେସର ଡଃ ଶ୍ରୀରାମ ଚନ୍ଦ୍ର ଦାଶ ଏକ ସାମ୍ବାଦିକ ସୁଭାଷ ଚନ୍ଦ୍ର ପଟ୍ଟନାୟକ ଶରତ ମହାନ୍ତିଙ୍କ ପତ୍ରର ତୀବ୍ର ସମାଲୋଚନା କରି ପ୍ରତିବାଦ ପତ୍ର ଦେଲେ । ଏ ସମସ୍ତ ପତ୍ରଯୁଦ୍ଧ ଏଭଳି ଏକ ପରିସ୍ଥିତି ସୃଷ୍ଟି କଲା ଯେ ବହୁ ବିଶିଷ୍ଟ ବ୍ୟକ୍ତି ସମ୍ବାଦ ସମ୍ପାଦକ ସୌମ୍ୟ ରଞ୍ଜନ ପଟ୍ଟନାୟକଙ୍କୁ ଭେଟି ଓ ପତ୍ର ଦେଇ ଏ ବିବାଦକୁ ଆଉ ଆଗକୁ ନନେବା ପାଇଁ ଅନୁରୋଧ କରିଥିଲେ ।

ଶ୍ରୀ ପଟ୍ଟନାୟକ ଏହି ଆଲୋଚନାର ଉପସଂହାର କରି ଲେଖିଥିଲେ, 'ଡକ୍ଟର ଦାଶ ଓ ଶ୍ରୀ ପଟ୍ଟନାୟକଙ୍କ ଚିଠି ବ୍ୟତୀତ ସମ୍ବାଦର ବହୁ ଶୁଭେଚ୍ଛୁ ପାଠକ ଆଲୋଚନା ପ୍ରସଙ୍ଗରେ ଏବଂ ଟେଲିଫୋନ୍ ଯୋଗେ ଆମର ଦୃଷ୍ଟି ଆକର୍ଷଣ କରି କ୍ରମେ ଏହି ପ୍ରସଙ୍ଗଟି ବ୍ୟକ୍ତିଗତ ସ୍ତରକୁ ଚାଲି ଯାଉଥିବା ଦର୍ଶାଇଛନ୍ତି ଓ ବିବାଦଟିର ପୂର୍ଣ୍ଣଚ୍ଛେଦ ଟାଣିବା ପାଇଁ ପରାମର୍ଶ ଓ ଅନୁରୋଧ ଜଣାଇଛନ୍ତି ।

ଆମେ ସେମାନଙ୍କ ମତକୁ ସମ୍ମାନ ଦେଇ ଏ ବିବାଦଟିକୁ ଆଉ ଅଧିକ ବଢ଼ାଇବା ପାଇଁ ଚାହୁଁ ନାହୁଁ । ତେବେ ଅତି ଦୁଃଖର ସହ ଏତିକି କହିବାକୁ ବାଧ ହେଉଛୁ ଯେ ଅନାସକ୍ତ ଆଲୋଚନା କରିବାର ଅଭ୍ୟାସ ତଥା ସମାଲୋଚନାକୁ ସହଜ ଭାବେ ଗ୍ରହଣ କରିବାର ମାନସିକତାର ଅଭାବ ଆମର ଭାଷା, ସାହିତ୍ୟ, ସଂସ୍କୃତି ଓ ସବୁକିଛିକୁ ଅଧିକ ଦରିଦ୍ର କରୁଛି । ଏ ଦାରିଦ୍ର୍ୟରୁ ଶୀଘ୍ର ମୁକ୍ତି ମିଳୁ, ଏହାହିଁ ଜଗନ୍ନାଥଙ୍କ ପାଖରେ ଆମର ପ୍ରାର୍ଥନା'- ସୌମ୍ୟ ରଞ୍ଜନ ପଟ୍ଟନାୟକ, ସମ୍ପାଦକ, ସମ୍ବାଦ ।

ମୁଁ ଏହି ଘଟଣାଟି ଉଲ୍ଲେଖ କରିବାର ଏକମାତ୍ର ଉଦ୍ଦେଶ୍ୟ ହେଉଛି ଗୋଟିଏ ଗୋଟିଏ ନିବନ୍ଧ ସାଧାରଣ ବୁଦ୍ଧିଜୀବୀମାନଙ୍କ ମଧ୍ୟରେ କିପରି ଚେତନା ଜାଗ୍ରତ କରେ, ଏହା ତା'ର ଏକ ନମୁନା । ମୁଁ ଏହି ନିବନ୍ଧର ଲେଖକ ରୂପେ ସ୍ୱାଭାବିକ ଭାବେ ଅତ୍ୟନ୍ତ ସନ୍ତୋଷ ଲାଭ କରିଥିଲି । ଅନେକ ଦିନ ଧରି ଅନେକ ବନ୍ଧୁ ଏହି ବିବଦମାନ ବିଷୟକୁ ମନେ ରଖିଥିଲେ ।

କେବଳ ଏହି ଗୋଟିକ ନୁହେଁ, ଆହୁରି ଅନେକ ନିବନ୍ଧ ରାଜ୍ୟର ବହୁ ବୁଦ୍ଧିଜୀବୀଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ଏହି ସମୟ ମଧ୍ୟରେ (୧୯୯୩ରୁ ୯୫) ଆଉ ଏକ ଘଟଣା ହେଲା ସାରଳା ପୁରସ୍କାର । ଇମ୍ପା ଚାରିଟେବୁଲ୍ ଟ୍ରଷ୍ଟ ପକ୍ଷରୁ ଦିଆଯାଉଥିବା ଏହି ପୁରସ୍କାର କିପରି ଜାତିଆଣ ଏବଂ ଗୋଷ୍ଠିଗତ ଦୋଷଦୁଷ୍ଟ ତା'ର କେତେକ ନିର୍ଦ୍ଦିଷ୍ଟ ଉଦାହରଣ ଓ ପ୍ରମାଣ ଦେଇ ଆମେ କେତୋଟି ନିବନ୍ଧ ଲେଖିଥିଲୁ । ଏହି ନିବନ୍ଧଗୁଡ଼ିକ ଏଭଳି ଚର୍ଚ୍ଚିତ ହୋଇଥିଲା ଯେ ପ୍ରାୟ ମାସେ/

ଦେଢ଼ମାସ ଧରି ଏହା ଉପରେ ବହୁ ବିଶିଷ୍ଟ ଲେଖକ ଓ ସାହିତ୍ୟିକ ନିଜ ନିଜ ମତ (ଯାହା ଆମ ନିବନ୍ଧକୁ ସମର୍ଥନ କରି) ପ୍ରକାଶ କରିଥିଲେ।

ଆମେ ଜଣେ ସାମ୍ବାଦିକ ବା ସାହିତ୍ୟିକ ରୂପେ ଯେଉଁ ଭୂମିକାରେ ଯେଉଁ କାର୍ଯ୍ୟ ନିର୍ବାହ କରୁ ତାହା ଯଦି ଫଳପ୍ରଦ ହୁଏ ସ୍ୱାଭାବିକ ଭାବେ ଆମ୍ଭ ସନ୍ତୋଷ ମିଳେ । ମୋର କହିବାରେ ଦ୍ୱିଧା ନାହିଁ ଓଡ଼ିଶାରେ ଆଇ.ଏ.ଏସ୍. ଅଫିସରମାନଙ୍କୁ ନେଇ ଯେଉଁ ଭୟ ଓ ସଂକୋଚ ବାତାବରଣ ଥିଲା ମୁଁ ପ୍ରଥମେ ଦୁର୍ନୀତିଗ୍ରସ୍ତ ଅପାରଗ ଓ ଅଳସୁଆ ଆଇ.ଏ.ଏସ୍.ମାନଙ୍କ ମୁଖା ଖୋଲି ଦେଇଥିଲି । ସାହିତ୍ୟ କ୍ଷେତ୍ରରେ ଆମର ଦଳେ ଗୋଡ଼ାଣିଆ ଲେଖକ ଆଇ.ଏ.ଏସ୍. କବି ଲେଖକମାନଙ୍କ ପଦଲେହନ କରି ନିଜର ବ୍ୟକ୍ତିଗତ ସ୍ୱାର୍ଥ ହାସଲ କରୁଥିଲେ ସେମାନଙ୍କୁ ମଧ ଖୋଲାଖୋଲି ସମାଲୋଚନା କରିବା ଫଳରେ ସାଧାରଣରେ ଏହି ହାକିମମାନଙ୍କର ଯେଉଁ ଭାବମୂର୍ତ୍ତିଥିଲା ତାହା ଅନେକାଂଶରେ କ୍ଷୁର୍ଣ୍ଣ ହୋଇଥିଲା । ମୁଁ ମୁକ୍ତ ବିଚାରରେ 'ଓଡ଼ିଆ ସାହିତ୍ୟର ଶେଷକଥା ଆଇ.ଏ.ଏସ୍.' ଶିରୋନାମାରେ ଆଠୋଟି ନିବନ୍ଧ ଲେଖି କେବଳ କ୍ଷମତା ବଳରେ ଏମାନଙ୍କ ମଧ୍ୟରୁ କିପରି ଅଧିକାଂଶ ପୁରସ୍କାର ହାସଲ କରୁଛନ୍ତି ତା'ର ଖୋଲାଖୋଲି ଆଲୋଚନା କରିଥିଲି । ଏହାକୁ ଅନେକ ପାଠକ କେବଳ ଉପଭୋଗ କରିଥିଲେ ତା' ନୁହେଁ, ସମର୍ଥନ ମଧ କରିଥିଲେ।

'ମୁକ୍ତ ବିଚାର' ଲେଖୁଥିବାବେଳେ ମୁଁ ଏକ ମୋକଦ୍ଦମାରେ ଜଡ଼ିତ ହୋଇ ପଡ଼ିଲି । ୧୯୯୫ ଜୁଲାଇ ୨୫ ତାରିଖ ଓ ୩୧ ତାରିଖରେ ମୋର ନିବନ୍ଧ 'ହେ- ନ୍ୟାୟଦେବୀ, ଅନ୍ଧପୁଟୁଳି ଖୋଲିଦିଅ'କୁ କେନ୍ଦ୍ର କରି ହାଇକୋର୍ଟର କେତେଜଣ ଓକିଲ ଏକ ମୋକଦ୍ଦମା କରିଥିଲେ । ଏହି ମୋକଦ୍ଦମାରେ 'ସମ୍ବାଦ' ଖବର କାଗଜର ସମ୍ପାଦକ ସୌମ୍ୟରଞ୍ଜନ ପଟ୍ଟନାୟକ, ପ୍ରକାଶକ ବିଜୟ କୁମାର ପଟ୍ଟନାୟକ ଓ ମୋତେ ପାର୍ଟିକରାଯାଇ ଥିଲା । ଏ ମୋକଦ୍ଦମା ହୋଇଥା'ନ୍ତା କି ନାହିଁ ପ୍ରଥମେ କେହି ଜାଣି ନଥିଲେ । ମାତ୍ର ଉତ୍କଳ ମହିଳା ସମିତି ଏବଂ ଆଉ କେତୋଟି ମହିଳା ଅନୁଷ୍ଠାନ ଏ ଦୁଇ ନିର୍ବନ୍ଧକୁ ବହି ଆକାରରେ ଛାପି ଚାରିଆଡ଼େ ବାଣ୍ଟିବା ସଙ୍ଗେ ସଙ୍ଗେ ଶୋଭାଯାତ୍ରାରେ ହାଇକୋର୍ଟକୁ ଆସି ବିଚାରପତି ବିଶେଷକରି ମୁଖ୍ୟ ବିଚାରପତିଙ୍କ ବିରୁଦ୍ଧରେ ସ୍ଲୋଗାନ୍ ମାନ ଦେଇଥିଲେ । କେବଳ ସେତିକିରେ କଥା ସୀମାବଦ୍ଧ ହୋଇ ନଥିଲା । ସାମ୍ବାଦିକ ସମ୍ମିଳନୀ କରି ହାଇକୋର୍ଟର ବିଚାରପତିମାନେ କିପରି ବଡ଼ବଡ଼ିଆ ଲୋକଙ୍କୁ ସମର୍ଥନ କରି ମହିଳାମାନଙ୍କ ବିରୁଦ୍ଧରେ କାର୍ଯ୍ୟ କରୁଛନ୍ତି ତା'ର ନଜିର ଦେଇ ମୋ ନିବନ୍ଧକୁ ବିତରଣ କରିଥିଲେ।

ମୋ ନିବନ୍ଧରେ ମୁଁ ଦୁଇଜଣ ମହିଳାଙ୍କ ପ୍ରତି ହୋଇଥିବା ଅନ୍ୟାୟ ସମ୍ପର୍କରେ ତଥ୍ୟ ପ୍ରମାଣ ଦେଇ ଏହି ଦୁଇଟି ନିବନ୍ଧ ଲେଖିଥିଲି । ଏଥିମଧ୍ୟରୁ ଜଣେ ହେଉଛନ୍ତି ସ୍ୱର୍ଗୀୟା ଅମିତା ପଟ୍ଟନାୟକ ଏବଂ ଅନ୍ୟଜଣକ ଲୁସ୍‌ନା ମହାପାତ୍ର । ଅମିତା ପଟ୍ଟନାୟକଙ୍କୁ ଯୌତୁକ ପାଇଁ ହତ୍ୟା କରାଯାଇଥିବା ଅଭିଯୋଗ ହୋଇଥିଲା ଏବଂ ତାଙ୍କ ଅଭିଭାବକମାନେ ଏହାର ସିବିଆଇ ତଦନ୍ତ ପାଇଁ ଓଡ଼ିଶା ହାଇକୋର୍ଟଙ୍କ ଦ୍ୱାରସ୍ଥ ହୋଇଥିଲେ । ଏକ ଡିଭିଜନ ବେଞ୍ଚ୍ ଏହାକୁ ସିବିଆଇ ତଦନ୍ତ ପାଇଁ ଏସ୍‌ଡିଏମ୍‌କୁ ନିର୍ଦ୍ଦେଶ ଦେଇଥିବା ପରେ ଅଭିଯୁକ୍ତମାନଙ୍କ ପକ୍ଷରୁ ଆବେଦନରେ ଏକ ସିଙ୍ଗଲ୍ ବେଞ୍ଚ୍ ଏହାକୁ ରହିତାଦେଶ କରିଦେଇଥିଲା । ଫଳରେ ଅମିତାଙ୍କ ପରିବାର ନ୍ୟାୟ ପାଇପାରି ନଥିଲେ।

ଅନ୍ୟ ଅଭିଯୋଗଟି ହେଲା ଲୁସ୍‌ନା ମହାପାତ୍ରଙ୍କୁ ଯୌତୁକ ପାଇଁ ଅତ୍ୟାଚାର ଏବଂ ଅପ୍ରାକୃତିକ ଯୌନ ସଙ୍ଗମ ପାଇଁ ବଳାତ୍କାର । ଲୁସ୍‌ନା ବିବାହ କରିଥିଲେ ପୂର୍ବତନ ଡି.ଜି. ଗୋବିନ୍ଦ ସେନାପତିଙ୍କ ପୁଅ ବିକ୍ରମ ସେନାପତିଙ୍କୁ । ବିବାହର ଆଠମାସ ପରେ ଲୁସ୍‌ନା କଟକ କ୍ୟାଣ୍ଟନମେଣ୍ଟ ରୋଡ଼ ଥାନାରେ ଅଭିଯୋଗ କରିଥିଲେ ଯେ ତାଙ୍କୁ ତାଙ୍କ ଶାଶୁ ଗୀତାଞ୍ଜଳି ସେନାପତି ଛାତରୁ ଠେଲି ହତ୍ୟା କରିବାକୁ ଉଦ୍ୟମ କରିଥିଲେ । ଏଥିରେ ତାଙ୍କ ସ୍ୱାମୀ ବିକ୍ରମ ସହଯୋଗ କରିଥିଲେ । ଦ୍ୱିତୀୟ ଅଭିଯୋଗଟି ହେଲା ତାଙ୍କ ସ୍ୱାମୀ ତାଙ୍କ ସହ ଅପ୍ରାକୃତିକ ଯୌନ ସମ୍ପର୍କ ସ୍ଥାପନ ପାଇଁ ଜବରଦସ୍ତ କରୁଛନ୍ତି । ସେ

ରାଜି ନହେବାରୁ ତାଙ୍କ ଉପରେ ଅତ୍ୟାଚାର କରୁଛନ୍ତି । ଏହି ଅଭିଯୋଗ ପାଇ ଡିଆଇଜି ସୁରେନ୍ଦ୍ର ନାଥ ସ୍ୱାଇଁ ମା' ପୁଅଙ୍କ ବିରୁଦ୍ଧରେ ଗିରଫ ପରୱାନା ଜାରି କଲେ । ମାତ୍ର ହାଇକୋର୍ଟ ମୁଖ୍ୟ ବିଚାରପତିଙ୍କ ନିର୍ଦ୍ଦେଶରେ ରାତି ଅଧରେ ଜଣେ ବିଚାରପତିଙ୍କ ଘରେ ସ୍ୱତନ୍ତ୍ର କୋର୍ଟ ହୋଇ ଏ ଦୁଇଜଣଙ୍କୁ ଜାମିନି ଦିଆଯାଇଥିଲା । ଏହି ଘଟଣା ସେତେବେଳେ ସମସ୍ତଙ୍କୁ ସ୍ତବ୍ଧ କରି ଦେଇଥିଲା ଏବଂ ସାଧାରଣରେ ଏହାକୁ ତୀବ୍ର ନିନ୍ଦା କରାଯାଇଥିଲା । ମୁଁ ଏହି ଦୁଇ ଘଟଣାକୁ ତୀବ୍ର ସମାଲୋଚନା କରି ଏହାଦ୍ୱାରା ହାଇକୋର୍ଟର ମର୍ଯ୍ୟାଦା ହାନି ଘଟିଲା ବୋଲି ମତ ଦେଇଥିଲି । ମୋ ନିବନ୍ଧକୁ ପ୍ରଶଂସା କରି ଅନେକ ପତ୍ର ଆସିଥିଲା ଏବଂ ସେସବୁ ପ୍ରକାଶ ପାଇଥିଲା । କେବ ସେତିକି ନୁହେଁ, କେତେକ ଅବସରପ୍ରାପ୍ତ ବିଚାରପତି ଏବଂ ଦୁଇଜଣ କାର୍ଯ୍ୟକାରୀ ବିଚାରପତି ମୋତେ ଟେଲିଫୋନ୍ କରି ବଧେଇ ଜଣାଇଥିଲେ । ସେମାନଙ୍କ ନାମ ଗୋପନ ରଖିବା ସର୍ତ୍ତରେ ସମସ୍ତେ କହିଲେ ଓଡ଼ିଶା ହାଇକୋର୍ଟରେ ରାତି ଅଧରେ ଜଣେ ବିଚାରପତିଙ୍କ ଘରେ ସ୍ୱତନ୍ତ୍ର କୋର୍ଟ ବସିବା ଏହା ପ୍ରଥମ ଘଟଣା । ସବୁଠାରୁ ବଡ଼ ଅଭିଯୋଗଟି ହେଲା ପୋଲିସ୍ ଏହି ଜାମିନିକୁ ତୀବ୍ର ବିରୋଧ କରିଥିଲା । ତା' ସତ୍ତ୍ୱେ ସମସ୍ତ ପ୍ରକାର ଆଇନ୍ କାନୁନ୍‌କୁ ଉଡ଼େଇ ଦେଇ ସେମାନଙ୍କୁ ଜାମିନି ଦିଆଗଲା ।

ମୋ ଲେଖା ଏଭଳି ପରିସ୍ଥିତି ସୃଷ୍ଟି କରିବ ବୋଲି ହାଇକୋର୍ଟ ଆଶା କରିନଥିଲେ । ହାଇକୋର୍ଟର ତତ୍‌କାଳୀନ କିଛି ବିଚାରପତିଙ୍କୁ ଖୁସି କରିବା ପାଇଁ ନ୍ୟାସନାଲ୍ ଲୟରସ୍ ଫୋରମ୍ ନାମରେ ଏକ ସଂସ୍ଥା ଆମମାନଙ୍କ ନାମରେ ଏକ ମୋକଦ୍ଦମା କରିଥିଲେ । ହାଇକୋର୍ଟର ଡିଭିଜନ ବେଞ୍ଚ୍ ବିଚାର କରି ମୋତେ ଏବଂ ସୌମ୍ୟ ପଟ୍ଟନାୟକଙ୍କୁ ଏକମାସ ଜେଲ୍ ଓ ଦଶହଜାର ଟଙ୍କା ଜୋରିମାନା କଲେ । ତା' ସହ ସର୍ତ୍ତ ରହିଲା ଯେ ଘଟଣା ଉପରେ ଦୁଃଖ ପ୍ରକାଶ କଲେ ଦଣ୍ଡାଦେଶ ବାତିଲ ହୋଇଯିବ । ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସୌମ୍ୟ ପଟ୍ଟନାୟକ ଜେଲ୍ ଯିବାପାଇଁ ଅଡ଼ି ବସିଥିଲେ । ଏ ଦଣ୍ଡାଦେଶ ହେଲା ୧୯୯୮ ସେପ୍ଟେମ୍ବର ମାସ ବେଳକୁ । ସେତେବେଳେ ମୋ ଘରେ କେବଳ ମୁଁ ଓ ମୋ ପତ୍ନୀ ରହୁଥାଉ । ବଡ଼ ଝିଅ ରୁପଲୁ(ସଂଘମିତ୍ରା)ର ବାହାଘର ସରିଥାଏ । ଦ୍ୱିତୀୟ ଝିଅ ମାମା(ଲୋପାମୁଦ୍ରା) ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ଆଇ.ଆର୍.ପି.ଏମ୍. (ଇଣ୍ଡଷ୍ଟ୍ରିଆଲ୍ ରିଲେସନ୍ ଓ ପରସୋନେଲ୍ ମ୍ୟାନେଜମେଣ୍ଟ)ରେ ଏମ୍.ଏ. ଶେଷ ବର୍ଷର ଛାତ୍ରୀ । ପୁଅ ଲକୁ(ସିଦ୍ଧାର୍ଥ) ଦିଲ୍ଲୀରେ ଆଇ.ଆଇ.ପି.ଏମ୍. ସଂସ୍ଥାରେ ଏମ୍.ବି.ଏ.ରେ ଆଡ଼ମିସନ ନେଇଥାଏ । ଏ ଅବସ୍ଥାରେ ପତ୍ନୀଙ୍କୁ ଘରେ ଏକା ଛାଡ଼ି ଜେଲ୍‌ରେ ରହିବାକୁ ଉଚିତ୍ ମଣିଲି ନାହିଁ । ଏହି ସମୟରେ ହାଇକୋର୍ଟର ଜଣେ ପରିଚିତ ବିଚାରପତିଙ୍କ ନିକଟରୁ ଟେଲିଫୋନ୍ ପାଇଲି । ସେ ମୋତେ କହିଲେ ଆପଣ ମୋ ଚେମ୍ବରକୁ ଆସି ଖାଲି ଦି'ପଦ କହିଦେବେ ଆଇ ଆମ ସରି ଫର୍ ଦି ମ୍ୟାଟର । ସବୁ ତୁଟିଯିବ । ମୁଁ ତାଙ୍କୁ ଧନ୍ୟବାଦ ଦେଇ କହିଲି ମୋତେ ଦିନେ ସମୟ ଦିଅନ୍ତୁ ।

ହଠାତ୍ ତା'ପରଦିନ ସକାଳୁ ଦେଖିଲି 'ସମ୍ବାଦ' କାଗଜର ପ୍ରଥମ ପୃଷ୍ଠାରେ କ୍ଷମା ପ୍ରାର୍ଥନା କରାଯାଇ ଏକ ସ୍ପଷ୍ଟିକରଣ ଦିଆଯାଇଛି । ମୁଁ ଆଶ୍ଚର୍ଯ୍ୟ ହେଲି । କାରଣ ସୌମ୍ୟ ପଟ୍ଟନାୟକ ଜେଲ୍‌ଯିବା ପାଇଁ ଜିଦ୍ ଧରିଥିଲାବେଳେ ହଠାତ୍ କ୍ଷମାପ୍ରାର୍ଥନା କିପରି ହେଲା ସେ ବିଷୟ ଜାଣିବା ପାଇଁ ସମ୍ବାଦର ମୁଖ୍ୟ ପରିଚାଳକ ଗୋପଭାଇ(ଗୋପବନ୍ଧୁ ଦାସ)ଙ୍କୁ ପଚାରିଲି । ସେ କହିଲେ ରାତିରେ ପୁଥିଲ୍(ନିରଞ୍ଜନ ପଟ୍ଟନାୟକ) ପ୍ରେସ୍‌କୁ ଆସି ବାବୁଲା(ସୌମ୍ୟରଞ୍ଜନ)କୁ ବୁଝେଇ କ୍ଷମାପ୍ରାର୍ଥନା କରାଇଲେ । ସମ୍ବାଦ କ୍ଷମାପ୍ରାର୍ଥନା ଯୋଗୁଁ ମୁଁ ସେ ଯାତ୍ରାରୁ ତ୍ରାହି ପାଇଲି । କିନ୍ତୁ ଏକଥା ସତ୍ୟ ସେ ଘଟଣାରେ ହାଇକୋର୍ଟଙ୍କର ଖୁବ୍ ବଦନାମ ହୋଇଥିଲା ।

## -ଜି-ଟି.ଭି. ନିର୍ବାଚନ ସମୀକ୍ଷା-

୧୯୯୫ ନିର୍ବାଚନ ବେଳେ ଜି-ଟିଭି ମୋତେ ଓଡ଼ିଶା ନିର୍ବାଚନ ସମୀକ୍ଷା କରିବା ପାଇଁ ଦାୟିତ୍ୱ ଦେଇଥିଲେ ।

ରାଜ୍ୟର ସମସ୍ତ ୧୪୭ଟି ନିର୍ବାଚନମଣ୍ଡଳୀକୁ ଯାଇ ଏହି ସମୀକ୍ଷା କରିବାକୁ କୁହାଯାଇଥିଲା । ହଠାତ୍ ଏପ୍ରକାର ଏକ ମର୍ଯ୍ୟାଦାଜନକ ଦାୟିତ୍ୱ ପାଇଁ ମୋତେ କିଏ ମନୋନୀତ କଲା ମୁଁ ପ୍ରଥମେ ଆଶ୍ଚର୍ଯ୍ୟ ହୋଇଥିଲି । ପ୍ରତି ନିର୍ବାଚନମଣ୍ଡଳୀ ପାଇଁ ଏକହଜାର ଟଙ୍କାର ପାରିଶ୍ରମିକ ସହ ମୋତେ ଏଥିପାଇଁ କ୍ୟାମେରା ଓ ସାହାଯ୍ୟକାରୀ ବନ୍ଦୋବସ୍ତ କରିବାକୁ କୁହାଯାଇଥିଲା । ଏହି ପତ୍ର ପାଇବା ପରେ ପରେ ଦିନେ ସକାଳୁ ସୁମନ ଅଫ୍‌ରୋଜଙ୍କ ପାଖରୁ ଫୋନ୍ ପାଇଲି । ସେତେବେଳେ ମୋବାଇଲ୍ ଫୋନ୍ ଉଦ୍ଭାବିତ ହୋଇନଥିଲା । ଅଫ୍‌ରୋଜ କଲିକତାରେ ଓ ଦିଲ୍ଲୀରେ ଆଜକାଲ୍ ଖବର କାଗଜର ଚିଫ୍ ରିପୋର୍ଟର ଥିଲେ । ପରେ ଚାକିରି ଛାଡ଼ି ଦେଇ ଜି-ଟିଭିର ଚିଫ୍ ନିଉଜ୍ ଏଡିଟର ରୂପେ ଯୋଗ ଦେଇଥିଲେ । ଅଫ୍‌ରୋଜ୍‌ଙ୍କ ସହ ମୋର ସେତେବେଳେ ବେଶ୍ ଘନିଷ୍ଠତା ଥିଲା । ସେ ଆଜ୍‌କାଲ୍‌ର ଦିଲ୍ଲୀ ପ୍ରତିନିଧି ଥିବାବେଳେ ଥରେ ପରିବାର ସହ ଭୁବନେଶ୍ୱର ଓ ପୁରୀ ଆସିଥିଲେ । ତାଙ୍କ ପତ୍ନୀ ନୟନା ସେତେବେଳେ ଜଣେ ମଡେଲ ଥିଲେ । ପରେ ସେ ଅଧ୍ୟାପିକା ଚାକିରିରେ ଯୋଗ ଦେଇଥିଲେ ।

ଆଫ୍‌ରୋଜ ମୋତେ କହିଲେ ଦାଦା- ମୋତେ ଜି-ଟିଭି ପୂର୍ବାଞ୍ଚଳର ନିର୍ବାଚନ ସମୀକ୍ଷା ଦାୟିତ୍ୱ ଦେଇଛି । ଓଡ଼ିଶା ପାଇଁ ଆପଣଙ୍କ ନାଁ ମୁଁ ସୁପାରିଶ୍ କରିଥିଲି । ସେମାନେ ଆପ୍ରୁଭ କରିଛନ୍ତି । ଆପଣଙ୍କ ପାଖକୁ କଲିକତାରୁ ଜଣେ ଫଟୋଗ୍ରାଫର ଯିବ । ଆପଣ ବିଶିଷ୍ଟ ନେତା ବିଶେଷ କରି ବିଜୁ ପଟ୍ଟନାୟକ, ଜାନକୀ ପଟ୍ଟନାୟକ, ମୁଖ୍ୟମନ୍ତ୍ରୀ ଏବଂ ଅନ୍ୟ ଯାହାକୁ ଠିକ୍ ମନେ କରିବେ ଇଣ୍ଟରଭିୟୁ କରିବେ । ଓଡ଼ିଶାର ବିଭିନ୍ନ ସ୍ଥାନର ସମ୍ବାଦ ଓ ସାକ୍ଷାତକାର ପାଇଁ ଛ'/ସାତଜଣ ଷ୍ଟ୍ରିଙ୍ଗର ଆପଏଣ୍ଟମେଣ୍ଟ କରିଦିଅନ୍ତୁ । ସେମାନେ ସାତଦିନ ମଧ୍ୟରେ ସେମାନଙ୍କ କ୍ୟାସେଟ୍ ଆପଣଙ୍କୁ ଦେବେ । ଆପଣ ସବୁ କ୍ୟାସେଟ୍ ଧରି କଲିକତା ଆସିଲେ ଏଇଠୁ ପେମେଣ୍ଟ ଚେକ୍ ନେଇଯିବେ । ତେବେ ଆଜି ଡାକରେ ଆପଣଙ୍କ ପାଖକୁ ପ୍ରାରମ୍ଭିକ ଖର୍ଚ୍ଚ ପାଇଁ ଦଶହଜାର ଟଙ୍କା ଡ୍ରାଫ୍ଟ ପଠାଯାଉଛି ।

ଆଫରୋଜ୍‌ଙ୍କ ଫୋନ୍ ପାଇବା ପରେ ଜାଣିଲି ପ୍ରକୃତ ଘଟଣା କ'ଣ ? ଗୋଟେ ରିୟଲ ଜର୍ଣ୍ଣାଲିଷ୍ଟିକ୍ ଆସାଇନ୍‌ମେଣ୍ଟ । ମୁଁ କାମରେ ଲାଗିଗଲି । ବାଲେଶ୍ୱର, ବ୍ରହ୍ମପୁର, ସମ୍ବଲପୁର, ରାଉରକେଲା, ଜୟପୁର, ଭବାନିପାଟଣା ଓ ବଲାଙ୍ଗିରର କେତେକ ସାମ୍ବାଦିକ ବନ୍ଧୁଙ୍କୁ ଟେଲିଫୋନ୍ କରି ସେମାନଙ୍କ ସାହାଯ୍ୟ ଚାହିଁଲି । ସମସ୍ତେ ଆନନ୍ଦରେ ରାଜି ହେଲେ । କାହା କାହା ସାକ୍ଷାତକାର ନିଆଯିବ ତା'ର ଏକ ତାଲିକା ହେଲା । ତିରିଶଟି ଜିଲ୍ଲାରୁ ଷାଠିଏ ଜଣଙ୍କର ଏବଂ ଭୁବନେଶ୍ୱର କଟକରୁ ସାତ/ଆଠଜଣଙ୍କର ସାକ୍ଷାତକାର ନେବାପାଇଁ ସ୍ଥିର ହେଲା । ବିଜୁ ପଟ୍ଟନାୟକ, ନନ୍ଦିନୀ ଶତପଥୀ, ଜାନକୀ ପଟ୍ଟନାୟକ, ଜୟନ୍ତୀ ପଟ୍ଟନାୟକ(ଏଆଇସିସି ମହିଳା ସେଲ୍ ଚେୟାରମ୍ୟାନ୍), ମୁଖ୍ୟମନ୍ତ୍ରୀ ହେମାନନ୍ଦ ବିଶ୍ୱାଳ, ପୂର୍ବତନ ମୁଖ୍ୟମନ୍ତ୍ରୀ ଗିରିଧର ଗମାଙ୍ଗ(କଂଗ୍ରେସ ନିର୍ବାଚନ କମିଟି ଚେୟାରମ୍ୟାନ୍), ଲୋକନାଥ ଚୌଧୁରୀ(ସିପିଆଇ) ଏବଂ ଶିବାଜୀ ପଟ୍ଟନାୟକ(ସିପିଏମ୍)ଙ୍କର ସାକ୍ଷାତକାର ନେବାପାଇଁ ସ୍ଥିର କରି ଆଫ୍‌ରୋଜଙ୍କୁ ଜଣାଇଦେଲି । ସେ କିଛି ସମୟପରେ ମୋତେ କନ୍‌ଫର୍ମ କଲେ ।

ସେତେବେଳେ ବିଜୁବାବୁ ବିଧାନସଭା ନିର୍ବାଚନରେ ଜଣତା ଦଳ ଏକାକୀ ଲଢ଼ିବା ପାଇଁ ସ୍ଥିର କରିଥିଲେ । ୧୯୯୦ ନିର୍ବାଚନରେ ଜନତା ଦଳ ସିପିଆଇ/ସିପିଏମ୍‌କୁ ସାଙ୍ଗରେ ନେଇ ନିର୍ବାଚନ ଲଢ଼ି ସଫଳ ହୋଇ ସରକାର ଗଢ଼ିଥିଲେ । ମାତ୍ର ୧୯୯୫ରେ ବିଜୁବାବୁ ଆଉ ତାଙ୍କ ପୁରୁଣା ଦୁଇ ବନ୍ଧୁଙ୍କୁ ନେଲେ ନାହିଁ । ତା'ର କାରଣ ହେଲା ବିଜୁବାବୁଙ୍କ ଶାସନ ସମୟରେ ସେମାନେ ନାନା ସୁବିଧା ନେବାପାଇଁ ଚେଷ୍ଟା କରିଥିଲେ । ସେଇଥିପାଇଁ ବିଜୁବାବୁ ବିଗିଡ଼ି ଯାଇଥିଲେ । ମୁଁ ଇଣ୍ଟରଭ୍ୟୁ ବେଳେ ବିଜୁବାବୁଙ୍କୁ ପ୍ରଶ୍ନ କରି ଆପଣ ଭାରତୀୟ ଜନତା ପାର୍ଟିକୁ ନେଇ ନିର୍ବାଚନ ଲଢୁନାହାନ୍ତି ? ବିଜୁବାବୁ କହିଲେ ଭାଜପାକୁ ନେଇ ଜନତା ଦଳର ଧର୍ମନିରପେକ୍ଷ ନୀତି ଆଉ ରହିବ ନାହିଁ । ମୁଁ କହିଲି କିନ୍ତୁ

୧୯୭୭ରେ ମୂଳ ଜନତା ଦଳରେ ତ ଜନସଂଘ ଅନ୍ୟତମ ଅଂଶୀଦାର ଥିଲା । ସେତେବେଳେ ଧର୍ମ ନିରପେକ୍ଷତା ନଷ୍ଟ ହେଲା ନାହିଁ କିପରି ?

ଜି-ଟିଭିରେ ପ୍ରାକ୍ ନିର୍ବାଚନ କଭରେଜ୍ ଉଭୟ ଆର୍ଥିକ ଓ ମାନସିକ ଦିଗରୁ ବେଶ୍ ଆତ୍ମ ସନ୍ତୋଷ ଲାଭ କରିଥିଲି । ପ୍ରାୟ ପାଞ୍ଚଦିନ ଧରି ଅନ୍ୟାନ୍ୟ ରାଜ୍ୟ ରିପୋର୍ଟ ସହ ଓଡ଼ିଶା ରିପୋର୍ଟ ଜାତୀୟ ସ୍ତରରେ ପ୍ରସାରିତ ହେଉଥାଏ । ସେଥିରେ ମୋ ନାଁ ମଧ୍ୟ ଘୋଷଣା କରାଯାଉଥାଏ । ମୋ ସାମ୍ବାଦିକ ଜୀବନର ଏହା ଏକ ଉଲ୍ଲେଖନୀୟ ଘଟଣା । ଏହି କାର୍ଯ୍ୟକ୍ରମରେ ମୁଁ ଚାଳିଶ ହଜାର ଟଙ୍କା ପାଇଥିଲି । ଦେଶର ବିଭିନ୍ନ ଆଡୁ ମୋତେ ଯେଉଁ ସାମ୍ବାଦିକ ଓ ଅନ୍ୟାନ୍ୟ ବନ୍ଧୁ ଜାଣିଥିଲେ(ଜାତୀୟ ସାମ୍ବାଦିକ ୟୁନିୟନର ସର୍ବଭାରତୀୟ ସଭାପତି ଥିବାବେଳେ ଅନେକ ରାଜ୍ୟର ସାମ୍ବାଦିକଙ୍କ ସହ ମୋର ବ୍ୟକ୍ତିଗତ ସମ୍ପର୍କ ଥିଲା) ସେମାନେ ଟେଲିଫୋନ୍ କରି ଅଭିନନ୍ଦନ ଜଣାଇଲେ । ଏ ଘଟଣା ପରେ ଏ.ଏନ୍.ଆଇ.(ଆସୋସିଏଟେଡ ନିଉଜ୍ ଅଫ୍ ଇଣ୍ଡିଆ), ନିଉଜ ଚାନେଲର ମାଲିକ ବନ୍ଧୁ ପ୍ରେମ ପ୍ରକାଶ ଓଡ଼ିଶାରେ ତାଙ୍କ ନିଉଜ ଚାନେଲ୍ ପାଇଁ କାମ କରିବାକୁ ପୁଣି ଅନୁରୋଧ କଲେ । ମୁଁ ପୂର୍ବରୁ ତାଙ୍କୁ ମନା କରିଥିଲି । ମାତ୍ର ଜି-ଟିଭିରେ ମୋର କଭରେଜ ଦେଖି କହିଲେ ଧଲ୍ ସାହେବ- ଆପ୍ କିଉଁ ମନା କର୍‌ତେ ହୈ ? ମୁଁ କହିଲି ପ୍ରେମଜୀ- ଅଭି ମେରା ଉମର ପଚପନ୍ ସାଲ୍ ହୈ । ଏ ଉମର୍‌ମେ କ୍ୟାମେରା ଲେକେ ଇଧର ଉଧର ଆନା ଯାନା ମେରେଲିୟେ ଫିଜିକାଲି ଔର୍ ମେଣ୍ଟାଲି ଠିକ୍ ନହିଁ ହୋଗା । କିଛିଦିନ ବାଦ୍ ତାଙ୍କ କ୍ୟାମେରାମ୍ୟାନ ଓ ଜଣେ ସବ୍ ଏଡିଟର ଆସି ଭୁବନେଶ୍ୱରରେ ପହଞ୍ଚିଲେ । ଓଡ଼ିଶାର କିଛି ବିଖ୍ୟାତ ପର୍ଯ୍ୟଟନସ୍ଥଳ ଓ ଭଲ ପ୍ରାକୃତିକ ଦୃଶ୍ୟ ଥିବା ସ୍ଥାନର ସୁଟିଂ କରିବା ପାଇଁ ସେମାନେ ଆସିଥିଲେ ଏବଂ ପ୍ରେମଜୀ ମୋତେ ସେମାନଙ୍କୁ ସାହାଯ୍ୟ କରିବା ପାଇଁ ଅନୁରୋଧ କରିଥିଲେ । ବାଧ ହୋଇ ମୁଁ ସେମାନଙ୍କୁ ନନ୍ଦନକାନନ, ଧଉଳିଗିରି, ଖଣ୍ଡଗିରି-ଉଦୟଗିରି, ଶିମିଳିପାଳ, ଖଣ୍ଡାଧାର ଏବଂ କେଉଁଝରର କେତୋଟି ଜଳପ୍ରପାତ ଓ ଜଙ୍ଗଲ-ପାହାଡ଼ ଦୃଶ୍ୟ ସୁଟିଂ କରିବା ପାଇଁ ସାହାଯ୍ୟ କରିଥିଲି । ଏହାସହ ବାଲେଶ୍ୱର ଚାନ୍ଦିପୁର, ଚିଲିକା, ପୁରୀ, ସମୁଦ୍ର ବେଳାଭୂମି, ଗୋପାଳପୁର ବେଳାଭୂମି ଆଦି ସ୍ଥାନକୁ ନେଇ ସୁଟିଂ କରାଇ ତା'ର ସ୍କ୍ରିପ୍ଟ ମଧ୍ୟ ଲେଖିଥିଲି । ଏଥିପାଇଁ ପ୍ରାୟ ସତର/ଅଠର ଦିନ ସମୟ ଲାଗିଥିଲା । ସେମାନେ ଫେରିଯିବା ପରେ ପ୍ରେମ ପ୍ରକାଶ ମୋତେ ଟେଲିଫୋନ୍ କରି କେବଳ ଧନ୍ୟବାଦ ଦେଲେ ନାହିଁ, ଓଡ଼ିଶାର ପ୍ରାକୃତିକ ଦୃଶ୍ୟଗୁଡ଼ିକ ଆମେରିକାନ ଟେଲିଭିଜନରେ କିପରି ପ୍ରାଧାନ୍ୟ ଲାଭ କରିଛି ତାହା କହିଥିଲେ । ମାସକ ପରେ ଦିନେ ହଠାତ୍ ମୁଁ ପ୍ରେମ ପ୍ରକାଶଙ୍କ ଠାରୁ ପଚିଶ ହଜାର ଟଙ୍କାର ଏକ ଡ୍ରାଫ୍ଟ ପାଇଲି । ଏତେ ଟଙ୍କା ପାଇ ମୁଁ ଆଶ୍ଚର୍ଯ୍ୟ ହୋଇଗଲି । କାରଣ ମୋର ସେଭଳି କିଛି ଅବଦାନ ନଥିଲା । ମୁଁ କେବଳ ସ୍ଥାନ ନିରୂପଣ ଓ ସବୁ ସ୍ଥାନର ଉତ୍କର୍ଷତା ସମ୍ପର୍କରେ ଅଧ୍ୟୟନ କରି ତା'ର ସ୍କ୍ରିପ୍ଟ ଲେଖିଥିଲି । ତେବେ ସେ ସ୍କ୍ରିପ୍ଟକୁ ନିର୍ଭୁଲ ଇଂରାଜୀରେ ଲେଖିବା ପାଇଁ ଜଣେ ଇଂରାଜୀ ଅଧ୍ୟାପକଙ୍କ ସାହାଯ୍ୟ ନେଇଥିଲି ।

ଜି-ଟିଭିରେ ମୁଁ ଓଡ଼ିଶା ପାଇଁ ଯେଉଁ ଭବିଷ୍ୟବାଣୀ କରିଥିଲି ତାହା ଏକ ପ୍ରକାର ସତ୍ୟ ହେଲା । ମୁଁ କେଉଁଦଳ କେତେ ପାଇବ ବୋଲି ନିର୍ଦ୍ଦିଷ୍ଟ ସଂଖ୍ୟା କହି ନଥିଲେ ମଧ୍ୟ ଜନତା ଦଳ ୫୦ରୁ ୬୦ଟି ସ୍ଥାନ, କଂଗ୍ରେସ ୮୦ରୁ ୯୦ଟି ସ୍ଥାନ ପାଇବ ବୋଲି ଭବିଷ୍ୟବାଣୀ କରିଥିଲି । ନିର୍ବାଚନରେ କଂଗ୍ରେସ ୮୦ଟି ସ୍ଥାନ, ଜନତା ଦଳ ୪୬ଟି ସ୍ଥାନ ପାଇଥିଲେ । ଏହାବ୍ୟତୀତ ଭାରତୀୟ ଜନତା ପାର୍ଟି୯ଟି ଏବଂ ସ୍ୱାଧୀନ ସଭ୍ୟ ୬ଟି ସ୍ଥାନ ପାଇଥିଲେ । ବିଜୁବାବୁ ଭୁବନେଶ୍ୱର ବିଧାନସଭା ନିର୍ବାଚନମଣ୍ଡଳୀରୁ ନିର୍ବାଚନ ଲଢ଼ିଥିଲେ । ତାଙ୍କର ମୁଖ୍ୟ ପ୍ରତିଦ୍ୱନ୍ଦ୍ୱୀ ଥିଲେ ଭାରତୀୟ ଜନତା ପାର୍ଟିର ସୌମ୍ୟରଞ୍ଜନ ପଟ୍ଟନାୟକ । ବିଜୁବାବୁ ଏହି ନିର୍ବାଚନରେ ୯୨ ହଜାର ୨୩୯ଟି ଭୋଟ୍

ପାଇଥିବାବେଳେ ସୌମ୍ୟ ରଞ୍ଜନ ପଟ୍ଟନାୟକ ୫୫ହଜାର ୫୬୦ ଭୋଟ୍ ପାଇଥିଲେ । ବିଜୁବାବୁଙ୍କ ଜୀବନର ଏହା ହେଉଛି ସର୍ବଶେଷ ନିର୍ବାଚନ ।

ବିଜୁବାବୁ ୧୯୯୫ ନିର୍ବାଚନରେ ତାଙ୍କ ଜନତାଦଳ ପୁଣି କ୍ଷମତାକୁ ଫେରିବ ବୋଲି ଦୃଢ଼ ଆଶା କରିଥିଲେ । ବସ୍ତୁତଃ ତାଙ୍କୁ ମୁଁ କରିଥିବା ସାକ୍ଷାତକାରରେ ସେ ଏକଥା ଏକାଧିକବାର ଦୋହରାଇଥିଲେ । ତାଙ୍କର ଓଡ଼ିଶା ଲୋକଙ୍କ ଉପରେ ଗଭୀର ବିଶ୍ୱାସ ଥିଲା । ମୁଁ ଯେତେବେଳେ ତାଙ୍କୁ ପ୍ରଶ୍ନ କରିଥିଲି ସେ କାହିଁକି ଏଭଳି ବିଶ୍ୱାସ କରୁଛନ୍ତି ଯେ ଲୋକେ ପୁଣି ତାଙ୍କୁ କ୍ଷମତାକୁ ଫେରାଇବେ ? ସେ କହିଥିଲେ କାରଣ ସେ ବିଶ୍ୱାସ କରନ୍ତି ଓଡ଼ିଶାକୁ ଦିଗ୍‌ଦର୍ଶନ ଦେବା କ୍ଷେତ୍ରରେ ସେ ହିଁ ଏକମାତ୍ର ନେତା । ଓଡ଼ିଶାକୁ ଆଉ ଓଡ଼ିଆଙ୍କୁ ତାଙ୍କର ଶ୍ରଦ୍ଧା ଆଉ ମୁଣ୍ଡ ଉପରକୁ ଟେକି ଚାଲିବାର ଯେଉଁ ନେତୃତ୍ୱ ସେ ଦେଇ ପାରିବେ ତାହା ଓଡ଼ିଶାର ଅନ୍ୟ କୌଣସି ନେତା ଦେଇପାରିବେ ନାହିଁ । ମୁଁ ବିଜୁବାବୁଙ୍କ ଏହି ବକ୍ତବ୍ୟରେ ଚମକୃତ ହୋଇଥିଲି । ନିଜ ଉପରେ ଗଭୀର ଆତ୍ମବିଶ୍ୱାସ ନଥିଲେ କେହି ଏ ପ୍ରକାର ମନ୍ତବ୍ୟ ଦେଇପାରିବ ନାହିଁ । ମାତ୍ର ଓଡ଼ିଶା ଲୋକେ ତାଙ୍କ ବିଶ୍ୱାସ ମର୍ଯ୍ୟାଦା ଦେଲେ ନାହିଁ । ବିଜୁବାବୁ ନିର୍ବାଚନ ଫଳ ଦେଖି ଭାଙ୍ଗି ପଡ଼ିଥିଲେ । ମୁଁ ନିର୍ବାଚନ ପରେ ଥରେ ତାଙ୍କୁ ଯେତେବେଳେ ସାକ୍ଷାତ କରି ଆଲୋଚନା କରୁଥିଲି ସେ ଦୁଃଖରେ କହିଲେ It is not his defect. It is Orissa peoples's defect.

## -ଦୁଃସାହାସୀ ବିଜୁ ପଟ୍ଟନାୟକ-

ବିଜୁବାବୁ ବିରୋଧୀ ଦଳର ନେତାରୂପେ ଦାୟିତ୍ୱ ଗ୍ରହଣ କରିଥିଲେ । ତେବେ ତାଙ୍କର ବିଧାନସଭାରେ ମନ ଲାଗୁ ନଥିଲା । ଅନେକ ସମୟରେ ସେ ଦିଲ୍ଲୀ ଚାଲି ଯାଉଥିଲେ । ତାଙ୍କ ଦେହ ଭଲ ରହୁନଥିଲା । ମାନସିକ ସ୍ତରରେ ମଧ୍ୟ ସେ ଅଶାନ୍ତ ଥିଲେ ।

ଆମ ଆତ୍ମଜୀବନୀରେ ବିଜୁବାବୁଙ୍କ ବିଷୟରେ ବର୍ଣ୍ଣନା କରିବାର ଏକ ମାତ୍ର ହେତୁ ହେଲା ଇତିହାସରେ ବିଜୁ ପଟ୍ଟନାୟକଙ୍କର ପଟାନ୍ତର ନାହିଁ । ସ୍ୱାଧୀନତା ପରେ ତାଙ୍କ ପଚାଶ ବର୍ଷର ଜୀବନ କାଳ(୧୯୪୭-୧୯୯୭) ମଧ୍ୟରେ କ୍ଷମତା ରାଜନୀତିରେ ସେ ଥିଲେ ମାତ୍ର ସାଢ଼େ ନ'ବର୍ଷ । ୧୯୬୧ରୁ ୬୩ ମୁଖ୍ୟମନ୍ତ୍ରୀ, ୧୯୭୭ରୁ ୧୯୮୦(ଅଢ଼େଇ ବର୍ଷ କେନ୍ଦ୍ରମନ୍ତ୍ରୀ) ଏବଂ ୧୯୯୦ରୁ ୧୯୯୫(ମୁଖ୍ୟମନ୍ତ୍ରୀ) । ମାତ୍ର ବିଜୁ ପଟ୍ଟନାୟକ ଥିଲେ ସମଗ୍ର ଦେଶରେ ଓଡ଼ିଶାର ପରିଚୟ । ଅନେକ ସମୟରେ ତାଙ୍କ ନାମ ହିଁ ଓଡ଼ିଶାକୁ ଚିହ୍ନାଉଥିଲା ।

ତାଙ୍କ ମନରେ କଳିଙ୍ଗ ସାମ୍ରାଜ୍ୟ ଥିଲା ଏକ ଦୁରନ୍ତ ସ୍ୱପ୍ନ । ସେ ଚାହୁଁଥିଲେ ଓଡ଼ିଶାକୁ କଳିଙ୍ଗରେ ରୂପାନ୍ତରିତ କରିବା ପାଇଁ । ସେଇଥିପାଇଁ ସେ ଗଢ଼ି ତୋଳିଥିବା ତାଙ୍କର ବହୁ ମାନସ ସନ୍ତାନଙ୍କ ନାମକରଣ କଳିଙ୍ଗ ଦେଇଥିଲେ । କଳିଙ୍ଗ ଟ୍ୟୁବସ୍, କଳିଙ୍ଗ ଆଇରନ୍ ୱାର୍କସ୍, କଳିଙ୍ଗ ରେଫ୍ରିଜେଟର, କଳିଙ୍ଗ ଏୟାର ଲାଇନ୍ସ, କଳିଙ୍ଗ ଫାଉଣ୍ଡେସନ୍ ଟ୍ରଷ୍ଟ, କଳିଙ୍ଗ ପୁରସ୍କାର ଓ କଳିଙ୍ଗ ଖବର କାଗଜ ଏଥିମଧ୍ୟରେ ଅନ୍ୟତମ । ତାଙ୍କର ଜୀବନାଭିମୁଖୀର ପ୍ରଧାନ ଜନନାୟକ ଥିଲେ ସମ୍ରାଟ ଖାରବେଳ ଏବଂ ଓଡ଼ିଆ ଜାତି ପ୍ରାଣରେ ଖାରବେଳ ସ୍ପନ୍ଦନ ସୃଷ୍ଟି କରିବା ଥିଲା ତାଙ୍କର ଜୀବନ ଦର୍ଶନ । ବିଜୁବାବୁଙ୍କ ଗାଡ଼ିର ନାମ ଥିଲା କଳିଙ୍ଗ ରଥ । ସେଇ କଳିଙ୍ଗ ରଥରେ ସେ ଓଡ଼ିଶା ପ୍ରଦକ୍ଷିଣ କରୁଥିଲେ । ତାଙ୍କର ମନୋବଳ ଥିଲା ଅଭୁତପୂର୍ବ । ଗୋଟିଏ ଘଟଣା ଏଠାରେ ଉଲ୍ଲେଖ କରୁଛି ।

୧୯୯୪ ମସିହା ମେ' ମାସର ପ୍ରଚଣ୍ଡ ରୌଦ୍ରତାପ ସମୟ । ସମୟ ଅପରାହ୍ଣ ସାଢ଼େ ୩ଟା । ଚାରିତାଲାରେ

ଥିବା ପ୍ରେସ୍‌ରୁମରୁ ମୁଁ ଫେରୁଛି । ବିଦ୍ୟୁତ୍‌ଶକ୍ତି ବନ୍ଦ ଯୋଗୁଁ ଲିଫ୍ଟ ଅଚଳ । ମୁଁ ଏକତାଲାରେ ପହଞ୍ଚି ଦେଖିଲି ବିଜୁବାବୁ ପାହାଚ ଉପରକୁ ଉଠୁଛନ୍ତି । ମୁଁ ଆଶ୍ଚର୍ଯ୍ୟ ହେଲି । କାରଣ ଓପନ୍ ହାର୍ଟ ସର୍ଜରୀ ପରେ ସିଡ଼ିରେ ଉଠିବା ମନା । ମୁଁ ପଚାରିଲି ସାର୍- ଆପଣ ଏ କ'ଣ କରୁଛନ୍ତି ? ବିଜୁବାବୁ ଗୋଟିଏ ପାହାଚରେ ଚଢ଼ି ଟିକେ ଠିଆ ହୋଇ ସାମାନ୍ୟ ବିଶ୍ରାମ ନେଇ ଉପର ପାହାଚକୁ ଚଢ଼ିଲେ । କହିଲେ ବ୍ଲଡ଼ି ଲିଫ୍ଟ ଅଫ୍ । ଦୁଇଟା ମିଟିଂ ଅଛି । ମୁଁ କହିଲି ଆପଣ ଏଇ ଫାଷ୍ଟଫ୍ଲୋର୍‌ରେ କାହା ରୁମ୍‌ରେ ବସିଯା'ନ୍ତୁ । ବିଜୁବାବୁ ମନା କଲେ । ପରିଶ୍ରମଜନିତ ବିରକ୍ତିରେ କହିଲେ- ଡୋଣ୍ଟ ଟକ୍ କମ୍ ଉଇଥ୍ ମି । ସେତେବେଳକୁ ବାରଣ୍ଡାର ଦୁଇ ପାର୍ଶ୍ୱରେ ଥାଟ ପଟଳ ଭିଡ଼ । ସମସ୍ତେ ଚାହିଁ ରହିଛନ୍ତି ବିଜୁବାବୁଙ୍କୁ । ଅଠସ୍ତରୀ ବର୍ଷ ବୟସ୍କ ଓପନ୍ ହାର୍ଟ ସର୍ଜରୀ ହୋଇଥିବା ଜଣେ ଲୋକ ପକ୍ଷରେ ଏହା ସମ୍ଭବ ? ମାତ୍ର ଦୁଃସାହସୀ ବିଜୁ ପଟ୍ଟନାୟକଙ୍କର ସେଥିପ୍ରତି ଖାତିର ନାହିଁ । ସବୁଦିନ ଆସିବା ଆଉ ଯିବାବେଳେ ସଚିବାଳୟର ଅନେକ କର୍ମଚାରୀ ତଳମହଲାର ବାରଣ୍ଡାର ଦୁଇପଟେ ଠିଆ ହୋଇ ବିଜୁବାବୁଙ୍କୁ ଦେଖନ୍ତି । ମୁଁ ଥରେ କୌତୁହଳୀ ହୋଇ ସଚିବାଳୟର ଦୁଇଜଣ କର୍ମଚାରୀ ବନ୍ଧୁଙ୍କୁ ଏକଥା ପଚାରିଥିଲି । ମତେ ସେ ଦୁହେଁ ଯାହା ଉତ୍ତର ଦେଲେ ମୁଁ ସେଥିରେ ବୋକା ବନିଗଲି । ଜଣେ କହିଲେ ଆପଣ ସବୁଦିନେ ମନ୍ଦିରକୁ କାହିଁକି ଯା'ନ୍ତି ? ଥରେ ଠାକୁରଙ୍କୁ ଦେଖିଦେଲେ ତ ହେଲା । ସେହିଭଳି ବିଜୁବାବୁ ଏଭଳି ଏକ ବ୍ୟକ୍ତିତ୍ୱ ଯାହାଙ୍କୁ ଯେତେଥର ଦେଖିଲେ ମନ ପୁରେନାହିଁ । ଏ ଏକ ଅଦ୍ଭୁତ ଫିଲୋସଫି ।

ବାଟ ହୁଡ଼ିଗଲୁ । ବିଜୁବାବୁ ସେଇମିତି ବିଶ୍ରାମ ନେଇନେଇ ଚାରିତାଲାରେ ଥିବା ତାଙ୍କ ଅଫିସ୍‌କୁ ଗଲେ । ଅଦ୍ଭୁତ ମାନସିକ ଶକ୍ତି । ସେତେବେଳେ ମୁଖ୍ୟମନ୍ତ୍ରୀଙ୍କ ଅଫିସ୍ ପାଇଁ ଛୋଟ ଜେନେରେଟରଟିଏ ଥିଲା । ଯେଉଁଥିରେ ଦୁଇଟି ଫ୍ୟାନ୍ ଓ ତିନୋଟି ବାଲ୍‌ବଲାଇଟ୍ ଚାଲିବ ଓ ଜଳିବ । ବିଜୁବାବୁ କିଛି ସମୟ ହାଲିଆ ହୋଇ ବସିଗଲେ । ଛାତି କଷ୍ଟ ହେଉଥାଏ । କାଶ ହେଲା । କଣ୍ଠନଳୀରୁ ଖଙ୍କାର ବାହାରିଲା । ଟେବୁଲ୍‌ରେ ଥିବା କାଗଜ ରୁମାଲ୍‌ରେ ତାକୁ ପୋଛି ବାସ୍‌କେଟ୍‌ରେ ପକାଇଲେ । ଦଶମିନିଟ୍ ପରେ ସାମାନ୍ୟ ସୁସ୍ଥବୋଧ କଲେ । ମୁଁ କହିଲି ସାର୍ ଆପଣ ଏଭଳି ରିସ୍କନେବା ଉଚିତ୍ ହୋଇନି । ସେତେବେଳକୁ ଆଉ ଦି'ଜଣ ସାମ୍ବାଦିକ ପହଞ୍ଚି ଯାଇଥିଲେ । ବିଜୁବାବୁ ମଝିରେ ଖୁଁ ଖୁଁ ହୋଇ ପୁଣି କାଶିଲେ । ସାମାନ୍ୟ ବିଶ୍ରାମ ନେଲେ । କହିଲେ ସିଗାରେଟ୍ ମୋ ଭିତରଟାକୁ ସମ୍ପୂର୍ଣ୍ଣ ନଷ୍ଟ କରିଦେଇଛି । ମୋ ହାର୍ଟରେ ବା ଲଙ୍ଗ୍‌ସରେ କିଛି ନାହିଁ । ଆମେ କହିଲୁ ଆପଣ ବିଦେଶକୁ ଚେକ୍-ଅପ୍ ପାଇଁ ଯାଉନାହାନ୍ତି ? ବିଜୁବାବୁ ସାମାନ୍ୟ ହସିଲେ । କହିଲେ ଏତେଦିନ ଚାଲି ଆସିଲାଣି । ଆଉ ଯେତେଦିନ ଚାଲିବ ଚାଲୁ । ଅଦ୍ଭୁତ ଖିଆଲ-ବିଚିତ୍ର ମଣିଷ । ଏହି ହେଉଛନ୍ତି ବିଜୁ ପଟ୍ଟନାୟକ ।

ବିଜୁବାବୁଙ୍କ କଥା କହିବାବେଳେ ସ୍ୱତଃ ଜରୁରୀକାଳୀନ ପରିସ୍ଥିତି କଥା ମନକୁ ଆସିଯାଏ । ଜରୁରୀକାଳୀନ ପରିସ୍ଥିତି ଓଡ଼ିଶାର ଅନେକ ବଡ଼ବଡ଼ ନେତାଙ୍କ ମୁଖା ଖୋଲି ଦେଇଥିଲା । ଇନ୍ଦିରା ଗାନ୍ଧୀଙ୍କୁ ବିରୋଧ କରି କିମ୍ବା ଓଡ଼ିଶାର ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀଙ୍କୁ ବିରୋଧ କରୁଥିବା ଅନେକ ବଡ଼ବଡ଼ ନେତା ଜେଲ୍ ନଯିବା ପାଇଁ ଅତି ଅପମାନଜନକ ଭାବେ ତାଙ୍କ ଶରଣାପନ୍ନ ହୋଇଥିଲେ । ଜଣେ ସାମ୍ବାଦିକ ଭାବେ ମୁଁ ସେତେବେଳେ ଏ ଘଟଣାର ପ୍ରତ୍ୟକ୍ଷ କରିଥିଲି ।

## -ଜରୁରୀ ପରିସ୍ଥିତି-

୧୯୭୫ ଜୁନ୍ ୨୫ ତାରିଖ ମଧ୍ୟରାତ୍ରିରେ ଦେଶରେ ଜରୁରୀକାଳୀନ ପରିସ୍ଥିତି ଜାରି କରାଗଲା । ସମ୍ବିଧାନର ୩୯ତମ ସଂଶୋଧନ କରି ସାଧାରଣ ଲୋକଙ୍କର ମୌଳିକ ଅଧିକାର ଲୋପ କରି ଦିଆଗଲା । ସକାଳୁ ସକାଳୁ (ଜୁନ୍ ୨୬ ତାରିଖ) ଭୁବନେଶ୍ୱରରେ ପୋଲିସ୍ ଫ୍ଲାଗ୍ ମାର୍ଚ୍ଚ ହେଲା । ସାଧାରଣ ଲୋକେ ଭୟଭୀତ ହୋଇପଡ଼ିଲେ । ସେତେବେଳେ ନନ୍ଦିନୀ ଶତପଥୀ ଓଡ଼ିଶାର ମୁଖ୍ୟମନ୍ତ୍ରୀ । ତାଙ୍କର ସଚିବ ଥିଲେ ରମାକାନ୍ତ ରଥ । ଜରୁରୀ ପରିସ୍ଥିତି କ'ଣ ସେତେବେଳେ ଓଡ଼ିଶାରେ କେହି ଜାଣି ନଥିଲେ । ଜୁନ୍ ୨୬ ତାରିଖରେ ସୂଚନା- ଲୋକ ସମ୍ପର୍କ ସଚିବ ଏ.ଏନ୍. ତିୱାରୀ ସାମ୍ବାଦିକମାନଙ୍କୁ ଡାକି ଜରୁରୀ ପରିସ୍ଥିତି ସମ୍ପର୍କରେ ସୂଚନା ଦେବା ସଙ୍ଗେସଙ୍ଗେ ଖବର ଉପରେ ସେନ୍ସରସିପ୍ ଲଗା ଯାଇଥିବା ବିଷୟ ପ୍ରକାଶ କରିଥିଲେ । ତିୱାରୀ ସାହେବ ଓଡ଼ିଶାରେ ମୁଖ୍ୟ ସେନ୍ସର ଅଧିକାରୀ ଥିଲେ । ସେତେବେଳେ କୌଣସି ସରକାରୀ ବିରୋଧୀ ସମ୍ବାଦ କିମ୍ବା ଜନସାଧାରଣଙ୍କୁ ଜରୁରୀକାଳୀନ ପରିସ୍ଥିତିର ବିରୋଧ କରିବାଭଳି ସମ୍ବାଦ କିମ୍ବା ସାଧାରଣ ଲୋକଙ୍କୁ କୌଣସି ବିଷୟରେ ଉସ୍କେଇବା ଭଳି କୌଣସି ସମ୍ବାଦ ଦିଆଯାଇ ପାରିବ ନାହିଁ ବୋଲି ସେ ଦର୍ଶାଇଥିଲେ ।

ମୁଁ ସେତେବେଳେ 'ମାତୃଭୂମି'ର ଭୁବନେଶ୍ୱର ସମ୍ବାଦଦାତା ଥିଲି । ଜରୁରୀ ପରିସ୍ଥିତି କିମ୍ବା ସରକାରୀ ବିରୋଧି ସମ୍ବାଦ ମାତୃଭୂମିରେ ଯିବା ପ୍ରଶ୍ନ ନଥିଲା ଏଇଥିପାଇଁ ଯେ ମାତୃଭୂମି ସମ୍ପାଦକ ତଥା ସତ୍ତ୍ୱାଧିକାରୀ ବିଚିତ୍ରାନନ୍ଦ କର ନନ୍ଦିନୀ ଦେବୀଙ୍କ ସମର୍ଥକ ଥିଲେ । ୧୯୭୪ ନିର୍ବାଚନରେ ନନ୍ଦିନୀ ଶତପଥୀଙ୍କ ଅନୁରୋଧରେ ସେ କଟକ ସହରରୁ କଂଗ୍ରେସ ସମର୍ଥୀତ ସ୍ୱାଧୀନ ପ୍ରାର୍ଥୀ ରୂପେ ପ୍ରତିଦ୍ୱନ୍ଦ୍ୱିତା କରିଥିଲେ । ମାତ୍ର ଜିତି ପାରି ନଥିଲେ । ତାଙ୍କ ବିରୁଦ୍ଧରେ ଶ୍ରୀକାନ୍ତ ପଣ୍ଡା ପ୍ରଗତିଦଳର ପ୍ରାର୍ଥୀ ରୂପେ ବିଜୟ ଲାଭ କରିଥିଲେ । ବିଚିତ୍ରାନନ୍ଦ କର ନନ୍ଦିନୀ ଶତପଥୀଙ୍କ ସମର୍ଥକ ବୋଲି ପ୍ରଚାର ହୋଇଯିବା ଫଳରେ ମାତୃଭୂମିର ପ୍ରସାର ସଂଖ୍ୟା କମିଗଲା । ତେବେ ମାତୃଭୂମି ସରକାରଙ୍କ ସମର୍ଥକ ପ୍ରଚାର ହୋଇଥିବାରୁ ମୋର ଅଫିସର ମହଲରେ କିଛିଟା ପ୍ରଭାବ ବଢ଼ିଥିଲା । ନନ୍ଦିନୀ ଦେବୀଙ୍କ ସହ ମୋର ବ୍ୟକ୍ତିଗତ ସମ୍ପର୍କ ମଧ୍ୟ ଥିଲା । ତାଙ୍କୁ ଯେତେବେଳେ ଆବଶ୍ୟକ ଦେଖା କରିବାରେ ମୋର ଅସୁବିଧା ନଥିଲା । ନନ୍ଦିନୀ ଦେବୀଙ୍କ ମନ୍ତ୍ରିମଣ୍ଡଳରେ ଡାକ୍ତର କୃପାସିନ୍ଧୁ ଭୋଇ, ଦିବ୍ୟଲୋଚନ ଶେଖର ଦେଓ ଏବଂ ବ୍ରହ୍ମାନନ୍ଦ ବିଶ୍ୱାଳ ମୋର ଅତ୍ୟନ୍ତ ଘନିଷ୍ଠ ଥିଲେ । ବିଶେଷ କରି ଡାକ୍ତର ଭୋଇ ଭୁବନେଶ୍ୱରରେ ଥିବା ସମୟରେ ସନ୍ଧ୍ୟାରେ ତାଙ୍କ ସରକାରୀ ବାସଭବନରେ ଆଡ୍ଡା ହେଉଥିଲା ।

ଜରୁରୀ ପରିସ୍ଥିତି ଜାରି ହେବା ସମୟରେ ଜୁନ୍ ୨୬ ତାରିଖରୁ ବିରୋଧୀ ଦଳର ବଡ଼ ବଡ଼ ନେତାମାନଙ୍କୁ ଗିରଫ କରାଯାଇ ଜେଲ୍‌ରେ ରଖାଗଲା । କିଏ କିଏ ଗିରଫ ହେଲେ ସେ ଖବର ପ୍ରଥମ ଦିନେ/ଦୁଇଦିନ ମଧ୍ୟରେ ଜଣାପଡୁ ନଥିଲେ ମଧ୍ୟ ପରେ ଖୋଜ ଖବର ନେଇ ଜଣାପଡୁଥିଲା । ସେତେବେଳେ ଓଡ଼ିଶା ବିଧାନସଭାରେ ବିରୋଧୀ ଦଳର ନେତାଥିଲେ ବିଜୁ ପଟ୍ଟନାୟକ । ୧୯୭୪ ନିର୍ବାଚନରେ ଓଡ଼ିଶା ବିଧାନ ସଭାର ସଭ୍ୟ ସଂଖ୍ୟା ୧୪୦ରୁ ୧୪୭କୁ ବୃଦ୍ଧି ପାଇଥିଲା । ନିର୍ବାଚନମଣ୍ଡଳୀ ପୁନର୍ଗଠନ ପରେ ବିଧାନସଭାରେ ସାତୋଟି ଏବଂ ଲୋକସଭାର ଗୋଟିଏ ଆସନ ବୃଦ୍ଧିପାଇ କୋଡ଼ିଏରୁ ଏକୋଇଶ ହୋଇଥିଲା ।

ଜରୁରୀ ପରିସ୍ଥିତି ଜାରି ବେଳେ ବିଜୁବାବୁ ଦିଲ୍ଲୀରେ ଥିଲେ । ତାଙ୍କୁ ତାଙ୍କ ତିନି ନମ୍ବର ଆଓରଙ୍ଗଜେବ ରୋଡ୍ ବାସଭବନରୁ ଗିରଫ କରାଯାଇଥିବା କଥା ମୋତେ ନୀଳମଣିବାବୁ କହିଥିଲେ । ତାଙ୍କ ସହ ଜୟପ୍ରକାଶ ନାରାୟଣଙ୍କୁ

ମଧ୍ୟ ଗିରଫ କରାଯାଇଥିଲା । ଦିଲ୍ଲୀରୁ ସେତେବେଳେ ରବି ରାୟଙ୍କୁ ମଧ୍ୟ ଗିରଫ କରାଯାଇଥିଲା । ଓଡ଼ିଶାରୁ ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ, ହରିଶ୍ଚନ୍ଦ୍ର ବକ୍ସିପାତ୍ର, ତ୍ରିଲୋଚନ କାନୁନ୍‌ଗୋ, ପ୍ରତାପ ମହାନ୍ତି, ପ୍ରହଲ୍ଲାଦ ମଲ୍ଲିକ, ବାଙ୍କବିହାରୀ ଦାସ, ନଟବର ପ୍ରଧାନ, ଅଇଁଠୁ ସାହୁ ପ୍ରମୁଖ ବହୁ ନେତାଙ୍କୁ ପର୍ଯ୍ୟାୟକ୍ରମେ ଗିରଫ କରାଯାଇଥିଲା ।

ଜରୁରୀ ପରିସ୍ଥିତି ସମୟରେ ଯେଉଁ ଦୁଇଜଣ ବିଶିଷ୍ଟ ନେତାଙ୍କୁ ଗିରଫ କରାଯାଇ ନଥିଲା ସେମାନେ ହେଲେ ନୀଳମଣି ରାଉତରାୟ ଓ ସମାଜ ସମ୍ପାଦକ ତଥା ଆଠଗଡ଼ ବିଧାୟକ ରାଧାନାଥ ରଥ । ନୀଳମଣି ବାବୁ ଗିରଫ ହେବେ ବୋଲି ପ୍ରଚାର କରାଯାଉଥିବାବେଳେ ସେ ନନ୍ଦିନୀ ଶତପଥୀଙ୍କୁ ଗିରଫ ନକରିବା ପାଇଁ ଅନୁରୋଧ କରିଥିଲେ ବୋଲି ଗୁଜବ ହୋଇଥିଲା । ଶେଷ ପର୍ଯ୍ୟନ୍ତ ସେ ବିରୋଧୀ ଦଳର ଏକମାତ୍ର ନେତା ଯିଏ ଗିରଫ ହୋଇ ନଥିଲେ । ରାଧାନାଥବାବୁ ଏବଂ ସମାଜ ଜରୁରୀକାଳୀନ ପରିସ୍ଥିତିକୁ ସମର୍ଥନ କରିବାରେ ତାଙ୍କୁ ଗିରଫ କରାଯାଇ ନଥିଲା । ୧୯୭୫ ଅଗଷ୍ଟ ୯ ତାରିଖରେ ଓଡ଼ିଶା ବିଧାନସଭା ଅଧିବେଶନରେ ରାଧାନାଥ ରଥ ଜରୁରୀ ପରିସ୍ଥିତିକୁ ସମର୍ଥନ କରି ଦେଇଥିବା ଭାଷଣର ଏକ ଅଂଶ ଏଠାରେ ଦେଉଛୁ । ରାଧାନାଥ ରଥ(ସ୍ୱାଧୀନ-ଆଠଗଡ଼)- But for the time being there has been somnch of confusion, chaos and indiscipline that discipline has to be enforced, in the country. If these powers are abused by the autorities, then it would be bad. But let us hope by these changes of the constitution better things will come out ad there will be real integirity and good administration in the country.

ରାଧାନାଥ ରଥ ନନ୍ଦିନୀ ଶତପଥୀଙ୍କର ଏକ ପ୍ରକାର ସ୍ତାବକ ଭଳି କାମ କରିଥିଲେ । ଜରୁରୀକାଳୀନ ପରିସ୍ଥିତି ଜାରି ହେବା ପରେ କିଛି ସର୍ବ ଭାରତୀୟ ନେତା ଓଡ଼ିଶାକୁ ଆସି ଆତ୍ମଗୋପନ କରିଥିଲେ । ସେମାନଙ୍କ ମଧ୍ୟରୁ ଦୁଇଜଣ ହେଲେ ଜର୍ଜ ଫର୍ଣ୍ଣାଣ୍ଡେସ୍ ଓ କର୍ପୁରୀ ଠାକୁର । ଫର୍ଣ୍ଣାଣ୍ଡେସଙ୍କ କଥା ମତେ ଜଣେ ସ୍ପେଶାଲ ବ୍ରାଞ୍ଚ ଇନ୍ସପେକ୍ଟର କହିଥିଲେ । ତେବେ ସେ ମୋତେ ଯେତେବେଳେ କହିଲେ ସେତେବେଳକୁ ପନ୍ଦର ଦିନ ହୋଇଗଲାଣି । ଫର୍ଣ୍ଣାଣ୍ଡେସ୍ ଦିଲ୍ଲୀରୁ ପାଟନା ଦେଇ ଝାରସୁଗୁଡ଼ା ବାଟେ ଗଞ୍ଜାମର ଗୋପାଳପୁର ଯାଇଥିଲେ । ଗୋପାଳପୁରରେ ତାଙ୍କ ଶଶୁର ବିଶିଷ୍ଟ ନେତା ତଥା ପୂର୍ବତନ କେନ୍ଦ୍ରମନ୍ତ୍ରୀ ହୁମାୟୁନ କବିରଙ୍କର ଏକ ଘର ଥିଲା । ସେଇ ଘରେ ସେ କିଛିଦିନ ରହିବା ପରେ ଭୁବନେଶ୍ୱର ପଳାଇ ଆସି ଏକ ଛୋଟ ହୋଟେଲ୍‌ରେ ଦୁଇଦିନ ରହି କଟକ ପଳାଇଥିଲେ । କଟକରେ ସେ ବିଜୁ ପଟ୍ଟନାୟକଙ୍କ ଆନନ୍ଦ ଭବନରେ ରହିଥିଲେ । ସେ କଟକ ଛାଡ଼ି ଟ୍ରେନ୍‌ରେ କଲିକତା ଯିବାପାଇଁ ଉଦ୍ୟମ କଲାବେଳେ ଗିରଫ ହୋଇଥିଲେ । ମୁଁ ଏ ଖବର ପାଇ ବାଗେଇ ଚୁନେଇ ମାତୃଭୂମିରେ ଦେଇଥିଲି । ବିହାରର ପୂର୍ବତନ ମୁଖ୍ୟମନ୍ତ୍ରୀ କର୍ପୁର ଠାକୁର କଟକ ପଳାଇ ଆସି ନୀଳମଣିବାବୁଙ୍କ ଘରେ କିଛିଦିନ ରହିଥିଲେ । ପରେ ସେ ଛଦ୍ମବେଶରେ କଲିକତା ଚାଲି ଯାଇଥିଲେ ।

ଗିରଫ ହେବା ପରେ ମହତାବଙ୍କୁ ଭଞ୍ଜନଗର ଜେଲ୍‌ରେ ରଖା ଯାଇଥିଲା । ସେତେବେଳେ ଜଣେ ବିପଜ୍ଜନକ ବନ୍ଦୀ ଥିଲେ ଅଶୋକ ଦାସ । ୧୯୭୪ ମସିହା ମାର୍ଚ୍ଚ ମାସରେ ନୂଆ ବିଧାନସଭା ଉଦ୍‌ଘାଟନ ଉତ୍ସବରେ ରାଜ୍ୟପାଳ ବି.ଡି.ଜତ୍ତି ଉଦ୍‌ଘାଟନ ଭାଷଣ ଦେବାକୁ ଆସିବାବେଳେ ହଠାତ୍ ଅଶୋକ ଦାସ ଟେବୁଲ୍ ଉପରେ ଯାଇ ତାଙ୍କୁ ମାଡ଼ ଦେବାକୁ ଉଦ୍ୟମ କରିଥିଲେ । ମୁଁ ସେତେବେଳେ ବିଧାନସଭା ବିବରଣୀ ରିପୋର୍ଟିକରୁଥାଏ । ସେ ସମୟର ଦୃଶ୍ୟ ବାସ୍ତବରେ ସମସ୍ତଙ୍କୁ ବିସ୍ମୟାଭିଭୂତ କରି ଦେଇଥିଲା । ଅଶୋକ ଦାସଙ୍କୁ ବିଧାନସଭା ୱାଚ୍ ଏଣ୍ଡ ୱାର୍ଡ଼ ଷ୍ଟାଫ

ଢୋର୍‌ରେ ଭିଡ଼ି ଧରି ଅଟକାଇଥିଲେ । ଜିଭିଙ୍କ ପଢ଼ା ଆଉ ଆଗେଇ ପାରି ନଥିଲା । ସେ ଭୟରେ ପଳାଇଥିଲେ । ସେ ମାତ୍ର ପ୍ରଥମ ପୃଷ୍ଠା ପଢ଼ିବାବେଳେ ଏ ଅଘଟଣା ଘଟିଥିଲା ।

ବି.ଡି. ଜତ୍ତି ଛୋଟିଆ ଆକାରର ମଣିଷଟିଏ । ତାଙ୍କ ଉଚ୍ଚତା ଖୁବ୍ ବେଶୀ ପାଞ୍ଚଫୁଟ ବା ପାଞ୍ଚଫୁଟ ଇଞ୍ଚେ/ଦି' ଇଞ୍ଚ୍ ହେବ । ଆମର ଯାହା କଥାରେ ଅଛି 'ନ ଚ ବିଦ୍ୟା ନ ଚ ପୌରୁଷମ୍, ଭାଗ୍ୟଂ ଫଳନ୍ତି ସର୍ବତଃ' ତା' ଜତ୍ତିଙ୍କ ଜୀବନରେ ଫଳିଥିଲା । ସେ ଜୀବନ ଆରମ୍ଭ କରିଥିଲେ କର୍ଣ୍ଣାଟକର ଏକ ପଞ୍ଚାୟତ ସରପଞ୍ଚରୁ ଏବଂ ଶେଷ କରିଥିଲେ ଭାରତର ଅସ୍ଥାୟୀ ବା କାମଚଳା ରାଷ୍ଟ୍ରପତି ରୂପେ । ନନ୍ଦିନୀ ଶତପଥୀଙ୍କୁ ଅଶୋକ ଦାସଙ୍କ ଏ ପ୍ରକାର ଆଚରଣ ଭଲ ଲାଗିନଥିଲା । ତେଣୁ ଜରୁରୀ ପରିସ୍ଥିତି ଆରମ୍ଭ ହେବାମାତ୍ରେ ତାଙ୍କ ଉପରେ ଥିବା ରାଗ ସେ ଶୁଝାଇ ଥିଲେ । ଜରୁରୀ ପରିସ୍ଥିତି ଆରମ୍ଭ ହେବା ମାତ୍ରେ ଅଶୋକ ଦାସଙ୍କୁ ମିସା ଆଇନ୍‌ରେ ଗିରଫ କରାଯାଇ ଅନୁଗୁଳ ଜେଲ୍‌ରେ ରଖାଗଲା ।

ଜରୁରୀ ପରିସ୍ଥିତି ବେଳେ ନନ୍ଦିନୀ ଶତପଥୀ ଅସମ୍ଭବ କ୍ଷମତାଶାଳୀ ହୋଇଥିଲେ । ତାଙ୍କ ସହ ରମାକାନ୍ତ ରଥଙ୍କ କ୍ଷମତା ମଧ୍ୟ ଅସମ୍ଭବ ଭାବେ ବଢ଼ିଥିଲା । ରାଜ୍ୟର ବଡ଼ ବଡ଼ ସହରମାନଙ୍କରେ ତାଙ୍କର ଛବି ସହ ଏସିଆର ମୁକ୍ତ ସୂର୍ଯ୍ୟ ଲାଲ୍ ସଲାମ ଲାଲ୍ ସଲାମ ବୋଲି ରଙ୍ଗିନ ପୋଷ୍ଟର ସବୁ ଅଜସ୍ର ସଂଖ୍ୟାରେ ମରାଯାଇଥିଲା । ତାହା ହିଁ ପରେ ନନ୍ଦିନୀ ଶତପଥୀଙ୍କ ପତନର କାରଣ ହୋଇଥିଲା । ମୁଁ ଯାହା ଶୁଣିଥିଲି ଜାନକୀ ବଲ୍ଲଭ ପଟ୍ଟନାୟକ ଏହିସବୁ ପୋଷ୍ଟରର କପି ନେଇ ସଞ୍ଜୟ ଗାନ୍ଧୀଙ୍କୁ ଦେଇଥିଲେ । ସଞ୍ଜୟ ଏସବୁ ଦେଖି ଅତ୍ୟନ୍ତ ଉତ୍‌କ୍ଷିପ୍ତ ହୋଇ ନନ୍ଦିନୀଙ୍କୁ ବହିଷ୍କାର ପାଇଁ ଇନ୍ଦିରାଙ୍କୁ କହିଥିଲେ ବୋଲି ଏଠାରେ ଆମେ ଶୁଣିଲୁ ।

## -ଡି.ଆର୍. ଆହୁଜା-

ସଂଜୟ ଗାନ୍ଧୀଙ୍କ ଯୋଗୁଁ ମୁଁ ଆହୁଜାଙ୍କୁ ବନ୍ଧୁ ରୂପେ ପାଇଥିଲି । ୧୯୭୬ ମାର୍ଚ୍ଚ ମାସରେ ଆହୁଜା ଭୁବନେଶ୍ୱର ବଦଳି ହୋଇ ଆସିଲେ । ସେ ବର୍ଷ ଫେବୃଆରୀ ମାସରେ ହିନ୍ଦୁସ୍ଥାନ ଟାଇମ୍ସ ଭୁବନେଶ୍ୱର ପ୍ରତିନିଧି ବଙ୍କିମ ଚନ୍ଦ୍ର ଦାସ ପରଲୋକ ଗମନ କଲେ । ବଙ୍କିମବାବୁ ମୋର ଜଣେ ଅତ୍ୟନ୍ତ ଘନିଷ୍ଠ ବନ୍ଧୁ ଥିଲେ । ୧୯୭୬ରେ ମୋ ସାନ ଭାଇ ଧୀରେନ୍ଦ୍ର ନାଥ ଶ୍ରୀଚନ୍ଦନର ବିବାହ ସମ୍ପନ୍ନ ହେଲା । ପ୍ରୀତି ଭୋଜନ ଆମ ଗାଁ ବାଙ୍କୀ ଟାଉନ୍ ଚର୍ଚ୍ଚିକା ଗ୍ରାମରେ ହେଉଥିଲା । ମୁଁ ମୋର ବନ୍ଧୁ ମନ୍ତ୍ରୀମାନଙ୍କୁ ନିମନ୍ତ୍ରଣ କରିଥିଲି । ଡଃ କୃପାସିନ୍ଧୁ ଭୋଇ, ଦିବ୍ୟଲୋଚନ ଶେଖର ଦେଓ, ବ୍ରହ୍ମାନନ୍ଦ ବିଶ୍ୱାଳ, ଯଦୁନାଥ ଦାଶ ମହାପାତ୍ର ବାଙ୍କୀ ଆସିଥିଲେ । ସେଇଠି ଡଃ ଭୋଇ ବଙ୍କିମ ବାବୁଙ୍କ ପରଲୋକ କଥା ମୋତେ କହିଲେ ।

ବଙ୍କିମ ବାବୁଙ୍କ ପରଲୋକ ପରେ ଭୁବନେଶ୍ୱରର କେତେକ ସାମ୍ବାଦିକ ଯାକୁ ତାକୁ ଧରି ଲାଗି ପଡ଼ିଲେ ହିନ୍ଦୁସ୍ଥାନ ଟାଇମ୍ସର ଭୁବନେଶ୍ୱର ପ୍ରତିନିଧି ହେବାପାଇଁ । ସେତେବେଳେ ହିନ୍ଦୁସ୍ଥାନ ଟାଇମ୍ସର ସମ୍ପାଦକ ଥିଲେ ହୀରଣ୍ମୟ କାର୍ଲେକାର ଏବଂ ଆସୋସିଏଟ୍ ଏଡିଟର ଥିଲେ ପୃଥ୍ୱୀଶ ଚକ୍ରବର୍ତ୍ତୀ । ପୃଥ୍ୱୀଶ ଚକ୍ରବର୍ତ୍ତୀଙ୍କ ସହ ମୋର ଭଲ ପରିଚୟ ଥିଲା । କାରଣ ଏନ୍.ୟୁ.ଜେ. ୧୯୭୧ ମସିହାରେ ଗଠନ ହେବାବେଳେ ଯେଉଁ କେତେଜଣ ପ୍ରତିଷ୍ଠାତା ସଦସ୍ୟ ଥିଲେ ପୃଥ୍ୱୀଶ ବାବୁ ସେମାନଙ୍କ ମଧ୍ୟରେ ଅନ୍ୟତମ । ମୁଁ ୧୯୭୨ ମସିହାରେ ଏନ୍.ୟୁ.ଜେ. ସହ ଓଡ଼ିଶା ୟୁନିୟନ ଅଫ୍ ଜର୍ଣ୍ଣାଲିଷ୍ଟକୁ ଅନୁବନ୍ଧିତ ବା ଆଫିଲିଏଟ୍ କରିଥିଲି । ସେଥିପାଇଁ ମଝିରେ ମଝିରେ ଦିଲ୍ଲୀ ଯାଇ ଏନ୍.ୟୁ.ଜେ. କର୍ମକର୍ତ୍ତାଙ୍କୁ ଭେଟୁଥିଲି । ସେଇଠି ପୃଥ୍ୱୀଶ ଚକ୍ରବର୍ତ୍ତୀଙ୍କ ସହ ମୋର ପରିଚୟ ହୋଇଥିଲା । ମୋତେ

କେତେକ ବନ୍ଧୁ ପରାମର୍ଶ ଦେଲେ ଦିଲ୍ଲୀ ଯାଇ ପୃଥ୍ୱୀଶ ବାବୁଙ୍କ ଜରିଆରେ ହିନ୍ଦୁସ୍ଥାନ ଟାଇମ୍ସ ପାଇଁ ଚେଷ୍ଟା କରିବାକୁ । ମୁଁ ଯାଇ ପୃଥ୍ୱୀଶ ବାବୁଙ୍କୁ ଭେଟି ଉଦ୍ୟମ ମଧ କରିଥିଲି । ମାତ୍ର ଇଂରେଜୀ ଖବର କାଗଜରେ ମୋର ଅଭିଜ୍ଞତା ନଥିବା ଯୋଗୁଁ ପାଇ ପାରିଲି ନାହିଁ । ଅବଶ୍ୟ ୧୯୭୫ରୁ ମୁଁ କରେଣ୍ଟ ଇଂରାଜୀ ସାପ୍ତାହିକର ଓଡ଼ିଶା ପ୍ରତିନିଧି ଥିଲି । ତେବେ ପରେ ପରେ ମୁଁ ନ୍ୟାସନାଲ୍ ହେରାଲ୍ଡର ଓଡ଼ିଶା ପ୍ରତିନିଧି ରୂପେ ନିଯୁକ୍ତି ପାଇଥିଲି ।

ଆହୁଜାଙ୍କ କଥା କହୁକହୁ ମୁଁ ଅନ୍ୟଆଡ଼େ ବାଟଭାଙ୍ଗି ଚାଲିଗଲି । ଆହୁଜାଙ୍କୁ ଦଣ୍ଡ ପାଇ ଭୁବନେଶ୍ୱର ଆସିବାକୁ ହେଲା । ଆରମ୍ଭରୁ ଭୁବନେଶ୍ୱରର ଜଣେ/ଦି'ଜଣ ସାମ୍ବାଦିକ ତାଙ୍କ ପିଛା ଲାଗିଗଲେ କିପରି ତାଙ୍କ ଜରିଆରେ ହିନ୍ଦୁସ୍ଥାନ ଟାଇମ୍ସର ଭୁବନେଶ୍ୱର ପ୍ରତିନିଧି ହେବେ । ମୋ ସାଙ୍ଗରେ ଆହୁଜା ସାହେବଙ୍କର ପରିଚୟ ହେବାପରେ କେଜାଣି କାହିଁକି ସେ ମୋତେ ପସନ୍ଦ କରିଥିଲେ । ପ୍ରାୟ ପ୍ରତିଦିନ ସଚିବାଳୟରେ ଦେଖାସାକ୍ଷାତ ହେଉଥିଲା । ସେ ଷ୍ଟେଟ ଗେଷ୍ଟ ହାଉସ୍‌ରେ ରହୁଥିଲେ । ସାତ/ଆଠ ଦିନ ପରେ ଦିନେ ସନ୍ଧ୍ୟାରେ ସେ ମୋତେ ଟେଲିଫୋନ୍ କଲେ । ପଚାରିଲେ ମିଃ ଧଲ ଗେଷ୍ଟ ହାଉସ୍ ଆସି ପାରିବେ କି ? ମୁଁ କିଛି ସମୟ ପରେ ପହଞ୍ଚିଲି । ତାଙ୍କ ରୁମ୍‌ରେ ପହଞ୍ଚି ଦେଖିଲି ଚିଫ୍ ସେକ୍ରେଟାରୀ ଜ୍ଞାନ ଚାନ୍ଦ ଏବଂ ଆଦିବାସୀ-ହରିଜନ ବିଭାଗ ସଚିବ ସର୍ଦ୍ଦାର ଭୂପିନ୍ଦର ସିଂ ବସିଛନ୍ତି । ଡ୍ରିଙ୍କ୍ ପାର୍ଟିଚାଲିଛି । କହିବା ବାହୁଲ୍ୟ ମୋର ପୂର୍ବରୁ ଜ୍ଞାନ ଚାନ୍ଦ ଓ ଭୂପିନ୍ଦର ସିଂହଙ୍କ ସହ ପରିଚୟ ଥିଲା । ଆହୁଜା ଜ୍ଞାନଚାନ୍ଦଙ୍କ ଉଦ୍ଦେଶ୍ୟରେ କହିଲେ ଜ୍ଞାନ, ଆଇ ହାଭ କମ୍ ଆକ୍ରଶ ସମ୍ ଜର୍ଣ୍ଣାଲିଷ୍ଟ ହିଅର । ଚାର୍ ପାଞ୍ଚ ଆଦ୍‌ମି ପୁରା ମତଲବ ବାଜ୍ । ବଟ୍ ମିଃ ଧଲ ଇଜ୍ ଏ ସଲିଡ୍ ମ୍ୟାନ୍ । ଏ ରିୟଲ ଜର୍ଣ୍ଣାଲିଷ୍ଟ ଏଣ୍ଡ ଏ ଫ୍ରେଣ୍ଡ । ଜ୍ଞାନଚାନ୍ଦ ହସିଲେ । କହିଲେ ମେଁ ଧଲ ସାହେବ କୋ ଜାନତା ହୁଁ । ସେଇଦିନ ଠାରୁ ଜ୍ଞାନଚାନ୍ଦଙ୍କ ସହ ମୋର ଘନିଷ୍ଠତା ଅଧିକ ହେଲା । ଜ୍ଞାନଚାନ୍ଦ ଆହୁଜା ଦୁହେଁ ଦିଲ୍ଲୀ ଗ୍ରେଟର କୈଳାଶର ବାସିନ୍ଦା । ଜ୍ଞାନଚାନ୍ଦ କହିଲେ ସେ ଦିଲ୍ଲୀ ଗଲାବେଳେ ମର୍ଣ୍ଣିଂୱାକ୍‌ରେ ଆହୁଜାଙ୍କ ସହ ଦେଖା ହୁଏ । କାରଣ ଦୁହିଁଙ୍କ ଘର ପାଖାପାଖି । ଆହୁଜା ବେଶ୍ ବ୍ୟକ୍ତିତ୍ୱ ସମ୍ପନ୍ନ । ଭଦ୍ର ଆଉ ସରଳ । ସେ ମାସେ ଖଣ୍ଡେ ଭୁବନେଶ୍ୱରରେ ରହିବା ପରେ ଦିଲ୍ଲୀ ଚାଲିଗଲେ । ତେବେ ଯିବାବେଳେ ଆଠ/ଦଶଟା ଟେଲିଗ୍ରାମ୍ ଫର୍ମରେ ଦସ୍ତଖତ କରି ମୋତେ ଦେଇଗଲେ । କହିଲେ କିଛି ଗୁରୁତ୍ୱପୂର୍ଣ୍ଣ ଖବର ଥିଲେ ହିନ୍ଦୁସ୍ଥାନ ଟାଇମ୍ସକୁ ପଠାଇ ଦେବା ପାଇଁ । ମୁଁ ନିୟମିତ କିଛି କିଛି ଖବର ପଠାଇଲି । ସବୁ ଖବର ଫ୍ରମ ଡି.ଆର୍. ଆହୁଜା ବାଇ ଲାଇନ୍‌ରେ ଛପା ହେଉଥିଲା । ଆହୁଜା ମଝିରେ ମଝିରେ ଫୋନ୍ କରି ମୋତେ ଧନ୍ୟବାଦ ଦେଉଥା'ନ୍ତି । ପ୍ରାୟ ମାସକ ପରେ ଆହୁଜା ପୁଣି ଭୁବନେଶ୍ୱର ଆସିଲେ । ସେତେବେଳେ ସେ ୟୁନିଟ୍-୨ରେ ଧରିତ୍ରୀ ପ୍ରତିନିଧି ଅକ୍ଷୟ ପତିଙ୍କ ଘରେ ରହିଲେ । ମୁଁ ସେ ବ୍ୟବସ୍ଥା କରିଦେଇଥିଲି । ଅକ୍ଷୟ ଏକା ରହୁଥିଲା । ମୋ ଘରେ ପ୍ରାୟ ଖାଉଥିଲେ । ମୋ ପାଖରେ ସେତେବେଳେ ଅନାମ ନନା ନାମରେ ଇଲେକ୍ଟ୍ରିସିଟି ବୋର୍ଡ଼ର ଜଣେ ପିଅନ ରହୁଥିଲା ଏବଂ ସେ ସକାଳ ସାଢ଼େ ୧୦ଟା ମଧ୍ୟରେ ଏବଂ ସନ୍ଧ୍ୟା ପରେ ଆସି ରୋଷେଇ କରୁଥିଲା । ଆହୁଜା ଅଧିକାଂଶ ଦିନ ରାତିରେ ମୋ ଘରେ ଖାଉଥିଲେ ।

ଆହୁଜା ଦି'ମାସ ପରେ ଭୁବନେଶ୍ୱରରୁ ଦିଲ୍ଲୀ ଚାଲିଗଲେ । କିଛି ଦିନ ପରେ ମୋତେ ଟେଲିଫୋନ୍ କଲେ ଯେ ସେ ହିନ୍ଦୁସ୍ଥାନ ଟାଇମ୍ସ ଛାଡ଼ି ଦେଇ 'ଦି ଟ୍ରିବ୍ୟୁନ୍'ର ଦିଲ୍ଲୀ ବ୍ୟୁରୋ ଚିଫ୍ ରୂପେ ଯୋଗ ଦେଇଛନ୍ତି । ତାଙ୍କ ଅଫିସ୍ ଥିଲା କନଟ୍‌ପ୍ଲେସ୍‌ରେ । ମୁଁ ଦିଲ୍ଲୀ ଯିବାବେଳେ ସେ ମୋତେ ତାଙ୍କ ଘରେ ରହିବା ପାଇଁ ଏକ ପ୍ରକାର ବାଧ କଲେ । ଜୁନ୍ ମାସ । ତାଙ୍କ ଗେଷ୍ଟରୁମ୍‌ରେ ଏସି ଥାଏ । ତେଣୁ ଆରାମ୍‌ରେ ରହିଲି । ଆହୁଜା ସଦାବେଳେ ସଫାରି ସୁଟ୍ ପିନ୍ଧୁଥିଲେ । ତାଙ୍କ ଅଫିସ୍ ପାଖରେ ମୋ ଆଲିୟର ସୁଟିଂ ଦୋକାନରେ ବକ୍ସି ନାମରେ ଜଣେ ନାମକରା ଟେଲର ମାଷ୍ଟର ଥିଲେ । ସେ ମୋ ପାଇଁ ଦି'ହଳ ସଫାରି ସୁଟ୍ କରି ଦେଇଥିଲେ । ଭୁବନେଶ୍ୱରରେ ସେତେବେଳେ ସଫାରି ସୁଟ୍‌ର ପ୍ରଚଳନ

ନଥିଲା । ତେଣୁ ମୁଁ ସଫାରି ସୁଟ୍ ପିନ୍ଧି ପ୍ରେସ୍ କନଫରେନ୍ସରେ ଯୋଗଦେବାବେଳେ ଅନେକ ମୋ ସୁଟକୁ ଚାହୁଁଥିଲେ । ଅବଶ୍ୟ ଜ୍ଞାନଚାନ୍ଦ ସଫାରି ସୁଟ୍ ପ୍ରାୟ ପିନ୍ଧୁନଥିଲେ । ମୋ ସଫାରି ସୁଟ୍ ଦେଖି ମନ୍ତ୍ରୀ ଡଃ ଭୋଇ ଦିଲ୍ଲୀରେ ଆହୁଜାଙ୍କ ପାଖକୁ ଯାଇ ତାଙ୍କୁ ସାଙ୍ଗରେ ନେଇ ବକ୍ସି ପାଖରୁ ତିନି/ଚାରି ହଳ ସଫାରି ସୁଟ୍ ତିଆରି କରିଥିଲେ । ଆହୁଜାଙ୍କ ସହ ମୋର ସମ୍ପର୍କ ପ୍ରାୟ ରହିଥିଲା । ମୁଁ ପରିବାର ନେଇ ଦିଲ୍ଲୀ ଗଲେ ସେ ମୋ ପାଇଁ ତାଙ୍କ ଘରେ ପାର୍ଟିଦିଅନ୍ତି । ଦିଲ୍ଲୀର ବେଶ୍ କିଛି ନାମକରା ଲୋକ ସପରିବାର ପ୍ରାୟ ଯୋଗ ଦିଅନ୍ତି । ଥରେ ଆମେ ଦିଲ୍ଲୀରେ ଥିବାବେଳେ ହରିଆନାର ସୁରଜକୁଣ୍ଡରେ ସେ ହରିଆନା ରେସିଡେଣ୍ଟ କମିଶନର ମିଃ କ୍ୟୁରେସି ଆଇ.ଏ.ଏସ୍.ଙ୍କ ଜରିଆରେ ଏକ ପାର୍ଟିଆୟୋଜନ କରିଥିଲେ । କ୍ୟୁରେସି ଆମ ରାଜ୍ୟର ଦେବଦାସ ଛୋଟରାୟ ଆଇଏଏସ୍ ବ୍ୟାଚ୍‌ମେଟ୍।

ଏବେ ଫେରିବା ପୁଣି ମାତୃଭୂମିକୁ । ନନ୍ଦିନୀ ଦେବୀଙ୍କ ଠାରୁ ସୁପାରିଶ ପତ୍ର ନେଇ ମୁଁ ଦିଲ୍ଲୀ ଯାଇ ବିଦ୍ୟାଚରଣ ଶୁକ୍ଳାଙ୍କୁ ଭେଟିଲି । ଶୁକ୍ଳା ନନ୍ଦିନୀ ଦେବୀଙ୍କ ପତ୍ରକୁ ପଢ଼ି ଟେବୁଲ୍ ଉପରକୁ ଫିଙ୍ଗିଦେଲେ । ମୋତେ ପଚାରିଲେ ପଟ୍ଟନାୟକଜୀ କା ସାଥ୍ ଆପ୍‌କା ଜାନା ପହଚାନା ହୈ ? ମୁଁ ହଁ କଲି । ସେ ମୋତେ କହିଲେ ଆପ ପଟ୍ଟନାୟକଜୀ କା ପାଶ୍ ଏକ ରେକୋମେଣ୍ଡେସନ୍ ଲା ସକେଙ୍ଗେ । ମୁଁ କିଛି ନଭାବି ହଁ କରିଦେଲି । ତୋ ଆପ୍ ଯା'କର ଏକ ରେକୋମେଣ୍ଡେସନ୍ ପଟ୍ଟନାୟକଜୀ କା ପାଶ୍ ଲାଇୟେ । ମୁଁ ସେଠୁ ଫେରି ଆସିଲି । ଇୟେ ୧୯୭୬ ଅଗଷ୍ଟ ମାସ କଥା । ମୋର ମନେ ହେଲା ନନ୍ଦିନୀ ଦେବୀଙ୍କ ସମୟ ସରି ଆସୁଛି । ତା' ନହେଲେ ଶୁକ୍ଳା ଏଭଳି ବ୍ୟବହାର କରି ନଥାନ୍ତେ । ମୁଁ ଜାନକୀବାବୁଙ୍କ ଘରକୁ ଗଲି । ମୋର ଯାହା ମନେ ଅଛି ସେତେବେଳେ ଜାନକୀବାବୁଙ୍କ ପାଖକୁ ଓଡ଼ିଶାର କିଛି ମନ୍ତ୍ରୀ ଓ ବିଧାୟକ ଯାଇ ନନ୍ଦିନୀ ଶତପଥୀଙ୍କୁ ହଟାଇବା ପାଇଁ ମନ୍ତ୍ରଣା କରୁଥା'ନ୍ତି । ମୁଁ ତାଙ୍କ ଘରେ ପହଞ୍ଚିବା ବେଳକୁ ନନ୍ଦିନୀ ଦେବୀଙ୍କ ମନ୍ତ୍ରୀ ଶ୍ରୀବଲ୍ଲଭ ପାଣିଗ୍ରାହୀ, କାହ୍ନୁ ଲେଙ୍କା ତାଙ୍କ ସହ ଥିଲେ । ମୋତେ ଦେଖି ଏମାନଙ୍କ ମୁହଁ ଶୁଖିଗଲା । ସେମାନେ ଜାନକୀ ବାବୁଙ୍କୁ ନମସ୍କାର କରି ବିଦାୟ ନେଲେ ।

ଜାନକୀବାବୁ ମୋ ଆସିବା କଥା ପଚାରିଲେ । ମୁଁ କିଛି ନ ଲୁଚାଇ ସବୁକଥା କହିଗଲି । ସେ ସବୁ ଶୁଣି କିଛି ସମୟ ଗୁମ୍‌ମାରି ବସିଲେ । ତା'ପରେ ମୋତେ ପଚାରିଲେ ଶୁକ୍ଳାଙ୍କ ବ୍ୟବହାରରୁ ତୁମେ କ'ଣ ବୁଝୁଛ ? ମୁଁ କହିଲି ମୋର ଯାହା ମନେହୁଏ ନନ୍ଦିନୀ ଦେବୀଙ୍କ ଦିନକାଳ ସମ୍ଭବତଃ ଶେଷ ହୋଇ ଆସୁଛି । ସେ ହସିଲେ । ତା'ପରେ ମୁଁ ଯେତେବେଳେ ମାତୃଭୂମି ପାଇଁ ସୁପାରିଶ ପତ୍ର ଲେଖିଦେବା ପାଇଁ ଅନୁରୋଧ କଲି ସେ କ'ଣ ଭାବି ଶୁକ୍ଳାଙ୍କୁ ଟେଲିଫୋନ୍ କଲେ । ମୋତେ କହିଲେ କାଲି ଯାଇ ତାଙ୍କ ସାଙ୍ଗରେ ଦେଖା କର ।

ତା' ପରଦିନ ମୁଁ ପୁଣି ଶୁକ୍ଳାଙ୍କୁ ଦେଖାକଲି । ମାତୃଭୂମି ପକ୍ଷରୁ ଡି.ଏ.ଭି.ପି. ଦର ବୃଦ୍ଧି କରିବା ପାଇଁ ଏକ ଦରଖାସ୍ତ ତାଙ୍କୁ ଦେଲି । ସେଇ ଦରଖାସ୍ତ ଉପରେ ସେ ଡି.ଏ.ଭି.ପି. ଡାଇରେକ୍ଟର ଜେନେରାଲ୍‌ଙ୍କୁ ଦରବୃଦ୍ଧି ପାଇଁ ଆଦେଶ ଦେଲେ । ଏହା ଏକ ଅସାଧ ସାଧନ । ଅବଶ୍ୟ ଜାନକୀବାବୁଙ୍କ ପାଇଁ ଏହା ସମ୍ଭବ ହେଲା ।

ମୁଁ ସେ ଦରଖାସ୍ତ ଡି.ଏ.ଭି.ପି. ଡି.ଜି.ଙ୍କୁ ଦେଇ ପୁଣି ଜାନକୀବାବୁଙ୍କୁ ଦେଖାକଲି । ଜାନକୀବାବୁ କହିଲେ ବିଚିଙ୍କୁ କହ ସେ ନନ୍ଦିନୀ ପିଛା ଛାଡ଼ନ୍ତୁ । ନଚେତ ଅସୁବିଧାରେ ପଡ଼ିବେ । ମୁଁ ଫେରିଆସି ଓଡ଼ିଶା ଭବନରୁ ବିଚିବାବୁଙ୍କୁ ଫୋନ୍ କରି ସବୁ କହିଲି । ବିଚିବାବୁ ଖୁସି ହେଲେ ।

ଦିଲ୍ଲୀରେ ମୋ କାମ ଶେଷ ହୋଇଥିଲା । ଆହୁଜା, ମିସେସ୍ ଆହୁଜାଙ୍କୁ ଧନ୍ୟବାଦ ଦେଇ ଭୁବନେଶ୍ୱର ଫେରିଲି ।

## -ଜରୁରୀ ପରିସ୍ଥିତି ଓ ଭି.ଏସ୍. ମାଥ୍ୟୁସ୍‌ଙ୍କ ବିଦାୟ-

ଜରୁରୀ ପରିସ୍ଥିତି ଚାଲିଥାଏ । ସେ ସମୟରେ ଯାହା ଉପରେ ଯାହାର ରାଗ ଥିଲା ତାକୁ ସେ ଶୁଝାଇଲେ । ୧୯୭୬ରେ ମେ' ମାସରେ ଓଡ଼ିଶାର ମୁଖ୍ୟ ଶାସନ ସଚିବ ଭି.ଏସ୍. ମାଥ୍ୟୁସ୍‌ଙ୍କୁ ଅତି ଅପମାନଜନକ ଭାବେ ତିନିମାସର ଦରମା ଦେଇ ବାଧ୍ୟତାମୂଳକ ଅବସର ଦିଆଯାଇଥିଲା । ମୁଁ ଏହି ଘଟଣାର ଏକମାତ୍ର ପ୍ରତ୍ୟକ୍ଷଦର୍ଶୀ ଥିଲି ।

ତିଓ୍ୱାରୀ ମାଥ୍ୟୁସ୍ ସାହେବଙ୍କୁ ନମସ୍କାର କରି କହିଲେ ଆଇଏମ୍ ସରି ସାର୍, ଦିସ୍ ଅନ୍‌ପ୍ଲିଜାଣ୍ଟ ଥିଙ୍ଗ୍ ଓ୍ୱାଜ୍ ଟୁ ବି ଡନ୍ ବାଇ ମି । ପ୍ଲିଜ୍ ଏକ୍ସକ୍ୟୁଜ୍ ମି ସାର୍ । ତିଓ୍ୱାରୀ ମାଥ୍ୟୁସ୍‌ଙ୍କ ହାତକୁ ଚିଠିଟି ବଢ଼ାଇ ଦେଲେ । ମୁଁ କବାଟ ପାଖରେ ଠିଆ ହୋଇ ସବୁ ଦେଖୁଥିଲି ଓ ଶୁଣୁଥିଲି । ତିଓ୍ୱାରୀ ଫେରିଯିବା ସଙ୍ଗେସଙ୍ଗେ ମୁଁ ଭିତରକୁ ଗଲି । ମତେ ଦେଖି ମାଥ୍ୟୁସ୍ ସାହେବ କହିଲେ ଧଳ, ମୁଁ ମୁଖ୍ୟମନ୍ତ୍ରୀଙ୍କୁ ଖୁସି କରି ପାରିଲିନି । ମୋର ଦୁର୍ଭାଗ୍ୟ । ମାଥ୍ୟୁସ୍‌ଙ୍କ ଆଖିରେ ଲୁହ ଢଳଢଳ ହେଉଥିଲା । ମତେ ଭାରି ଦୁଃଖ ଲାଗିଲା । ମୁଁ ପଚାରିଲି କ'ଣ କାରଣ ? ସେ କହିଲେ ହ୍ୱାଇ ଡନ୍‌ଚ ୟୁ ଆସ୍କ ଦିସ୍ ଟୁ ଦି ଚିଫ୍ ମିନିଷ୍ଟର ? ମାଥ୍ୟୁସ୍‌ଙ୍କ ଟେବୁଲ୍ ଉପରେ ତିନି ମାସର ଚେକ୍‌ଟା ପଡ଼ିଥିଲା । ମୁଁ ମାଥ୍ୟୁସ୍‌ଙ୍କୁ ସମବେଦନା ଜଣାଇ ଫେରିଲି । ମାଥ୍ୟୁସ୍‌ଙ୍କ ସେଇ ଆଣ୍ଟିରୁମ୍(ପି.ଏ.ରୁମ୍)ରୁ ମାତୃଭୂମିକୁ ଫୋନ୍ କରି ସବୁ ଡାକିଦେଲି । ବିଚିବାବୁ ଶୁଣି କହିଲେ ଏ କ'ଣ ସତ କଥା ? ମୁଁ ତାଙ୍କୁ କହିଲି ବର୍ତ୍ତମାନ ମୁଁ ମାଥ୍ୟୁସ୍‌ଙ୍କ ଟେଲିଫୋନ୍‌ରୁ ଏହି ଖବର ଦେଉଛି । ବିଚିବାବୁ ପଚାରିଲେ ଏ ଖବର ଆଉ କେହି ପାଇଛନ୍ତି ? ମୁଁ କହିଲି ସମ୍ଭବତଃ ନୁହେଁ । ମାଥ୍ୟୁସ୍‌ଙ୍କର ସେତେବେଳର ଚେହେରା ମୋର ଏବେ ବି ମନେ ଅଛି । ବେଶ୍ ଦୟନୀୟ । ସ୍ୱାଭାବିକ ମଧ୍ୟ ।

ସେଦିନ ସନ୍ଧ୍ୟାରେ ମାତୃଭୂମିରେ ଏହି ଖବର ପାଞ୍ଚକଲମ ହେଡ୍‌ଲାଇନ୍‌ରେ ପ୍ରଥମ ପୃଷ୍ଠାରେ ପ୍ରକାଶ ପାଇଲା । ଖବର ତଳେ ଆମ ପ୍ରତିନିଧି ବରେନ୍ଦ୍ର କୃଷ୍ଣ ଧଳଙ୍କ ଠାରୁ ଉଲ୍ଲେଖ ଥିଲା । ତା' ପରଦିନ ଏକ କୌତୁହଳ ଘଟଣା ଘଟିଲା । ସକାଳ ଏଗାରଟାରେ ମୁଁ ଏବଂ ଧରିତ୍ରୀ ପ୍ରତିନିଧି ଅକ୍ଷୟ ପତି ସଚିବାଳୟ ଚତୁର୍ଥ ମହଲା ପ୍ରେସ୍‌ରୁମ୍‌କୁ ଯାଉଥିଲୁ- ଏହି ସମୟରେ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀ ଲିଫ୍ଟରୁ ବାହାରିଲେ । ଆମେ ତାଙ୍କୁ ଦେଖି ନମସ୍କାର କଲୁ । ସେ ସାମାନ୍ୟ ହସି କହିଲେ ବରେନ୍ଦ୍ର- କଙ୍ଗ୍ରାଚୁଲେସନ୍ । ତା'ପରେ ଅକ୍ଷୟକୁ କହିଲେ ତୁ ଧରିତ୍ରୀ ସାମ୍ବାଦିକ । ବରେନ୍ଦ୍ର ଯାହା କରିପାରିଲା ତା' ତୁ କିପରି ଜାଣି ପାରିଲୁ ନାହିଁ । ଅକ୍ଷୟ କହିଲା, ମାଡାମ୍ ଆପଣ ଟିକେ ମୋତେ କହିଦେଇଥିଲେ... ନନ୍ଦିନୀ ଦେବୀ କହିଲେ ମୁଁ କ'ଣ ବରେନ୍ଦ୍ରକୁ କହିଥିଲି ? ସେ କିପରି ପାଇଲା ? ସାମ୍ବାଦିକତା ବରେନ୍ଦ୍ର ପାଖରୁ ଶିଖ୍ । ନନ୍ଦିନୀ ଦେବୀଙ୍କ କଥା ଶୁଣି ମୋ ମନଟା ଖୁସି ହୋଇଗଲା । ମୁଁ ଥ୍ୟାଙ୍କ୍ୟୁ ମ୍ୟାଡାମ୍ କହି ପ୍ରେସ୍‌ରୁମ୍‌କୁ ଗଲି ।

୧୯୭୫ ଜୁନ୍ ୨୫ ତାରିଖ ମଧ୍ୟ ରାତିର ଜରୁରୀ ପରିସ୍ଥିତି ଘୋଷଣା ହେବାପରେ ଜୁଲାଇ ୨୯ ତାରିଖରେ ଓଡ଼ିଶା ବିଧାନସଭାର ପ୍ରଥମ ଜରୁରୀକାଳୀନ ଅଧିବେଶନ ଆରମ୍ଭ ହୋଇଥିଲା । ଏହି ଅଧିବେଶନ ମାତ୍ର ପାଞ୍ଚଦିନ ପାଇଁ ବସିଥିଲା । ମୁଁ ସାମ୍ବାଦିକ ରୂପେ ଏହି ଅଧିବେଶନର ବିବରଣୀ ରିପୋର୍ଟିଂ କରୁଥିଲି । ତେବେ ଆମେ ବିଧାନସଭା ବିବରଣୀରେ ବିରୋଧୀ ଦଳର କୌଣସି ସଦସ୍ୟଙ୍କ ଭାଷଣ ଦେଇପାରିବୁ ନାହିଁ ବୋଲି ଆମକୁ ପ୍ରଥମରୁ କୁହାଗଲା । ଖବର କାଗଜରେ ଖବର ଉପରେ ସେନ୍ସର ଲାଗୁ ହୋଇଥିଲା । ତେବେ ମୁଁ ସମସ୍ତ ଅଧିବେଶନର ସମ୍ପୂର୍ଣ୍ଣ ବିବରଣୀ ଲେଖିଥିଲି । ସେତେବେଳେ ବିଧାନସଭା ବାଚସ୍ପତି ଥିଲେ ବ୍ରଜମୋହନ ମହାନ୍ତି ଓ ଉପ-ବାଚସ୍ପତି ଥିଲେ ଚିନ୍ତାମଣି ଜେନା । ପରେ ବିଧାନସଭା ବିବରଣୀ ସମ୍ବାଦପତ୍ରରେ ପ୍ରକାଶ ଉପରେ ଅଙ୍କୁଶ ଜାରି ହେଲା ।

ବିଧାନସଭାର ଏହି ଅଧିବେଶନରେ ପ୍ରଥମଥର ପାଇଁ ପ୍ରଶ୍ନ, ସ୍ୱଳ୍ପ ମିଆଦି ପ୍ରଶ୍ନ, ଦୃଷ୍ଟି ଆକର୍ଷଣକାରୀ ପ୍ରଶ୍ନ ବା ନୋଟିସ୍, ମୁଲତବୀ ନୋଟିସ୍ ବା ପ୍ରସ୍ତାବ, ବେସରକାରୀ ସଭ୍ୟଙ୍କ ଦ୍ୱାରା କୌଣସି ପ୍ରସ୍ତାବ ଆଗତ କିମ୍ବା ସମ୍ପାଦିତ ହୋଇ

ପାରିବ ନାହିଁ ଏବଂ ଏ ବିଷୟରେ ସମସ୍ତ ପ୍ରାସଙ୍ଗିକ ଓଡ଼ିଶା ବିଧାନସଭାର ନିୟମାବଳୀ ଚଳିତ ଅଧିବେଶନ ପାଇଁ ଏତଦ୍ୱାରା ସ୍ଥଗିତ ହେଲା ବୋଲି ଏକ ପ୍ରସ୍ତାବ ଗୃହୀତ ହେଲା । ମୁଁ ଏ ଧରଣର କାର୍ଯ୍ୟ ପୂର୍ବରୁ କେବେ ଦେଖି ନଥିଲି । ସରକାରୀ ଦଳର ମୁଖ୍ୟ ସଚେତକ ଶୈଳେନ ମହାପାତ୍ର ଏ ସମ୍ପର୍କିୟ ପ୍ରସ୍ତାବ ବିଧାନ ସଭାରେ ଉତ୍‌ଥାପନ କରିଥିଲେ । ବାଚସ୍ପତି ତାହା ଗୃହିତ ହେଲାବୋଲି ଘୋଷଣା କରିଥିଲେ । ବିରୋଧୀ ଦଳର ସଦସ୍ୟମାନଙ୍କ ପ୍ରତିବାଦ ଶୁଣାଗଲା ନାହିଁ ।

ବିଧାନସଭାରେ ବିରୋଧୀ ଦଳରେ ଯେଉଁ ସଦସ୍ୟମାନେ ଥିଲେ ସେମାନଙ୍କ ମଧ୍ୟରୁ ଡକ୍ଟର ହରେକୃଷ୍ଣ ମହତାବ, ବିଜୁ ପଟ୍ଟନାୟକଙ୍କ ସମେତ ମୋଟ ଚଉଦ ଜଣଙ୍କୁ ବିଧାନସଭା ଅଧିବେଶନ ଆରମ୍ଭ ହେବା ପୂର୍ବରୁ ଗିରଫ କରି ନିଆଯାଇଥିଲା । ଏମାନଙ୍କ ବ୍ୟତୀତ ନବକୃଷ୍ଣ ଚୌଧୁରୀଙ୍କୁ ମଧ୍ୟ ଗିରଫ କରାଯାଇଥିବା ବିଷୟ ବିଧାନସଭାରେ ବିରୋଧୀ ଦଳ ନେତା ନଟବର ପ୍ରଧାନ ପ୍ରକାଶ କରିଥିଲେ । ବିଧାନସଭାରେ ସେମାନଙ୍କୁ ଗିରଫ କରାଯିବ କି ନାହିଁ ସେ ସମ୍ପର୍କରେ ସେ ବାଚସ୍ପତିଙ୍କ ଦୃଷ୍ଟି ଆକର୍ଷଣ କରିବାରେ ବାଚସ୍ପତି ବ୍ରଜମୋହନ ମହାନ୍ତି କହିଥିଲେ ବିଧାନସଭା ହତା ଭିତରୁ ତାଙ୍କ ବିନା ଅନୁମତିରେ କାହାରିକୁ ଗିରଫ କରାଯାଇ ପାରିବ ନାହିଁ । ମାତ୍ର ବିଧାନସଭା ବାହାରେ କ'ଣ ହେବ ସେ ସମ୍ପର୍କରେ ସେ କିଛି କହିପାରିବେ ନାହିଁ ।

ମୁଁ ମୋର ଆତ୍ମଜୀବନୀରେ ଏ ବିଷୟ ଏଇଥିପାଇଁ ଉଲ୍ଲେଖ କଲି ଯେ ୧୯୫୫ ମସିହା ପରେ ଜନ୍ମ ହୋଇଥିବା ବ୍ୟକ୍ତିମାନଙ୍କର ଭାରତବର୍ଷରେ ବା ଓଡ଼ିଶାରେ ଜରୁରୀ ପରିସ୍ଥିତି କ'ଣ ଏବଂ ଏହାର କାର୍ଯ୍ୟକାରିତା ସମ୍ପର୍କରେ କୌଣସି ଧାରଣା ନଥିବ । ପରିସ୍ଥିତି ଏଭଳି ହୋଇଥିଲା ଯେତେବେଳେ ବାହାରେ ବା ସାଧାରଣ ସ୍ଥାନରେ ସରକାର, ପ୍ରଧାନମନ୍ତ୍ରୀ, ମୁଖ୍ୟମନ୍ତ୍ରୀ ବା ମନ୍ତ୍ରୀମାନଙ୍କ ବିରୁଦ୍ଧରେ ସଭା-ସମିତି ଆଲୋଚନା ସବୁ ବନ୍ଦ ହୋଇ ଯାଇଥିଲା । ବିଧାନସଭାର ସମସ୍ତ ନିୟମାବଳୀକୁ ରଦ୍ଦ କରି ଦିଆଗଲା । ୧୯୭୫ ଅଗଷ୍ଟ ୯ ତାରିଖରେ ବିଧାନସଭାର ପରବର୍ତ୍ତିଅଧିବେଶନ ବେଳକୁ ଓଡ଼ିଶାରେ ବିରୋଧୀ ଦଳର ସମସ୍ତ ବିଧାୟକ ଜେଲ୍ ଭିତରେ ଥିଲେ । କେବଳ ଆଠଗଡ଼ ସ୍ୱାଧୀନ ବିଧାୟକ ରାଧାନାଥ ରଥ(ସମ୍ପାଦକ ସମାଜ) ନାମ କେୱାସ୍ତେ ବିରୋଧୀ ଦଳରେ ବସିଥିଲେ । ତେବେ ସେ ଜରୁରୀ ପରିସ୍ଥିତି ଓ ସମ୍ବିଧାନ ସଂଶୋଧନକୁ ସମର୍ଥନ କରି ବିଧାନସଭାରେ ଲମ୍ବା ଭାଷଣ ଦେଇଥିଲେ । ସମ୍ବିଧାନର ୭୧, ୩୨୯ ଓ ୯୭ ଧାରାକୁ ସଂଶୋଧନ କରାଯାଇ ସୁପ୍ରିମକୋର୍ଟର କ୍ଷମତାକୁ ହ୍ରାସ କରାଗଲା । ପାର୍ଲ୍ୟାମେଣ୍ଟର ନିଷ୍ପତ୍ତି ଚୂଡ଼ାନ୍ତ । ତାକୁ ସୁପ୍ରିମକୋର୍ଟରେ ଚାଲେଞ୍ଜ କରାଯାଇ ପାରିବ ନାହିଁ । ରାଷ୍ଟ୍ରପତି, ଉପ-ରାଷ୍ଟ୍ରପତି, ପ୍ରଧାନମନ୍ତ୍ରୀ ଓ ଲୋକସଭା ବାଚସ୍ପତିଙ୍କ ନିର୍ବାଚନକୁ କୌଣସି କୋର୍ଟରେ ଚାଲେଞ୍ଜ ହୋଇ ପାରିବ ନାହିଁ । ଲାଭ ଏବଂ ସଂଶୋଧନ ହେଉଛି ଲୋକମାନଙ୍କ ହିତ ଓ ମଙ୍ଗଳ ପାଇଁ ପ୍ରଣିତ ବିଭିନ୍ନ ଆଇନ୍‌କୁ ସୁରକ୍ଷା ଦେବାଲାଗି ତାକୁ ବିଚାରାଳୟ ପରସର ବାହାରେ ରଖାଯାଇଛି ।

ଓଡ଼ିଶାରେ କମ୍ୟୁନିଷ୍ଟ ଦଳ ସରକାରର ଅନୁଗତ ଦଳ ଥିଲା । ୧୯୭୪ ନିର୍ବାଚନରେ ବିଧାନସଭାର ୧୪୭ ସଦସ୍ୟଙ୍କ ମଧ୍ୟରୁ ନନ୍ଦିନୀ ଶତପଥୀଙ୍କ ନେତୃତ୍ୱରେ କଂଗ୍ରେସ ଦଳ ମାତ୍ର ୬୯ଟି ସ୍ଥାନ ଦଖଲ କରିଥିବା ବେଳେ ବିଜୁ ପଟ୍ଟନାୟକଙ୍କ ଉତ୍କଳ କଂଗ୍ରେସ-୩୫ଟି, ସ୍ୱତନ୍ତ୍ର ଦଳ-୨୧, କମ୍ୟୁନିଷ୍ଟ ଦଳ-୭ଟି, ସିପିଆଇ(ଏମ୍)-୩ଟି, ଏସ୍.ପି.ଆଇ.-୨ଟି, ଜନ କଂଗ୍ରେସ-୧ଟି ଏବଂ ସ୍ୱାଧୀନ ସଭ୍ୟ ୮ଟି ସ୍ଥାନ ହାସଲ କରିଥିଲେ । ସାତଜଣ କମ୍ୟୁନିଷ୍ଟ ସଦସ୍ୟ ନନ୍ଦିନୀ ଶତପଥୀଙ୍କ ସରକାରଙ୍କୁ ଖୋଲା ସମର୍ଥନ କଲେ । ମନ୍ତ୍ରିମଣ୍ଡଳ ଗଠନ ହେବାପରେ ଦେଖାଗଲା ଅଧିକାଂଶ କମ୍ୟୁନିଷ୍ଟ ସଦସ୍ୟ ଗୋଟିଏ ଗୋଟିଏ ନୂଆ ପ୍ରେମିୟର ପଦ୍ମିନୀ(ଫିଆଟ୍) କାର୍ ଚଢ଼ି ଆସୁଛନ୍ତି । ବିଧାନସଭାରେ ସେମାନଙ୍କ କାର୍ଯ୍ୟକଳାପ ସେତେବେଳେ ସମସ୍ତଙ୍କୁ ଚମତ୍କୃତ କରିଥିଲା । ଜରୁରୀ ପରିସ୍ଥିତି ସମ୍ପର୍କରେ ଏମାନଙ୍କ ଭାଷଣ ଏବଂ କାର୍ଯ୍ୟକଳାପ ଦେଖି ମନେ ହୋଇଥିଲା ଏଇମାନେ ହିଁ ପ୍ରକୃତରେ ଇନ୍ଦିରାଙ୍କ କଂଗ୍ରେସ ଦଳ ।

ମୁଁ ଏ ଘଟଣା ଏବଂ ବିଧାନସଭା ବିବରଣୀ ପୂର୍ଣ୍ଣ ଭାବରେ ଟିପି ରଖୁଥିଲି । ମୋର କେମିତି ମନେ ହୋଇଥିଲା ଭବିଷ୍ୟତରେ ଏହାର ଆବଶ୍ୟକତା ପଡ଼ିପାରେ । ମୋର ସେତେବେଳେ ଏହା ଖବର କାଗଜରେ ରିପୋର୍ଟିଂ କରିବାରରେ ଯୁ ନଥିଲା । ୧୯୭୫ ଅଗଷ୍ଟ ୯ ତାରିଖ ବିଧାନସଭା ଦିନକ ପାଇଁ ବସିଥିଲା । ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀ ପାର୍ଲ୍ୟାମେଣ୍ଟରେ ଗୃହୀତ ହୋଇଥିବା ସମ୍ବିଧାନ ସଂଶୋଧନ ବିଲ୍‌ର ବୈଧୀକରଣ ବା ଅନୁମୋଦନ ପାଇଁ ପ୍ରସ୍ତାବ ଆଗତ କରିଥିଲେ । କାରଣ ସମ୍ବିଧାନ ସଂଶୋଧନ ବିଲ୍ ପାର୍ଲାମେଣ୍ଟରେ ଗୃହୀତହେବା ପରେ ବିଭିନ୍ନ ରାଜ୍ୟ ବିଧାନସଭାରେ ବୈଧୀକରଣ ପାଇଁ ଆଗତ ହୁଏ । ଅଗଷ୍ଟ ୯, ୧୯୭୫ ବିଧାନସଭା ଅଧିବେଶନରେ ଏହି ପ୍ରସ୍ତାବ ଉପରେ ରାଧାନାଥ ରଥ(ସ୍ୱାଧୀନ), ଗଙ୍ଗାଧର ମହାପାତ୍ର, ଶୈଳେନ ମହାପାତ୍ର, ରଘୁନାଥ ପଟ୍ଟନାୟକ ଓ କାର୍ତ୍ତିକେଶ୍ୱର ପାତ୍ର ପ୍ରମୁଖ କଂଗ୍ରେସ ସଦସ୍ୟମାନେ ଆଲୋଚନା କରିଥିଲେ । ସବୁଠାରୁ ଆଶ୍ଚର୍ଯ୍ୟ ବିଷୟ କୌଣସି କମ୍ୟୁନିଷ୍ଟ ନେତା ଏଥିରେ ଅଂଶଗ୍ରହଣ କରିନଥିଲେ । ସେମାନେ ବିଧାନସଭାରେ ଚୁପ୍ ଚାପ୍ ବସି ରହିଥିଲେ । ପରେ ଜଣାପଡ଼ିଲା ନନ୍ଦିନୀ ଦେବୀ ବେଗାବେଗି ଅଧିବେଶନ ସାରି ଦିଲ୍ଲୀ ଯିବାପାଇଁ ଥିବାରୁ ଆଉ କାହାରିକୁ ଅଂଶଗ୍ରହଣ କରିବାକୁ ଦିଆଯାଇ ନଥିଲା ।

ଆଗରୁ କହିଛି ମୁଁ ସେତେବେଳେ ଏନ୍.ୟୁ.ଜେ.(ନ୍ୟାସନାଲ୍ ୟୁନିୟନ୍ ଅଫ୍ ଜର୍ଣ୍ଣାଲିଷ୍ଟ) ସଭା ପାଇଁ ପ୍ରାୟ ଦିଲ୍ଲୀ ଯାଉଥିଲି । ଜରୁରୀ ପରିସ୍ଥିତି ଜାରି ହେବା ପରେ ମୁଁ ବୋଧେ ସେପ୍ଟେମ୍ବର ମାସରେ ଦିଲ୍ଲୀ ଯାଇଥିଲି । ସେତେବେଳେ ଓଡ଼ିଶା ଭବନର ପୁରୁଣା କୋଠାଥିଲା । ପୁରୁଣା କୋଠାର ତିନିନମ୍ବର ସୁଇଟ୍ ଭି.ଭି.ଆଇ.ପି.ମାନଙ୍କ ପାଇଁ ଥିଲା । ଦୁଇନମ୍ବର ଭି.ଆଇ.ପି. ସୁଇଟ୍ ଏବଂ ଏକ ନମ୍ବର ମଧ ଭି.ଆଇ.ପି. ସୁଇଟ୍ ଥିଲା । ମୁଁ ଦିଲ୍ଲୀ ଯାଇ ଓଡ଼ିଶା ଭବନରେ ରହେ । ସେଥର ଯାହା ଶୁଣିଲି ସେଥିରେ ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ଓଡ଼ିଶା ଭବନ ମ୍ୟାନେଜର ତାପସ ଦାସ ଭୁବନେଶ୍ୱରରେ ଦୁଇନମ୍ବର ୟୁନିଟ୍‌ରେ ମୋର ପଡ଼ୋଶୀ ଥିଲେ । ପରେ ସେ ଦିଲ୍ଲୀ ଯାଇ ଓଡ଼ିଶା ଭବନ ମ୍ୟାନେଜର ହେଲେ । ମୁଁ ଦିଲ୍ଲୀରେ ଥିବାବେଳେ ଓଡ଼ିଶା ରାଜ୍ୟପାଳ ଆକବର ଅଲ୍ଲୀ ଖାଁ ଦିଲ୍ଲୀ ଯାଇଥିଲେ । ତାଙ୍କୁ ଏକ ନମ୍ବର ସୁଇଟ୍‌ରେ ରହିବା ପାଇଁ ଦିଆଯାଇଥିଲା । ମୁଁ କୌତୁହଳୀ ହୋଇ ଏ ସମ୍ପର୍କରେ ତାପସବାବୁଙ୍କୁ ପଚାରିଲି ଭି.ଭି.ଆଇ.ପି. ସୁଇଟ୍ ରାଜ୍ୟପାଳଙ୍କୁ ଦିଆନଯାଇ ସାଧାରଣ ଭି.ଆଇ.ପି. ସୁଟ୍ କାହିଁକି ଦିଆଯାଇଛି ? ତାପସବାବୁ କହିଲେ ଦୁଇ ନମ୍ବର ଓ ତିନି ନମ୍ବର କେବଳ ମୁଖ୍ୟମନ୍ତ୍ରୀ ଓ ତାଙ୍କ ସେକ୍ରେଟାରୀ ରମାକାନ୍ତ ରଥ ବ୍ୟବହାର କରିବେ ବୋଲି ରଖାଯାଇଛି ।

ମୋତେ ସେ ଚୁପ୍‌ଚାପ୍ ଦୁଇ ନମ୍ବର ଓ ତିନି ନମ୍ବର ସୁଇଟ୍ ଖୋଲି ଦେଖାଇଲେ । ମୁଁ ପ୍ରକୃତରେ କାବା ହୋଇଗଲି । ଦୁଇ ନମ୍ବର ଓ ତିନି ନମ୍ବର ସୁଇଟ୍‌ର ମଝି କାନ୍ଥ ଭଙ୍ଗାଯାଇ ଏକ ଦରଜା ଲଗା ଯାଇଛି । ତେଣୁ ଗୋପନୀୟ କାର୍ଯ୍ୟ ପାଇଁ ବା ଫାଇଲ୍ ପାଇଁ ଆଉ ସେକ୍ରେଟାରୀ ବାରମ୍ବାର ବାହାରପଟୁ ଯିବା ଆସିବା ନକରି ସେଇ ଚୋରା ଦ୍ୱାର ଦେଇ ମୁଖ୍ୟମନ୍ତ୍ରୀଙ୍କ ପାଖକୁ ଯିବା ଆସିବା କରିବେ । ନନ୍ଦିନୀ ଶତପଥୀ ମୁଖ୍ୟମନ୍ତ୍ରୀ ଥିବା ପର୍ଯ୍ୟନ୍ତ ଏହି ଦ୍ୱାର ରହିଥିଲା । ତାଙ୍କୁ ଇନ୍ଦିରା ଗାନ୍ଧୀ ୧୯୭୬ ଡିସେମ୍ବର ୧୬ ତାରିଖରେ ମୁଖ୍ୟମନ୍ତ୍ରୀ ପଦରୁ ହଟାଇ ଦେବାର ପର ମୁହୂର୍ତ୍ତରେ ଏହି ଚୋରା ଦରଓ୍ୱାଜାକୁ ବନ୍ଦକରି ଦିଆ ଯାଇଥିଲା ।

ଜରୁରୀ କାଳୀନ ପରିସ୍ଥିତିରେ ସରକାରୀ କଳ ଭିତରେ ନାନା ମାର୍‌ପେଞ୍ଚ ଲାଗିଥିଲା । କିଏ କାହାକୁ ହଟାଇ ଉପରକୁ ଯିବ ସେଥିପାଇଁ କେତେକ ମୁଖ୍ୟମନ୍ତ୍ରୀଙ୍କ ପାଖ ଲୋକଙ୍କୁ ଧରୁଥା'ନ୍ତି । ନନ୍ଦିନୀ ଶତପଥୀଙ୍କ ପ୍ରାଇଭେଟ୍ ସେକ୍ରେଟାରୀ 'ସିଂହ' ନାମରେ ଜଣେ ଦିଲ୍ଲୀ ଲୋକ ଥା'ନ୍ତି ।  ସେ ନନ୍ଦିନୀ ଦେବୀ ଦିଲ୍ଲୀରେ ମନ୍ତ୍ରୀ ଥିବାବେଳୁ ଥିଲେ । ତାଙ୍କ ଠାରୁ କିଛି କଥା ବାହାର କରିବା ଅସମ୍ଭବ ଥିଲା । ତେବେ କିଛି ଖବର ପାଇବା ପାଇଁ ବିଶେଷ କରି ମୁଖ୍ୟମନ୍ତ୍ରୀ ଅଫିସ୍‌ରୁ କିଛି ଖବର ପାଇଁ ତାଙ୍କ ସହ ମୋ ସମେତ କେତେ ରିପୋର୍ଟର ଯୋଗାଯୋଗ ରଖୁଥା'ନ୍ତି ।

ଜରୁରୀ ପରିସ୍ଥିତି ସମୟରେ ଗୋଟିଏ ଦିନରେ ୩୮୦ଜଣ ସରକାରୀ କର୍ମଚାରୀଙ୍କୁ ବାଧତାମୂଳକ ଅବସର ଦିଆଯାଇଥିଲା । ମୁଁ ଏକଥା ପରେ ଜାଣିଥିଲି । ତେବେ ବାଧତାମୂଳକ ଅବସର ନେଇଥିବା ମୋର ଅତି ପରିଚିତ ଦୁଇଜଣ ଓ.ଏ.ଏସ୍. ଅଫିସର ପରେ ମୋ ପାଖକୁ ଆସି କହିଲେ ସେମାନଙ୍କ ଚରିତ୍ର ପଞ୍ଜିକାରେ ସାମାନ୍ୟ ଦାଗ ମଧ୍ୟ ନଥିଲା । ସେମାନଙ୍କୁ କିପରି ଏ ଦଣ୍ଡ ଦିଆଗଲା ସେମାନେ ନିଜେ ମଧ୍ୟ ବୁଝିପାରୁ ନଥିଲେ । ସେମାନଙ୍କ ପାଇଁ ଟିକେ ମୁଖ୍ୟମନ୍ତ୍ରୀଙ୍କୁ କହିବା ପାଇଁ ସେମାନେ ମତେ ଅନୁରୋଧ କରିଥିଲେ । ମୁଁ ସମୟ ସୁବିଧା ଦେଖି କହିବି ବୋଲି ପ୍ରତିଶ୍ରୁତି ଦେଇଥିଲି । ଥରେ ମୁଁ ନନ୍ଦିନୀ ଦେବୀଙ୍କ ପାଖରେ କେହି ନଥିବାବେଳେ ଏ ପ୍ରସଙ୍ଗ ଉଠାଇଲି । ସେ କହିଲେ ତୁମକୁ ସେମାନେ ଯାହା କହିଛନ୍ତି ସେ କଥା ଠିକ୍ ବୋଲି କାହିଁକି ଭାବୁଛ ? ସବୁ ଦିଗରୁ ବିଚାର କରି ଏ ବ୍ୟବସ୍ଥା ନିଆଯାଇଛି । ସେଥିରେ ଆଉ ପୁନର୍ବିଚାରର ପ୍ରଶ୍ନନାହିଁ ବୋଲି ସେ ରୋକଠୋକ୍ କହିଦେଲେ । ମୁଁ ସେକଥା ସେ ଦୁହିଁଙ୍କୁ କହିଲି । ସେମାନେ କହିଲେ ଆମେ ଜାଣିଛୁ କିଏ ଆମ ବିରୁଦ୍ଧରେ କହିଥିବ । ଠାକୁରେ ଅଛନ୍ତି । ମୋ ମନଟା ଦୁଃଖରେ ପୂରିଗଲା । ମୁଁ ତା'ପରେ ଅନୁସନ୍ଧାନ କଲି କେତେ ଲୋକଙ୍କୁ ଅବସର ଦିଆଯାଇଛି ତା'ର ସଂଖ୍ୟା ଜାଣିବା ପାଇଁ । ଏ ସମ୍ପର୍କରେ ସେତେବେଳକାର ରାଜସ୍ୱ ସଚିବ ସୁଧାଂଶୁ ମୋହନ ପଟ୍ଟନାୟକଙ୍କୁ ପଚାରିଥିଲି । ସୁଧାଂଶୁ ବାବୁ କହିଲେ କେତେ ସଂଖ୍ୟା ଜାଣି ଆପଣ କ'ଣ କରିବେ ? ଏକଥା ତ ଆପଣ କାଗଜରେ ଦେଇ ପାରିବେ ନାହିଁ । ମୁଁ କହିଲି ସାର୍ କେବଳ ମୋ ନିଜର କୌତୁହଳ ଚରିତାର୍ଥ ପାଇଁ ମୁଁ ଜାଣିବାକୁ ଚାହୁଁଛି । ସେ କହିଲେ ଠିକ୍ ସଂଖ୍ୟା ମୁଁ ନକହି ପାରିଲେ ମଧ୍ୟ ୩୮୦ରୁ ଅଧିକ ଲୋକଙ୍କୁ ବାଧତାମୂଳକ ଅବସର ଦିଆଯାଇଛି ।

ସେତିକିବେଳେ ଆଉ ଏକ ଅଘଟଣା ଘଟିଲା । ୧୯୭୫ ମସିହା ଶେଷ ଭାଗରେ ବିଖ୍ୟାତ ଶିକ୍ଷାବିତ୍ ଏବଂ ଡି.ପି.ଆଇ. ବିଧୁଭୂଷଣ ଦାସଙ୍କୁ ଅତି ଅପମାନଜନକ ଭାବେ ହଟାଇ ଦିଆଗଲା । ତାଙ୍କୁ କୌଣସି କାର୍ଯ୍ୟ ନଥିବା ଏନ୍.ସି.ଇ.ଆର୍.ଟି. ସଂସ୍ଥାର ନିର୍ଦ୍ଦେଶକ ପଦରେ ଅବସ୍ଥାପିତ କରାଗଲା । ଏ କଥା ସେତେବେଳେ ଚାରିଆଡ଼େ ଚର୍ଚ୍ଚାର ବିଷୟ ହୋଇଥିଲା । ଜଣେ ଜଣାଶୁଣା ପ୍ରଫେସର ମୋତେ କହିଲେ ରମାକାନ୍ତ ବିଧୁବାବୁଙ୍କ ଉପରେ ତାଙ୍କର ରାଗ ଶୁଝାଇ ଦେଲେ । କ'ଣ ରାଗ ବୋଲି ପଚାରିବାରୁ ସେ କହିଲେ, ଏମ୍.ଏ. ଇଂରାଜୀ ଚୂଡ଼ାନ୍ତ ପରୀକ୍ଷାରେ ବିଧୁବାବୁ ଗୌର କିଶୋର ଦାସଙ୍କୁ ପ୍ରଥମକରି ରମାକାନ୍ତଙ୍କୁ ଦ୍ୱିତୀୟ କରିଥିଲେ । ସେଇଦିନୁ ରମାକାନ୍ତଙ୍କର ବିଧୁବାବୁଙ୍କ ଉପରେ ରାଗ ଥିଲା । ଏହି ସମୟରେ ଆଉ ଏକ ଅଘଟଣ ଘଟିଲା । ବାଣୀବିହାରର ଏକ ଛାତ୍ର ସଭାକୁ ମୁଖ୍ୟମନ୍ତ୍ରୀଙ୍କୁ ଆମନ୍ତ୍ରଣ କରାଯାଇଥିଲା । ସେଦିନ ଗୋଳମାଳ ହେବ ବୋଲି ପୋଲିସ୍ ରିପୋର୍ଟ କରି ମୁଖ୍ୟମନ୍ତ୍ରୀଙ୍କୁ ନଯିବା ପାଇଁ ପରାମର୍ଶ ଦେଇଥିଲା । ମାତ୍ର ନନ୍ଦିନୀ ଦେବୀ ଜିଦ୍ କରି ସେ ସଭାକୁ ଗଲେ । ମୁଁ ମଧ୍ୟ ସେ ସଭାକୁ ଯାଇଥିଲି । ବାଣୀବିହାରରେ ଅନେକ ଛାତ୍ର ହଠାତ୍ କଳା ପତାକା ଦେଖାଇ ଗୋ-ବ୍ୟାକ୍ ଚିଫ୍ ମିନିଷ୍ଟର ଗୋ-ବ୍ୟାକ୍ । ଉଇ କଣ୍ଡେମ୍‌ଡ ଏମର୍‌ଜେନ୍ସି । ଛାତ୍ରମାନଙ୍କର ଏ ପ୍ରକାର ଆଚରଣ ଦେଖି ସେମାନଙ୍କ ଉପରେ ପୋଲିସ୍ ଲାଠି ଚାର୍ଜ କରିଥିଲା । ସେ ସଭାକୁ ସବୁ ପ୍ରଫେସର ଆସିବା ପାଇଁ କୁହାଯାଇଥିଲା । ମାତ୍ର ଡଃ ଶ୍ରୀରାମ ଦାସ ଆସି ନଥିଲେ । ମୁଁ ଏବଂ ମୋ ସାଙ୍ଗରେ ଧରିତ୍ରୀ ସାମ୍ବାଦିକ ଅକ୍ଷୟ ପତି ମଧ୍ୟ ସେଠାକୁ ଯାଇଥିଲେ । ସେଇଠି କେତେକ କୁହାକୁହି ହେଲେ ଏ ଟିକାଙ୍କ ମଧ୍ୟରୁ ଅଧିକାଂଶ ରାଜନୀତି ବିଜ୍ଞାନର ଛାତ୍ର । ଘଟଣା ସେଦିନ ସେଇଠି ରହିଲା । ମୁଖ୍ୟ ମନ୍ତ୍ରୀ ଅଳ୍ପ ଛାତ୍ର ଓ ଅଧ୍ୟକ୍ଷଙ୍କୁ ଦେଖି ଅଳ୍ପ ସମୟ ପରେ ଫେରି ଆସିଲେ । ତେବେ ନନ୍ଦିନୀ ଦେବୀ ଫେରି ଆସିବା ପରେ କଳା ପତାକା ପ୍ରଦର୍ଶନ କରିଥିବା ଛାତ୍ରମାନଙ୍କ ଉପରେ ପଟିଆ ଅଞ୍ଚଳର କେତେକ ଗୁଣ୍ଡା ଶ୍ରେଣୀୟ ଯୁବକ ଆକ୍ରମଣ କରିଥିଲେ । ଛାତ୍ର ଓ ଏହି ଗୁଣ୍ଡାମାନଙ୍କ ମଧ୍ୟରେ ମାଡ଼ପିଟ ହୋଇ ଅନେକ ଛାତ୍ର ଆହତ ହୋଇଥିଲେ । ଆହତ ଛାତ୍ରମାନଙ୍କ ମଧ୍ୟରୁ

ଅନେକଙ୍କୁ ଗିରଫ କରାଯାଇଥିଲା । ସେ ଘଟଣାବେଳେ ସମାଜର ପ୍ରଦୋଷ ପଟ୍ଟନାୟକ ଓ ହିନ୍ଦୁସ୍ଥାନ ସମାଚାରର ଦିଲ୍ଲିପରାଜ ମଧ ଥିଲେ ।

କିଛିଦିନ ପରେ ଏହି ଘଟଣାର ଫଳ ଫଳିଲା । ୧୯୭୬ ଜାନୁଆରୀ ମାସରେ ଡଃ ଶ୍ରୀରାମ ଦାଶଙ୍କୁ ବାଧ୍ୟତାମୂଳକ ଅବସର ଦିଆଗଲା । ମୁଁ ଯାହା ଜାଣିଛି ଡଃ ଦାଶ ମୁଖ୍ୟମନ୍ତ୍ରୀ ଓ ରମାକାନ୍ତ ରଥଙ୍କୁ ଭେଟି ତାଙ୍କ ବିରୁଦ୍ଧରେ ହୋଇଥିବା ଦଣ୍ଡାଦେଶ ଠିକ୍ ନୁହେଁ ଏବଂ ଛାତ୍ର ଆନ୍ଦୋଳନରେ ସେ ସଂପୃକ୍ତ ନୁହନ୍ତି ବୋଲି ଯେତେ ଅନୁନୟ ବିନୟ ହୋଇ କହିଥିଲେ ମଧ କେହି ଶୁଣି ନଥିଲେ । ମାଥ୍ୟୁସ୍‌ଙ୍କ ସହ ଏ ସବୁ ଘଟଣା ସେତେବେଳେ ଅନେକ ଖୋଲାଖୋଲି ନହେଲେ ମଧ ନନ୍ଦିନୀ ଶତପଥୀଙ୍କୁ ଗାଳି ଗୁଲଜ କରିବାକୁ ପଛେଇ ନଥିଲେ ।

ନନ୍ଦିନୀ ଶତପଥୀ ଜରୁରୀ ପରିସ୍ଥିତି ସମୟରେ ନିଜ ଭାବମୂର୍ତ୍ତିବୃଦ୍ଧି କରିବାରେ ଅନେକ ଧରଣର କାରସାଦି କରିଥିଲେ । ପୂର୍ବରୁ କହିଛି ରାଜ୍ୟର ଚାରିଆଡ଼େ ଏସିଆର ମୁକ୍ତି ସୂର୍ଯ୍ୟ ଲାଲ୍ ସଲାମ ଲାଲ୍ ସଲାମ ଲେଖାଥିବା ରଙ୍ଗିନ୍ ପୋଷ୍ଟର ମରାଯାଇଥିଲା ।

୧୯୭୬ ଜୁଲାଇ ୨୮ ତାରିଖରେ ରମାକାନ୍ତ ରଥଙ୍କ ଚେୟରରେ ମୁଖ୍ୟ ସଚିବ ଜେ.ଏ. ତାଭେ, ଉପ-ମୁଖ୍ୟ ଶାସନ ସଚିବ ଏ.କେ. ମଜୁମ୍‌ଦାର, ଘରୋଇ ସଚିବ ବିଘ୍ନରାଜ ପଟେଲ ଏବଂ ଲୋକସମ୍ପର୍କ ବିଭାଗ ନିର୍ଦ୍ଦେଶକ ଏ.ଏନ୍.ତିୱାରୀ ଏକ ବୈଠକରେ ମିଳିତ ହୋଇ ଏକ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ଗ୍ରହଣ କରିଥିଲେ । ଏହି ନିଷ୍ପତ୍ତି ଅନୁସାରେ ରାଜ୍ୟର ସମସ୍ତ ସରକାରୀ ଅଫିସ୍‌ରେ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଗାନ୍ଧୀଙ୍କ ଛବି(ପୂର୍ବରୁ ନିର୍ଦ୍ଦେଶିତ ହୋଇ ଟଙ୍ଗା ହୋଇଥିଲା) ସହ ଠିକ୍ ସେହି ଆକାରର ଶ୍ରୀମତୀ ଶତପଥୀଙ୍କ ଛବି ଟଙ୍ଗା ହେବାପାଇଁ ନିଷ୍ପତ୍ତି ହେଲା । ଏହି ନିଷ୍ପତ୍ତି ରାଜ୍ୟର ସମସ୍ତ ଅଫିସ୍‌କୁ ଜଣାଇ ଦିଆଗଲା । ଏହି ଘଟଣା ସେଦିନ ମୋତେ ତିୱାରୀ ସାହେବ କହିଥିଲେ । ସେ ଜାଣିଥିଲେ ମୁଁ ଏବଂ ଆମ କାଗଜ ନନ୍ଦିନୀ ଦେବୀଙ୍କ ସମର୍ଥକ । ତେଣୁ ଅନେକ କଥା ସେ ମୋତେ ନିସଙ୍କୋଚରେ କହୁଥିଲେ । ଏହି ନିଷ୍ପତ୍ତି ମୁଁ ଆମ କାଗଜରେ ବାଗେଇ ଚୁନେଇ ଦେଇଥିଲି । ତେବେ ଅସୁବିଧା ହେଲା ଆମ କାଗଜରେ ଏହା ପ୍ରକାଶ ପାଇବା ପରେ ଜାନକୀବାବୁ ତା'ର କଟିଂ ଏବଂ ତା'ର ଇଂରେଜୀ ଭାଷାନ୍ତର ସଞ୍ଜୟ ଗାନ୍ଧୀଙ୍କୁ ଦେଇଥିଲେ । ଏ ବିଷୟ ସେତେବେଳେ ଜାନକୀବାବୁଙ୍କର ଜଣେ ଅନ୍ତରଙ୍ଗ ଲୋକ ରମାକାନ୍ତ ମିଶ୍ର ମୋତେ କହିଥିଲେ ।

ମୁଁ ଏସବୁ କଥା ବଖାଣିବାର ଏକମାତ୍ର କାରଣ ହେଲା ଜଣେ ସାମ୍ବାଦିକ ରୂପେ ମୋ ଜାଣିବାରେ ସମାଜ, ଶାସନ ଓ ସାଧାରଣ କ୍ଷେତ୍ରରେ କ'ଣ କ'ଣ ଘଟୁଥିଲା ତା' ଉଲ୍ଲେଖ କରିବାର ଆବଶ୍ୟକତା ରହିଛି ବୋଲି ମୋର ମନେହୁଏ । ଆତ୍ମଜୀବନୀରେ ଏହା ଉଲ୍ଲେଖ କରିବାର ଗୁରୁତ୍ୱ ମଧ ରହିଛି ।

ନନ୍ଦିନୀ ଦେବୀ ଦ୍ୱିତୀୟ ଥର ମୋଟ୍ ୨ବର୍ଷ ୯ମାସ କାଳ କ୍ଷମତାରେ ଥିଲେ । ତାଙ୍କ ବିରୋଧରେ କେନ୍ଦ୍ର ବିଶେଷ କରି ଇନ୍ଦିରା ଗାନ୍ଧୀଙ୍କୁ ମୁକାବିଲା କରିବାର ଅଭିଯୋଗ ଏକାଧିକ ଅସନ୍ତୁଷ୍ଟ କଂଗ୍ରେସ ନେତା ଆଗତ କରିଥିଲେ । ଶେଷରେ ଶ୍ରୀମତୀ ଗାନ୍ଧୀ ତାଙ୍କୁ ଇସ୍ତଫା ଦେବାପାଇଁ ନିର୍ଦ୍ଦେଶ ଦେଇଥିଲେ । ମାତ୍ର ଶ୍ରୀମତୀ ଶତପଥୀ ଇସ୍ତଫା ଦେବେ ନାହିଁ ପ୍ରଥମରୁ ଅଡ଼ି ବସିଥିଲେ । ଯେଉଁଦିନ ( ୧୯୭୬ ଡିସେମ୍ବର ୧୬ ତାରିଖ ) ଶ୍ରୀମତୀ ଶତପଥୀ ଇସ୍ତଫା ଦେବାକଥା ସେଦିନ ସକାଳୁ ସେ ଢେଙ୍କାନାଳ ଚାଲିଗଲେ । ଏଣେ କାଳେ କିଛି ଅଘଟଣ ଘଟିବ ସେଥିପାଇଁ

କେନ୍ଦ୍ରରୁ ଶତାଧିକ ପାରା ମିଲିଟାରୀ ଫୋର୍ସ ଚାରୋଟି ସେନାବାହିନୀ ବିମାନଯୋଗେ ଭୁବନେଶ୍ୱର ଆସି ପହଞ୍ଚିଲେ । ସେମାନେ ସହର ଭିତରେ ଫ୍ଲାଗ୍ ମାର୍ଚ୍ଚ କରି ଘୁରିଲେ । ନନ୍ଦିନୀ ଦେବୀ ଇସ୍ତଫା ତ୍ୱରାନ୍ୱିତ କରିବା ପାଇଁ କେନ୍ଦ୍ରରୁ ଯଥେଷ୍ଟ କ୍ଷମତାପ୍ରାପ୍ତ ହୋଇ ଓଡ଼ିଶାର ପୂର୍ବତନ ମୁଖ୍ୟ ଶାସନ ସଚିବ ଏମ୍. ରାମକୃଷ୍ଣୟା ଭୁବନେଶ୍ୱର ଆସି ରାଜଭବନରେ ରହୁଥିଲେ । ଯଦି ନନ୍ଦିନୀ ଦେବୀ ଇସ୍ତଫା ନଦେବେ ତେବେ ତାଙ୍କୁ ଡିସ୍‌ମିସ୍ କରାଯିବ ବୋଲି କେନ୍ଦ୍ର ନିର୍ଦ୍ଦେଶ ଦେଇଥିବା କଥା ଶୁଣା ଯାଇଥିଲା । ସେଥିପାଇଁ ରାମକୃଷ୍ଣୟ ରାଜ୍ୟପାଳଙ୍କ ସ୍ୱତନ୍ତ୍ର ପରାମର୍ଶଦାତା ରୂପେ ଭୁବନେଶ୍ୱର ଆସିଥିଲେ ।

## -ନନ୍ଦିନୀ ଶତପଥୀଙ୍କ ଇସ୍ତଫା-

ଡିସେମ୍ବର ୧୬ ତାରିଖ କଥା ଏବେ ବି ମୋର ସ୍ପଷ୍ଟ ମନେ ଅଛି । ସକାଳ ୧୦ଟା ବେଳକୁ ମୁଁ ସ୍କୁଟର ଧରି ନନ୍ଦିନୀ ଶତପଥୀ ରହୁଥିବା ମୁଖ୍ୟମନ୍ତ୍ରୀ ନିବାସରେ ପହଞ୍ଚିଲି ।

ଡିସେମ୍ବର ୧୬ ତାରିଖ ସକାଳ ୧୦ଟା ବେଳକୁ ମୁଁ ସ୍କୁଟର ଧରି ନନ୍ଦିନୀ ଶତପଥୀ ରହୁଥିବା ମୁଖ୍ୟମନ୍ତ୍ରୀ ନିବାସରେ ପହଞ୍ଚିଲି । ଆଉ କେତେକ ସାମ୍ବାଦିକ ମଧ ଥିଲେ । ସେଇଠି ମନ୍ତ୍ରୀ ଡଃ ଭୋଇ, ଯଦୁନାଥ ଦାଶ ମହାପାତ୍ର, ଦିବ୍ୟଲୋଚନ ଶେଖର ଦେଓ ଏବଂ ବ୍ରହ୍ମାନନ୍ଦ ବିଶ୍ୱାଳ ପ୍ରମୁଖ ଏପଟ ସେପଟ ହେଉଥା'ନ୍ତି । ମୁଖ୍ୟମନ୍ତ୍ରୀ କେତେବେଳେ ଇସ୍ତଫା ଦେବାପାଇଁ ଯିବେ ବୋଲି ସମସ୍ତେ ପରସ୍ପରକୁ ପଚାରୁଥାନ୍ତି । ସମସ୍ତେ ଜାଣିଥା'ନ୍ତି ମୁଖ୍ୟମନ୍ତ୍ରୀ ଘର ଭିତରେ ଅଛନ୍ତି । ବାରଟା ବାଜିଲା । ମାତ୍ର ମୁଖ୍ୟମନ୍ତ୍ରୀ ବାହାରୁ ନଥା'ନ୍ତି । ମୁଁ ଭୋଇଙ୍କୁ ପଚାରିଲି କଥା କ'ଣ ? ସେ କହିଲେ ଦେଖାଯାଉ । ଆମକୁ କହିଛନ୍ତି ଅପେକ୍ଷା କରିବାକୁ । ମୋର ସନ୍ଦେହ ହେଲା । ସମସ୍ତେ ବାହାରେ ବୁଲୁଛନ୍ତି । ଅଥଚ ମୁଖ୍ୟମନ୍ତ୍ରୀ ଘରୁ ବାହାରୁ ନାହାନ୍ତି । ମୁଁ ଯାଇ ପି.ଏ. ସିଂହଙ୍କୁ ପଚାରିଲି । ସେ ପ୍ରଥମେ କିଛି କହିଲେ ନାହିଁ । ପରେ କହିଲେ ମ୍ୟାଡାମ୍ ଇସ୍ତଫା ଦେବା କଥା ସେ ଜାଣି ନାହାନ୍ତି । ପରେ ତାଙ୍କ ଠାରୁ ମୁଁ ଶୁଣିଲି ସେ ଢେଙ୍କାନାଳ ଯାଇଛନ୍ତି । କେତେବେଳେ ଆସିବେ ଜଣାନାହିଁ । ମୁଁ ଘରକୁ ଫେରି ଆସି ଖିଆପିଆ କରି ସାଢ଼େ ତିନିଟା ବେଳକୁ ପୁଣି ମୁଖ୍ୟମନ୍ତ୍ରୀ ନିବାସକୁ ଗଲି । ସେଇମିତି ଗହଳି ଚହଳି ଲାଗିଛି । ଡଃ ଭୋଇ ଦେଖାହେଲେ । କହିଲେ ସିଧା ରାଜଭବନକୁ ପଳା । ଚିଫ୍ ମିନିଷ୍ଟର ଢେଙ୍କାନାଳରୁ ସିଧା ରାଜଭବନ ଯିବେ । ମୁଁ ସେଇଠୁ ସିଧା ରାଜଭବନ ଗଲି । ଠିକ୍ ସାଢ଼େ ଚାରିଟା ବେଳକୁ ଶ୍ରୀମତୀ ଶତପଥୀ ରାଜଭବନ ଆସିଲେ । ଖବର ପାଇଁ ଅନେକ ସାମ୍ବାଦିକ ସେଠାରେ ଥିଲେ । ସେ କାହାକୁ କିଛି ନକହି ସିଧା ରାଜ୍ୟପାଳଙ୍କ ଅଫିସ୍ ପ୍ରକୋଷ୍ଠକୁ ଯାଇ ଦଶମିନିଟ୍ ମଧରେ ଫେରି ଆସି ଗାଡ଼ିରେ ବସିଲେ । ପରେ ରାମକୃଷ୍ଣୟା ଆସି ସାମ୍ବାଦିକମାନଙ୍କୁ କହିଲେ ମୁଖ୍ୟମନ୍ତ୍ରୀ ଇସ୍ତଫା ଦେଇଛନ୍ତି । ନିଜ ଦଳର ଜଣେ ମୁଖ୍ୟମନ୍ତ୍ରୀଙ୍କୁ ଗାଦିରୁ ହଟାଇବା ପାଇଁ ଏଭଳି ଆୟୋଜନ କେବେ ଦେଖା ଯାଇନଥିଲା । ନନ୍ଦିନୀ ଶତପଥୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ଏକଦା ଅତ୍ୟନ୍ତ ପ୍ରିୟ ଥିଲେ । ଏପରିକି ତାଙ୍କ ଘରେ ସେ ତାଙ୍କ ସହ ଏକା ଟେବୁଲ୍‌ରେ ଲଞ୍ଚ୍ ଡିନର ମଧ ଖାଇଥିଲେ । ମାତ୍ର ପରିସ୍ଥିତି ଏତେ ତୀବ୍ର ହେବ କେହି ଭାବି ନଥିଲେ ।

ଗୋଟିଏ ଅଧ୍ୟାୟ ଶେଷ ହେଲା । ତେବେ ପରବର୍ତ୍ତିମୁଖ୍ୟମନ୍ତ୍ରୀ କିଏ ହେବ ସେ ସମ୍ପର୍କରେ କଂଗ୍ରେସ ହାଇକମାଣ୍ଡ ସାଙ୍ଗେସାଙ୍ଗେ କୌଣସି ନିଷ୍ପତ୍ତି ନେଇ ପାରିଲେ ନାହିଁ । ତେଣୁ ଡିସେମ୍ବର ୧୬ ତାରିଖରୁ ଓଡ଼ିଶାରେ ରାଷ୍ଟ୍ରପତି ଶାସନ ଜାରି ହେଲା । ସେତେବେଳେ ରାଜ୍ୟରେ କୌଣସି ସ୍ଥାୟୀ ରାଜ୍ୟପାଳ ନଥିଲେ । ନିୟମିତ ରାଜ୍ୟପାଳ ଆକବର ଅଲ୍ଲି ଖାଁ ୧୯୭୬ ଏପ୍ରିଲ୍ ୧୭ ତାରିଖରୁ ବିଦାୟ ନେଇଥିଲେ । ତାଙ୍କ ପରେ ପରେ ଓଡ଼ିଶା

ହାଇକୋର୍ଟର ମୁଖ୍ୟ ବିଚାରପତି ଜଷ୍ଟିସ୍ ଶିବ ନାରାୟଣ ଶଙ୍କର ରାଜ୍ୟପାଳ ଦାୟିତ୍ୱରେ ଥିଲେ । ସେ ୧୯୭୭ ଫେବୃଆରୀ ୭ ତାରିଖ ପର୍ଯ୍ୟନ୍ତ ଥିଲେ । ଓଡ଼ିଶାରେ ଏତେ ଲମ୍ବା ସମୟ ପାଇଁ କୌଣସି ଅସ୍ଥାୟୀ ରାଜ୍ୟପାଳ ପୂର୍ବରୁ ବା ଆଜି ପର୍ଯ୍ୟନ୍ତ ହୋଇନାହାନ୍ତି । ୧୯୭୭ ଫେବୃଆରୀ ୨ ତାରିଖରେ ହରଚରଣ ସିଂହ ବାବୁ ଓଡ଼ିଶାର ନୂଆ ରାଜ୍ୟପାଳ ରୂପେ ଯୋଗ ଦେଲେ ।

## -ବିନାୟକ ଆଚର୍ଯ୍ୟ ମୁଖ୍ୟମନ୍ତ୍ରୀ-

ସବୁ କଳ୍ପନା ଜଳ୍ପନାର ଅବସାନ ଘଟାଇ ଡିସେମ୍ବର ୨୯ ତାରିଖରେ ବିନାୟକ ଆଚାର୍ଯ୍ୟ ମୁଖ୍ୟମନ୍ତ୍ରୀ ହେଲେ । ବିନାୟକବାବୁ ଅତ୍ୟନ୍ତ ସରଳ ଲୋକ ଥିଲେ । ସେ ରାଜନୀତିକୁ ଆସିବା ପୂର୍ବରୁ ହାଇସ୍କୁଲ ପ୍ରଧାନ ଶିକ୍ଷକ ଥିଲେ । ସେ ଅତ୍ୟନ୍ତ ସଚ୍ଚୋଟ ଓ ସରଳ ଲୋକ ଥିଲେ । ବିନାୟକବାବୁ ମୁଖ୍ୟମନ୍ତ୍ରୀ ଶପଥ ନେବାବେଳେ ଅତି ଆଶ୍ଚର୍ଯ୍ୟଜନକ ଭାବେ ସ୍ୱାଧୀନ ବିଧାୟକ ଡାକ୍ତର ଯୋଗେଶ ଚନ୍ଦ୍ର ରାଉତ କୃଷି ଓ ସମବାୟ ବିଭାଗର କ୍ୟାବିନେଟ୍ ମନ୍ତ୍ରୀ ରୂପେ ଶପଥ ନେଲେ । ଯୋଗେଶ ବାବୁ ଆମ ବାଙ୍କୀର । ମୋ ସାଙ୍ଗରେ ତାଙ୍କର ଖୁବ୍ ଘନିଷ୍ଠତା ଥିଲା । ସେ ପୂର୍ବରୁ କଂଗ୍ରେସ ସଦସ୍ୟ ଓ ବିଧାୟକ ଥିଲେ । ମାତ୍ର ୧୯୭୪ ନିର୍ବାଚନରେ ନନ୍ଦିନୀ ଦେବୀ ତାଙ୍କୁ କଂଗ୍ରେସ ଟିକେଟ ନଦେବାରୁ ସେ ସ୍ୱାଧୀନ ଭାବେ ପ୍ରତିଦ୍ୱନ୍ଦ୍ୱିତା କରି ଜୟଲାଭ କରିଥିଲେ । ଫଳରେ ତାଙ୍କୁ କଂଗ୍ରେସର ପ୍ରାଥମିକ ସଦସ୍ୟ ପଦରୁ ବହିଷ୍କାର କରାଯାଇଥିଲା । ସେ ଜାନକୀବାବୁଙ୍କର ଘନିଷ୍ଠ ବନ୍ଧୁ ଥିଲେ । ଦିହେଁ ଆଇ.ଏସ୍.ସି.ରେ ଏକା ସାଙ୍ଗରେ ରେଭେନ୍ସାରେ ପଢୁଥିଲେ । ସେଇ ଦିନଠାରୁ ଦୁହିଁଙ୍କ ମଧ୍ୟରେ ସମ୍ପର୍କ ରହିଥିଲା । ନନ୍ଦିନୀ ଶତପଥୀ ବିଦାୟ ନେବାପରେ ଜାନକୀବାବୁ ବହିଷ୍କାର ଆଦେଶ ଉଠାଇ ଦେଇ ତାଙ୍କୁ କଂଗ୍ରେସରେ ଗ୍ରହଣକରି ବିନାୟକବାବୁଙ୍କୁ ତାଙ୍କୁ ମନ୍ତ୍ରୀ କରିବା ପାଇଁ ଚାପ ଦେଲେ । ଯୋଗେଶବାବୁ ମନ୍ତ୍ରୀ ହେଲେ । ଯୋଗେଶବାବୁ ମନ୍ତ୍ରୀ ହେବାପରେ ସାରା ବାଙ୍କୀରେ ଆନନ୍ଦ ଖେଳି ଯାଇଥିଲା । ମୁଁ ସେତେବେଳେ ପ୍ରାୟ ଯୋଗେଶବାବୁଙ୍କୁ ସେକ୍ରେଟେରିଏଟ୍‌ରେ ଦେଖା କରୁଥିଲି । ଯୋଗେଶବାବୁଙ୍କର ସେତେବେଳେ ନିଜର କାର୍ ନଥିଲା । ବାଙ୍କୀରେ ଥିଲାବେଳେ ସେ ସାଇକେଲ୍‌ରେ ଯିବା ଆସିବା କରୁଥିଲେ । ମନ୍ତ୍ରୀ ହେବା ପରେ ମୁଁ ଦିନେ ତାଙ୍କୁ କହିଲି- ଆପଣ ଏଥର ସରକାରଙ୍କ ଠାରୁ ଋଣ ନେଇ ଗୋଟେ କାର୍ କିଣନ୍ତୁ । ମନ୍ତ୍ରୀ ହେବାପରେ ଆଉ ସାଇକେଲ୍‌ରେ କିମ୍ବା ବସ୍‌ରେ ଯିବା ଆସିବା କରିବା ଠିକ୍ ହେବ ନାହିଁ । ସେ ମୋତେ କହିଲେ ବରି( ମୋ ଡାକ ନାଁ ) କାର୍ ସିନା କିଣିବି । କିନ୍ତୁ ଟଙ୍କା ଶୁଝିବି କିପରି ? ମୁଁ କହିଲି ୧୯୪୭ ମସିହାରୁ କାର୍ ପାଇଁ ଋଣ ନେଇଥିବା ମନ୍ତ୍ରୀମାନେ ଆଜି ପର୍ଯ୍ୟନ୍ତ ଟଙ୍କା ଶୁଝି ନାହାନ୍ତି । ଆପଣ କାର୍ କିଣିବା ପୂର୍ବରୁ ଟଙ୍କା ଶୁଝିବା ପାଇଁ ଚିନ୍ତା କଲେଣି ? ସେ ମୋତେ ଉତ୍ତର ଦେଲେ ଆରେ ଯେଉଁମାନେ ସରକାରୀ ଋଣ ନେଇ ଶକ୍ତିଥିବା ସତ୍ତ୍ୱେ ତା'ର ପରିଶୋଧ କରିନାହାନ୍ତି ସେମାନେ କ'ଣ ଆମ ଆଦର୍ଶ ? ମୁଁ କିନ୍ତୁ ତାଙ୍କୁ କାର୍ କିଣାଇ ଦେଇଥିଲି । ପଣ୍ଡା କମ୍ପାନୀରୁ ସେ ଗୋଟିଏ ଫିଆଟ୍ କାର୍ କିଣିଥିଲେ । ଯୋଗେଶବାବୁ ମାତ୍ର ୪ମାସ ପାଇଁ ମନ୍ତ୍ରୀ (୨୯.୧୨.୭୬ରୁ ୩୦.୦୪.୭୭) ଥିଲେ । ଯୋଗେଶବାବୁ ଥିଲେ ଏକ ସ୍ୱତନ୍ତ୍ର ମୂଲ୍ୟବୋଧର ମଣିଷ । ଓଡ଼ିଶା ରାଜନୀତିରେ ତାଙ୍କଭଳି ଖୁବ୍ କମ୍ ନେତା ଅଛନ୍ତି ।

ଜରୁରୀକାଳୀନ ପରିସ୍ଥିତି ବେଳେ ବିନାୟକ ଆଚାର୍ଯ୍ୟ ମୁଖ୍ୟମନ୍ତ୍ରୀ ହେବାପରେ ଜାନୁଆରୀ ମାସ ୧୫ ତାରିଖରେ କରେଣ୍ଟ ଇଂରାଜୀ ସାପ୍ତାହିକ ପତ୍ରିକାର ସମ୍ପାଦକ ଆୟୁବ ସୟିଦ୍ ଭୁବନେଶ୍ୱର ଆସିଥିଲେ । ମୁଁ ସେତେବେଳେ 'ମାତୃଭୂମି' ଷ୍ଟାଫ୍ ରିପୋର୍ଟର ସାଙ୍ଗକୁ କରେଣ୍ଟ ସାପ୍ତାହିକ ପତ୍ରିକାର ଭୁବନେଶ୍ୱର ପ୍ରତିନିଧି ଥାଏ ।

ମୋତେ ମାସକୁ ତିନିଶହ ଟଙ୍କା ବେତନ ମିଳୁଥାଏ । ଏକ ସମୟରେ ମୁଁ ଓଡ଼ିଆ ଦୈନିକ 'ମାତୃଭୂମି', ଇଂରାଜୀ ଦୈନିକ ନ୍ୟାସନାଲ୍ ହେରାଲ୍ଡ ଓ ଇଂରାଜୀ ସାପ୍ତାହିକ 'କରେଣ୍ଟ'ର ଭୁବନେଶ୍ୱର ପ୍ରତିନିଧି ରୂପେ କାର୍ଯ୍ୟ କରୁଥିଲି । ମାତୃଭୂମିରୁ ମୁଁ ମାସିକ ଛ'ଶହ ଟଙ୍କା, ହେରାଲ୍ଡରୁ ଚାରିଶହ ଓ କରେଣ୍ଟରୁ ତିନିଶହ ଟଙ୍କା ବେତନ ପାଉଥିଲି । ତେଣୁ ମୋର ଆର୍ଥିକ ଅବସ୍ଥା ଭଲ ଥାଏ ।

ଯେଉଁ ସମୟର(୧୯୭୬-୭୭) କଥା କହୁଛି ସେତେବେଳେ କେନ୍ଦ୍ରରେ ସଞ୍ଜୟ ଗାନ୍ଧୀ ପ୍ରବଳ ପରାକ୍ରମୀ ଥିଲେ । ଆୟୁବ୍ ସୟିଦ୍ ତାଙ୍କ ଗୋଷ୍ଠିର ଜଣେ ପ୍ରଧାନ କାର୍ପଟଦାର ଥିଲେ । ତେଣୁ କରେଣ୍ଟ ଚାରିଆଡୁ ଭଲ ବିଜ୍ଞାପନ ପାଉଥାଏ । ଆୟୁବ ସୟିଦ ଭୁବନେଶ୍ୱର ଆସି ଷ୍ଟେଟ ଗେଷ୍ଟ ହାଉସ୍‌ର ଷ୍ଟେଟ ଗେଷ୍ଟ ହୋଇ ଭି.ଆଇ.ପି. ରୁମ୍‌ରେ ରହିଲେ । ଗେଷ୍ଟହାଉସ୍‌ର କାର୍ ତାଙ୍କ ପାଇଁ ବ୍ୟବସ୍ଥା ହୋଇଥିଲା । ସେଦିନ ମୋତେ ନେଇ ସେ ସିଧା ବିନାୟକ ଆଚାର୍ଯ୍ୟଙ୍କ ପାଖକୁ ଗଲେ । ବିନାୟକବାବୁଙ୍କ ରୁମ୍‌ରେ ପଶିଯାଇ ଏଣୁତେଣୁ କଥାବାର୍ତ୍ତାବେଳେ ମୋତେ ପରିଚୟ କରାଇ ଦେଲେ । କହିଲେ ଧଲ୍ ଯାହା ଯେତେବେଳେ ଦରକାର କରିବେ ତାଙ୍କୁ ସାହାଯ୍ୟ କରିବେ । ବିନାୟକ ଆଚାର୍ଯ୍ୟଙ୍କ ସହ ଆୟୁବ ସୟିଦଙ୍କ ବ୍ୟବହାର ମୋତେ ଭଲ ଲାଗି ନଥିଲା । ବିଶେଷ କରି ସେ ବିନାୟକ ଆଚାର୍ଯ୍ୟଙ୍କୁ ବାବୁ ବା ମିଃ ନକହି କେବଳ ବିନାୟକ ବୋଲି କହୁଥିଲେ । ବିନାୟକ ବାବୁ ଏଇମିତି ଶାନ୍ତ ସରଳ ଲୋକ । ସେ ଆୟୁବ ସୟିଦଙ୍କ ଏହି ଧରଣର କଥାକୁ ସହ୍ୟ କରିନେଇଥିଲେ । ତା'ର ଏକମାତ୍ର କାରଣ ହୋଇଥିଲା ଆୟୁବ ସୟିଦ ସଞ୍ଜୟ ଗାନ୍ଧୀଙ୍କ ଘନିଷ୍ଠ ବନ୍ଧୁ ।

ସେ ସେଇଦିନ ପ୍ଲେନ୍‌ରେ କଲିକତା ଯାଇ ସେଠାରୁ ବମ୍ବେ ଯିବା କଥା । ଗେଷ୍ଟ ହାଉସ୍‌ରୁ ସେ ଏୟାରପୋର୍ଟ ମ୍ୟାନେଜର୍‌ଙ୍କୁ ଫୋନ୍ କରି ସେଦିନ ବମ୍ବେ ଫ୍ଲାଇଟ୍‌ରେ ତାଙ୍କ ସିଟ୍ ରିଜର୍ଭ କରିବା ପାଇଁ କହିଲେ । ମୁଁ ତାଙ୍କ କାର୍ଯ୍ୟକଳାପ ଦେଖି ଆଶ୍ଚର୍ଯ୍ୟ ହେଉଥାଏ । ତା'ପରେ ଶୁଣିଲି ସେ ଇଣ୍ଡିଆନ୍ ଏୟାର ଲାଇନ୍ସର ବୋର୍ଡ଼ ଅଫ୍ ମ୍ୟାନେଜ୍‌ମେଣ୍ଟର ସଭ୍ୟ । ସେ ସମୟରେ ଭୁବନେଶ୍ୱରରୁ ଦିଲ୍ଲୀ ବିମାନ ସେବା ହୋଇ ନଥାଏ । ୧୯୮୦ ମସିହାରେ ଜାନକୀ ବାବୁ କେନ୍ଦ୍ର ବେସାମରିକ ବିମାନ ଚଳାଚଳ କ୍ୟାବିନେଟ୍ ମନ୍ତ୍ରୀ ହେବାପରେ ଭୁବନେଶ୍ୱରରୁ ନୂଆଦିଲ୍ଲୀ ବିମାନସେବା ଆରମ୍ଭ ହେଲା । ଆୟୁବ୍ ସୟିଦଙ୍କ କଥା ଉଲ୍ଲେଖ କଲି ଏଇଥିପାଇଁ ସଞ୍ଜୟ ଗାନ୍ଧୀଙ୍କ ବନ୍ଧୁ ହୋଇଥିବାରୁ ସେ ମଧ ବହୁ କ୍ଷମତାର ଅଧିକାରୀ ଥିଲେ । ତାଙ୍କର କ୍ଷମତା ଏଭଳି ଅବସ୍ଥାରେ ପହଞ୍ଚିଥିଲା ଯେ ସେତେବେଳେ ଇନ୍ଦ୍ରଚନ୍ଦ୍ର ମଧ ମାନୁନଥିଲେ ।

ଜରୁରୀକାଳୀନ ପରିସ୍ଥିତି ପୂର୍ବରୁ ୧୯୭୪ ମସିହା ସେପ୍ଟେମ୍ବର ମାସରେ ଓଡ଼ିଶାରେ ଭାରତୀୟ ଲୋକଦଳର ଶାଖା ଗଠନ ହୋଇଥିଲା । ଉତ୍କଳ କଂଗ୍ରେସ, ସ୍ୱତନ୍ତ୍ର ଓ ଏସ୍.ଏସ୍.ପି. ଦଳ ଏଥିରେ ଯୋଗ ଦେଇଥିଲେ । ମୋର ଯାହା ମନେ ପଡୁଛି ନୀଳମଣି ରାଉତରାୟ ଏହାର ସଭାପତି ହୋଇଥିଲେ । ଓଡ଼ିଶା ରାଜନୀତିରେ ଅନ୍ୟତମ ମୁଖ୍ୟ ପୁରୁଷ ଏବଂ ଚାଣକ୍ୟ ନାମରେ ଖ୍ୟାତ ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କର ୧୯୭୫ ଫେବୃଆରୀ ୨୩ ତାରିଖରେ ବମ୍ବେଠାରେ ଦେହାନ୍ତ ହୋଇଥିଲା । ଏକ ସ୍ୱତନ୍ତ୍ର ବିମାନରେ ତାଙ୍କ ମର ଶରୀର ଭୁବନେଶ୍ୱରକୁ ଅଣାଯାଇ ବଲାଙ୍ଗିର ନିଆଯାଇଥିଲା । ତାଙ୍କ ଶବ ଶୋଭାଯାତ୍ରାରେ ବଲାଙ୍ଗିରରେ ଅଭୂତପୂର୍ବ ଜନ ସମାବେଶ ହୋଇଥିଲା ।

## -ପ୍ରଥମ ଉତ୍କଳ ଦିବସ ଓ ଜୟ ପ୍ରକାଶଙ୍କ ସଭା-

୧୯୭୫ ମସିହା ଏପ୍ରିଲ ପହିଲାରେ ସଚିବାଳୟ ସମ୍ମୁଖସ୍ଥ ପ୍ୟାରେଡ ପଡ଼ିଆ(ଏବେ ଇନ୍ଦିରା ଗାନ୍ଧୀ ପାର୍କ)ରେ ଜୟପ୍ରକାଶଙ୍କ ସଭାକୁ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀ ଭଣ୍ଡୁର କରିଦେଇ ସେଠାରେ ଉତ୍କଳ ଦିବସ ସରକାରୀ ଭାବେ ପାଳନ ହେଲା । ଓଡ଼ିଶାରେ ସେଇ ପ୍ରଥମ ଥର ପାଇଁ ସରକାରୀ ଭାବେ ଉତ୍କଳ ଦିବସ ପାଳନର ଅୟମାରମ୍ଭ । ସେଇ ଦିନଠାରୁ ଉତ୍କଳ ଦିବସ ସମଗ୍ର ରାଜ୍ୟରେ ବ୍ଲକ ଠାରୁ ରାଜ୍ୟ ରାଜଧାନୀ ପର୍ଯ୍ୟନ୍ତ ପାଳନ ହୋଇ ଆସୁଛି । ସେଥିପାଇଁ ନନ୍ଦିନୀ ଦେବୀଙ୍କୁ ଧନ୍ୟବାଦ ଦେବାକୁ ହେବ । ତେବେ ନନ୍ଦିନୀଦେବୀ ଜୟପ୍ରକାଶଙ୍କ ସଭା କରାଇ ଦେବେ ନାହିଁ ବୋଲି ଯେଉଁ ଯୋଜନା କରିଥିଲେ ତାହା ଫେଲ୍ ମାରିଲା । ପ୍ୟାରେଡ ପଡ଼ିଆ ବଦଳରେ ୟୁନିଟ୍-୧ ହାଇସ୍କୁଲର ବିରାଟ ପଡ଼ିଆରେ ଜୟପ୍ରକାଶ ନାରାୟଣଙ୍କ ସଭା ଅନୁଷ୍ଠିତ ହେଲା । ଏହି ସଭାରେ ବିପୁଳ ଜନସମାଗମ ହୋଇଥିଲା । କେତେକ ପରେ ଯୁକ୍ତି ବାଢ଼ିଥିଲେ ଜୟପ୍ରକାଶଙ୍କ ଯୋଗୁଁ ଉତ୍କଳ ଦିବସ ସରକାରୀ ଭାବେ ପାଳିତ ହେବାର ସୁଯୋଗ ମିଳିଲା ।

ମୁଁ ଜୟପ୍ରକାଶଙ୍କ ସଭାରେ ଉପସ୍ଥିତ ଥିଲି । ମୋର ଯାହା ମନେ ଅଛି ଶ୍ରୀମତୀ ରମା ଦେବୀ ଏହି ସଭାରେ ସଭାପତିତ୍ୱ କରିଥିଲେ । ଜୟପ୍ରକାଶ ଏହି ସଭାରେ ଏକ ବିବଦମାନ ବକ୍ତବ୍ୟ ରଖିଥିଲେ । ସେ ବକ୍ତବ୍ୟ ଏବେ ମଧ ମୋ ଡାଇରିରେ ମୁଁ ଟିପି ରଖିଛି । ଜୟପ୍ରକାଶ କହିଥିଲେ ଯେ, ଇନ୍ଦିରା ସରକାର ଯଦି ଲୋକଙ୍କ ଗଣତାନ୍ତ୍ରିକ ଅଧିକାରକୁ ଏବଂ ଆଇନ୍ ସମ୍ମତ ଅହିଂସା ଆନ୍ଦୋଳନକୁ ଅନ୍ୟାୟ ଭାବେ ଦବାଇ ଦେବାପାଇଁ ପୋଲିସ୍ ଓ ସେନାବାହିନୀର ସାହାଯ୍ୟ ନିଅନ୍ତି ତେବେ ସେ ପ୍ରକାର ଆଦେଶକୁ ନମାନିବା ପାଇଁ ପୋଲିସ୍ ଓ ସେନାବାହିନୀକୁ ସେ ଆହ୍ୱାନ କରିବେ ବୋଲି ମତ ଦେଇଥିଲେ । ପରଦିନ ମୁଁ ମାତୃଭୂମିରେ ଏହି ଆହ୍ୱାନକୁ ବଡ଼ ବଡ଼ ଆକାରରେ ଦେଇଥିଲି ।

ପରଦିନ ସକାଳେ ସଚିବାଳୟରେ ମୁଁ ପ୍ରେସ୍‌ରୁମ୍(ମୁଖ୍ୟମନ୍ତ୍ରୀଙ୍କ ମହଲାର ପ୍ରଥମ କୋଠରୀ)କୁ ଯିବାପାଇଁ ଲିଫ୍ଟ ପାଖରେ ପହଞ୍ଚିବା ବେଳେ ନନ୍ଦିନୀ ଦେବୀ ସେଠାରେ ପହଞ୍ଚିଲେ । ମୋତେ ଦେଖି ତାଙ୍କ ସାଙ୍ଗରେ ଯିବାପାଇଁ କହିଲେ । ମୁଁ ତାଙ୍କ ପଛେପଛେ ତାଙ୍କ ଚେମ୍ବରକୁ ଗଲି । ସେ ବସିବା ପରେ ମତେ ପଚାରିଲେ ବରେନ୍ଦ୍ର କାଲି ଜୟପ୍ରକାଶଙ୍କ ସଭାରେ ଥିଲ । ମୁଁ କହିଲି ହଁ- ସେ କହିଲେ ଜୟପ୍ରକାଶ ପୋଲିସ୍ ଓ ସୈନ୍ୟବାହିନୀ ଉଦ୍ଦେଶ୍ୟରେ ଏକ୍‌ଜାକ୍ଟଲି କ'ଣ କହିଥିଲେ ? ମୁଁ ମୋ ଡାଇରି ଧରିଥିଲି । ସେଥିରେ ଜୟପ୍ରକାଶ ହିନ୍ଦିରେ ଯାହା କହିଥିଲେ ତାକୁ ପଢ଼ି ଶୁଣାଇଲି । ସେ ମୋତେ ଆଉଥରେ ପଢ଼ିବା ପାଇଁ କହିଲେ । ଏବଂ ତାଙ୍କ ପି.ଏ. ସିଂହ ବାବୁଙ୍କୁ ଡାକିଲେ । ମୁଁ ଯାହା ପଢ଼ିଲି ସିଂହବାବୁ ତାକୁ ହିନ୍ଦିରେ ଟିପିନେଲେ ।

ମୁଁ ପ୍ରେସ୍‌ରୁମ୍‌କୁ ଫେରିଲି । ପରେ ଜୟପ୍ରକାଶଙ୍କ ଭୁବନେଶ୍ୱର ଭାଷଣକୁ ଇନ୍ଦିରା ଗାନ୍ଧୀ ତାଙ୍କର ବିଭିନ୍ନ ଜନସଭାରେ ଉଲ୍ଲେଖ କରି ଜୟପ୍ରକାଶଙ୍କ ନା ନନେଇ ଦେଶରେ କିଛି ନେତା ଅରାଜକତା ସୃଷ୍ଟି କରିବା ପାଇଁ ଉଦ୍ୟମ କରୁଥିବା କଥା ଉଲ୍ଲେଖ କରିଥିଲେ । ଜୟପ୍ରକାଶଙ୍କ ସେଇ ଭୁବନେଶ୍ୱର ଭାଷଣ ଜରୁରୀକାଳୀନ ପରିସ୍ଥିତି ଜାରି କରିବାର ମୂଳ ଅସ୍ତ୍ର ହୋଇଥିଲା ।

ଜୟପ୍ରକାଶ ଭୁବନେଶ୍ୱର ଆସିବା ଯୋଗୁଁ ନନ୍ଦିନୀ ଦେବୀଙ୍କ ମନ୍ତ୍ରିମଣ୍ଡଳରେ ଥିବା ରାଜସ୍ୱ ଓ ଅର୍ଥମନ୍ତ୍ରୀ ବାଙ୍କବିହାରୀ ଦାସଙ୍କୁ ତାଙ୍କ ମନ୍ତ୍ରୀପଦ ହରାଇବାକୁ ପଡ଼ିଥିଲା । ଜୟପ୍ରକାଶ ରାଜ୍ୟ ଅତିଥି ଭବନରେ ରହୁଥିଲେ । ବାଙ୍କବାବୁଙ୍କ ସହ ତାଙ୍କର ପୂର୍ବରୁ ଘନିଷ୍ଠତା ଥିଲା । କାରଣ ଉଭୟେ ପ୍ରଜା ସମାଜବାଦୀ ଦଳର ସଦସ୍ୟ ଥିଲେ । ସେଇ ସମ୍ପର୍କ ଆଧାରରେ ସେ ଜୟପ୍ରକାଶଙ୍କୁ ଦେଖା କରିବାକୁ ଯାଇଥିଲେ । ଆଠ ଦଶଦିନ ପରେ ବାଙ୍କ ବାବୁ ମନ୍ତ୍ରିମଣ୍ଡଳରୁ

ବହିଷ୍କୃତ ହୋଇଥିଲେ । ସେତିକିରେ ତାଙ୍କ ଦୁର୍ଦ୍ଦଶା ଦୂର ହୋଇ ନଥିଲା । ଜରୁରୀକାଳୀନ ପରିସ୍ଥିତି ଜାରି ହେବା ପରେ ତାଙ୍କୁ ଜେଲ୍ ଯିବାକୁ ହୋଇଥିଲା ।

ସେତେବେଳେ ନନ୍ଦିନୀ ଦେବୀଙ୍କ ମନ୍ତ୍ରିମଣ୍ଡଳରେ ମୋର ଅନେକ ମନ୍ତ୍ରୀଙ୍କ ସହ ଅତ୍ୟନ୍ତ ଘନିଷ୍ଠତା ହୋଇଥିଲା । ଡଃ କୃପାସିନ୍ଧୁ ଭୋଇ ସେମାନଙ୍କ ମଧ୍ୟରୁ ଅନ୍ୟତମ । ସେ ଖଣି ଓ ପରିବହନ ବିଭାଗର ସ୍ୱାଧୀନ ରାଷ୍ଟ୍ରମନ୍ତ୍ରୀ ଥିଲେ । ସେତେବେଳେ ଖଣି ନିର୍ଦ୍ଦେଶକ ରୂପେ ଡଃ ବି.ଡି. ପୃଷ୍ଟି ନାମରେ ଜଣେ ଅଫିସର ଥିଲେ । ସେ ସେତେବେଳକୁ ସେହି ପଦବୀରେ ପ୍ରାୟ ବାରବର୍ଷ ଥିଲେ । ବିଜୟ କୃଷ୍ଣ ମହାନ୍ତି ଅତିରିକ୍ତ ନିର୍ଦ୍ଦେଶକ ପାହ୍ୟାର ଯାଇ ଓ.ଏମ୍.ସି.କୁ ଡେପୁଟେସନରେ ଯାଇଥିଲେ । ଦିନେ ସନ୍ଧ୍ୟାରେ ଡଃ ଭୋଇ ମୁଁ ବସି କଥାବାର୍ତ୍ତା ହେଉଛୁ ସେ ବି.ଡି. ପୃଷ୍ଟିଙ୍କ କଥା ଉଠାଇଲେ । କହିଲେ ଏ ଲୋକଟା ନାଁରେ ନାନା ପ୍ରକାର ଅଭିଯୋଗ ଆସୁଛି । ମୁଁ କହିଲି ଜଣେ ବାରବର୍ଷ କାଳ ଗୋଟିଏ ବିଭାଗର ମୁଖ୍ୟ ହୋଇ ରହିଲେ ସ୍ୱାଭାବିକ ଭାବେ ଭେଷ୍ଟେଡ ଇଣ୍ଟରେଷ୍ଟ ଗ୍ରୋ କରିବ । ସେ ପଚାରିଲେ କିନ୍ତୁ କାହାକୁ କରିବା ? ମୁଁ ସେଇ ମଉକାରେ ବି.କେ. ମହାନ୍ତିଙ୍କ ନାଁ ଉଠାଇ କହିଲି ଇଏ ଜଣେ କମ୍ପିଟାଣ୍ଟ ଓ ଅନେଷ୍ଟ ଅଫିସର । ବି.କେ. ମହାନ୍ତି ମୋର ଜଣେ ଘନିଷ୍ଠ ବନ୍ଧୁ ଧୀରେନ୍ ପଟ୍ଟନାୟକଙ୍କ ଭିଣୋଇ ଥିଲେ । ସେଇ ସମ୍ପର୍କରେ ତାଙ୍କ ସହ ମୋର ଘନିଷ୍ଠତା ଥିଲା । ମୋ କଥା ଡଃ ଭୋଇଙ୍କ ମନକୁ ପାଇଲା । ସେ ଦିନକ ପରେ ଫାଇଲ୍ ମୁଖ୍ୟମନ୍ତ୍ରୀଙ୍କ ପାଖକୁ ପଠାଇଲେ । ଏ ଖବର ପାଇ ଡଃ ପୃଷ୍ଟି ଏକ ବ୍ୟାଗ୍ ଧରି ଡଃ ଭୋଇଙ୍କ ପାଖକୁ ଆସି ତାଙ୍କୁ ଲୋଭ ଦେଖାଇଲେ । ଡଃ ଭୋଇ ଏ କଥା ଦେଖି ରାଗିଯାଇ କହିଲେ ଆପଣ ଯାକୁ ନେଇ ଏଠାରୁ ଯିବେ ନା ପୋଲିସ୍‌କୁ ଡାକିବି । ଡଃ ପୃଷ୍ଟି ଚାଲିଗଲେ । ଏ ବିଷୟ ମତେ ଡଃ ଭୋଇ ସେଇଦିନ ସନ୍ଧ୍ୟାରେ କହିଲେ । ବି.କେ. ମହାନ୍ତିଙ୍କୁ ମୁଁ ତାଙ୍କ ନାଁ ଯାଇଥିବା କଥା କହି ଗୋପନ ରଖିବା ପାଇଁ ଅନୁରୋଧ କରିଥିଲି । ଦି'ଦିନ ପରେ ବି.କେ. ମହାନ୍ତି ଖଣି ବିଭାଗର ନିର୍ଦ୍ଦେଶକ ଦାୟିତ୍ୱ ନେଲେ ।

ଜରୁରୀ ପରିସ୍ଥିତି ଘୋଷଣା ହେବା ପରେ ପ୍ରତିଦିନ କିଛି ନା କିଛି ବିରୋଧୀ ଦଳ ନେତା ଗିରଫ ହେଉଥା'ନ୍ତି । କଂଗ୍ରେସ ଦଳର ଦୁଇଜଣ ନେତା ସେତେବେଳେ ମଧ୍ୟ ଗିରଫ ହୋଇଥିଲେ । ସେ ଦୁହେଁ ହେଲେ ବାଙ୍କବିହାରୀ ଦାସ ଓ ତ୍ରିଲୋଚନ କାନୁନ୍‌ଗୋ । ଏ ଦୁହିଁଙ୍କ ସାଙ୍ଗରେ ମୋର ଘନିଷ୍ଠତା ଥିଲା । ତେବେ ଆଉ ଗୋଟିଏ ବିଷୟ ମୁଁ ଲକ୍ଷ୍ୟ କରିଥିଲି ଯେ ବଡ଼ ବଡ଼ ନେତା ଯେଉଁମାନେ ଜେଲ୍ ଯାଇ ପାରୋଲରେ କିଛିଦିନ ପାଇଁ ମୁକ୍ତିପାଇ ଆସୁଥିଲେ ସେମାନେ ଯେପରି ଆଉ ଜେଲ୍ ନଯା'ନ୍ତି ସେଥିପାଇଁ ବିକଳ ହୋଇ ପଡ଼ିଥିଲେ । ଡଃ ହରେକୃଷ୍ଣ ମହତାବ ସୁଭଦ୍ରା ମହତାବଙ୍କ ଅସୁସ୍ଥତା ପାଇଁ ପାରୋଲରେ ଆସିଥିଲେ । ମାତ୍ର ଆଉ ଯେପରି ତାଙ୍କୁ ଜେଲ୍ ଯିବାକୁ ତନପଡ଼େ ସେଥିପାଇଁ ସେ ଚିତ୍ତରଞ୍ଜନ ନାୟକଙ୍କୁ ଧରି ନନ୍ଦିନୀ ଦେବୀଙ୍କୁ ଦେଖା କରିବାକୁ ଯାଇଥିଲେ । ଏ ବିଷୟ ମୁଁ ଜାଣି ନଥା'ନ୍ତି । ମାତ୍ର ମୁଖ୍ୟମନ୍ତ୍ରୀଙ୍କ ପି.ଆର୍.ଓ. ଆମକୁ ଟେଲିଫୋନ୍ କରି ଡଃ ମହତାବ ନନ୍ଦିନୀ ଦେବୀଙ୍କୁ ଦେଖା କରିବାକୁ ଆସୁଥିବା କଥା ଏଇମିତି ବେସରକାରୀ ଭାବେ ଜଣାଇ ଦେଇଥିଲେ । ଫଳରେ ଦିନ ୧୨ଟା ବେଳକୁ ଆମେ ପାଞ୍ଚ/ଛ'ଜଣ ସାମ୍ବାଦିକ ମୁଖ୍ୟମନ୍ତ୍ରୀଙ୍କ ଅଫିସ୍‌କୁ ଯାଇଥିଲୁ । ଡଃ ମହତାବ ତାଙ୍କୁ ଦେଖା କରିବାକୁ ଆସୁଥିବା ବିଷୟ ପ୍ରଚାର କରିବା ପାଇଁ ନନ୍ଦିନୀ ଦେବୀ ଜାଣିଶୁଣି ତାଙ୍କ ପି.ଆର୍.ଓ.ଙ୍କ ଜରିଆରେ ଆମକୁ ଜଣାଇଥିଲେ । ଏହା ନନ୍ଦିନୀ ଦେବୀଙ୍କର ଏକ ଚାଲ୍ ଥିଲା ।

ଡଃ ମହତାବ ଚିତ୍ତ ନାୟକଙ୍କୁ ସାଙ୍ଗରେ ଧରି ଠିକ୍ ୧୨ଟା ୫ ମିନିଟ୍‌ରେ ମୁଖ୍ୟମନ୍ତ୍ରୀଙ୍କୁ ଦେଖା କରିବାକୁ ଆସିଥିଲେ । ଆମେ ଡଃ ମହତାବଙ୍କୁ ଦେଖି ତାଙ୍କ ପାଖକୁ ଯାଇଥିଲୁ । ଡଃ ମହତାବ ସେଠି ଆମକୁ ଆଶା କରି ନଥିଲେ । ତେବେ ତାଙ୍କର ସ୍ୱଭାବ ସୁଲଭ ଗଳାରେ ପରିସ୍ଥିତିକୁ ହାଲ୍‌କା କରିଦେବା ପାଇଁ କହିଲେ କିହୋ- ଏତେ ଖବର କାଗଜବାଲା ଏଠି କ'ଣ ପାଇଁ ? କେହି କିଛି କହିଲେ ନାହିଁ । ଗୋପାଳବାବୁ ପଚାରିଲେ ସାର୍ ଆପଣ କ'ଣ ପାରୋଲ ବଢ଼ାଇବାକୁ ପାଇଁ ମୁଖ୍ୟମନ୍ତ୍ରୀଙ୍କୁ ଦେଖା କରିବେ ? ଡଃ ମହତାବ କିଛି ନକହି ମୁଖ୍ୟମନ୍ତ୍ରୀଙ୍କ ଗେଷ୍ଟରୁମ୍ ଭିତରକୁ

ଚାଲିଗଲେ । ଆମେ ବାହାରେ ଅପେକ୍ଷା କଲୁ । ଡଃ ମହତାବଙ୍କ ଭଳି ନେତାଙ୍କୁ କିଛି ନନ୍ଦିନୀ ଦେବୀ ସାଙ୍ଗେସାଙ୍ଗେ ଡାକିଲେ ନାହିଁ । ପ୍ରାୟ ଅଧଘଣ୍ଟାଏ କାଳ ତାଙ୍କୁ ଅପେକ୍ଷା କରିବାକୁ ହେଲା । ଅଧଘଣ୍ଟାଏ ପରେ ସେ ଚିତ୍ତନାୟକଙ୍କୁ ନେଇ ମୁଖ୍ୟମନ୍ତ୍ରୀଙ୍କ ଚେମ୍ବରକୁ ଗଲେ । ମାତ୍ର ଚିତ୍ତ ନାୟକଙ୍କୁ ଭିତରକୁ ଯିବା ପାଇଁ ଅନୁମତି ଦିଆଗଲା ନାହିଁ । ଜରୁରୀ ପରିସ୍ଥିତିରେ ନନ୍ଦିନୀ ଦେବୀଙ୍କ କ୍ଷମତାର ଇଏ ଏକ ନିଦର୍ଶନ ।

ଦଶ ମିନିଟ୍ ମଧ୍ୟରେ ଡଃ ମହତାବ ଫେରି ଆସିଲେ । ଆମକୁ କିଛି ନକହି ସିଧା ଲିଫ୍ଟକୁ ଗଲେ । ପରେ ଆମେ ମୁଖ୍ୟମନ୍ତ୍ରୀଙ୍କୁ ଭେଟିବା ବେଳେ ସେ କହିଲେ ମହତାବବାବୁ ତାଙ୍କ ଅସୁସ୍ଥତା ଓ ତାଙ୍କ ପତ୍ନୀ ସୁଭଦ୍ରା ମହତାବଙ୍କ ଅସୁସ୍ଥତା ଦର୍ଶାଇ ପାରୋଲ ସମୟ ବୃଦ୍ଧି କରିବା ପାଇଁ ଅନୁରୋଧ କରିବାକୁ ଆସିଥିଲେ । ଆମେ ଜାଣିବାକୁ ଚାହିଁଥିଲୁ ତାଙ୍କ ପାରୋଲ କ'ଣ ବୃଦ୍ଧି ପାଇବ ? ନନ୍ଦିନୀ ଦେବୀ କିଛି କହି ନଥିଲେ । କେବଳ ଏକ ରହସ୍ୟମୟ ହସ ହସି କହିଲେ ଦେଖିବା କ'ଣ ହେଉଛି ?

ଜରୁରୀକାଳୀନ ପରିସ୍ଥିତି ବେଳେ ନବକୃଷ୍ଣ ଚୌଧୁରୀ ବାରିପଦା ଜେଲ୍‌ରେ ଥିଲେ । ତାଙ୍କ ପତ୍ନୀ ମାଳତୀ ଚୌଧୁରୀ କଟକ ଜେଲ୍‌ରେ ଥିଲେ । ନବବାବୁଙ୍କ ଶରୀର ଖରାପ ହେବାରୁ ତାଙ୍କୁ ପାରୋଲରେ ଖଲାସ କରାଗଲା । ମୁଁ ଜାଣିବାରେ ସେ ଓଡ଼ିଶାର ଏକମାତ୍ର ନେତା ଯିଏ ତାଙ୍କ ପାରୋଲ ସମୟ ବୃଦ୍ଧି କରିବା ପାଇଁ କାହାରିକୁ ଅନୁରୋଧ କରିନଥିଲେ । ତେବେ ସେ ପାରୋଲ ସମୟ ପୂରିବା ପରେ ଜେଲ୍ ଯିବା ପାଇଁ ବାହାରିବା ଦିନ( ୧୯୭୬ ଜୁନ୍ ମାସରେ) କେନ୍ଦ୍ରରୁ ତାଙ୍କ ଅଟକବନ୍ଦୀ ଆଦେଶ ରଦ୍ଦ ଆଦେଶ ଆସି ପହଞ୍ଚିଲା । ସମ୍ଭବତଃ ଏକମାତ୍ର ନବବାବୁଙ୍କ ଅଟକ ବନ୍ଦୀ ଆଦେଶ ରଦ୍ଦ ହୋଇଥିଲା । ଡଃ ମହତାବ ପୁଣି ଜେଲ୍‌କୁ ଯିବାବେଳେ ୧୯୭୬ ଜୁଲାଇ ମାସରେ ତାଙ୍କ ପାରୋଲ ସମୟ ବୃଦ୍ଧି କରାଯାଇଥିଲା । ମୁଁ ଏ ସମସ୍ତ ମୋ ଡାଇରିରେ ଲେଖି ରଖୁଥିଲି । ଏହା ଭବିଷ୍ୟତରେ ଦରକାର ହୋଇପାରେ ସେ ପ୍ରକାର ଦୂରଦୃଷ୍ଟି ମୋର ନଥିଲା । ଏଇମିତି ଲେଖୁଲେଖୁ ଡାଇରି ଭର୍ତିହୋଇଗଲେ ନୂଆ ଡାଇରି ଆରମ୍ଭ କରୁଥିଲି ।

ସବୁଠାରୁ ଆଶ୍ଚର୍ଯ୍ୟ କରିଥିଲା ଏହି ସମୟରେ ବିଜୁ ପଟ୍ଟନାୟକଙ୍କ କାରବାର । ବିଜୁବାବୁଙ୍କୁ ୧୯୭୬ ଅଗଷ୍ଟ ମାସରେ ପାରୋଲରେ ଖଲାସ କରାଗଲା । ସେ ଦିଲ୍ଲୀରେ ତାଙ୍କ ଶାନମୟର ଆଉରଙ୍ଗଜେବ୍ ରୋଡ୍ ବଙ୍ଗଳାରେ ରହୁଥିଲେ । ସେତେବେଳେ ବିଜୁବାବୁଙ୍କୁ ଦେଖା କରିବାକୁ ବାଙ୍କୀର ତାଙ୍କ ଅନୁଗାମୀ ଶ୍ୟାମ ସୁନ୍ଦର ସାହୁ ଓ ଆଉ କେତେକ ଯୁବକ ଯାଇଥିଲେ । ସେମାନେ ଦିଲ୍ଲୀରୁ ଫେରିଆସି ମୋତେ ଦେଖା କରି କହିଲେ ବିଜୁବାବୁ ବହୁତ ଭାଙ୍ଗି ପଡ଼ିଛନ୍ତି । ପୂର୍ବଭଳି ତାଙ୍କର ସେ ଜୋସ୍ ନାହିଁ ।

ପରେ ଖବର ଆସିଲା ବିଜୁବାବୁ ଭୁବନେଶ୍ୱର ଆସୁଛନ୍ତି । ସେଦିନ ୧୯୭୬ ଅକ୍ଟୋବର ୧୫ ତାରିଖ । ଭୁବନେଶ୍ୱର ବିମାନଘାଟିରେ ସେଦିନ ହଜାର ହଜାର ଲୋକ । ମୁଁ ଏବଂ ଅନ୍ୟ ସାମ୍ବାଦିକମାନେ ମଧ୍ୟ ବିମାନ ଘାଟି ଅପେକ୍ଷା କରିଥାଉ ।

ବିଜୁବାବୁ ଓହ୍ଲାଇବାକ୍ଷଣି ବିଜୁ ପଟ୍ଟନାୟକ ଅମର ରହେ ଧ୍ୱନିରେ ଆକାଶ ପ୍ରକମ୍ପିତ ହେଲା । ଆମେ ବିଜୁବାବୁଙ୍କୁ ଦେଖା କରିବାରେ ସେ କହିଲେ ଘରକୁ ଆସ । ଆମେ ସମସ୍ତେ ତାଙ୍କ ଘରକୁ ଆସିଲୁ । ବିଜୁବାବୁ ତାଙ୍କ କଳିଙ୍ଗ ରଥ ହୁଡ୍ ଉପରେ ବସି ଧୀରେଧୀରେ ଶୋଭାଯାତ୍ରା ସହ ଆସିଲେ ।

ବିଜୁବାବୁ ପାରୋଲରେ ମୁକ୍ତିଲାଭ କରିବା ପରେ ଜରୁରୀକାଳୀନ ପରିସ୍ଥିତିକୁ ସମର୍ଥନ କରି ଯେଉଁ ବିବୃତ୍ତି( ୧୯୭୬ ଅକ୍ଟୋବର ୧୫ ତାରିଖ) ଦେଲେ ସେଥିରୁ ଆମର ମନେ ହୋଇଥିଲା ସେ ଇନ୍ଦିରାଙ୍କୁ ଖୁସି କରି

ପୁଣି କଂଗ୍ରେସ ଦଳରେ ଯୋଗ ଦେବେ । ଏ ସମ୍ପର୍କରେ ତାଙ୍କୁ ମୁଁ ଥରେ ପ୍ରଗତିଦଳ ଅଫିସ୍(ଫରେଷ୍ଟ ପାର୍କ)ରେ ଏକ ସାମ୍ବାଦିକ ସମ୍ମିଳନୀରେ ପ୍ରଶ୍ନ କରିବାରେ ସେ ଖୁବ୍ ରାଗିଯାଇଥିଲେ । ତାଙ୍କ ରାଗର କାରଣ କେହି ବୁଝି ପାରିଲେ ନାହିଁ । ମୁଁ ସାହସ କରି ପୁଣି ପଚାରିଲି- ସାର୍, ଏଥିରେ ରାଗିବାର କ'ଣ ଅଛି ? ଆପଣଙ୍କ ବିବୃତ୍ତି ଅନେକଙ୍କ ମନରେ ଏଇ ଧାରଣା ଜନ୍ମାଇଛି । ସେ କହିଲେ ମୁଁ ଯାହା କହିଛି ସେଥିରେ ଭୁଲ୍ କ'ଣ ଅଛି ? ମାତ୍ର ମୋ ପରେ ସେ ପ୍ରସଙ୍ଗ ଆଉ କେହି ଉଠାଇଲେ ନାହିଁ । କେତେକ ନେତା ବିଜୁବାବୁ ପୁଣି କଂଗ୍ରେସରେ ଯୋଗଦେବା ପାଇଁ ମନସ୍ଥିର କରିଥିବା କଥା ଖୋଲାଖୋଲି କହିଥିଲେ । ମାତ୍ର ପରେ ତାହା ହେଲା ନାହିଁ । ଜନତା ଦଳ ଗଠନ ହେଲା ଓ ବିଜୁ ପଟ୍ଟନାୟକ ତା'ର ଓଡ଼ିଶାରେ ମୁଖ୍ୟ ନେତା ହେଲେ । କାରଣ ବିଜୁବାବୁଙ୍କୁ ଆଉ କଂଗ୍ରେସରେ ନେବା ପାଇଁ ଇନ୍ଦିରା ଗାନ୍ଧୀ ମନା କରି ଦେଇଥିଲେ । ବିଜୁବାବୁ ଯେଉଁ ବିବୃତ୍ତି ଦେଇଥିଲେ ତା'ର ଅଳ୍ପ କିଛି ଅଂଶ ମୁଁ ଏଠି ଦେଇଛି । ଏହା ଏଇଥିପାଇଁ ଦେଉଛି ଯେ ଏ ଦେଶର, ଏ ରାଜ୍ୟର ବଡ଼ ବଡ଼ ନେତାମାନଙ୍କର କ୍ଷମତାଲୋଭ ଏବଂ ନିଜର ସ୍ୱାର୍ଥକୁ ସୁରକ୍ଷିତ କରିବା ପାଇଁ ଯେକୌଣସି ସ୍ତରକୁ ଯିବାପାଇଁ ଦ୍ୱିଧାବୋଧ କରନ୍ତି ନାହିଁ । ବିଜୁବାବୁ ଇଂରାଜୀରେ ଯେଉଁ ଛାପା ବିବୃତ୍ତି ଆମକୁ ଦେଇଥିଲେ ସେଥିରେ ଲେଖାଥିଲା- During the last year since Government decided to asume etraordinary powers, restrict the courts and curtail civil libety, some decidedly good things have happened in the nations economy. It is inconceiviable that with an un bridled press & parliament then, Government could have taken any firm, prudent or pragmatic steps long ouerdue, without being sliced and dubbed as lackeys of black money, deviationist, anti socialsty, anti labour etc. Yet nearly 2000 crores of floating money was brought to account, trade balances stand at 1100 crores despite of heavy tole by international oil prices, food blocks buffered at 2.5 billion dollars, smuggling curbed, gallopding implation woested and rupee made stronger day by day. General discipline was enforced and thouand of exept officials were put aside healthy socio economic programmes under the single of 20 point programme was floated and backed by unusal Government insistence of its implementation.

I do not believe that the great legacy of free democracy of Gawaharlal Neheru can be abandowed on any length of him by his daughter the Primeminister, who maintains that India would never deriated from the path of democracy.

ବିଜୁବାବୁଙ୍କ ଏହି ବିବୃତ୍ତିକୁ ପଢ଼ିଲେ ଯେ କୌଣସି ବ୍ୟକ୍ତି ସହଜରେ ଏକଥା ନିଶ୍ଚିତ ଭାବେ ବିଚାର କରିବ ଯେ ବିଜୁବାବୁଙ୍କ ଭଳି ଜଣେ ବ୍ୟକ୍ତି ଏତେ ତଳକୁ ଖସିଯିବାର ଏକମାତ୍ର ଅର୍ଥ ହେଉଛି ଇନ୍ଦିରାଙ୍କ ତୋଷାମୋଦ କରି ନିଜକୁ ନିରାପଦ ରଖିବା କିମ୍ବା ପୁଣି କ୍ଷମତା ବଳୟ ଶିଡ଼ି ଚଢ଼ିବାର ଉଦ୍ୟମ କରିବା । ଏହି ବିବୃତ୍ତି ବିଜୁବାବୁଙ୍କୁ ସର୍ବ ସାଧାରଣରେ ନିନ୍ଦିତ କରିଥିଲା ।

ତେବେ ସେ ଯାହାହେଉ ବିଜୁବାବୁ ଆଉ କଂଗ୍ରେସ ଆଡ଼କୁ ମନଦେଇ ନଥିଲେ ଏବଂ ଜନତା ଦଳରେ ରଖିଥିଲେ । ଦେଶରେ ଜରୁରୀକାଳୀନ ପରିସ୍ଥିତି ଚାଲିଥିବା ସମୟରେ ହଠାତ୍ ୧୯୭୭ ମସିହା ଜାନୁଆରୀ ମାସ ୧୮ ତାରିଖ ରାତିରେ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀ ଜାତି ଉଦ୍ଦେଶ୍ୟରେ ଏକ ବେତାର ଭାଷଣରେ ଲୋକସଭା ଭାଙ୍ଗିଦେବା କଥା ଘୋଷଣା କରିଥିଲେ ଏବଂ ମାର୍ଚ୍ଚ ମାସରେ ଦେଶର ଷଷ୍ଠ ସାଧାରଣ ନିର୍ବାଚନ ହେବ ବୋଲି ଏହି ଘୋଷଣାରେ ପ୍ରକାଶ କରିଥିଲେ । ମୁଁ ରେଡ଼ିଓ ଖୋଲି ରାତିରେ ଏହି ବେତାର ଭାଷଣ ଶୁଣିଥିଲି । ସେତେବେଳେ ଟେଲିଭିଜନ ନଥିଲା । ମୁଁ ମାର୍କେଟ ବିଲ୍ଡିଂ ପଛପଟେ ଏକ ଟାଇପ୍-୪ କ୍ୱାର୍ଟରରେ ରହୁଥିଲି । ମୋର ପତ୍ନୀ ଦୁଇଝିଅ ଓ ପୁଅକୁ ନେଇ ମୁଁ ରହୁଥାଏ । ଏହି ଘୋଷଣାର କିଛି ସମୟ ପରେ ବାଣ ଫୁଟିବାର ଶବ୍ଦ ହେଲା । ଆକାଶରେ ମଧ ବାଣ

ଝଲମଲ ହେଲା । ସମ୍ଭବତଃ ଜରୁରୀକାଳୀନ ପରିସ୍ଥିତିର ଅନ୍ତ ହେଲା ବୋଲି ଶୁଣି ବିରୋଧୀ ଦଳର କୌଣସି ଲୋକ ଏହା କରିଥାଇ ପାରନ୍ତି ବୋଲି ମନେ ହୋଇଥିଲା ।

ରାଜନୀତିକ ନେତା ଓ ବୁଦ୍ଧିଜୀବୀମାନେ ସେତେବେଳେ ଆଶଙ୍କା କରିଥିଲେ ଯେ ଦେଶରେ ଆଉ ନିର୍ବାଚନ ହେବନାହିଁ କିମ୍ବା ଗଣତନ୍ତ୍ର ଫେରିବ ନାହିଁ । ମାତ୍ର ଶ୍ରୀମତୀ ଗାନ୍ଧୀଙ୍କ ଏହି ଘୋଷଣା ସେ ଆଶଙ୍କାକୁ ଦୂର କରିଥିଲା । ସେଇ ରାତିରେ ଅନେକ ଲୋକ ଘରୁ ବାହାରି ଆସିଥିଲେ ଏବଂ ଆନନ୍ଦ ଧ୍ୱନି କରିଥିଲେ । ମାର୍କେଟ ବିଲ୍ଡିଂ ମଝିରେ ଆତସବାଜୀ ଫୁଟା ଯାଇଥିଲା ।

ପରଦିନ ବିଭିନ୍ନ ସମ୍ବାଦପତ୍ରରେ ନିର୍ବାଚନ ସମ୍ପର୍କରେ ବଡ଼ବଡ଼ ଅକ୍ଷରରେ ପ୍ରକାଶ ପାଇବା ସହ ଲୋକସଭା ଭଙ୍ଗହେବା କଥା ମଧ୍ୟ ପ୍ରକାଶିତ ହୋଇଥିଲା । କଂଗ୍ରେସ ଅଫିସ୍‌ରେ ବହୁ ନେତା ଜମାହୋଇ ଶ୍ରୀମତୀ ଗାନ୍ଧୀଙ୍କ ଜୟଧ୍ୱନି କରୁଥିଲେ । ନନ୍ଦିନୀ ଦେବୀଙ୍କ ମୁଖ୍ୟମନ୍ତ୍ରୀତ୍ୱ ସମୟରେ ଭୁବନେଶ୍ୱର ମାଷ୍ଟର କ୍ୟାଣ୍ଟିନ୍ ଛକରେ ପ୍ରଦେଶ କଂଗ୍ରେସ ଅଫିସ୍ ନିର୍ମିତ ହୋଇଥିଲା । ପୂର୍ବମନ୍ତ୍ରୀ ଲକ୍ଷ୍ମଣ ମଲ୍ଲିକଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଏହା ନିର୍ମିତ ହୋଇଥିଲା ।

ନିର୍ବାଚନ ଘୋଷଣା ହେବା ପରେ କିଏ ଶାସନକୁ ଆସିବ ସେ ସମ୍ପର୍କରେ ନାନା ପ୍ରକାର ଆଲୋଚନା-ପର୍ଯ୍ୟାଲୋଚନା ହେଉଥିଲା । କଂଗ୍ରେସ ପୁଣି ନିର୍ବାଚନରେ ବିଜୟୀ ହେବ ବୋଲି ଅନେକ ଆଶା ଆଶଙ୍କା ବ୍ୟକ୍ତ କରିଥିଲେ । ଶ୍ରୀମତୀ ନନ୍ଦିନୀ ଶତପଥୀ ସେତେବେଳେ କଂଗ୍ରେସ ତ୍ୟାଗକରି କଂଗ୍ରେସ ଫର ଡେମୋକ୍ରାସି ନାମରେ ଏକ ଦଳ ଗଠନ କରିଥିଲେ । କସ୍ତୁରବା ନାରୀ ମହଲରେ ଏହି ଦଳର ପ୍ରଥମ ବୈଠକ ବସିଥିଲା ଓ ଶ୍ରୀମତୀ ଶତପଥୀ ଏହାର ପ୍ରଥମ ସଭାପତି ହୋଇଥିଲେ । ଅବଶ୍ୟ ଏହି ଦଳ ଜାତୀୟ ସ୍ତରରେ ଜଗଜ୍ଜିବନ ରାମଙ୍କ ଦ୍ୱାରା ପ୍ରତିଷ୍ଠା କରାଯାଇଥିଲା । ଶ୍ରୀମତୀ ଶତପଥୀଙ୍କର ସେ ପୁରୁଣା ତେଜ ଆଉ ନଥିଲା ।

କେନ୍ଦ୍ରରେ ଜୟ ପ୍ରକାଶଙ୍କ ଉଦ୍ୟମ ଫଳରେ ଜନତା ଦଳ ଗଠନ ହେଲା । ବାମପନ୍ଥୀ ଓ କଂଗ୍ରେସ ଦଳକୁ ଛାଡ଼ି ଅନ୍ୟ ସମସ୍ତ ଦଳ ଏଥିରେ ଯୋଗ ଦେଲେ । ମୋରାରଜୀ ଦେଶାଇ ଏହା ସଭାପତି ହେଲେ । ଜଗଜ୍ଜିବନ ରାମଙ୍କ କଂଗ୍ରେସ ଫର୍ ଡେମୋକ୍ରାସି ଏଥିରେ ଯୋଗ ଦେଲା । ଓଡ଼ିଶାରେ ନନ୍ଦିନୀ ଶତପଥୀ ମଧ୍ୟ ଜନତା ଦଳର ସଦସ୍ୟ ହେଲେ । ମୋର ମନେ ଅଛି ଜନତା ଦଳ ଫରେଷ୍ଟ ପାର୍କ ଅଫିସ୍‌ରେ ଯେଉଁଦିନ ଏହାର କାର୍ଯ୍ୟକାରୀ କମିଟି ବୈଠକ ବସିଲା ନନ୍ଦିନୀ ଦେବୀ ସେଠାକୁ ଗଲେ । ସେ ଗାଡ଼ିରୁ ଓହ୍ଲାଇବା ମାନେ ତାଙ୍କୁ ଯେପରି ଅଶ୍ଳୀଳ ଭାଷାରେ ଗାଳିଗୁଲଜ କରାଗଲା ତାହା କାନରେ ଶୁଣିହେବ ନାହିଁ । ସେ କିଛି ନକହି ମୁହଁ ତଳକୁ ପୋତି ଯାଉଥା'ନ୍ତି । ତାଙ୍କୁ ବିଜୁବାବୁଙ୍କ ନିର୍ଦ୍ଦେଶରେ ଦୁଇ/ ତିନିଜଣ କର୍ମୀ କର୍ଡନ କରି ଅଫିସ୍ ଭିତରକୁ ନେଇଗଲେ । ତଥାପି ଶୋଧାଶୋଧି ଚାଲିଥାଏ । ମୁଁ ଏସବୁ ଦେଖି ତାଙ୍କର ସେଇ ମୁଖ୍ୟମନ୍ତ୍ରୀ ଦିନର କଥାକୁ ମନେ ପକାଇଲି । ପ୍ରକୃତରେ ରାଜନୀତି ଏକ ଅଦ୍ଭୁତ ଖେଳ । ଆଜି ଯେ ରାଜେନ୍ଦ୍ରାସନେ କାଲି ସେ ଫକିର । ବୈଠକରେ ମଧ୍ୟ ନନ୍ଦିନୀ ଦେବୀ ଏକ ଘରକିଆ ହୋଇଗଲେ । ମୁଁ ଆଉ ଅନ୍ୟ ସାମ୍ବାଦିକ ଏକଥା ଦେଖୁଥିଲୁ । କିଛି ସମୟ ପରେ ସେ ଉଠି ଚାଲିଆସିଲେ । ଆସିବାବେଳେ ମଧ୍ୟ ସେହିଭଳି ଅତି ଅଶ୍ଳୀଳ ଶବ୍ଦରେ ତାଙ୍କୁ ଶୋଧା ଚାଲିଥାଏ । କିଛି ଯୁବକ ତାଙ୍କ ଗାଡ଼ି ଉପରକୁ ଛେପ ମଧ୍ୟ ପକାଇଥିଲେ । ଆମେସବୁ ଦେଖୁଥାଉ । ନନ୍ଦିନୀ ଦେବୀ ଯାହାହେଉ ଗାଡ଼ିରେ ବସିଗଲେ । ହଠାତ୍ ପଛରୁ ତିନି/ଚାରିଟା ଟେକା ତାଙ୍କ ଗାଡ଼ିକୁ ଲକ୍ଷ୍ୟକରି କେହି କେହି ମାରିଲେ ।

୧୯୭୭ ମାର୍ଚ୍ଚ ମାସ ୧୬ ତାରିଖରେ ନିର୍ବାଚନ ଆରମ୍ଭ ହୋଇ ୨୦ ତାରିଖ ପର୍ଯ୍ୟନ୍ତ ଚାଲିଥିଲା । ଅନେକ ବିଚାର କରିଥିଲେ କଂଗ୍ରେସ ପୁଣି ଶାସନକୁ ଆସିବ । ମାତ୍ର ନିର୍ବାଚନ ତାକୁ ପୁରା ଓଲଟାଇ ଦେଇଥିଲା । ଗୋଟିଏ ପଟେ ଜନତା ଦଳ ଏବଂ ଅନ୍ୟ ପଟେ କଂଗ୍ରେସ । ଜନତା ଦଳର ନେତୃତ୍ୱ ନେଇଥିଲେ ଜୟପ୍ରକାଶ ନାରାୟଣ । ତାଙ୍କୁ ସହଯୋଗ କରୁଥିଲେ ମୋରାରଜୀ ଦେଶାଇ ଏବଂ ଜଗଜ୍ଜିବନ ରାମ । ଏମାନେ ସମସ୍ତେ ଓଡ଼ିଶାକୁ ନିର୍ବାଚନ ପ୍ରଚାରରେ ଆସିଥିଲେ । ଓଡ଼ିଶା ଦାୟିତ୍ୱ ନେଇ ଥିଲେ ବିଜୁ ପଟ୍ଟନାୟକ । ଓଡ଼ିଶାରେ ଲୋକସଭା ନିର୍ବାଚନ କଂଗ୍ରେସ ପାଇଁ ସବୁଠାରୁ ବିପର୍ଯ୍ୟୟ ହୋଇଥିଲା । ଏହି ନିର୍ବାଚନରେ ଜନତା ଦଳ ୧୪ଟି ସ୍ଥାନରେ ବିଜୟୀ ହୋଇଥିବାବେଳେ କଂଗ୍ରେସ ଚାରୋଟି ସ୍ଥାନ ପାଇଥିଲା । ବାକି ତିନୋଟି ସ୍ଥାନ କଂଗ୍ରେସ ଫର୍ ଡେମୋକ୍ରାସି, ସିପିଏମ୍ ଓ ସ୍ୱାଧୀନ ପ୍ରାର୍ଥୀ ପାଇଥିଲେ । ସ୍ୱାଧୀନ ପ୍ରାର୍ଥୀ ରୂପେ କଳାହାଣ୍ଡିରୁ ପୂର୍ବତନ ମହାରାଜ ପ୍ରତାପ କେଶରୀ ଦେଓ ବିଜୟୀ ହୋଇଥିଲେ ।

ଭାରତବର୍ଷରେ ଏହି ସମୟରେ ଅନେକ ଅଘଟନ ଘଟି ଯାଇଥିଲା । ଜଣେ ସାମ୍ବାଦିକ ଭାବେ ଏହି ଘଟଣାଗୁଡ଼ିକ ମୋ ପାଇଁ ଗୁରୁତ୍ୱପୂର୍ଣ୍ଣ ଖବର । ଭାରତର ରାଷ୍ଟ୍ରପତି ଫକରୁଦ୍ଦିନ ଅଲ୍ଲି ଅହମ୍ମଦ ୧୯୭୭ ଫେବୃଆରୀ ୧୧ ତାରିଖରେ ପରଲୋକ ଗମନ କଲେ । ତାଙ୍କ ସ୍ଥାନରେ ଉପ ରାଷ୍ଟ୍ରପତି ବି.ଡି. ଜତ୍ତି ଅସ୍ଥାୟୀ ରାଷ୍ଟ୍ରପତି ଦାୟିତ୍ୱ ତୁଲାଇଥିଲେ ।

ଲୋକସଭା ନିର୍ବାଚନରେ କଂଗ୍ରେସ ଶୋଚନୀୟ ଭାବେ ପରାସ୍ତ ହୋଇଥିଲା । ଲୋକସଭାର ୫୪୨ଟି ସ୍ଥାନ ମଧ୍ୟରୁ ଜନତା ଦଳ ୨୭୧, କଂଗ୍ରେସ ୧୫୨ଟି ସ୍ଥାନ ପାଇଥିଲା । ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀ ତାଙ୍କ ରାୟବରେଲି ଆସନରେ ସୋସାଲିଷ୍ଟ ନେତା ରାଜନାରାୟଣଙ୍କ ଠାରୁ ପରାସ୍ତ ହୋଇଥିଲେ । ସ୍ୱାଧୀନତାର ତିରିଶ ବର୍ଷ ପରେ କଂଗ୍ରେସ ଶାସନରୁ ଯାଇଥିଲା ଏବଂ ପ୍ରଥମଥର ପାଇଁ ଜଣେ ପ୍ରଧାନମନ୍ତ୍ରୀ ପରାସ୍ତ ହୋଇଥିଲେ ।

## -ନୀଳମଣି ରାଉତରାୟ ମୁଖ୍ୟ ମନ୍ତ୍ରୀ - ବିଜୁ ଉପାଖ୍ୟାନ-

୧୯୭୭ ନିର୍ବାଚନରେ ନବଗଠିତ ଜନତା ପାର୍ଟିବିଧାନସଭାକୁ ବିପୁଳ ସଂଖ୍ୟା ଗରିଷ୍ଠତାରେ ବିଜୟୀ ହୋଇଥିଲେ । ନିର୍ବାଚନ ପୂର୍ବରୁ ଏକଥା ପ୍ରାୟ ଜଣା ପଡ଼ିଥିଲା । ୧୯୭୭ ବିଧାନସଭା ନିର୍ବାଚନ ପୂର୍ବରୁ ମୋତେ ଥରେ ବିଜୁବାବୁଙ୍କ ସହ ବାଙ୍କୀ ଯିବାକୁ ପଡ଼ିଥିଲା । ବିଜୁବାବୁ ଦିନ ସାଢ଼େ ୯ଟାରେ ତାଙ୍କ ଘରୁ କଳିଙ୍ଗ ରଥରେ ବସିଲେ । ଏହା ସମ୍ଭବତଃ ଏପ୍ରିଲ ମାସ ୧୫ ତାରିଖ । ବିଧାନସଭା ପାଇଁ ୧୯୭୭ ମେ' ମାସ ୨ ତାରିଖରେ ନିର୍ବାଚନ ଘୋଷଣା ହେଲା । ଓଡ଼ିଶାର ୧୪୭ଟି ଆସନ ପାଇଁ ୧୯୭୭ ଜୁନ୍ ୧୦ ତାରିଖରେ ନିର୍ବାଚନ ଅନୁଷ୍ଠିତ ହୋଇଥିଲା । ବିଜୁବାବୁ ଜନତା ଦଳର ନେତୃତ୍ୱ ନେଇଥିଲେ । ସେ ନିର୍ବାଚନ ଜିତିବା ପାଇଁ ଏକ ନୂତନ କୌଶଳ ଅବଲମ୍ବନ କରିଥିଲେ । ସେ ବିଭିନ୍ନ ନିର୍ବାଚନ ସଭାରେ ନିଜର ଲମ୍ବା ପଞ୍ଜାବୀର ସାମ୍ନା କାନିକୁ ଦୁଇ ହାତରେ ଧରି ଭୋଟ୍ ପାଇଁ ନୋଟ୍‌ଟିଏ ବୋଲି ଲୋକଙ୍କ ପାଖରେ ଆବେଦନ କରୁଥିଲେ । ଲୋକେ ଟଙ୍କାଟିଏ ଠାରୁ ଆରମ୍ଭ କରି ଶହେଟଙ୍କିଆ ନୋଟ୍ ପକାଉଥିଲେ । ପାଞ୍ଚ-ସାତ ମିନିଟ୍‌ରେ ପଞ୍ଜାବୀ କାନି ଟଙ୍କାରେ ପୁରି ଯାଉଥିଲା ।

ମୁଁ ସେଦିନ ବିଜୁବାବୁଙ୍କ ସାଙ୍ଗରେ ତାଙ୍କ କଳିଙ୍ଗ ରଥରେ ବସି ବାଙ୍କୀ ଗଲି । ବିଜୁବାବୁ କଳିଙ୍ଗ ରଥର ଆଗ ସିଟ୍(ଏରୋପ୍ଲେନ୍ ସିଟ୍)ରେ ବସିଥା'ନ୍ତି । ଗାଡ଼ି ଚାଲିବା ସାଙ୍ଗେ ସାଙ୍ଗେ ଗାଡ଼ି ସାମ୍ନାରେ ଥିବା ଏକ ଛୋଟ୍ ବ୍ୟାଗରୁ ଖଣ୍ଡେ ବହି କାଢ଼ି ଧରିଲେ । ମୁଁ ଟିକେ ଉହୁଙ୍କି ଦେଖିଲି ବହିଟି ହେଉଛି ଇଂରାଜୀ କ୍ଲାସିକ୍ 'ଗନ୍ ଉଇଥ୍ ଦି ଉଇଣ୍ଡ' ।

ମନଯୋଗ ସହକାରେ ବିଜୁବାବୁ ପଢୁଥା'ନ୍ତି । ଆମେ ବାରଙ୍ଗ ତ୍ରିଶୁଳିଆ ଦେଇ ମହାନଦୀ କୂଳେକୂଳେ ବାଙ୍କୀ ଯିବାପାଇଁ ସ୍ଥିର ହୋଇଥିଲା । କାରଣ ପ୍ରଥମ ସଭା ଡମପଡ଼ା ଗଡ଼ରେ ହେବାପାଇଁ ନିଷ୍ପତ୍ତି ହୋଇଥିଲା । ଆମେ ବାରଙ୍ଗ ପାରି ହୋଇ ତ୍ରିଶୁଳିଆ ବାଙ୍କ ବୁଲିଲା ପରେ ହଠାତ୍ ବିଜୁବାବୁ ତାଙ୍କ ଡ୍ରାଇଭର ପାଣି(ପୁରା ନାଁ ମନେ ପଡୁନାହିଁ) ପିଠିରେ ଗୋଟେ ଚଟକଣା ଦେଲେ । କହିଲେ ଆବେ ମଟର ଗାଡ଼ି ଚଲଉଛୁ ନା ଶଗଡ଼ ଚଲଉଛୁ । ପାଣି ବିଜୁବାବୁଙ୍କର ବହୁଦିନର ଡ୍ରାଇଭର । କଳିଙ୍ଗ ଟ୍ୟୁବ୍‌ସ କାରଖାନା ବେଳୁ ସେ ରହିଥିଲା । କହିଲା ରାସ୍ତା ଖରାପ- ବିଜୁବାବୁ ସେଇମିତି ପାଟି କରି କହିଲେ ଛାଡ୍‌ବେ ଷ୍ଟିଅରିଂ- ପାଣି ଆଉ କିଛି ନକହି ଗାଡ଼ି ଛୁଟାଇଲା । ବିଜୁବାବୁ ସିନା ଏରୋପ୍ଲେନ୍ ସିଟ୍‌ରେ ବସିଥିଲେ । ମାତ୍ର ମୁଁ ପଛରେ ବସି ଖରାପ ରାସ୍ତାର ପ୍ରକୃତ ଅବସ୍ଥା ଅନୁଭବ କଲି । ମଝିରେ ମଝିରେ ମୋତେ ଉପର ତଳ ହେବାକୁ ହେଲା । ଥରେ ଥରେ ଗାଡ଼ି ଛାତରେ ମଧ ମୁଣ୍ଡ ବାଡ଼େଇ ହୋଇଗଲା । ମାତ୍ର ବିଜୁବାବୁଙ୍କୁ ଏକଥା କହିବା ସମ୍ଭବ ନୁହେଁ । ଗାଡ଼ି ଚାଲିଥାଏ । ହଠାତ୍ ଡମପଡ଼ାର ଛ' ସାତ କିଲୋମିଟର ପୂର୍ବରୁ କାଳିକା ପ୍ରସାଦ ଛକ ପାଖରେ ପାଖାପାଖି ପନ୍ଦର/ଷୋଳ ଖଣ୍ଡ ଆମ୍ବ ବୋଝେଇ ଶଗଡ଼ କଟକ ଆଡ଼କୁ ମୁହଁ କରି ଆସୁଥାଏ । ଗାଡ଼ିର ଗତି ମନ୍ଥର ହେଲା । ଅଳ୍ପ ବାଟ ଗଲା ପରେ ବିଜୁବାବୁ ଗାଡ଼ି ରଖିବାକୁ କହିଲେ । ମୁଁ ଆଶ୍ୱସ୍ତ ହେଲି । ଭାବିଲି ବୁଢ଼ା ବୋଧେ ପରିଶ୍ରା କରିବ । ବିଜୁବାବୁ ଗାଡ଼ିରୁ ଓହ୍ଲାଇ ତଳେ ଠିଆହୋଇ ଅଳସ ଭାଙ୍ଗିଲେ । ମୁଁ ମଧ ତଳକୁ ଓହ୍ଲାଇଲି । ସାମ୍ନାରେ ଆମ୍ବତୋଟା । ଜଣେ ବୁଢ଼ା ଲୋକ ଶୁଖିଲା ଆମ୍ବଡାଳ ଗୋଟାଉଛି । ସବୁ ଡାଳ ନେଇ ଗଦା କରୁଛି । ବିଜୁବାବୁ ମୋତେ କହିଲେ ସେ ବୁଢ଼ାକୁ ଡାକ । ମୁଁ ବୁଢ଼ାକୁ ଡାକିଲି । ସେତେବେଳକୁ ବେଶ୍ ଗରମ ଆରମ୍ଭ ହେଲାଣି । ବୁଢ଼ା ଆସିଲା । ବିଜୁବାବୁ ତାକୁ ଚାହିଁଲେ । ବୁଢ଼ା ଖଣ୍ଡେ ମଇଳା ଲୁଗା ଖୋସି ଖାସି ପିନ୍ଧିଛି । ଚମ ଧୁଡୁଧୁଡୁ ହେଉଛି । ବିଜୁବାବୁ ପଚାରିଲେ ତୁମ ନାଁ କ'ଣ ? ବୁଢ଼ା ବିଜୁବାବୁଙ୍କୁ ଚାହିଁଲା । ବିଜୁବାବୁ ପୁଣି ପଚାରିଲେ ତୁମ ବୟସ କେତେ ? ବୁଢ଼ା କିଛି ନକହି କେବଳ ବିଜୁବାବୁଙ୍କୁ ଚାହିଁଥାଏ । ମୁଁ ଜୋର୍‌ରେ କହିଲି, ମଉସା, ତମ ବୟସ କେତେ ? ସେ କହିଲା- କେଜାଣି ଚାରି କୋଡ଼ିରୁ ବେଶୀ ହେବ । ବିଜୁବାବୁ କହିଲେ ଏ ଖରାରେ କାଠ କାହିଁକି ଗୋଟାଉଛ ? ବୁଢ଼ା ସାଙ୍ଗେସାଙ୍ଗେ କହିଲା- ଖାଇବି କ'ଣ ? କାହିଁ ତମର କେହି ନାହାନ୍ତି ? ଅଛନ୍ତି ଦି' ଦିଟା ପୁଅ । କ'ଣ କରନ୍ତି ? ଜଣେ କଟକରେ ଅଛି ଆଉ ଜଣେ ବାଙ୍କୀ କିଲଟରୀରେ ଚପରାଶି ଅଛି । ତା'ହେଲେ ତମେ କାଠ ଗୋଟାଉଛ କାହିଁକି ? ବୁଢ଼ା କହିଲା, ବୋହୂ କହିଛି କାଠ ଆଣ- ଖାଇବ । ସେତେବେଳକୁ ଆମ ଚାରିପଟେ ବେଶ୍ ଭିଡ଼ ଜମିଗଲାଣି । ବିଜୁବାବୁଙ୍କୁ କିଛି ଯୁବକ ଆସି ପାଦଛୁଇଁ ପ୍ରଣାମ କଲେ । ସେଦିନ ସମ୍ଭବତଃ ଯାହା ମନେ ପଡୁଛି କୌଣସି ଛୁଟିଦିନ ଥିଲା । ବିଜୁବାବୁ କହିଲେ ଏ ବୁଢ଼ା ପୁଅ କେଉଁଠି ଅଛି ? ତାକୁ ଡାକ । ମୁଁ ବିଜୁବାବୁଙ୍କ ଏକଥା ଦେଖି ରୀତିମତ ଆଶ୍ଚର୍ଯ୍ୟ । ଜଣେ ଯୁବକ ସାଇକେଲ୍ ମାରି ବୁଢ଼ା ପୁଅକୁ ଡାକିବାକୁ ଗଲା । କିଛି ସମୟ ପରେ ଜଣେ ଯୁବକ ସଫା ପ୍ୟାଣ୍ଟ ସାର୍ଟ ପିନ୍ଧି ଆସି ପହଞ୍ଚିଲା । ବିଜୁବାବୁଙ୍କୁ ନମସ୍କାର ହେଲା । ବିଜୁବାବୁ ପଚାରିଲେ ତୁ ଏ ବୁଢ଼ାର ପୁଅ ? ସେ ହଁ କଲା । ସେ ଆଉ କିଛି କହିବା ପୂର୍ବରୁ ବିଜୁବାବୁ ତା' ଗାଲରେ ଢୋ କରି ଚଟକଣାଟେ ଦେଲେ । ବିଜୁବାବୁଙ୍କ ଭଳି ଜଣେ ଜବରଦସ୍ତିକା ଲୋକର ଚଟକଣି ମାଡ଼ ଖାଇ ସେ ହଠାତ୍ ବୁଲିପଡ଼ିଲା । ବିଜୁବାବୁ ରାଗରେ କହିଲେ ବ୍ଲଡିଫୁଲ୍, ଅଶୀବର୍ଷର ବାପକୁ ଗଣ୍ଡେ ଖାଇବା ପାଇଁ ଦେବାକୁ ଏଇ ଖରାରେ କାଠ ଗୋଟାଇବାକୁ ପଠାଉଛୁ ? ରାସ୍‌କେଲ- ତା'ପରେ ପକେଟ୍‌ରୁ ନୂଆ କୋଡ଼ିଏ ଟଙ୍କାର ବିଡ଼ାଏ ନୋଟ୍ ଧରି ବୁଢ଼ାକୁ ପାଖକୁ ଡାକିଲେ । ତା' ହାତରେ ଟଙ୍କା ଦେଇ କହିଲେ ଏ ଟଙ୍କା ରଖ୍ । ଏଥିରୁ ପ୍ରଥମେ ଆଠ/ଦଶଟା ପୋଷ୍ଟକାର୍ଡ଼ କିଣିବୁ । ଯେଉଁଦିନ ତୋ ପୁଅ ତୋତେ ଖାଇବାକୁ ଦେବନାହିଁ ସେଇଦିନ ମୋ ପାଖକୁ ଖଣ୍ଡେ ଚିଠି ଦେବୁ । ତାକୁ ଚାକିରିରୁ ବାହାର କରିଦେବି । ବିଜୁବାବୁଙ୍କ ଏ କଥା ଶୁଣି ସେଠି ଉପସ୍ଥିତ ଅନେକ ଲୋକ ବିଜୁବାବୁଙ୍କ ଜୟଧ୍ୱନିରେ ଆକାଶ ବତାଶ ପ୍ରକମ୍ପିତ କଲେ । ହଠାତ୍ ବୁଢ଼ା ପୁଅ ବିଜୁବାବୁଙ୍କ ଗୋଡ଼ଧରି କହିଲା ସାର୍ ଆଉ ଏ ଭୁଲ୍ ହେବ ନାହିଁ ।

ବିଜୁବାବୁ ଆସି ଗାଡ଼ିରେ ବସିଲେ । ଆମେ ଡମପଡ଼ା ଗଡ଼କୁ ଗଲୁ । ପ୍ରବଳ ଖରା ସତ୍ତ୍ୱେ ସେ ସଭାରେ ପ୍ରାୟ ଦଶହଜାର ଲୋକ ଯୋଗ ଦେଇଥିଲେ । ବିଜୁବାବୁ ସେଇ ଖରାରେ ତାଙ୍କ ପଞ୍ଜାବୀ ଦେଖାଇ ଭୋଟ୍ ପାଇଁ ନୋଟ୍‌ଟିଏ ଧ୍ୱନି ମଧ୍ୟରେ ଲୋକଙ୍କ ମଧ୍ୟରେ ବୁଲିଲେ । ଘଣ୍ଟାକ ମଧ୍ୟରେ ଦି'ବସ୍ତା ଦଶଟଙ୍କାରୁ ଶହେଟଙ୍କା ନୋଟ୍ ସଂଗ୍ରହ ହେଲା । ସଭା ଶେଷ ହେବା ପରେ ଏକ ବିଚିତ୍ର ଦୃଶ୍ୟ ଦେଖାଗଲା । ଦଶ/ବାର ଜଣ ବୁଢ଼ା ଲୋକ ସଭାମଞ୍ଚ ତଳେ ଠିଆ ହୋଇଛନ୍ତି । ବିଜୁବାବୁ ମଞ୍ଚରୁ ଓହ୍ଲାଇବା ମାତ୍ରେ ସେମାନେ ଏକ ସ୍ୱରରେ କହିଲେ, ହଜୁର ଆମକୁ ଆମ ପୁଅମାନେ ପଚାରୁ ନାହାନ୍ତି । ଆମେ ନଖାଇ ନପିଇ ଭିକମାଗି ଚଳୁଛୁ । ବିଜୁବାବୁ ଦେଖିଲେ- ତା'ପରେ ଆଦାୟ ହୋଇଥିବା ଅର୍ଥରୁ ପୁଳେ ପୁଳେ ସମସ୍ତଙ୍କୁ ଦେଇ ସେଠାକାର ଜନତା ଦଳ ନେତାଙ୍କୁ ସେମାନଙ୍କ କଥା ବୁଝିବା ପାଇଁ କହି ଗାଡ଼ିରେ ବସିଲେ ।

ବାଙ୍କୀ ଡାକ ବଙ୍ଗଳାରେ ବିଜୁବାବୁଙ୍କ ମଧ୍ୟାହ୍ନ ଭୋଜନ ବ୍ୟବସ୍ଥା କରାଯାଇଥିଲା । ଆମେ ଏ ବିଷୟ ଅବତାରଣା କଲୁ ଏଇଥିପାଇଁ ଯେ ଜଣେ ନେତାର ଚରିତ୍ରର ବିଭିନ୍ନ ଦିଗ ରହିଛି । କାଳିକା ପ୍ରସାଦ ଠାରେ ହଠାତ୍ ତାଙ୍କ ଆଖି ଆଗରେ ବୁଢ଼ାକୁ କାଠ ଗୋଟାଇବାର ଦେଖି ତାଙ୍କ ଭିତରେ ଥିବା ମାନବିକତା ଚେଇଁ ଉଠିଛି । ସେ ଗାଡ଼ିକୁ ରଖିବାକୁ କହିଛନ୍ତି । ମୁଁ ସେକଥା ଦେଖି ନଥିଲି ତା' ନୁହେଁ । ଏହା ଏକ ସାଧାରଣ ଘଟଣା ଭାବି କିଛି ଚିନ୍ତା କରି ନଥିଲି । ମାତ୍ର ବିଜୁବାବୁ ଏ ପ୍ରକାର ଦୃଶ୍ୟରେ ବିଚଳିତ ହୋଇ ଅଟକି ଗଲେ ଏବଂ ଘଟଣାସ୍ଥଳରେ ହିଁ ବୁଢ଼ାର ସମସ୍ୟାର ସମାଧାନ କରିଦେଇଥିଲେ । ସବୁ ନେତାଙ୍କର ଏହି ଚରିତ୍ର ନଥାଏ । ମାତ୍ର ବିଜୁବାବୁଙ୍କ ଚରିତ୍ରର ଏହା ଏକ ବିଶେଷତ୍ୱ ।

୧୯୭୭ ଜୁନ୍ ୧୦ ତାରିଖ ନିର୍ବାଚନରେ ଜନତା ପାର୍ଟି ୧୧୦ଟି ସ୍ଥାନ, କଂଗ୍ରେସ ୨୬ଟି ସ୍ଥାନ, କମ୍ୟୁନିଷ୍ଟ ଗୋଟିଏ, ସିପିଏମ୍ ଗୋଟିଏ ଏବଂ ସ୍ୱାଧୀନ ସଦସ୍ୟ ନ'ଟି ସ୍ଥାନରେ ବିଜୟ ଲାଭ କରିଥିଲେ । ତେବେ ବିଜୁବାବୁ ବିଧାନସଭାକୁ ନଯାଇ ଲୋକସଭାକୁ ଯାଇଥିଲେ । ଏହା ଅନେକଙ୍କୁ ଆଶ୍ଚର୍ଯ୍ୟ କରିଥିଲା । କାରଣ ସେ ବିଧାନସଭାକୁ ଆସିଥିଲେ ମୁଖ୍ୟମନ୍ତ୍ରୀ ହୋଇଥା'ନ୍ତେ । ମାତ୍ର ତା' ନକରି ସେ ଲୋକସଭାକୁ ଗଲେ ଏବଂ ମୋରାରଜୀ ଦେଶାଇଙ୍କ ମନ୍ତ୍ରିମଣ୍ଡଳରେ ଇସ୍ପାତ ଓ ଖଣି ମନ୍ତ୍ରୀ ରୂପେ ଦାୟିତ୍ୱ ନେଲେ । ସମ୍ଭବତଃ ସର୍ବଭାରତୀୟ ନେତା ହେବାପାଇଁ ଲାଳସା ରଖି ସେ ରାଜ୍ୟସ୍ତରରେ ରହିବାକୁ ପସନ୍ଦ କଲେ ନାହିଁ । ତେବେ ରାଜ୍ୟରେ ତାଙ୍କ ନିର୍ଦ୍ଦେଶରେ ଶାସନ ଚାଲିଲା । ନୀଳମଣି ରାଉତରାୟ ମୁଖ୍ୟମନ୍ତ୍ରୀ ହେଲେ ।

ଏହି ସମୟର ତେରବର୍ଷ ପରେ ୧୯୯୦ ମସିହାରେ ସେ ବିଧାନସଭାକୁ ନିର୍ବାଚିତ ହୋଇ ମୁଖ୍ୟମନ୍ତ୍ରୀ ଦାୟିତ୍ୱ ନେଲେ । ମୁଖ୍ୟମନ୍ତ୍ରୀ ଭାବେ ସେ ପାଞ୍ଚବର୍ଷ ରହିଥିଲେ ମଧ୍ୟ ଏହି ସମୟରେ ସେ ରାଜ୍ୟପାଇଁ ବିଶେଷ କିଛି କରିପାରି ନଥିଲେ । ଦାୟିତ୍ୱ ଗ୍ରହଣ ପରେ ପରେ ସେ ଆହ୍ୱାନ ଦେଇଥିଲେ ଯେଉଁ ସରକାରୀ କର୍ମଚାରୀ ଓ ଅଫିସରମାନେ ଲୋକଙ୍କ କଥା ଶୁଣୁ ନାହାନ୍ତି ବା କାର୍ଯ୍ୟ କରୁନାହାନ୍ତି ସେମାନଙ୍କ ମାଡ଼ ଦିଅ । ଦିନେ ଅଚାନକ ଭାବେ ଏହି ମାଡ଼ ତତ୍ତ୍ୱ ତାଙ୍କ ଉପରେ ପ୍ରୟୋଗ ହେଲା । ସେଦିନ ଥିଲା ୧୯୯୧ ମସିହାର ଅକ୍ଟୋବର ୨୩ ତାରିଖ । ସେଦିନ ମୁଖ୍ୟମନ୍ତ୍ରୀ ସଚିବାଳୟ ସମ୍ମିଳନୀ କକ୍ଷରେ ଅଫିସରମାନଙ୍କର ଏକ ସଭାରେ ଉଦ୍‌ବୋଧନ ଦେଇ ନିଜ ଚେୟରକୁ ଫେରୁଥିଲେ ଦିନ ସାଢ଼େ ୧୨ଟାରେ । ହଠାତ୍ ତାଙ୍କ ଚେୟରର ଅଳ୍ପ ଦୂରରେ ଠିଆ ହୋଇଥିବା ଜଣେ ଯୁବକ ତାଙ୍କୁ ବେଶ୍ ଜୋର୍‌ରେ ଏକ ଚଟକଣା ଦେଲା । ସେ ସେଇଠି ଠିଆ ହୋଇଥିଲା । ବିଜୁବାବୁ ଠିଆ ହୋଇପଡ଼ିଲେ । ତା'ପରେ ଯୁବକକୁ ଏକ ଚଟକଣା ଦେଲେ । ଏହି ସମୟରେ ପୋଲିସ୍ ପହଞ୍ଚିଯାଇ ତାକୁ ଧରିପକାଇ ନେଇଯିବା ବେଳେ ବିଜୁବାବୁ ତାକୁ ତାଙ୍କ ଚେୟରକୁ ପଠାଇଦେବା ପାଇଁ କହିଲେ । ମୁଁ ଆଉ ଦୁଇ/ତିନିଜଣ ସାମ୍ବାଦିକ ଯୁବକ ପଛେପଛେ

ଗଲୁ । ବିଜୁବାବୁ ପଚାରିଲେ କାହିଁକି ଚଟକଣା ମାରିଲୁ । ଯୁବକ ଜଣକ କହିଲା- ମୁଁ ବେକାର, ବ୍ୟବସାୟ କରିବାକୁ ପାଞ୍ଚହଜାର ଟଙ୍କା ଋଣ ପାଇଁ ଆବେଦନ କରି ତିନିବର୍ଷ ହେଲା ପାଇନି । ଆପଣଙ୍କ ପାଖକୁ ଦି'ବର୍ଷ ହେବ ଧାଇଁଛି । ହେଲାନି । ବିଜୁବାବୁ ତାକୁ ଚାହିଁଲେ । ପକେଟ୍‌ରୁ କାଢ଼ି କିଛି ଟଙ୍କା ଦେଲେ ଏବଂ ଛାଡ଼ିଦେଲେ । ଯୁବକର ନାମ ଚନ୍ଦ୍ରମଣି ସାହୁ ।

ଅନେକ ସମୟରେ ଲୋକ ନିଜର ମୌଳିକ ସ୍ଥିତି ଭୁଲିଯାଏ । ଫଳରେ ଏଭଳି କେତେକ ପରିସ୍ଥିତିର ଉଦ୍ଭବ ହୁଏ ଯାହାର ସମାଧାନ ପାଇଁ ତାକୁ ଅସୁବିଧାରେ ପଡ଼ିବାକୁ ହୁଏ । ମୁଁ ପିଲାଦିନୁ ଏ ସମ୍ପର୍କରେ ସଚେତନ ଥିଲି । ମୋର ଜନ୍ମ ଏକ ସଂଭ୍ରାନ୍ତ କ୍ଷତ୍ରୀୟ ପରିବାରରେ । ମାତ୍ର ମୋ ଜନ୍ମ ବେଳକୁ ଆମର ପରିବାର ପୂର୍ବ ସ୍ଥିତିରେ ଅନେକ ପରିବର୍ତ୍ତନ ହୋଇଥିଲା । ଆମେ ନିମ୍ନ ମଧ୍ୟବିତ୍ତ ପରିବାରରେ ପରିଣତ ହୋଇଥିଲୁ । ଏକଦା ପ୍ରାୟ ଦୁଇଶହ ଏକର ଜମିର ମାଲିକ ଥିବା ପରିବାର ମୋ ଜନ୍ମ ବେଳକୁ ମାତ୍ର ଆଠ/ଦଶ ଏକର ଜମିର ମାଲିକ ଥିଲେ । ମୋ ବାପା( ଆମେ କ୍ଷତ୍ରୀୟ ପରିବାରରେ ଦଦେଇ ଡାକୁ) ଓଡ଼ିଶା ସରକାରଙ୍କ ତୃତୀୟ ଶ୍ରେଣୀ କର୍ମଚାରୀ( ରେଭିନ୍ୟୁ ଇନ୍ସପେକ୍ଟର ବା ନାଏବ ତହସିଲଦାର ) ଥିଲେ । ସେ ଅତ୍ୟନ୍ତ ସାଧୁ, ସଚ୍ଚୋଟ ଏବଂ ଅତି ମାତ୍ରାରେ ଈଶ୍ୱରଭକ୍ତ ଥିଲେ । ତେଣୁ ତାଙ୍କର ସୀମିତ ଆୟ ମଧ୍ୟରେ ଆମ ପରିବାର ଚଳୁଥିଲା । ଅବଶ୍ୟ ଆମ ଚଳଣିରେ ଅସୁବିଧା ନଥିଲା । ଜମିରୁ ଧାନ, ମୁଗ, ବିରି ଠାରୁ ଆରମ୍ଭ କରି ତଇଲା ଜମିରେ ପନିପରିବା, ଆମ୍ବ-ପଣସ ହେଉଥିଲା । ତେଣୁ ଆମର ସ୍ୱଚ୍ଛନ୍ଦ ଚଳଣି ଥିଲା । ଅଭାବବୋଧ କେବେ ନଥିଲା ।

ମୋ ଦଦେଇ ଆମକୁ ସଦାବେଳେ କହୁଥିଲେ ନିଜର ଆୟ ଆଉ ସାମର୍ଥ୍ୟ ମଧ୍ୟରେ ନିଜକୁ ସୀମାବଦ୍ଧ କରି ରଖିବ । ଅଯଥା ବଡ଼ପଣ ଦେଖାଇବାକୁ ଯାଇ ନିଜକୁ ବିପଦରେ ପକାଇବ ନାହିଁ । ଈଶ୍ୱରଙ୍କୁ ଡାକ- ତାଙ୍କରି ନିକଟରେ ନିଜକୁ ସମର୍ପିଦିଅ । ଦେଖିବ ତୁମର ସମସ୍ତ ସମସ୍ୟା ଦୂର ହୋଇଯିବ ।

ଦଦେଇଙ୍କ କଥାକୁ ମୁଁ ଅକ୍ଷରେ ଅକ୍ଷରେ ଏପର୍ଯ୍ୟନ୍ତ ପାଳନ କରି ଆସୁଛି । ୧୯୭୦ ମସିହାରେ ରାଜ୍ୟ ସରକାର ମୋତେ ଷ୍ଟେସନ ସ୍କୋୟାରରେ ଖଣ୍ଡେ ଘରଡିହ ଜମି ଦେଲେ । ୫୦' X ୭୫' ଜାଗାପାଇଁ ମୋତେ ଦାଖଲ କରିବାକୁ ପଡ଼ିଲା ନ'ଶହ ଟଙ୍କା । ସେତେବେଳେ ଭୁବନେଶ୍ୱରରେ ସରକାରୀ ଜମି ଏକର ପିଛା ଦର ଥିଲା ଦଶହଜାର ଟଙ୍କା । ମୁଁ ଜମି ନେଲି । ଜନ କଂଗ୍ରେସ ଦଳର ପବିତ୍ର ମୋହନ ପ୍ରଧାନ ଥିଲେ ସେତେବେଳେ ଉପ ମୁଖ୍ୟମନ୍ତ୍ରୀ । ଶାନ୍ତନୁ କୁମାର ଦାସ ଥିଲେ କ୍ୟାପିଟେଲ୍ ଆଡ଼ମିନିଷ୍ଟ୍ରେସନ ମନ୍ତ୍ରୀ । ପବିତ୍ର ବାବୁ ମୋତେ ଶ୍ରଦ୍ଧା କରୁଥିଲେ । ତାଙ୍କରି ନିର୍ଦ୍ଦେଶରେ ତତ୍‌କାଳୀନ ଇଷ୍ଟେଟ ଅଫିସର ବିଜୟ ପଟ୍ଟନାୟକ ଏହି ଜମି ମୋତେ ଦେଇଥିଲେ ।

ମୋ ସାଙ୍ଗରେ ସେ ଅଞ୍ଚଳରେ ଜମି ପାଇଥିବା କିଛି ସଚିବାଳୟ କିରାଣି, ଇଞ୍ଜିନିୟର ଓ ଆମର କିଛି ସାମ୍ବାଦିକ ଘର କରିଦେଲେ । ମାତ୍ର ମୁଁ କ'ଣ କରିବି କ'ଣ କରିବି ଚିନ୍ତା କରି କରି ଦଶବର୍ଷ ବିତିଗଲା । କାରଣ ଋଣ କରିବାକୁ ମୋର ଭାରି ଭୟ ଥିଲା । ୧୯୮୦ ମସିହାରେ ସୁଧାଂଶୁ ମୋହନ ରାଉତରାୟ ଭୁବନେଶ୍ୱର ଏସ୍.ଡି.ଓ. ହୋଇ ଯୋଗଦେବା ପରେ କ୍ୟାପିଟାଲ୍ ଅର୍ବାନ ହାଉସିଂ କୋ ଅପରେଟିଭ୍ ସୋସାଇଟିର ସଭାପତି ହେଲେ । ତାଙ୍କ ସହ ମୋର ଅନେକ ଦିନରୁ ପରିଚୟ ଓ ବନ୍ଧୁ ବାନ୍ଧବ ସମ୍ପର୍କ ଥିଲା । ତାଙ୍କରି ପରାମର୍ଶରେ ମୁଁ ସୋସାଇଟିରୁ ଗୃହଋଣ ପାଇଁ ଆବେଦନ କଲି । ଷାଠିଏ ହଜାର ଟଙ୍କା ମଞ୍ଜୁର ହେଲା । ସେତେବେଳେ ମୋ ପତ୍ନୀଙ୍କ ନାମରେ ଏକ ଜୀବନବୀମା ଏଜେନ୍ସି ନେଇଥିଲି । ବର୍ଷକୁ ପାଖାପାଖି ତିରିଶରୁ ଚାଳିଶ ହଜାର ଆୟ ହେଉଥିଲା । ଯାହା ଟଙ୍କା

ପାଇଥିଲି ତାକୁ ଖର୍ଚ୍ଚ କରିବା ପରେ ଘର ଅଧାରେ ରହିଲା । ପୁଣି ଷ୍ଟେଟବ୍ୟାଙ୍କ ଅଫ୍ ଇଣ୍ଡିଆରୁ କୋଲେଟେରୀଲ ନୀତିରେ ସତୁରି ହଜାର ଟଙ୍କା ଋଣ ଆଣିଲି । ସବୁ ମିଶି ୧୯୮୨ ଶେଷ ବେଳକୁ ଘରକାମ ଶେଷ ହେଲା ଓ ସାଙ୍ଗେସାଙ୍ଗେ ଭଡ଼ା ଲାଗିଗଲା । ଘରେ ଖର୍ଚ୍ଚ ହୋଇଥିଲା ପାଖାପାଖି ତିନିଲକ୍ଷ ଟଙ୍କା ।

ଋଣ ପରିଶୋଧ ହେଉହେଉ ବାରବର୍ଷ ଲାଗିଗଲା । ମୋ ନିଜର ରାଜ୍ୟ ରାଜଧାନୀରେ ଯାହାହେଉ ଘରଖଣ୍ଡେ ହେଲା । ଛୋଟ ଘର । ବାରଶହ ବର୍ଗଫୁଟର ଘର । ମୋଜାଇକ୍ ଓ ଶାଗୁଆନ କାଠର ଝରକା କବାଟ । ଘର ତିଆରି ପରେ ମୋ ମନଟା ଭାରି ଖୁସି ହୋଇ ଯାଇଥିଲା ।

## -ମୋର କାର୍ କିଣା-

ଘର ତିଆରି ପରେ ଘରେ ମୋ ପତ୍ନୀ ବାରମ୍ବାର ଚାପ ଦେଉଥିଲେ ଗୋଟିଏ ଗାଡ଼ି କିଣିବା ପାଇଁ । ୧୯୮୪ରୁ ମୋ ପତ୍ନୀ ଷ୍ଟେଟ୍ସମ୍ୟାନ ଖବର କାଗଜର ବିଜିନେସ୍ ରିପ୍ରେଜେଣ୍ଟେଟିଭ୍ ଭାବେ ନିଯୁକ୍ତି ପାଇଥିଲେ । ମାସକୁ ହାରାହାରି ଆଠ/ଦଶ ହଜାର ଟଙ୍କା ରୋଜଗାର ହେଉଥିଲା । ତେବେ କେଜାଣି କାହିଁକି ଋଣ କରି ଗାଡ଼ି ଚଢ଼ିବା ପାଇଁ ମନ ହେଲା ନାହିଁ । ଘରେ ପିଲାମାନେ ଅନେକ ସମୟରେ ମଧ୍ୟ ଗାଡ଼ି କିଣିବାକୁ କହୁଥିଲେ । ମୁଁ ଗାଡ଼ି କିଣିବାର ଲୋଭ ସମ୍ବରଣ କରି ଆସୁଥିଲି । ଏଇମିତି ୧୯୯୮ ମସିହା ହୋଇଗଲା । ଦୁର୍ଗାପୂଜା ପୂର୍ବରୁ ଦିନେ ସଚିବାଳୟ ସାମ୍ନାରେ ଦେଖା ହୋଇଗଲା ସିଣ୍ଡିକେଟ ବ୍ୟାଙ୍କ ମ୍ୟାନେଜର ପ୍ରମୋଦ ନନ୍ଦଙ୍କ ସହ । ମୋତେ ଦେଖି ନମସ୍କାର କଲେ । ମୁଁ ସ୍କୁଟର ରଖି ତାଙ୍କ ସହ କଥାବାର୍ତ୍ତା ହେଲି । ତା'ପରେ ସିଏ ତାଙ୍କ ବାଟରେ ମୁଁ ମୋ ବାଟରେ ଗଲୁ ।

ତା' ପରଦିନ ସକାଳ ସାଢ଼େ ନ'ଟାରେ ମୁଁ ଦାଣ୍ଡଘରେ କାଗଜ ପଢ଼ିବାକୁ ବସୁଛି, ପ୍ରମୋଦ ନନ୍ଦ ଆସି ପହଞ୍ଚିଲେ । ପ୍ରମୋଦ ବାବୁଙ୍କୁ ଦେଖି ହସିହସି କହିଲି କ'ଣ ବ୍ୟାଙ୍କରେ କିଛି ଜମା ଦରକାର ହେଲାକି ? ସେ ସେଇମିତି ହସିହସି କହିଲେ ଜମା ନୁହେଁ, ଖର୍ଚ୍ଚ କରିବା ପାଇଁ ଦରକାର ପଡ଼ିଲା । ଚା' ଆସିଲା । ଚା' ଖାଉ ଖାଉ ସେ ଏକ ଫର୍ମ ମୋ ଆଡ଼କୁ ବଢ଼ାଇ ଦେଇ କହିଲେ ଏଇଠି ଦସ୍ତଖତ କରନ୍ତୁ । ମୁଁ ଆଶ୍ଚର୍ଯ୍ୟ ହୋଇ ପଚାରିଲି ଇୟେ କ'ଣ ? ସେ କହିଲେ ଗାଡ଼ି ପାଇଁ ଋଣ ଦରଖାସ୍ତ ଫର୍ମ । ମୁଁ ତାଙ୍କ କଥା ଶୁଣି କାବା ହୋଇଗଲି । କହିଲି କିନ୍ତୁ ମୁଁ ଗାଡ଼ି କିଣିବା କଥା ତ ଚିନ୍ତା କରିନାହିଁ । ସେ ମୋତେ ଯେଉଁ ଜବାବ୍ ଦେଲେ ମୁଁ ଚୁପ୍ ହୋଇଗଲି । ସେ କହିଲେ କାଲି ଓଡ଼ିଶାର ଏକ ନମ୍ବର ସାମ୍ବାଦିକଙ୍କୁ ଓ ସାହିତ୍ୟିକଙ୍କୁ ମୁଁ ଯେତେବେଳେ ବଜାଜ୍ ପ୍ରିୟା ସ୍କୁଟରରେ ଦେଖିଲି ମୋତେ ଲଜ୍ଜା ଲାଗିଲା । ସେତିକିବେଳୁ ମୁଁ ନିଷ୍ପତ୍ତି କଲି ଆଜି ଆପଣ ଗାଡ଼ି କିଣିବେ । ପ୍ରମୋଦବାବୁଙ୍କ କଥାରେ ଯେଉଁ ଆନ୍ତରିକତା ଆଉ ଦୃଢ଼ତା ଥିଲା ମୁଁ ସେଥିରେ ଅଭିଭୂତ ହୋଇଗଲି । ତାଙ୍କରି ନିର୍ଦ୍ଦେଶ ମୁତାବକ ଫର୍ମରେ ଦସ୍ତଖତ କଲି । ସାଢ଼େ ଦଶଟା ବେଳକୁ କଳ୍ପନା ଛକ ସିଣ୍ଡିକେଟ୍ ବ୍ୟାଙ୍କରେ ପହଞ୍ଚିଲି । ପ୍ରଥମେ ମାରୁତି ୮୦୦ ଡିଲକ୍ସ କାର୍ କିଣିବା ପାଇଁ ନିଷ୍ପତ୍ତି ନେଲି । ଯାହା ମନେ ପଡୁଛି ଗାଡ଼ି ମୋଟ ଦୁଇଲକ୍ଷ ପଞ୍ଚାଅଶୀ ହଜାର ଟଙ୍କା ଦାମ୍ ଥିଲା । ସେତେବେଳେ ମୁଁ ସିଣ୍ଡିକେଟ୍ ବ୍ୟାଙ୍କରେ ଦୈନିକ ଏକଶହ ଟଙ୍କା ଜମା ଯୋଜନାରେ ପ୍ରତିଦିନ ଶହେଟଙ୍କା ଲେଖାଏଁ ରଖୁଥିଲି । ସେତେବେଳକୁ ମୋର ଅଶୀ ହଜାରରୁ ଊର୍ଦ୍ଧ୍ୱ ଟଙ୍କା ଜମା ଥିଲା । ସେଇ ଅଶୀ ହଜାର ଟଙ୍କା ମ୍ୟାଚିଂ ସେୟାର୍ ରୂପେ ମୁଁ ଜମା ଦେଲି ଏବଂ ଦୁଇଲକ୍ଷ ପାଞ୍ଚହଜାର ଟଙ୍କା ଋଣ ନେଲି । ପ୍ରମୋଦବାବୁ ବିନା ଗ୍ୟାରେଣ୍ଟରରେ ମୋତେ ଦୁଇଲକ୍ଷ ପଞ୍ଚାଅଶୀ ହଜାର ଟଙ୍କାର ଡ୍ରାଫ୍ଟ ଦେଲେ । ମୁଁ ସୁଧାଂଶୁ ରାଉତରାୟଙ୍କ ପୁଅ ବାପି(ପି.ଆର୍. ମୋଟରସ୍‌ର ମାଲିକ)କୁ ଫୋନ୍ କରି ଆସିବାକୁ କହିଲି । ବାପିକୁ ସାଙ୍ଗରେ ଧରି ମୋ ପୁଅ ଲକୁକୁ ଘରୁ ନେଇ ଆମେ ଖଣ୍ଡଗିରି ରୋଲ୍ଲା ମୋଟରସ୍‌କୁ

ଗଲୁ । ଜୀବନରେ ପ୍ରଥମେ ଘର ଓ ପରେ ଗାଡ଼ିର ମାଲିକ ହେଲି । ଈଶ୍ୱରଙ୍କ ଉଦ୍ଦେଶ୍ୟରେ ପ୍ରଣାମ କଲି । ଗୋଟିଏ ନିମ୍ନ ମଧ୍ୟବିତ୍ତ ପରିବାରରୁ ଆସିଥିବା ଜଣେ ବ୍ୟକ୍ତି ଶେଷରେ ନିଜ ସିଙ୍ଗରେ ମାଟି ତାଡ଼ି ଘର ଆଉ ଗାଡ଼ିର ମାଲିକ ହେଲା । କେବଳ ତା' ନୁହେଁ, ନ୍ୟାସନାଲ୍ ୟୁନିୟନ ଅଫ୍ ଜର୍ଣ୍ଣାଲିଷ୍ଟର ସର୍ବଭାରତୀୟ ସଭାପତି ବା ସାର୍କ ଜର୍ଣ୍ଣାଲିଷ୍ଟ ସମ୍ମିଳନୀର ତିନିଜଣିଆ ସଭାପତି ମଣ୍ଡଳୀର ଭାରତୀୟ ସଦସ୍ୟ ରୂପେ ନିର୍ବାଚିତ ହେବାବେଳେ ମୁଁ ମୋର ସେଇ ମୂଳ ସ୍ଥିତିକୁ ଭୁଲିଯାଇ ନଥିଲି । ମୋ ମନରେ କୌଣସି ସମୟରେ ସାମାନ୍ୟତମ ଗର୍ବ ବା ଅହଂକାର କେବେ ଜାତ ହୋଇନି । ଈଶ୍ୱରଙ୍କ ଦୟା ରୂପେ ମୁଁ ସବୁକିଛିକୁ ଗ୍ରହଣ କରେ । ମୁଁ ବିଶ୍ୱାସ କରେ ମଣିଷର ସବୁ କିଛି ଈଶ୍ୱରଙ୍କ ନିର୍ଦ୍ଦେଶରେ ନିୟନ୍ତ୍ରିତ ହୁଏ । ମଣିଷ ନିମିତ୍ତ ମାତ୍ର । ଆଜି ମଧ୍ୟ ମୁଁ ନିଜକୁ ସେଇ ଚର୍ଚ୍ଚିକା ଗ୍ରାମର ନିମ୍ନ ମଧ୍ୟବିତ୍ତ ପରିବାରର ସନ୍ତାନ ବୋଲି ବିଚାର କରେ ।

୧୯୯୮ରେ ମୁଁ କିଣିଥିବା କାର୍‌ର ସବୁ ଋଣ ୨୦୦୦ ମସିହାରେ ପରିଶୋଧ କରିଦେଲି । ପ୍ରତିମାସରେ ଘରଭଡ଼ା ପାଉଥିଲି ଦଶହଜାର ଟଙ୍କା । ସେଇ ଟଙ୍କା ଋଣ ସୁଝିବାରେ ଗଲା । ୨୦୦୦ ମସିହା ଜୁନ୍ ମାସ ବେଳକୁ ଗାଡ଼ି ବିକ୍ରି କରି ତା' ବଦଳରେ ମାରୁତି ଜେନ୍ ଗାଡ଼ି କିଣିଲି । ପୁରୁଣା ଗାଡ଼ି ୨ଲକ୍ଷ ୨୫ହଜାର ଟଙ୍କାରେ ବିକ୍ରି ହୋଇଗଲା । ବାକି ଦେଢ଼ଲକ୍ଷ ଟଙ୍କା ଋଣ ସେଇ ସିଣ୍ଡିକେଟ୍ ବ୍ୟାଙ୍କ୍‌ରୁ ନେଲି । ସେ ଋଣ ମଧ୍ୟ ପରିଶୋଧ ଠିକ୍ ସମୟରେ କରିଦେଲି । ମାରୁତି ଜେନ୍ ଗାଡ଼ି ସେତେବେଳେ ଦାମ୍ ଥିଲା ତିନିଲକ୍ଷ ସତୁରି ହଜାର ଟଙ୍କା । ସେ ଗାଡ଼ି ମୁଁ ଏବେ ମଧ୍ୟ ଚଢୁଛି ।

ଜୀବନରେ ମୁଁ ଅନେକ ସମସ୍ୟାର ସମ୍ମୁଖୀନ ହୋଇଛି । ଆରମ୍ଭରୁ ସାମ୍ବାଦିକତା, ସାହିତ୍ୟ, ସଂଗଠନ ଏବଂ ନିଜ ପରିବାର ଚଳାଇବା ପାଇଁ ଆବଶ୍ୟକ ଅର୍ଥ ଯୋଗାଡ଼ କରିବା ପାଇଁ ଅନେକ ପରିଶ୍ରମ କରିବାକୁ ପଡ଼ିଛି । ଜୀବନବୀମା ଏଜେନ୍ସି ହେଉ ବା ଷ୍ଟେଟ୍ସମ୍ୟାନ ବିଜିନେସ୍ ରିପ୍ରେଜେଣ୍ଟେଟିଭ୍ ହେଉ କୌଣସି କ୍ଷେତ୍ରରେ ମୋର କାମ ମୋ ସାମ୍ବାଦିକତା ବୃତ୍ତି ସହ ସମ୍ପର୍କ ନଥିଲା । କିମ୍ବା ସାମ୍ବାଦିକତାରେ ପ୍ରଭାବ ପଡୁନଥିଲା ।

ସେଇଥିପାଇଁ ସାମ୍ବାଦିକତା କ୍ଷେତ୍ରରେ ମୁଁ ନିରପେକ୍ଷ ଏବଂ ନିର୍ଭିକ ଭାବେ ନିଜର କାର୍ଯ୍ୟ ସମ୍ପାଦନା କରି ପାରୁଥିଲି । କୌଣସି ସମୟରେ ସାମ୍ବାଦିକତା କ୍ଷେତ୍ରରେ ମୋର କାର୍ଯ୍ୟର ଅନ୍ୟ କୌଣସି କାର୍ଯ୍ୟ ସହ ସାମାନ୍ୟତମ ସମ୍ପର୍କ ନଥିଲା । ଏପରିକି କରାଟେ କ୍ରୀଡ଼ା ବା ସାହିତ୍ୟୋତ୍ସବ ପାଇଁ ବିଭିନ୍ନ ବ୍ୟକ୍ତିବିଶେଷ ବା ଅନୁଷ୍ଠାନରୁ ଯେଉଁ ସାହାଯ୍ୟ ଆମେ ନେଉଥିଲୁ ତା'ର କୌଣସି ପ୍ରଭାବ ମୋର ସାମ୍ବାଦିକତା କାର୍ଯ୍ୟରେ ପଡ଼ିନଥିଲା । ତେଣୁ ମୁଁ ସବୁକାର୍ଯ୍ୟ ନିର୍ଦ୍ଦିଷ୍ଟ ସୀମାମଧ୍ୟରେ ବେଶ୍ ସୁରୁଖୁରୁରେ ସମ୍ପନ୍ନ କରୁଥିଲି ।

## -ବୋଉ ଆଉ ଦଦେଇଙ୍କ ତିରୋଧାନ-

ସତୁରୀ ଦଶକ ମୋ ଜୀବନର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ସମୟ । ପୂର୍ବରୁ ମୁଁ ମୋର ବିବାହ କଥା କହିଛି । ମୋର ବିବାହ ୧୯୭୧ ଜୁନ୍ ୨୭ ତାରିଖରେ ଅନୁଷ୍ଠିତ ହୋଇଥିଲା । ମୋର ପତ୍ନୀ ସ୍ନେହଲତା ମୋ ଜୀବନରେ ଏକ ପୂର୍ଣ୍ଣତା ଆଣି ଦେଇଥିଲେ । ମୋ ବିବାହ ବେଳେ ମୁଁ ଦୁଇ ନମ୍ବର ୟୁନିଟ୍‌ର ଏକ ଟାଇପ୍-୪ ଘରେ ରହୁଥିଲି । ଆମେ ଦୁହେଁ ଏବଂ ମଝିରେ ମଝିରେ ଗାଁରୁ ଦଦେଇ-ବୋଉ ଆସୁଥିଲେ । ମୋର ପ୍ରଥମ ସନ୍ତାନ କନ୍ୟା ସନ୍ତାନ ରୁପଲୁ । ତା'ର ଜନ୍ମ ୧୯୭୨ ଡିସେମ୍ବର ୪ ତାରିଖ । ମାତ୍ର ରୁପଲୁ ଜନ୍ମ ହେବାର ଦୁଇମାସ ପୂର୍ବରୁ ମୋ ବୋଉ ସେପାରିକୁ ଚାଲିଗଲା । ବୋଉ ଅପେକ୍ଷା

କରିଥିଲା ନାତି ବା ନାତୁଣୀକୁ ଦେଖିବା ପାଇଁ । ମାତ୍ର କାଳ ତାହା କରାଇ ଦେଲା ନାହିଁ । ରୁପକୁ ଜନ୍ମ ହେଲାପରେ କେତେକ କହିଲେ ବୋଉ ରୁପକୁ ରୂପରେ ମୋ ଘରେ ଜନ୍ମ ନେଇଛି । ମୋ ବୋଉ ଥିଲା ଏକ ଆଦର୍ଶ ନାରୀ । ଆମ ଗାଁରେ ତାକୁ କେହି କେବେ ଦାଣ୍ଡରେ ଦେଖି ନାହାନ୍ତି । ପାହାନ୍ତା ପ୍ରହରରୁ ଉଠି ମହାନଦୀକୁ ଯାଇ ନିତ୍ୟକର୍ମ ଓ ଗାଧୁଆ ପାଧୁଆ ସାରି ସୂର୍ଯ୍ୟୋଦୟ ପୂର୍ବରୁ ସେ ଘରକୁ ଫେରି ଆସୁଥିଲା । ଆମର ଗାଁରେ ଚାଳ ଦୋମହଲା ଘର । ଉପର ମହଲାରେ ଠାକୁର ଘର ଓ ଗୋଟିଏ ରହିବାଘର । ପ୍ରତିଦିନ ଗାଧୋଇ ଆସି ବୋଉ ଠାକୁର ଘର ଲିପିପୋଛି ପରିଷ୍କାର କରିବ । ଗୀତା-ଭାଗବତ ପଢ଼ିବା ପରେ ରୋଷେଇ ଘରକୁ ଆସିବ ।

ଦଦେଇ ଥିଲେ ଈଶ୍ବର ବିଶ୍ୱାସୀ । ରାତି ଚାରିଟାରୁ ଉଠି ଶ୍ରୀମଦ୍ ଭଗବଦ୍ ଗୀତାକୁ ପାଠ କରିବେ । ଗୀତାର ଅଠର ଅଧ୍ୟାୟ ତାଙ୍କର ମୁଖସ୍ଥ ଥିଲା । ପାଞ୍ଚଟା ବେଳକୁ ଘରୁ ବାହାରିବେ । ସେ କଠଉ ପିନ୍ଧୁଥିଲେ । କଠଉ ପିନ୍ଧି ସେ ବେଶ୍ ଦ୍ରୁତଗତିରେ ଚାଲି ପାରୁଥିଲେ । ବାଙ୍କୀ ଟାଉନ୍ ପାଖରେ ଆମର ଚାରି/ପାଞ୍ଚ ଏକର ଜମି ଥିଲା । ଦଦେଇ ସେ ଜମି ହୁଡ଼ାରେ ବିଭିନ୍ନ ବାରମାସୀ ଫୁଲଗଛ ଲଗାଇଥା'ନ୍ତି । ପ୍ରତିଦିନ ଜମିକୁ ଯାଇ ପାଖ ନାଳରେ ନିତ୍ୟକର୍ମ ଶେଷକରି ଫୁଲତୋଳି ସକାଳୁ ସକାଳୁ ଘରକୁ ଫେରନ୍ତି । ଆମ ଘର ଚର୍ଚ୍ଚିକା ବ୍ରାହ୍ମଣ ସାହିରେ । ସକାଳୁ ବ୍ରାହ୍ମଣ ବୁଢ଼ାମାନେ ଦାଣ୍ଡଦୁଆରେ ବସିଥାନ୍ତି । ଦଦେଇଙ୍କୁ ଦେଖି କହନ୍ତି ସାଆନ୍ତେ- ଗଣ୍ଡେ ଫୁଲ ଦେଇ ଯାଅ । ଦଦେଇ ତାଙ୍କ ଅଣ୍ଟିରୁ କିଛି କିଛି ଫୁଲ ଦେଇ ବାକି ଫୁଲ ଧରି ଘରକୁ ଆସନ୍ତି । ଘରେ ଫୁଲ ଥୋଇ ପିତଳ ଗରାଟାଏ ଧରି ମହାନଦୀକୁ ଗାଧୋଇବାକୁ ଯା'ନ୍ତି ।

କଚେରୀ ତୁଠ ଆମ ଘରଠୁଁ ପାଖ । ସେଠି କୂଳରୁ ପ୍ରାୟ ଦୁଇଶହ ଫୁଟ ପର୍ଯ୍ୟନ୍ତ ନଈ ଭିତରକୁ ପଥର ବୁରୁଜ ତିଆରି ହୋଇଥାଏ । ଦଦେଇ ପ୍ରତିଦିନ ସେହି ବୁରୁଜ ତୁଠରେ ଗାଧାନ୍ତି । ପ୍ରତିଦିନ ସେ ନଈ ମଝି ପର୍ଯ୍ୟନ୍ତ ପହଁରି ପହଁରି ଯାଇ ପିତଳ ଗରାରେ ଗରାଏ ପାଣି ସେଇଠୁ ଆଣି ଆସନ୍ତି । ଗାଧୋଇ ସାରି ସେ ଘରକୁ ଆସିବା ବାଟରେ ଆମ ଗାଁ ମୁଣ୍ଡ ଈଶାନେଶ୍ଵର ମହାଦେବଙ୍କୁ ସେଇ ପାଣିରେ ସ୍ନାନ କରାନ୍ତି । ବାକି ପାଣି ଆଣି ଘର ଠାକୁରଙ୍କୁ ସ୍ନାନ କରାନ୍ତି । ଇଏ ଥିଲା ଦଦେଇଙ୍କର ଦୈନନ୍ଦିନ କାର୍ଯ୍ୟ । ଦଶଟା ସୁଦ୍ଧା ଏସବୁ କାମସାରି ସେ ଅଫିସ୍ ଯା'ନ୍ତି । ଦଦେଇ ସମ୍ପୂର୍ଣ୍ଣ ନିରାମିଷାଶୀ ଥିଲେ । ବୋଉ ବେଳେବେଳେ ମାଛ ଖାଏ । ତେବେ କେବଳ ବୁଧବାର ବା ଶୁକ୍ରବାର । ତା'ପୁଣି କଦବା କେମିତି । ଆମ ବିଲରେ ଭଲ କଳାଜିରା ଧାନ ହୁଏ । ସେ ଧାନର ଚାଉଳ ସରୁସରୁ ଏବଂ ଭାରି ବାସନା । ଦି' ଏକର ଜମିରେ କଳାଜିରା ଧାନ ହୁଏ । ପାଞ୍ଚ/ସାତ ବସ୍ତା ଧାନ ଫଳେ । ତାକୁ ଆମ ଘରେ ବୋଉ ଚାଉଳ କରେ । ଆମର ଢିଙ୍କି ଥାଏ । ଚଷା ସାହି କିମ୍ବା ଗଉଡ଼ ସାହିରୁ କାମ କରିବା ସ୍ତ୍ରୀ ଲୋକ ଆସି ଧାନ କୁଟନ୍ତି । ଠାକୁର ଘରେ ସେ ଚାଉଳ ପାଞ୍ଚ/ଛଟି ବଡ଼ ବଡ଼ ହାଣ୍ଡିରେ ବୋଉ ରଖେ । ମୋର ମନେଅଛି ମୋ ବାହାଘର ଭୋଜିରେ ଗାଁର ପ୍ରାୟ ଛ'/ସାତଶହ ଲୋକଙ୍କ ପାଇଁ କାନିକା ଓ ପାଏସ ସେଇ କଳାଜିରା ଚାଉଳରେ ତିଆରି ହୋଇଥିଲା । ବୋଉ ଚାଲିଗଲା ପରେ ଆଉ ମୁଁ ସେ କଳାଜିରା ଚାଉଳ ଦେଖିନାହିଁ । ବୋଉ ଚାଲିଗଲା ପରେ ଦଦେଇ ଖୁବ୍ ଭାଙ୍ଗି ପଡ଼ିଥିଲେ ।

ଦଦେଇ ମୃତ୍ୟୁ ପୂର୍ବରୁ ଆମ ବଂଶର ପରମ୍ପରା ଆଉ ପୂର୍ବ ପୁରୁଷଙ୍କ ସମ୍ପର୍କରେ ଏକ ଛୋଟ ବହି ଲେଖିଥିଲେ । ଆରମ୍ଭରେ ମୁଁ ଆମ ବଂଶ ପରିଚୟ ଦେଇଛି । ସେହି ବିବରଣୀରେ ଦଦେଇ ଲେଖିଥିଲେ, ମୋ ବିବାହ ପରେ ମୋର ସ୍ତ୍ରୀ ମୋ ଘରକୁ ଲକ୍ଷ୍ମୀ ହୋଇ ଆସିଥିଲେ । ତାଙ୍କ ଆସିବା ପରଠାରୁ ମୋ ପରିବାରରେ ଅଭାବବୋଧ ଆଉ ନଥିଲା । କେବଳ ମୋ ଘରେ ନୁହେଁ ପାଖ ପଡ଼ିଶା, ଅତିଥି ଅଭ୍ୟାଗତ ଏବଂ ବନ୍ଧୁବାନ୍ଧବରେ ମୋ ଘର ମୁଖରିତ ହୋଇ ରହିଯାଏ । ମଝିରେ ମଝିରେ ପୁରୀ ଜଗନ୍ନାଥ ମନ୍ଦିରର ସୁଆର ପଣ୍ଡା ନୀଳ ସାମନ୍ତରାୟ ଏବଂ ତାଙ୍କ ମୃତ୍ୟୁ ପରେ ତାଙ୍କ ପୁଅ ହରେକୃଷ୍ଣ ସାମନ୍ତରାୟ ଜଗନ୍ନାଥ ମହାପ୍ରଭୁଙ୍କ ଜମିବାଡ଼ି ବିଷୟ ତମପଡ଼ାରେ ବୁଝିବାକୁ ଆସି ଆମ ଘରେ ରୁହନ୍ତି । ସେମାନେ

ଜଗନ୍ନାଥଙ୍କ ଭୋଗ ରାନ୍ଧନ୍ତି । ନୂଆ ଚୂଲି- ନୂଆ ହାଣ୍ଡିରେ କାନିକା, ଡାଲି, ମହୁର, ଶାଗ, ଖଟା ବୋଷେଇ କରନ୍ତି । ତାକୁ ଖାଇବା ବେଳେ ମନେହୁଏ ସାକ୍ଷାତ ପ୍ରଭୁଙ୍କ ଅନ୍ନପ୍ରସାଦ ଯେପରି ଖାଉଛୁ । ଘରେ ଯିଏ ଯେତେବେଳେ ଆସିଲେ ଖାଇକରି ଯା'ନ୍ତି । ମୋର ମନେହୁଏ ମୋର ପତ୍ନୀଙ୍କ ଆଗମନ ମା' ଲକ୍ଷ୍ମୀଙ୍କୁ ଆମ ଘରେ ବିଜେ କରାଇଛନ୍ତି । ଦଦେଇଙ୍କର ଏଇ ବିବରଣୀ ପଢ଼ିବାବେଳେ ବୋଉର ମୁହଁଟା ଆଖିଆଗରେ ନାଚିଯାଏ । ସେ ଦୁହିଁଙ୍କୁ ହାତଯୋଡ଼ି ପ୍ରଣାମ କରେ ।

ବୋଉ ଚାଲିଗଲା ପରେ ଦଦେଇ ଭାଙ୍ଗି ପଡ଼ିଲେ । ସଦାବେଳେ ଠାକୁର ଘରେ ପ୍ରାୟ ବସନ୍ତି । ମୁଁ ତାଙ୍କୁ ମଝିରେ ମଝିରେ ଭୁବନେଶ୍ୱର ନେଇ ଆସେ । ସେ ମୋ ପାଖରେ ଦଶ/ ପନ୍ଦର ଦିନ ରହି ପୁଣି ବାଙ୍କୀ ଫେରିଯା'ନ୍ତି । ଭୁବନେଶ୍ୱର ଆସିଲେ ମୋ ଝିଅ ରୁପଲୁକୁ ଧରି ମୋ ଘର ପଛ ପାଖରେ ଥିବା ସରକାରୀ ନର୍ସରୀକୁ ଯାଇ ସକାଳୁ ଫୁଲ ତୋଳି ଆଣନ୍ତି । ରୁପଲୁର ସେ ନାଁ ଦେଇଥିଲେ ରତ୍ନା । ତାକୁ ଭାରି ଭଲ ପାଉଥିଲେ ।

## -ଦିଲ୍ଲୀ ଟ୍ରେଡ ଫେୟାର - ୧୯୭୨-

ଚୌଦ୍ୱାରରେ ରୁପଲୁ ଜନ୍ମ ହେବା ଦିନ ସକାଳୁ ମୁଁ ଭୁବନେଶ୍ୱରରୁ ଟେଲିଫୋନ୍ ପାଇଲି ଯେ ସରକାର ରାଜ୍ୟର ବାରଜଣ ସାମ୍ବାଦିକଙ୍କୁ ଦିଲ୍ଲୀ ଠାରେ ହେଉଥିବା ଆନ୍ତର୍ଜାତିକ ଟ୍ରେଡ୍ ଫେୟାର ଦେଖିବା ପାଇଁ ମନୋନୀତ କରିଛନ୍ତି । ସେଥିପାଇଁ ପ୍ରତ୍ୟେକଙ୍କୁ ଏଗାରଶହ ଟଙ୍କା ଲେଖାଏଁ ଦେବାପାଇଁ ସ୍ଥିର ହୋଇଛି । ଶୀଘ୍ର ଭୁବନେଶ୍ୱର ଆସି ଟଙ୍କା ନେଇଯିବାକୁ ମୋତେ କୁହାଗଲା । ମୁଁ ସେଇଦିନ ଭୁବନେଶ୍ୱର ଫେରି ଆସି ଲୋକ ସମ୍ପର୍କ ବିଭାଗ ଡେପୁଟି ଡିରେକ୍ଟର ସୁବ୍ରତ ଯୋଶୀଙ୍କ ପାଖରୁ ଟଙ୍କା ଆଣିଲି । ସେତେବେଳେ ଭୁବନେଶ୍ୱରରୁ ଦିଲ୍ଲୀ ସିଧାସଳଖ ଟ୍ରେନ୍ ନଥିଲା । ପୁରୀ-ହାୱଡ଼ା ଏକ୍ସପ୍ରେସ୍‌ରେ ଦୁଇଟି ଦିଲ୍ଲୀ ବଗି ଯୋଡ଼ା ଯାଉଥିଲା । ଖଡ଼ଗପୁରରେ ସେ ବଗି ଦୁଇଟି ମୂଳ ଟ୍ରେନ୍‌ରୁ ଅଲଗା ହୋଇ ଏକ ପାସେଞ୍ଜର ଟ୍ରେନ୍ ସହ ଯୋଡ଼ା ହୋଇ ଆସାନସୋଲ ପର୍ଯ୍ୟନ୍ତ ଯାଏ । ଆସାନସୋଲ୍‌ରୁ ତୋଫାନ ଏକ୍ସପ୍ରେସ୍‌ରେ ଯୋଡ଼ା ହୋଇ ଦିଲ୍ଲୀ ଯାଏ । ତେଣୁ ଭୁବନେଶ୍ୱରରୁ ଦିଲ୍ଲୀ ଯିବାପାଇଁ ଦୁଇ ରାତି ଦୁଇଦିନ ଲାଗୁଥିଲା । ସେ ବଗିରେ ଶୋଇବା ପାଇଁ ମଧ୍ୟ ବ୍ୟବସ୍ଥା ନଥିଲା । ସିଟ୍ ଉପରେ ଗୋଟିଏ ଗୋଟିଏ ମାଲ୍ ରଖିବା ପାଇଁ ଲମ୍ବା ପଟାରେ ବିଛଣା ପାରି ଶୁଆଯାଉଥିଲା । ଆମେ ମୁଁ, ହିନ୍ଦୁସ୍ଥାନ ଟାଇମ୍ସର ପ୍ରତିନିଧି ବଙ୍କିମ ଦାସ ଓ ଅଲ୍‌ଇଣ୍ଡିଆ ରେଡିଓର ଭୁବନେଶ୍ୱର ପ୍ରତିନିଧି ପ୍ରଭାକର ମିଶ୍ର ଏକାଠି ଦିଲ୍ଲୀ ଯିବାପାଇଁ ନିଷ୍ପତ୍ତି କରି ଟିକେଟ୍ କାଟିଲୁ ।

ଦିଲ୍ଲୀରେ ପହଞ୍ଚି ସମସ୍ୟା ହେଲା ରହିବୁ କେଉଁଠି ? ଓଡ଼ିଶା ଭବନରେ ଏମ୍.ଏଲ୍.ଏ. ଅଫିସର ଭର୍ତ୍ତି । ବଙ୍କିମବାବୁ କହିଲେ ବରେନ୍ଦ୍ର ବାବୁ ଜଗନ୍ନାଥ ରାଓଙ୍କୁ ଫୋନ୍ କରନ୍ତୁ । ଜଗନ୍ନାଥ ରାଓ ପୂର୍ବରୁ କେନ୍ଦ୍ରମନ୍ତ୍ରୀ ଥିଲେ । ୧୯୭୧ରୁ ଲୋକସଭା ସଦସ୍ୟ ଥିଲେ । ମୁଁ ଷ୍ଟେସନ ଟେଲିଫୋନ୍ ବୁଥ୍‌ରୁ ତାଙ୍କୁ ଫୋନ୍ କରି ଆମେ ଦିଲ୍ଲୀ ଆସିଥିବା ଓ ଓଡ଼ିଶା ଭବନରେ ଯାଗା ନପାଇବା କଥା କହିଲି । ସେ କହିଲେ ଏଇନେ କେଉଁଠାରୁ କହୁଛ ? ମୁଁ ନୂଆଦିଲ୍ଲୀ ଷ୍ଟେସନରୁ କହୁଥିବା କହିଲି । ସେ କହିଲେ ଷ୍ଟେସନ ସାମ୍ନାକୁ ଆସ । ମୋର ଧଳା ଆମ୍ବାସାଡାର କାର୍ ଯିବ ତମ ସମସ୍ତଙ୍କୁ ନେଇ ଆସିବ । ସେ କାର୍ ନମ୍ବର ଦେଲେ । ମୁଁ ଏତେଟା ବଦାନ୍ୟତା ଆଶା କରିନଥିଲି । ଯାହାହେଉ ଅଧଘଣ୍ଟାକ ପରେ କାର୍ ପହଞ୍ଚିଲା । ସମୟ ସେତେବେଳକୁ ସନ୍ଧ୍ୟା ସାତଟା । ଆମେ କାର୍‌ରେ ବସିଲୁ । ମନଟା ଖୁସି ହୋଇଗଲା । ଜଗନ୍ନାଥ ରାଓ ଜନପଥରେ ରହୁଥିଲେ । ତାଙ୍କ ବଙ୍ଗଳା ନମ୍ବର ଥିଲା ଚାରି ନମ୍ବର ଜନପଥ । ମନ୍ତ୍ରୀ ଥିଲାବେଳେ ସେଇ ଘରେ ସେ ରହୁଥିଲେ । ଆମ ପହଞ୍ଚିବା ପରେ ଆମକୁ ଦାଣ୍ଡଦୁଆରେ ସ୍ୱାଗତ କରି ଆମ ପାଇଁ ଉଦ୍ଦିଷ୍ଟ ଗୋଟିଏ କୋଠରୀକୁ ନେଇଗଲେ । ତିନୋଟି ଖଟ ଆଉ ଶେଯ ପଡ଼ିଛି । ରୁମ୍ ହିଟର ଲାଗିଛି । ଡିସେମ୍ବର ମାସ ୧୪ ତାରିଖ । ଦିଲ୍ଲୀରେ ପ୍ରବଳ ଶୀତ । ମାତ୍ର ରାଓ ସାହେବଙ୍କ ବ୍ୟବସ୍ଥା ଦେଖି ମନଟା ବେଶ୍ ଖୁସି ହେଲା । ଆମ ପାଇଁ ଆଉ ଏକ ବିସ୍ମୟ ଅପେକ୍ଷା କରିଥିଲା । ରାଓ ସାହେବ ଏକ

ଜନିଓ୍ୱାକର ସ୍କଚ୍ ହୁଇସ୍କି ଆଣି ଦେଲେ । କହିଲେ ଅଧା ଅଛି । ଆଜି ରାତିକ ଚଳା । କାଲି ଦେଖିବା । କିଛି ସମୟ ପରେ ପୂଜାରୀ କିଛି ଗରମ ପକୋଡ଼ା ଆଣି ଦେଲା । ଚମତ୍କାର ଆତିଥେୟତା ।

ଆମେ ଦିଲ୍ଲୀରେ ପାଞ୍ଚଦିନ ରହିଥିଲୁ । ସକାଳ ଆଠଟା ବେଳେ ପୁରୀ ବଗି । ପାଞ୍ଚଟା ବେଳୁ ଉଠି ନିତ୍ୟକର୍ମ ଶେଷକରି ବାହାରି ପଡ଼ିଲୁ । ପାଞ୍ଚଦିନ ଯାକ ବେଶ୍ ଆରାମ୍‌ରେ କଟି ଯାଇଥିଲା ।

ଭୁବନେଶ୍ୱର ଫେରିଆସି ମୁଁ ଚୌଦ୍ୱାର ଗଲି । ମୋ ପତ୍ନୀ ଏବଂ ଝିଅ ଚୌଦ୍ୱାରରେ ଥିଲେ । ରୁପଲୁ ଜନ୍ମ ହୋଇଥିଲା ଚୌଦ୍ୱାର ଇଏସ୍‌ଆଇ ହସ୍ପିଟାଲ୍‌ରେ । ଝିଅକୁ ଦେଖି ମୋ ମନଟା ଖୁସି ହୋଇଗଲା । ଗୋରା ତକ୍‌ତକ୍ ହୋଇ ଦେଖିବାକୁ ବେଶ୍ ସୁନ୍ଦର । ମାସକ ପର୍ଯ୍ୟନ୍ତ ମା' ଝିଅ ଚୌଦ୍ୱାରରେ ରହିଲେ । ମୁଁ ଭୁବନେଶ୍ୱରରୁ ସ୍କୁଟରରେ ଯିବା ଆସିବା କରୁଥାଏ ।

ବୋଉ ଚାଲିଯିବାର ଦି'ବର୍ଷ ପରେ ୧୯୭୫ ଫେବୃଆରୀ ଆଠ ତାରିଖରେ ଦଦେଇ ଚାଲିଗଲେ । ହଠାତ୍ ଅସୁସ୍ଥ ହୋଇ ପଡ଼ିବା ଖବର ପାଇ ମୁଁ ଭୁବନେଶ୍ୱରରୁ କାର୍ ନେଇ ତାଙ୍କୁ ଭୁବନେଶ୍ୱର କ୍ୟାପିଟାଲ୍ ହସ୍‌ପିଟାଲ୍‌ରେ ଆଡ଼ମିସନ୍ କରାଇ ଦେଲି । ଦି'ଦିନ ଭିତରେ ସେ ଚାଲିଗଲେ । ରାତି ପ୍ରାୟ ଦଶଟା । ମୁଁ ଘରକୁ ଖାଇବାକୁ ଆସିଥିଲି । ହଠାତ୍ ଫୋନ୍ ଆସିଲା ଜଲ୍‌ଦି ଆସନ୍ତୁ । ମୁଁ ସାଙ୍ଗେସାଙ୍ଗେ ସ୍କୁଟର ନେଇ ପହଞ୍ଚି ସେ ରହୁଥିବା କ୍ୟାବିନ୍‌ରେ ପହଞ୍ଚିଲି । ସେ ସମ୍ଭବତଃ ମୋତେ ଅପେକ୍ଷା କରିଥିଲେ । ମୁଁ କହିଲି ଦଦେଇ । ସେ ମୋତେ ଚାହିଁଲେ । ତା'ପରେ ସାମାନ୍ୟ ହସିଲେ । ଆଖି ବୁଜିଦେଲେ । ହାତରେ ଶ୍ରୀମଦ୍ ଭଗବଦ୍ ଗୀତାଟି ଧରିଥିଲେ ।

## -୧୯୮୦ ନିର୍ବାଚନ ଓ କଂଗ୍ରେସ ଦଳ-

୧୯୮୦ ମସିହା ଲୋକସଭା ନିର୍ବାଚନ ଜାନୁଆରୀ ୩ ତାରିଖରୁ ଫେବୃଆରୀ ୨୪ ତାରିଖ ପର୍ଯ୍ୟନ୍ତ ହୋଇଥିଲା । ଜାନକୀବାବୁ କଂଗ୍ରେସ ଦଳ ପକ୍ଷରୁ କଟକ ଲୋକସଭା ନିର୍ବାଚନମଣ୍ଡଳୀରୁ ପ୍ରାର୍ଥୀ ହୋଇଥିଲେ । ଏହା ପୂର୍ବରୁ ଜାନକୀବାବୁ ୧୯୭୧ ଓ ୧୯୭୭ରେ ପ୍ରାର୍ଥୀ ହୋଇଥିଲେ । ୧୯୭୧ ମସିହାରେ ସେ ଉତ୍କଳ କଂଗ୍ରେସର ବୀରେନ ମିତ୍ରଙ୍କୁ ପରାସ୍ତ କରିଥିବାବେଳେ ୧୯୭୭ରେ ଭାରତୀୟ ଲୋକଦଳ ପ୍ରାର୍ଥୀ ଶରତ କୁମାର କରଙ୍କ ନିକଟରୁ ଷାଠିଏ ହଜାରରୁ ଅଧିକ ଭୋଟରେ ପରାସ୍ତ ହୋଇଥିଲେ । ୧୯୮୦ ମସିହାରେ ଲୋକସଭା ନିର୍ବାଚନରେ ସେ କଂଗ୍ରେସ(ଆଇ) ପକ୍ଷରୁ କଟକ ନିର୍ବାଚନମଣ୍ଡଳୀରୁ ପ୍ରାର୍ଥୀ ହୋଇଥିଲେ । ୧୯୮୦ରେ ଦେଶରେ କିଏ ଜିତିବ କିଏ ହାରିବ ସେ ସମ୍ପର୍କରେ ନାନା କଳ୍ପନା ଜଳ୍ପନା ଚାଲିଥିଲା- ଜରୁରୀ ପରିସ୍ଥିତି ପରେ ୧୯୭୭ ମସିହାରେ ଓଡ଼ିଶାରେ ଭାରତୀୟ ଲୋକ ଦଳ ବିପୁଳ ସଂଖ୍ୟାରେ ଉଭୟ ଲୋକସଭା ଓ ବିଧାନସଭାରେ ସଂଖ୍ୟା ଗରିଷ୍ଠତା ଲାଭ କରିଥିଲା । ନିର୍ବାଚନ ପୂର୍ବରୁ ଯଦିଓ ପାଞ୍ଚୋଟି ଦଳ ମିଶି ଜନତା ଦଳ ଗଠିତ ହୋଇଥିଲା । ମାତ୍ର ନିର୍ବାଚନରେ ଏହି ଦଳର ପ୍ରାର୍ଥୀମାନେ ଭାରତୀୟ ଲୋକ ଦଳ ବ୍ୟାନରରେ ନିର୍ବାଚନ ଲଢ଼ିଥିଲେ । ୧୯୮୦ ନିର୍ବାଚନ ବେଳକୁ ଜନତା ଦଳ ଦୁଇଭାଗରେ ବିଭକ୍ତ ହୋଇଥିଲା । ଗୋଟିଏ ଭାଗ ଜନତା(ଏସ୍) ଓ ଅନ୍ୟଟି ଜନତା ନାମରେ ନାମିତ ହୋଇଥିଲା । ସେହିଭଳି କଂଗ୍ରେସ ଦଳ ଦୁଇ ଭାଗରେ ବିଭକ୍ତ ହୋଇଥିଲା । ଇନ୍ଦିରା ଗାନ୍ଧିଙ୍କ ସମର୍ଥିତ କଂଗ୍ରେସ(ଆଇ) ଓ ଅନ୍ୟ ଦଳଟି କଂଗ୍ରେସ(ୟୁ)ର ପ୍ରାର୍ଥୀ ହୋଇଥିବାବେଳେ ତ୍ରିଲୋଚନ କାନୁନ୍‌ଗୋ କଂଗ୍ରେସ(ୟୁ) ଓ ରାଜେନ୍ଦ୍ର ସିଂହ ଜନତା ଦଳର ପ୍ରାର୍ଥୀ ଥିଲେ । ୧୯୭୭ରେ ଜାନକୀବାବୁ ପରାସ୍ତ ହୋଇଥିବାରୁ ଏବଂ କଂଗ୍ରେସ(ୟୁ)କୁ ବାଙ୍କୀରେ ଯୋଗେଶ ଚନ୍ଦ୍ର ରାଉତ ସମର୍ଥନ କରୁଥିବାରୁ ସେ ମୋ ସାହାଯ୍ୟ ଲୋଡ଼ିଥିଲେ । ମୋତେ ଟେଲିଫୋନ୍‌ରେ ଜାନକୀବାବୁ ତାଙ୍କୁ ସାହାଯ୍ୟ କରିବା ପାଇଁ ମଧ ଅନୁରୋଧ

କରିଥିଲେ । ମୁଁ ତାଙ୍କୁ ସାହାଯ୍ୟ କରିବା ପାଇଁ ପ୍ରତିଶ୍ରୁତି ଦେଇଥିଲି । କଟକ ନିର୍ବାଚନମଣ୍ଡଳୀରେ ବିଜୁବାବୁଙ୍କ ଜନତା(ଏସ୍) ଦଳର କେହି ପ୍ରାର୍ଥୀ ନଥିଲେ । ତେଣୁ ଜନତା(ଏସ୍) ଦଳର ସମର୍ଥକମାନେ ଚୁପ୍‌ଚାପ୍ ବସିଥିଲେ । ସେମାନଙ୍କ ମଧ୍ୟରୁ ଅନେକ ମୋତେ ମାନୁଥିଲେ । ତା'ର କାରଣ ହେଲା ବାଙ୍କୀରେ ଯାହାର ଯାହା କାମ ଅନେକ ସେଥିପାଇଁ ମୋ ପାଖକୁ ପ୍ରାୟ ଆସୁଥିଲେ । ମୁଁ ଜାନକୀବାବୁଙ୍କ ପାଇଁ କିଛି ଜନତା(ଏସ୍) ସରପଞ୍ଚ ଓ ନେତାମାନଙ୍କୁ ଅନୁରୋଧ କରିଥିଲି । ଭୋଟରେ ଜାନକୀବାବୁ ୨ଲକ୍ଷ ୨୦ହଜାର ପାଇଥିବାବେଳେ ତ୍ରିଲୋଚନ ୯୬ ହଜାର ପାଇଥିଲେ । ବାଙ୍କୀରୁ ସେ ତ୍ରିଲୋଚନ ଅପେକ୍ଷା ତିରିଶ ହଜାର ଅଧିକ ଭୋଟ ପାଇଥିଲେ ।

୧୯୮୦ ଲୋକସଭା ନିର୍ବାଚନରେ ବିଜୁ ପଟ୍ଟନାୟକ ଜନତା(ଏସ୍) ଦଳର କେନ୍ଦ୍ରାପଡ଼ାରୁ ପ୍ରାର୍ଥୀ ହୋଇଥିଲେ । ତାଙ୍କ ବିରୁଦ୍ଧରେ କଂଗ୍ରେସ(ଆଇ)ର ଗୟାଚାନ୍ଦ ଭୂୟାଁ ନାମକ ଜଣେ ଅନାମଧେୟ ବ୍ୟକ୍ତି ପ୍ରାର୍ଥୀ ହୋଇଥିଲେ । ସୁରେନ୍ଦ୍ର ନାଥ ଦ୍ୱିବେଦୀ ଜନତା ଦଳର ପ୍ରାର୍ଥୀ ହୋଇଥିଲେ । ସମସ୍ତେ ବିଚାର କରିଥିଲେ ବିଜୁବାବୁ ଅନେକ ଭୋଟ ବ୍ୟବଧାନରେ ଜିତିବେ । ମୁଁ ମଧ୍ୟ କେନ୍ଦ୍ରାପଡ଼ା ଯାଇ ସମୀକ୍ଷା କରି ଏକ ରିପୋର୍ଟ ମାତୃଭୂମିରେ ଦେଇଥିଲି । ମାତ୍ର ସମସ୍ତ କଳ୍ପନା ଜଳ୍ପନାର ଅବସାନ ଘଟାଇ ବିଜୁବାବୁ ମାତ୍ର ପାଞ୍ଚ ହଜାର ଭୋଟ୍‌ରେ ଗୟାଚାନ୍ଦ ଭୂୟାଁଙ୍କୁ ପରାସ୍ତ କରିଥିଲେ । ବିଜୁବାବୁ ୧ଲକ୍ଷ ୭୭ହଜାର ଭୋଟ ପାଇଥିବାବେଳେ ଗୟାଚାନ୍ଦ ଭୂୟାଁ ୧ଲକ୍ଷ ୭୨ହଜାର ଭୋଟ୍ ପାଇଥିଲେ । ସୁରେନ୍ଦ୍ର ଦ୍ୱିବେଦୀ ମାତ୍ର ୪୬ହଜାର ଭୋଟ ପାଇ ଅମାନତ ହରାଇଥିଲେ ।

ମୁଁ ଏହି ଘଟଣା ବର୍ଣ୍ଣନା କରିବାର ଏକମାତ୍ର ହେତୁ ହେଲା ଏହି ନିର୍ବାଚନ ସେତେବେଳେ ଓଡ଼ିଶାରେ ବହୁଳ ଭାବେ ପ୍ରଚାରିତ ହୋଇଥିଲା । ମୁଁ ଜଣେ ସାମ୍ବାଦିକ ଭାବେ ଏହାର ପ୍ରତ୍ୟକ୍ଷଦର୍ଶୀ ଥିଲି ଏବଂ ଆମେ ଯାହା ଲୋକଙ୍କୁ ପଚାରି ବୁଝୁଥିଲୁ ବାସ୍ତବରେ ତାହା ସମ୍ପୂର୍ଣ୍ଣ ଓଲଟ ପାଲଟ ହୋଇ ଯାଇଥିଲା । ଆମେ ଦୁଇ ତିନିଜଣ ସାମ୍ବାଦିକ ଏକାଠି ହୋଇ ଅନେକ ନିର୍ବାଚନମଣ୍ଡଳୀ ବୁଲୁଥିଲୁ ।

୧୯୮୦ ଲୋକସଭା ନିର୍ବାଚନ ଇନ୍ଦିରା ଗାନ୍ଧୀ ହାତ୍ୱାରେ କଂଗ୍ରେସ(ଆଇ) ବିପୁଳ ବିଜୟ ହାସଲ କରିଥିଲା । ଓଡ଼ିଶାରେ ଏହାର ଅତ୍ୟନ୍ତ ଅବିଶ୍ୱାସ୍ୟ ଫଳ ହୋଇଥିଲା । ଏକୋଇଶଟି ଲୋକସଭା ଆସନରୁ କେବଳ କେନ୍ଦ୍ରାପଡ଼ାରୁ ବିଜୁ ପଟ୍ଟନାୟକ(ଜନତା ଏସ୍.)ଙ୍କ ବିଜୟକୁ ବାଦ୍ ଦେଲେ ବାକି କୋଡ଼ିଏଟି ସ୍ଥାନରେ କଂଗ୍ରେସ(ଆଇ) ବିଜୟ ଲାଭ କରିଥିଲା । କେନ୍ଦ୍ରରେ ଲୋକ ସଭାରେ ପ୍ରତିଦ୍ୱନ୍ଦ୍ୱିତା କରିଥିବା ୪୯୨ଟି ସ୍ଥାନରୁ କଂଗ୍ରେସ(ଆଇ) ୩୫୩ଟି ସ୍ଥାନ ଅଧିକାର କରିଥିଲା । ଏହି ବିପୁଳ ବିଜୟ ପାଇଁ ଶ୍ରୀମତୀ ଗାନ୍ଧୀଙ୍କୁ ଶ୍ରେୟ ଦିଆଯାଇଥିଲା ।

## -ଜାନକୀ ବାବୁ କ୍ୟାବିନେଟ ପାହ୍ୟା ମନ୍ତ୍ରୀ-

ଜାନକୀ ବଲ୍ଲଭ ପଟ୍ଟନାୟକଙ୍କୁ ଶ୍ରୀମତୀ ଗାନ୍ଧୀ ତାଙ୍କ ମନ୍ତ୍ରିମଣ୍ଡଳରେ ଜଣେ କ୍ୟାବିନେଟ୍ ପାହ୍ୟା ମନ୍ତ୍ରୀ ରୂପେ ନିଯୁକ୍ତି ଦେଇଥିଲେ । କାକତାଳୀୟ ନ୍ୟାୟ ଭଳି ୧୯୫୧ ପ୍ରଥମ ସାଧାରଣ ନିର୍ବାଚନରେ ଲୋକସଭା ନିର୍ବାଚନରେ ହରେକୃଷ୍ଣ ମହତାବ କଟକ ନିର୍ବାଚନୀମଣ୍ଡଳୀରୁ ନିର୍ବାଚିତ ହୋଇ ଥିଲେ । କିନ୍ତୁ ତାଙ୍କୁ ନେହେରୁ ମନ୍ତ୍ରିମଣ୍ଡଳରେ ସ୍ଥାନ ମିଳି ନଥିଲା । ୧୯୫୦ରେ ସେ ଶିଳ୍ପ ଓ ବାଣିଜ୍ୟ ମନ୍ତ୍ରୀ ଥିଲେ । ସେହି ଦୃଷ୍ଟିରୁ କେନ୍ଦ୍ରରେ କଂଗ୍ରେସ ମନ୍ତ୍ରିମଣ୍ଡଳରେ ସାଧାରଣତନ୍ତ୍ର ଭାରତରେ ଓଡ଼ିଶାର ଜାନକୀ ବଲ୍ଲଭ ପଟ୍ଟନାୟକ ପ୍ରଥମ କ୍ୟାବିନେଟ୍ ପାହ୍ୟା ମନ୍ତ୍ରୀ । ଜାନକୀବାବୁଙ୍କୁ ବେସାମରିକ ବିମାନ ଚଳାଚଳ, ଶ୍ରମ ଓ ପର୍ଯ୍ୟଟନ ବିଭାଗ ଦାୟିତ୍ୱ ଦିଆଯାଇଥିଲା । ତାଙ୍କ ଅମଳରେ ପ୍ରଥମ ଥର ପାଇଁ ଭୁବନେଶ୍ୱର-ଦିଲ୍ଲୀ ମଧ୍ୟରେ ବିମାନ ଚଳାଚଳ ଆରମ୍ଭ ହୋଇଥିଲା । ସେତେବେଳ ପର୍ଯ୍ୟନ୍ତ କେବଳ ଭୁବନେଶ୍ୱର- କଲିକତା ମଧ୍ୟରେ

ବିମାନ ଚଳାଚଳ ହେଉଥିଲା । ଭୁବନେଶ୍ୱରରୁ ଦିଲ୍ଲୀକୁ ପ୍ରଥମ ବିମାନରେ ଓଡ଼ିଶାର ବାରଜଣ ସାମ୍ବାଦିକ ଯିବାପାଇଁ ସ୍ଥିର ହେଲା । ଏଥିପାଇଁ ଇଣ୍ଡିଆନ ଏୟାର ଲାଇନ୍ସର ଜଣେ ପବ୍ଲିକ ରିଲେସନ ଅଫିସର ଓ ଆଉଜଣେ ଅଫିସର ଭୁବନେଶ୍ୱର ଆସି ଯେଉଁ ବାରଜଣ ଯିବେ ସେମାନଙ୍କୁ ସାକ୍ଷାତ କରି ଟିକେଟ ଓ ହୋଟେଲ ବ୍ୟବସ୍ଥା ସମ୍ପର୍କରେ କହିଥିଲେ । ମୋର ନାମ ସେହି ତାଲିକାରେ ଥିଲା । ତେବେ ମଜାହେଲା ଅନେକଙ୍କ ନାମ ସେ ତାଲିକାରେ ନଥିଲା । ସେମାନଙ୍କ ମଧ୍ୟରୁ କେତେକ ଜାନକୀବାବୁଙ୍କୁ ଯା' ତା' ଜରିଆରେ ଟେଲିଫୋନ୍ କରି ଅନୁରୋଧ କରିଥିଲେ । ମାତ୍ର ଜାନକୀବାବୁ ଧରାଛୁଆଁ ଦେଇ ନଥିଲେ । କାରଣ ଜାନକୀବାବୁ ନିଜେ ସେ ତାଲିକା ପ୍ରସ୍ତୁତ କରିଥିଲେ ।

## -ଭୁବନେଶ୍ୱର - ଦିଲ୍ଲୀ ସିଧାସଳଖ ବିମାନ-

ଦିଲ୍ଲୀକୁ ଯାଉଥିବା ପ୍ରଥମ ବିମାନଟି ଏକ ଡାକୋଟା ବିମାନ ଥିଲା । ପଇଁଚାଳିଶ ଜଣ ଯାତ୍ରୀ ଯିବା ବ୍ୟବସ୍ଥା ଥିଲା । ସେଦିନ ମୋର ମନେଅଛି ଓଡ଼ିଶା ସରକାରଙ୍କ ଅନେକ ବଡ଼ବଡ଼ ଅଫିସର ସେ ବିମାନରେ ଯାଇଥିଲେ । ଆମକୁ ଦିଲ୍ଲୀରେ କେନ୍ଦ୍ର ପର୍ଯ୍ୟଟନ ବିଭାଗର ଏକ ଷ୍ଟାର୍ ହୋଟେଲ୍‌ରେ ରଖାଯାଇଥିଲା । ପ୍ରତି ରୁମ୍‌ରେ ଦୁଇଜଣ ଲେଖାଏ ଆମେ ରହୁଥିଲୁ । ଦିଲ୍ଲୀରେ ଆମେ ଚାରିଦିନ ରହିବା ପରେ ପୁଣି ସେଇ ବିମାନରେ ଭୁବନେଶ୍ୱର ଫେରି ଆସିଥିଲୁ । ଏହା ପୂର୍ବରୁ ମୁଁ ଅବଶ୍ୟ ଅନେକ ଥର ଦିଲ୍ଲୀ ଯାଇଥିଲି । ତେଣୁ ଦିଲ୍ଲୀରେ କୁଆଡ଼େ ବୁଲି ଦେଖିବାପାଇଁ ସେମିତି ଆକର୍ଷଣ ନଥିଲା । ତେବେ ଆମ ପହଞ୍ଚିବାର ଦ୍ୱିତୀୟ ଦିନ ସନ୍ଧ୍ୟାରେ ଅଶୋକା ହୋଟେଲରେ ଜାନକୀବାବୁ ଏକ ପାର୍ଟିଦେଇଥିଲେ । ଏଥିରେ ଦିଲ୍ଲୀରେ ଥିବା ଅନେକ ଓଡ଼ିଆ ଆଇଏଏସ୍ ଅଫିସର, ଅଲ୍ ଇଣ୍ଡିଆ ରେଡିଓର ଓଡ଼ିଆ ସମାଚାର ପାଠକ ବିଶେଷ କରି ବିଖ୍ୟାତ ଯତିନ୍ ଦାସ ଏବଂ କେତେକ ଓଡ଼ିଆ ଏମ୍.ପି. ଯୋଗ ଦେଇଥିଲେ । ଚାରିଦିନ ଯାକ ବେଶ୍ ହସଖୁସିରେ କଟି ଯାଇଥିଲା । ମୁଁ ସେତେବେଳେ ପ୍ରଚୁର ଇଣ୍ଡିଆ କିଙ୍ଗସ୍ ସିଗାରେଟ ଟାଣୁଥିଲି । ହୋଟେଲକୁ ଗଲାବେଳେ ମୁଁ ସାଙ୍ଗରେ ଦୁଇ ପ୍ୟାକେଟ୍ ଇଣ୍ଡିଆ କିଙ୍ଗସ୍ ନେଇଥିଲି । ମାତ୍ର ତାହା ସେଇଦିନ ଶେଷ ହୋଇଗଲା । କେଉଁଠୁ ପାଇବି ବୋଲି ମୁଁ ଚିନ୍ତା କରିବାବେଳେ ମୋ ରୁମ୍‌ରେ ଥିବା ଅଲ୍‌ଇଣ୍ଡିଆ ରେଡିଓ ଭୁବନେଶ୍ୱର ପ୍ରତିନିଧି ପ୍ରଭାକର ମିଶ୍ର କହିଲେ ଆପଣ ରୁମ୍ ସର୍ଭିସ୍‌କୁ କୁହନ୍ତୁ ଦୁଇ ପ୍ୟାକେଟ୍ ଇଣ୍ଡିଆ କିଙ୍ଗସ୍ ଆଣିବ । ମୁଁ ସେଇଆ କଲି । ପ୍ରତିଦିନ ହୋଟେଲ୍ ରୁମ୍ ସର୍ଭିସ୍ ମୋତେ ମୋର ଦରକାର ସିଗାରେଟ୍ ଦେଇଥିଲା । ମଜାକଥା ହେଲା ଆମ ଭିତରୁ ଯେଉଁମାନେ ଚାରମିନାର କିମ୍ବା ଉଇଲ୍ସ ଫିଲ୍ଟର ଟାଣୁଥିଲେ ସେମାନେ ୫୫୫ ଷ୍ଟେଟ ଏକ୍ସପ୍ରେସ୍ ସିଗାରେଟ ମଗାଇଲେ । ଜଣେ କୌତୁକଳରେ କହିଲେ ହଇଏ ଭାଇ ଚାର୍‌ମିନାର ବଦଳରେ ଷ୍ଟେଟ ଏକ୍ସପ୍ରେସ୍ ତମ ପେଟରେ ହଜମ ହେବତ ? ଇଏ ତ ବେଙ୍ଗ ପେଟରେ ଘିଅ ଭଳି । ଆଉ ଜଣେ ମୋର ସମସାମୟିକ ବନ୍ଧୁ(ଇଂରାଜୀ କାଗଜ ଭୁବନେଶ୍ୱର ପ୍ରତିନିଧି) ଆମେ ଫେରିବାବେଳେ ତାଙ୍କ ରୁମ୍‌ରୁ ଗ୍ଲାସ୍, କ୍ୟାଣ୍ଡଲ ଷ୍ଟାଣ୍ଡ(ପିତଳରେ ବଡ଼ ବଡ଼ ତିଆରି) ଆଉ ତଉଲିଆ ମଧ୍ୟ ନିଜ ବାକ୍ସରେ ପୁରାଇଲେ । ମୋ ରୁମ୍‌ରୁ ସେ ଏ ସବୁ ଜିନିଷ ଉଠାଇଲାବେଳେ ମୁଁ ମନା କଲି । ସେ ରୁମ୍ ସର୍ଭିସ୍‌କୁ ଅର୍ଡ଼ର ଦେଇ ଦି' ବୋତଲ ସ୍କଚ ମଦ ମଧ୍ୟ ନେଇ ଆସିଲେ । ଚାରିଦିନ ଦିଲ୍ଲୀ ରହଣି ପରେ ଆମେ ଫେରି ଆସିଲୁ ।

ଦିଲ୍ଲୀରେ ରହିବାବେଳେ ତୃତୀୟ ଦିନ ମୁଁ ଜାନକୀବାବୁଙ୍କୁ ଦେଖାକରିବା ପାଇଁ ତାଙ୍କ ସରକାରୀ ବାସଭବନକୁ ଯାଇଥିଲି । ମୁଁ କଥାବାର୍ତ୍ତା କରି ଉଠିବା ବେଳକୁ ଭାରତୀୟ ସମ୍ବାଦପତ୍ର ମାଲିକ ସଂଘର ଏକ ପ୍ରତିନିଧି ଦଳ ସେଠି ପହଞ୍ଚିଲେ । ମୋତେ ଜାନକୀବାବୁ ଇଶାରାରେ ବସିବା ପାଇଁ କହିଲେ । ସେତେବେଳେ ମୁଁ ଜାତୀୟ ସାମ୍ବାଦିକ ୟୁନିୟନର ଜାତୀୟ କାର୍ଯ୍ୟକାରୀ କମିଟିର ସଦସ୍ୟ ଥିଲି । ସାମ୍ବାଦିକମାନଙ୍କର ଦରମା ବୃଦ୍ଧି ପାଇଁ ଆମ ୟୁନିୟନ ଓ ଆଇ.ଏଫ୍.ଡବ୍ଲ୍ୟୁ.ଜେ. ପକ୍ଷରୁ ସ୍ମାରକପତ୍ର ଦିଆଯାଇଥିଲା । ମଜୁରୀ ବୋର୍ଡ଼ ଗଠନ ମଧ୍ୟ ହୋଇଥିଲା । ମାଲିକ ସଂଘ

ପକ୍ଷରୁ କେନ୍ଦ୍ର ଶ୍ରମମନ୍ତ୍ରୀଙ୍କୁ ସ୍ମାରକ ପତ୍ର ଦିଆଯାଇ ଆଉ ମଜୁରୀ ବୃଦ୍ଧି ନକରିବା ପାଇଁ ଦାବି କରାଯାଇଥିଲା । ସେମାନଙ୍କ ଯୁକ୍ତି ଥିଲା ଯଦି ସାମ୍ବାଦିକ ଓ ଅଣ ସାମ୍ବାଦିକଙ୍କ ମଜୁରୀ ବୃଦ୍ଧି ହୁଏ ତେବେ ଅନେକ ସମ୍ବାଦପତ୍ର ବନ୍ଦ ହୋଇଯିବ ଏବଂ ଆଉ ନୂଆଲୋକ ସମ୍ବାଦପତ୍ର ଛାପିବା ପାଇଁ ଆଗ୍ରହୀ ହେବେ ନାହିଁ।

ମୁଁ ବସି ଶୁଣୁଥିଲି । ଆଲୋଚନାବେଳେ ଜାନକୀବାବୁ ଗୋଟିଏ ପ୍ରଶ୍ନ କଲେ ଯେ ଗତ ମଜୁରୀ ବୋର୍ଡ଼ ସୁପାରିଶ ପରେ ଦେଶରେ କେତୋଟି ସମ୍ବାଦପତ୍ର ବନ୍ଦ ହୋଇଯାଇଛି ? ଏବଂ ଆଉ ନୂଆ ଖବର କାଗଜ ପ୍ରକାଶ ପାଇଛି କି ନାହିଁ ? ଏହାର ଉତ୍ତର ମାଲିକ ସଂଘ ଦେଇନଥିଲେ । ଜାନକୀବାବୁ ହସିଥିଲେ । କହିଲେ ଆପଣମାନଙ୍କ ଦାବି ସମ୍ପର୍କରେ ବିଚାର କରାଯିବ।

## -ମାତୃଭୂମିର ପରିଚାଳନା ଭାର-

ଜାନକୀ ବଲ୍ଲଭ ପଟ୍ଟନାୟକ କେନ୍ଦ୍ରରେ ମାତ୍ର ପାଞ୍ଚମାସ ପାଇଁ ମନ୍ତ୍ରୀ ଥିଲେ । ୧୯୮୦ ଫେବୃୟାରୀ ମାସ ୧୭ ତାରିଖରେ କେନ୍ଦ୍ର ସରକାର ଓଡ଼ିଶା ସମେତ ନ'ଟି ରାଜ୍ୟର ସରକାର ଭାଙ୍ଗିଦେବା ସାଙ୍ଗେସାଙ୍ଗେ ବିଧାନ ସଭାକୁ ମଧ ଭାଙ୍ଗି ଦେଇଥିଲେ । ଲୋକସଭାରେ ବିପୁଳ ବିଜୟ ଲାଭ କରିଥିବାରୁ ସ୍ୱାଭାବିକ ଭାବେ ତା'ର ପ୍ରତିଫଳନ ବିଧାନସଭା ନିର୍ବାଚନରେ ପଡ଼ିବ ବୋଲି ସମସ୍ତେ ଆଶା କରିଥିଲେ । ମୁଁ ସେତେବେଳେ ମାତୃଭୂମି ଓ ନ୍ୟାସନାଲ ହେରାଲ୍ଡ ପାଇଁ କାମ କରୁଥିଲି । 'ମାତୃଭୂମି'ରେ ଶ୍ରମିକ ଅଶାନ୍ତି ଯୋଗୁ ପରିଚାଳନା ଦାୟିତ୍ୱ କର୍ମଚାରୀ ସଂଘ ଉପରେ ପଡ଼ିଥିଲା । କାଗଜର ସମ୍ପାଦକ ରୂପେ ବିଶିଷ୍ଟ ଆଡ଼ଭୋକେଟ୍ ଓ ପୂର୍ବତନ କେନ୍ଦ୍ରମନ୍ତ୍ରୀ ବିବୁଧେନ୍ଦ୍ର ମିଶ୍ର କାର୍ଯ୍ୟ କଲେ । ୧୯୭୭ ମସିହାରେ ଏହି ଘଟଣା ଘଟିଥିଲା । ଶ୍ରମିକମାନଙ୍କୁ ପରିଚାଳନା ଦାୟିତ୍ୱ ଦିଆଯିବା ସେତେବେଳେ ଦେଶରେ ଏହା ପ୍ରଥମ ଘଟଣା ଥିଲା । ମୋତେ ସମସ୍ତ ଶ୍ରମିକ ଓ କର୍ମଚାରୀ କର୍ମଚାରୀ ସଂଘର ସାଧାରଣ ସମ୍ପାଦକ ମନୋନୀତ କରିଥିଲେ । କାରଣ ସେମାନେ ଜାଣିଥିଲେ ଖବରକାଗଜ ଚଳାଇବା ପାଇଁ ଟଙ୍କା ଭୁବନେଶ୍ୱରରୁ ଯିବ । ଲୋକସମ୍ପର୍କ ବିଭାଗ ଓ କେନ୍ଦ୍ର ଡି.ଏ.ଭି.ପି. ସଂସ୍ଥା ବିଜ୍ଞାପନ ଅର୍ଥରେ ଚଳିବ । ଏ ଦୁଇ ସଂସ୍ଥାସହ ମୋର ସମ୍ପର୍କ ଅତ୍ୟନ୍ତ ଘନିଷ୍ଠ ଥିଲା । ମାତୃଭୂମି ବିଚିତ୍ରାନନ୍ଦ କର ଚଳାଉଥିବାବେଳେ ମଧ ଏ ଦୁଇ ସଂସ୍ଥାର ବିଜ୍ଞାପନ ପାଇଁ ମୋ ଉପରେ ନିର୍ଭର କରୁଥିଲେ । ମୁଁ ମଧ ସଂସ୍ଥାର ଜଣେ କର୍ମଚାରୀ ରୂପେ କାଗଜକୁ ଚଳାଇ ରଖିବା ପାଇଁ ମୋ ଦ୍ୱାରା ଯାହା ସମ୍ଭବ ତା' କଲି । କାଗଜ ଭଲ ଭାବେ ଚାଲିଲା । ପ୍ରସାର ସଂଖ୍ୟା ମଧ ବଢ଼ିଲା । କଟକ ବଜାରରେ ମୋର ଅନେକ ଭଲ ଚିହ୍ନା କାଗଜ ବେପାରୀ ଥା'ନ୍ତି । ଆରମ୍ଭରୁ ଆମ ପାଖରେ ଟଙ୍କା ନଥିବାରୁ ସେମାନଙ୍କ ନିକଟରୁ ବାକିରେ କାଗଜ ଆସୁଥିଲା । ମୋ ସମ୍ପର୍କ ଯୋଗୁ ସେମାନେ କାଗଜ ବାକିରେ ଦେଉଥିଲେ । ଚାରି/ ପାଞ୍ଚ ମାସ ପରେ ଥରେ ମୁଁ କାଗଜ ଆକାଉଣ୍ଟ ଦେଖିବାବେଳେ ଜଣାପଡ଼ିଲା ମାତୃଭୂମିକୁ ଯେତିକି କାଗଜ ଆସିଥିଲା ସେଇ ପରିମାଣର ଅଧା କାଗଜ ଆଉ କେହି ନେଇଛି । ମୁଁ ପଚରା ପଚରି କଲାବେଳେ ଜାଣିଲି କର୍ମଚାରୀମାନଙ୍କୁ ମତାଇ ଜଣେ ଆଡ଼ଭୋକେଟ୍ ସେମାନଙ୍କ ମୋକଦ୍ଦମା ମାଗଣାରେ ଲଢ଼ିବ ବୋଲି ଲୋଭ ଦେଖାଇ କର୍ମଚାରୀ ସଂଘ ସଭାପତି ହୋଇଛି । ସେ ବ୍ୟକ୍ତି ଏକ ସାପ୍ତାହିକ କାଗଜ ଛାପି ମାତୃଭୂମି ଆକାଉଣ୍ଟରୁ କାଗଜ ନେଉଛି । ଏହା ଜାଣିବା ପରେ ମୁଁ କାଗଜ ବେପାରୀ ବନ୍ଧୁଙ୍କୁ ବାକିରେ କାଗଜ ବନ୍ଦ କରିଦେବା ପାଇଁ କହିଦେଲି । ଫଳରେ ସପ୍ତାହକ ପାଇଁ କାଗଜ ଷ୍ଟକ ଶେଷ ହୋଇଯିବା ପରେ ଆଉ କାଗଜ ମିଳିଲା ନାହିଁ । ମୋତେ ପ୍ରେସ୍‌ରୁ ଫୋନ୍ ହେଲା । ମୁଁ କହିଲି ଯେଉଁମାନେ ସେ ଆଡ଼ଭୋକେଟ୍ ସହ ମିଶି ଏ ଧନ୍ଦା କରିଛନ୍ତି ସେମାନଙ୍କୁ ବାହାର ନକଲା ପର୍ଯ୍ୟନ୍ତ କାଗଜ ବନ୍ଦ ରହିବ । ଚଡ଼କ ପଡ଼ିଲା,

ଯେଉଁ ଚାରି/ପାଞ୍ଚଜଣ ସେ ଆଡ଼ଭୋକେଟ୍ ସହ ଏ ଧନ୍ଦା କରୁଥିଲେ ସେମାନଙ୍କୁ ପ୍ରେସ୍‌ରୁ ବାହାର କରିଦେବାପାଇଁ ଅନ୍ୟମାନେ ସଭା କଲେ । ଫଳରେ ଆଡ଼ଭୋକେଟ୍ ସଭାପତି ପଦରୁ ବିଦା ହେଲା ଏବଂ କାଗଜ ଚାଲିଲା ।

ମୁଁ କଲିକତା ରେଲୱେ ଅଫିସ୍, ଦିଲ୍ଲୀ ଡି.ଏ.ଭି.ପି. ଏବଂ ଆର୍.ଏନ୍.ଆଇ. ଅଫିସ୍ ଯାଇ କାଗଜର ଆକାଉଣ୍ଟ ରେଗୁଲାରାଇଜ୍ କରି ଆସୁଥାଏ । ତିନିବର୍ଷ ପରେ ଦିନେ ମୋତେ ଫୋନ୍ ଆସିଲା କାଗଜ କିଣିବା ପାଇଁ ଏବଂ କର୍ମଚାରୀମାନଙ୍କ ଦରମା ପାଇଁ ବ୍ୟାଙ୍କରେ ଟଙ୍କା ନାହିଁ । ମୁଁ ଆଶ୍ଚର୍ଯ୍ୟ ହେଲି । ଲୋକ ସମ୍ପର୍କ ବିଭାଗ ଏବଂ ଡି.ଏ.ଭି.ପି.ରୁ ନିୟମିତ ଟଙ୍କା ଆସୁଛି । ଟଙ୍କା ଗଲା କୁଆଡ଼େ ? ଯେଉଁମାନେ ଦାୟିତ୍ୱରେ ଥିଲେ ସେମାନଙ୍କୁ ପଚାରିବାରେ ସେମାନେ ଧରାଛୁଆଁ ଦେଲେନି । ମୁଁ କଟକ ଯାଇ ହିସାବ ମାଗିଲି । କର୍ମଚାରୀମାନଙ୍କ ସଭା ଡାକିଲି । ମ୍ୟାନେଜର ଓ କାର୍‌ପଟଦାରମାନେ ସେ ସଭାକୁ ଆସିଲେ ନାହିଁ । ଆମେ ସ୍ଥିର କଲୁ ସେମାନଙ୍କ ବିରୁଦ୍ଧରେ ପୋଲିସ୍ କେଶ୍ କରିବୁ । ପୋଲିସ୍ କେଶ୍ ଶୁଣି ମ୍ୟାନେଜର ଗୌରାଙ୍ଗ ଆଉ କମଳ ଆସି ମୋତେ ଗୋଡ଼ତଳେ ପଡ଼ିଗଲେ । ତା'ପରେ ଜଣାପଡ଼ିଲା ଚାରିଜଣ ଲୋକ ଯେଉଁମାନେ ଦାୟିତ୍ୱରେ ଥିଲେ ଲକ୍ଷଲକ୍ଷ ଟଙ୍କା ମାରି ଖାଇଛନ୍ତି ।

ମୁଁ ବିଚାର କଲି ଟଙ୍କା ହାଡ଼ି ଖାଇବା ଅପେକ୍ଷା ଯାହାର କାଗଜ ତାକୁ ଫେରାଇ ଦେବା ଉଚିତ୍ ହେବ । କର୍ମଚାରୀମାନଙ୍କ ସଭାରେ ମୁଁ ଏହି ପ୍ରସ୍ତାବ ଦେଲି । ସମସ୍ତେ ରାଜି ହେଲେ । କାଗଜ ଦାୟିତ୍ୱ ପୁଣି ବିଚିତ୍ରାନନ୍ଦ କରଙ୍କୁ ଦେଇ ଦିଆଗଲା । ବିଚିବାବୁ ଆଶା କରି ନଥିଲେ ଏତେ ସୁବିଧାରେ ସେ ତାଙ୍କ ସମ୍ପତ୍ତି ଫେରି ପାଇବେ ବୋଲି । 'ମାତୃଭୂମି' ପୁଣି ନୂଆ କଳେବର ନେଇ ପ୍ରକାଶ ପାଇଲା । ବିଚିତ୍ରାନନ୍ଦ କର ପୁଣି ତାଙ୍କ ସମ୍ପାଦକ ହେଲେ । ମୁଁ ଭୁବନେଶ୍ୱର ପ୍ରତିନିଧି ହୋଇ କାର୍ଯ୍ୟକଲି ।

## -ମୋର ପରିବାର-

ମୋର ପାରିବାରିକ ଅବସ୍ଥା ମଧ ବଦଳି ଗଲା । ମୋର ପ୍ରଥମ ସନ୍ତାନ ରୁପଲୁ(ସଂଘମିତ୍ରା) ୧୯୭୨ ଡିସେମ୍ବର ୨୪ ତାରିଖରେ ଜନ୍ମ ହୋଇଥିଲା । ଦ୍ୱିତୀୟ ସନ୍ତାନ ମାମା(ଲୋପାମୁଦ୍ରା) ଜନ୍ମ ହେଲା ୧୯୭୫ ମେ' ମାସ ୨୦ ତାରିଖରେ । ପ୍ରଥମ ଦୁଇଝିଅ ହେବା ପରେ ମୁଁ ଭାବିଲି ଏଇଠି ପିଲା ବନ୍ଦ କରିବି । ମାତ୍ର ଏନ୍.ଏ.ସି. ହସ୍‌ପିଟାଲ୍‌ର ସ୍ତ୍ରୀରୋଗ ବିଶେଷଜ୍ଞ ଡାକ୍ତର ଅନ୍ନପୂର୍ଣ୍ଣା ମିଶ୍ର କହିଲେ ବରେନ୍ଦ୍ରବାବୁ କ'ଣ ବୁଢ଼ାଙ୍କ ଭଳି କଥା କହୁଛ । ଏତେଶୀଘ୍ର କାହିଁକି ଜନ୍ମ ନିୟନ୍ତ୍ରଣ କରିବ । କ'ଣ ଚାରି/ପାଞ୍ଚଟା ପିଲାଙ୍କୁ ଚଳାଇ ପାରିବ ନାହିଁ । ମୁଁ ହସିଲି । କହିଲି ସେ କଥା ନୁହେଁ, କାହିଁକି ଅଧିକ ପିଲା କରିବା ? ସେ କିନ୍ତୁ ପାଟିକଲେ । ମୋର ମତ ପରିବର୍ତ୍ତନ କଲି । ଜରୁରୀ ପରିସ୍ଥିତି ଶେଷ ହେବା ପୂର୍ବରୁ ୧୯୭୬ ନଭେମ୍ବର ୨ ତାରିଖରେ ସେଇ ଏନ୍.ଏ.ସି. ହସ୍‌ପିଟାଲ୍‌ରେ ଅନ୍ନପୂର୍ଣ୍ଣା ମିଶ୍ରଙ୍କ ତତ୍ତ୍ୱାବଧାନରେ ମୋର ତୃତୀୟ ସନ୍ତାନ ପୁଅ ଜନ୍ମହେଲା । ତାକୁ ସମସ୍ତେ ଲକି ଲକି ଡାକୁ ଡାକୁ ଲକି ଅପଭ୍ରଂଶ ହୋଇ ଲକୁ ହୋଇଗଲା । ତା'ର ଭଲ ନାଁ ରଖିଲି ସିଦ୍ଧାର୍ଥ । ଲକୁ ଜନ୍ମ ହେବା ପୂର୍ବରୁ ଅସୁବିଧା ସୃଷ୍ଟିହେଲା । ସେ ଯେଉଁଦିନ ଜନ୍ମ ହେବ ବୋଲି ଅନ୍ନପୂର୍ଣ୍ଣା ମିଶ୍ର ତାରିଖ ଦେଇଥିଲେ ସପ୍ତାହେ ଗଡ଼ିଗଲା ପରେ ମଧ କିଛି ହେଲାନାହିଁ । ମୁଁ ଚିନ୍ତିତ ହୋଇପଡ଼ିଲି । ଡାକ୍ତର ମିଶ୍ର ମଧ କିଛି ବୁଝିପାରିଲେ ନାହିଁ । ତା'ପରେ ସେ ମତେ ବିଖ୍ୟାତ ସ୍ତ୍ରୀରୋଗ ବିଶେଷଜ୍ଞ କଟକ ମେଡ଼ିକାଲ କଲେଜର ପ୍ରଫେସର ଏସ୍.କେ. ମିତ୍ରଙ୍କୁ ପରାମର୍ଶ କରିବାକୁ କହିଲେ । ମୋର ଡାକ୍ତର ମିତ୍ରଙ୍କ ସହ ଭଲ ଜଣାଶୁଣା ଥାଏ । ମୁଁ ସେଇ ଏନ୍.ଏ.ସି. ହସ୍‌ପିଟାଲ୍ ଫୋନ୍‌ରୁ ତାଙ୍କୁ ଟେଲିଫୋନ୍ କଲି । ସେ ଧରିଲେ । ମୁଁ ତାଙ୍କୁ ସବୁକଥା କହିବା ପରେ ସେ ଅନ୍ନପୂର୍ଣ୍ଣ ମିଶ୍ରଙ୍କୁ ଫୋନ୍ ଦେବାକୁ କହିଲେ । ଅନ୍ନପୂର୍ଣ୍ଣା ଦେବୀ ଫୋନ୍‌ରେ କଥା ହେଲେ ।

ପ୍ରେଗ୍‌ନେନ୍ସି ତାରିଖ ଓ ଅନ୍ୟାନ୍ୟ ବିଷୟ ବୁଝିବା ପରେ ଡାକ୍ତର ମିତ୍ର କହିଲେ ନଭେମ୍ବର ୨ ତାରିଖ ଦିନ ୧୨ଟାବେଳ ପର୍ଯ୍ୟନ୍ତ ଅପେକ୍ଷା କର । ସେଦିନ ନଭେମ୍ବର ପହିଲା ତାରିଖ ଥିଲା । ଆମେ ସମସ୍ତେ ଶଙ୍କିତ ଚିତ୍ତରେ ଅପେକ୍ଷା କଲୁ । ପ୍ରତି ମୁହୂର୍ତ୍ତ ଯୁଗ ପରି ଲାଗୁଥିଲା । ପରଦିନ ସକାଳୁ ଆମେ ସମସ୍ତେ ବ୍ୟସ୍ତ ହୋଇପଡ଼ିଲୁ । ମୋ ପତ୍ନୀଙ୍କ ପାଖରେ ଶାଶୁ ଆସି ରହୁଥିଲେ । ଦିନ ଠିକ୍ ଏଗାରଟା ବେଳକୁ ତାଙ୍କର ଗର୍ଭକଷ୍ଟ ଆରମ୍ଭ ହେଲା । ଅନ୍ନପୂର୍ଣ୍ଣା ଦେବୀ ତାଙ୍କୁ ଲେବର ରୁମ୍‌କୁ ନେଇଗଲେ । ଦିନ ୧୨ଟା ପୂର୍ବରୁ ମୋର ପୁତ୍ର ସନ୍ତାନ ଜାତ ହେଲା । ଅଦ୍ଭୁତ ଘଟଣା । ଡାକ୍ତର ମିତ୍ରଙ୍କ କଥା ଏତେ ନିର୍ଭୁଲ ଏବଂ ଏତେ ସଠିକ୍ ମୁଁ ପ୍ରକୃତରେ ଆଶ୍ଚର୍ଯ୍ୟ ହୋଇଗଲି । ପୁଅ ହୋଇଥିବା ଶୁଣି ସମସ୍ତେ ଆନନ୍ଦ କରୁଥିବାବେଳେ ମୁଁ ସେଇ ହସ୍‌ପିଟାଲରୁ ଡାକ୍ତର ମିତ୍ରଙ୍କୁ ଟେଲିଫୋନ୍ କରି ମୋ ପୁଅ ହେବା କହି ତାଙ୍କୁ କୃତଜ୍ଞତା ଜଣାଇଲି । ସେ ହସିହସି କହିଲେ ବରେନ୍ଦ୍ର ବାବୁ ମୋ ପାଇଁ ମିଠା ପଠାଇବେ । କଂଗ୍ରାଚୁଲେସନ୍ । ଲକୁ ଯେଉଁଦିନ ଜନ୍ମହେଲା ସେଦିନ ଥିଲା କାର୍ତ୍ତିକ ମାସର ବଡ଼ ଏକାଦଶୀ । ସମସ୍ତେ କହିଲେ ତୁମ ଘରେ କାର୍ତ୍ତିକ ଜନ୍ମନେଲେ । ଅନ୍ନପୂର୍ଣ୍ଣା ଦେବୀ ସବୁଠାରୁ ବେଶୀ ଆନନ୍ଦିତ ହୋଇଥିଲେ । ମୋତେ କହିଲେ ଦେଖିଲ- ମୋ କଥା ମାନିବାରୁ ପୁଅ ମୁହଁ ଦେଖିଲ । ମୋ ପତ୍ନୀଙ୍କୁ ଅନ୍ନପୂର୍ଣ୍ଣା ଦେବୀ ଭାରି ଭଲ ପାଉଥିଲେ । ସେ ତାଙ୍କୁ କହିଲେ ସ୍ନେହ ତୁ ଭାରି ଲକି । ଏ ପୁଅ ନାଁ ଲକି ଦେ । ଲକି ଡାକୁ ଡାକୁ ସେ ଲକୁ ହୋଇଗଲା ।

ମୁଁ ସେତେବେଳେ ଦୁଇ ନମ୍ବର ୟୁନିଟ୍‌ର ଟାଇପ୍ ଫୋର୍ ଘରେ ରହୁଥିଲି । ମୋର ତିନୋଟି ଯାକ ପିଲା ସେଇ ଘରେ ରହିବାବେଳେ ଜନ୍ମ ହୋଇଥିଲେ । ମୁଁ ରହୁଥିବା କ୍ୱାର୍ଟରର ଗୋଟିଏ ଲାଇନ୍ ତଳେ ସରକାରୀ ନର୍ସରୀ ଏବଂ ଶ୍ରୀ ଅରବିନ୍ଦ ସଂସ୍କୃତି ସଂସଦ ଦ୍ୱାରା ପରିଚାଳିତ ହାଇସ୍କୁଲ ଥିଲା । ହାଇସ୍କୁଲର ପ୍ରଧାନ ଶିକ୍ଷକ ଥିଲେ ଶ୍ରୀମତୀ ପ୍ରିତି ପଟ୍ଟନାୟକ । ସେ ଲୋକ ସମ୍ପର୍କ ବିଭାଗ ଅଫିସର ବିପିନ ବିହାରୀ ପଟ୍ଟନାୟକଙ୍କର ପତ୍ନୀ ଏବଂ ବିଖ୍ୟାତ ଗାଳ୍ପିକ ଅଖିଳ ମୋହନ ପଟ୍ଟନାୟକଙ୍କ ଭଉଣୀ ଥିଲେ । ମୋ ସାଙ୍ଗରେ ତାଙ୍କର ଅନେକ ଦିନର ପରିଚୟ । ମଝିରେ ମଝିରେ ସେ ଆମ ଘରକୁ ଆସୁଥିଲେ । ମୋ ବଡ଼ଝିଅ ରୁପ୍‌ଲୁକୁ ତିନିବର୍ଷବେଳେ ସେ ଦିନେ ଆସି ତାଙ୍କୁ ନେଇଗଲେ । ରୁପ୍‌ଲୁକୁ ନର୍ସରୀରେ ଭର୍ତ୍ତିକରିଦେଲେ । ପ୍ରଥମେ ପ୍ରଥମେ କେହି କିଛି କହିଲେ ନାହିଁ । ମାତ୍ର ପରେ ଆମ ବନ୍ଧୁବାନ୍ଧବ ଏବଂ ମୋର ପତ୍ନୀ ଏଥିରେ ଅସନ୍ତୁଷ୍ଟ ହେଲେ । ସେମାନେ ଯୁକ୍ତି କରିଦେଲେ ରୁପ୍‌ଲୁକୁ କନ୍‌ଭେଣ୍ଟରେ ପଢ଼ାଅ । ମଝିରେ ମୁଁ ମଧ୍ୟ ସ୍ଥିର କଲି କନ୍‌ଭେଣ୍ଟରେ ତା'ର ନାମ ଲେଖାଇବି । ମାତ୍ର ପରେ ମୁଁ ମୋ ମତ ବଦଳାଇଲି । ରୁପ୍‌ଲୁ, ମାମା ଆଉ ଲକୁ ତିନିଜଣ ଯାକ ସେଇ ଶ୍ରୀ ଅରବିନ୍ଦ ସ୍କୁଲରେ ପାଠ ପଢ଼ିଲେ । ସମସ୍ତେ ଭଲ ପଢ଼ିଲେ । ସେମାନଙ୍କ ପ୍ରତି ସେମାନଙ୍କ ଶିକ୍ଷକ, ଶିକ୍ଷୟତ୍ରୀମାନେ ସ୍ୱତନ୍ତ୍ର ଧ୍ୟାନ ଦେଲେ । ମୁଁ ପିଲାଙ୍କ ପଢ଼ିବା କଥା କେବେ ଦେଖିନାହିଁ । ମଝିରେ ମଝିରେ ସ୍କୁଲକୁ ଯାଏ । ସବୁ ଶିକ୍ଷକଙ୍କ ଠାରୁ ପିଲାଙ୍କ କଥା ବୁଝେ । ରୂପ୍‌ଲୁ ୧୯୮୭ରେ ଚଉଦବର୍ଷ ବୟସରେ ପ୍ରଥମ ଶ୍ରେଣୀରେ ମାଟ୍ରିକ୍ ପାଶ୍ କଲା । ତା'ର ପାଶ୍ ମାର୍କ ଥିଲା ୬୮ ଶତାଂଶ । ମୋ ମନଟା ଆନନ୍ଦରେ ପୁରିଗଲା । ମୋ ଘରେ ରୁପ୍‌ଲୁ ପ୍ରଥମ ମାଟ୍ରିକୁଲେଟ୍ ।

ଓଡ଼ିଶାରେ ୧୯୮୦ ମେ' ୩୧ ତାରିଖରେ ବିଧାନସଭା ପାଇଁ ନିର୍ବାଚନ ହେଲା । ଜାନକୀ ବଲ୍ଲଭ ପଟ୍ଟନାୟକ କଂଗ୍ରେସ ଦଳ ପକ୍ଷରୁ ଏହାର ନେତୃତ୍ୱ ନେଲେ । ସେ ସେତେବେଳେ କେନ୍ଦ୍ରରେ କ୍ୟାବିନେଟ୍ ମନ୍ତ୍ରୀ ଥିଲେ । ସମସ୍ତେ ସ୍ୱାଭାବିକ ଭାବେ ଜାଣିଥିଲେ ସେ ହିଁ ଓଡ଼ିଶାର ପରବର୍ତ୍ତିମୁଖ୍ୟମନ୍ତ୍ରୀ । ଲୋକସଭା ନିର୍ବାଚନରେ କଂଗ୍ରେସ ଯେପରି ୨୧ଟି ସ୍ଥାନରୁ ୨୦ଟି ସ୍ଥାନ ହାସଲ କରିଥିଲା ଠିକ୍ ସେହିଭଳି ବିଧାନସଭା ନିର୍ବାଚନରେ ଅଭୂତପୂର୍ବ ବିଜୟ ହାସଲ କରିଥିଲା । ୧୪୭ଟି ସ୍ଥାନରୁ କଂଗ୍ରେସ(ଆଇ) ୧୨୧ଟି ସ୍ଥାନ ହାସଲ କରିଥିଲା । ଜନତା(ଏସ୍) ମୋଟ ୧୧ଟି ଏବଂ ଜନତା(ଜେ.ପି.) ୩ଟି, ସି.ପି.ଆଇ. ୪ଟି, କଂଗ୍ରେସ(ୟୁ) ୨ଟି ଏବଂ ସ୍ୱାଧୀନ ୪ଟି ସ୍ଥାନ ହାସଲ କରିଥିଲେ । ନିର୍ବାଚନର

ମାସକ ମଧ୍ୟରେ ଚାରିଜଣ ସ୍ୱାଧୀନ ବିଧାୟକ ଅନୁପ ସିଂହଦେଓ(ଖଡ଼ିଆଳ), ବିଭୂତି ଭୂଷଣ ସିଂହ ମର୍ଦ୍ଦରାଜ(ଖଣ୍ଡପଡ଼ା), କାଙ୍ଗାଳି ପଣ୍ଡା(ଧର୍ମଶାଳା) ଓ ଚିନ୍ତାମଣି ଦ୍ୟାନ ସାମନ୍ତରାୟ(ଚିକିଟି) କଂଗ୍ରେସ ଦଳରେ ଯୋଗ ଦେଲେ।

## -ଜାନକୀ ବାବୁ ମୁଖ୍ୟମନ୍ତ୍ରୀ-

ଯାହା ଆଶା କରାଯାଇଥିଲା ତାହାହିଁ ହେଲା । ଜାନକୀବାବୁ କେନ୍ଦ୍ର ମନ୍ତ୍ରିମଣ୍ଡଳରୁ ଇସ୍ତଫା ଦେଇ ଓଡ଼ିଶାରେ କଂଗ୍ରେସ ଦଳ ସରକାରର ମୁଖ୍ୟମନ୍ତ୍ରୀ ରୂପେ ଜୁନ୍ ୯ ତାରିଖରେ(୧୯୮୦ ମସିହା) ଶପଥ ନେଲେ । ୧୯୮୦ ଲୋକସଭା ନିର୍ବାଚନରେ ବିଜୁ ପଟ୍ଟନାୟକ ଲୋକସଭାକୁ ଜନତା(ଏସ୍) ଟିକେଟରେ ନିର୍ବାଚିତ ହୋଇଥିଲେ । ସେ ବିଧାନସଭା ନିର୍ବାଚନରେ ମଧ୍ୟ ପାଟକୁରା ନିର୍ବାଚନ ମଣ୍ଡଳୀରୁ ନିର୍ବାଚିତ ହୋଇଥିଲେ । ମାତ୍ର ଓଡ଼ିଶାରେ ଜନତା(ଏସ୍) ଦଳର ଶୋଚନୀୟ ସ୍ଥିତି ଦେଖି ସେ ଲୋକସଭା ସଦସ୍ୟ ରୂପେ ରହିବା ପାଇଁ ସ୍ଥିର କଲେ । ଏବଂ ପାଟକୁରା ବିଧାନସଭା ଆସନରୁ ଇସ୍ତଫା ଦେଲେ । ତାଙ୍କ ସ୍ଥାନରେ ପାଟକୁରା ଆସନରୁ ବିଜୟ ମହାପାତ୍ର ପ୍ରଥମ ଥର ପାଇଁ ଉପ-ନିର୍ବାଚନରେ ବିଜୟ ଲାଭ କରି ବିଧାନସଭାକୁ ଆସିଥିଲେ।

ଓଡ଼ିଶା ରାଜନୀତିରେ ଏହି ଘଟଣା ସବୁ ସେତେବେଳେ ବେଶ୍ ରୋମାଞ୍ଚକର । ଜଣେ ସାମ୍ବାଦିକ ରୂପେ ମୁଁ ଏହି ଘଟଣାକୁ ନେଇ କେତେଗୁଡ଼ିଏ ନିବନ୍ଧ ମାତୃଭୂମିରେ ଲେଖିଥିଲି । ଏଣେ ଜାନକୀବାବୁ ଲୋକସଭାରୁ ଇସ୍ତଫା ଦେଇ ମୁଖ୍ୟମନ୍ତ୍ରୀ ହେଲେ । ବିଧିବ୍ୟବସ୍ଥା ଅନୁସାରେ ତାଙ୍କୁ ଛ'ମାସ ମଧ୍ୟରେ ବିଧାନସଭାର ସଦସ୍ୟ ହେବାକୁ ପଡ଼ିବ । ତାଙ୍କ ସଭ୍ୟ ପଦ ପାଇଁ ଆଠଗଡ଼ରୁ କଂଗ୍ରେସ ଟିକେଟ୍‌ରେ ଜିତିଥିବା ରସାନନ୍ଦ ସାହୁ ନିଜ ପଦରୁ ୧୯୮୦ ଅକ୍ଟୋବର ୭ ତାରିଖରେ ଇସ୍ତଫା ଦେଲେ ଓ ଜାନକୀ ବାବୁ ନଭେମ୍ବର ୨୩ ତାରିଖରେ ଆଠଗଡ଼ ବିଧାୟକ ରୂପେ ନିର୍ବାଚିତ ହେଲେ । ରସାନନ୍ଦ ସାହୁଙ୍କ ଏହି ତ୍ୟାଗ ପାଇଁ ତାଙ୍କୁ ରାଜ୍ୟ ସଡ଼କ ପରିବହନ ନିଗମର ଚେୟାରମ୍ୟାନ ରୂପେ ନିଯୁକ୍ତି ଦିଆଗଲା।

ନିର୍ବାଚନ ଫଳାଫଳ ଅନେକ ସମୟରେ ଜଣେ ସାମ୍ବାଦିକ ପାଇଁ ଚିନ୍ତା କରିବାର ଖୋରାକ ଯୋଗାଇଥାଏ । ୧୯୬୧ ମସିହାରେ ଯେତେବେଳେ ବିଜୁ ପଟ୍ଟନାୟକଙ୍କ ନେତୃତ୍ୱରେ କଂଗ୍ରେସ ଦଳ ସ୍ୱାଧୀନତା ପରେ ସର୍ବାଧିକ ଆସନ ଲାଭ କରିଥିଲା ସେତେବେଳେ ଅନେକ ବିଚାରିଥିଲେ ଯେ ଏହା ଅପେକ୍ଷା ଆଉ ଭବିଷ୍ୟତରେ କୌଣସି ଦଳ ଅଧିକ ଆସନ ପାଇବ ନାହିଁ । ବିଧାନସଭାର ୧୪୦ଟି ଆସନ ମଧ୍ୟରୁ କଂଗ୍ରେସ ସେତେବେଳେ ୮୨ଟି ଆସନ ଲାଭ କରିଥିଲା । ୧୯୫୭ ନିର୍ବାଚନରେ ଡକ୍ଟର ହରେକୃଷ୍ଣ ମହତାବଙ୍କ ନେତୃତ୍ୱରେ କଂଗ୍ରେସ ୫୬ଟି ଆସନ ପାଇଥିଲା । ତା' ପୂର୍ବ ନିର୍ବାଚନ ଅର୍ଥାତ୍ ସାଧାରଣତନ୍ତ୍ର ପରେ ପ୍ରଥମ ନିର୍ବାଚନରେ କଂଗ୍ରେସ ଦଳ ନବକୃଷ୍ଣ ଚୌଧୁରୀଙ୍କ ନେତୃତ୍ୱରେ ୬୫ଟି ସ୍ଥାନ ହାସଲ କରିଥିଲା । ସ୍ୱାଭାବିକ ଭାବେ ୧୯୬୧ରେ ବିଜୁବାବୁଙ୍କ ନେତୃତ୍ୱରେ ୮୨ଟି ସ୍ଥାନ କଂଗ୍ରେସ ପାଇବା ପରେ ସମସ୍ତେ ବିଚାରିଲେ କଂଗ୍ରେସର ଏହାହିଁ ସବୁକାଳରେ ହେବ ସର୍ବୋଚ୍ଚ ଆସନ । ମାତ୍ର ୧୯୭୭ରେ ଯେତେବେଳେ ବିଜୁ ପଟ୍ଟନାୟକଙ୍କ ନେତୃତ୍ୱରେ ଜନତା ପାର୍ଟି ୧୧୦ଟି ସ୍ଥାନ ଅଧିକାର କଲା ସମୀକ୍ଷକମାନେ ଏବଂ ମୁଁ ଜଣେ ସାମ୍ବାଦିକ ରୂପେ ବିଚାରିଲି ସମ୍ଭବତଃ ଓଡ଼ିଶା ବିଧାନସଭାରେ ଏହାହିଁ ହେବ ସର୍ବକାଳର ସର୍ବୋଚ୍ଚ ରେକର୍ଡ଼ । କାରଣ ୧୪୭ଟି ସ୍ଥାନରୁ ୧୧୦ଟି ସ୍ଥାନ ଆଉ ଭବିଷ୍ୟତରେ କେହି ହାସଲ କରିପାରିବେ ନାହିଁ । ରାଜନୀତିରେ ଏହି ଉଠାପକା ଖେଳ ସବୁବେଳେ ଜଣେ ସାମ୍ବାଦିକଙ୍କୁ ଚିନ୍ତା ଓ ସମୀକ୍ଷା କରିବାର ଖୋରାକ ଯୋଗାଇଥାଏ । ସାଧାରଣ ଲୋକଙ୍କର ମନୋଭାବ ସମ୍ପର୍କରେ ପରୀକ୍ଷା ନିରୀକ୍ଷା କରିବା ପାଇଁ ସୁଯୋଗ ଦେଇଥାଏ । ମୁଁ ଜଣେ ସାମ୍ବାଦିକ ରୂପେ ସେଥିରୁ ବାଦ୍ ଯାଇନଥିଲି । ଯଦିଓ ୧୯୬୧ରେ କଂଗ୍ରେସର ୮୨ ସଂଖ୍ୟା ୧୯୭୭ ପର୍ଯ୍ୟନ୍ତ ସର୍ବୋଚ୍ଚ ସଂଖ୍ୟା ରୂପେ ଜାହିର ହୋଇଥିଲା । ୧୯୭୭ ନିର୍ବାଚନ ତାକୁ ଭାଙ୍ଗି ଅନେକ ପଛରେ ପକାଇ ଦେଲା । ଏହି ଦୁଇଟିଯାକ ରେକର୍ଡ଼ ବିଜୁ ପଟ୍ଟନାୟକଙ୍କ ନେତୃତ୍ୱରେ ସମ୍ଭବ

ହୋଇଥିଲା । ମାତ୍ର ୧୯୮୦ରେ କଂଗ୍ରେସର ୧୨୨ଟି ସ୍ଥାନ ଆଉ ସେ ରେକର୍ଡ଼କୁ ମଳିନ କରିଦେଲା । ତେବେ ଏହି କୃତିତ୍ୱ ଇନ୍ଦିରା ଗାନ୍ଧୀଙ୍କର ଏବଂ ଜନତା ପାର୍ଟିନେତାମାନଙ୍କର ପରସ୍ପର ବିରୁଦ୍ଧରେ କାଦୁଅ ଫିଙ୍ଗିବାର ଖେଳ ଯୋଗୁଁ ସମ୍ଭବ ହୋଇଥିଲା ।

ଆମେ ଆତ୍ମଜୀବନୀ ଲେଖିବାବେଳେ ରାଜନୀତିକ ବ୍ୟବସ୍ଥାକୁ ଆମ ଲେଖା ଭିତରକୁ ଏଇଥିପାଇଁ ନେଇ ଆସିଛୁ ଯେ ଜଣେ ସାମ୍ବାଦିକ ରୂପେ ଆମେ ଯେଉଁ ବ୍ୟବସ୍ଥା ଦେଇ ଜୀବନ ଅତିବାହିତ କରୁଥିଲୁ ରାଜନୀତି ଓ ଶାସନ ବ୍ୟବସ୍ଥା ତା' ମଧ୍ୟରେ ଅନ୍ୟତମ । କ୍ଷମତାର ଶୀର୍ଷରେ ରହି କିପରି କିଛି ନେତା ତାକୁ ନିଜର ବ୍ୟକ୍ତିଗତ ଓ ପାରିବାରିକ ସ୍ୱାର୍ଥରେ ବିନିଯୋଗ କରିଥିଲେ ତାହାକୁ ସାଧାରଣ ଲୋକଙ୍କ ନିକଟରେ ପହଞ୍ଚାଇବା ।

ଜାନକୀବାବୁ ମୁଖ୍ୟମନ୍ତ୍ରୀ ହେବା ପରେ ତାଙ୍କ ସ୍ଥାନରେ ତାଙ୍କ ପତ୍ନୀ ଜୟନ୍ତୀ ପଟ୍ଟନାୟକଙ୍କୁ ଲୋକସଭାକୁ ପଠାଇଲେ । ଜୟନ୍ତୀ ପଟ୍ଟନାୟକ ରବି ରାୟଙ୍କୁ ପରାସ୍ତ କରି ଲୋକସଭାକୁ ଗଲେ । ଶ୍ରୀମତୀ ପଟ୍ଟନାୟକ ୧ଲକ୍ଷ ୪୬ହଜାର ୯୦୬ ଭୋଟ ପାଇଥିବାବେଳେ ରବି ରାୟ ୧ଲକ୍ଷ ୭ହଜାର ଭୋଟ ପାଇଥିଲେ ।

ଜାନକୀବାବୁ ମୁଖ୍ୟମନ୍ତ୍ରୀ ଦାୟିତ୍ୱ ନେବାପରେ ଘୋଷଣା କଲେ 'ହଜାରେ ଦିନରେ ହଜାରେ କୋଟିରେ ହଜାରେ ଶିଳ୍ପ' । ଅନେକ ଲୋକ ଏହାକୁ ଥଟ୍ଟା ତାମସା କଲେ । ମାତ୍ର ଜାନକୀବାବୁ ତାଙ୍କ କଥାରେ ଦୃଢ଼ ରହିଲେ । ଏହି ଘୋଷଣା ବ୍ୟାପକ ଭାବେ ସମଗ୍ର ଦେଶରେ ପ୍ରଚାରିତ ହେଲା । ଦିନେ ମୁଁ ଅଲ୍‌ଇଣ୍ଡିଆ ରେଡିଓ କଟକ କେନ୍ଦ୍ରରୁ ଏକ ଟେଲିଫୋନ୍ ପାଇଲି । ସେତେବେଳେ କଟକ ଷ୍ଟେସନର ଡିରେକ୍ଟର ଥିଲେ ମହମ୍ମଦ ରଫିକ୍ । ପରେ ସେ କଟକ ଦୂରଦର୍ଶନର ପ୍ରଥମ ଡିରେକ୍ଟର ହୋଇ ଯୋଗ ଦେଇଥିଲେ । ରଫିକ୍ ସାହେବ ମୋତେ ଫୋନ୍ କରି କହିଲେ ବରେନ୍ଦ୍ରବାବୁ ଜାନକୀବାବୁଙ୍କ ଶିଳ୍ପ ଘୋଷଣା ଉପରେ ଆପଣ ତାଙ୍କୁ ସାକ୍ଷାତକାର କରିବେ ? ମୁଁ ହଠାତ୍ ଏ ପ୍ରସ୍ତାବ ଶୁଣି ଆଶ୍ଚର୍ଯ୍ୟ ଏବଂ ଆନନ୍ଦିତ ହେଲି । କାରଣ ଏହା ସେତେବେଳେ ରାଜ୍ୟର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଆଲୋଚନା ଥିଲା । ମୁଁ ରାଜି ହେଲି । ଅଧଘଣ୍ଟାଏ କାଳ ସାକ୍ଷାତକାର । ମୁଁ ଏହି ସାକ୍ଷାତକାର କରିବା ପାଇଁ ସୁଯୋଗ ପାଇଥିବାରୁ ଅନେକ ବନ୍ଧୁ ବିଶେଷକରି ସାମ୍ବାଦିକ ବନ୍ଧୁ ମୋ ପ୍ରତି ଅସୂୟାଭାବ ପୋଷଣ କରି ରଫିକ୍ ସାହେବଙ୍କୁ ମୋ ବିରୁଦ୍ଧରେ ବେନାମୀ ପଠାଇଲେ । କେତେକ ମଧ୍ୟ ଖୋଲାଖୋଲି ଭାବେ ସେମାନଙ୍କ ଅସନ୍ତୋଷ ବ୍ୟକ୍ତ କଲେ । ମାତ୍ର ତା'ର କିଛି ଫଳ ହେଲା ନାହିଁ । ମୁଁ କଣ୍ଟ୍ରାକ୍ଟ ଚିଠିପାଇ ଯାଇଥିଲି । ଜୁନ୍ ୧୪ ତାରିଖ ୧୯୮୧ ମସିହା ରଜ ସଂକ୍ରାନ୍ତି ଦିନ । ଏହି ସାକ୍ଷାତକାର ଭୁବନେଶ୍ୱରସ୍ଥିତ ଅଲ୍‌ଇଣ୍ଡିଆ ରେଡିଓର ଆକ୍‌ଜୁଲିୟାରୀ କେନ୍ଦ୍ରରେ କରାଯିବା ପାଇଁ ସ୍ଥିର ହୋଇଥିଲା ।

ମୁଁ ବିଭିନ୍ନ ବିଷୟକୁ ବିଚାର କରି ପ୍ରାୟ କୋଡ଼ିଏଟି ପ୍ରଶ୍ନ ପ୍ରସ୍ତୁତ କରିଥିଲି । କେଉଁ ଧରଣର ଶିଳ୍ପ, ଟଙ୍କା ଆସିବ କେଉଁଠୁ ଏବଂ ସବୁଠାରୁ ବଡ଼ ସମସ୍ୟା ବିଦ୍ୟୁତ୍ ଶକ୍ତି ସମ୍ପର୍କରେ ପ୍ରଶ୍ନସବୁ ଲେଖିଥିଲି । ସେତେବେଳେ ଓଡ଼ିଶା ବିଦ୍ୟୁତ୍ କ୍ଷେତ୍ରରେ ଅତ୍ୟନ୍ତ ନିଅଣ୍ଟିଆ ରାଜ୍ୟ ଥିଲା । ତେଣୁ ଶିଳ୍ପ ପ୍ରତିଷ୍ଠା ପାଇଁ ବିଦ୍ୟୁତ୍ ଶକ୍ତି କେଉଁଠୁ ଆସିବ ତା' ଉପରେ ମୋର ମୁଖ୍ୟ ପ୍ରଶ୍ନ ଥିଲା ।

ମୁଁ ପରେ ଜାଣିଥିଲି ଯେ ମୁଖ୍ୟମନ୍ତ୍ରୀଙ୍କୁ ଏହି ସାକ୍ଷାତକାର ଦେବାପାଇଁ ଯେତେବେଳେ ଅନୁରୋଧ କରାଯାଇଥିଲା ସେ ତାଙ୍କୁ ଦିଆଯାଇଥିବା ବିଭିନ୍ନ ନାମ ମଧ୍ୟରୁ ମୋ ନାମକୁ ବାଛିଥିଲେ । ସମ୍ଭବତଃ ଓଡ଼ିଶାରେ ଅଲ୍‌ଇଣ୍ଡିଆ ରେଡିଓରେ ଜଣେ ମୁଖ୍ୟମନ୍ତ୍ରୀଙ୍କୁ ଅଧଘଣ୍ଟାଏ ପାଇଁ ସାକ୍ଷାତକାର କରିବା ଏହି ପ୍ରଥମ ଘଟଣା ଥିଲା । ଏହି ଘଟଣା ପରେ ବିଭିନ୍ନ ମହଲରେ କେମିତି ଏକ ଧାରଣା ସୃଷ୍ଟି ହୋଇଥିଲା ଯେ, ମୁଁ ଜାନକୀବାବୁଙ୍କର ଘନିଷ୍ଠ ବ୍ୟକ୍ତି ବୋଲି ।

ଜାନକୀବାବୁ ମୁଖ୍ୟମନ୍ତ୍ରୀ ହେବାପରେ ତାଙ୍କ ମନ୍ତ୍ରିମଣ୍ଡଳରେ ସାମିଲ ହେବାପାଇଁ ଅନେକ ଲୋକ ଆଶାୟୀ ହୋଇପଡ଼ିଲେ । ସବୁଠାରୁ ବେଶୀ ଆଶାୟୀ ହୋଇଥିଲେ ଶ୍ରୀ ବସନ୍ତ ବିଶ୍ୱାଳ ଓ ଶ୍ରୀ ନିରଞ୍ଜନ ପଟ୍ଟନାୟକ । କୁହାଯାଏ ଜାନକୀବାବୁ କଲେଜରେ ପଢୁଥିବାବେଳେ ବସନ୍ତବାବୁଙ୍କୁ ଟ୍ୟୁସନ କରି ସେଇ ଅର୍ଥରେ ନିଜର ଖର୍ଚ୍ଚ ତୁଲାଉଥିଲେ । ଅନ୍ୟପକ୍ଷରେ ନିରଞ୍ଜନଙ୍କ ସାନ ଭାଇ ସୌମ୍ୟରଞ୍ଜନଙ୍କୁ ଜାନକୀବାବୁଙ୍କ ବଡ଼ଝିଅ ସୁଦତ୍ତା ବିବାହ କରିଥିଲେ । ତେବେ ଶେଷରେ ଦୁଇଜଣଯାକ ସ୍ୱାଧୀନ ପାହ୍ୟା ରାଷ୍ଟ୍ରମନ୍ତ୍ରୀ ହେଲେ । ବସନ୍ତବାବୁ ପୂର୍ତ୍ତ ଓ ନଗର ଉନ୍ନୟନ ବିଭାଗର ମନ୍ତ୍ରୀ ଥିବାବେଳେ ନିରଞ୍ଜନ ଜଳସେଚନ ଓ ବିଦ୍ୟୁତ୍ ବିଭାଗ ମନ୍ତ୍ରୀ ଥିଲେ । ତେବେ ଜାନକୀବାବୁଙ୍କ ମୁଖ୍ୟମନ୍ତ୍ରୀତ୍ୱ ସମୟରେ ତାଙ୍କର ଆରମ୍ଭରୁ ବଦ୍‌ନାମ ଆରମ୍ଭ ହୋଇଯାଇଥିଲା । ବସନ୍ତବାବୁଙ୍କୁ ସେତେବେଳେ ଲୋକେ ଅସଲ ମୁଖ୍ୟମନ୍ତ୍ରୀ ବା ଡିଫାକ୍ଟୋ ମୁଖ୍ୟମନ୍ତ୍ରୀ କହୁଥିଲେ ।

ବିଧାନସଭାର ସମ୍ମୁଖୀନ ହେବାକୁ ଆରମ୍ଭରୁ ଜାନକୀବାବୁ ଭୟ କରୁଥିଲେ । ସବୁଠାରୁ ବଡ଼କଥା ହୋଇଥିଲା ୧୯୮୦ ମସିହାରେ ବିରୋଧୀ ଦଳର କୌଣସି ସ୍ୱୀକୃତି ପ୍ରାପ୍ତ ନେତା ନଥିଲେ । ଜନତା(ଏସ୍) ୧୧ଟି ସ୍ଥାନ ହାସଲ କରିଥିଲେ ମଧ୍ୟ ଏହା ସ୍ୱୀକୃତିପ୍ରାପ୍ତ ବିରୋଧୀ ଦଳ ନଥିଲା । ଶରତ ଦେବ ଏହି ଦଳର ନେତା ଥିଲେ । ସ୍ୱୀକୃତିପ୍ରାପ୍ତ ନେତା ପାଇଁ ବିଧାନସଭାରେ ୧୫ଟି ସ୍ଥାନର ଆବଶ୍ୟକ ଥାଏ ।

ମୁଁ ଜାନକୀବାବୁଙ୍କୁ ଅନେକ ଦିନ ଧରି ଜାଣିଥିଲି । ଓଡ଼ିଶାରେ ସେ ଜଣେ ବିଶିଷ୍ଟ ସାମ୍ବାଦିକ ଓ ସମ୍ପାଦକ ଏବଂ ଆଗଧାଡ଼ିର ବୁଦ୍ଧିଜୀବୀ ଥିଲେ । ସ୍ୱାଭାବିକ ଭାବେ ବିଧାନସଭାରେ ତା'ର ପ୍ରଭାବ ପଡ଼ିବ ବୋଲି ଆଶା କରାଯାଉଥିଲା । ମୁଁ ୧୯୬୪ ମସିହାରୁ ବିଧାନସଭା ବିବରଣୀ ରିପୋର୍ଟିଂ କରି ଆସୁଛି । ପୂର୍ବରୁ ନବକୃଷ୍ଣ ଚୌଧୁରୀଙ୍କ ମୁଖ୍ୟମନ୍ତ୍ରୀତ୍ୱ କାଳରେ ବର୍ଷକୁ ୧୦୩ଦିନ ବିଧାନସଭା ଅଧିବେଶନ ବସାଇବା ପାଇଁ ସେ କୁଣ୍ଠାବୋଧ କରୁନଥିଲେ । ମାତ୍ର ଜାନକୀବାବୁଙ୍କ ସମୟରେ ଏହାର ଏଭଳି ଅଧଃପତନ ହେଲା ଯେ ଜାନକୀବାବୁ ବିଧାନସଭାର ସମ୍ମୁଖୀନ ହେବାପାଇଁ ଭୟ କଲେ । ସେତେବେଳେ ବର୍ଷକୁ ବିଧାନସଭା ଅଧିବେଶନ ୧୯୮୦-୨୯ ଦିନ, ୧୯୮୧-୩୭ ଦିନ, ୧୯୮୨-୩୭ ଦିନ, ୧୯୮୩-୩୯ ଦିନ, ୧୯୮୪-୩୭ ଦିନ ଏବଂ ୧୯୮୫ରେ ୩୦ଦିନ ବସିଥିଲା । ସବୁଠାରୁ ଆଶ୍ଚର୍ଯ୍ୟର ବିଷୟ ହେଲା ବିରୋଧୀ ଦଳ ମଧ୍ୟ ଏହାର ପ୍ରତିବାଦ କରିନଥିଲେ । କେତେକ ପ୍ରଚାର କରିଥିଲେ ବସନ୍ତବାବୁଙ୍କ ଟଙ୍କାରେ ସେମାନଙ୍କ ମୁହଁ ବନ୍ଦ ହୋଇଯାଇଥିଲା । ଏହାକୁ ଆମେ ସାମ୍ବାଦିକମାନେ ମଧ୍ୟ ଗ୍ରହଣ କରିନେଇଥିଲୁ ।

ବିଧାନସଭାର ବାଚସ୍ପତି ସେତେବେଳେ ଥିଲେ ସୋମନାଥ ରଥ ଓ ଉପ ବାଚସ୍ପତି ଥିଲେ । ମାତ୍ର ୧୯୮୪ ଫେବୃୟାରୀ ୧୧ ତାରିଖରେ ସେ ଇସ୍ତଫା ଦେଇ ମନ୍ତ୍ରୀ ହୋଇଥିଲେ । ତାଙ୍କ ସ୍ଥାନରେ ପ୍ରସନ୍ନ କୁମାର ଦାସ ବାଚସ୍ପତି ଦାୟିତ୍ୱ ନେଇଥିଲେ ।

## -ମୋ ଜୀବନର ଗୁରୁତ୍ୱପୂର୍ଣ୍ଣ ସମୟ-

ଆଗରୁ କହିଛି ଅଶୀ ଦଶକ ମୋ ଜୀବନର ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ସମୟ । ସାମ୍ବାଦିକ ରୂପେ ମୋର ଯେତିକି ବ୍ୟସ୍ତତା ଥିଲା ତା' ସାଙ୍ଗେସାଙ୍ଗେ ବହୁ ସାହିତ୍ୟ, ସଂସ୍କୃତି, କ୍ରୀଡ଼ା, ନୃତ୍ୟ, ସଂଗୀତ ଅନୁଷ୍ଠାନ ସହ ଯୋଡ଼ି ହୋଇଗଲି । ଲେଖକ ସାମ୍ମୁଖ୍ୟ କୁ ନୂଆକରି ଗଢ଼ିବା ସଙ୍ଗେସଙ୍ଗେ ଏହାକୁ ସମବାୟ ସମିତି ଆଇନ୍ ଅନୁସାରେ ରେଜିଷ୍ଟ୍ରେସନ କଲି । ଓଡ଼ିଶାରେ ପ୍ରଥମଥର ପାଇଁ ୧୯୮୦ ମସିହାରେ କରାଟେ କ୍ରୀଡ଼ା ସଂଘ ଗଠନ କରି ପୁଅ-ଝିଅମାନଙ୍କୁ କରାଟେ କ୍ରୀଡ଼ା ପ୍ରତି ଆକର୍ଷଣ କରାଗଲା । ଏଥିପାଇଁ ମାନ୍ଦ୍ରାଜରୁ ଜଣେ କନକରାଜ ନାମରେ କୋଚ୍ ଭୁବନେଶ୍ୱର ଆସି

ପିଲାଙ୍କୁ ତାଲିମ ଦେଲେ । କଲାଭମନି ନାମରେ ଆଉଜଣେ ଜାତୀୟ କୋଚ୍ ପ୍ରତି ମାସରେ ଗୋଟିଏ ସପ୍ତାହ ଆସି ଛାତ୍ର-ଛାତ୍ରୀଙ୍କୁ କରାଟେର ସୂକ୍ଷ୍ମ କୌଶଳ ସମ୍ପର୍କରେ ଶିକ୍ଷାଦେଲେ । ସେତେବେଳେ ଓଡ଼ିଶାରେ କରାଟେ କ୍ରୀଡ଼ା ସମ୍ପର୍କରେ କେହି ଜାଣିନଥିଲେ । ଏହି ଅନୁଷ୍ଠାନକୁ ନିଜ ଗୋଡ଼ରେ ଠିଆ କରାଇବା ପାଇଁ ମୋତେ ଚାରି/ପାଞ୍ଚ ବର୍ଷ ଅନେକ ପରିଶ୍ରମ କରିବାକୁ ପଡ଼ିଛି । ତା'ର ମୂଳ କାରଣ ହେଲା ଅର୍ଥ । ମାସକୁ କୋଚ୍ ଆଉ ପିଲାଙ୍କ ଟିଫିନ୍ ପାଇଁ ପାଞ୍ଚହଜାର ଟଙ୍କା ଆବଶ୍ୟକ ହେଉଥିବାବେଳେ ଆମର ଟ୍ୟୁସନ ଫି' ଆଦାୟ ହେଉଥିଲା ହଜାରେଟଙ୍କା ପାଖାପାଖି ।

କରାଟେ ସାଙ୍ଗକୁ ଲେଖକ ସାମ୍ମୁଖ୍ୟର ପ୍ରତି ମାସର ପ୍ରଥମ ରବିବାର ଅଧିବେଶନ ଏବଂ ପ୍ରତିବର୍ଷ ଡିସେମ୍ବରରେ ସାହିତ୍ୟୋତ୍ସବ ପାଇଁ ମୋତେ ସବୁ କରିବାକୁ ପଡୁଥିଲା । ଏହାବ୍ୟତୀତ ଭୁବନେଶ୍ୱରର ଅନେକ ଅନୁଷ୍ଠାନର ସଭାପତି ରୂପେ ମଧ୍ୟ ଥିଲି । ସେତେବେଳେ ଛୋଟବଡ଼ ହୋଇ ସାତ/ଆଠଗୋଟି କ୍ଲବର ସଭାପତି ରୂପେ କାର୍ଯ୍ୟ କରୁଥିଲି । ମୋଟ ଉପରେ ମୋର ସମୟ ଏଇମିତି କଟି ଯାଉଥିଲା ।

ବିଧାନସଭା ଅଧିବେଶନ ଜାନକୀବାବୁଙ୍କ ସମୟରେ ତା'ର ମର୍ଯ୍ୟାଦା ହରାଇଥିଲା । ବିରୋଧୀ ଦଳରେ ଖୁବ୍ ଅଳ୍ପ ସଂଖ୍ୟକ ସଦସ୍ୟ ଥିଲେ ମଧ୍ୟ ଜାନକୀବାବୁଙ୍କୁ ସେମାନେ ହଲାପଟା କରୁଥିଲେ । ବିଶେଷକରି ଜନତା(ଏସ୍)ର ଦଳପତି ଶରତ ଦେବ, ବସନ୍ତ ବିଶ୍ୱାଳଙ୍କୁ ସମର୍ଥନ କରୁଥିଲେ । ମାତ୍ର ଅଶୋକ ଦାସ, ଶ୍ରୀକାନ୍ତ ଜେନା, ନଳିନୀ ମହାନ୍ତି, ବିଜୟ ମହାପାତ୍ର ଏବଂ ଦାମୋଦର ରାଉତଙ୍କ କଥା କଥାକେ ଆକ୍ରମଣ ଜାନକୀବାବୁଙ୍କୁ ଅସ୍ତବ୍ୟସ୍ତ କରିପକାଉଥିଲା । ସେମାନଙ୍କ ଭୟରେ ବିଧାନସଭା ଅଧିବେଶନକୁ ସେ ୭ବର୍ଷରେ ୭୦/୮୦ ଦିନରୁ ୩୦/୩୫ ଦିନକୁ କମାଇ ଦେଇଥିଲେ । ତେବେ ସବୁଠୁ ମଜା କଥା ହେଲା ବିରୋଧିଦଳ ପକ୍ଷରୁ ଏହାର ପ୍ରତିବାଦ କରାଯାଇ ନଥିଲା ।

୧୯୮୦-୮୫ରେ ଓଡ଼ିଶାର ସବୁଠାରୁ ବିତର୍କିତ ଓ ଶକ୍ତିଶାଳୀ ନେତା ଥିଲେ ବସନ୍ତ ବିଶ୍ୱାଳ । ସେ ପ୍ରଥମଥର ପାଇଁ ବିଧାନସଭାକୁ ଆସି ରାଷ୍ଟ୍ରମନ୍ତ୍ରୀ ହୋଇଥିଲେ । ସେତେବେଳେ ତାଙ୍କ ନାମରେ ଅନେକ ଦୁର୍ନୀତି ଅଭିଯୋଗ ମଧ୍ୟ ଆସିଥିଲା । ବସନ୍ତ ବିଶ୍ୱାଳ କିନ୍ତୁ ଏସବୁକୁ ଖାତିର କରୁନଥିଲେ । ସେତେବେଳେ ଅଧିକାଂଶ ବିରୋଧୀ ଦଳ ବିଧାୟକ ତାଙ୍କ ପେରୋଲ୍‌ରେ ଥିଲେ । ସରକାରୀ ଦଳର ଅଧିକାଂଶ ବିଧାୟକ ତାଙ୍କଠାରୁ ମାସିକିଆ ଚାନ୍ଦା ନେଉଥିଲେ । ଭୁବନେଶ୍ୱରରେ ଏଭଳି ପ୍ରଚାର ହୋଇଥିଲା ଯେ ଯିଏ ବସନ୍ତ ବିଶ୍ୱାଳଙ୍କ ଘରକୁ ଯାଉଛନ୍ତି ସେ ଚାନ୍ଦା ପାଇଁ ଯାଉଛନ୍ତି ଓ ଆଣୁଛନ୍ତି । ସାମ୍ବାଦିକମାନଙ୍କ ମଧ୍ୟରୁ କେତେକ ବିଶିଷ୍ଟ ସାମ୍ବାଦିକ ତାଙ୍କ ଠାରୁ ନିୟମିତ ଚାନ୍ଦା ଆଣୁଥିଲେ । ମୁଁ ତାଙ୍କ ଘରକୁ କେବେ ଯାଏ ନାହିଁ । ଅନ୍ୟପକ୍ଷରେ ମାତୃଭୂମି ସମ୍ପାଦକ ବିଚିତ୍ରାନନ୍ଦ କର ମଝିରେ ମଝିରେ ତାଙ୍କୁ ଦେଖାକରିବା ପାଇଁ ସମୟଧାର୍ଯ୍ୟ କରିବାକୁ ମୋତେ କହୁଥିଲେ । ମୁଁ ତାଙ୍କ ଅଫିସ୍‌କୁ ଯାଇ ସେକଥା କହିବାରେ ଥରେ ସେ ବିରକ୍ତ ହୋଇ କହିଲେ ଚାନ୍ଦା ପାଇଁ ଆସିବେ । ହଉ ଅମୁକ ସମୟରେ ଆସନ୍ତୁ । ମତେ କହିଲେ ଆପଣଙ୍କର କ'ଣ ଦରକାର କହୁନାହାନ୍ତି ବିଚିକର କଥା କାହିଁକି କହୁଛନ୍ତି ? ମୁଁ ଉତ୍ତର ଦିଏ ଦରକାର ହେଲେ କହିବି । ସେଥିପାଇଁ ବସନ୍ତବାବୁଙ୍କର ମୋ ପ୍ରତି ଭିନ୍ନ ଧାରଣା ଥାଏ । ସେତେବେଳେ ମୋର ଆର୍ଥିକ ସ୍ଥିତି ମଧ୍ୟ ଖୁବ୍ ଭଲ ନହେଲେ ମଧ୍ୟ ବେଶ୍ ଭଲ ଥାଏ । କାରଣ ମୋ ପତ୍ନୀଙ୍କ ନାମରେ ଥିବା ଏଲ୍.ଆଇ.ସି. ଏଜେନ୍ସିରୁ ମାସକୁ ହାରାହାରି ଚାରିହଜାରରୁ ସାଢ଼େ ଚାରିହଜାର ଟଙ୍କା ମିଳୁଥାଏ । ଅଶୀଦଶକରେ ମାସକୁ ଚାରି ହଜାର ଟଙ୍କା ବେଶ୍ ଭଲ ଆୟ । ତେଣୁ କାହା ପାଖରେ ହାତ ପତାଇବା କିମ୍ବା ମୁଣ୍ଡ ନୁଆଁଇବାର ଦରକାର ନଥିଲା । ପୁନଶ୍ଚ ୧୯୮୩ ମସିହାରୁ ମୋ ପତ୍ନୀଙ୍କ ନାମରେ ଇଂରାଜୀ କାଗଜ ଦି ଷ୍ଟେଟ୍ସମ୍ୟାନ୍‌ର ବିଜିନେସ୍ ରିପ୍ରେଜେଣ୍ଟେଟିଭ୍ ନିଯୁକ୍ତି ମିଳିଲା । ଏହାର କାମ ହେଲା



ସୂଚନା ଓ ଲୋକ ସମ୍ପର୍କ ବିଭାଗରେ ଷ୍ଟେଟ୍ସମ୍ୟାନ୍‌ର ବିଲ୍ କଲେକ୍ସନ କରିବା । ବର୍ଷକୁ ହାରାହାରି ଷ୍ଟେଟ୍ସମ୍ୟାନ୍‌ର ଦଶଲକ୍ଷରୁ ପନ୍ଦରଲକ୍ଷ ଟଙ୍କା ତିନି/ଚାରିଟି ଚେକରେ ମିଳୁଥିଲା । ଏହି ଅର୍ଥରୁ ଆମେ ଶତକଡ଼ା ଦଶଭାଗ ପାଉଥିଲୁ । ତେଣୁ ମାସରେ ମୋଟାମୋଟି ଦଶ/ବାର ହଜାର ଟଙ୍କା ମିଳୁଥିଲା । ଜୀବନବୀମା ହେଉ ବା ଷ୍ଟେଟ୍ସମ୍ୟାନ ହେଉ ସେଥିପାଇଁ କାହାରି ଦୟାଭିକ୍ଷା କରିବାକୁ ପଡୁନଥିଲା ।

ମୋ ଜୀବନରେ କୌଣସି ଅବଶୋଷ ନଥିଲା । ମୋ ପରିବାର କେବେ ଯେପରି ଇନ୍‌ଫେରିୟଟି କମ୍ପ୍ଲେକ୍ସ ବା ହୀନମନ୍ୟତା ନଭୋଗନ୍ତୁ ସେଥିପ୍ରତି ମୁଁ ଦୃଷ୍ଟି ଦେଇଥିଲି । ମୋ ପୁଅ-ଝିଅ ସମସ୍ତଙ୍କୁ ଉଚ୍ଚ ଚିନ୍ତା ଏବଂ ଭଲ ପିଲାଙ୍କ ସହ ମିଶିବା ପାଇଁ କହୁଥିଲି । ମୋର ଦୁଇ ଝିଅ ଆଉ ଗୋଟିଏ ପୁଅ । ସମସ୍ତେ ଶ୍ରୀ ଅରବିନ୍ଦ ସଂସ୍କୃତି ସଂସଦ ପରିଚାଳିତ ବିଦ୍ୟାଳୟରେ ପଢୁଥିଲେ । ସମସ୍ତେ ନିଜ ନିଜ କ୍ଷେତ୍ରରେ ବେଶ୍ ସଫଳ ହୋଇଛନ୍ତି । ସେମାନଙ୍କର କୌଣସିଥିରେ ମୁଁ ଅଭାବ ରଖୁନଥିଲି ।

ଶ୍ରୀ ଅରବିନ୍ଦ ସ୍କୁଲରେ ମୋର ପିଲାମାନଙ୍କୁ ପଢ଼ାଇବାର ଏକ କାରଣ ହେଲା ମୁଁ ଦୁଇନମ୍ବର ୟୁନିଟ୍‌ର ଯେଉଁ ଟାଇପ୍-୪ ଘରେ ରହୁଥିଲି ସେଇ ପାଖରେ ପୁରୁଣା ବିଧାନସଭା ଭବନରେ ଏହି ସ୍କୁଲ ହେଉଥିଲା । ଶିକ୍ଷକ/ଶିକ୍ଷୟତ୍ରୀମାନେ ପ୍ରତି ପିଲାଙ୍କୁ ଦୃଷ୍ଟି ଦିଅନ୍ତି । ପ୍ରତି ମାସରେ ପିଲାଙ୍କ ସମ୍ପର୍କରେ ଏକ ରିପୋର୍ଟ ଅଭିଭାବକଙ୍କ ପାଖକୁ ଆସୁଥିଲା । ବିଦ୍ୟାଳୟର ପ୍ରଧାନ ଶିକ୍ଷୟତ୍ରୀଙ୍କ ସମେତ ଅଧିକାଂଶ ଶିକ୍ଷକ ମୋର ଅତ୍ୟନ୍ତ ପରିଚିତ ଥିଲେ । ତେଣୁ ମୋର ସମସ୍ତ ପିଲାଙ୍କୁ ଏହି ସ୍କୁଲରେ ପଢ଼ାଇବା ପାଇଁ ସ୍ଥିର କରିଥିଲି । ମୋର ତିନୋଟିଯାକ ପିଲା ଉଚ୍ଚ ନମ୍ବର ରଖି ଏହି ସ୍କୁଲରୁ ମାଟ୍ରିକ୍ ପାଶ୍ କରିଥିଲେ ।

ମୋ ପତ୍ନୀ ସ୍ନେହଲତା ବିବାହ ବେଳେ( ୧୯୭୧ ଜୁନ୍ ୨୭ ତାରିଖ ) ମାଟ୍ରିକ୍ ପାଶ୍ କରିଥିଲେ । ତାଙ୍କ ଘର ଚୌଦ୍ୱାରରେ । ସେତେବେଳେ ଚୌଦ୍ୱାରରେ କଲେଜ ନଥିଲା । ତେଣୁ ପ୍ରି ଇନ୍‌ଭରସିଟି ପଢ଼ିବା ପାଇଁ କଟକ ଆସୁଥିଲେ । କଟକରେ ତାଙ୍କ ମାମୁଁ ଘର । ଶିଖରପୁରର ବିଶିଷ୍ଟ ବ୍ୟକ୍ତି କୈଳାଶ ଚନ୍ଦ୍ର ମହାନ୍ତି ତାଙ୍କ ମାମୁଁ । କଟକ ସହରର ଯୋବ୍ରା, ମଙ୍ଗଳାବାଗ ଓ ଶିଖରପୁରର ସେ ସାହୀମହନ୍ତ ଥିଲେ । ସହରରେ ମହ୍ଲା ସାହୀ ଓ ଯୋବ୍ରାରେ ତାଙ୍କର ଦୁଇଟି କରତ କଳ ଥିଲା । ବିବାହ ପରେ ମୋ ପତ୍ନୀ ଅଧିକ ପଢ଼ିବାକୁ ଚାହିଁଲେ । ମୁଁ ତାଙ୍କୁ ରମାଦେବୀ ମହିଳା କଲେଜରେ ନାମ ଲେଖାଇ ଦେଲି । ଆଇ.ଏ.(ପ୍ରି ଇନ୍‌ଭରସିଟି, ପ୍ରି ପ୍ରଫେସନାଲ), ବି.ଏ. ପାଶ୍ କରିବା ବେଳକୁ ମୋର ଦୁଇଝିଅ ଜନ୍ମ ହୋଇଥିଲେ । ଘରୋଇ ଭାବେ ସେ ଓଡ଼ିଆରେ ଏମ୍.ଏ. ପାଇଁ ପ୍ରସ୍ତୁତ ହେଲେ । ମୋ ପୁଅ ୧୯୭୬ ନଭେମ୍ବର ୨ ତାରିଖ(କାର୍ତ୍ତିକ ମାସ ବଡ଼ ଏକାଦଶୀ) ଦିନ ଜନ୍ମ ହେଲା । ସେ ଉଭୟ ପିଲାମାନଙ୍କ ଯତ୍ନ ନେବା ସହ ତାଙ୍କ ପଢ଼ାପଢ଼ି ଜାରି ରଖିଥା'ନ୍ତି । ୧୯୭୯ରେ ସେ ୫୮ ପ୍ରତିଶତ ନମ୍ବର ରଖି ଏମ୍.ଏ. ପାଶ୍ କଲେ । ଜୀବନରେ ଏହା ଏକ ଅବିସ୍ମରଣୀୟ ଘଟଣା । କାରଣ ମୁଁ ନିଜେ ଏମ୍.ଏ. ପର୍ଯ୍ୟନ୍ତ ଯାଇନି । ସେ କ୍ଷେତ୍ରରେ ମୋ ପତ୍ନୀ ଏମ୍.ଏ. ସଫଳତାର ସହ ପାଶ୍ କରିଥିବାରୁ ଆତ୍ମ ସନ୍ତୋଷ ଲାଭ ହୋଇଥିଲା ।

ମୋ ପିଲାମାନେ ସମସ୍ତେ ଭଲ ପଢୁଥିଲେ । ବଡ଼ଝିଅ ରୁପଲୁ(ସଂଘମିତ୍ରା) ଇଂରାଜୀ ସାହିତ୍ୟରେ ଏମ୍.ଏ. ପାଶ୍ କରି ଅଧାପିକା ରୂପେ ଜୀବନ ଆରମ୍ଭ କରିଥିଲା । ତିନିବର୍ଷ ପରେ ୧୯୯୮ରେ ତା'ର ବିବାହ ହୋଇଯିବାରୁ ସେ ଚାକିରୀ ଛାଡ଼ି ସ୍ୱାମୀ ସହ ତାଙ୍କ ଚାକିରୀ ସ୍ଥାନରେ ରହିଲା । ଜ୍ୱାଇଁ ତୀର୍ଥଙ୍କର ଚକ୍ରବର୍ତ୍ତୀ ସେତେବେଳେ ସେନାବାହିନୀର କ୍ୟାପଟେନ୍ । ଏବେ ସେ କର୍ଣ୍ଣେଲ ପଦବୀରେ ରହିଛନ୍ତି । ତୀର୍ଥଙ୍କର(ବାବି) ଜେ.ଏନ୍.ୟୁ.ରୁ

ଇଂରାଜୀ ସାହିତ୍ୟରେ ପ୍ରଥମ ଶ୍ରେଣୀରେ ଏମ୍.ଏ. ଏବଂ ଏମ୍.ଫିଲ୍ । ଚାକିରୀ ସମୟରେ ସେନା ବିଭାଗ ତାଙ୍କୁ ଭାଷାତତ୍ତ୍ୱରେ ଉଚ୍ଚଶିକ୍ଷା ପାଇଁ ହାଇଦ୍ରାବାଦ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟକୁ ପଠାଇଥିଲେ । ସେ ଭାଷାତତ୍ତ୍ୱରେ ଏମ୍.ଏ. ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇ ସଂପ୍ରତି ହିମାଳୟର ଲେହ ଠାରେ ଅବସ୍ଥାପିତ ।

ଟୀଥିଙ୍କର ବାପା ଅର୍ଥାତ୍ ମୋ ସମୁଦି ହେଉଛନ୍ତି ଇଂରାଜୀ ପ୍ରଫେସର ଡ. ତାପସ ଚକ୍ରବର୍ତ୍ତି । ସେ ପୁରୀ ସାମନ୍ତ ଚନ୍ଦ୍ରଶେଖର କଲେଜର ଅଧକ୍ଷ ରୂପେ ଅବସର ନେଇଛନ୍ତି । ଇଂରାଜୀ, ଓଡ଼ିଆ ଏବଂ ବଙ୍ଗଳା ଭାଷାରେ ତାଙ୍କୁ ମୁଁ ପଣ୍ଡିତ ରୂପେ ସମ୍ମାନ କରେ । ଭୁବନେଶ୍ୱର ପୁସ୍ତକମେଳା ପକ୍ଷରୁ ଓଡ଼ିଆ ଗାଳ୍ପିକମାନଙ୍କର ଗଳ୍ପ ବଙ୍ଗଳାରେ ଅନୁବାଦ କରି ସେ ଓଡ଼ିଆ ଭାଷା ସାହିତ୍ୟ ପାଇଁ ଯଥେଷ୍ଟ ସୁନାମ ଆଣିଛନ୍ତି । ତାଙ୍କ ଅନୁଦିତ ଚାରୋଟି ବଙ୍ଗଳା ଗଳ୍ପ ସଂକଳନ ଆଜ୍‌କାଲ ପ୍ରକାଶନ ପକ୍ଷରୁ କଲିକତା ବହି ମେଳା ସମୟରେ ୨୦୦୧/୨୦୦୨/୨୦୦୩/୨୦୦୪ ପର୍ଯ୍ୟନ୍ତ ପ୍ରତି ବର୍ଷ ପ୍ରକାଶିତ ହୋଇ ଓଡ଼ିଆ ଗାଳ୍ପିକମାନଙ୍କ ଗଳ୍ପକୁ ବଙ୍ଗଳାର ପାଠକମାନଙ୍କ ନିକଟରେ ପରିଚିତ କରାଇଛନ୍ତି । ଏହାପୂର୍ବରୁ ଓଡ଼ିଶା ଗାଳ୍ପିକମାନଙ୍କର ଗଳ୍ପର ଏଭଳି ସଂକଳନ ହୋଇନଥିଲା ।

ପ୍ରଫେସର ଚକ୍ରବର୍ତ୍ତି ମୋର ଅନେକ ଗଳ୍ପ ଇଂରାଜୀ ଓ ବଙ୍ଗଳାରେ ଅନୁବାଦ କରିଛନ୍ତି । ତାଙ୍କ ଇଂରାଜୀ ଅନୁଦିତ ଗଳ୍ପ ଦି ଷ୍ଟେଟ୍ସମ୍ୟାନ ଖବର କାଗଜ ପକ୍ଷରୁ ପ୍ରତି ପୂଜା ସମୟରେ ପ୍ରକାଶିତ 'ଫେଷ୍ଟିଭାଲ୍ ଇସ୍ୟୁ'ରେ ନିୟମିତ ପ୍ରକାଶ ପାଇ ଆସୁଛି । ବଙ୍ଗଳାରେ ଅନୁଦିତ ଗଳ୍ପ ଆଜକାଲ୍ ପୂଜା ବାର୍ଷିକୀରେ ଗତ ଦଶ/ବାରବର୍ଷ ହେବ ପ୍ରକାା ପାଇ ଆସୁଛି ।

ପ୍ରଫେସର ଚକ୍ରବର୍ତ୍ତିଶ୍ରୀ ଅରୋବିନ୍ଦ ଓ ଶ୍ରୀ ରାମକୃଷ୍ଣଙ୍କର ଭକ୍ତ । ତାଙ୍କ ସହ କଥାବାର୍ତ୍ତାବେଳେ ଅନେକ ସମୟରେ ଦର୍ଶନ ଶାସ୍ତ୍ରରେ ତାଙ୍କର ଗଭୀର ଜ୍ଞାନ ମୋତେ ଚମତ୍କୃତ କରିଥାଏ । ତାଙ୍କଭଳି ଜଣେ ବ୍ୟକ୍ତିଙ୍କୁ ବନ୍ଧୁରୂପେ ପାଇବା ଭାଗ୍ୟର କଥା ।

ଜଣେ ସାମ୍ବାଦିକ ରୂପେ ମୋର ଜୀବନ ଚରିତ ଲେଖିବାବେଳେ ଓଡ଼ିଶା ସମ୍ପର୍କରେ ସମ୍ୟକ ଧାରଣା ଦେବା ଉଚିତ୍ ହେବ ବୋଲି ମନେକରେ । ଏଠି କହିରଖେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ରୂପେ ୧୯୩୬ ଏପ୍ରିଲ ପହିଲାରେ ଗଠିତ ହେବା ପରେ ଏହା ୧୯୩୭ ମାର୍ଚ୍ଚ ମାସ ପର୍ଯ୍ୟନ୍ତ ରାଜ୍ୟପାଳଙ୍କ ବ୍ୟକ୍ତିଗତ ଶାସନରେ ରହିଥିଲା । ୧୯୩୭ ଫେବୃୟାରୀ ମାସ ପ୍ରଥମ ସପ୍ତାହରେ ଓଡ଼ିଶା ବିଧାନସଭା ପାଇଁ ନିର୍ବାଚନ ହୋଇଥିଲା । ସେତେବେଳେ ଓଡ଼ିଶା ବିଧାନସଭାରେ ମୋଟ ସ୍ଥାନ ସଂଖ୍ୟା ଥିଲା ଷାଠିଏ । ନିର୍ବାଚିତ ପ୍ରତିନିଧିମାନଙ୍କର ନାମ ୧୯୩୭ ଫେବୃଆରୀ ୧୩ ତାରିଖରେ ଓଡ଼ିଶା ଗେଜେଟ ପ୍ରକାଶ ପାଇଥିଲା । ସବୁଠୁ ଉଲ୍ଲେଖନୀୟ ବିଷୟ ହେଉଛି ଏହି ନିର୍ବାଚନରେ ମହିଳମାନଙ୍କ ପାଇଁ ଦୁଇଟି ସ୍ଥାନ ସଂରକ୍ଷିତ ଥିଲା । ଆଜି ମହିଳା ବିଲ୍ ନେଇ ଯେପରି ବିବାଦ ଚାଲିଛି ଏହି ଘଟଣାରୁ ଶିକ୍ଷା ଲାଭ କରିବା ଉଚିତ୍ । ସେତେବେଳେ ଓଡ଼ିଶା ରାଜ୍ୟ ଲୋକସଂଖ୍ୟା ମୋଟ ୮୨ଲକ୍ଷ ଥିଲା । ଏମାନଙ୍କ ମଧ୍ୟରୁ ଛ'ଲକ୍ଷ ଲୋକଙ୍କୁ ଭୋଟାଧିକାର ମିଳିଥିଲା । ଅଭିଯୋଗ ହୋଇଥିଲା ଅନେକ ଲୋକଙ୍କୁ ଭୋଟ୍‌ଦେବାରୁ ବଞ୍ଚିତ କରାଯାଇଥିଲା ।

୧୯୫୨ରେ ଦେଶରେ ପ୍ରଥମ ସାମ୍ବିଧାନିକ ପଦ୍ଧତିରେ ନିର୍ବାଚନ ହେଲା । ଓଡ଼ିଶା ବିଧାନସଭାରେ ସ୍ଥାନ ସଂଖ୍ୟା ହେଲା ୧୪୦ ଏବଂ ଲୋକସଭା ସ୍ଥାନସଂଖ୍ୟା ଥିଲା ୨୦ । ଏହି ସ୍ଥାନ ମଧ୍ୟରୁ ସେତେବେଳେ ପଇଁତିରିଶଟି

ନିର୍ବାଚନମଣ୍ଡଳୀରୁ ଦୁଇଜଣ ଲେଖାଏଁ ଏବଂ ଅବଶିଷ୍ଟ ୭୦ଟି ନିର୍ବାଚନମଣ୍ଡଳୀରୁ ଜଣେ ଲେଖାଏଁ ନିର୍ବାଚିତ ହେଉଥିଲେ । ଏହି ବ୍ୟବସ୍ଥା ୧୯୫୭ ପର୍ଯ୍ୟନ୍ତ ଥିଲା । ୧୯୫୨ରେ ଓଡ଼ିଶାର ମୋଟ ଜନସଂଖ୍ୟା ୧କୋଟି ୪୬ଲକ୍ଷ ଥିଲା । ୧୯୭୩ ମସିହା ପର୍ଯ୍ୟନ୍ତ ଓଡ଼ିଶା ବିଧାନସଭାର ମୋଟ ସ୍ଥାନ ସଂଖ୍ୟା ୧୪୦ ରହିଥିଲା । ୧୯୭୧ ମସିହାରେ ଦେଶରେ ନିର୍ବାଚନମଣ୍ଡଳୀ ପୁନର୍ଗଠନ କାର୍ଯ୍ୟ ଆରମ୍ଭ ହୋଇ ୧୯୭୩ରେ ଶେଷ ହେଲା । ଏହି ପୁନର୍ଗଠନ କାର୍ଯ୍ୟ ଶେଷ ହେବାପରେ ଓଡ଼ିଶା ବିଧାନସଭାରେ ସ୍ଥାନ ସଂଖ୍ୟା ୧୪୭କୁ ବୃଦ୍ଧି ପାଇଲା । ସେହିଭଳି ଲୋକସଭାରେ ଓଡ଼ିଶାର ସ୍ଥାନ ସଂଖ୍ୟା ଗୋଟିଏ ବୃଦ୍ଧି ପାଇ ୨୧ରେ ପହଞ୍ଚିଲା । ୧୯୭୪ ନିର୍ବାଚନରେ ଓଡ଼ିଶା ବିଧାନସଭା ପାଇଁ ୧୪୭ଟି ସ୍ଥାନରେ ନିର୍ବାଚନ ହେଲା । ଏହି ନିର୍ବାଚନ ପରେ ନନ୍ଦିନୀ ଶତପଥୀ ମୁଖ୍ୟମନ୍ତ୍ରୀ ହେଲେ ।

ଉପକ୍ରମଣିକା ଏଇଠି ରହୁ । ମୁଁ ଗତ ସଂଖ୍ୟାରେ ୧୯୮୦ରେ କଂଗ୍ରେସର ବିପୁଳ ବିଜୟ, ଜାନକୀବାବୁଙ୍କ ମୁଖ୍ୟମନ୍ତ୍ରୀତ୍ୱ ଏବଂ ବସନ୍ତ ବିଶ୍ୱାଳଙ୍କର ସୀମା ବହିର୍ଭୂତ କ୍ଷମତା ପ୍ରୟୋଗ ବିଷୟ ଉଲ୍ଲେଖ କରିଥିଲି । ଜାନକୀବାବୁ ତାଙ୍କ ପରିବାର ତୋଷଣ ନୀତି ଓ ଦୁର୍ନୀତି ପାଇଁ ବେଶ୍ ବଦ୍‌ନାମ ହୋଇ ଯାଇଥିଲେ । ବସନ୍ତ ବିଶ୍ୱାଳ ମଧ ଦୁର୍ନୀତି ଅଭିଯୋଗରେ ସାରା ରାଜ୍ୟରେ ସମାଲୋଚିତ ହୋଇଥିଲେ । ଅନେକ ଆଶା କରିଥିଲେ ଆସନ୍ତା ନିର୍ବାଚନରେ କଂଗ୍ରେସର ପତନ ସୁନିଶ୍ଚିତ । ୧୯୮୪ ଅକ୍ଟୋବର ୨୯ ତାରିଖରେ ଇନ୍ଦିରା ଗାନ୍ଧୀ ଓଡ଼ିଶା ଗସ୍ତରେ ଆସି ବଲାଙ୍ଗିର ସଇଁତଳା ଠାରେ ଏକ ଗୋଳାବାରୁଦ କାରଖାନାର ଶୁଭ ଦେଲେ । ସେତେବେଳେ କାମାକ୍ଷା ପ୍ରସାଦ ସିଂହଦେଓ କେନ୍ଦ୍ରରେ ସ୍ୱାଧୀନ ପ୍ରତିରକ୍ଷା ରାଷ୍ଟ୍ରମନ୍ତ୍ରୀ ଥିଲେ । ଏହି କାରଖାନା ତାଙ୍କର ଅବଦାନ ବୋଲି କୁହାଯାଏ । ଶ୍ରୀମତୀ ଗାନ୍ଧୀ ଓଡ଼ିଶାରେ ସେତେବେଳେ ତିନୋଟି ସଭାରେ ଭାଷଣ ଦେଇଥିଲେ । ବଲାଙ୍ଗୀରର ସଇଁତଳା, ଗଞ୍ଜାମର ଗୋପାଳପୁର ସୈନ୍ୟବାହିନୀ କାଣ୍ଟନମେଣ୍ଟ ଏବଂ ଭୁବନେଶ୍ୱରର ପ୍ୟାରେଡ ପଡ଼ିଆ । ମୁଁ ଏହି ତିନୋଟିଯାକ ସଭାରେ ସାମ୍ବାଦିକ ରୂପେ ଯୋଗ ଦେଇଥିଲି । ଶ୍ରୀମତୀ ଗାନ୍ଧୀ ସେଦିନ ଭୁବନେଶ୍ୱର ରାଜଭବନରେ ରାତ୍ରୀଯାପନ କରିବା କଥା । ମାତ୍ର ହଠାତ୍ ସେ ଦିଲ୍ଲୀରୁ ଏକ ଟେଲିଫୋନ୍ ପାଇଲେ ରାଜୀବ ଗାନ୍ଧୀଙ୍କ ଦୁଇ ସନ୍ତାନ ରାହୁଲ ଓ ପ୍ରିୟଙ୍କାଙ୍କ ଗାଡ଼ି ସ୍କୁଲରୁ ଫେରିବା ବାଟରେ ଦୁର୍ଘଟଣାରୁ ଅଳ୍ପକେ ରକ୍ଷାପାଇଯାଇଛି । ଏକଥା ଶୁଣି ସେ ଦିଲ୍ଲୀ ଫେରିଯିବା ପାଇଁ ବ୍ୟଗ୍ର ହୋଇପଡ଼ିଲେ । ସେତେବେଳେ ଓଡ଼ିଶାରେ ରାଜ୍ୟପାଳ ଥିଲେ ଅଯୋଧ ନାଥ ପାଣ୍ଡେ । ସେ ନେହେରୁ ପରିବାରର ଘନିଷ୍ଠ ଥିଲେ । ଶ୍ରୀମତୀ ଗାନ୍ଧୀଙ୍କୁ ନଯିବା ପାଇଁ ପ୍ରବର୍ତ୍ତାଇଲେ । ମାତ୍ର ଶ୍ରୀମତୀ ଗାନ୍ଧୀ ବିମାନ ପ୍ରସ୍ତୁତ କରିବାକୁ ଆଦେଶ ଦେଲେ । ସେ ସମୟରେ ଭୁବନେଶ୍ୱର ବିମାନଘାଟିରେ ରାତ୍ରୀକାଳୀନ ବିମାନ ଯାତ୍ରାର ସୁବିଧା ନଥିଲା । ତେବେ ପ୍ରଧାନମନ୍ତ୍ରୀଙ୍କ ପାଇଁ ବିମାନଘାଟୀର ସମଗ୍ର ରନ୍‌ୱେକୁ ସ୍ୱତନ୍ତ୍ର ଭାବେ ଆଲୋକିତ କରାଗଲା । ଆମେ ଏକଥା ଶୁଣି ବିମାନଘାଟିକୁ ଯାଇଥିଲୁ । ସେଠାରେ ଶ୍ରୀମତୀ ଗାନ୍ଧୀଙ୍କୁ ଭେଟିବା ପାଇଁ ଚେଷ୍ଟା କରିଥିଲୁ । ମାତ୍ର ସେ ଦିଲ୍ଲୀ ଯିବାପାଇଁ ଏଭଳି ବ୍ୟଗ୍ର ଥିଲେ ଯେ ଆମକୁ ସମୟ ନଦେଇ କେବଳ 'ସରି ଜେଣ୍ଟଲମ୍ୟାନ ଆଇଆମ୍ ଆଟ୍ ଏ ହରି' କହି ତରତର ହୋଇ ବିମାନକୁ ଚାଲିଗଲେ । ବିଧିର ବିଧାନ ବିଚିତ୍ର । ସେଇ ରାତିଟି ଶ୍ରୀମତୀ ଗାନ୍ଧୀ ଭୁବନେଶ୍ୱରରେ ରହି ଯାଇଥିଲେ ସମ୍ଭବତଃ ଭାରତବର୍ଷର ସବୁଠାରୁ ଅଘଟଣକୁ ଏଡ଼ାଇ ଦିଆଯାଇ ପାରିଥା'ନ୍ତା । ମାତ୍ର ଯାହା ଭବିତବ୍ୟ ତାହା ଘଟିବ । ଶ୍ରୀମତୀ ଗାନ୍ଧୀ ପରଦିନ ସକାଳେ ତାଙ୍କ ଦେହରକ୍ଷୀଙ୍କ ଗୁଳିରେ ନିହତ ହେଲେ ।

ଶ୍ରୀମତୀ ଗାନ୍ଧୀଙ୍କ ତିରୋଧାନ ମରିମରି ଆସୁଥିବା କଂଗ୍ରେସ ଦଳର ଭାଗ୍ୟକୁ ସଞ୍ଜିବନୀ ଦାନ କଲା । ଇନ୍ଦିରା ଗାନ୍ଧୀ ମରିଗଲେ, କଂଗ୍ରେସ ତରିଗଲା । ମଳିନ ପଡ଼ି ଆସିଥିବା ଜାନକୀବାବୁଙ୍କ ଭାଗ୍ୟଲିପି ଉଜ୍ଜ୍ୱଳ ହୋଇ ଉଠିଲା । ରାଜଭବନର ବିସ୍ତୃତ ସବୁଜ ଘାସ ଗାଲିଚାରେ ଜାନକୀବାବୁ ପୁଣିଥରେ ଶପଥ ନେଲେ ୧୯୮୫ ମାର୍ଚ୍ଚ ୯ ତାରିଖ

ସକାଳ ୧୧ଟାରେ । ୧୯୫୦ ମସିହା ପରଠାରୁ ପ୍ରଥମଥର ପାଇଁ ଏହି ଦଶନ୍ଧିରେ କଂଗ୍ରେସ ବିପୁଳ ସଂଖ୍ୟା ଗରିଷ୍ଠତାରେ ଲାଗଲାଗ ଦୁଇଥର ସରକାର ଗଠନ କଲା । ୧୯୮୫ ନିର୍ବାଚନରେ ମୋଟ ୧୪୫ଟି ସ୍ଥାନରୁ କଂଗ୍ରେସ-୧୧୭ଟି ଏବଂ ବିଜୁବାବୁଙ୍କ ଜନତା ଦଳ ୧୯ଟି ସ୍ଥାନ ଅଧିକାର କରିଥିଲେ । କାକଟପୁର ଓ କେଉଁଝରରେ ପ୍ରାର୍ଥୀଙ୍କ ମୃତ୍ୟୁ ଯୋଗୁ ଏବଂ ଜାନକୀବାବୁ ଆଠଗଡ଼ ଓ ଖୋର୍ଦ୍ଧାରୁ ଜିତିଥିବାରୁ ଖୋର୍ଦ୍ଧାକୁ ଛାଡ଼ି ଆଠଗଡ଼କୁ ରଖିବାରୁ ତିନୋଟି ସ୍ଥାନରେ ୧୯୮୫ ଏପ୍ରିଲ ୨୪ ତାରିଖରେ ଉପ ନିର୍ବାଚନ କରାଗଲା । କିନ୍ତୁ ସବୁଠାରୁ ଆଶ୍ଚର୍ଯ୍ୟର ବିଷୟ ଦେଢ଼ମାସ ତଳେ ବିପୁଳ ସଂଖ୍ୟା ଗରିଷ୍ଠତାରେ ଆସିଥିବା କଂଗ୍ରେସ ଦଳ ଏହି ତିନୋଟି ସ୍ଥାନରେ ଶୋଚନୀୟ ପରାଜୟବରଣ କରିଥିଲା ।

ଜଣେ ସାମ୍ବାଦିକ ଭାବେ ମୋର ମନେହେଲା ସମ୍ଭବତଃ କଂଗ୍ରେସର ଦୁର୍ଗ ପତନର ବେଳ ଆରମ୍ଭ ହେଲା । ଖୋର୍ଦ୍ଧାରୁ ୧୯୮୦ ନିର୍ବାଚନରେ ପ୍ରସନ୍ନ ପାଟଶାଣୀ କଂଗ୍ରେସ ଟିକେଟ୍‌ରେ ନିର୍ବାଚିତ ହୋଇଥିଲେ ମଧ୍ୟ ଜାନକୀବାବୁ ତାଙ୍କୁ ଟିକେଟ୍ ନଦେଇ ତାଙ୍କ ବନ୍ଧୁ ପ୍ରଫେସର ବୈଦ୍ୟନାଥ ମିଶ୍ରଙ୍କୁ ଟିକେଟ୍ ଦେଲେ । ପ୍ରସନ୍ନ ବିଜୁବାବୁଙ୍କ ଆଶୀର୍ବାଦ ନେଇ ସ୍ୱାଧୀନ ପ୍ରାର୍ଥୀ ହୋଇ ଜିତିଲେ । ଠିକ୍ ସେହିଭଳି କାକଟପୁରରେ ଜାନକୀବାବୁ ୧୯୮୦ର ବିଜୟୀ ପ୍ରାର୍ଥୀ ବୈକୁଣ୍ଠ ନାଥ ସ୍ୱାଇଁଙ୍କୁ ଟିକେଟ୍ ନଦେଇ ତାଙ୍କ ବନ୍ଧୁ ଶଶିଭୂଷଣ ମିଶ୍ରଙ୍କୁ ଟିକେଟ ଦେବାରେ ଜନତା ଦଳର ସୁରେନ୍ଦ୍ର ନାଥ ନାୟକ ତାଙ୍କୁ ବହୁ ଭୋଟ୍‌ରେ ହରାଇ ବିଜୟୀ ହେଲେ । କେନ୍ଦୁଝରରେ ଜନତା ଦଳର ଛୋଟରାୟ ମାଝି ପ୍ରଥମ ଥର ପାଇଁ ବିଧାନସଭାକୁ ନିର୍ବାଚିତ ହେଲେ । ସେଠାକାର ଟାଣୁଆ ପ୍ରାର୍ଥୀ ଯୋଗେନ୍ଦ୍ର ନାୟକଙ୍କୁ (୧୯୮୦ର ବିଧାୟକ) ଟିକେଟ୍ ନଦେଇ ଜାନକୀବାବୁ ନିରଞ୍ଜନଙ୍କ ପରାମର୍ଶରେ ଆଉଜଣେ ଅନାମଧେୟ ବ୍ୟକ୍ତିଙ୍କୁ ଟିକେଟ୍ ଦେବାରେ ଏ ଅଘଟଣା ଘଟିଲା ।

ଜାନକୀବାବୁ ତାଙ୍କ ଆତ୍ମୀୟ ସ୍ୱଜନଙ୍କ ଚାପରେ ପଡ଼ି ବସନ୍ତ ବିଶ୍ୱାଳଙ୍କୁ ୧୯୮୫ ନିର୍ବାଚନ ପାଇଁ ଟିକେଟ୍ ଦେଇ ନଥିଲେ । ବିଚାରା ବସନ୍ତବାବୁ ହଠାତ୍ ସ୍ୱର୍ଗରୁ ପାତାଳକୁ ଖସି ପଡ଼ିଲେ । ଖବର କାଗଜମାନଙ୍କରେ ଜାନକୀବାବୁ ଆଉ ତାଙ୍କ ଭିତରେ ଅହି-ନକୁଳ ସମ୍ପର୍କ ବିଜୟ ପ୍ରକାଶ ପାଇବା ପରେ କୌଣସି କଂଗ୍ରେସ ବିଧାୟକ ବା କୌଣସି ପ୍ରଭାବଶାଳୀ ବ୍ୟକ୍ତି ତାଙ୍କ ଦୁଆର ମାଡ଼ି ନଥିଲେ । କିନ୍ତୁ ସେ ଭାଙ୍ଗିପଡ଼ି ନଥିଲେ । ତାଙ୍କ ଅଫିସ୍ ପୂର୍ବଭଳି ଚାଲିଥିଲା । ସରକାରରେ ଥିବାବେଳେ ଯେଉଁ କର୍ମଚାରୀମାନେ ତାଙ୍କ ଅଫିସ୍‌ରେ କାମ କରୁଥିଲେ ସେମାନେ ସମସ୍ତେ ଆସୁଥିଲେ । ତେବେ ଜାନକୀବାବୁ ଓ ନିରଞ୍ଜନ ପଟ୍ଟନାୟକଙ୍କର କିଛି ବିରୋଧୀ ବିଧାୟକ କ୍ରମେ ବସନ୍ତ ବିଶ୍ୱାଳଙ୍କ ପାଖକୁ ଆସିବାରୁ ବସନ୍ତବାବୁ ନିଜ ପତିଆରା ଜମାଇ ରଖିବାରେ ସହଜ ହେଲା ।

ଜାନକୀବାବୁଙ୍କ ଦ୍ୱିତୀୟ ଦଫା ମୁଖ୍ୟମନ୍ତ୍ରୀତ୍ୱ ତାଙ୍କ ପାଇଁ ସୁଖକର ସମୟ ନଥିଲା । ଦ୍ୱିତୀୟ ଦଫାରେ ନିରଞ୍ଜନ ପଟ୍ଟନାୟକ କ୍ୟାବିନେଟ୍ ପାହ୍ୟା ମନ୍ତ୍ରୀ ରୂପେ ଦାୟିତ୍ୱ ନେଇଥିଲେ । ଏହି ସମୟରେ ଏକ ଖଣି ମୋକଦ୍ଦମାରେ ଓଡ଼ିଶା ହାଇକୋର୍ଟର ବିଚାରପତି ଶ୍ରୀ ବାଳକୃଷ୍ଣ ବେହେରା ୧୯୮୫ ଜୁଲାଇ ମାସରେ ତାଙ୍କୁ ହାବିଚ୍ୟୁଆଲ୍ ବ୍ରାଇବ ଗିଭର୍ ବୋଲି ଏକ ମନ୍ତବ୍ୟ ଦେବାରୁ ସେ ମନ୍ତ୍ରିମଣ୍ଡଳରୁ ଇସ୍ତଫା ଦେଇ ଏହି ମନ୍ତବ୍ୟ ବିରୁଦ୍ଧରେ ସୁପ୍ରିମ୍‌କୋର୍ଟ ଯାଇଥିଲେ । ଏହି ଘଟଣାରେ ବସନ୍ତବାବୁ ତାଙ୍କ ସମର୍ଥକମାନଙ୍କ ଜରିଆରେ ନିରଞ୍ଜନଙ୍କୁ ଅଭ୍ୟାସଗତ ଲାଞ୍ଚଦାତା ବୋଲି ଚାରିଆଡ଼େ ପ୍ରଚାର କରିଥିଲେ । ତେବେ ସୁପ୍ରିମକୋର୍ଟରେ ଏହି ମନ୍ତବ୍ୟ ୧୯୮୬ ମେ' ମାସରେ କଟି ଯାଇଥିଲା । ଫଳରେ ଦୁଇବର୍ଷ ପରେ ସେ ପୁଣି ମନ୍ତ୍ରିମଣ୍ଡଳରେ ଯୋଗ ଦେଇଥିଲେ ।

ନିରଞ୍ଜନଙ୍କ ଏହି ଘଟଣାବେଳେ ଜାନକୀବାବୁ ଆଉ ଏକ ବିପଦର ସମ୍ମୁଖୀନ ହୋଇଥିଲେ । ଆମର କଥାରେ ଅଛି ଦୁର୍ଯ୍ୟୋଗ ଯେତେବେଳେ ଆସେ ସାଙ୍ଗସାଥି ନେଇ ଆସିବା ଭଳି ଜାନକୀବାବୁଙ୍କ ବିରୁଦ୍ଧରେ ଇଲୁଷ୍ଟ୍ରେଟେଡ ଉଇକ୍ଲିରେ ତାଙ୍କ ଚରିତ୍ର ସଂହାର ମୂଳକ ଲେଖା ପ୍ରକାଶ ପାଇଲା । ୧୯୮୬ ମେ' ୧୮ ତାରିଖ ଏବଂ ଅଗଷ୍ଟ ୩ ତାରିଖ-୯ତାରିଖ ସଂଖ୍ୟାରେ ଚାରିପୃଷ୍ଠା ଲେଖାଁ ଚରିତ୍ର ସଂହାର ଲେଖା ପ୍ରକାଶ ପାଇଲା । ଏହି ପତ୍ରିକାର କଲିକତା ପ୍ରତିନିଧି ଏସ୍.ଏନ୍.ଏମ୍. ଅବ୍‌ଦି ଏହି ରିପୋର୍ଟ ଲେଖିଥିଲେ । ଏହି ରିପୋର୍ଟରେ ସ୍ୱପ୍ନା ମୁଖାର୍ଜୀ ନାମରେ ଜଣେ ଯୁବତୀଙ୍କ ଅର୍ଦ୍ଧ ଉଲଗ୍ନ ଫଟୋ ମଧ୍ୟ ପ୍ରକାଶ ପାଇଥିଲା । ଏହି ଦୁଇଟି ସଂଖ୍ୟା ପ୍ରକାଶ ପାଇଲା ପରେ ସମଗ୍ର ଦେଶରେ ଜାନକୀବାବୁ ଅତ୍ୟନ୍ତ ବଦ୍‌ନାମ ହୋଇ ଯାଇଥିଲେ । କିଛିଦିନ ସେ କୌଣସି ସଭାସମିତିକୁ ଯାଉନଥିଲେ । ଏହି ପତ୍ରିକାରେ ଏହା ପ୍ରକାଶ ପାଇଥିବା ଦିଲ୍ଲୀ-ବମ୍ବେରୁ ଖବର ଆସିବା ପରେ ଓଡ଼ିଶାରେ ପୋଲିସ୍ ଲଗାଇ ଦୋକାନ ଓ ହୁଇଲରରୁ ସମସ୍ତ ଇଲୁଷ୍ଟ୍ରେଟେଡ ଉଇକ୍ଲି ପତ୍ରିକା ଉଠାଇ ନିଆଗଲା । ସୌଭାଗ୍ୟବଶତଃ ମୁଁ ଦୁଇଟିଯାକ ପତ୍ରିକା ପାଇଥିଲି । କାରଣ ସେତେବେଳେ ମୁଁ ଇଲୁଷ୍ଟ୍ରେଟେଡ ଉଇକ୍ଲି ମଗାଉଥିଲି ।

## -ଇଲୁଷ୍ଟ୍ରେଟେଡ ଉଇକ୍ଲିରେ ଜାନକୀଙ୍କ ଚରିତ୍ର ସଂହାର-

ଜାନକୀବାବୁଙ୍କ ବିରୁଦ୍ଧରେ ଇଲୁଷ୍ଟ୍ରେଟେଡ ଉଇକ୍ଲିର ଏହି ଚରିତ୍ର ସଂହାର ଲେଖା ପ୍ରକାଶ ପାଇବା ପରେ ତାଙ୍କ ବିରୁଦ୍ଧରେ ଥିବା କେତେକ ଓଡ଼ିଆ ଖବରକାଗଜ(ଦୈନିକ ଓ ସାପ୍ତାହିକ) ତା'ର କପି ନେଇ ଛାପିଲେ । ତେଣୁ ଯେଉଁ ଉଦ୍ଦେଶ୍ୟରେ ସେ ଉଇକ୍ଲି କପି ବଜାରକୁ ଉଭାନ କରିନେଇଥିଲେ ତା'ର କିଛି ଫଳ ହେଲାନାହିଁ । ଏହି ଆଲୋଚନା ଚାରିଆଡ଼େ ଚାଲିଲା । ଏହି ସମୟରେ ଦିନେ ମୋର ଜଣେ ଘନିଷ୍ଠ ଆଇ.ଏ.ଏସ୍. ଅଫିସର ବନ୍ଧୁ ସକାଳୁ ସକାଳୁ ମୋ ଘରେ ପହଞ୍ଚିଲେ । ମୁଁ ନିତ୍ୟକର୍ମ ସାରି ମୋ ଦାଣ୍ଡ ଘରେ ଖବର କାଗଜ ପଢୁଥିଲି । ସକାଳୁ ସକାଳୁ ତାଙ୍କୁ ଦେଖି ମୁଁ ରୀତିମତ ଆଶ୍ଚର୍ଯ୍ୟ । କଫି ମଗାଇ କହିଲି ସକାଳୁ ସକାଳୁ କୁଆଡ଼େ ? ସେ କହିଲେ ବରେନ୍ଦ୍ର ଭାଇ, ତୁମ ପାଖରେ ବଡ଼ କାମ । ତା' ହେଲା ଅମୁକ (ନାମ ପ୍ରକାଶ କରୁନାହିଁ)କୁ ତା'ର ନ୍ୟୁଡ୍ ଫଟୋ ନେଇ ଆବଦି ବ୍ଲାକ୍‌ମେଲ୍ କରିବାକୁ ଚାହୁଁଛି । ସେ ତାକୁ ବଙ୍ଗଳା କାଗଜରେ ଛାପିବ ବୋଲି ଧମକ ଦେଇଛି । ତମେ ତମ ବଙ୍ଗଳା କାଗଜକୁ ଟିକେ ଜୋର୍ ଦେଇ କହିବ ସେ ଫଟୋ ଯେପରି ଛପା ନହୁଏ । ଯଦି ସେ ତୁମ କାଗଜ ଆଜ୍‌କାଲ୍‌କୁ ପଠାଇଥିବ ସେ ଫଟୋ କପି କିପରି ମିଳିବ ତା'ର ବ୍ୟବସ୍ଥା କରିବ । ମୁଁ ହଠାତ୍ ଏ ପ୍ରକାର କଥା ଶୁଣି ଆଶ୍ଚର୍ଯ୍ୟ ହେଲି । ତା'ପରେ ପଚାରିଲି ଏ ମହିଳାଙ୍କ ନ୍ୟୁଡ୍ ଫଟୋ ସେ ପାଇଲା କିପରି ? ସେ କହିଲେ ସେ ବହୁତ କଥା । ମୁଁ କହିଲି ୟାଙ୍କ ସାଙ୍ଗରେ ତା'ର ଏତେ ଭାବ ଲାଭ ଯଦି ଥିଲା ତେବେ ସେ ବ୍ଲାକ୍‌ମେଲ୍ କରିବାକୁ କାହିଁକି ଚାହୁଁଛି । ସେ କହିଲେ ଭଦ୍ର ମହିଳା ଜାନକୀବାବୁଙ୍କ ସପକ୍ଷରେ ଓ ଅବ୍‌ଦି ଚରିତ୍ର ବିପକ୍ଷରେ କୋର୍ଟରେ ସାକ୍ଷୀ ଦେବାପାଇଁ ରାଜି ହେବାରେ ଏଭଳି ବ୍ଲାକ୍‌ମେଲ୍ କରୁଛି । ମୁଁ କହିଲି ଭାଇ, ଯିଏ ଯେପରି କରିବ ସେ ସେପରି ଫଳ ପାଇବ । ଇଏ ଜଣେ ଅଧାପିକା- ଅବ୍‌ଦି ପାଖରେ କାହିଁକି ନାରେନାରେ ହେଉଥିଲେ ? ବନ୍ଧୁ କହିଲେ ଯାହା ହୋଇଛି ହୋଇଛି ତମେ ଟିକେ ସାହାଯ୍ୟ କର । ଏଠିକା କାଗଜରେ ସେ ଦେବାକୁ ସାହସ କରିବ ନାହିଁ । ମୁଁ କିଛି କହିଲି ନାହିଁ । କଫି ପିଇ ବନ୍ଧୁ ବିଦାୟ ନେଲେ ।

ଜାନକୀବାବୁ ତଳ କୋର୍ଟରେ ଇଲୁଷ୍ଟ୍ରେଟେଡ ଉଇକ୍ଲି ବିରୁଦ୍ଧରେ କୋଟିଏ ଟଙ୍କାର ମାନହାନି ମକଦ୍ଦମା କଲେ । ତା' ସଙ୍ଗେ ସଙ୍ଗେ ତାଙ୍କ ବିରୁଦ୍ଧରେ ଆଉ ଯେପରି କିଛି ପ୍ରକାଶ ନପାଏ ତା' ଉପରେ ରହିତାଦେଶ କରିବା ପାଇଁ ଆବେଦନ କଲେ । ବିଖ୍ୟାତ ଆଡ଼ଭୋକେଟ୍ ଗଙ୍ଗାଧର ରଥ ତାଙ୍କ ପାଇଁ ମୋକଦ୍ଦମା ଲଢୁଥିଲେ ।

ସେତେବେଳେ ଗଙ୍ଗାଧର ରଥ ଓଡ଼ିଶାର ଆଡ଼ଭୋକେଟ୍ ଜେନେରାଲ୍ ଥିଲେ । ଅବ୍‌ଦିଙ୍କ ପକ୍ଷରୁ ଭାରତୀୟ ବାର୍ କାଉନସିଲ୍‌ର ପ୍ରାକ୍ତନ ଚେୟାରମ୍ୟାନ ବାରିଷ୍ଟର ରଣଜିତ୍ ମହାନ୍ତି ମୋକଦ୍ଦମା ଲଢୁଥିଲେ । ଏହି ମୋକଦ୍ଦମା ଚାଲିବାବେଳେ ଜନତା ଦଳ ପକ୍ଷରୁ ରାଜଭବନ ସମ୍ମୁଖରେ ବିକ୍ଷୋଭ କରାଯାଇ ମୋକଦ୍ଦମାର ନିରପେକ୍ଷ ବିଚାର ପାଇଁ ଜାନକୀ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେବାପାଇଁ ଦାବି କରି ରାଜ୍ୟପାଳ ବିଶ୍ୱମ୍ଭର ନାଥ ପାଣ୍ଡେଙ୍କୁ ଏକ ସ୍ମାରକପତ୍ର ଦେଇଥିଲେ । ଏହି ମୋକଦ୍ଦମା ଶୁଣାଣି ବେଳେ ପ୍ରବଳ ଜନଗହଳି ହେବାରୁ ଦର୍ଶକମାନଙ୍କୁ କୋର୍ଟକୁ ଆସିବା ପାଇଁ ଅନୁମତି ନଦେବାକୁ ଜାନକୀବାବୁଙ୍କ ପକ୍ଷରୁ ଆବେଦନ କରାଯାଇଥିଲା । ଜଜ୍ ତାହା ଗ୍ରହଣ କରିଥିଲେ ।

୧୯୮୬ ସେପ୍ଟେମ୍ବର ୩ ତାରିଖରେ ଉଇକ୍ଲି କେଲେଙ୍କାରୀ ପରେ ପ୍ରଥମ ବିଧାନସଭା ଅଧିବେଶନ ଆରମ୍ଭ ହୋଇଥିଲା । ବିରୋଧୀ ଦଳ ନେତା ବିଜୁ ପଟ୍ଟନାୟକ ଅଧିବେଶନ ଆରମ୍ଭରୁ କହିଲେ ବମ୍ବେରୁ ପ୍ରକାଶ ପାଉଥିବା ଏକ ଇଂରାଜୀ ପତ୍ରିକା ଇଲୁଷ୍ଟ୍ରେଟେଡ୍ ଉଇକ୍ଲିରେ ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ସମ୍ପର୍କରେ ଯାହା ପ୍ରକାଶ ପାଇଛି ତା'ପରେ ତାଙ୍କର ମୁଖ୍ୟମନ୍ତ୍ରୀ ଦାୟିତ୍ୱରେ ଆଉ ରହିବା ଉଚିତ୍ ନୁହେଁ । ଏହାପରେ ବିରୋଧୀ ପକ୍ଷରୁ ପ୍ରବଳ ପାଟିତୁଣ୍ଡ ଆରମ୍ଭ ହୁଏ । କିଛି ସମୟ ପରେ ବିରୋଧୀ-ସରକାରୀ ଦଳ ମଧ୍ୟରେ ମାଡ଼ପିଟ୍ ଆରମ୍ଭ ହୁଏ । ପରଦିନ ଉଭୟ ସରକାରୀ ଦଳର ସଦସ୍ୟଙ୍କ ମଧ୍ୟରେ ଗଣ୍ଡଗୋଳ ଆହୁରି ଭୀଷଣ ଆକାର ଧାରଣ କରେ । ବାଚସ୍ପତି ପ୍ରସନ୍ନ କୁମାର ଦାସ ମାତ୍ର ପଚାଶ ମିନିଟ୍ ପରେ ବୈଠକ ଆସନ୍ତା ଦିନକୁ ମୁଲତବୀ କଲେ ।

କିନ୍ତୁ ଏଇ ଘଟଣା ପରେ କଂଗ୍ରେସ ଦଳର ଅନେକ ବିଧାୟକ ଜାନକୀବାବୁଙ୍କ ବିରୁଦ୍ଧରେ ଗୋଷ୍ଠୀ ଗଠନ କରନ୍ତି । ତାଙ୍କ ଅପସାରଣ ପାଇଁ ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧୀଙ୍କ ନିକଟରେ ଆପତ୍ତି କରନ୍ତି । କିନ୍ତୁ କିଛି ହୁଏ ନାହିଁ । ଏତେବଡ଼ କେଲେଙ୍କାରୀ ପରେ ରାଜୀବ ଗାନ୍ଧୀ କାହିଁକି ଜାନକୀ ପଟ୍ଟନାୟକଙ୍କୁ ଅପସାରଣ କରୁ ନାହାନ୍ତି ସେ ସମ୍ପର୍କରେ ଓଡ଼ିଶା ରାଜନୀତିକ ମହଲରେ ଦୁଇଟି କାରଣ ଆମକୁ କହିଲେ । ପ୍ରଥମଟି ହେଲା ପ୍ରଣବ ମୁଖାର୍ଜୀ, ଦ୍ୱିତୀୟଟି ହେଲା ଭି.ପି. ସିଂହ । ଇନ୍ଦିରା ଗାନ୍ଧୀଙ୍କ ମୃତ୍ୟୁପରେ ପ୍ରଣବ ପ୍ରଧାନମନ୍ତ୍ରୀ ପଦ ପାଇଁ ଲବି କରୁଥିବା ଶୁଣି ରାଜୀବ ଗାନ୍ଧୀ ତାଙ୍କୁ କଂଗ୍ରେସରୁ ବିଦାକରି ଦେଇଥିଲେ । ଅନ୍ୟପକ୍ଷରେ ଭି.ପି. ସିଂହ କଂଗ୍ରେସରୁ ବାହାରି ଆସି ରାଜୀବ ଗାନ୍ଧୀଙ୍କ ବିରୁଦ୍ଧରେ ବୋଫର୍ସ କେଲେଙ୍କାରୀ ନେଇ ସାରା ଦେଶରେ ପ୍ରଚାରରେ ଓହ୍ଲାଇଥା'ନ୍ତି । ସେତେବେଳେ ଓଡ଼ିଶା କଂଗ୍ରେସରୁ ଭଜମନ ବେହେରା ଓ ଅନାଦି ଦାସ ଭି.ପି. ସିଂହଙ୍କ ଜନମୋର୍ଚ୍ଚାରେ ଯୋଗ ଦେଇଥା'ନ୍ତି । ରାଜୀବ ଗାନ୍ଧୀ ଏହି ଉଭୟ ବିଷୟ ନେଇ ବ୍ୟସ୍ତତା ଭିତରେ ଥା'ନ୍ତି । ମୁଁ ରାଜନୀତିର ଏହି ସମସ୍ତ ଘଟଣା ସମ୍ପର୍କରେ ଅନୁଶୀଳନ କରୁଥାଏ । ସେତେବେଳେ ମୁଁ ମାତୃଭୂମି ଛାଡ଼ି 'ସ୍ୱରାଜ୍ୟ' ଖବର କାଗଜର ସମ୍ପାଦକ ଦାୟିତ୍ୱ ନେଇଥାଏ । ସ୍ୱରାଜ୍ୟର ଦାୟିତ୍ୱ ନେବାବେଳେ ଏହା ଅତ୍ୟନ୍ତ ଶୋଚନୀୟ ଅବସ୍ଥାରେ ଥିଲା । ଦୁଇ/ତିନି ଶହ କାଗଜ ଛପା ହୋଇ କେବଳ ଅସ୍ତିତ୍ୱ ବଜାୟ ରଖିଥାଏ । ମୁଁ ଜଣେ ପେଶାଦାର ସାମ୍ବାଦିକ ରୂପେ କାଗଜ ପ୍ରସାର ବୃଦ୍ଧି କରିବା ପାଇଁ ପ୍ରଥମେ ଦୃଷ୍ଟି ଦେଲି । 'ମାତୃଭୂମି' ପରିଚାଳନା ଭାର କର୍ମଚାରୀମାନେ ନେଲାବେଳେ ଯେପରି ତାକୁ ବଞ୍ଚାଇ ରଖିବା ପାଇଁ ବିଭିନ୍ନ ସଂସ୍ଥା ଓ ସରକାରୀ ବିଜ୍ଞାପନ ଅଧିକ ପରିମାଣରେ ସଂଗ୍ରହ କରି ତାକୁ ଚଳାଇ ନେଇଥିଲି- ସ୍ୱରାଜ୍ୟରେ ସେହିଭଳି ପ୍ରଥମେ ପ୍ରତି ସପ୍ତାହରେ ବିଭିନ୍ନ ବିଷୟ ବିଶେଷ କରି ଶିଳ୍ପ, ଖଣି, ଶିକ୍ଷା ଏବଂ ଉନ୍ନୟନ କାର୍ଯ୍ୟକ୍ରମ ଉପରେ ସ୍ୱତନ୍ତ୍ର ସଂଖ୍ୟା ପ୍ରକାଶ କରି ବଡ଼ବଡ଼ ବିଜ୍ଞାପନ ନିଜେ ବୁଲିବୁଲି ସଂଗ୍ରହ କଲି । ତିନି/ଚାରିମାସ ମଧ୍ୟରେ ବେଶ୍ କିଛି ଟଙ୍କା ହାତକୁ ଆସିବା ପରେ ମୁଁ ଦୈନିକ ହଜାରେ କାଗଜ ଛାପିଲି । ତେବେ ସେତେବେଳେ

ସ୍ୱରାଜ୍ୟକୁ ବିକ୍ରି କରିବା ଅପେକ୍ଷା ସମାଜର ବିଭିନ୍ନ କ୍ଷେତ୍ରରେ ଥିବା ବିଶିଷ୍ଟ ବ୍ୟକ୍ତିମାନଙ୍କ ପାଖକୁ ମାଗଣାରେ ପଠାଗଲା । ଏମ୍‌ଏଲ୍‌ଏ, ଏମ୍‌ପି, ଆଇଏଏସ୍ ସବୁ ବିଭାଗର ମୁଖ୍ୟ କର୍ତ୍ତା, ସବୁ କର୍ପୋରେସନ ଆଦିରେ ମାଗଣାରେ ପଠାଇଲି । ସେକ୍ରେଟେରିଏଟ୍, ହେଡ୍ସ ଅଫ୍ ଡିପାର୍ଟମେଣ୍ଟର ଯେଉଁଠି କର୍ମଚାରୀ, ପିଅନ, ଜମା ହୁଅନ୍ତି ସେଠାରେ କାଗଜ ଦିଆଗଲା । ପ୍ରତିଦିନ ମୁଁ କାଗଜର ପ୍ରଥମ ପୃଷ୍ଠାରେ ରାଜନୀତି ଓ ଦୁର୍ନୀତିକୁ ନେଇ ସ୍ୱତନ୍ତ୍ର ସମ୍ବାଦ ଦେଉଥାଏ । ୧୯୮୬ ଏପ୍ରିଲ ପହିଲାରେ ମୁଁ ସ୍ୱରାଜ୍ୟର ସମ୍ପାଦକ ହେଲି । ଇଲ୍ଲୁଷ୍ଟ୍ରେଟେଡ ଉଇକ୍ଲିର ବିଷୟବସ୍ତୁକୁ ମୁଁ ପ୍ରଥମ ପୃଷ୍ଠାରେ ବାଗେଇ ଚୁନେଇ ପୁରା ଅନୁବାଦ କରି ଦେଲି । ସେତେବେଳେ ଆମର କିଛି ହରାଇବାର ନଥିଲା । କାରଣ ମୁଁ ଯୋଗଦେବା ବେଳକୁ ସ୍ୱରାଜ୍ୟର ଡି.ଏ.ଭି.ପି., ନିଉଜ ପ୍ରିଣ୍ଟ ଏବଂ ଓଡ଼ିଶା ସରକାର ବିଜ୍ଞାପନ ସବୁ କଟି ଯାଇଥିଲା । ଏଠୁ ସେଠୁ ବିଜ୍ଞାପନ ଆଉ ଟଙ୍କା ଆଣି ଚଳାଉଥାଉ । ବରଂ ଭଲ ଖବର ବାହାରିଲେ କେବଳ ପ୍ରସାର ବୃଦ୍ଧି ହେବ ତା' ନୁହେଁ କିଛି କିଛି ସଂସ୍ଥା ବିଜ୍ଞାପନ ମଧ ଦେବେ । ସେତେବେଳେ ସାମ୍ବାଦିକ ରୂପେ ମୁଁ ବିଭିନ୍ନ ମହଲରେ କେବଳ ପରିଚିତ ନଥିଲି ମୋ ନିଜ କାମ ପାଇଁ ଗୁରୁତ୍ୱ ମଧ ବହନ କରିଥିଲି । ମୋର ମନେଅଛି ଯେଉଁଦିନ ଇଲ୍ଲୁଷ୍ଟ୍ରେଟେଡ ଉଇକ୍ଲିର ପୁରା ଖବର ସ୍ୱରାଜ୍ୟର ପ୍ରଥମ ପୃଷ୍ଠାରେଦେଲୁ ସେଦିନ ସନ୍ଧ୍ୟାବେଳେ ବସ୍‌ଷ୍ଟାଣ୍ଡ ଓ ଷ୍ଟେସନରେ ପାଞ୍ଚଶହ କାଗଜ ଅଳ୍ପ ସମୟ ମଧରେ କଟିଗଲା । ସେଇ କାଗଜରୁ ଆଉ ହଜାରେ କାଗଜ ଛାପି ପରଦିନ ସକାଳେ ମଧ ବିକ୍ରି ହୋଇଗଲା । ମୋତେ ଏହି ଘଟଣା ବେଶ୍ ଆତ୍ମସନ୍ତୋଷ ଦେଇଥିଲା ।

ଏହି କଳେଙ୍କାରୀ ଚାଲିବାବେଳେ ୧୯୮୭ ଅଗଷ୍ଟ ୩ ତାରିଖରେ ଚଳଚ୍ଚିତ୍ରରେ ନିଜ ଅଙ୍ଗ ପ୍ରଦର୍ଶନ କରିବାରେ ଖ୍ୟାତି ବା କୁଖ୍ୟାତି ଥିବା ଜଣେ ଦ୍ୱିତୀୟ ଶ୍ରେଣୀର ଅଭିନେତ୍ରୀ ମୁନ୍‌ମୁନ୍ ସେନ୍ ଭୁବନେଶ୍ୱର ଆସି ଜାନକୀବାବୁଙ୍କ ସୁପାରିଶରେ ରାଜ୍ୟ ଅତିଥି ହେଲେ । ବଡ଼ବଡ଼ ଚଳଚ୍ଚିତ୍ର ଅଭିନେତା-ନିର୍ଦ୍ଦେଶକ ଏପରିକି ମୃଣାଳ ସେନଙ୍କ ଭଳି ବ୍ୟକ୍ତିତ୍ୱ ରାଜ୍ୟ ଅତିଥି ହୋଇନଥିବାବେଳେ ମୁନ୍‌ମୁନ୍ ସେନ୍‌ଙ୍କ ଭଳି ଜଣେ ଦ୍ୱିତୀୟ ଶ୍ରେଣୀର ଅଭିନେତ୍ରୀଙ୍କୁ ରାଜ୍ୟ ଅତିଥି କରିବାରେ ଚାରିଆଡ଼େ ସମାଲୋଚନା ଆରମ୍ଭ ହେଲା । ମୁନ୍‌ମୁନ୍‌ଙ୍କ ସମ୍ମାନାର୍ଥେ ଅର୍ଥମନ୍ତ୍ରୀ ଯୁଗଳ ପଟ୍ଟନାୟକ ଏକ ଷ୍ଟେଟ ଡିନର ମଧ ଦେଇଥିଲେ । ଏହା ସେତେବେଳେ ଖୁବ୍ ହଇଚଇ ସୃଷ୍ଟି କରିଥିଲା । ଏ ସମ୍ପର୍କରେ ମୁଁ ଆଜ୍‌କାଲ୍‌ରେ ଏକ ବଡ଼ ଖବର ଦେଲି । ଏହା ସେତେବେଳେ ଚାରିଆଡ଼େ ଚର୍ଚ୍ଚାର ବିଷୟ ହୋଇଥିଲା ଏବଂ ଉଇକ୍ଲି ସାଙ୍ଗକୁ ମୁନ୍‌ମୁନ୍ ସେନ୍ ଉପାଖ୍ୟାନ ସାରା ରାଜ୍ୟରେ ଆମୋଦଦାୟକ ପ୍ରଚାରରେ ପରିଣତ ହୋଇଥିଲା ।

ଜାନକୀବାବୁଙ୍କ ଦ୍ୱିତୀୟ ପର୍ଯ୍ୟାୟ ମୁଖ୍ୟମନ୍ତ୍ରୀତ୍ୱ ତାଙ୍କ ପାଇଁ ଏବଂ କଂଗ୍ରେସ ଦଳ ପାଇଁ କଠୋର ପରୀକ୍ଷାର ସମୟ ଥିଲା । ଏହି ସମୟ ସାମ୍ବାଦିକମାନଙ୍କ ପାଇଁ ଅତ୍ୟନ୍ତ ବ୍ୟସ୍ତତାର ସମୟ ଥିଲା । ପ୍ରତି ମୁହୂର୍ତ୍ତରେ କଂଗ୍ରେସ ଦଳ ଭିତରେ ଅସନ୍ତୁଷ୍ଟ କାର୍ଯ୍ୟକଳାପ ବୃଦ୍ଧି ପାଉଥିଲା । ମାତ୍ର ଜାନକୀବାବୁଙ୍କ ସୌଭାଗ୍ୟକୁ ରାଜୀବ ଗାନ୍ଧୀ ତାଙ୍କ ସପକ୍ଷରେ ଥିଲେ । ବସ୍ତୁତଃ ରାଜୀବ ଗାନ୍ଧୀ ତାଙ୍କୁ ଉଇକ୍ଲି ବିରୁଦ୍ଧରେ ମୋକଦ୍ଦମା କରିବାକୁ ପରାମର୍ଶ ଦେଇଥିଲେ ବୋଲି ଜଣେ ବିଶିଷ୍ଟ କଂଗ୍ରେସ ନେତା ଆମକୁ କହିଥିଲେ ।

ମୋକଦ୍ଦମା ଭୁବନେଶ୍ୱର ସବ୍ ଜଜ୍ ମୁକୁନ୍ଦ ପ୍ରସାଦ ମିଶ୍ରଙ୍କ ଅଦାଲତରେ ଦାୟର ହୋଇଥିଲା । ମକଦ୍ଦମା ଚାଲିଥିବା ସମୟରେ ଗଙ୍ଗାଧର ରଥ ମୋକଦ୍ଦମା ଦାୟିତ୍ୱରୁ ଓହରି ଗଲେ । ତା'ର କାରଣ ହେଉଛି କୋର୍ଟରେ ରଣଜିତ୍ ମହାନ୍ତି ଯେପରି ତରୁଣମାନଙ୍କୁ ଆଣି ସାକ୍ଷୀ ଭାବରେ ଉପସ୍ଥାପିତ କରୁଥିଲେ ଏବଂ ସେମାନେ

ଜାନକୀବାବୁଙ୍କ ଅସ୍ୱାଭାବିକ ଚାରିତ୍ରିକ ଆଚରଣ ସମ୍ପର୍କରେ ଯେପରି ଖୋଲା ବୟାନ ଦେଉଥିଲେ ସେଥିରେ ମୋକଦ୍ଦମା ପରିଚାଳନା କରିବା ଗଙ୍ଗାଧରବାବୁଙ୍କ ପାଇଁ ଅସୁବିଧା ସୃଷ୍ଟି ହୋଇଥିଲା । ଗଙ୍ଗାଧରବାବୁ ଓହରି ଯିବା ପରେ ବାରିଷ୍ଟର ବୀରେନ୍ଦ୍ର ମୋହନ ପଟ୍ଟନାୟକ ଏ ମୋକଦ୍ଦମା ପରିଚାଳନା କରିଥିଲେ ।

ଅନ୍ୟପକ୍ଷରେ ଇଲୁଷ୍ଟ୍ରେଟେଡ ଉଇକ୍ଲି ପକ୍ଷରୁ ଏ ମୋକଦ୍ଦମାଟି ହାଇକୋର୍ଟର ଜଣେ ବିଚାରପତିଙ୍କ ଦ୍ୱାରା ବିଚାର କରାଯିବାକୁ ୧୯୮୭ ଏପ୍ରିଲ ମାସରେ ଓଡ଼ିଶା ହାଇକୋର୍ଟରେ ଆବେଦନ କରାଯାଇଥିଲା । ହାଇକୋର୍ଟ ଏହା ଗ୍ରହଣ କରି ବିଚାରପତି କୃଷ୍ଣ ପ୍ରସାଦ ମହାପାତ୍ରଙ୍କୁ ଏହାର ବିଚାର ଭାର ଦେଇଥିଲେ । ଏହି ବିଚାର ଚାଲିଥିବାବେଳେ ଇଲୁଷ୍ଟ୍ରେଟେଡ ଉଇକ୍ଲି କର୍ତ୍ତୃପକ୍ଷ କୁଆଡ଼େ କଂଗ୍ରେସ ଉଚ୍ଚକର୍ତ୍ତୃପକ୍ଷଙ୍କ ଚାପରେ ତାଙ୍କୁ ଭୁଲ୍ ସ୍ୱୀକାର କରିବାକୁ ଜାନକୀବାବୁ ମୋକଦ୍ଦମା ପ୍ରତ୍ୟାହାର କରିନେଇଥିଲେ । ମାତ୍ର ଏହି ମୋକଦ୍ଦମା ପ୍ରତ୍ୟାହାର କରି ନିଆଯିବା ପରେ ପରେ ପରବର୍ତ୍ତିସଂଖ୍ୟାରେ ସମ୍ପାଦକ ପ୍ରୀତିଶ ନନ୍ଦ ତାଙ୍କ ସମ୍ପାଦକୀୟରେ ଲେଖିଥିଲେ, ଯେଉଁ ସମ୍ବାଦ ଜାନକୀ ପଟ୍ଟନାୟକଙ୍କ ବିରୁଦ୍ଧରେ ପ୍ରକାଶ ପାଇଥିଲା ସେଥିରେ ସେ ଦୁଃଖିତ ନୁହନ୍ତି । କାଗଜର ମାଲିକ ଦୁଃଖ ପ୍ରକାଶ କରିଥାଇ ପାରନ୍ତି, ମାତ୍ର ସେ ଦୁଃଖିତ ନୁହନ୍ତି । ସେ ବିଚାର କରନ୍ତି ସମ୍ବାଦରେ କିଛି ଭୁଲ୍ ନଥିଲା ।

ବିବାଦ ଜାନକୀବାବୁଙ୍କ ପିଛା ଛାଡୁନଥିଲା । ତାଙ୍କ ବିରୁଦ୍ଧରେ ବସନ୍ତ ବିଶ୍ୱାଳ ଲାଗିଥିବାବେଳେ ପ୍ରଦେଶ କଂଗ୍ରେସ କମିଟି ସଭାପତି ନିତ୍ୟାନନ୍ଦ ମିଶ୍ର ଓ ପରବର୍ତ୍ତିସଭାପତି କାହ୍ନୁ ଚରଣ ଲେଙ୍କା ମଧ ଉଠିପଡ଼ି ଲାଗିଥିଲେ । ବିଧାୟକମାନଙ୍କ ମଧ୍ୟରେ ବହୁ ଗୋଷ୍ଠୀ ସୃଷ୍ଟି ହୋଇଥିଲା । ବସନ୍ତବାବୁ କ୍ଷମତାରେ ବା ବିଧାନସଭାରେ ନଥିଲେ ମଧ ବେଶ୍ କିଛି ସଂଖ୍ୟକ ବିଧାୟକ ତାଙ୍କ ସହ ରହିଥିଲେ । ଜାନକୀବାବୁଙ୍କ ଦ୍ୱିତୀୟ ଦଫା କାର୍ଯ୍ୟକାଳ ଆରମ୍ଭରୁ ଦୁଇବର୍ଷ ପର୍ଯ୍ୟନ୍ତ ବଲାଙ୍ଗୀରର ନିତ୍ୟାନନ୍ଦ ମିଶ୍ର କଂଗ୍ରେସ ସଭାପତି ଥିଲେ । ତାଙ୍କ ପରେ କାହ୍ନୁ ଲେଙ୍କା ସଭାପତି ହେଲେ । ସେ ମଧ ଜାନକୀବାବୁଙ୍କ ଘୋର ବିରୋଧୀ । ମୁଁ ଦିନେ ନିତ୍ୟାନନ୍ଦ ମିଶ୍ରଙ୍କୁ ଏକ ସାକ୍ଷାତକାର କରି ଜାନକୀବାବୁଙ୍କୁ ବିରୋଧ କରିବାର ମୂଳ କାରଣ ଜାଣିବାକୁ ଚାହିଁଥିଲି । ସେ ଯେଉଁ ଉତ୍ତର ଦେଇଥିଲେ ସେଥିରେ ଯୁକ୍ତି ଥିଲା । ତାଙ୍କ ମତ ଥିଲା ଜାନକୀବାବୁ ଏକ ପରିବାରତନ୍ତ୍ର ଗଠନ କରିଛନ୍ତି । ରାଜ୍ୟରେ ଉନ୍ନୟନ କାମ ସମ୍ପୂର୍ଣ୍ଣ ବନ୍ଦ ହୋଇଯାଇଛି । ସେ ଏବଂ ତାଙ୍କ ପରିବାର ଓ ବନ୍ଧୁବାନ୍ଧବ ବିଭିନ୍ନ ବାଟରେ ଟଙ୍କା ଆଦାୟ କରି ଚାଲିଛନ୍ତି । ଚାରିଆଡ଼େ ଏକଥା ସମସ୍ତେ ଜାଣିଛନ୍ତି । ଏହିଭଳି ଯଦି ଚାଲେ ତେବେ ଆସନ୍ତା ନିର୍ବାଚନରେ କଂଗ୍ରେସ ଶୂନ୍ୟ ହୋଇଯିବ । ନିତ୍ୟାନନ୍ଦ ବାବୁ ସେତେବେଳେ ଲୋକସଭା ସଦସ୍ୟ ଥିଲେ । କେବଳ ନିତ୍ୟାନନ୍ଦ ମିଶ୍ର ନୁହନ୍ତି, କେନ୍ଦ୍ର ସ୍ୱରାଷ୍ଟ୍ର ଦପ୍ତର ରାଷ୍ଟ୍ରମନ୍ତ୍ରୀ ଚିନ୍ତାମଣି ପାଣିଗ୍ରାହୀ, ଅନାଦି ଦାସ, ବନମାଳିବାବୁ ଏବଂ ବ୍ରଜମୋହନ ମହାନ୍ତି(ସମସ୍ତେ ଏମ୍.ପି.) ପ୍ରମୁଖ ବିଶିଷ୍ଟ ନେତାମାନେ ଜାନକୀବାବୁଙ୍କର ଘୋର ବିରୋଧୀ ଥିଲେ ।

ମୋର ଯାହା ମନେପଡୁଛି ୧୯୮୭ ଏପ୍ରିଲ୍ ମାସ ୨୮ ତାରିଖରେ ମୁଁ ନ୍ୟାସନାଲ୍ ୟୁନିୟନ ଅଫ୍ ଜର୍ଣ୍ଣାଲିଷ୍ଟ(ଇଣ୍ଡିଆ)ର ଉପସଭାପତି ଥିବାବେଳେ ଚଣ୍ଡୀଗଡ଼ ଠାରେ ଅନୁଷ୍ଠିତ ହେଉଥିବା କାର୍ଯ୍ୟକାରୀ ବୈଠକରେ ଯୋଗ ଦେବାପାଇଁ ଦିଲ୍ଲୀ ଯାଇଥିଲି । ଦିଲ୍ଲୀରୁ ଆମେ କାର୍ ଯୋଗେ ଚଣ୍ଡୀଗଡ଼ ତା'ପରଦିନ ଯାଇ ରହି ୩୦ ତାରିଖରେ ବୈଠକରେ ଯୋଗଦେବୁ । ମୁଁ ଦିଲ୍ଲୀ ଓଡ଼ିଶା ଭବନରେ ରହିବା ଦିନ ୨ଟାରେ ପହଞ୍ଚିବାବେଳେ ଦେଖିଲି ସମସ୍ତେ କର୍ମ ତତ୍ପର । କ'ଣ ହେଉଛି ବୋଲି ମ୍ୟାନେଜରଙ୍କୁ ପଚାରିବା ବେଳେ ସେ କହିଲେ ଆଜି ସନ୍ଧ୍ୟାରେ ମୁଖ୍ୟମନ୍ତ୍ରୀ ଜାନକୀବାବୁ ଏମ୍.ପି.ମାନଙ୍କୁ ଏକ ଭୋଜିରେ ଆପ୍ୟାୟିତ କରିବେ । ଓଡ଼ିଶା ଭବନ ଲବିରେ ମିଟିଂ ହୋଇ ଲନ୍‌ରେ ଡିନର ବ୍ୟବସ୍ଥା ହୋଇଥିଲା । ସେତେବେଳେ ଲୋକସଭାରେ ଓଡ଼ିଶା କଂଗ୍ରେସର ୨୦ଜଣ ଏମ୍.ପି. ଥିଲେ ।

ବିରୋଧୀ ଦଳରୁ କେବଳ ବିଜୁ ପଟ୍ଟନାୟକ ଏକମାତ୍ର ଜନତା ଦଳ ସଦସ୍ୟ ଥିଲେ । ଆଉ ଏକ ଉଲ୍ଲେଖଯୋଗ୍ୟ ବିଷୟ ହେଲା ସେତେବେଳେ ରାଜ୍ୟସଭାର ସମସ୍ତ ଏମ୍.ପି. କଂଗ୍ରେସ ଦଳର ଥିଲେ । ତେଣୁ ପାର୍ଲାମେଣ୍ଟରେ ଓଡ଼ିଶାର ୩୧ଜଣ(ଲୋକସଭା ୨୧ ଓ ରାଜ୍ୟସଭା ୧୦) ଏମ୍.ପି.ଙ୍କ ମଧ୍ୟରୁ ୩୦ଜଣ କେବଳ କଂଗ୍ରେସ ଦଳର ଥିଲେ । ମୁଁ ମୋ ରୁମ୍‌କୁ ଯାଇ ଲୁଗାପଟା ବଦଳି ଶୋଇଗଲି । କାରଣ ବିମାନରେ ଲଞ୍ଚ୍ ଖାଇଥିଲି । ସେଦିନ ସନ୍ଧ୍ୟାରେ ଓଡ଼ିଶା ଭବନ ବେଶ୍ ଗହଳି ଥିଲା । ଅଧିକାଂଶ ଏମ୍.ପି.ଙ୍କ ସହ ଦେଖାହେଲା । ସମସ୍ତେ ଭାବିଲେ ମୁଁ ମୁଖ୍ୟମନ୍ତ୍ରୀଙ୍କ ସାଙ୍ଗରେ ଆସିଛି । ସେଦିନ ଦିଲ୍ଲୀରେ ମୋଟ ୨୩ଜଣ ଏମ୍.ପି. ଥିଲେ ବୋଲି ମୋତେ ଡାକ୍ତର କୃପାସିନ୍ଧୁ ଭୋଇ କହିଲେ । ତେବେ ଏହି ବନ୍ଧୁମିଳନକୁ ମୁଁ ଉପରେ ଯେଉଁ ପାଞ୍ଚଜଣଙ୍କ ନାମ ଦେଇଛି ସେମାନେ କେହି ଆସି ନଥିଲେ । ତେଣୁ ବନ୍ଧୁ ମିଳନରେ ମୋଟ ୧୮ଜଣ ଏମ୍.ପି. ଥିଲେ । ଅବଶ୍ୟ ଡିନର ପାଇଁ ମୋତେ ନିମନ୍ତ୍ରଣ ମିଳିଥିଲା । ଖୋଦ୍ ଜାନକୀବାବୁ ମୋତେ ଦେଖି ନିମନ୍ତ୍ରଣ କରିଥିଲେ ।

ମୁଁ ପରଦିନ ସକାଳ ସାଢ଼େ ଦଶଟାରେ ପାର୍ଲାମେଣ୍ଟ ଷ୍ଟ୍ରିଟ୍‌ରେ ଥିବା ଏନ୍.ୟୁ.ଜେ. ଅଫିସ୍‌କୁ ଗଲି । ସେତେବେଳେ କଲିକତା ଆନନ୍ଦବଜାର ପତ୍ରିକାର ଆସୋସିଏଟ୍ ଏଡିଟର ଅରୁଣ ବାଗ୍‌ଚୀ ଆମର ସଭାପତି ଥିଲେ । ରାଜେନ୍ଦ୍ର ପ୍ରଭୁ ସେକ୍ରେଟାରୀ ଜେନେରାଲ୍ ଥିଲେ । ଅଫିସ୍‌ରେ ପହଞ୍ଚିବା ବେଳକୁ ଅନେକ ବନ୍ଧୁ ଆସିଯାଇଥିଲେ । ମୋତେ ଦେଖି ସମସ୍ତେ ହୋ ହୋ ହୋଇ କହିଲେ ଆଇଏ ଆଇଏ ଧଲ୍ ସାହେବ । ସମସ୍ତଙ୍କ ସହ କରମର୍ଦ୍ଦନ କରି ମୋର ସ୍ଥାନ ନେଲି । ଏନ୍.ୟୁ.ଜେ.ରେ ସମସ୍ତେ ବେଶ୍ ଜମାଣିଆ ଲୋକ । ଏପ୍ରିଲ୍‌ରେ ଦିଲ୍ଲୀରେ ସେତେ ଖରା ନଥାଏ । ପାଗ ଭଲ ଥାଏ । ମୁଁ ପହଞ୍ଚିବା ପରେ ପରେ ବାଗଚୀ ଦା ଆସିଲେ । ମୋତେ ଦେଖି କହିଲେ ବରେନ୍ ଯା'ହୋକ୍ ତୋମାର ସଙ୍ଗେ ଦେଖା ହଲ୍ । ମୁଁ କହିଲି କାହିଁକି ମୁଁ ତ ଆସିବା କଥା । ସେ କହିଲେ ନା ନା ତା' ନୟ ଆମି ଭୁବନେଶ୍ୱର ଆର୍ ପୁରୀ ଯାବୋ । ଆମାର ଆକାର ଜନ୍ୟ ବ୍ୟବସ୍ଥା କରେ ଦେବେ । ସମସ୍ତେ ଆସି ଯାଇଥିଲେ । ଚଣ୍ଡୀଗଡ଼ ଯିବା କଥା ପଡ଼ିଲା । ସ୍ଥିର ହେଲା ଦିଲ୍ଲୀରୁ ସମସ୍ତେ କାର୍‌ରେ ଯିବେ । ଆମେ କାର୍ଯ୍ୟକାରୀ କମିଟିରେ ମୋଟ ତିରିଶଜଣ ସଭ୍ୟ ଥିଲୁ । ସାତୋଟି ଆମ୍ବାସାଡାର ଗାଡ଼ି ବ୍ୟବସ୍ଥା ହେଲା । ସେହିଦିନ ସାଢ଼େ ୩ଟା ୪ଟା ବେଳକୁ ଯିବା କଥା ସ୍ଥିର ହେଲା ।

ସେଦିନ ସନ୍ଧ୍ୟା ସାଢ଼େ ୭ଟା ସୁଦ୍ଧା ଚଣ୍ଡିଗଡ଼ରେ ପହଞ୍ଚିଗଲୁ । ଚଣ୍ଡିଗଡ଼ ସାମ୍ବାଦିକ ବନ୍ଧୁମାନେ ଆମ ରହଣି ପାଇଁ ଏକ ଷ୍ଟାର୍ ହୋଟେଲ୍ ବ୍ୟବସ୍ଥା କରିଥିଲେ । ସମସ୍ତେ ନିଜ ନିଜ ରୁମ୍ ଦଖଲ କଲୁ । ପରଦିନ କାର୍ଯ୍ୟକାରୀ କମିଟି ବୈଠକ ସକାଳ ସାଢ଼େ ଦଶଟାରେ ହେବ । ସେଇ ହୋଟେଲ୍‌ର ସମ୍ମିଳନୀ କକ୍ଷରେ ବୈଠକ ହେବ ।

ପରଦିନ ସକାଳେ ଆମେ ସମ୍ମିଳନୀ କକ୍ଷକୁ ଗଲୁ । ସମସ୍ତେ ବସିଲୁ । ସାଢ଼େ ଦଶଟା ହେଲା । ଅପେକ୍ଷା କେବଳ ସଭାପତି ଅରୁଣ ବାଗ୍‌ଚୀଙ୍କୁ । ଏଗାରଟା ବାଜିଲା । ହଠାତ୍ କଲିକତାର ଆନନ୍ଦ ବଜାର ସାମ୍ବାଦିକ ରାଧାକାନ୍ତ ଆସି ଖବର ଦେଲେ ଅରୁଣ ବାଗ୍‌ଚୀଙ୍କ ପ୍ରବଳ ଶ୍ୱାସ କଷ୍ଟ ହେବାରୁ ତାଙ୍କୁ ହସ୍‌ପିଟାଲ୍‌ରେ ଭର୍ତ୍ତିକରାଯାଇଛି । ସେ ଧୀରେଧୀରେ ସୁସ୍ଥ ହେଉଛନ୍ତି । ସମସ୍ତେ ଉଦ୍‌ବିଗ୍ନ ହୋଇପଡ଼ିଲୁ । ପାଞ୍ଚମିନିଟ୍ ବାଦ୍ ଅସୀମ ମିତ୍ର ଆସି କହିଲେ ଦାଦା ଭଲ ଅଛନ୍ତି । କହିଛନ୍ତି ବରେନ୍‌ବାବୁଙ୍କୁ ସଭାପତି କରି ମିଟିଂ ଆରମ୍ଭ କରିବାପାଇଁ । ସମସ୍ତେ ଆଶ୍ୱସ୍ତ ହେଲୁ । ମୁଁ ସଭାପତିତ୍ୱ କରିବା ପାଇଁ ଦିଲ୍ଲୀ ସଂଘ ସଭାପତି କେ.ଏନ୍. ଗୁପ୍ତା ପ୍ରସ୍ତାବ କଲେ ଏବଂ ଡଃ ନନ୍ଦକିଶୋର ତ୍ରିଖା ତାଙ୍କୁ ସମର୍ଥନ କଲେ । ମୁଁ ସଭାପତି ଆସନ ଗ୍ରହଣ କଲି ।

ସେଇ ପ୍ରଥମଥର ପାଇଁ ମୁଁ ଏନ୍.ୟୁ.ଜେ.ର କାର୍ଯ୍ୟକାରୀ କମିଟି ବୈଠକରେ ସଭାପତିତ୍ୱ କଲି । ବେଶ୍ ଆତ୍ମତୃପ୍ତି ଲାଗିଲା । କାର୍ଯ୍ୟକାରୀ କମିଟିର ଦୁଇଦିନ ଯାକ ବୈଠକରେ ମୁଁ ସଭାପତି ହେଲି । ଏନ୍.ୟୁ.ଜେ.ର ଚାରିଜଣ ଉପ ସଭାପତି । ତେବେ କେଜାଣି କାହିଁକି ସମସ୍ତେ ମୋତେ ସମର୍ଥନ କରିବାରେ ମୁଁ ନିଜେ ବିସ୍ମିତ ହେଲି । ଯାହାହେଉ ଜୀବନରେ ଏହା ଏକ ଅଧ୍ୟାୟ । କାର୍ଯ୍ୟକାରୀ କମିଟି ବୈଠକ ବିବରଣୀ ସମସ୍ତ ବଡ଼ବଡ଼ ଖବର କାଗଜରେ ପ୍ରକାଶ ପାଇଲା । ମୋର ସଭାପତିତ୍ୱ କରୁଥିବା ଫଟୋ ମଧ୍ୟ ପ୍ରକାଶ ପାଇଲା । ସର୍ବଭାରତୀୟ ସ୍ତରରେ ଏ ପ୍ରକାର ସମ୍ମାନ ସ୍ୱାଭାବିକ ଭାବେ କେବଳ ଈଶ୍ୱରଙ୍କ ଆଶୀର୍ବାଦ ଛଡ଼ା ଆଉ କିଛି ନୁହେଁ ।

ମୁଁ ଦୁଇଦିନ ପରେ ଭୁବନେଶ୍ୱର ଫେରି ଆସିଲି । ଫେରି ଆସି ଢେଙ୍କି ଧାନ ଚଷିବା ଭଳି ସାମ୍ବାଦିକତାରେ ମନ ଦେଲି । ଜାନକୀବାବୁଙ୍କ ବିରୁଦ୍ଧରେ ସେଇ ଅବସ୍ଥା ଥାଏ । ଅସନ୍ତୁଷ୍ଟ ବିଧାୟକମାନେ କେତେବେଳେ ବସନ୍ତବାବୁଙ୍କ ଘରେ ଆଉ କେତେବେଳେ ଗଙ୍ଗାଧର ମହାପାତ୍ରଙ୍କ ଘରେ ମିଳିତ ହୋଇ ସେମାନଙ୍କ ବିରୋଧୀ କାର୍ଯ୍ୟକ୍ରମ ଜାରି ରଖଥା'ନ୍ତି । ୧୯୮୭ରେ ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟିର ସଭାପତି କାହ୍ନୁ ଚରଣ ଲେଙ୍କା ମନୋନୀତ ହେଲେ । ସେ ମଧ୍ୟ ଜାନକୀବାବୁଙ୍କ ତୀବ୍ର ବିରୋଧୀ ହୋଇପଡ଼ିଲେ । ଅନ୍ୟପକ୍ଷରେ ସେତେବେଳେ ବିରୋଧୀ ଦଳ ସମ୍ପୂର୍ଣ୍ଣ ନିଷ୍କ୍ରିୟ ଥିଲେ । ବିଜୁ ପଟ୍ଟନାୟକ ବିରୋଧୀ ଦଳ ନେତା ଥିଲେ । ନଳିନୀ ମହାନ୍ତି, ବିଜୟ ମହାପାତ୍ର ଓ ଶ୍ରୀକାନ୍ତ ଜେନାଙ୍କ ବ୍ୟତୀତ ଆଉ କୌଣସି ଟାଣୁଆ ନେତା ବିଧାନସଭାରେ ନଥିଲେ । ଅଶୋକ ଦାସ, ଦାମ ରାଉତ, ଉମେଶ ସ୍ୱାଇଁ, ପ୍ରତାପ ମହାନ୍ତି, ଶରତ କର ଓ କାଳିନ୍ଦି ବେହେରା ପ୍ରମୁଖ ନିର୍ବାଚନରେ ହାରି ଯାଇଥିବାରୁ ବିରୋଧୀ ଦଳ ବିଶେଷ ଭୂମିକା ନେଇପାରୁ ନଥିଲେ । ତେବେ କଂଗ୍ରେସ ଦଳର ବିଧାୟକଙ୍କ ମଧ୍ୟରୁ ଅନେକ ମୁଖ୍ୟମନ୍ତ୍ରୀଙ୍କ ବିରୋଧୀ ଥିଲେ ।

ସେତେବେଳେ ମୋର ଭୂମିକା ଭିନ୍ନ ଥିଲା । ଗୋଟିଏ ପଟେ ସ୍ୱରାଜ୍ୟର ସମ୍ପାଦକ ରୂପେ ମୋର ସାମ୍ବାଦିକ କ୍ରିୟା ଠିକ୍ ବାଟରେ ଚଳାଇବାବେଳେ ଲେଖକ ସାମ୍ମୁଖ୍ୟ ସାଧାରଣ ସମ୍ପାଦକ ରୂପେ ସାହିତ୍ୟୋତ୍ସବ ପାଇଁ ଜାନକୀବାବୁଙ୍କ ସାହାଯ୍ୟ ନେବାକୁ ପଡୁଥିଲା । ରାଜ୍ୟର ପ୍ରାନ୍ତୀୟ ଅଞ୍ଚଳରେ ପ୍ରତିବର୍ଷ ସାହିତ୍ୟୋତ୍ସବ କରାଯାଉଥିବାରୁ ପ୍ରଶାସନ ଓ ମନ୍ତ୍ରୀମାନଙ୍କର ସାହାଯ୍ୟ ନେବାକୁ ପଡୁଥିଲା ।

## -କେନ୍ଦୁଝର ସାହିତ୍ୟୋତ୍ସବ-

୧୯୮୬ ଡିସେମ୍ବର ୨୪, ୨୫ ଓ ୨୬ ତାରିଖରେ କେନ୍ଦୁଝରରେ ସାହିତ୍ୟୋତ୍ସବ ଆୟୋଜନ କରାଯାଇଥିଲା । ଏହି ଉତ୍ସବରେ ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟର କୁଳପତି ବିଖ୍ୟାତ ଐତିହାସିକ ପ୍ରଫେସର ନିମାଇଁ ସାଧନ ବସୁ ଏବଂ ପ୍ରସିଦ୍ଧ ବଙ୍ଗୀୟ କବି ଓ ଔପନ୍ୟାସିକ ସୁନିଲ ଗଙ୍ଗୋପାଧ୍ୟାୟ ବିଶିଷ୍ଟ ଅତିଥି ରୂପେ ଯୋଗ ଦେଇଥା'ନ୍ତି । ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଉତ୍ସବକୁ ଉଦ୍‌ଘାଟନ କରିବାର କାର୍ଯ୍ୟକ୍ରମ ଥାଏ । ମାତ୍ର ଇଲୁଷ୍ଟ୍ରେଟେଡ ଉଇକ୍ଲି କେଲେଙ୍କାରୀ ଯୋଗୁଁ ଆମେ ଦ୍ୱନ୍ଦ୍ୱରେ ଥିଲୁ । ତେବେ ଜାନକୀବାବୁଙ୍କୁ ନଡାକିଲେ ସାହିତ୍ୟୋତ୍ସବ କରିବା ଅସମ୍ଭବ । କିଛି ଚିନ୍ତା ନକରି ଆମେ ଜାନକୀବାବୁଙ୍କ ନାମ ଛାପି ଦେଲୁ ।

ସେଥର ସାହିତ୍ୟୋତ୍ସବ ବେଶ୍ ଆଡ଼ମ୍ବରପୂର୍ଣ୍ଣ ଢଙ୍ଗରେ ହେଲା । ଓଡ଼ିଶା ସରକାରଙ୍କ ପକ୍ଷରୁ ଶାନ୍ତି ନିକେତନ ଓଡ଼ିଆ ବିଭାଗ ପାଇଁ ଛ'ଲକ୍ଷ ଟଙ୍କାର ଏକ ଡ୍ରାଫ୍ଟ ନିମାଇ ସାଧନ ବସୁଙ୍କୁ ଅର୍ପଣ କରାଗଲା । ସେହିବର୍ଷ ଏପ୍ରିଲ

ମାସରେ ଲେଖକ ସାମ୍ମୁଖ୍ୟର ଏକ ସାହିତ୍ୟିକ ଦଳ ଶାନ୍ତି ନିକେତନ ଯାଇଥିଲେ । ଜାନକୀବାବୁ ମଧ ନିମାଇଁ ସାଧନ ବାବୁଙ୍କ ନିମନ୍ତ୍ରଣ ପାଇ ଶାନ୍ତି ନିକେତନ ଯାଇଥିଲେ । ସେତେବେଳେ ଓଡ଼ିଆ ବିଭାଗ ଅଧକ୍ଷ ଥା'ନ୍ତି ପ୍ରଫେସର ଖଗେଶ୍ୱର ମହାପାତ୍ର । ସେଇଠି ଓଡ଼ିଆ ବିଭାଗ ଓ ଶାନ୍ତି ନିକେତନ ପକ୍ଷରୁ ବିଭାଗର ଉନ୍ନତି ପାଇଁ ଅର୍ଥ ସାହାଯ୍ୟ ଦେବାକୁ ମୁଖ୍ୟମନ୍ତ୍ରୀଙ୍କୁ ଅନୁରୋଧ କରାଯାଇଥିଲା । ସେଇ ପ୍ରତିଶ୍ରୁତି ଅର୍ଥ କେନ୍ଦୁଝର ସାହିତ୍ୟୋତ୍ସବରେ ଦିଆଗଲା ।

ନିମାଇଁ ବାବୁ ମଧ୍ୟାହ୍ନ ଭୋଜନ ପରେ ଜାନକୀବାବୁଙ୍କ ସହ ହେଲିକେପ୍ଟରରେ ଭୁବନେଶ୍ୱର ଫେରି ଆସି ସେହି ରାତିରେ କଲିକତା ଫେରିଗଲେ । ମାତ୍ର ସୁନିଲ ଗଙ୍ଗୋପାଧ୍ୟାୟ ତିନିଦିନଯାକ କେନ୍ଦୁଝର ସର୍କିଟ ହାଉସ୍‌ରେ ଥିଲେ । ତାଙ୍କର ଉଦ୍ଦେଶ୍ୟ ଥିଲା କେନ୍ଦୁଝରର ଦର୍ଶନୀୟ ସ୍ଥାନ ବିଶେଷ କରି ଜଙ୍ଗଲ ଦେଖି ପରବର୍ତ୍ତିଉପନ୍ୟାସ ପାଇଁ କାହାଣୀ ଯୋଗାଡ଼ କରିବା ।

କେନ୍ଦୁଝର ସାହିତ୍ୟୋତ୍ସବ ଆରମ୍ଭ ଦିନ ବେଶ୍ ଅସରାଏ ବର୍ଷା ହୋଇଗଲା । ଫଳରେ ଟାଉନ୍ ହଲ୍ ସାମ୍‌ନାରେ ହୋଇଥିବା ସାଜସଜ୍ଜା ପ୍ରାୟ ନଷ୍ଟ ହୋଇଗଲା । ତେବେ ଆଉ ଏକ ବଡ଼ ସମସ୍ୟା ଉପୁଜିଲା ତା' ହେଉଛି ସେଦିନ ଲଞ୍ଚ ପାଇଁ ଟାଟା କମ୍ପାନୀ ଯେଉଁ କ୍ୟାଟରରଙ୍କୁ ଦାୟିତ୍ୱ ଦେଇଥିଲେ ସେ ଆସିଲା ନାହିଁ । ମହାବିପଦ । କ'ଣ ହେବ । ମୁଁ କେନ୍ଦୁଝରର କିଛି ବନ୍ଧୁଙ୍କୁ ଏକଥା କହିଲି । ସେମାନେ ଲାଗିପଡ଼ିଲେ । ଜଣେ କହିଲା ପନ୍ଦର କିଲୋମିଟର ଦୂରରେ ମାଛ ମରାହେଉଛି । ମୁଁ ଦୁଇଜଣଙ୍କୁ ଜିପ୍ ଦେଇ ପଠାଇଲି । ପୂଜାରୀ ଟହଲିଆ ଯୋଗାଡ଼ ହୋଇଗଲେ । ସେଦିନ ହାଟପାଳି । ହାଟରୁ ଘଣ୍ଟାକ ଭିତରେ ପରିବା ଚାଉଳ ତେଲ ଲୁଣ ମସଲା ସବୁ ଯୋଗାଡ଼ ହୋଇଗଲା । ଦିନ ସାଢ଼େ ୧୧ଟା ବେଳକୁ ବଡ଼ ବଡ଼ ମାଛ ଦି' କୁଇଣ୍ଟାଲ ଆସିଗଲା । ରୋଷେଇ ଆରମ୍ଭ ହେଲା । ରୋଷେଇ ସରୁସରୁ ଦିନ ଦୁଇଟା । ସମସ୍ତେ ବସିଗଲେ । ମୋର ମନେହୁଏ ସେଦିନ ସେ ଖାଇବା ଏତେ ତୃପ୍ତିକର ହେଲା ସମସ୍ତେ ବାହାବା କଲେ ।

ଟାଉନ୍ ହଲ୍ ଭିତରେ ସଭା ହେଲା । ସେଥର ପ୍ରାୟ ପାଞ୍ଚଶହ ଡେଲିଗେଟ୍ ଯାଇଥିଲେ । ସାହିତ୍ୟୋତ୍ସବର ମାଦକତା ହେଉଛି ସମଗ୍ର ରାଜ୍ୟରୁ ଲେଖକ ଲେଖିକାଙ୍କର ବିପୁଳ ସମାବେଶ । ଭାବ ଆଦାନ ପ୍ରଦାନ ସାଙ୍ଗକୁ ଲେଖକ-ଲେଖିକାଙ୍କର ପତ୍ରିକା ସମ୍ପାଦକମାନଙ୍କ ସହ ପରିଚୟ ଘଟେ । ଲେଖା ମାଧ୍ୟମରେ ପରସ୍ପର ନାମ ଜାଣିଥିବା ଲେଖକ-ଲେଖିକା ଦଳ ଦଳ ହୋଇ ହସଖୁସିରେ ଆଳାପ-ଆଲୋଚନା କରନ୍ତି । ସାହିତ୍ୟୋତ୍ସବର ଏଇ ହେଉଛି ଗୁରୁତ୍ୱ ଆଉ ମାଦକତା ।

କେନ୍ଦୁଝରରେ ପ୍ରଥମ ଦିନ ସନ୍ଧ୍ୟାରେ ସର୍କିଟ୍ ହାଉସ୍‌ରେ ଆମର କିଛି ବିଶିଷ୍ଟ ଲେଖକଙ୍କୁ ନେଇ ଏକ ମଦ୍ୟପାନ ଆସରର ଆୟୋଜନ ହୋଇଥିଲା । କେନ୍ଦୁଝରର ବିଶିଷ୍ଟ ବ୍ୟକ୍ତି ସୁର ପଟ୍ଟନାୟକ ତା'ର ଆୟୋଜନ କରିଥିଲେ । ସନ୍ଧ୍ୟା ସାଢ଼େ ଛ'ଟା ବେଳକୁ ସୁନିଲ ଗଙ୍ଗୋପାଧ୍ୟାୟଙ୍କ ପାଖରୁ ମୋ ରୁମ୍‌କୁ ଟେଲିଫୋନ୍ ଆସିଲା । ସୁନିଲ ବାବୁ କହୁଥିଲେ କ'ଣ ବରେନ୍ ବାବୁ ସନ୍ଧ୍ୟାରେ କିଛି ବ୍ୟବସ୍ଥା ନାହିଁ ? ମୁଁ ହସିଲି- କହିଲି ମୁଁ ଆପଣଙ୍କ ପାଖକୁ ଯାଉଛି । ସେତେବେଳକୁ ସର୍କିଟ୍ ହାଉସ୍ ଡାଇନିଂ ହଲ୍‌ରେ ଆମର କିଛି ସାହିତ୍ୟିକ ବନ୍ଧୁ ରୁଣ୍ଡ ହେଲେଣି । ମୁଁ ସୁନିଲବାବୁଙ୍କୁ ନେଇ ସେଠାରେ ପହଞ୍ଚିଲି । ସୁର ପଟ୍ଟନାୟକ ଆମେ ପହଞ୍ଚିବା ବେଳକୁ ଗୋଟିଏ ପିଟର୍ ସ୍କଟ୍ ହୁଇସ୍କି ବୋତଲ ଧରି ପହଞ୍ଚିଲେ । ମାତ୍ର ଗୋଟିଏ ବୋତଲ ଦେଖି ସୁନିଲ୍ ଗାଙ୍ଗୁଲି କହିଲେ ଏଠି କ'ଣ ପ୍ରସାଦ ସେବନ ହେବ କି ? ସମସ୍ତେ ହସିଲେ । ମୁଁ ସୁର ପଟ୍ଟନାୟକଙ୍କୁ ସେ କଥା କହିବାରେ ସେ କହିଲେ ଏଠି ଗାଧୋଇବାର ବ୍ୟବସ୍ଥା ଅଛି ।

ପରେପରେ ତାଙ୍କ ଲୋକ ଆଉ ଚାରୋଟି ପିଟର ସ୍କଚ୍ ଦୁଇଟି ରମ୍ ଓ ଜିନ୍ ବୋତଲ ଆଣି ରଖିଦେଇ ଗଲେ । ରାତି ବାରଟା ପର୍ଯ୍ୟନ୍ତ ଆସର ଚାଲିଲା ।

## -କଲିକତାରେ ମୋର ବଂଧୁତା-

ସେତେବେଳେ ମୋର କଲିକତାର କିଛି ବିଶିଷ୍ଟ ବଙ୍ଗଳା ଲେଖକଙ୍କ ସହ ବେଶ୍ ବନ୍ଧୁତା ଜମିଥାଏ । କଲିକତାରେ ମୋର ବନ୍ଧୁ ପ୍ରଦ୍ୟୋତ୍ ଭଦ୍ର ଅମୃତ ବଜାର ପତ୍ରିକାର ଚିଫ୍ ନିଉଜ୍ ଏଡିଟର ଥିଲେ । ତାଙ୍କର କଲିକତା ସାହିତ୍ୟ ଏବଂ ସାଂସ୍କୃତିକ ମହଲରେ ବେଶ୍ କାଟ୍‌ତି ଥିଲା । ସେ ହିଁ ମୋତେ ବହୁ ବିଶିଷ୍ଟ ସାହିତ୍ୟିକଙ୍କ ସହ ପରିଚୟ କରାଇ ଦେଇଥିଲେ । ଏହା ୧୯୮୧-୮୨ ମସିହାର ଘଟଣା । ଦନ୍ତ ଚିକିତ୍ସକ ବାରିନ୍ ରାୟ ସେତେବେଳେ କଲିକତାର ଜଣେ ପ୍ରସିଦ୍ଧ ବ୍ୟକ୍ତିତ୍ୱ । ତାଙ୍କ ସାଙ୍ଗରେ ପରିଚୟ ହେବା ପରେ ମୋର କଲିକତାର ବହୁ ବିଶିଷ୍ଟ ବ୍ୟକ୍ତିଙ୍କ ସହ ପରିଚୟ ବୃଦ୍ଧି ପାଇଲା । ତାଙ୍କ ସହ ବିଖ୍ୟାତ ରସଗୋଲା ବ୍ୟବସାୟୀ କେ.ସି. ଦାସ ପରିବାର ସହ ମଧ ମୋର ପରିଚୟ ହେଲା । ତାହା କ୍ରମେ ଘନିଷ୍ଠତାରେ ପରିଣତ ହେଲା । ଏହି ଦୁଇ ପରିବାର ସହ ମୋର ଏକ ପ୍ରକାର ପାରିବାରିକ ସମ୍ପର୍କ ଗଢ଼ି ଉଠିଲା । ଏ ଦୁଇ ପରିବାରଙ୍କ ଘର କଲିକତାର ଏକ ସାହିତ୍ୟ-ସଂସ୍କୃତିର ଆଡ୍ଡାସ୍ଥଳ ଥିଲା । କଲିକତାର ବହୁ ବିଖ୍ୟାତ ଲୋକ ଏମାନଙ୍କ ଘରକୁ ଆସୁଥିଲେ । ବାରିନ୍ ଦା ନିଃସନ୍ତାନ । ବୋଉଦି ଏକ ଇଂରାଜୀ ମିଡିୟମ୍ ସ୍କୁଲର ଶିକ୍ଷୟତ୍ରୀ । ଟଙ୍କା ପଇସାର ଅଭାବ ନଥିଲା । କିନ୍ତୁ ସମୟ କଟାଇବା ପାଇଁ ସେ ଏହି ପେଶା ଗ୍ରହଣ କରିଥିଲେ । ବାରିନ୍ ଦା'ଙ୍କ ଘରେ ୱାଟରଲୁ ଷ୍ଟିଟ୍-ଚୌରଙ୍ଗରେ ମୁଁ, ନାଟ୍ୟ ସମ୍ରାଟ ଶମ୍ଭୁ ମିତ୍ର, ବିଖ୍ୟାତ ସାହିତ୍ୟିକ ସମରେଶ ବସୁ, ସମରେଶ ମଜୁମଦାର, ବୁଦ୍ଧଦେବ ଗୁହ, ସଞ୍ଜୀବ ଚଟ୍ଟୋପାଧାୟ, ଅପର୍ଣ୍ଣା ସେନ୍, ବିଖ୍ୟାତ ଅଭିନେତା ରବି ଘୋଷ, ବିଖ୍ୟାତ ସାମ୍ବାଦିକ ଓ ଲେଖକ ଗୌର କିଶୋର ଦାସ ଏବଂ ଆହୁରି ଅନେକଙ୍କ ସହ ପରିଚିତ ହେଲି । ସୁନିଲବାବୁଙ୍କ ଭଳି କଲିକତାର ଅଧିକାଂଶ ସାହିତ୍ୟିକ ସନ୍ଧ୍ୟା ପରେ ସୁରାପାନରେ ପ୍ରାୟ ଅଭ୍ୟସ୍ତ ଥିଲେ । କଲିକତାର ଆଉ ଜଣେ ବିଖ୍ୟାତ କବି ଶକ୍ତି ଚଟ୍ଟୋପାଧାୟ । ମୋ ସାଙ୍ଗରେ ଶକ୍ତି ଦା'ଙ୍କୁ ଆନନ୍ଦ ବଜାର ପତ୍ରିକା ଅଫିସ୍‌ରେ ଗୌର କିଶୋର ଘୋଷ ପରିଚୟ କରାଇ ଦେଇଥିଲେ । ପ୍ରଥମ ପରିଚୟରୁ ଶକ୍ତି ଦା' ମୋତେ ଖୁବ୍ ଶ୍ରଦ୍ଧା କରୁଥିଲେ । ସେ ଦୁଇଥର ଭୁବନେଶ୍ୱର ଆସିଥିଲେ । ଶକ୍ତି ଚଟ୍ଟୋପାଧାୟ ଅଧିକାଂଶ ସମୟରେ ମଦ୍ୟପାନ କରୁଥିଲେ । କିନ୍ତୁ ମଦ୍ୟପାନ କଲେ ମଧ ସେ ମାତାଲ ହେଉନଥିଲେ । ଦିନେ ସନ୍ଧ୍ୟା ସାଢ଼େ ୬ଟା କି ସାତଟା ହେବ, ଔପନ୍ୟାସିକ ବିଭୂତି ପଟ୍ଟନାୟକ ମୋ ଘରେ ବସି କଥାବାର୍ତ୍ତା ହେଉଛନ୍ତି । ସେତେବେଳେ ଏକ ଟେଲିଫୋନ୍ ଆସିଲା । ମୋ ପତ୍ନୀ କର୍ଡଲେସ୍ ଫୋନ୍ ରିସିଭର ଆଣି ମୋତେ ଦେଲେ । କହିଲେ କଲିକତାରୁ କିଏ ଫୋନ୍ କରିଛନ୍ତି । ମୁଁ ଫୋନ୍ ଧରି ହ୍ୟାଲୋ କହିବା ମାତ୍ରେ ସେପଟୁ ଉତ୍ତର ଆସିଲା କେ, ବରେନ୍ ବଲଛ୍ ? ମୁଁ ହଁ କହିଲି । ପଚାରିଲି କିଏ ? ଆରେ ଆର୍‌କେ ହବେ ? ଆମି ଶକ୍ତି ଦା ବଲ୍‌ଛି । ହଠାତ୍ ଶକ୍ତି ଚଟ୍ଟୋପାଧାୟଙ୍କ ଫୋନ୍ ପାଇ ମୁଁ ବିସ୍ମିତ ଓ ଆନନ୍ଦିତ ହୋଇ ପଚାରିଲି ଦାଦା- କି ବ୍ୟାପାର- କୋଥା ଥେକେ ? ସେ କହିଲେ ଆମି ଆଜ୍ ଭୁବନେଶ୍ୱର ଆସଛି । ଏଇ ତୋମାର ପାନ୍ଥ ନିବାସେ ଅଛି । ଏଖାନେ ଏକ ପରିଚିତ ଭଦ୍ରଲୋକ ଆମାର ସଙ୍ଗେ ଅଛେନ୍ । ତୋମାର ଘଡ଼ି ତେ କତୋ ବାଜ୍‌ଲ । ମୁଁ କହିଲି, ସାତଟା ହବେ । ଶକ୍ତି ଦା କହିଲେ ଏଖୁନି ଭଦ୍ରଲୋକ ଆମାକେ ବଲ୍‌ଛେନ୍ ଦାଦା କଫି ମାଗାବୋ ? କି ଦୁର୍ଯ୍ୟୋଗ ଦେଖ୍ ତ ? ମୁଁ କହିଲି- ଦାଦା, ଆମି ଆସ୍‌ଛି । ମୁଁ ବିଭୂତି ବାବୁଙ୍କୁ କହିଲି । ମୋ ପାଖରେ ମାକ୍‌ଡୋୟେଲ ହୁଇସ୍କିର ଏକ ଗଁଅଣ୍ଡ ବୋତଲ ହୁଇସ୍କି ଥିଲା । ମୁଁ ତାକୁ ନେଇ ପାନ୍ଥନିବାସ ଗଲି । ସେଠି ବିଭୂତିବାବୁଙ୍କୁ ପରିଚୟ କରାଇଦେଲି । ଶକ୍ତି ଦା ମୋତେ ଦେଖି ଭାରି ଖୁସି ହୋଇଗଲେ । ତାଙ୍କ ପାଖରେ ବସିଥିବା ଭଦ୍ରଲୋକ

ଓଡ଼ିଶା ସାହିତ୍ୟ ଏକାଡେମୀ ସମ୍ପାଦକ ଓ ମୋର ଜଣେ ବନ୍ଧୁ ଇନ୍ଦୁଭୂଷଣ କର । ସମସ୍ତେ ରୁମ୍‌କୁ ଗଲୁ । ମୁଁ ପାନ୍ଥନିବାସ ୱେଟରଙ୍କୁ କିଛି ପକୋଡ଼ା ଓ ଚେନାଚୁର ଆଣିବା ପାଇଁ ବରାଦ୍ କଲି ।

ଜଣେ ଜଣେ ଲେଖକର ଖ୍ୟାତିର ବ୍ୟାପ୍ତି କେତେ ବିସ୍ତୃତ ତାହା ଶକ୍ତି ଚଟ୍ଟୋପାଧ୍ୟାୟଙ୍କୁ ନ ଦେଖିଲେ ଜାଣିହେବ ନାହିଁ । ଶକ୍ତି ଚଟ୍ଟୋପାଧ୍ୟାୟ ଭୁବନେଶ୍ୱର ଆସିଥିବା ଶୁଣି ତା' ପରଦିନ ବାରଟା ବେଳକୁ ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ପାଖରୁ ଟେଲିଫୋନ୍ ଆସିଲା । ମୁଖ୍ୟମନ୍ତ୍ରୀ ମୋତେ କହିଲେ, ବରେନ୍ଦ୍ର ଶକ୍ତି ଚଟ୍ଟୋପାଧ୍ୟାୟ ଭୁବନେଶ୍ୱର ଆସିଛନ୍ତି ଶୁଣିଲି । ମୁଁ ତାଙ୍କୁ ଟିକେ ଦେଖିବାକୁ ଚାହୁଁଛି । ତାଙ୍କୁ ଆଣି ଆସି ପାରିବ ? ମୁଁ କହିଲି ମୁଁ ପଚାରୁଛି ଯଦି ରାଜି ହୁଅନ୍ତି ତେବେ ସନ୍ଧ୍ୟାରେ ଆପଣଙ୍କ ପାଖକୁ ନେଇଯିବି । ହଁ, ହଁ ସନ୍ଧ୍ୟା ଛ'ଟା ବା ସାଢ଼େ ଛ'ଟା ବେଳକୁ ମୋ ଅଫିସ୍‌କୁ ଆଣି ଆସ । ମୁଁ ଶକ୍ତି ଦା'ଙ୍କୁ ଜାନକୀବାବୁଙ୍କ ଅନୁରୋଧ କଥା କହିଲି । ସେ ରାଜି ହେଲେ । ଆମେ ସନ୍ଧ୍ୟା ସାଢ଼େ ଛ'ଟାବେଳକୁ ସେକ୍ରେଟେରିଏଟ୍‌ରେ ମୁଖ୍ୟମନ୍ତ୍ରୀଙ୍କ ଚେମ୍ବର ନିକଟରେ ପହଞ୍ଚିଲୁ । ମୁଁ ତାଙ୍କ ପ୍ରାଇଭେଟ୍ ସେକ୍ରେଟାରୀଙ୍କ ରୁମ୍‌କୁ ଗଲି । ସେଠାରେ ପହଞ୍ଚୁ ପହଞ୍ଚୁ ଅତିରିକ୍ତ ଶାସନ ସଚିବ ରମାକାନ୍ତ ରଥ ମୁଖ୍ୟମନ୍ତ୍ରୀଙ୍କ ଚେମ୍ବରରୁ ବାହାରି ଆସୁଥିଲେ । ମୋତେ ଦେଖି ହସିଲେ । କହିଲେ କ'ଣ ଦେଖା କରିବ ? ମୁଁ କହିଲି ଶକ୍ତି ଚଟ୍ଟୋପାଧ୍ୟାୟ ଆସିଛନ୍ତି । ଜାନକୀବାବୁ ଅନୁରୋଧ କରିଥିଲେ ତାଙ୍କ ସହ ସାକ୍ଷାତ କରାଇ ଦେବାପାଇଁ । ରମାକାନ୍ତବାବୁ ପଚାରିଲେ କିଏ କବି ଶକ୍ତି ଚଟ୍ଟୋପାଧ୍ୟାୟ ? ମୁଁ ହଁ କଲି । ସେ କହିଲେ ଆରେ ଆରେ, ମୋତେ ଟିକିଏ ପରିଚୟ କରାଇଦିଅ । ମୁଁ ଆଉ ରମାକାନ୍ତ ବାବୁ ଜାନକୀବାବୁଙ୍କ ପ୍ରାଇଭେଟ୍ ସେକ୍ରେଟାରୀଙ୍କ ଚେମ୍ବରରୁ ବାହାରି ଆସିଲୁ । ବାହାରେ ଶକ୍ତି ଦା, ରବି ପଟ୍ଟନାୟକ, ଫନି ମହାନ୍ତି ଠିଆ ହୋଇଥିଲେ । ଶକ୍ତି ଦାଙ୍କ ପୋଷାକ ସାଧାରଣ ଧୋତି-ପଞ୍ଜାବୀ, ମୁହଁରେ ଅଯତ୍ନ ବର୍ଦ୍ଧିତ ପାଞ୍ଚ/ସାତ ଦିନର ଦାଢ଼ି ଏବଂ ଚପଲ । ଏଇ ଶକ୍ତି ଚଟ୍ଟୋପାଧ୍ୟାୟ । ମୁଁ ରମାକାନ୍ତବାବୁଙ୍କୁ ପରିଚୟ କରାଇ ଦେଲି । ରମାକାନ୍ତବାବୁ ନମସ୍କାର କଲେ । ଶକ୍ତି ଦା ରମାକାନ୍ତ ବାବୁଙ୍କ ହାତ ଧରିପକାଇ କହିଲେ- ଆମର ସୌଭାଗ୍ୟ, ଆମି ଭାରତବର୍ଷର ଏକଜନ୍ ବିଖ୍ୟାତ କବି କେ ଦେଖଲାମ । ରମାକାନ୍ତ- ଆମି ତୋମାର କିଛୁ କିଛୁ କବିତା ପଢ଼େଛି- ଚମତ୍କାର କବିତା । ରମାକାନ୍ତବାବୁ ଲାଜୁଆ ହୋଇଗଲେଣି । କହିଲେ ଶକ୍ତିବାବୁ- ଆପଣତ ଗ୍ରେଟ୍ । ଆପଣଙ୍କ କବିତା ନପଢ଼ିଲେ କବିତା କାହାକୁ କୁହାଯାଏ ବୁଝିହେବ ନାହିଁ । ମୁଁ ଆପଣଙ୍କ ସହ କିଛି ସମୟ ବସି କଥାବାର୍ତ୍ତା କରିବାକୁ ଚାହେଁ । ମୁଁ କହିଲି ଆଜି ଆଠଟାରେ ଶକ୍ତି ଦା'ଙ୍କୁ ଷ୍ଟେଟ ଗେଷ୍ଟ ହାଉସ୍‌ରେ ଏକ ଡିନରକୁ ଡାକିଛୁ । ଆପଣ ଆସିଲେ ଭଲ ହୁଅନ୍ତା । ରମାକାନ୍ତବାବୁ କହିଲେ ମୁଁ ନିଶ୍ଚୟ ଆସିବି ।

ଜାନକୀବାବୁଙ୍କ ସହ ଦେଖା କରିବା ପାଇଁ ଭିତରକୁ ଗଲୁ । ଜାନକୀବାବୁ ଠିଆହୋଇପଡ଼ି ଶକ୍ତି ଦା'ଙ୍କୁ ନମସ୍କାର କଲେ । ଏବଂ ସୋଫାରେ ବସିବା ପାଇଁ ଅନୁରୋଧ କଲେ । ଜାନକୀବାବୁ ଶକ୍ତି ଦା'ଙ୍କର କେତେକ କବିତା ଉଲ୍ଲେଖ କଲେ । ଜାନକୀବାବୁ ଶକ୍ତି ଚଟ୍ଟୋପାଧ୍ୟାୟଙ୍କର ଏତେ କବିତା ପଢ଼ିଛନ୍ତି ଆମେ ଜାଣି ନଥିଲୁ । ଶକ୍ତି ଦା' ନିଜେ ମଧ ଆଶ୍ଚର୍ଯ୍ୟ ହେଲେ । ସେ ମଝିରେ ଠିଆହୋଇପଡ଼ି କହିଲେ ଜାନକୀବାବୁ ଆମାର ରାଜନୀତି ଲୋକଦେର ସଙ୍ଗେ ପରିଚୟ ନେଇଁ । କିନ୍ତୁ ଆପଣାର କଥା ଶୁନେ ଆମି କେଲେ ବିସ୍ମିତ ନଇ ଯା ଶୁନେଛିଲାମ ଆପନ ଏକଜନ ପଣ୍ଡିତ ବ୍ୟକ୍ତି ତା ସତି ହଏଛେ । ଆମି ଆପଣାର ସଙ୍ଗେ ଦେଖାକରେ ବାସ୍ତବିକ୍ ଅତ୍ୟନ୍ତ ଆନନ୍ଦିତ । ସେ ଜାନକୀବାବୁଙ୍କ ହାତକୁ ଧରି ତାଙ୍କୁ ଅଭିନନ୍ଦନ ଜଣାଇଲେ । ଜାନକୀବାବୁ ବଙ୍ଗଳା ଭାଷାରେ ଏତେ ବ୍ୟୁତ୍ପତି ଦେଖି ଆମେ ମଧ ଆଶ୍ଚର୍ଯ୍ୟ ।

ମୋର ସୌଭାଗ୍ୟ ଏହି ଯେ ଦେଶର ବହୁ ବିଶିଷ୍ଟ ବ୍ୟକ୍ତିମାନଙ୍କ ସହ ମୋର ପରିଚିତ ହେବାପରେ ସେମାନଙ୍କ ସହ ଘନିଷ୍ଠତା ଲାଭ କରିଛି । ଦିଲ୍ଲୀରେ ୧୯୮୬ ମସିହାରେ ମୁଁ ଜାତୀୟ ସାମ୍ବାଦିକ ୟୁନିୟନର ଉପ ସଭାପତି ନିର୍ବାଚିତ ହେବାପରେ ବହୁ ସାମ୍ବାଦିକ, ଲେଖକ ଓ ରାଜନୀତିକ ବ୍ୟକ୍ତିମାନଙ୍କ ସହ ଘନିଷ୍ଠତା ହେଲା । ସେମାନଙ୍କ ମଧ୍ୟରୁ ଗୁଲ୍‌ମୋହର ପାର୍କର କେ.ଏନ୍. ଗୁପ୍ତା ଏବଂ ପ୍ରେମ ପ୍ରକାଶ ଅନ୍ୟତମ । ଗୁପ୍ତାଜୀ ସେତେବେଳେ ଇକୋନୋମିକ୍ ଟାଇମ୍ସର ମୁଖ୍ୟ ବାର୍ତ୍ତା ସମ୍ପାଦକ ଏବଂ ପ୍ରେମ ପ୍ରକାଶଙ୍କର ନିଜସ୍ୱ ନିଉଜ ଚାନେଲ 'ଇଣ୍ଡିଆ ନିଉଜ୍' ଥିଲା । ମୁଁ ଦିଲ୍ଲୀ ଗଲେ ପ୍ରେମ ପ୍ରକାଶ ଓ ଗୁପ୍ତାଜୀ ମୋତେ ଏବଂ ମୋ ପରିବାର ଯାଇଥିଲେ ସମସ୍ତଙ୍କୁ ଡିନରକୁ ଡାକନ୍ତି । ମୋତେ ଡାକିବା ଅବସରରେ ଆଉ କେତେକ ବିଶିଷ୍ଟ ବ୍ୟକ୍ତିଙ୍କୁ ମଧ୍ୟ ସେ ନିମନ୍ତ୍ରଣ କରିଥା'ନ୍ତି । ୧୯୮୭ ମସିହା ଏପ୍ରିଲ ମାସରେ ମୁଁ ମୋ ପରିବାରଙ୍କୁ ନେଇ ଦିଲ୍ଲୀ ଯାଇଥିଲି । ଏନ୍.ୟୁ.ଜେ.ର କାର୍ଯ୍ୟନିର୍ବାହୀ କମିଟି ବୈଠକରେ ଯୋଗଦେବାକୁ । ଦିଲ୍ଲୀ ରିଂରୋଡ୍‌ରେ ଥିବା ହାଏଥରିଜେନ୍ସି ହୋଟେଲ୍‌ରେ ଏହା ଆୟୋଜିତ ହୋଇଥିଲା । ସେଠି ଏନ୍.ୟୁ.ଜେ.ର ବନ୍ଧୁମାନଙ୍କ ସହ ଦେଖାହେବାବେଳେ ପ୍ରେମ ପ୍ରକାଶଙ୍କ ମଧ୍ୟ ଦେଖାହେଲା । ଏନ୍.ୟୁ.ଜେ.ର ପୂର୍ବତନ ସଭାପତି ହିନ୍ଦୁସ୍ଥାନ ଟାଇମ୍ସର ଲକ୍ଷ୍ନୌ ବ୍ୟୁରୋ ଚିଫ୍ କପିଲ ବର୍ମାଙ୍କୁ ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧୀ ସେତେବେଳେ ରାଜ୍ୟସଭାକୁ ଆଣିଥିଲେ । ତେବେ କପିଲ ବର୍ମା ଏନ୍.ୟୁ.ଜେ. ସହ ସମ୍ପର୍କ ରଖିଥିଲେ । ସେ ମଧ୍ୟ ବୈଠକରେ ଯୋଗ ଦେଇଥିଲେ । କପିଲ ବର୍ମା ମୋର ଜଣେ ଘନିଷ୍ଠ ବନ୍ଧୁ ଥିଲେ । ସେ ଓଡ଼ିଶାକୁ ଚାରି ପାଞ୍ଚ ଥର ଆସିଥିଲେ । ଭି.ପି. ସିଂହଙ୍କ ସେ କଲେଜରେ ଦୁଇବର୍ଷ ସିନିୟର । ଭି.ପି. ସିଂହ ତାଙ୍କୁ କପିଲ ଭାୟା ବୋଲି ସମ୍ବୋଧନ କରୁଥିଲେ । କପିଲ ରାଜ୍ୟସଭାକୁ ଯିବା ପରେ ପାର୍ଲାମେଣ୍ଟର ତଥ୍ୟ ଓ ବେତାର ମନ୍ତ୍ରଣାଳୟ ପରାମର୍ଶଦାତା କମିଟିର ଚେୟାରମ୍ୟାନ ଥିଲେ । ସେହି କମିଟିରେ ଅମିତାଭ ବଚନ ସଦସ୍ୟ ଥିଲେ ।

ହାଏଥରିଜେନ୍ସି କାର୍ଯ୍ୟକାରୀ କମିଟି ବୈଠକରେ ପ୍ରେମ ପ୍ରକାଶ ମୋତେ ତା' ପରଦିନ ଡିନର ପାଇଁ ତାଙ୍କ ଘରକୁ ନିମନ୍ତ୍ରଣ କଲେ । ଗୁପ୍ତାଜୀ ମଧ୍ୟ କହିଲେ ଧଲ୍ ସାହେବ- ଜରୁର ଆଇଏ । ସେଥର ମୋ ସାଙ୍ଗରେ ସାମ୍ବାଦିକ ବନ୍ଧୁ ସୁବାଷ ପଟ୍ଟନାୟକ ଓ ରତିକାନ୍ତ ମହାନ୍ତି ମଧ୍ୟ ଯାଇଥିଲେ । ଆମେ ସମସ୍ତେ ଓଡ଼ିଶା ଭବନରେ ରହୁଥିଲୁ ।

## -ଅମିତାଭ ବଚ୍ଚନଙ୍କ ସହ ସାକ୍ଷାତ-

ପରଦିନ ମୁଁ ମୋ ପରିବାର ଓ ରତିକାନ୍ତ ପ୍ରେମ ପ୍ରକାଶଙ୍କ ଘରେ ପହଞ୍ଚିଲୁ । ପ୍ରେମ ପ୍ରକାଶଙ୍କ ବିରାଟ ପ୍ରସାଦୋପମୋ ଘର । ଗୁଲମୋହର ପାର୍କର ଏ-୧ ନମ୍ବର ଘର ତାଙ୍କର । ତାଙ୍କ ଘରକୁ ଟିକେ ଦୂରରେ କେ.ଏନ୍. ଗୁପ୍ତାଙ୍କ ଘର ଡି-୪୭ । ଆମେ ପହଞ୍ଚିଲାବେଳକୁ ଅନେକ ବନ୍ଧୁ ଆସିଯାଇଥିଲେ । ଲେଡିଜ୍‌ମାନଙ୍କ ପାଇଁ ଅଲଗା ବ୍ୟବସ୍ଥା । କାରଣ ପୁରୁଷମାନଙ୍କ ପାଇଁ କକ୍‌ଟେଲ୍(ମଦ୍ୟପାନ) ବ୍ୟବସ୍ଥା ଥିଲା । ରତିକାନ୍ତ ମଦ ଫଦରୁ ବହୁ ଦୂରରେ । ଏ ବ୍ୟବସ୍ଥା ଦେଖି ସେ ବ୍ୟସ୍ତ ହୋଇ କହିଲାଣି- ଆଜ୍ଞା ମୋତେ ଟିକେ ଓଡ଼ିଶା ଭବନ ପଠାଇ ଦିଅନ୍ତୁ । ମୁଁ ଅଗତ୍ୟା ଯେଉଁ ଗାଡ଼ିରେ ଆସିଥିଲି ସେଥିରେ ରତିକାନ୍ତକୁ ପଠାଇଦେବାକୁ ବାହାରକୁ ଆସିବାବେଳେ ହଠାତ୍ ଗେଟ୍ ପାଖରେ ଏକ ଲମ୍ବା ଗାଡ଼ି ରହିଲା । କପିଲ ବର୍ମା ଏବଂ ତାଙ୍କ ପଛେପଛେ ଅମିତାଭ ବଚ୍ଚନ ଗାଡ଼ିରୁ ଓହ୍ଲାଇଲେ । ମୋତେ ଦେଖି କପିଲ ବର୍ମା କହିଲେ ଆରେ ଧଲ୍ ସାହେବ ଆପ୍ କ୍ୟା ଜାତେ ହୈ । ମୁଁ କହିଲି ମୋ ବନ୍ଧୁଙ୍କୁ ଛାଡ଼ିଦେବାପାଇଁ ଆସିଛି । ସେ ରତିକାନ୍ତକୁ ମଧ୍ୟ ଜାଣିଥିଲେ । କପିଲ ବର୍ମା ଅମିତାଭଙ୍କ ସହ ମୋର ପରିଚୟ କରାଇଦେଲେ । ଦୁହେଁ ଭିତରକୁ ଗଲେ । ଅମିତାଭ ବଚ୍ଚନଙ୍କ ଘର ସେଇ ଗୁଲମୋହର ପାର୍କରେ । ତାଙ୍କ ଘର ଚାରିପଟେ ଦଶଫୁଟ୍ ଉଚ୍ଚର ପାଚେରୀ ।

ସେତେବେଳେ ସେ ରାଜୀବଗାନ୍ଧୀଙ୍କ ଅନୁରୋଧରେ ଆଲାହାବାଦରୁ ଲୋକସଭାକୁ ନିର୍ବାଚିତ ହୋଇ ଆସିଥିଲେ ।

ରତିକାନ୍ତକୁ ମୋ କାର୍‌ରେ ଓଡ଼ିଶା ଭବନ ପଠାଇ ଦେଇ ମୁଁ ଭିତରକୁ ଆସିଲି । ଅମିତାଭ ବଚ୍ଚନଙ୍କ ଉପସ୍ଥିତି ଆସରର ରଙ୍ଗ ପରିବର୍ତ୍ତନ କରାଇ ଦେଇଥିଲା । ଅମିତାଭ କହିଲେ ପରାମର୍ଶଦାତା କମିଟି ବୈଠକରୁ ମୁଁ ଘରକୁ ଫେରିବାବେଳେ କପିଲଜୀ ପ୍ରେମ ଭାୟାଙ୍କ ଘରେ ଛାଡ଼ିବାକୁ କହିଲେ । ପ୍ରେମ ଭାୟା ତ ମୋତେ ଆଉ ପଚାରୁ ନାହାନ୍ତି ତେଣୁ ମୁଁ ବିଚାରିଲି ପ୍ରେମ ଭାୟାଙ୍କୁ ଦେଖାକରି ଯିବା । ଅମିତାଭଙ୍କ କଥାରେ ସମସ୍ତେ ହସି ଉଠିଲେ । ପ୍ରେମ ପ୍ରକାଶ ଜୀ ଉଠି ଆସି ତାଙ୍କୁ ଧରି କହିଲେ ଏତେବଡ଼ ଲୋକ, ଯାହାକୁ ଭାରତବର୍ଷ ସାରା ଲୋକ ଦେଖିବାକୁ ପାଗଳ ତାକୁ ମୋ ଭଳି ଜଣେ ତୁଚ୍ଛ ଲୋକ କ'ଣ ପଚାରିବ ? ଅମିତାଭ ସମସ୍ତଙ୍କ ସହ ପରିଚୟ ହୋଇ କରମର୍ଦ୍ଦନ କଲେ ଏବଂ କ୍ଷମାମାଗି ବାହାରିଗଲେ । ତାଙ୍କୁ ଛାଡ଼ିବାକୁ ପ୍ରେମ ପ୍ରକାଶ ବାହାରକୁ ଗଲେ ।

ମାତ୍ର ସେ ଫେରିବା ବେଳକୁ ଆଉ ଜଣେ ବିଖ୍ୟାତ ଲୋକ ତାଙ୍କ ସାଙ୍ଗରେ ଆସିଲେ । ସେ ହେଉଛନ୍ତି ଖୁସ୍‌ବନ୍ତ ସିଂହ । ସମସ୍ତେ ଖୁସ୍‌ବନ୍ତଙ୍କୁ ଦେଖି ସମ୍ମାନ ଜଣାଇଲେ । ପୃଥିଶ ଚକ୍ରବର୍ତ୍ତି(ହିନ୍ଦୁସ୍ଥାନ ଟାଇମ୍ସର ଆସୋସିଏଟ୍ ଏଡିଟର) ଖୁସ୍‌ବନ୍ତଙ୍କ ଭଲ ବନ୍ଧୁ । କାରଣ ଖୁସ୍ୱନ୍ତ ଭିତରେ ପଶୁପଶୁ ପଚାରିଲେ ପ୍ରେମ, ପୃଥିଶ ଆୟା ହେି କ୍ୟା । ପୃଥିଶ ଦା କହିଲେ ସିଂହ ସାହେବ, ଆଓ ଆଓ ମୈ ଇଧର ହୁଁ । ମୁଁ ପୃଥିଶ ଦାଙ୍କ ପାଖ ସୋଫାରେ ବସିଥିଲି । ମୋତେ ସେ ଖୁସ୍‌ବନ୍ତ ସିଂହଙ୍କ ସହ ପରିଚୟ କରାଇଦେଲେ । ହଠାତ୍ ଓଡ଼ିଶା ଭୁବନେଶ୍ୱର ନାଁ ଶୁଣି ଖୁସବନ୍ତ ସିଂହ ବସିବା ପରେ ପଚାରିଲେ ଧଲ୍ ସାହେବ, ଜେ.ବି. ପଟ୍ଟନାୟକକା ହାଲ୍ କ୍ୟା ହୈ । ଇଲୁଷ୍ଟ୍ରେଟେଡ ଉଇକ୍ଲି ଇତନା ନିଚେ ଗିର୍‌ନା ଠିକ୍ ନେହିଁ ଥା । ପ୍ରିତିଶ ହାଜ ମେଡ଼ ଉଇକ୍ଲି ଏ ସେକ୍ସୁଆଲ୍ ମାଗାଜିନ୍ । ହାଓ ୱାଜ୍ ଦି ରିଆକ୍ସନ ଅଫ୍ ଦି ପିପୁଲ୍ ଅଫ୍ ୟୋର୍ ଷ୍ଟେଟ୍ ? ମୁଁ ଖୁସ୍‌ବନ୍ତ ସିଂହଙ୍କ କଥା ଶୁଣି ଆଶ୍ଚର୍ଯ୍ୟ । ଖୁସ୍ୱନ୍ତ ଦୀର୍ଘଦିନ ଧରି ଉଇକ୍ଲିର ସମ୍ପାଦକ ଥିଲେ । ମୁଁ କହିଲି ଦୋଜ ଏଗେନ୍‌ଷ୍ଟ ଜେ.ବି. ଦେ ଆର୍ ହାପି । ବଟ୍ ଅନ୍ ଦି ହୋଲ୍ ପିପୁଲ୍ ଡୋଣ୍ଟ ଲାଇକ୍ ଦିସ୍ ଟାଇପ୍ ଅଫ୍ ନିଉଜ୍ । ମୋ ସହ ଖୁସ୍‌ବନ୍ତ କିଛି ସମୟ କଥା ହେଲେ । ତା'ପରେ କହିଲେ ଇଫ୍ ୟୁ କମ୍ ଟୁ ଦିଲ୍ଲୀ, ହ୍ୱାଇ ନଟ୍ ଡ୍ରପ୍ ଇନ୍ ସମଟାଇମ୍ ଟୁ ମାଇଁ ହାଉସ୍ । ମୁଁ କହିଲି ଆସନ୍ତା ଥର ଆସିଲେ ଯିବାପାଇଁ ଚେଷ୍ଟା କରିବି ।

ଦିଲ୍ଲୀରେ ମୋର ଆଉଜଣେ ବନ୍ଧୁ ଡି.ଆର୍. ଆହୁଜା । ସେ ଦି ଟ୍ରିବ୍ୟୁନ୍ ଖବର କାଗଜର ଦିଲ୍ଲୀ ବ୍ୟୁରୋ ମୁଖ୍ୟ । ୧୯୭୫/୭୬ ମସିହାରୁ ତାଙ୍କ ସହ ମୋର ପରିଚୟ । ଦିଲ୍ଲୀ ଗଲେ ତାଙ୍କ ଘରେ ଅନ୍ତତଃ ଗୋଟିଏ ରାତ୍ରିଭୋଜନ ପାଇଁ ନିମନ୍ତ୍ରଣ ମିଳେ । ତାଙକ ଘର ଗ୍ରେଟର କୈଳାଶ ଏନ୍-୮୯ । ବେଶ୍ ବଡ଼ ଘର । ମୁଁ ମୋ ପରିବାର ତାଙ୍କ ପରିବାର ସହ ଅତ୍ୟନ୍ତ ଘନିଷ୍ଠ । ଆହୁଜା ସାହେବଙ୍କର ଦିଲ୍ଲୀରେ ବେଶ୍ କାଟ୍‌ତି । ଥରେ ମୋ ପରିବାର ପାଇଁ ହରିୟାନାର 'ସୁରଜ କୁଣ୍ଡ'ରେ ଏକ ମଧ୍ୟାହ୍ନ ଭୋଜନର ଆୟୋଜନ କରିଥିଲେ । ସେତେବେଳେ ହରିଆନା ସରକାରଙ୍କର ପର୍ଯ୍ୟଟନ ସଚିବ ପଦରେ କ୍ୟୁରେସି ନାମରେ(ପୁରା ନାମ ଭୁଲିଯାଇଛି) ଜଣେ ଆଇ.ଏ.ଏସ୍. ଅଫିସର ଥିଲେ । ସେ ପ୍ରାୟ ଆହୁଜାଙ୍କ ଘରକୁ ଆସୁଥିଲେ । ସେ ଏହି ମଧ୍ୟାହ୍ନ ଭୋଜନର ଆୟୋଜନ କରିଥିଲେ । ବସ୍ତୁତଃ ମୋ ପାଇଁ ଏକ ବଡ଼ ସୁଟ୍(ବେଡ଼ରୁମ୍-ଡ୍ରଇଁରୁମ୍) ରିଜର୍ଭ କରିଥିଲେ ସେଠାରେ ରାତ୍ରି କଟାଇବା ପାଇଁ । ମାତ୍ର ମୁଁ ମନା କଲି । ନୂଆ ଜାଗା, ତା'ଛଡ଼ା ଆଉ ପରିଚିତ ଯଦି କେହି ରହୁଥା'ନ୍ତେ ତେବେ ରହିବାରେ ଅସୁବିଧା ନଥିଲା । ମାତ୍ର ଏକ ଅପରିଚିତ ସ୍ଥାନରେ ଏକା ଏକା ରହିବା ଶାସ୍ତ୍ରମତରେ ଠିକ୍ ନୁହେଁ । ତେଣୁ ଖାଇବା ପିଇବା ପରେ ଆମେ ଦିଲ୍ଲୀ ଫେରି ଆସିଲୁ ।

ଭୁବନେଶ୍ୱରରେ ଥିବା ଅନେକ ସାମ୍ବାଦିକ ଦିଲ୍ଲୀ ବଦଳି ହୋଇଥା'ନ୍ତି । ସେମାନଙ୍କ ମଧ୍ୟରେ ନିତିଶ ଚକ୍ରବର୍ତ୍ତିଓ ନିଖିଳ ଭଟ୍ଟାଚାର୍ଯ୍ୟ ଅନ୍ୟତମ । ନିତିଶ ଦା 'ଦି ହିନ୍ଦୁ'ର ଡେପୁଟି ବ୍ୟୁରୋ ଚିଫ୍ ଏବଂ ନିଖିଳ ଦା ୟୁ.ଏନ୍.ଆଇ.ର ସ୍ପେଶାଲ କରେସ୍‌ପଣ୍ଡେଣ୍ଟ ଥିଲେ । ନିତିଶ ଦା ଦିଲ୍ଲୀ ହାଉସ୍ ଖାସ୍ ଅଞ୍ଚଳରେ ଘର କିଣି ରହୁଥିଲେ । ତାଙ୍କ ଘର ପାଖରେ ଓଡ଼ିଶାର ଅବସରପ୍ରାପ୍ତ ଆଇ.ଏ.ଏସ୍. ଜେ.ପି. ଦାସ ରହୁଥିଲେ । ମୁଁ ଦିଲ୍ଲୀ ଗଲେ ନିତିଶ ଦାଙ୍କ ଘରକୁ ଯାଉଥିଲି ଏବଂ ସେଇଠି ଜେ.ପି. ଦାସଙ୍କ ସହ ମଧ୍ୟ ଦେଖା କରୁଥିଲି । ମଝିରେ ମଝିରେ ନିତିଶ ଦା ମୋତେ ଦିଲ୍ଲୀ ପ୍ରେସ୍‌କ୍ଲବ କିମ୍ବା ଇଣ୍ଡିଆ ଇଣ୍ଟରନ୍ୟାସନାଲ୍ ସେଣ୍ଟରକୁ ନେଇ ଯାଉଥିଲେ ଡିନର କିମ୍ବା ଲଞ୍ଚ ପାଇଁ । କେ.ଏନ୍. ଗୁପ୍ତାଙ୍କ ମଧ୍ୟ ମଝିରେ ମଝିରେ ପ୍ରେସ୍‌କ୍ଲବ କିମ୍ବା କୌଣସି ବଡ଼ ହୋଟେଲ୍‌କୁ ଲଞ୍ଚ ବା ଡିନର ପାଇଁ ମତେ ନେଇ ଯାଉଥିଲେ । ସମୟ ଏଇମିତି କଟି ଯାଉଥିଲା ।

ଭୁବନେଶ୍ୱର ଫେରିବା ପରେ ପୁଣି ସେଇ କଦର୍ଯ୍ୟ ରାଜନୀତିକୁ ଧରି ରିପୋର୍ଟ କରିବାକୁ ହେଉଥିଲା । ମୁଁ ସ୍ୱରାଜ୍ୟରେ ସମ୍ପାଦକ ହୋଇ ୧୯୮୬ରେ ଯୋଗଦେବା ପରେ କଲିକତା ବଙ୍ଗଳା ଖବରକାଗଜ 'ଆଜ୍‌କାଲ୍'ର ଆକ୍ରିଡିସନ ନେଲି । କାରଣ ଆକ୍ରିଡିସନ ନଥିଲେ ସରକାରୀ ଘର ରହିବ ନାହିଁ । ଅବଶ୍ୟ ମୁଁ ଫ୍ରିଲାନ୍ସ ଆକ୍ରିଡିସନ ନେଇ ପାରିଥା'ନ୍ତି । କାରଣ ସେତେବେଳେ ମୋର ଅନେକ ନିବନ୍ଧ ବିଭିନ୍ନ ଖବରକାଗଜରେ ପ୍ରକାଶ ପାଉଥିଲା । ମାତ୍ର ସୂଚନା-ଲୋକ ସମ୍ପର୍କ ବିଭାଗର କିଛି ଅଫିସର ବନ୍ଧୁ ଖବର କାଗଜ ନାଁରେ ନେବାପାଇଁ ପରାମର୍ଶ ଦେବାରୁ ମୁଁ ସେଇ ଅନୁସାରେ ଆଜ୍‌କାଲ୍‌ର ଆକ୍ରିଡିସନ ନେଲି ।

ବଙ୍ଗଳା ଭାଷାରେ ମୋର ବେଶ୍ ଦଖଲ ଥିଲା । କହିବା, ପଢ଼ିବା ମୁଁ ଭଲଭାବେ ଜାଣିଥିଲେ ମଧ୍ୟ ଲେଖିବାରେ ଅସୁବିଧା ହେଉଥିଲା । ଆଜ୍‌କାଲ୍‌କୁ ନିୟମିତ ମୋତେ ସମ୍ବାଦ ପଠାଇବାକୁ ପଡୁଥିଲା । ସେଥିପାଇଁ ସେତେବେଳେ ମୋର ବନ୍ଧୁ ଆଶୀଷ ମିତ୍ରଙ୍କ ବୁକ୍‌ଲ୍ୟାଣ୍ଡ ଇଣ୍ଟରନ୍ୟାସନାଲ୍( ବହି ଦୋକାନ ଏବଂ ପତ୍ରିକା ଏଜେନ୍ସି )ରେ ସତ୍ୟେନ ଦାସ ନାମରେ ଜଣେ କର୍ମଚାରୀ ଥିଲେ । ତାଙ୍କର ବଙ୍ଗଳା ଅକ୍ଷର ବେଶ୍ ସୁନ୍ଦର । ତେଣୁ ତାଙ୍କୁ ମୁଁ ମୋ ଖବର ବା ସ୍ୱତନ୍ତ୍ର ରିପୋର୍ଟ ଡାକି ଦେଉଥିଲି ଏବଂ ସେ ତାକୁ ଲେଖି ଦେଉଥିଲେ । ସେଇଠୁ ଆଶୀଷବାବୁଙ୍କ ଫାକ୍ସରୁ ମୁଁ ତାକୁ ଆଜ୍‌କାଲ୍ ପଠାଉଥିଲି । ସେତେବେଳେ ମୁଁ ବେଶ୍ ବଡ଼ବଡ଼ ଖବର ପଠାଉଥିଲି ଏବଂ ତାହା ବିସ୍ତୃତ ଭାବେ ପ୍ରକାଶ ପାଉଥିଲା । ଖବର ଆରମ୍ଭରୁ ବରେନ୍ଦ୍ର କୃଷ୍ଣ ଧଳ, ଭୁବନେଶ୍ୱର ବୋଲି ରହୁଥିଲା । ବର୍ତ୍ତମାନ ପର୍ଯ୍ୟନ୍ତ ତାହା ଚାଲିଛି ।

ଦିଲ୍ଲୀରୁ ଫେରିବାପରେ ଓଡ଼ିଶାରେ ପୁଣି ସେଇ କଂଗ୍ରେସର ଗୋଷ୍ଠି ରାଜନୀତିକୁ ନେଇ ମାତିବାକୁ ପଡ଼ିଲା । ୧୯୮୭ରେ କାହ୍ନୁ ଚରଣ ଲେଙ୍କା ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟି ସଭାପତି ହେଲେ । ତାଙ୍କ ପୂର୍ବ ସୂରି ନିତ୍ୟାନନ୍ଦ ମିଶ୍ରଙ୍କ ଭଳି କାହ୍ନୁ ଚରଣ ମଧ୍ୟ ଜାନକୀ ବାବୁଙ୍କ ପୂର୍ବରୁ ଘୋର ବିରୋଧୀ ଥିଲେ । ଜାନକୀବାବୁ ମଧ୍ୟ କାହ୍ନୁ ଲେଙ୍କାଙ୍କ ବିରୁଦ୍ଧରେ ଲୋକ ଲଗାଇଲେ । ଶ୍ରୀମତୀ ଜୟନ୍ତୀ ପଟ୍ଟନାୟକ ମଧ୍ୟ କାହ୍ନୁ ଲେଙ୍କାଙ୍କ ବିରୁଦ୍ଧରେ ପ୍ରଧାନମନ୍ତ୍ରୀଙ୍କ ପାଖକୁ ଲମ୍ବା ଚିଠି ପଠାଇଲେ । ତେବେ ଏ ବିରୋଧାଭାଷ ବେଶୀଦିନ ଚାଲିଲା ନାହିଁ । ତା'ର କାରଣ ହେଲେ ନନ୍ଦିନୀ ଶତପଥୀ । ଏହି ବିରୋଧ ଚରମ ସୀମାରେ ପହଞ୍ଚିବାବେଳେ ଶୁଣାଗଲା ଶ୍ରୀମତୀ ନନ୍ଦିନୀ ଶତପଥୀ ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧୀଙ୍କୁ ଦେଖାସାକ୍ଷାତ କରିଛନ୍ତି । ଓଡ଼ିଶାର କଂଗ୍ରେସ ମହଲରେ ଏହାକୁ ନେଇ ମିଶ୍ର ପ୍ରତିକ୍ରିୟା ସୃଷ୍ଟି ହେଲା । ଉଭୟ ଲେଙ୍କା ଏବଂ ଜାନକୀବାବୁ ନନ୍ଦିନୀଙ୍କୁ କଂଗ୍ରେସରେ ନନେବା ପାଇଁ ଦିଲ୍ଲୀରେ ଚାପ ସୃଷ୍ଟି କଲେ । ଓଡ଼ିଶାରେ ଲୋକଙ୍କ କଥା ନବୁଝି କଂଗ୍ରେସରେ ଏଇ ପାଲା ଲାଗି ରହିଥିଲା ।

ନନ୍ଦିନୀ ଶତପଥୀ ଓଡ଼ିଶାରେ ଏମରଜେନ୍ସି ସମୟରେ ମୁଖ୍ୟମନ୍ତ୍ରୀ ଥିଲେ । ସଞ୍ଜୟ ଗାନ୍ଧୀଙ୍କ ବିରୋଧ ଯୋଗୁ ତାଙ୍କୁ ମୁଖ୍ୟମନ୍ତ୍ରୀ ପଦରୁ ହଟିବାକୁ ହେଲା । ତା'ପରେ ସେ କଂଗ୍ରେସ ଛାଡ଼ିଦେଇ ଜଗଜିବନ ରାମ ଓ ଏଚ୍.ବହୁଗୁଣାଙ୍କ ସହ ମିଳିତ ହୋଇ କଂଗ୍ରେସ ଫର ଡେମୋକ୍ରେସି ଦଳ ଗଠନ କଲେ । ସେ ଦଳ ମଧ ବେଶୀଦିନ ତିଷ୍ଠିଲା ନାହିଁ । କଂଗ୍ରେସ ଫର ଡେମୋକ୍ରାସି ଜନତା ଦଳରେ ମିଶିଯିବା ଫଳରେ ସେ ଜନତା ଦଳରେ ଯୋଗ ଦେଲେ । ମାତ୍ର ଏମରଜେନ୍ସି ସମୟରେ ସେ ଯେଉଁମାନଙ୍କୁ ଜେଲ୍ ପଠାଇ ଥିଲେ ଜନତା ଦଳରେ ସେଇମାନେ ମୁଖ୍ୟ ନେତା ଥିଲେ । ଶ୍ରୀମତୀ ଶତପଥୀଙ୍କୁ ସେମାନେ ପ୍ରବଳ ବିରୋଧ କରିଥିଲେ । ୧୯୭୭ରେ ଜନତା ଦଳ ଦେଶରେ ଏବଂ ଓଡ଼ିଶାରେ ସରକାର ଗଢ଼ିଲା । ମାତ୍ର ତାଙ୍କୁ କୌଣସି ପଦପଦବୀ ଦେବା ଦୂରର କଥା ସାମାନ୍ୟତମ ଗୁରୁତ୍ୱ ମଧ ଦିଆଗଲା ନାହିଁ । ଶ୍ରୀମତୀ ଶତପଥୀ ଜନତା ଦଳ ତ୍ୟାଗ କରି କଂଗ୍ରେସ(ଏସ୍) ଦଳରେ ଯୋଗଦେଲେ । ସେଠି ମଧ ସେ ବେଶୀ ଦିନ ତିଷ୍ଠି ପାରିଲେ ନାହିଁ । ତା'ପରେ ସେ ନିଜର ଏକ ଦଳ 'ଜାଗ୍ରତ ଓଡ଼ିଶା' ଦଳ ଗଠନ କଲେ । ୧୯୮୫ ନିର୍ବାଚନରେ ଏହି ଦଳରେ ସେ ବିଧାନସଭାକୁ ୮୦ଜଣ ପ୍ରାର୍ଥୀ ଦେଇଥିଲେ ମଧ ତାଙ୍କ ନିଜ ଛଡ଼ା ଆଉ କେହି ଜିତିପାରି ନଥିଲେ ।

## -ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧିଙ୍କ ଖଡିଆଳ ଗସ୍ତ-

୧୯୮୭ ସେପ୍ଟେମ୍ବର ମାସ ୨୪ ତାରିଖରେ ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧୀ ଓଡ଼ିଶା ଗସ୍ତରେ ଆସିଥିଲେ । ତାଙ୍କ ସହ ତାଙ୍କ ପତ୍ନୀ ସୋନିଆ ଗାନ୍ଧୀ ମଧ ଆସିଥିଲେ । ପ୍ରଧାନମନ୍ତ୍ରୀ ପ୍ରଥମେ ଗଞ୍ଜାମ ଏବଂ ପରେ କଳାହାଣ୍ଡି ଓ କୋରାପୁଟ ଯାଇଥିଲେ । ସେ ୨୪ ତାରିଖରେ କଳାହାଣ୍ଡି ଜିଲ୍ଲାର ନୂଆପଡ଼ା ଅନ୍ତର୍ଗତ ଖଡ଼ିଆଳ, ସିନାପାଲି ଆଦି ଗ୍ରାମକୁ ଯାଇଥିଲେ । ମୁଁ ଏହି ଗସ୍ତରେ କଳାହାଣ୍ଡିର ଏହି ଗ୍ରାମସବୁ ଯାଇଥିଲି । ସେତେବେଳେ ସିନାପାଲି ଓ ଖଡ଼ିଆଳରେ ପିଲା ବିକ୍ରି ଏବଂ ଅନାହାର ମୃତ୍ୟୁ ଏବଂ ରାୟଗଡ଼ା ଅନ୍ତର୍ଗତ କାଶୀପୁରରେ ୫୦୪ଜଣ ଅନାହାର ମୃତ୍ୟୁ ଅଭିଯୋଗ ହୋଇଥିଲା ।

ରାଜୀବଙ୍କ ହେଲିକେପ୍ଟର ଖଡ଼ିଆଳରେ ସକାଳ ଦଶଟାରେ ପହଞ୍ଚିଲା । ମୁଁ ଏବଂ ଭବାନୀ ପାଟଣାର ଦୁଇଜଣ ସାମ୍ବାଦିକ ତା' ପୂର୍ବ ଦିନ ଖଡ଼ିଆଳରେ ପହଞ୍ଚିଥିଲୁ । ରାଜୀବ ପହଞ୍ଚିବା ପରେ ପରେ ପ୍ରବଳ ବର୍ଷା ଆରମ୍ଭ ହୋଇଗଲା । ସେ ନିଜେ ଏକ ମାରୁତି ଜିପ୍‌ସି ଡ୍ରାଇଭ୍ କରି ଯାଉଥିଲେ । ତାଙ୍କ ସହ ସୋନିଆ ଗାନ୍ଧୀ ମଧ ଥିଲେ । ଆମେ ତାଙ୍କ ଗାଡ଼ିର ୪/୫ଟି ଗାଡ଼ି ପଛରେ ଥିଲୁ । ପ୍ରଧାନମନ୍ତ୍ରୀଙ୍କ ନିକଟକୁ କାହାରିକୁ ଛଡ଼ାଯାଉ ନଥିଲା । ପ୍ରେସ୍‌ବାଲା ମଧ ସେଥିରୁ ବାଦ୍ ଯାଇ ନଥିଲେ । ପ୍ରଧାନମନ୍ତ୍ରୀଙ୍କ ସହ ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ, ଶ୍ରୀମତୀ ଜୟନ୍ତୀ ପଟ୍ଟନାୟକ, ରାଜ୍ୟ କଂଗ୍ରେସ ସଭାପତି କାହ୍ନୁ ଲେଙ୍କା, କଳାହାଣ୍ଡି କଂଗ୍ରେସ ଏମ୍.ପି. ଜଗନ୍ନାଥ ପଟ୍ଟନାୟକ ଏବଂ ଖଡ଼ିଆଳ ଏମ୍.ଏଲ୍.ଏ. ଅନୁପ ସିଂହଦେଓ ଯାଇଥିଲେ । ପ୍ରଧାନମନ୍ତ୍ରୀ ଖଡ଼ିଆଳ ଡାକବଙ୍ଗଳାରେ କିଛି ସମୟ ବିଶ୍ରାମ ନେଇ ମରୁଡ଼ିଗ୍ରସ୍ତ ଗାଁ ବୁଲିବାକୁ ବାହାରିଲେ । ତାଙ୍କୁ ସିନାପାଲି ଗ୍ରାମକୁ ନିଆଗଲା । ଗାଁ ପୂର୍ବରୁ ଜିପ୍‌ରୁ ଓହ୍ଲାଇ ଚାଲିଚାଲି ଗଲେ । ସାଙ୍ଗରେ ସୋନିଆ ଗାନ୍ଧୀ । ଗାଁ ଦାଣ୍ଡରେ କାଦୁଅ ଭର୍ତ୍ତି । ପ୍ରଧାନମନ୍ତ୍ରୀ ଓ ସୋନିଆ ଗାନ୍ଧୀ ଆଣ୍ଠୁ ପର୍ଯ୍ୟନ୍ତ ରବର ଜୋତା ପିନ୍ଧିଥିଲେ । ମୁଁ ଏବଂ ଅନ୍ୟମାନେ ସେଇ କାଦୁଅରେ ଚାଲିଲୁ । ମୁଁ ଜୋତା-ମୋଜା ଖୋଲି ହାତରେ ଧରି ଚାଲିଥିଲି । ଆଉ ଅନେକ ଲୋକ ମଧ ହାତରେ ଜୋତା ଚପଲ ଧରି ଚାଲିଥିଲେ । କାରଣ ଗାଁ ଦାଣ୍ଡରେ କାଦୁଅରେ ପାଦ ବୁଡ଼ିଯାଉଥିଲା । ଗାଁ ଭିତରେ ଯାଉଯାଉ ରାଜୀବ ଗାନ୍ଧୀ ଜଣେ ଆଦିବାସୀର ନୁଆଁଣିଆ ଚାଳ ଘରେ ପଶିଗଲେ । ଦଶମିନିଟ୍ ପରେ ବାହାରି ଆସିଲେ । ସେ ଆଗକୁ ଗଲା ପରେ ମୁଁ ଏବଂ ସ୍ଥାନୀୟ ଯେଉଁ ସାମ୍ବାଦିକ ଥିଲେ ଆମେ ମଧ ତା' ଘରେ ପଶି ପ୍ରଧାନମନ୍ତ୍ରୀ କ'ଣ କହିଲେ ବୋଲି ବୁଝିଲୁ । ସେ କହିଲା(ଆଦିବାସୀ ମହିଳା) ମୋ ହାଣ୍ଡିରେ କ'ଣ ସିଝୁଛି ବୋଲି ଦେଖିଲେ । ମୋ ହାଣ୍ଡିରେ ଚେରମୂଳ ସିଝୁଥିଲା । କାହିଁକି ସିଝାଉଛି ବୋଲି ପଚାରିଲେ । ମୁଁ କହିଲି ଆମେ ସମସ୍ତେ ଖାଇବୁ । ଭାତ ଖାଉନୁ ?

ଭାତ କିଏ ଦେବ ? ଏଇଆ ପଚାରି ଚାଲିଗଲେ । ପ୍ରଧାନମନ୍ତ୍ରୀଙ୍କର ଦୋଭାଷୀ ଥିଲେ ଏମ୍.ପି. ଜଗନ୍ନାଥ ପଟ୍ଟନାୟକ । ମୁଖ୍ୟମନ୍ତ୍ରୀ ତାଙ୍କ ସାଙ୍ଗରେ ଥିଲେ । ସିନାପାଲିରେ ଆଉ ଦୁଇଟି ଆଦିବାସୀ ଘରେ ପ୍ରଧାନମନ୍ତ୍ରୀ ପଶି ସେମାନେ କ'ଣ ଖାଉଛନ୍ତି ବୋଲି ମଧ ପଚାରିଲେ ।

ସିନାପାଲି ଗାଁ ମୁଣ୍ଡରେ ଗୋଟିଏ ହାଣ୍ଡଲ ଲଗାଯାଇଥିବା ନଳକୂପ ଥିଲା । ପ୍ରଧାନମନ୍ତ୍ରୀ ନିଜେ ସେ ହାଣ୍ଡଲ ମାରିଲେ । ମାତ୍ର ପାଣି ବାହାରିଲା ନାହିଁ । ପଚାରିଲେ କ'ଣ ହୋଇଛି ? ଜଣେ କିଏ କହିଲା ଅନେକ ଦିନ ହେଲା ଅଚଳ ହୋଇପଡ଼ିଛି । ସିନାପାଲି ପରେ ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧୀ ନୂଆପଡ଼ାର ଗୋଟିଏ ଗାଁକୁ (ସେ ଗାଁ ନାଁ ମୋର ମନେନାହିଁ, ସମ୍ଭବତଃ ଡୁଙ୍ଗୁରୁପାଲି ନା ମହୁଲପାଲି ଏଇଭଳି କିଛି ହେବ) ଯାଇଥିଲେ । ସେଠାରେ ମଧ କିଛି ଆଦିବାସୀଙ୍କ ଘରେ ପଶି ସେମାନଙ୍କ ଜୀବନଯାତ୍ରା ସମ୍ପର୍କରେ ବୁଝିଥିଲେ । ସେତେବେଳେ ନୂଆପଡ଼ାର ଏମ୍.ଏଲ୍.ଏ. ଥିଲେ ଜନତା ଦଳର ଘାସିରାମ ମାଝି । ଘାସିରାମବାବୁ ପୁରୁଣା ନେତା । ଆଦିବାସୀ । ସେ ପ୍ରଧାନମନ୍ତ୍ରୀଙ୍କୁ ସ୍ୱାଗତ କରିଥିଲେ । ଦିନ ଗୋଟାଏ ପର୍ଯ୍ୟନ୍ତ ଏହା ଚାଲିଥିଲା । ପ୍ରଧାନମନ୍ତ୍ରୀ ଏହାପରେ ଭୁବନେଶ୍ୱର ଫେରିଗଲେ । ମୁଁ ମଧ ଜିପ୍‌ରେ ଭୁବନେଶ୍ୱର ଫେରିଲି । କଂଗ୍ରେସ ଦଳ ପକ୍ଷରୁ ମୁଁ ଜିପ୍‌ଟି ପାଇଥିଲି । କାହ୍ନୁ ବାବୁ ସେ ବ୍ୟବସ୍ଥା କରି ଦେଇଥିଲେ । ପ୍ରଧାନମନ୍ତ୍ରୀଙ୍କ ସାଙ୍ଗରେ କୌଣସି ପ୍ରେସ୍ ପାର୍ଟିନପଠାଇବା ପାଇଁ ସମ୍ଭବତଃ ଉପରୁ ନିର୍ଦ୍ଦେଶ ଥିଲା । ତେବେ ଦୂରଦର୍ଶନ କ୍ୟାମେରା ପ୍ରଧାନମନ୍ତ୍ରୀଙ୍କ ସମସ୍ତ କାର୍ଯ୍ୟକ୍ରମର ରେକର୍ଡ଼ କରିଥିଲା । ଜିପ୍‌ରେ କଂଗ୍ରେସ ଦଳ ସଂକେତ ମୋତେ ଏକ ପଶ୍ ମଧ ମିଳିଥିଲା । କାହ୍ନୁ ବାବୁ ନଚାହିଁଥିଲେ ମୁଁ ଯାଇପାରି ନଥାନ୍ତି । ତାଙ୍କ ଯୋଗୁଁ ପ୍ରଧାନମନ୍ତ୍ରୀଙ୍କ ଏହି ଗସ୍ତରେ ଭୁବନେଶ୍ୱରରୁ ମୁଁ ଏକାକୀ ଯାଇଥିଲି ।

ପରଦିନ ପ୍ରଧାନମନ୍ତ୍ରୀ କୋରାପୁଟ କାଶୀପୁର ଗସ୍ତରେ ଯାଇଥିଲେ । ସେତେବେଳେ କାଶୀପୁରରେ ଅନାହାର ମୃତ୍ୟୁ ସମଗ୍ର ଦେଶରେ ଚହଳ ପକାଇଥିଲା । ବିକ୍ଷୁବ୍ଧ କଂଗ୍ରେସ ନେତାମାନେ ଗତ ୩ମାସରେ ୫୦୬ଜଣ ଲୋକ ଅନାହାରରେ ମୃତ୍ୟୁମୁଖରେ ପଡ଼ିଥିବା ଅଭିଯୋଗ କରିଥିଲେ । କାଶୀପୁର ଏବଂ ଆଖପାଖ ଗାଁରେ ପ୍ରଧାନମନ୍ତ୍ରୀ ଓ ତାଙ୍କ ପତ୍ନୀ ଘୁରି ବୁଲିବା ବେଳେ କୋରାପୁଟ ବିଧାୟକ ନୃସିଂହ ନାଥ ବ୍ରହ୍ମା ତାଙ୍କର ଦୋଭାଷୀ କାମ କରିଥିଲେ । ନୃସିଂହବାବୁ ମୋର ଜଣେ ଘନିଷ୍ଠ ବନ୍ଧୁ ଥିଲେ । ସେ ପ୍ରଧାନମନ୍ତ୍ରୀଙ୍କ ଗସ୍ତ ପରେ ଯେତେବେଳେ ଭୁବନେଶ୍ୱର ଆସିଲେ ମୋ ସାଙ୍ଗରେ ଦେଖାହେଲା । ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧୀ ଓ ସୋନିଆ ଗାନ୍ଧିଙ୍କ ସହ ସେ ଯେଉଁ ଦୁଇଘଣ୍ଟା ସମୟ କଟାଇଥିଲେ ତାହା ତାଙ୍କ ଜୀବନର ସବୁଠାରୁ ଶ୍ରେଷ୍ଠ ସମୟ ବୋଲି ଆନନ୍ଦ ଗଦ୍‌ଗଦ୍ ହୋଇ କହିଥିଲେ ।

ସେପ୍ଟେମ୍ବର ୨୫ ତାରିଖରେ ପ୍ରଧାନମନ୍ତ୍ରୀ କୋରାପୁଟରୁ ଫେରି କଂଗ୍ରେସ କର୍ମୀମାନଙ୍କର ଏକ ସଭାରେ ଉଦ୍‌ବୋଧନ ଦେଇଥିଲେ । ସୂଚନା ଭବନରେ ଅନୁଷ୍ଠିତ ଏହି ସମାବେଶକୁ ନିରାପତ୍ତା ଦୃଷ୍ଟିରୁ ଅତି କଡ଼ାକଡ଼ି କରାଯାଇଥିଲା । କୌଣସି ସାମ୍ବାଦିକଙ୍କୁ ମଧ ତା' ଭିତରକୁ ଯିବାକୁ ଅନୁମତି ଦିଆଯାଇନଥିଲା । ପ୍ରଧାନମନ୍ତ୍ରୀଙ୍କ ଏହି ଗସ୍ତ ନିରାପତ୍ତା ଦିଗରୁ ଥିଲା ଅଭୂତପୂର୍ବ । ଏଥିପାଇଁ ଆନ୍ଧ୍ରରୁ ତିନି ପ୍ଲାଟୁନ୍ ସେନା ଓ ତିନିହଜାର ସାଧା ପୋଷାକ ଧାରି ପୋଲିସ୍ ତାଙ୍କୁ ଘେରି ରହିଥିଲେ । ସେଇଦିନ ରାତିରେ ପ୍ରଧାନମନ୍ତ୍ରୀ ଦିଲ୍ଲୀ ଫେରି ଯାଇଥିଲେ ।

ରାଜୀବ ଗାନ୍ଧୀ ଭୁବନେଶ୍ୱରରେ ଥିବାବେଳେ ରାଜନୀତିକ ମହଲ ଏବଂ ଆମେ ସାମ୍ବାଦିକମାନେ ଆଶା କରିଥିଲୁ ଅସନ୍ତୁଷ୍ଟ କଂଗ୍ରେସ କର୍ମୀ ଓ ନେତା ଜାନକୀ ପଟ୍ଟନାୟକଙ୍କ ବିରୁଦ୍ଧରେ କିଛି କହିବେ । ଅନ୍ୟପକ୍ଷରେ ନନ୍ଦିନୀ ଶତପଥୀଙ୍କ କଂଗ୍ରେସରେ ଯୋଗଦାନକୁ ବିରୋଧ କରି କେହି କିଛି କହିବେ ବୋଲି ଆଶା କରାଯାଉଥିଲା । ମାତ୍ର ତାହା କିଛି ହେଲାନାହିଁ ।

ପୂର୍ବରୁ ଜାନକୀବାବୁଙ୍କ ବିରୁଦ୍ଧରେ ଯେଉଁ ନେତାମାନେ ଥିଲେ ବିଶେଷକରି ଗଙ୍ଗାଧର ମହାପାତ୍ର, ହେମାନନ୍ଦ ବିଶ୍ୱାଳ ଓ ଭଜମନ ବେହେରାଙ୍କୁ ସେ ୧୯୮୭ ମେ' ମାସରେ ମନ୍ତ୍ରିମଣ୍ଡଳରୁ ବରଖାସ୍ତ କରିଥିଲେ । ସେତିକିରେ

ଜାନକୀବାବୁ କ୍ଷାନ୍ତ ହୋଇ ନଥିଲେ । ଏ ତିନିଜଣ ରହୁଥିବା ବଡ଼ବଡ଼ ଘର ଛାଡ଼ି ଦେଇ ଏମ୍.ଏଲ୍.ଏ. କଲୋନୀରେ ଘରନେବାପାଇଁ ନିର୍ଦ୍ଦେଶ ଦେଇଥିଲେ । ମୁଖ୍ୟମନ୍ତ୍ରୀଙ୍କ ଏହି ଆଦେଶ ବିରୁଦ୍ଧରେ ଗଙ୍ଗାଧର ମହାପାତ୍ର ଓଡ଼ିଶା ହାଇକୋର୍ଟରେ ଏକ ମୋକଦ୍ଦମା ଦାୟର କରିଥିଲେ । ମୁଖ୍ୟମନ୍ତ୍ରୀ ପୁଣି ନିର୍ଦ୍ଦେଶ ଦେଇଥିଲେ ଯେ ଯଦି ସେମାନେ ବଡ଼ ଘର ନଛାଡ଼ନ୍ତି ତେବେ ଘରର ମାର୍କେଟରେଣ୍ଟ ହିସାବରେ ମାସକୁ ତିନିହଜାର ଟଙ୍କା ଦେବେ । ୧୯୮୭ରେ ବିଧାୟକମାନଙ୍କର ବେତନ ଓ ଭତ୍ତା ମିଶି ମାସକୁ ଦୁଇ ହଜାର ଟଙ୍କା ମିଳୁଥିଲା । ମନ୍ତ୍ରୀ ହିସାବରେ ଏହି ବଡ଼ ଘରର ଭଡ଼ା ମାସିକ ସାଢ଼େ ତିନିଶହ ଟଙ୍କା ।

ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧୀ ଓଡ଼ିଶା ଛାଡ଼ିବା ପରେ କଂଗ୍ରେସ ଦଳ ଭିତରେ ପୁଣି ସେଇ ଗୋଷ୍ଠି ବିବାଦ ତୀବ୍ରତର ହେଲା । କାହ୍ନୁଚରଣ ଲେଙ୍କାଙ୍କ ସହ ଅସନ୍ତୁଷ୍ଟ ଗୋଷ୍ଠି ଜାନକୀ ହଟାଓ ଅଭିଯାନ ଆରମ୍ଭ କଲେ । ମାତ୍ର ହଠାତ୍ ଦେଖାଗଲା ରାଜ୍ୟ କଂଗ୍ରେସର ପୂର୍ବତନ ସଭାପତି ନିତ୍ୟାନନ୍ଦ ମିଶ୍ର ଜାନକୀବାବୁଙ୍କୁ ସମର୍ଥନ କରି ବିବୃତ୍ତି ଦେଲେ । ତେବେ ଏସବୁ ଭିତରେ ନନ୍ଦିନୀ ଶତପଥୀ କଂଗ୍ରେସରେ ଯୋଗ ଦେଉଥିବା ନିଶ୍ଚିତ ବୋଲି ଖବର ଆସିବା ପରେ ଉଭୟ ଜାନକୀ ପଟ୍ଟନାୟକଙ୍କ ଗୋଷ୍ଠିତ କାହ୍ନୁ ଲେଙ୍କାଙ୍କ ଗୋଷ୍ଠି ଭୟଭୀତ ହୋଇପଡ଼ିଲେ । ନନ୍ଦିନୀ ଶତପଥୀ କଂଗ୍ରେସରେ ଯୋଗଦେବା ପରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେବେ ବୋଲି କେତେକ ପ୍ରଚାର କରିବାବେଳେ ଆଉ କେତେକ ସେ ପ୍ରଦେଶ କଂଗ୍ରେସ କମିଟି ସଭାପତି ହେବେ ବୋଲି ପ୍ରଚାର କଲେ । ଫଳରେ ଉଭୟ ଜାନକୀବାବୁ ଓ କାହ୍ନୁବାବୁ ନିଜ ନିଜ ପଦବୀ ରକ୍ଷା କରିବା ପାଇଁ ଉଦ୍ୟମ ଆରମ୍ଭ କରିଦେଲେ । ମାତ୍ର ସେମାନଙ୍କ ସମର୍ଥକମାନେ ଆଶଙ୍କା ଭିତରେ ଦିନ କାଟିଲେ ।

ସାମ୍ବାଦିକତା, ସଂଗଠନ କାର୍ଯ୍ୟ ସହ ମୋର ସାହିତ୍ୟ କର୍ମ ମଧ୍ୟ ବେଶ୍ ଭଲଭାବରେ ଚାଲିଥାଏ । ପତ୍ରପତ୍ରିକାରେ ନିୟମିତ ଗଳ୍ପ ପ୍ରକାଶ ପାଉଥାଏ । ୧୯୮୩ରେ ମୋର କ୍ରୀଡ଼ାଭିତ୍ତିକ ଗଳ୍ପ ଅନେଶତ ରନ୍ ପ୍ରକାଶ ପାଇଲା । ଏ ବହିର ମୁଖବନ୍ଧ ଲେଖିଥିଲେ ପ୍ରଥିତଯଶା ସାହିତ୍ୟିକ ଶ୍ରୀ ଚନ୍ଦ୍ରଶେଖର ରଥ । ବସ୍ତୁତଃ ଏ ବହିର ମୁଖବନ୍ଧ ଲେଖିବା କଥା ଅଖିଳ ମୋହନ ପଟ୍ଟନାୟକ । ଅଖିଳ ବାବୁ ମୋତେ ଶ୍ରଦ୍ଧା କରୁଥିଲେ । ଅନେକ ସମୟରେ ଛୁଟିଦିନ ସକାଳେ ତାଙ୍କ ରଥଦାଣ୍ଡ ବାସଭବନକୁ ମୁଁ ଯାଇ ତାଙ୍କ ସହ କଥାବାର୍ତ୍ତା ହେଉଥିଲି । କଥାବାର୍ତ୍ତା ବେଳେ ତାଙ୍କ ସମସାମୟିକ ଓଡ଼ିଆ ସାହିତ୍ୟିକମାନଙ୍କ ସମ୍ପର୍କରେ ଆଲୋଚନା ହୁଏ । ସେ ଭାରି ସ୍ପଷ୍ଟବାଦୀ ଥିଲେ । କଥାବାର୍ତ୍ତାବେଳେ କେତେକ ବିଶିଷ୍ଟ ସାହିତ୍ୟିକଙ୍କ ସମ୍ପର୍କରେ ଆଲୋଚନା ହେଲାବେଳେ ଅଖିଳ ବାବୁ ସେମାନଙ୍କୁ ସମାଲୋଚନା କରନ୍ତି । ତାଙ୍କ ମତରେ ଏହି ଲେଖକମାନେ ଯେଉଁ ସାହିତ୍ୟ ରଚନା କରୁଛନ୍ତି ତା'ର ସ୍ଥିତି କେତେ କାଳ ରହିବ ? ମୋ ଲେଖା ସମ୍ପର୍କରେ ସେ କେବେ ଆଲୋଚନା କରନ୍ତି ନାହିଁ । ମୋ ଲେଖା ସେ ପଢ଼ନ୍ତି କି ନାହିଁ ସେଥିରେ ମୋର ସନ୍ଦେହ ମଧ୍ୟ ଥିଲା ।

ସେତେବେଳେ ଅର୍ଥାତ୍ ସତୁରି/ଅଶୀ ଦଶକରେ ଦୁର୍ଗାଚରଣ କୁଅଁରଙ୍କ ଦ୍ୱାରା ସମ୍ପାଦିତ 'ପଞ୍ଚଜନ୍ୟ' ଅଳ୍ପ କେତୋଟି ଉନ୍ନତମାନର ପତ୍ରିକା ମଧ୍ୟରେ ଅନ୍ୟତମ ଥିଲା । ମୋର ଅନେକ ଗଳ୍ପ ପଞ୍ଚଜନ୍ୟରେ ପ୍ରକାଶ ପାଇଥିଲା । ବିଶେଷ କରି ମୁଁ ସତୁରି ଦଶକ ଶେଷଭାଗରେ କ୍ରୀଡ଼ାକୁ ଆଧାର କରି କେତେଗୁଡ଼ିଏ ଗଳ୍ପ ରଚନା କରିଥିଲି । ଏଗୁଡ଼ିକ ମଧ୍ୟରୁ ଅନେକ ପଞ୍ଚଜନ୍ୟରେ ପ୍ରକାଶ ପାଇଥିଲା । ବିଶେଷକରି ଅନେଶତ ରନ୍, ବଭ୍ରୁବାହନ ଉପାଖ୍ୟାନ, କବଚ, କୁରୁକ୍ଷେତ୍ର ଆଦି ଅନେକ ଗଳ୍ପ ପାଠକମାନଙ୍କ ମଧ୍ୟରେ ବେଶ୍ ଆଦୃତ ହୋଇଥିଲା । କାରଣ ପ୍ରତି ଗଳ୍ପ ପ୍ରକାଶ ପରେ ମୁଁ

ନିୟମିତ ବିଭିନ୍ନ ସ୍ଥାନରୁ ପତ୍ର ପାଉଥିଲି । କୁଅଁରବାବୁ ସମ୍ପାଦକ ରୂପେ ସେତେବେଳେ ଓଡ଼ିଶାରେ ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଥିଲେ । ମୋ ଜାଣିବାରେ ସେ କେତେକ ବଡ଼ବଡ଼ ଲେଖକଙ୍କ ଲେଖାକୁ ତାଙ୍କ ପତ୍ରିକାରେ ପ୍ରକାଶ ପାଇଁ ଉପଯୁକ୍ତ ନୁହେଁ ବୋଲି ବିଚାର କରି ତାକୁ ପ୍ରକାଶ କରୁଥିଲେ ଏବଂ ସଂପୃକ୍ତ ଲେଖକଙ୍କୁ ଦୁଃଖ ପ୍ରକାଶ କରି ଏକ ଉନ୍ନତ ଧରଣର ଲେଖା ପଠାଇବାକୁ ଅନୁରୋଧ କରୁଥିଲେ । ତେଣୁ ମୋ ଗଳ୍ପଗୁଡ଼ିକ ପଞ୍ଚଜନ୍ୟରେ ପ୍ରକାଶ ପାଇବା ଫଳରେ ମୁଁ ମୋ ଗଳ୍ପର ମାନ ସମ୍ପର୍କରେ ନିଶ୍ଚିନ୍ତ ଥିଲି । ୧୯୮୦ ମସିହା ଫେବୃଆରୀ ମାସରେ ମୁଁ ଦୁଇନମ୍ବର ୟୁନିଟ୍‌ର ଟାଇପ୍-୪ ଘର ଛାଡ଼ି ରାଜମହଲ ଛକ ପାଖ ଦୁଇନମ୍ବର ୟୁନିଟ୍‌ର ମୁଖ୍ୟରାସ୍ତା କଡ଼ରେ ଟାଇପ୍-୫ ଘରକୁ ଆସିଲି । ମୋ କ୍ୱାର୍ଟର ପାଖରେ କୁଅଁରବାବୁଙ୍କ କ୍ୱାର୍ଟର ଥିଲା । ତେଣୁ ପ୍ରାୟ ଅଧିକାଂଶ ଦିନ ତାଙ୍କ ସହ ଦେଖାସାକ୍ଷାତ ହେଉଥିଲା । ମୋ ଗଳ୍ପଗୁଡ଼ିକର ସେ ଜଣେ ପ୍ରଶଂସକ ଥିଲେ । ମୋତେ ଗତାନୁଗତିକ ବିଷୟକୁ ଛାଡ଼ି,ରାଜନୀତି, କ୍ରୀଡ଼ା, ସାମାଜିକ ସମସ୍ୟା ଆଦି ବିଷୟବସ୍ତୁକୁ ନେଇ ଗଳ୍ପ ଲେଖିବା ପାଇଁ ପରାମର୍ଶ ଦେଇଥିଲେ ।

## -ମୋର କ୍ରୀଡା ଗଳ୍ପ ଓ ଅଖିଳ ପଟ୍ଟନାୟକ-

ପଞ୍ଚଜନ୍ୟରେ ମୋର ଅନେଶତ ରନ୍ ଏବଂ ବବ୍ରୁବାହନ ଉପାଖ୍ୟାନ ଗଳ୍ପ ପରପର ଦୁଇଟି ସଂଖ୍ୟାରେ ପ୍ରକାଶ ପାଇଥିଲା । ୧୯୮୦ ପୂଜା ସଂଖ୍ୟାରେ ବବ୍ରୁବାହନ ଉପାଖ୍ୟାନ ଗଳ୍ପଟି ପଢ଼ି ଅଖିଳବାବୁଙ୍କ ପତ୍ନୀ ଜ୍ଞାନ ପଟ୍ଟନାୟକ ମୋତେ ଟେଲିଫୋନ୍ କଲେ । ସେ ଦୁଇଟିଯାକ ଗଳ୍ପର ଏଭଳି ପ୍ରଶଂସା କଲେ ଯେ ମୁଁ ଅଭିଭୂତ ହୋଇଗଲି । ସେ ମୋତେ କହିଲେ ବରେନ୍ଦ୍ରବାବୁ ଆପଣଙ୍କ ଗଳ୍ପ ଦୁଇଟି ମୁଁ ୟାଙ୍କୁ(ଅଖିଳବାବୁ) ଜବରଦସ୍ତ ପଢ଼ାଇଲି । ସେ ପଢ଼ିବାପରେ ମତେ କହିଲେ ବରେନ୍ଦ୍ର ମିଥ୍‌କୁ ନେଇ ଏତେ ଚମତ୍କାର ଗଳ୍ପ ଲେଖିପାରେ ତାହା ମୋର ଧାରଣା ନଥିଲା । ଏହି ଘଟଣାର ପନ୍ଦର ଦିନ ପରେ ଦିନେ ମୋତେ ବିଶିଷ୍ଟ ନାଟ୍ୟବ୍ୟକ୍ତିତ୍ୱ ଅନନ୍ତ ମହାପାତ୍ର ଟେଲିଫୋନ୍ କରି କହିଲେ ବରେନ୍ଦ୍ର, ବିଖ୍ୟାତ ନାଟ୍ୟକାର ବିଜୟ ତେନ୍ଦୁଲକର ଭୁବନେଶ୍ୱର ଆସିଛନ୍ତି । ଆଜି ସନ୍ଧ୍ୟାରେ ଭୁବନେଶ୍ୱର କ୍ଲବ୍‌ରେ ତାଙ୍କ ପାଇଁ ଏକ ଛୋଟ ବନ୍ଧୁମିଳନର ଆୟୋଜନ କରାଯାଇଛି । ତମେ ଟିକେ ଆସ । କିଛି ସମୟ ତାଙ୍କ ସାଙ୍ଗରେ କଟାଇବା ।

ମୁଁ ସନ୍ଧ୍ୟାବେଳେ କ୍ଲବକୁ ଗଲି । କ୍ଲବ ଲନ୍‌ରେ ଛୋଟ ଆସରର ଆୟୋଜନ ହୋଇଛି । ଅନନ୍ତବାବୁ, ଗୋବିନ୍ଦ ତେଜ୍, ବିଶ୍ୱଜିତ୍ ଦାସ, ମହେନ୍ଦ୍ର ମିଶ୍ର, ଶାନ୍ତନୁ ମହାପାତ୍ର ଜଣକ ପରେ ଜଣେ ପହଞ୍ଚିଲେ । ପରେପରେ ଅଖିଳ ପଟ୍ଟନାୟକ ଏବଂ ଶେଷରେ ବିଜୟ ତେନ୍ଦୁଲକରଙ୍କୁ ନେଇ ଆଉ ଦି'ଜଣ ବନ୍ଧୁ ପହଞ୍ଚିଲେ । ଆସର ଆରମ୍ଭ ହେଲା ରମ୍ ହୁଇସ୍କିରୁ । ମୁଁ ହୁଇସ୍କି ନେଇଥିଲି । ମାତ୍ର ସେଠି ଅନେକ ରମ୍ ପିଇବାରେ ଅଭ୍ୟସ୍ତ ଥିଲେ । କିଛି ସମୟ ପରେ ହଠାତ୍ ଅଖିଳବାବୁ ମତେ କହିଲେ ବରେନ୍ଦ୍ର, ତୁମେ ଏତେ ଚମତ୍କାର ଗଳ୍ପ ଲେଖ ମୁଁ ଜାଣିନଥିଲି । ମୋ ସ୍ତ୍ରୀ ମୋତେ ତୁମର ଦୁଇଟି ଗଳ୍ପ ଜବରଦସ୍ତ ପଢ଼ାଇଲା । ପ୍ରକୃତରେ ତମେ ଆମ ପୁରାଣର ମିଥ୍‌କୁ ନେଇ ଯେମିତି ଲେଖିଛ ତାକୁ ଗୋଟିଏ ଶବ୍ଦରେ ଏକ୍‌ସିଲେଣ୍ଟ ବୋଲି କହିବାକୁ ହେବ । ଏ ଗଳ୍ପଗୁଡ଼ିକ ଯେତେବେଳେ ବହି କରିବ ସେ ବହିର ମୁଖବନ୍ଧ ମୁଁ ଲେଖିବି । ଏକଥା ତମର ନିଶ୍ଚୟ ମନେ ରହିବ । ମୁଁ ଆଶ୍ଚର୍ଯ୍ୟ ହେଲି- ଆନନ୍ଦିତ ହେଲି । ଅଖିଳବାବୁଙ୍କ ଭଳି ଜଣେ ବିଶିଷ୍ଟ ଲେଖକଙ୍କ ଠାରୁ ଏ ପ୍ରଶଂସା ଶୁଣି ମୁଁ ବାସ୍ତବରେ ଆତ୍ମତୃପ୍ତି ଲାଭ କଲି ।

ବହିପାଇଁ ମୋର ଆବଶ୍ୟକୀୟ ସଂଖ୍ୟକ ଗଳ୍ପ ଲେଖା ହୋଇଗଲା ପରେ ଫ୍ରେଣ୍ଡସ୍ ପବ୍ଲିଶର୍ସର ମାଲିକ ସହଦେବ ପ୍ରଧାନଙ୍କୁ ବହି ପ୍ରକାଶ କରିବାକୁ କହିବାରେ ସେ ଆନନ୍ଦରେ ରାଜି ହେଲେ । ମାତ୍ର ମୋର ଦୁର୍ଭାଗ୍ୟ ବହି

କମ୍ପୋଜ ଶେଷ ହେବା ବେଳକୁ ଅଖିଳବାବୁ ଆଉ ନଥିଲେ । ୧୯୮୨ ନଭେମ୍ବର ୨୯ ତାରିଖରେ ସେ ପରଲୋକ ଗମନ କଲେ । ଅଖିଳବାବୁଙ୍କ ବିୟୋଗ ଓଡ଼ିଆ ଗଳ୍ପ ସାହିତ୍ୟରେ ଏକ ଶୂନ୍ୟସ୍ଥାନ ସୃଷ୍ଟି କରିଥିଲା । ମୋର ମନେହୁଏ ଆଧୁନିକ ଓଡ଼ିଆ ଗଳ୍ପ ରଚନା କ୍ଷେତ୍ରରେ ଅଳ୍ପ ଯେଉଁ କେତେଜଣଙ୍କ ନାମ ଫକୀର ମୋହନଙ୍କ ପରେ ଆସିବ ସେମାନଙ୍କ ମଧ୍ୟରେ ଅଖିଳ ମୋହନ ଅନ୍ୟତମ । ରାଜକିଶୋର ପଟ୍ଟନାୟକ, ସୁରେନ୍ଦ୍ର ମହାନ୍ତି, ରବି ପଟ୍ଟନାୟକ ଓ ବୀଣାପାଣି ମହାନ୍ତିଙ୍କୁ ଏହି ପର୍ଯ୍ୟାୟରେ ନିଆଯାଇପାରେ । ଅଖିଳବାବୁ ଅଦ୍ଭୁତ ଧରଣର ମଣିଷ ଥିଲେ । 'ବୋହିମିଆନ୍' ବୋଲି ଇଂରାଜୀ ଭାଷାରେ ଯେଉଁ ଶବ୍ଦ ଅଛି ଅଖିଳବାବୁ ସେହି ଧରଣର ଜଣେ ବ୍ୟକ୍ତି ଥିଲେ । ଥରେ ଆଲୋଚନାବେଳେ ସେ କହିଲେ ମୋତେ କେତେକ ଦୋଷ ଦିଅନ୍ତି ଯେ ସମାଜର ଦରିଦ୍ର, ଅବହେଳିତ ବ୍ୟକ୍ତି ବା ରିକ୍ସାଚାଳକଙ୍କ ଜୀବନକୁ ନେଇ ମୁଁ କାହିଁକି ଗଳ୍ପ ଲେଖେନାହିଁ ? ମୋର ଉତ୍ତର ହେଉଛି ମୁଁ ସେଇ ସ୍ତରର ଲୋକଙ୍କ ସହ କେବେ ମିଶିନି କିମ୍ବା ସେମାନଙ୍କର ଜୀବନଶୈଳୀର ଅନୁଧ୍ୟାନ କରିନି । ତେଣୁ ଯାହା ମୁଁ ଜାଣିନି ଅନ୍ୟକିଛି ବନ୍ଧୁଙ୍କ ଭଳି ହିପୋକ୍ରାଟ ହୋଇ ଲେଖିପାରିବି ନାହିଁ ।

ମୋ ବହି କମ୍ପୋଜ ହୋଇଯିବା ପରେ ମୁଖବନ୍ଧ ଲେଖିବା ପାଇଁ କାହାକୁ କହିବି ଏ କଥା ଚିନ୍ତା କଲାବେଳେ ଜଣେ ବନ୍ଧୁ କହିଲେ ଚନ୍ଦ୍ରଶେଖର ରଥଙ୍କୁ ଦିଅନ୍ତୁ । ସେ ଭଲ ଲେଖିବେ । ଏହା ଏକ କ୍ରୀଡ଼ା ବିଷୟକୁ ନେଇ ଗଳ୍ପ ବହି ହୋଇଥିବାରୁ ଯାହାକୁ ତାକୁ ଦେଇହେବ ନାହିଁ । ଆଉ ଜଣେ/ଦିଜଣଙ୍କୁ ପଚାରି ବହିର ପ୍ରୁଫ୍ କପି ଧରି ଚନ୍ଦ୍ରଶେଖର ବାବୁଙ୍କ ପାଖକୁ ଗଲି । ୧୯୮୨ ମସିହା ଡିସେମ୍ବର ମାସ ହେବ । ତାରିଖ ମନେନାହିଁ । ସେତେବେଳେ ସେ ଟେକ୍ସବୁକ୍ ବ୍ୟୁରୋର ନିର୍ଦ୍ଦେଶକ ଦାୟିତ୍ୱରେ ଥିଲେ । ମୁଁ ଶହୀଦ ନଗରରେ ଥିବା ବ୍ୟୁରୋ ଅଫିସ୍‌କୁ ଯାଇ ତାଙ୍କୁ ଦେଖାକଲି । ମୋତେ ଦେଖି ଚନ୍ଦ୍ରଶେଖରବାବୁ ଖୁସିହେଲେ । ମୁଁ ମୋ ଆସିବା କଥା କହିବାରେ ସେ ହସିହସି କହିଲେ ଯାହାହେଉ ଆପଣଙ୍କ ବହିର ମୁଖବନ୍ଧ ଲେଖିବା ସୌଭାଗ୍ୟ ମୋତେ ଆପଣ ଦେଲେ ଏଥିରେ ମୁଁ ଖୁସି । ମୁଁ କହିଲି ସାର୍- ଏଭଳି ବହିର ମୁଖବନ୍ଧ ସମସ୍ତେ ଲେଖିବା ସମ୍ଭବ ନୁହେଁ । ସେ ମୋତେ କହିଲେ ମୋତେ କିନ୍ତୁ ଆପଣ ମାସଟିଏ ସମୟ ଦେବେ । ବହିର ପ୍ରୁଫ୍ କପି ଦେଇ ମୁଁ ଫେରିଲି ।

ଏଣେ ସହଦେବ ବାବୁ ତରତର ହେଉଥା'ନ୍ତି ମୁଖବନ୍ଧ ପାଇଁ । କାରଣ ଫେବୃଆରୀ ମାସ ପ୍ରଥମ ସପ୍ତାହରେ ଶ୍ରୀପଞ୍ଚମୀରେ ବହି ପ୍ରକାଶ ପାଇବ । ମୁଁ ଠିକ୍ ମାସକ ପରେ ଚନ୍ଦ୍ରଶେଖରବାବୁଙ୍କୁ ଟେଲିଫୋନ୍ କଲି । ସେ କହିଲେ ଆପଣଙ୍କ କାର୍ଯ୍ୟ ସମାପ୍ତ । ଆସି ନେଇ ଯା'ନ୍ତୁ । ମୁଁ ଯାଇ ତାଙ୍କ ଅଫିସ୍‌ରୁ ମୁଖବନ୍ଧ ଓ ପ୍ରୁଫ୍‌କପି ଆଣିଲି । ଅନେଶତ ରନ୍ ବହି ଉପରେ ଚନ୍ଦ୍ରଶେଖର ବାବୁଙ୍କ ମୁଖବନ୍ଧ ପଢ଼ି ମୁଁ ପ୍ରକୃତରେ ଅଭିଭୂତ ହୋଇଗଲି । ଭାଷା ଭାବ ଏବଂ ବର୍ଣ୍ଣନା ଚାତୁରୀ ଏତେ ଚମତ୍କାର ହୋଇଥିଲା ଯେ ତାକୁ ପଢ଼ି ତାଙ୍କରି ଭାଷାରେ ଆବେଗ ସମ୍ଭାଳି ନପାରି ମନ ବାଷ୍ପାକୁଳ ହୋଇ ଉଠିଥିଲା ।

ଆମେ ପୂର୍ବରୁ କହିଛୁ- ଜାନକୀବାବୁ ତାଙ୍କ ବିରୋଧୀ ଗଙ୍ଗାଧର ମହାପାତ୍ର, ହେମାନନ୍ଦ ବିଶ୍ୱାଳ ଓ ଭଜମନ ବେହେରାଙ୍କୁ ତାଙ୍କ ମନ୍ତ୍ରିମଣ୍ଡଳରୁ ବହିଷ୍କାର କରି ସେମାନେ ରହୁଥିବା ବଡ଼ ବଡ଼ ସରକାରୀ ଘର ଛାଡ଼ିବାକୁ ନିର୍ଦ୍ଦେଶ ଦେଇଥିଲେ । ଯଦି ରହିବେ ତେବେ ମାସକୁ ତିନିହଜାର ଟଙ୍କା ଭଡ଼ା ବା ମାର୍କେଟ୍ ରେଟ୍ ଦେବାକୁ ପଡ଼ିବ ବୋଲି ଆଦେଶ ଦେଇଥିଲେ । ଗଙ୍ଗାଧର ମହାପାତ୍ର ଏହା ବିରୁଦ୍ଧରେ ହାଇକୋର୍ଟକୁ ଯାଇ ଯୁକ୍ତି ଦର୍ଶାଇଥିଲେ ଯେ, ୧୯୮୫ରେ ମୁଖ୍ୟମନ୍ତ୍ରୀଙ୍କ ଜାମାତାଙ୍କ ବଡ଼ ଭାଇ ନିରଞ୍ଜନ ପଟ୍ଟନାୟକ ହାଇକୋର୍ଟଙ୍କ ଏକ ରାୟରେ ମନ୍ତ୍ରିମଣ୍ଡଳରୁ

ଇସ୍ତଫା ଦେଇଥିଲେ । ମାତ୍ର ସୁପ୍ରିମକୋର୍ଟରେ ହାଇକୋର୍ଟଙ୍କ କଟୁକ୍ତି କାଟ୍ ଖାଇବା ପରେ ୧୯୮୬ ଅଗଷ୍ଟ ମାସରେ ପୁଣି ମନ୍ତ୍ରିମଣ୍ଡଳରେ ଯୋଗଦେଲେ । ସେ ମନ୍ତ୍ରୀ ନଥିବା ସମୟରେ ବଡ଼ଘର ରଖି ମାସକୁ ମନ୍ତ୍ରୀମାନଙ୍କ ଭଳି ମାସିକ ଭଡ଼ା ତିନିଶହ ଟଙ୍କା ଦେଉଥିଲେ । ତେଣୁ ସେମାନଙ୍କ ପ୍ରତି ମୁଖ୍ୟମନ୍ତ୍ରୀ ଜାଣିଶୁଣି ଅନ୍ୟାୟ ଆଦେଶ ଦେଇଛନ୍ତି । ହାଇକୋର୍ଟ ଏ ଯୁକ୍ତି ଶୁଣିବା ପରେ ଜାନକୀବାବୁଙ୍କ ଆଦେଶକୁ ନାକଚ୍ କରି ଗଙ୍ଗାଧର ମହାପାତ୍ରଙ୍କ ସପକ୍ଷରେ ରାୟ ଦେଇଥିଲେ । ଏଣେ ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କୁ କଂଗ୍ରେସ ହାଇକମାଣ୍ଡ କଂଗ୍ରେସ ଦଳର ସଦସ୍ୟ ରୂପେ ଗ୍ରହଣ କଲେ । ୧୯୮୮ ଅଗଷ୍ଟ ମାସ ୨୦ ତାରିଖରେ ଏହି ଘୋଷଣା ହେଲା । ସେତେବେଳେ ଶ୍ରୀମତୀ ଶତପଥୀ ଦିଲ୍ଲୀରେ ଥିଲେ । ଏହି ଘୋଷଣା ପରେ ସେ ଅଗଷ୍ଟ ୨୩ରେ ଭୁବନେଶ୍ୱର ଆସିଲେ । ସେଇ ଏକା ବିମାନରେ କଂଗ୍ରେସ ସଭାପତି କାହ୍ନୁ ଚରଣ ଲେଙ୍କା ମଧ ଆସୁଥିଲେ । ଶ୍ରୀମତୀ ଶତପଥୀ ଦିଲ୍ଲୀରୁ ଆସୁଥିବା ବିଷୟ ବହୁଳ ଭାବେ ପ୍ରଚାରିତ ହୋଇଥିଲା । ବିମାନଘାଟିରେ କ'ଣ ହେବ ବୋଲି ଜାଣିବା ପାଇଁ ମୁଁ ଏବଂ ଆଉ ଅନେକ ସାମ୍ବାଦିକ ବିମାନ ଘାଟିକୁ ଯାଇଥିଲୁ । ଦେଖାଗଲା କେବଳ କାହ୍ନୁ ବାବୁ ନୁହଁନ୍ତି, ବସନ୍ତ ବିଶ୍ୱାଳ ମଧ ଶ୍ରୀମତୀ ଶତପଥୀଙ୍କ ସାଙ୍ଗରେ ଆସିଛନ୍ତି । ବିମାନ ଘାଟିରେ ଅନେକ କଂଗ୍ରେସ କର୍ମୀ ଓ ନେତା(ବିଶେଷ କରି ଜାନକୀବାବୁଙ୍କ ବିରୋଧୀ) ଜମା ହୋଇଥିଲେ । ନେତାମାନଙ୍କ ମଧରେ ସର୍ବଶ୍ରୀ ଗଙ୍ଗାଧର ମହାପାତ୍ର, ଭାଗବତ ପ୍ରସାଦ ମହାନ୍ତି, ଦୋଳଗୋବିନ୍ଦ ପ୍ରଧାନ, ରସାନନ୍ଦ ସାହୁ, ନବକିଶୋର ମଲ୍ଲିକ ଓ ଅମର ପ୍ରଧାନ ପ୍ରମୁଖ ଅନ୍ୟତମ । ଭାଗବତ ମହାନ୍ତିଙ୍କୁ ପଚାରିବାରେ ସେ କହିଲେ ଆମେ ଦୁର୍ନୀତିଗ୍ରସ୍ତ ଜାନକୀ ପଟ୍ଟନାୟକଙ୍କ ବିରୁଦ୍ଧରେ ଜଣେ ଟାଣୁଆ ନେତା ଚାହିଁଥିଲୁ । ଶ୍ରୀମତୀ ଶତପଥୀ କଂଗ୍ରେସରେ ଯୋଗଦେବା ଫଳରେ ଆମ ଲକ୍ଷ୍ୟ ପୂରଣ ହୋଇଛି ।

ଜାନକୀବାବୁଙ୍କ ଦ୍ୱିତୀୟ ଦଫା ଶାସନ କ୍ରମେ ଲୋକଙ୍କ ବିରୋଧର ସମ୍ମୁଖୀନ ହେଲା । ବ୍ୟାପକ ଦୁର୍ନୀତି ସାଙ୍ଗକୁ ପ୍ରିୟାପ୍ରୀତି ତୋଷଣରେ ଲୋକେ ଅତିଷ୍ଠ ହୋଇପଡ଼ିଲେ । ଏତିକିବେଳେ ୧୯୮୯ ନଭେମ୍ବର ୨୨ ତାରିଖରେ ଲୋକସଭା ପାଇଁ ନିର୍ବାଚନ ହେଲା । ଏହି ନିର୍ବାଚନରେ ଜନତା ଦଳ, ସି.ପି.ଏମ୍. ଏବଂ ସି.ପି.ଆଇ. ମିଳିତ ଭାବେ ଲଢ଼ିଥିଲେ । ନିର୍ବାଚନରେ କଂଗ୍ରେସର ଶୋଚନୀୟ ପରାଜୟ ହେଲା । ଏକୋଇଶଟି ଆସନରୁ କଂଗ୍ରେସ ମାତ ତିନୋଟି ଆସନ ପାଇଥିବାବେଳେ ଜନତା ଦଳ ୧୬ଟି, ସି.ପି.ଆଇ. ଓ ସି.ପି.ଏମ୍. ଗୋଟିଏ ଲେଖାଏଁ ଆସନ ପାଇଥିଲେ । ଏହି ଶୋଚନୀୟ ପରାଜୟ ପରେ କଂଗ୍ରେସ ଦଳରେ ବ୍ୟାପକ ପରିବର୍ତ୍ତନ ହେଲା । ଜାନକୀ ବଲ୍ଲଭ ପଟ୍ଟନାୟକ ହାଇକମାଣ୍ଡ କହିବା ପୂର୍ବରୁ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଲେ । ହେମାନନ୍ଦ ବିଶ୍ୱାଳ ୧୯୮୯ ଡିସେମ୍ବର ୭ ତାରିଖରେ ନୂଆ ମୁଖ୍ୟମନ୍ତ୍ରୀ ହେଲେ । ଅନ୍ୟପକ୍ଷରେ କାହ୍ନୁ ଲେଙ୍କା ମଧ ସଭାପତି ପଦରୁ ତଡ଼ାଖାଇଲେ । ତାଙ୍କ ସ୍ଥାନରେ ଆସିଲେ ଶ୍ରୀମତୀ ନନ୍ଦିନୀ ଶତପଥୀ । ସେତେବେଳେ ଓଡ଼ିଶାର ରାଜ୍ୟପାଳ ଥିଲେ ପ୍ରଫେସର ନୁରୁଲ ହାସାନ ।

## -ରାଜ୍ୟପାଳ ନୁରୁଲ ହାସନଙ୍କ ସହ ସଂପର୍କ-

ରାଜ୍ୟପାଳ ନୁରୁଲ୍ ହାସାନଙ୍କ ସହ ମୋର ଭଲ ସମ୍ପର୍କ ଥିଲା । ତା'ର ମୂଳ କାରଣଟି ହେଲା ଗୋଟିଏ ବହି । ୧୯୮୯ ଫେବୃଆରୀ ମାସ ଭୁବନେଶ୍ୱର ପୁସ୍ତକମେଳା ଉଦ୍‌ଘାଟନ ପାଇଁ ମୁଁ ଏବଂ ସାତକଡ଼ିବାବୁ ତାଙ୍କୁ ନିମନ୍ତ୍ରଣ କରିବାକୁ ଯାଇଥିଲୁ । ସେ ସାଙ୍ଗେସାଙ୍ଗେ ରାଜି ହୋଇଥିଲେ । ଫେବୃଆରୀ ୨୬ ତାରିଖରେ ପୁସ୍ତକମେଳା ଆରମ୍ଭ ହେଲା । ମେଳା ଉଦ୍‌ଘାଟନ ଉତ୍ସବରେ ମୁଖ୍ୟ ଅତିଥି ଥିଲେ ବିଖ୍ୟାତ ସାମ୍ବାଦିକ ଓ ସାହିତ୍ୟିକ ଗୌର କିଶୋର ଘୋଷ

। ସୂଚନା ଭବନ ପଛ ପଡ଼ିଆରେ ଏହା ଅନୁଷ୍ଠିତ ହୋଇଥିଲା । ସେ ବର୍ଷ ମୋର ଗୋଟିଏ ଗଳ୍ପ ସଂକଳନ ଅବ୍ୟର୍ଥ ମୃଗୟା(ପ୍ରକାଶକ- ବୁକ୍ସ ଏଣ୍ଡ ବୁକ୍ସ, କଟକ) ପ୍ରକାଶ ପାଇଥିଲା । ଗୌର ଘୋଷ ତାକୁ ଉନ୍ମୋଚନ କରିଥିଲେ । ଅବ୍ୟର୍ଥ ମୃଗୟା ଠିକ୍ ଗଳ୍ପ ସଂକଳନ ନୁହେଁ । ୧୯୭୧ ମସିହାରେ ମୋର ଲିଖିତ ଏକ କ୍ଷୁଦ୍ର ଉପନ୍ୟାସ 'ନାୟିକା' ନାମ ପରିବର୍ତ୍ତନ କରି ଅବ୍ୟର୍ଥ ମୃଗୟା ନାମରେ ପ୍ରକାଶିତ ହୋଇଥିଲା । ଉପନ୍ୟାସଟି ୮୨ ପୃଷ୍ଠା ହୋଇଥିବାରୁ ତା' ସହ କିଛି ଗଳ୍ପ ମିଶାଇ ୧୫୦ ପୃଷ୍ଠାର ଏକ ପୁସ୍ତକ ପ୍ରକାଶ ପାଇଥିଲା ।

ପୁସ୍ତକ ମେଳା ଉଦ୍‌ଘାଟନର ଦି'ଦିନ ପରେ ରାଜଭବନରୁ ମୋ ପାଖକୁ ଟେଲିଫୋନ୍ ଆସିଲା । ଟେଲିଫୋନ୍ କରିଥିଲେ ରାଜ୍ୟପାଳଙ୍କ ପି.ଏ. । ନାଁ ଏବେ ମନେ ପଡୁନି । ସେ କହିଲେ ସାର୍ ରାଜ୍ୟପାଳ ଆପଣଙ୍କୁ ଡାକିଛନ୍ତି । କେତେବେଳେ ଆସି ପାରିବେ ? ମୁଁ ପଚାରିଲି କ'ଣ ପାଇଁ ? ସେ କହିଲେ ମୁଁ କହି ପାରିବି ନାହିଁ । କେବଳ କହିଲେ ମିଃ ଧଳଙ୍କୁ ଟିକେ ଡାକ । ସେତେବେଳେ ଦିନ ୧୧ଟା । ମୁଁ କହିଲି ବର୍ତ୍ତମାନ ଗଲେ ହେବ ? ସେ କହିଲେ ମୁଁ ଆପଣଙ୍କୁ ଟେଲିଫୋନ୍ ବ୍ୟାକ୍ କରୁଛି । ପାଞ୍ଚମିନିଟ୍ ପରେ ସେ ଫୋନ୍ କରି କହିଲେ ହଁ- ଆସନ୍ତୁ । ମୁଁ ଆଶ୍ଚର୍ଯ୍ୟ ହେଲି ରାଜ୍ୟପାଳ ସେ ପୁଣି ପ୍ରଫେସର ନୁରୁଲ ହାସାନ । ମୁଁ ଚିନ୍ତା କରିକରି ଗଲି । ମୁଁ ପହଞ୍ଚିବାମାତ୍ରେ ପି.ଏ. ମୋତେ ରାଜ୍ୟପାଳଙ୍କ କୋଠରୀକୁ ନେଇଗଲେ । ମୁଁ ନମସ୍କାର କରି ବସିଲି । ଚା' ଆସିଲା । ଏଣୁ ତେଣୁ କଥାବାର୍ତ୍ତା ପରେ ପ୍ରଫେସର ହାସାନ ମୋତେ କହିଲେ- ମିଃ ଧଳ, କ୍ୟାନ୍ ୟୁ ଆରେଞ୍ଜ ଏ କପି ଅଫ୍ ସାଟାନିକ୍ ଭର୍ସେସ୍ । ଆଇ ଆମ୍ ଇଣ୍ଟରେଷ୍ଟେଡ ଟୁ ରିଡ୍ ଦ୍ୟାଟ୍ ବୁକ୍ । ଦିସ୍ ବୁକ୍ ଉଇଲ୍ ବି ବ୍ୟାନ୍‌ଡ ଏନି ଟାଇମ୍ । ସୋ ଇଟ୍ ହାଜ୍ ଗନ୍ ଅଣ୍ଡରଗ୍ରାଉଣ୍ଡ । ଆଇ ଥିଙ୍କ୍ ସମ୍‌ବଡି ମଷ୍ଟ କିପ୍ ଦିସ୍ ବୁକ୍ ଇନ୍ ବୁକ୍‌ଫେୟାର୍ । କାଇଣ୍ଡ୍‌ଲି ଆରେଞ୍ଜ ୱାନ୍ । ମୁଁ ତା'ପରେ ଜାଣି ପାରିଲି ରାଜ୍ୟପାଳଙ୍କ ଡାକରାର ଉଦ୍ଦେଶ୍ୟ । ମୁଁ ଚେଷ୍ଟା କରିବି ବୋଲି କହି ଫେରି ଆସିଲି । ତା'ପରେ ଖବର ନେଲି କାହା ପାଖରେ ଅଛି ? ଭୁବନେଶ୍ୱର ଅଶୋକା ମାର୍କେଟର ବୁକ୍‌ସପ୍ ମାଲିକ ଅନିଲ୍ ହଂସ କହିଲେ, ବୁକ୍‌ଫେୟାର୍‌ରେ ଥିବା ନାୟାର୍ ବୁକ୍ ସର୍ଭିସ୍ ଦୋକାନରେ ପାଇବେ, ସେ ଅତି ଗୋପନରେ ତାକୁ ରଖିଛି । ବହୁ ଟଙ୍କା କହୁଛି । ତେବେ ସେ ଆପଣଙ୍କୁ ଦେବ କି ନାହିଁ ମୁଁ କହିପାରୁନି । ମୁଁ ଅନିଲ୍‌କୁ ସାତଶହ ଟଙ୍କା ଦେଲି ଦୁଇଟି କପି ଆଣିଦେବା ପାଇଁ । ସେଇଦିନ ରାତିରେ ପୁସ୍ତକମେଳା ବନ୍ଦ ହେବା ବେଳକୁ ଅନିଲ ମୋତେ ଦୁଇଟି କପି ଆଣିଦେଲା । ମୁଁ ଗୋଟିଏ ମୋ ନିଜ ପାଇଁ ଏବଂ ଅନ୍ୟଟି ନୁରୁଲ୍ ହାସାନଙ୍କ ପାଇଁ ରଖିଲି । ଏ ବହିର ଲେଖକ ହେଉଛନ୍ତି ସଲମାନ ରୁସ୍‌ଦି । ଚମତ୍କାର ବହି । ଏ ବହି ସେତେବେଳେ ପୃଥିବୀରେ ସବୁଠାରୁ ବେଶୀ ବିକ୍ରି ହେଉଥାଏ । ମହମ୍ମଦଙ୍କ ସମ୍ପର୍କରେ କେତେକ ତଥ୍ୟ ଯୋଗୁ ମୁସଲମାନମାନେ ଏହାକୁ ବିରୋଧ କରିଥିଲେ । ସେମାନେ ରୁସ୍‌ଦିଙ୍କ ହତ୍ୟା ପାଇଁ ଆହ୍ୱାନ ଦେଇଥିଲେ । ସଲମାନ ହେଉଛନ୍ତି ଜଣେ ଭାରତୀୟ । ହିମାଚଳ ପ୍ରଦେଶର ସିମିଲାରେ ତାଙ୍କ ପୈତୃକ ବାସଭବନ । ଭାରତ ସରକାର ମୁସଲମାନଙ୍କ ଚାପରେ ଏହି ବହି ନିଷିଦ୍ଧ ହେବ ବୋଲି ବିଚାର କରୁଥା'ନ୍ତି ।

ପରଦିନ ମୁଁ ରାଜ୍ୟପାଳଙ୍କ ପି.ଏ.ଙ୍କୁ ଫୋନ୍ କରି ରାଜ୍ୟପାଳଙ୍କ ସହ ଦେଖା କରିବା ପାଇଁ କହିଲି । ସେ କହିଲେ ସରି ସାର୍, ରାଜ୍ୟପାଳ ଅସୁସ୍ଥ । ଦୁଇଦିନ ପର୍ଯ୍ୟନ୍ତ ସବୁ କାର୍ଯ୍ୟକ୍ରମ ବାତିଲ୍ । ମୁଁ ତଥାପି କହିଲି ଆପଣ ଖବର ଦିଅନ୍ତୁ ସେ ଯେଉଁ ବହି ଚାହୁଁଥିଲେ ମୁଁ ପାଇଛି । ଦି'ଘଣ୍ଟା ପରେ ପି.ଏ. ଫୋନ୍ କଲେ- ଆପଣ ବହିଟିକୁ ପ୍ୟାକ୍ କରି ମୋତେ ଆଣି ଦିଅନ୍ତୁ । ମୁଁ କହିଲି ତା' ହେଲେ ଆପଣ ଆସି ନେଇଯା'ନ୍ତୁ । ମୁଁ ସେ ବହିଟିକୁ ଭଲଭାବେ ମୋଟା ପଟାରେ ପ୍ୟାକ୍ କରି ତା' ଉପରେ ମୋ ନାଁ ଲେଖି ରଖିଲି । କାରଣ ନିଷିଦ୍ଧ ହେବାକୁଥିବା କୌଣସି ବହି ରାଜ୍ୟପାଳଙ୍କୁ ଖୋଲାଖୋଲି ଦେବା ଉଚିତ୍ ନୁହେଁ । ଚାରିଟା ବେଳକୁ ଫୋନ୍ ଆସିଲା- ସାର୍, ଗଭର୍ଣ୍ଣର ସାହେବ କହିଲେ ଆପଣ

ନିଜେ ଆସି ତାଙ୍କୁ ଦେଇଯା'ନ୍ତୁ । ମୁଁ ମଧ ଏଇଆ ଆଶା କରୁଥିଲି । ଚାରିଟାବେଳକୁ ମୁଁ ରାଜଭବନରେ ପହଞ୍ଚିବା ପରେ ପି.ଏ. ମୋତେ ଲିଫ୍ଟରେ ଉପର ମହଲାକୁ ନେଇଗଲେ । ସେଠି ରାଜ୍ୟପାଳ ରେସିଡେନ୍ସ ଅଫିସ୍‌ରେ ବସିଥିଲେ । ପି.ଏ. ମୋତେ ଭିତରକୁ ଯିବା ପାଇଁ କହିଲେ । ମୁଁ ଭିତରକୁ ଯାଇ ପ୍ୟାକ୍ ହୋଇଥିବା ବହିଟି ବଢ଼େଇ ଦେଲି । ସେ ନିଜେ ତାଙ୍କ ଟେବୁଲ୍‌ରେ ଥିବା ଏକ ଛୁରୀରେ ପ୍ୟାକେଟ୍‌କୁ କାଟି ବହିଟି ବାହାର କଲେ । ବହିଟି ଦେଖି ସେ ଏତେ ଖୁସି ହୋଇଗଲେ ଯେ ମୋତେ ହ୍ୟାଣ୍ଡସେକ୍ କରି କହିଲେ ମିଃ ଧଳ, ଆଇଏମ୍ ରିଯଲି ଥ୍ୟାଙ୍କଫୁଲ୍ ଟୁ ୟୁ । ରାଜ୍ୟପାଳଙ୍କ ମୁହଁରେ ସେତେବେଳେ ଯେଉଁ ପ୍ରସନ୍ନତା ତାକୁ ମୁଁ ଦେଖି ଆଶ୍ଚର୍ଯ୍ୟ ହେଲି । ସେ ପୁଣି କହିଲେ ମେନି ଥ୍ୟାଙ୍କସ୍- ଇଉ ହାଭ୍ ଡନ୍ ଏ ମିରାକଲ୍ । ଆଇ ଓ୍ୱାଜ୍ ଭେରିମଚ୍ ଲୁକିଂ ଫର୍ ଦି ବୁକ୍ ଏଣ୍ଡ ଆଇ ଫେଲ୍ଡ । ମୁଁ କହିଲି ସାର୍ ମୁଁ ଆସୁଛି । ଓ.କେ., ଓ.କେ. ମିଃ ଧଳ- ସେ ପୁଣି ଥରେ ମୋ ସହ ହ୍ୟାଣ୍ଡସେକ୍ କଲେ । ଜୀବନରେ ଇଏ ମଧ ଏକ ଅଧ୍ୟାୟ । ସେଇ ଗୋଟିଏ ବହି ମୋତେ ପ୍ରଫେସର ନୁରୁଲ ହାସାନଙ୍କ ସହ ବେଶ୍ ଘନିଷ୍ଠ କରି ଦେଇଥିଲା । ଏପରିକି ସେ ଓଡ଼ିଶାରୁ ପଶ୍ଚିମବଙ୍ଗ ରାଜ୍ୟପାଳ ହୋଇ ଯିବା ପରେ ମୁଁ କଲିକତା ଯାଉଥିବାବେଳେ ତାଙ୍କ ସହ ସାକ୍ଷାତ କରିବାକୁ ଥରେ ଚାହିଁଥିଲି । ସେ ସାଙ୍ଗେସାଙ୍ଗେ ମୋତେ ଡାକିଥିଲେ ।

କଲିକତା ବହିମେଳା ମୁଁ ପ୍ରାୟ ପ୍ରତିବର୍ଷ ଯାଏ । କାରଣ ଭୁବନେଶ୍ୱର ବହିମେଳା ପାଇଁ ବଡ଼ ବଡ଼ ବହି ଦୋକାନୀ ଓ ପ୍ରକାଶକଙ୍କ ସହ ଯୋଗାଯୋଗ କରି ସେମାନଙ୍କୁ ଭୁବନେଶ୍ୱର ଆସିବା ପାଇଁ ଆମେ ପ୍ରବର୍ତ୍ତାଉ । ସେଇଥିପାଇଁ ଆମ ଭୁବନେଶ୍ୱର ବହିମେଳା କଲିକତା ବହିମେଳା ଶେଷ ହେବାର କୋଡ଼ିଏ ଦିନ ପରେ କରୁ । ଅନେକ ପ୍ରକାଶକ ଓ ବହି ଦୋକାନୀ ମଧ ଆମକୁ ଅପେକ୍ଷା କରିଥା'ନ୍ତି । ଆମକୁ ଦେଖିବା ମାତ୍ରେ ଟଙ୍କା କିମ୍ବା ବ୍ୟାଙ୍କ୍ ଡ୍ରାଫ୍ଟ ଦେଇଦିଅନ୍ତି । କଲିକତାରେ ଅନେକ ବିଶିଷ୍ଟ ବଙ୍ଗାଳୀ ବନ୍ଧୁ ଥିଲେ । ତେଣୁ କଲିକତା ରହଣି ମୋର ଏବଂ ମୋ ପରିବାର ପାଇଁ ଅତ୍ୟନ୍ତ ସୁଖପ୍ରଦ ଥାଏ ।

## -ବିଜୁ ବାବୁଙ୍କ ପ୍ରତ୍ୟାବର୍ତ୍ତନ-

କଂଗ୍ରେସର ଦଶବର୍ଷର ଶାସନକୁ ଓଡ଼ିଶାର ଜନସାଧାରଣ ଏକ ଚରମ ଦୁର୍ନୀତିଗ୍ରସ୍ତ, ଅପାରଗ ଓ ପ୍ରିୟାପ୍ରୀତି ଶାସନ ରୂପେ ଆଖ୍ୟା ଦେଇ ୧୯୯୦ ଫେବୃଆରୀ ୨୭ ତାରିଖ ନିର୍ବାଚନରେ କଂଗ୍ରେସକୁ ସମ୍ପୂର୍ଣ୍ଣ ରୂପେ ପ୍ରତ୍ୟାଖ୍ୟାନ କରିଥିଲେ । କେବଳ ପ୍ରତ୍ୟାଖ୍ୟାନ ନୁହେଁ, ସମ୍ପୂର୍ଣ୍ଣ ପଦ ଦଳିତ କରିଥିଲେ । କଂଗ୍ରେସର ଦଶବର୍ଷର ଶାସନ ପରେ ଦଶମ ବିଧାନସଭାକୁ କଂଗ୍ରେସର ଠିକ୍ ଦଶଜଣ ସଦସ୍ୟ (୧୯୮୫ରେ ଥିଲେ ୧୧୫ଜଣ) ନିର୍ବାଚିତ ହେଲେ । ୧୯୯୦ ମାର୍ଚ୍ଚ ୫ତାରିଖରେ ବିଜୁ ପଟ୍ଟନାୟକଙ୍କ ପଞ୍ଚସ୍ତରିତମ ଜନ୍ମ ଜୟନ୍ତୀରେ ଓଡ଼ିଶାବାସୀ ତାଙ୍କୁ ଦେଲେ ଏକ ମହାର୍ଘ୍ୟ ଉପହାର । ବହୁବର୍ଷ ଧରି ସେହି ଆକାଂକ୍ଷିତ ପଦବୀଟି ପାଇଁ ଅତି ବ୍ୟାକୁଳ ଚିତ୍ତରେ ଅପେକ୍ଷା କରି ରହିଥିଲେ ଓଡ଼ିଶାର ଏହି ଅଦ୍ୱିତୀୟ ଜନନାୟକ । ଅତି ପ୍ରାଣସ୍ପର୍ଶୀ ଭାଷାରେ ସେ ଓଡ଼ିଶାବାସୀଙ୍କୁ ବିକଳ ଭାବେ ନିବେଦନ କରିଥିଲେ ଜୀବନର ଶେଷ ସମୟରେ ମୋତେ ତୁମର ସେବା କରିବା ପାଇଁ ଥରଟିଏ ସୁଯୋଗ ଦିଅ । ମୁଁ ସବୁକିଛି ଅଜାଡ଼ି ଦେବି । ଅଜାଡ଼ି ଦେବି ଧନ, ରତ୍ନ, ମଣି, ମାଣିକ୍ୟ- ଆଉ ସବୁଠାରୁ ଯାହା ବେଶୀ ଦରକାର ଓଡ଼ିଶାର ସେ ଅହଂକାର ଓ ପତିଆରା- ସବୁକିଛି ମୁଁ ଆଣିଦେବି । ଲୋକେ ବିଶ୍ୱାସ କଲେ । ଲୋକଙ୍କ ମନରେ ୧୯୬୧ରୁ ୧୯୬୩ ପର୍ଯ୍ୟନ୍ତ କଂଗ୍ରେସର ସେଇ ସମୟର ବିଜୁବାବୁଙ୍କର ନେତୃତ୍ୱ କଥା ଅବିସ୍ମୃତ ଅଧ୍ୟାୟ ହୋଇ ରହି ଯାଇଥିଲା । ତାରି ଫଳସ୍ୱରୂପ ଲୋକେ କାର୍ପଣ୍ୟ କଲେ ନାହିଁ । ସମଗ୍ର ହୃଦୟ ଅଜାଡ଼ି ବିଜୁବାବୁଙ୍କୁ ସମର୍ଥନ କଲେ । ନିର୍ବାଚନରେ



ବିଧାନସଭାର ସ୍ଥିତି ଏହି ଭଳି ଥିଲା- ଜନତା ଦଳ- ୧୨୩, କଂଗ୍ରେସ(ଆଇ)- ୧୦, ଭାଜପା- ୨, ସି.ପି.ଏମ୍.- ୧, ସି.ପି.ଆଇ.- ୫, ସ୍ୱାଧୀନ- ୬ଜଣ । ଦଶମ ବିଧାନସଭାରେ ବାଚସ୍ପତି ହେଲେ ଯୁଧିଷ୍ଠିର ଦାଶ ।

ମୋ ଭଳି ଅନେକ ଲୋକ ବିଜୁବାବୁ ତାଙ୍କ ୧୯୬୧-୧୩ ଅଦ୍ଭୁତ କାର୍ଯ୍ୟର ପୁନରାବୃତ୍ତି କରିବେ ବୋଲି ଆଶା କରିଥିଲେ । ମାତ୍ର ଆରମ୍ଭରୁ ସେ ସ୍ୱପ୍ନ ଲୋକଙ୍କର ତୁଟିଗଲା । ବିଜୁବାବୁ ନିର୍ବାଚନ ପରେ ଏକାକୀ ମୁଖ୍ୟମନ୍ତ୍ରୀ ରୂପେ ଶପଥ ନେଇଥିଲେ । ଆଶା କରାଯାଉଥିଲା ସେ ଏକ କ୍ଷୁଦ୍ର ମନ୍ତ୍ରିମଣ୍ଡଳ ଗଢ଼ିବେ । ମାତ୍ର ତିନି ଢେକରେ ସେ ତାଙ୍କୁ ମିଶାଇ ୩୭ଜଣଙ୍କୁ ମନ୍ତ୍ରିମଣ୍ଡଳରେ ସାମିଲ କଲେ । ତାହା ହିଁ ରାଜ୍ୟର ସବୁଠାରୁ ବଡ଼ ମନ୍ତ୍ରିମଣ୍ଡଳ ଥିଲା । ତେବେ ମୁସ୍କିଲ ହେଲା ସରକାରଙ୍କ ମୋଟ ୩୧ଟି ବିଭାଗ ୧୯୯୦ ମସିହାରେ ଥିଲା । ବିଜୁବାବୁ ମନ୍ତ୍ରୀମାନଙ୍କୁ ବିଭାଗ ଦେବାପାଇଁ ତାକୁ ୪୦ଟି ବିଭାଗକୁ ବଢ଼ାଇ ଦେଲେ । ତେବେ ମଧ୍ୟ ତାଙ୍କ ମନ୍ତ୍ରିମଣ୍ଡଳର ଅର୍ଦ୍ଧାଧିକ ମନ୍ତ୍ରୀ ବିଧାନସଭାରେ ପାଞ୍ଚବର୍ଷ ମଧ୍ୟରେ ଦୁଇଥରରୁ ବେଶୀ ଉତ୍ତର ଦେଇପାରି ନଥିଲେ । ଅନେକ ମନ୍ତ୍ରୀଙ୍କର ଉତ୍ତର ଦେବା ପାଇଁ ଆଦୌ ପାଳି ପଡ଼ିନଥିଲା । ବିଜୁବାବୁଙ୍କ ଶାସନରେ ଓ.ଏ.ଏସ୍. ଅଫିସରଙ୍କୁ ଜିଲ୍ଲାପାଳ ରୂପେ ନିଯୁକ୍ତି ଦିଆଯାଇଥିଲା । ସେଥିପାଇଁ ସେ ରାଜ୍ୟରେ ଜିଲ୍ଲା ସଂଖ୍ୟା ୧୯୯୩ ମସିହାରେ ୧୩ରୁ ୩୦କୁ ବୃଦ୍ଧି କରିଥିଲେ । ଏଥିମଧ୍ୟରୁ ଏକ ତୃତୀୟାଂଶ ଜିଲ୍ଲାରେ ଓ.ଏ.ଏସ୍. ଅଫିସରଙ୍କୁ ଜିଲ୍ଲାପାଳ ପଦବୀରେ ନିଯୁକ୍ତି ଦିଆଯାଇଥିଲା ।

ବିଜୁବାବୁଙ୍କ ଏହି ଦ୍ୱିତୀୟ ଅଧ୍ୟାୟରେ ସେମିତି କିଛି ଆଖିଦୃଶିଆ କାମ ହୋଇନଥିଲା । ଦ୍ୱିତୀୟ ଇସ୍ପାତ କାରଖାନା ପାଇଁ ସେ ବ୍ୟାକୁଳ ହୋଇ ଉଠିଥିଲେ । ମାତ୍ର ତାହା ସମ୍ଭବ ହୋଇ ନଥିଲା । ଲଣ୍ଡନରେ ଥିବା ସ୍ୱରାଜ ପଲ ଏବଂ ରତନ ଟାଟାଙ୍କୁ ନିମନ୍ତ୍ରଣ କରି ସେ ଆପ୍ୟାୟନ କରିଥିଲେ । ମାତ୍ର ଦୁହେଁ ତାଙ୍କୁ ଠକିଥିଲେ । କେବଳ ସେତିକି ନୁହେଁ, ପୋସ୍କୋ କମ୍ପାନୀ ମଧ୍ୟ ସେତେବେଳେ କାରଖାନା ପାଇଁ କଥାବାର୍ତ୍ତା କରି ଆଉ ଫେରି ନଥିଲେ । ସେତେବେଳେ ଲୁହାଦର ବିଶେଷ କିଛି ନଥିଲା । ଶସ୍ତାରେ ଲୁହା ମିଳୁଥିଲା । ମାତ୍ର ବର୍ତ୍ତମାନ(୨୦୧୦ ମସିହା) ଲୁହା ଦର ଟନ୍ ପିଛା ଛ'ହଜାର ଟଙ୍କା ହୋଇଯିବାରୁ ଟାଟା-ପୋସ୍କୋ ଆସି ଲାଇନ୍ ଲଗାଉଛନ୍ତି । ବିଜୁବାବୁ ତାଙ୍କର ଏଇ ଦ୍ୱିତୀୟ ସିଂହାସନ ରୋହଣ ପରେ କିଛି କରିନପାରି ଅବଶୋଷ କରିଥିଲେ ।

ବିଜୁବାବୁଙ୍କ ଦ୍ୱିତୀୟ ପ୍ରସ୍ଥ ଶାସନ ଦୁର୍ନୀତିମୁକ୍ତ ନଥିଲା । ଏହି ଶାସନରେ ସ୍ୱୟଂ ବିଜୁବାବୁଙ୍କ ସମେତ ଅନେକ ମନ୍ତ୍ରୀଙ୍କ ବିରୁଦ୍ଧରେ ଦୁର୍ନୀତି ଅଭିଯୋଗ ଆସିନଥିଲା । ମୋର ମନେ ଅଛି ବିଜୁବାବୁଙ୍କ ନାମରେ ଭୁବନେଶ୍ୱର ଆହ୍ଲାବାଦ ବ୍ୟାଙ୍କରେ ଦଳୀୟ ପାଣ୍ଠିରେ ହଠାତ୍ ୧୮ କୋଟି ଟଙ୍କା ଜମା ହୋଇ କିଛିଦିନ ପରେ ତାହା ପ୍ରତ୍ୟାହାର କରି ନିଆଯାଇଥିଲା । ମୁଁ ଏ ଘଟଣାର ପୁଙ୍ଖାନୁପୁଙ୍ଖ ବିବରଣୀ ବଙ୍ଗଳା ଖବରକାଗଜ 'ଆଜକଲ୍'ରେ ଦେଇଥିଲି । ୧୯୮୯ ଅକ୍ଟୋବର ୨୪ତାରିଖରେ ଜନତା ଦଳର ଏକ ଆକାଉଣ୍ଟ ବାପୁଜୀନଗର ସ୍ଥିତ ଆହ୍ଲାବାଦ ବ୍ୟାଙ୍କରେ ଖୋଲା ଯାଇଥିଲା । ବିଜୁ ପଟ୍ଟନାୟକ ଜନତା ଦଳ ସଭାପତି ରୂପେ ୧୯ ହଜାର ୭ଶହ ଟଙ୍କା ଦେଇ ଏହି ଆକାଉଣ୍ଟ ଖୋଲିଥିଲେ । ୧୯୯୫ ଅଗଷ୍ଟ ୮ ତାରିଖ ସୁଦ୍ଧା ସେଥିରେ ୧୭ କୋଟି ୭୩ଲକ୍ଷ ୯୮ ହଜାର ୪୮ ଟଙ୍କା ଜମା ହୋଇଥିଲା । ବିଭିନ୍ନ ସମୟରେ ବିଜୁବାବୁ ନିଜେ ନଗଦ ଆକାରରେ ୧୫କୋଟି ୨୭ଲକ୍ଷ ୮୫ହଜାର ୧୭୦ଟଙ୍କା ଜମା କରିଥିଲେ । ଏ ସଂକ୍ରାନ୍ତରେ ରାଜ୍ୟ ଭିଜିଲାନ୍ସ ବିଭାଗ ତଦନ୍ତବେଳେ ଜାଣିଥିଲେ । ଜନତା ଦଳ ଆକାଉଣ୍ଟ ୯୮୫ ନମ୍ବର ଆକାଉଣ୍ଟରୁ ତାଙ୍କ ନାମରେ ଥିବା ଆଉ ଏକ ଆକାଉଣ୍ଟ ୩୮୮୬ ନମ୍ବରକୁ ୧୭ କୋଟି ୫୯ଲକ୍ଷ ୪ହଜାର ୮୪୧ ଟଙ୍କା ଟ୍ରାନ୍ସଫର କରି ଦିଆଯାଇଛି । ଭିଜିଲାନ୍ସ ଏହା ଉପରେ ମୋକଦ୍ଦମା ଦାୟର କରିଥିଲେ ।

ମୁଖ୍ୟମନ୍ତ୍ରୀ ଭାବେ ବିଜୁବାବୁ ମାସକୁ ଏତେଟଙ୍କା ଦରମା ନେଉଥିଲେ । ୧୯୯୩ ଡିସେମ୍ବର ମାସରେ କୋଣାର୍କ ଉତ୍ସବରେ ଯୋଗ ଦେବାପାଇଁ ଚାଳିଶ ଜଣ କଳାକାର ଆସିଥିଲେ । ଏହା ଏକ ସରକାରୀ ଉତ୍ସବ ଥିଲା । ଏମାନଙ୍କ ପାଇଁ ଓ.ଟି.ଡି.ସି.(ଓଡ଼ିଶା ଟୁରିଜିମ୍ ଡେଭଲପମେଣ୍ଟ କର୍ପୋରେସନ) ୪୧ହଜାର ଡଲାର ଖର୍ଚ୍ଚ ବହନ କରିବା କଥା । ମାତ୍ର ବିଜୁବାବୁ ନିଜ ପକେଟ୍‌ରୁ ୧୨ଲକ୍ଷ ୬୬ହଜାର ୬୮୧ଟଙ୍କା ଦେଇ ଏ ଡଲାର ଇଣ୍ଡିଆନ୍ ଓଭରସିଜ୍ ବ୍ୟାଙ୍କରୁ ନେଇଥିଲେ । ଏ ଅନୁଷ୍ଠାନ ଯୋଗଦେବାପାଇଁ ଆସିଥିବା ବାଲିଦ୍ୱୀପ ପ୍ରତିନିଧିଙ୍କ ଖର୍ଚ୍ଚ ପାଇଁ ବିଜୁ ପଟ୍ଟନାୟକ ଆର୍ଯ୍ୟନ ଟ୍ରାଭେଲର୍ସଙ୍କୁ ୧୪ଲକ୍ଷ ୬୮ହଜାର ୯୬୮ ଟଙ୍କା ଚେକ୍ ଦେଇଥିଲେ । ଏମାନଙ୍କର ରହିବା-ଖାଇବା ଖର୍ଚ୍ଚ ପାଇଁ ହୋଟେଲ କଳିଙ୍ଗ ଅଶୋକକୁ ୧ଲକ୍ଷ ୨୨ହଜାର ଟଙ୍କାର ଚେକ୍ ଦେଇଥିଲେ । ଏ ସମସ୍ତ ଚେକ୍ ବାପୁଜୀ ନଗର ଆହ୍ଲାବାଦ ବ୍ୟାଙ୍କ ଜନତା ଦଳ ଆକାଉଣ୍ଟ ନମ୍ବର ୯୮୫ରୁ ଦେଇଥିଲେ । ଏହି ଅର୍ଥ ତାଙ୍କ ଦଳ ପକ୍ଷରୁ କାହିଁକି ବହନ କରା ଯାଇଥିଲା ବୋଲି ଭିଜିଲାନ୍ସ ତାଙ୍କୁ ପ୍ରଶ୍ନ କରିଥିଲେ । ସବୁଠାରୁ ବଡ଼ କଥା ହେଲା ଜନତା ଦଳର ସଭାପତି ଅଶୋକ ଦାସ ଥିଲେ ମଧ ତାଙ୍କୁ ଏହି ଆକାଉଣ୍ଟ ବ୍ୟବହାର କରିବା ପାଇଁ ବିଜୁବାବୁ ଦେଇନଥିଲେ । ବିଜୁବାବୁ ମୁଖ୍ୟମନ୍ତ୍ରୀତ୍ୱରୁ ଯିବାପରେ ୧୯୯୫ ନଭେମ୍ବର ୪ ତାରିଖରେ ରାଜ୍ୟ ଭିଜିଲାନ୍ସ ବିଭାଗ ତାଙ୍କ ନାମରେ ଏକ ମୋକଦ୍ଦମା ଦାୟର କରିଥିଲା । ତାଙ୍କ ମୃତ୍ୟୁ ପର୍ଯ୍ୟନ୍ତ( ୧୯୯୭ ଏପ୍ରିଲ ୧୭ ) ଏହି ମୋକଦ୍ଦମା ରହିଥିଲା । ମୃତ୍ୟୁ ପରେ ଉଠାଇ ନିଆଯାଇଥିଲା ।

ଅନେକ ଲୋକ କିନ୍ତୁ ବିଜୁବାବୁଙ୍କ ବିରୁଦ୍ଧରେ ଏହି ଭିଜିଲାନ୍ସ ମୋକଦ୍ଦମାକୁ ପସନ୍ଦ କରି ନଥିଲେ । ଓଡ଼ିଶାରେ ଦୁର୍ନୀତି କଂଗ୍ରେସ ଅମଳରେ ଏତେ ବ୍ୟାପକ ଥିଲା ଯେ ଲୋକେ କଂଗ୍ରେସକୁ ଗାଦିଚ୍ୟୁତ କରି ତଳିତଳାନ୍ତ କରିଥିଲେ । ଲୋକଙ୍କ ମନରେ କ'ଣ ଥାଏ ଜାଣିବା ମୁସ୍କିଲ୍ ।

୧୯୯୫ ନିର୍ବାଚନରେ ଲୋକେ ବିଜୁବାବୁଙ୍କୁ ଗାଦିଚ୍ୟୁତ କଲେ । ମୁଁ ୧୯୯୫ରେ ଜି-ଟିଭି ପକ୍ଷରୁ ଓଡ଼ିଶା ନିର୍ବାଚନ ବିଶ୍ଳେଷଣ ପାଇଁ ନିଯୁକ୍ତି ପାଇଥିଲି । ମୋତେ କୁହାଯାଇଥିଲା ରାଜ୍ୟର ୧୪୭ଟି ନିର୍ବାଚନମଣ୍ଡଳୀକୁ ଯାଇ ଲୋକଙ୍କ ମନୋଭାବ ବୁଝି ରିପୋର୍ଟ ଦେବାପାଇଁ । କେଉଁ ଦଳ ସପକ୍ଷରେ ହାୱା ଅଛି ଏବଂ କିଏ ଜିତିବ ସେ ସମ୍ପର୍କରେ ଆଭାସ ଦେବାପାଇଁ ।  ମୁଁ ବିଭିନ୍ନ ଜିଲ୍ଲାପାଇଁ ସେ ଅଞ୍ଚଳର କିଛି ସାମ୍ବାଦିକ ବନ୍ଧୁଙ୍କ ସାହାଯ୍ୟ ନେଇଥିଲି । ମୁଁ ନିଜେ ବିଜୁବାବୁ, ଜାନକୀବାବୁ ଏବଂ ଅନ୍ୟାନ୍ୟ ଦଳର ନେତା ତଥା ଆଉ କିଛି ବିଶିଷ୍ଟ ନେତାଙ୍କୁ ସାକ୍ଷାତକାର କରି ସେମାନଙ୍କ ମତାମତ ନେଇଥିଲି । ବିଜୁବାବୁ ୧୯୯୦ରେ କମ୍ୟୁନିଷ୍ଟ ଓ ସି.ପି.ଏମ୍. ଦଳର ସାହାଯ୍ୟ ନେଇଥିଲେ । ମାତ୍ର ଶାସନର ପାଞ୍ଚବର୍ଷ ମଧ୍ୟରେ ସେ ଏହି ଉଭୟ ଦଳକୁ ପାଖରେ ପୁରାଇ ନଥିଲେ । ଫଳରେ ୧୯୯୫ ନିର୍ବାଚନ ସମୟରେ ଏହି ଦୁଇ ଦଳ ସହ କଂଗ୍ରେସର ସମ୍ପର୍କ ସ୍ଥାପନ ହେଲା । ବିଜୁବାବୁଙ୍କୁ ମୁଁ ସାକ୍ଷାତକାର ସମୟରେ ପଚାରିବାବେଳେ ସେ କିନ୍ତୁ କହିଲେ ଏ ଦୁଇ ଦଳର କୌଣସି ଲୋକ ସମର୍ଥନ ନାହିଁ । କମ୍ୟୁନିଷ୍ଟ ଦଳ ସାଢ଼େ ୧ ଶତାଂଶ ଏବଂ ସି.ପି.ଏମ୍. ଏକ ଶତାଂଶରୁ କମ୍ ଭୋଟ୍ ପାଇଛି । ତେଣୁ ଏମାନଙ୍କ ସାହାଯ୍ୟ ନେଇ ଜଣେ ଜିତିବା କିଭଳି ସମ୍ଭବ ? ଭାରତୀୟ ଜନତା ଦଳ ୧୯୯୦-୯୫ରେ ବିଧାନସଭାରେ ତିନୋଟି ଆସନ ପାଇଥିଲା। ଓଡ଼ିଶାରେ ସେମାନଙ୍କର ଶକ୍ତି ବୃଦ୍ଧି ଘଟିଥିଲା । ମୁଁ ଯେତେବେଳେ ବି.ଜେ.ପି. ସହ ତାଙ୍କର ବୁଝାମଣା ହେବ କି ବୋଲି ପଚାରିଲି ସେ ହଁ କି ନାହିଁ କିଛି ନକହି କେବଳ କହିଲେ ସେ ଦିଗରୁ ସେ ଏବେ ସୁଦ୍ଧା ଚିନ୍ତା କରି ନାହାନ୍ତି । ମନେହେଲା ଶେଷ ମୁହୂର୍ତ୍ତରେ ସେ ବି.ଜେ.ପି. ଆଡ଼କୁ ଢଳୁଥିଲେ । ମାତ୍ର ଶେଷ ପର୍ଯ୍ୟନ୍ତ କୌଣସି ନିଷ୍ପତ୍ତି ନେଇପାରି ନଥିଲେ ।

୧୯୯୫ ନିର୍ବାଚନରେ ବିଜୁବାବୁଙ୍କ ଜନତା ଦଳ ୪୬ଟି ସ୍ଥାନ ଦଖଲ କରିଥିଲା । ମାତ୍ର ସେଇ ନିର୍ବାଚନରେ ଅନ୍ୟୁନ ତିରିଶରୁ ପଇଁତିରିଶଟି ସ୍ଥାନରେ ତାଙ୍କ ଦଳର ପ୍ରାର୍ଥୀମାନେ ଦୁଇଶହରୁ ଦୁଇହଜାର ଭୋଟ୍‌ରେ ପରାସ୍ତ ହୋଇଥିଲେ । କମ୍ୟୁନିଷ୍ଟ ଓ ସି.ପି.ଏମ୍. ସହ କିମ୍ବା ବି.ଜେ.ପି. ସହ ତାଙ୍କର ଯଦି ପୁଣି ବୁଝାମଣା ହୋଇଥା'ନ୍ତା ତେବେ ସେ ପୁଣିଥରେ ଶାସନକୁ ଆସିଯାନ୍ତେ । ଏହି ନିର୍ବାଚନରେ କଂଗ୍ରେସ- ୮୦, ବି.ଜେ.ପି.- ୯, ଝାଡ଼ଖଣ୍ଡ ମୁକ୍ତି ମୋର୍ଚ୍ଚା- ୪, ଝାଡ଼ଖଣ୍ଡ ପିପୁଲ୍ସ ପାର୍ଟି- ୧, କମ୍ୟୁନିଷ୍ଟ- ୧ ଏବଂ ସ୍ୱାଧୀନ ପ୍ରାର୍ଥୀ ୬ଟି ସ୍ଥାନରେ ବିଜୟ ଲାଭ କରିଥିଲେ ।

ବିଜୁବାବୁ ତାଙ୍କ ନିଜର ଏକଜିଦିଆ ମନୋବୃତ୍ତି ଯୋଗୁ ଏହିଭଳି ଅନେକ କ୍ଷେତ୍ରରେ ପରାଜୟ ବରଣ କରିଥିଲେ ।

ବିଜୁ ବାବୁଙ୍କ ଦ୍ୱିତୀୟ ପର୍ଯ୍ୟାୟ ମୁଖ୍ୟମନ୍ତ୍ରୀତ୍ୱ ବେଳେ ତାଙ୍କ ଦଳ ଭିତରେ ତାଙ୍କ ବିରୁଦ୍ଧରେ ବିଦ୍ରୋହ ଦେଖା ଦେଇଥିଲା । ବିଶେଷ କରି ବିଜୟ ମହାପାତ୍ରଙ୍କ ବିପୁଳ କ୍ଷମତା ପ୍ରୟୋଗ ଏବଂ ଅନ୍ୟମାନଙ୍କ ପ୍ରତି ତାଙ୍କର ଅବଜ୍ଞା ତାଙ୍କ ବିରୁଦ୍ଧରେ ଅନେକ ବିଧାୟକଙ୍କୁ ମେଳି କରିବାକୁ ସୁଯୋଗ ଦେଇଥିଲା । ୧୯୯୩ ମାର୍ଚ୍ଚ-ଏପ୍ରିଲରେ ବିଜୁ ବାବୁ ତାଙ୍କ ମନ୍ତ୍ରୀମଣ୍ଡଳରେ ବିଭାଗ ଅଦଳ ବଦଳ କରି ଅନେକ ମନ୍ତ୍ରୀଙ୍କୁ ବଡ ବଡ ବିଭାଗ ବଦଳରେ ଛୋଟ ଛୋଟ ବିଭାଗ ଦେଇଥିଲେ । ବିଶେଷ କରି ରାମକୃଷ୍ଣ ପଟ୍ଟନାୟକ, ଶରତ କର, ଜଗନ୍ନାଥ ମଲ୍ଲିକ ଓ ବିଶ୍ୱ ଭୂଷଣ ହରିଚନ୍ଦନଙ୍କ ଭଳି ବରିଷ୍ଠ ମନ୍ତ୍ରୀଙ୍କ ବିଭାଗରେ କାଟ୍ ଛାଣ୍ଟ କରିଥିଲେ । ତା ସତ୍ତ୍ୱେ କିଛି ହୋଇ ନଥାନ୍ତା ମାତ୍ର ବିଜୟ ମହାପାତ୍ର ଓ ନଳିନୀ ମହାନ୍ତିଙ୍କ ବିଭାଗରେ କୌଣସି କାଟ ଛାଣ୍ଟ ହୋଇ ନଥିଲା । ବରଂ ଅଧିକ କ୍ଷମତା ଦିଆଯାଇଥିଲା । ଅପରନ୍ତୁ ବିଜୟ ମହାପାତ୍ରଙ୍କୁ ସ୍ୱରାଷ୍ଟ୍ର ବିଭାଗ ତାଙ୍କ ପକ୍ଷରୁ ବୁଝିବାକୁ ବିଜୁବାବୁ ଦାୟିତ୍ୱ ଦେଇଥିଲେ । ଫଳରେ ନିଆଁରେ ଘିଅ ପଡିଲା ପରି ଏହି ଚାରି ଜଣଙ୍କ ସମେତ ହରିଶ୍ଚନ୍ଦ୍ର ବକ୍ସିପାତ୍ର, ଘାସିରାମ ମାଝି, ଭାଗବତ ବେହେରା, ଚୈତନ୍ୟ ପ୍ରସାଦ ମାଝି ପ୍ରମୁଖ ମଧ୍ୟ ବିଜୁ ବାବୁଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କଲେ । ସେତିକି ବେଳକୁ ଶ୍ରୀକାନ୍ତ ଜେନା ବିଜୁ ବାବୁଙ୍କ ମନ୍ତ୍ରୀ ମଣ୍ଡଳକୁ ଏକ ଦୁର୍ନୀତି ଗ୍ରସ୍ତ ଓ ଅପାରଗ ମନ୍ତ୍ରୀମଣ୍ଡଳ ବୋଲି ଖୋଲାଖୋଲି ସମାଲୋଚନା କଲେ । ଶ୍ରୀକାନ୍ତ ସେତେବେଳେ ଲୋକସଭା ସଦସ୍ୟ ଥିଲେ । ହଠାତ ଶ୍ରୀକାନ୍ତଙ୍କ ଏହି ଖୋଲା ବିଦ୍ରୋହ ଅନେକଙ୍କୁ ବିସ୍ମିତ କଲା । ଇତି ମଧ୍ୟରେ ରାମକୃଷ୍ଣ, ଶରତ, ଜଗନ୍ନାଥ ଓ ବିଶ୍ୱ ଭୂଷଣ ସେମାନଙ୍କ ପକ୍ଷ ଛେଦନ ବିରୁଦ୍ଧରେ ମନ୍ତ୍ରିମଣ୍ଡଳରୁ ଇସ୍ତଫା ଦେଲେ । ବିଜୁ ବାବୁ ସେମାନଙ୍କର ଇସ୍ତଫା ମଧ୍ୟ ଗ୍ରହଣ କରିନେଲେ ।

ଶ୍ରୀକାନ୍ତଙ୍କ ଖୋଲା ବିଦ୍ରୋହ ଏବଂ ବିଜୁ ବାବୁଙ୍କ ବିରୁଦ୍ଧରେ ବିଷୋଦ୍‌ଗାର ଦେଖି ମୁଁ ଏବଂ ଅନ୍ୟ ସାମ୍ବାଦିକ ମାନେ ମନେ କରିଥିଲେ ଦଳର ବିଧାୟକ ମାନେ ତାର ତୀବ୍ର ପ୍ରତିବାଦ କରିବେ ମାତ୍ର ତାହା ହେଲା ନାହିଁ । ୧୯୯୩ ଡିସେମ୍ବର ୧୯ ତାରିଖରେ ଜନତା ଦଳର କାର୍ଯ୍ୟକାରୀ କମିଟି ବୈଠକରେ ଏହା ଉପରେ ଆଲୋଚନା ହେଲା । ମହାରଥି ଓ ଶରତ ପାଇକରାୟ ଶ୍ରୀକାନ୍ତଙ୍କ ବିରୁଦ୍ଧରେ କିଛି କହିବା ପାଇଁ ଉଦ୍ୟମ କରୁଥିବା ବେଳେ ହଠାତ୍ ଅଘଟଣ ଘଟିଲା । ରଣେନ୍ଦ୍ର ପ୍ରତାପ ସ୍ୱାଇଁ ଓ ଉମେଶ ସ୍ୱାଇଁ ପ୍ରମୁଖ ତାର ତୀବ୍ର ପ୍ରତିବାଦ କରି ଶ୍ରୀକାନ୍ତଙ୍କ ବକ୍ତବ୍ୟକୁ ସମର୍ଥନ କରିଥିଲେ ।

ଆମେ ଆମ ମୁକ୍ତ ବିଚାର ସ୍ତମ୍ଭ(୦୩.୦୧.୯୪)ରେ ସେତେବେଳେ ଲେଖିଥିଲୁ - ଜନତା ଦଳର କେତେକ ସଦସ୍ୟ ବିଜୁ ବାବୁଙ୍କୁ କୃଷ୍ଣଙ୍କ ଅବତାର ଏବଂ ଓଡିଶା ଜନତା ଦଳକୁ ଯଦୁବଂଶ ବୋଲି ଆଖ୍ୟା ଦେଇଛନ୍ତି ।

ସଚିବାଳୟର ଚାରିଚାଲା ମୁଖ୍ୟମନ୍ତ୍ରୀ ଗଳିକୁ ଏହି ଏମ.ଏଲ.ଏ.ମାନେ ନିତ୍ୟ ବୃନ୍ଦାବନ ଆଖ୍ୟା ଦେଇଛନ୍ତି । ଶ୍ରୀକୃଷ୍ଣଙ୍କ ଅସ୍ତ୍ର ତ୍ୟାଗ ପରେ ଯେପରି ଯଦୁ ବଂଶ ଧ୍ୱଂସ ହେବାର ଚରମ ପରିବେଶ ସୃଷ୍ଟି ହେଲା ଆଜି ନିର୍ବାଚନର ଅବ୍ୟବହିତ ପୂର୍ବରୁ ଜନତା ଦଳରେ କ୍ରମ ବର୍ଦ୍ଧିଷ୍ଣୁ ଅନ୍ତଃ କନ୍ଦଳ ସ୍ୱରୂପକୁ ଦେଖିଲେ ଯେ କେହି ଯଦୁ ବଂଶର ପରିଣତି କଥା ହିଁ ଚିନ୍ତା କରିବ । ୧୯ ତାରିଖ ବୈଠକରେ ଏହା କେତେ ସତ୍ୟ କେତେ ନିଷ୍ଠୁର ବାସ୍ତବ ତାହା ହିଁ ପ୍ରମାଣିତ ହୋଇଗଲା । ମନେହେଲା ସେହି ପ୍ରବଳ ପରାକ୍ରାନ୍ତ ନାୟକ, ବହୁ ଦୁର୍ଜେୟ ଯୁଦ୍ଧର ଅନୁଭବୀ ସେନାପତି ସାମାନ୍ୟ ଶରର ଆଘାତରେ ଧରାଶାୟୀ ହୋଇ ପଡୁଛନ୍ତି । ଚତୁର୍ଦ୍ଦିଗରେ ଘେରି ରହିଥିବା ପାର୍ଶ୍ୱ ପରିଜନ ଯେଉଁମାନେ ତାଙ୍କରି ଦ୍ୱାରା ପରାଙ୍ଗପୁଷ୍ଟ ନିରବରେ ଚାହିଁ ରହିଛନ୍ତି ଯଦୁବଂଶର ଶେଷ ନାୟକଙ୍କ ବୈରାଗ୍ୟ ଜର୍ଜରିତ ଅଶ୍ରୁ ବାଣ ମୁଖ ମଣ୍ଡଳକୁ ।

ମନ୍ତ୍ରୀ ମଣ୍ଡଳ ବିଭାଗ ଅଦଳ ବଦଳ ଓ ଚାରି ମନ୍ତ୍ରୀଙ୍କ ଇସ୍ତଫା ପରେ ଦିନେ ଶରତ କର ମୋ ସାଙ୍ଗରେ ଦେଖା ହେଲା ବେଳେ କହିଲେ ବରେନ୍ଦ୍ର ବାବୁ ଆପଣଙ୍କର ବୁଢା ସାଙ୍ଗରେ ଭଲ ସମ୍ପର୍କ -ତାଙ୍କୁ ପଚାରୁ ନାହାଁନ୍ତି ସେ ଆମ ମାନଙ୍କ ପ୍ରତି କଣ ଠିକ ନ୍ୟାୟ କରିଛନ୍ତି । ବିଶେଷ କରି ମୋ ପାଖରେ ୪ଟି ଛୋଟ ଛୋଟ ବିଭାଗ ସଂସ୍କୃତି, ପର୍ଯ୍ୟଟନ, ଲୋକ ସମ୍ପର୍କ ଆଉ ପେନସନ ପ୍ରଶାସନ ଥିଲା । ସେଥିରୁ ଲୋକ ସମ୍ପର୍କ ଓ ପର୍ଯ୍ୟଟନକୁ ନେଇଗଲେ । ମୁଁ ଆଉ କଣପାଇଁ ମନ୍ତ୍ରୀ ରହିଥାନ୍ତି ? ମୁଁ ବି ପ୍ରକୃତରେ ଆଶ୍ଚର୍ଯ୍ୟ ହୋଇଥିଲି ବିଜୁ ବାବୁଙ୍କର ଏ ପ୍ରକାର ଏକ ଦେଶ ଦର୍ଶିତା ବିଚାର ପାଇଁ । ଏଣେ ମନ୍ତ୍ରୀମଣ୍ଡଳରୁ ଇସ୍ତଫା ଦେଇ ବିଶ୍ୱ ଭୂଷଣ ହରିଚନ୍ଦନ ବିଜେପିରେ ଯୋଗ ଦେଲେ । ବିଜୁ ବାବୁଙ୍କ ଏହି ବିଚାରକୁ ସେତେବେଳେ ତାଙ୍କ ଦଳରେ ମଧ କେହି ପସନ୍ଦ କରି ନଥିଲେ । ଦିନେ ବିଜୁ ବାବୁଙ୍କ ଭଲ ମୁଡ ଥିବା ବେଳେ ମୁଁ ଏ ବିଷୟ ଉଠାଇ ପଚାରିଲି ସାର୍, ଶରତ କର, ରାମକୃଷ୍ଣ ପଟ୍ଟନାୟକ, ଜଗନ୍ନାଥ ମଲ୍ଲିକ ଆପଣଙ୍କ ସାଙ୍ଗରେ ୧୯୬୯ରୁ ଅଛନ୍ତି । ୧୯୭୧ରେ ଆପଣ ଦୁଇଜଣଙ୍କୁ ମନ୍ତ୍ରୀପଦ ଦେଇଥିଲେ । ଏବେ ସେମାନଙ୍କୁ ଏଭଳି ଅପମାନିତ କରିବାକୁ କେହି ପସନ୍ଦ କରୁ ନାହାନ୍ତି । ବିଶେଷ କରି ଶରତ କରଙ୍କ ପାଖରୁ ଦୁଇଟି ବିଭାଗ ନେଇଗଲା ପରେ ତାଙ୍କ ପାଖରେ ଆଉ ରହିଲା କଣ ? ବିଜୁ ବାବୁ କହିଲେ ଶରତ ଆସି ମୋତେ କହିଥିଲେ ହୋଇଥାନ୍ତା । ସେମାନେ ଇସ୍ତଫା କାହିଁକି ଦେଲେ ? ମୁଁ କହିଲି ଆପଣ ବିଜୟ- ନଳିନୀଙ୍କୁ ଭଲ ଭଲ ବିଭାଗ ଦେବାରେ ଅନେକ ଅସନ୍ତୁଷ୍ଟ । ବିଜୁ ବାବୁ ରାଗିଯାଇ କହିଲେ ଆଇ ଡୋଣ୍ଟ କେୟାର । ପାର୍ଟିତ ପାଣିରେ ଚାଲୁନି, ସେଥିପାଇଁ ଟଙ୍କା ଦରକାର । ବିଜୟ, ନଳିନୀ ସମସ୍ତଙ୍କ କଥା ବୁଝୁଛନ୍ତି । ଏମାନେ କେତେ ଜଣଙ୍କ କଥା ବୁଝୁଛନ୍ତି ? କେତେ ୱାର୍କର ଏମାନଙ୍କ ପାଖରେ ଅଛନ୍ତି ? ସବୁ ସେଇ ଦୁଇଜଣ ବୁଝୁଛନ୍ତି । ସେମାନଙ୍କ ପ୍ରତି ଏପରି ଅସନ୍ତୁଷ୍ଟ ଭାବ କାହିଁକି ? ମୁଁ ଫେରି ଆସି ଏକଥା ଶରତ ବାବୁଙ୍କୁ ଦିନେ ଦୁଇଦିନ ପରେ ଦେଖା ହେଲା ବେଳେ କହିଲି । ସେ କହିଲେ ଯାହା ହେଉ ବୁଢା ମାନିଲା ମୋ ପ୍ରତି ଅନ୍ୟାୟ ହୋଇଛି । ମୁଁ କହିଲି ଆପଣ ଦେଖା କଲେ ସେ ଆପଣଙ୍କୁ ପୁଣି ନେଇଯିବେ ବୋଲି ମୋର ଧାରଣା । ମାତ୍ର କଣ ହେଲା କେଜାଣି ସେମାନେ କେହି ଗଲେନି ।

ପ୍ରସନ୍ନ ପାଟଶାଣୀ ଏବେ ଆଉ ସ୍ୱୀକାର କରିବେ କି ନାଁ ମୁଁ ଜାଣିନି । ମାତ୍ର ସେକ୍ରେଟେରିଏଟରେ ଦେଖା ସାକ୍ଷାତ ବେଳେ ମୋତେ ଥରେ କହିଲେ ଭାଇନା ବୁଢା ସାଙ୍ଗରେ ତ ତୁମର ଭଲ ସମ୍ପର୍କ । ମୋ କଥା ଟିକେ କାନରେ ପକାଇ ଦେଉନ । ଚାରି ପାଞ୍ଚ ଦିନ ପରେ ଆଉ ଥରେ ଦେଖା ହେଲା ବେଳେ ସେ ବିଷୟ ସେ ଦୋହରାଇଲେ । ମୁଁ ଏହାର ଦୁଇଦିନ ପରେ ଥରେ ବିଜୁ ବାବୁଙ୍କ ସହ ଦେଖା ହେଲା ବେଳେ ଏକଥା କହିଲି । ସେ କିଛି କହିଲେ ନାହିଁ । ତାର ମାସେ ଦେଢମାସ ପରେ ମନ୍ତ୍ରିମଣ୍ଡଳ ଅଦଳ ବଦଳ ବେଳେ ପ୍ରସନ୍ନ ପାଟଶାଣୀ ମନ୍ତ୍ରୀ ହେଲେ । ଅବଶ୍ୟ ସେଭଳି ଗୁରୁତ୍ୱପୂର୍ଣ୍ଣ ବିଭାଗ ନୁହେଁ । ପେନସନ ଓ ପବ୍ଲିକ ଗ୍ରିଭାନସେସ ବିଭାଗର । ସେ ଯେଉଁ ବିଭାଗ ହେଉ, ମନ୍ତ୍ରୀ ତ ମନ୍ତ୍ରୀ

ନାଲିବତୀ ଗାଡିର ମାଲିକ । ଅବଶ୍ୟ ମୋ କହିବା ଯୋଗୁଁ ପ୍ରସନ ମନ୍ତ୍ରୀ ହେଲେ ବୋଲି କହିବା କେବଳ କାକତାଳୀୟ ନ୍ୟାୟ ହେବ ।

ବିଜୁ ବାବୁଙ୍କ ସମୟାନୁବର୍ତ୍ତିତା ଥିଲା ଅସାଧାରଣ । ୧୯୯୧ରେ ସପ୍ତମ ଭୁବନେଶ୍ୱର ପୁସ୍ତକ ମେଳା ପୁରୁଣା ବସଷ୍ଟାଣ୍ଡ ଠାରେ ଅନୁଷ୍ଠିତ ହୋଇଥିଲା । ବିଜୁ ବାବୁଙ୍କୁ ଆମେ ଡାକିଥିଲୁ ଉଦଘାଟନ ପାଇଁ । ଅପରାହ୍ନ ୪ଟାରେ ଉଦ୍‌ଘାଟନ ଉତ୍ସବ । ମୁଁ ଷ୍ଟେଜ ସଜାଡି ବିଜୁ ବାବୁଙ୍କ ଅପେକ୍ଷା କରିଛି । ସାତକଡି ହୋତା ଆମ ସଭାପତି ତାଙ୍କର ଦେଖା ନାହିଁ । ମୁଁ ବ୍ୟସ୍ତ ହୋଇ ଏପଟ ସେପଟ ହେଉଛି । ସେତେବେଳେ ମୋବାଇଲ ଫୋନ ନଥିଲା । ୪ଟା ବାଜିବାକୁ ଠିକ ୧ ମିନିଟ ଅଛି ବିଜୁ ବାବୁଙ୍କ ଗାଡି ପହଞ୍ଚିଲା । ମୁଁ ଏବଂ ଅନ୍ୟ ବନ୍ଧୁମାନେ ଫୁଲ ତୋଡା ଦେଇ ତାଙ୍କୁ ମଞ୍ଚକୁ ପାଛୋଟି ନେଲୁ । ସାତକଡି ବାବୁ ସେତେବେଳକୁ ଆସିନଥାନ୍ତି । ମତେ ବିଜୁ ବାବୁ ପଚାରିଲେ ତମ ପ୍ରେସିଡେଣ୍ଟ କିଏ ? ମୁଁ ସାତକଡି ବାବୁଙ୍କ ନାଁ କହିଲି । ସାତକଡି କୁଆଡେ ଗଲା ? ସେତେବେଳକୁ ଚାରିଟା ବାଜି ଦୁଇ ମିନିଟ । ସାତକଡି ବାବୁ ତରତର ହୋଇ ମଞ୍ଚ ଉପରକୁ ଚଢିଗଲେ । ବିଜୁ ବାବୁ ତାଙ୍କୁ ଦେଖି କହିଲେ ସାତକଡି ଇଟ ଇଜ ନାଓ ଟୁ ମିନିଟ ପାସଡ ଟୁ ଫୋର । ସାତକଡି ବାବୁ କିଛି କହି ପାରିଲେ ନାହିଁ । ବିଜୁ ବାବୁ ହସି ହସି କହିଲେ ଏଇଥିପାଇଁ ଟ୍ରେନ ସଦାବେଳେ ବିଳମ୍ବରେ ପହଞ୍ଚୁଛି । ସମସ୍ତେ ହସି ଉଠିଲେ ।

ପରବର୍ଷ ଅର୍ଥାତ ୧୯୯୨ରେ ଅଷ୍ଟମ ଭୁବନେଶ୍ୱର ପୁସ୍ତକ ମେଳା ରବିନ୍ଦ୍ର ମଣ୍ଡପ ପଛ ପଡିଆରେ ଅନୁଷ୍ଠିତ ହୋଇଥିଲା । ସେ ବର୍ଷ ଆମ ବିରୁଦ୍ଧରେ କିଛି ତଥାକଥିତ ବିଶିଷ୍ଟ ଲୋକ ଆଉ ଏକ ପୁସ୍ତକମେଳା ପ୍ରଦର୍ଶନୀ ପଡିଆରେ କରିଥିଲେ । ଆମ ମେଳା ଆରମ୍ଭ ହେବା ୪ଦିନ ପୂର୍ବରୁ ଏମାନେ କରିଥିଲେ । ଏମାନଙ୍କ ମଧ୍ୟରେ ଥିଲେ ପ୍ରଦ୍ୟୁମ୍ନ ବଳ, ମହେନ୍ଦ୍ର ମିଶ୍ର, ଭାବଗ୍ରାହୀ ମିଶ୍ର ଓ କିଛି ଭୁବନେଶ୍ୱର ପୁସ୍ତକ ପ୍ରକାଶକ । ସେମାନେ ମୋତେ ଚାଲେଞ୍ଜ କରିଥିଲେ ଭୁବନେଶ୍ୱର ପୁସ୍ତକ ମେଳା ବନ୍ଦ କରିଦେବେ । ମୁଁ ଚାଲେଞ୍ଜ ଗ୍ରହଣ କରିଥିଲି । ରବୀନ୍ଦ୍ର ମଣ୍ଡପ ହତାରେ ପୁସ୍ତକ ମେଳା ହେଲା । ବିଜୁ ବାବୁଙ୍କୁ ଉଦ୍‌ଘାଟନ ପାଇଁ ଡାକିଥିଲି । ରବିନ୍ଦ୍ର ମଣ୍ଡପରେ ସଭା ହେଲା । ବିଜୁ ବାବୁ ସେଠାରେ ତାଙ୍କ ଚିଫ ସେକ୍ରେଟାରୀ ରମାକାନ୍ତ ରଥଙ୍କ ଶ୍ରେଷ୍ଠ କବିତା ବହିର ଏକ କବିତାକୁ ସମାଲୋଚନା କରି କହିଲେ ଏ କି କବିତା ? ଅଲ ୟାର୍ଡରେଟ ଜହ୍ନ ଘାଙ୍ଗରେ ଗୁମାଲର ତୁଳନା ? ମୁଁ କହିଲି ସାର ରମାକାନ୍ତ ବାବୁ ଜଣେ ପ୍ରତିଷ୍ଠିତ କବି । ସେ ବହୁ ପୁରସ୍କାର ପାଇଛନ୍ତି । ଆପଣ ତାଙ୍କୁ ସେପରି କହିବା ଉଚିତ ନୁହେଁ । ବିଜୁ ବାବୁ ସେହିଭଳି ଚଡା ଗଳାରେ କହିଲେ ଡୋଣ୍ଟ ଟକ ରବିସ । ହି ଇଜ ଏ ବିଗ ଅଫିସର । ହି କ୍ୟାନ ମୋବିଲାଇଜ ଫର ଏନି ପ୍ରାଇଜ । ଆମ ଆଶ୍ଚର୍ଯ୍ୟ ହେଲୁ ସମଗ୍ର ଅଡିଟୋରିୟମରେ ବହୁ ସାହିତ୍ୟିକ ଥିଲେ । ମାତ୍ର କେହି ଜଣେ ହେଲେ ବିଜୁ ବାବୁଙ୍କ କଥାର ପ୍ରତିବାଦ କଲେ ନାହିଁ ।

ବିଜୁବାବୁଙ୍କ ଶାସନ ଇତି ହେଲା ।୧୯୯୫ ମସିହାରେ ନିର୍ବାଚନରେ କଂଗ୍ରେସ ଦଳ ୮୦ଟି ସ୍ଥାନ ପାଇଁ ସରକାର ଗଠନ କଲା । ବିଧାନ ସଭାରେ ଜନତା ଦଳ (ଜେ.ଡି) ୪୬ଟି ସ୍ଥାନ, ବିଜେ.ପି - ୯ଟି, ଝାଡଖଣ୍ଡ ମୁକ୍ତିମୋର୍ଚା, ୪ଟି ସ୍ଥାନ କମ୍ୟୁନିଷ୍ଟଦଳ ଓ ଝାଡ଼ଖଣ୍ଡ ମୁକ୍ତିମୋର୍ଚା ଗୋଟିଏ ଲେଖାଏ ଏବଂ ସ୍ୱାଧୀନ ସଭ୍ୟ - ୬ଟି ସ୍ଥାନ ହାସଲ କରିଥିଲେ । ୧୯୯୫ ନିର୍ବାଚନ କଂଗ୍ରେସ ଦଳ ପକ୍ଷରୁ ଓଡିଶାରେ ଗିରିଧର ଗମାଙ୍ଗ (ଲୋକସଭା ସଦସ୍ୟ) ପରିଚାଳଣ କରିଥିଲା ସେ ତାଙ୍କ ଅଫିସ ସ୍ୱସ୍ତିହୋଟେଲ (ଷ୍ଟେସନ ସ୍କୋୟାର)ରେ ଦୁଇଟି ସୁଇଟ୍ ନେଇ କରିଥିଲେ । ସମସ୍ତେ ବିଚାରିଥିଲେ ଗମାଙ୍ଗ ସମ୍ଭବତଃ ମୁଖ୍ୟମନ୍ତ୍ରୀ ହେବେ । ଗମାଙ୍ଗଙ୍କ ସହ ମୋର ଘନିଷ୍ଠ ବଂଧୁତା ଥିଲା ଏବଂ ଏବେ ମଧ୍ୟ ଅଛି । ୧୯୭୧ରେ ସେ କୋରାପୁଟରୁ ଲୋକସଭା ଉପନିର୍ବାଚନରେ ପ୍ରତିଦ୍ୱନ୍ଦିତ କରି ବିଜୟୀ

ହୋଇଥିଲେ । ତାଙ୍କ କକା ଭାଗିରଥି ଗମାଙ୍ଗ ସେଥର ଉଭୟ କୋରାପୁଟ ଏମ.ପି. ଏବଂ ଗୁଣୁପୁରରୁ ଏମ୍.ଏଲ..ଏ ଭାବେ ନିର୍ବାଚିତ ହୋଇଥିଲେ । ସେ ଏମ୍.ପି. ପଦବୀରୁ ଇସ୍ତଫା ଦେବା ଫଳରେ ଉପନିର୍ବାଚନ ହୋଇଥିଲା । ଭାଗିରଥିଙ୍କ ସହ ମୋର ବେଶ୍ ଘନିଷ୍ଠତା ଥିଲା । ସେ ମୋତେ ଗିରିଧର ସହ ପରିଚୟ କରାଇ ଦେଇଥିଲେ । ସେଇଦିନଠାରୁ ଉଭୟ କକା - ପୁତୁରାଙ୍କ ସହ ମୋର ବଂଧୁତ୍ୱ ଥିଲା । ମୁଁ ନିର୍ବାଚନ ବେଳେ ଦିନେ ଗିରିଧରଙ୍କୁ ପଚାରିଲି ଏଥର କଣ ମୁଣ୍ଡରେ ଶିରପା ପିନ୍ଧିବା ଯୋଗ ଅଛି ? ସେ ଉତ୍ତର ଦେଇଥିଲେ ହାଇକମାଣ୍ଡ ମୋତେ ଏ ଦାୟିତ୍ୱ ଦେଇଛନ୍ତି । ଶିରପା ଦାୟିତ୍ୱ ମଧ ହାଇ କମାଣ୍ଡଙ୍କର । ମୋ ଭଳି ଅନେକ ଭାବିଥିଲେ ଜାନକୀବାବୁଙ୍କ ବିରୁଦ୍ଧରେ ତାଙ୍କ ମୁଖ୍ୟମନ୍ତ୍ରୀତ୍ୱ ସମୟରେ ବ୍ୟାପକ ଦୁର୍ନୀତି ଅଭିଯୋଗ ହୋଇ ସେ ବଦ୍‌ନାମ୍ ହୋଇଥିଲେ । ବିଜୁ ବାବୁ ମୁଖ୍ୟ ମନ୍ତ୍ରୀ ହେବା ପରେ ଜାନକୀବାବୁ ଓ ତାଙ୍କ ମନ୍ତ୍ରିମଣ୍ଡଳର ମୋଟ ଏଗାର ଜଣଙ୍କୁ ଦୁର୍ନୀତିଗ୍ରସ୍ତ ଆଖ୍ୟା ଦେଇ ସ୍ୱତନ୍ତ୍ର କୋର୍ଟରେ ମୋକଦ୍ଦମା କରିଥିଲେ । ଜାନକୀ ବାବୁଙ୍କ ସମେତ ନିରନାୟକ ଯୁଗଳ କିଶୋର ପଟ୍ଟନାୟକ, ହରିହର କରଣ, ହବିବୁଲା ଖାଁ (ସମସ୍ତେ କଥବିନେଟ ସାହ୍ୟା ମନ୍ତ୍ରୀ) ଏବଂ ଛ'ଜଣ ରାଷ୍ଟ୍ରମନ୍ତ୍ରୀ ରାମଚନ୍ଦ୍ରଦେଦ୍ର ଉଲାକା, କିଶୋର ପଟେଲ, ମୁଜାଫର ହୁସେନ ଖାଁ, ଶରତ ରାଉତ, ନାଗାର୍ଜୁନ ପ୍ରଧାନ ଓ ବଟକୃଷ୍ଣ ଜେନାଙ୍କ ବିରୁଦ୍ଧରେ ଏହି ମୋକଦ୍ଦମା ଦାଏର ହୋଇଥିଲା । ସବୁଠାରୁ ଆଶ୍ଚର୍ଯମେୟ ବିଷୟଥିଲା ବିବଜୁବାବୁ ଯେଉଁମାନଙ୍କୁ ସାଧୁସନ୍ଥ ବୋଲି ବିଚାର କଲେ ସେମାନଙ୍କ ମଧରେ ବସନ୍ତ ବିଶ୍ୱାଳ ଅନ୍ୟତମ । ଜାନକୀବାବୁଙ୍କ ମନ୍ତ୍ରିମଣ୍ଡଳରୁ ଆଉ ଯେଉଁମାନେ ଦୁର୍ନୀତିଗ୍ରସ୍ତକୁହନ୍ତି ବୋଲି ବିଜୁ ପଟ୍ଟନାୟକ ମୋହର ମାରିଦେଲେ ସେମାନେ ହେଲେ ଉପେନ୍ଦ୍ର ଦୀକ୍ଷିତ, ବାସୁଦେବ ମହାପାତ୍ର, ଦୟାନିଧି ନାୟକ, ରଘୁନାଥ ପଟ୍ଟନାୟକ, କୁଆଁରିଆ ମାଝି, ଭଜମନ ବେହେରା, ଗଙ୍ଗାଧର ମହାପାତ୍ର, ଯଦୁମଣି ମହାପାତ୍ର, ମତଲୁବ ଅଲ୍ଲୀ, ରାସ ବିହାରୀ ବେହେରା, ଭୂପାଳ ଚନ୍ଦ୍ର ମହାପାତ୍ର । ଭୂପିନ୍ଦର ସିଂହ, ଡମ୍ବରୁଧର ଉଲାକା, ହେମାନନ୍ଦ ବିଶ୍ୱାଳ, ଶରତଚନ୍ଦ୍ର ପଣ୍ଡା, ଓ ମୋହନ ନାଗ ।

ଜାନକୀବାବୁ ବିଧାୟକ ରୂପେ ୧୯୯୫ ନିର୍ବାଚନରେ ପ୍ରତି ଦ୍ୱନ୍ଦିତା କରିନଥିଲେ। କିନ୍ତୁ ବିସ୍ମୟର କଥା କଂଗ୍ରେସ ହାଇକମାଣ୍ଡ ତାଙ୍କୁ ମୁଖ୍ୟମନ୍ତ୍ରୀରୂପେ ବାଛିଥିଲେ । ପରେ ବେଗୁନିଆ - ବୋଲଗଡରୁ ନିର୍ବାଚିତ ହୋଇଥିବା ହରିହର ସାହୁ ଇସ୍ତଫା ଦେବା ଫଳରେ ସେ ଉପନିର୍ବାଚନରେ ନିର୍ବାଚିତ ହୋଇ ବିଧାନ ସଭାକୁ ଆସିଥିଲେ । ଆଶା କରାଯାଉଥିଲା ସେ ବିଜୁବାବୁ ଏବଂ ତାଙ୍କ ମନ୍ତ୍ରିମଣ୍ଡଳର ସବୁଠାରୁ କ୍ଷମତାପନ୍ନ ମନ୍ତ୍ରୀ ବିଜୟ ମହାପାତ୍ର, ନନ୍ଦିନୀ ମହାନ୍ତିଙ୍କ ବିରୁଦ୍ଧରେ ଅନୁରୂପ ପନ୍ଥା ଗ୍ରହଣ କରିବେ । ମାତ୍ର କେବଳ ବିଜୁବାବୁଙ୍କ ବିରୁଦ୍ଧରେ ଆଲାହାବାଦବ୍ୟାଙ୍କରେ ୧୮କୋଟି ଟଙ୍କା ଜମାକୁ ନେଇ ଭିଜିଲାନ୍ସ ମୋକଦ୍ଦମା ଦାୟର ହୋଇଥିଲା । ଏହି ସମୟରେ ଆଉ ଏକ ଗୁରୁତ୍ୱପୂର୍ଣ୍ଣ ଘଟରା ହେଲା ଜାନକୀ ବାବୁ ବିଧାନସଭାରେ ଏକ ବିଲ୍ ଆଗତ କରି ସ୍ୱତନ୍ତ୍ର କୋର୍ଟ ରଦ୍ଦ କରିଦେଲେ । ଜାନକୀବାବୁ ମୁଖ୍ୟମନ୍ତ୍ରୀ ହେବା ପରେ ପ୍ରଥମ ଚୋଟ ପଡିଲା ଅତିରିକ୍ତ ମୁଖ୍ୟଶାସନ ସଚିବ ତଥା ଉନ୍ନୟନ କମିଶନର ପ୍ୟାରିମୋହନ ମହାପାତ୍ରଙ୍କ ଉପରେ । ସେ ଚବିଶ ଘଣ୍ଟାରେ ତାଙ୍କୁ ବଦଳି କରିଦେଲେ ଗୋପବଂଧୁ ଏକାଡେମୀକୁ ମହା ନିର୍ଦ୍ଦେଶକ ରୂପେ ।

୧୯୮୫ ନିର୍ବାଚନରେ ବିଜୁ ପଟ୍ଟନାୟକ ଭୁବନେଶ୍ୱରରୁ ପୁଣି ପ୍ରାର୍ଥୀ ହେଲେ । ତାଙ୍କର ମୁଖ୍ୟ ପ୍ରତିଦ୍ୱନ୍ଦୀ ହେଲେ ଭାରତୀୟ ଜନତା ପାର୍ଟିର ସୌମ୍ୟରଂଜନ ପଟ୍ଟନାୟକ । ଅବଶ୍ୟ ନିର୍ବାଚନରେ ବିଜୁବାବୁ ୯୨ ହଜାର ୨୩୯

ଭୋଟ ପାଇଥିବା ବେଳେ ସୌମ୍ୟରଂଜନ ପାଇଥିଲେ ୫୫ ହଜାର ୫୬୦ । ସେତେବେଳେ ଜାନକୀବାବୁ କଂଗ୍ରେସ ମୁଖ୍ୟମନ୍ତ୍ରୀ ଥିବା ବେଳେ ତାଙ୍କ ଜାମାତା ବିଜେପିରେ ଥିବାରୁ ବିଜେପିର କିଛି ନେତା ଏହାର ବିରୋଧ କରିଥିଲେ । ପରେ ସୌମ୍ୟରଂଜନ ବି.ଜେ.ପିରୁ ଇସ୍ତଫାଦେଇ କଂଗ୍ରେସରେ ଯୋଗଦେଲେ । ସେ ଯୋଗ ଦେବା ପରେ ପରେ ୧୯୯୬ ଲୋକସଭା ନିର୍ବାଚନରେ କଂଗ୍ରେସ ପ୍ରାର୍ଥୀରୂପେ ପ୍ରତିଦ୍ୱନ୍ଦିତା କରି ବିଜୟୀ ହୋଇଥିଲେ ।

୧୯୯୮ରେ ପୁଣି ଥରେ ଲୋକସଭା ନିର୍ବାଚନ ହୋଇଥିଲା । ଏଥର ସେ କିନ୍ତୁ ବିଜେଡି ପ୍ରାର୍ଥୀ ପ୍ରସନ୍ନ ପାଟଶାଣିଙ୍କ ନିକଟରୁ ୧ ଲକ୍ଷ ୩୮ ହଜାର ଭୋଟରେ ପରାସ୍ତ ହୋଇଥିଲେ ।

ମୁଁ ମୋର ଜୀବନ କାହାଣୀ ଭିତରେ ରାଜ୍ୟର ରାଜନୀତି, ଧର୍ମ, ସଂସ୍କୃତି ସାହିତ୍ୟ ଏବଂ ପ୍ରଶାସନ ସଂପର୍କରେ ଉଲ୍ଲେଖ କରିବାର ଏକମାତ୍ର କାରଣ ହେଲା ମୋର ସାମ୍ବାଦିକତା ସମୟରେ ଘଟୁଥିବା ଘଟଣା ସବୁର ମୁଁ ଜରେ ପ୍ରତ୍ୟକ୍ଷ ଦର୍ଶୀ । ସାମ୍ବାଦିକତାର ଆଖିରେ ମୁଁ ଘଟଣାର ଜରିତ କରେ । ସେଇ ଘଟଣାକୁ ମୋର ଏହି ଆତ୍ମ ଜୀବନୀରେ ଉଲ୍ଲେଖ କରିବାର ଏକମାତ୍ର କାରଣ ହେଲା ଓଡିଶାର ସମସାମୟିକ ଘଟଣାକୁ ଲିପିବଦ୍ଧ କରି ଭବିଷ୍ୟତ ପାଇଁ ରଖିବା । ପଚିଶ ବା ପଚାଶ ବର୍ଷପରେ ଏହି ବିଷୟବସ୍ତୁ ପଢିବା ବେଳେ ସାଧାରଣ ପାଠକ ଓଡିଶାର ଅବସ୍ଥା ସଂପର୍କରେ ଅନ୍ତତଃ ଜାଣି ପାରିବେ । କାରଣ ଉଣାଅଧିକେ ସମସ୍ତେ ରାଜନୀତି ବିଷୟରେ ଜାଣିବା ପାଇଁ ଆଗ୍ରହୀ ।

ଅନେକ ସମୟରେ ରାଜ୍ୟପାଳମାନଙ୍କର ବିଧାନ ସଭାରେ ଭାଷଣ ସେମାନଙ୍କ ପଦପର୍ଯ୍ୟାଦାକୁ କ୍ଷୁର୍ଣ୍ଣ କରିଥାଏ। ସେଇ ଏକା ରାଜ୍ୟପାଳ ପୂର୍ବତନ ସରକାର ବେଳେ ସରକାରୀ କାର୍ଯ୍ୟକ୍ରମକୁ ଉଚ୍ଚ ପ୍ରଶଂସା କରିଥିବା ବେଳେ ପରବର୍ତ୍ତି ସରକାର ବେଳେ ପୂର୍ବ ସରକାରଙ୍କ କାର୍ଯ୍ୟକ୍ରମକୁ ତୀବ୍ର ସମାଲୋଚନା କରିଥାନ୍ତି । ଏହିଭଳି ଏକ ଘଟଣା ଘଟି ଥିଲା ୧୯୮୫ ମସିହା ମାର୍ଚ୍ଚ ୨୩ ତାରିଖରେ ଓଡିଶା ବିଧାନ ସଭା ଉଦ୍‌ଘାଟନ ବେଳେ । ୧୯୯୫ରେ ଜାନକୀ ବାବୁଙ୍କ ସରକାର ମାର୍ଚ୍ଚ ୫ ତାରିଖରେ ଶପଥ ନେଲେ । ମାର୍ଚ୍ଚ ୨୩ ତାରିଖରେ ନୂଆ ସରକାରଙ୍କ ବଜେଟ ଅଧିବେଶନ ରାଜ୍ୟପାଳ ସତ୍ୟନାରାୟଣ ରେଡ୍ଡି ଉଦ୍‌ଘାଟନ କରି କହିଲେ ଯେ ଗତ ପାଞ୍ଚବର୍ଷ ଧରି ଏ ରାଜ୍ୟରେ ଏକ ଚରମ ଅପାରଗ ଓ ଅସାଧୁ ସରକାର କାର୍ଯ୍ୟ କରୁଥିଲା । ବିଗତ କିଛି ବର୍ଷ ହେଲା ରାଜ୍ୟବାସୀଙ୍କର ଜୀବନର ସୂତ୍ର ବନ୍ୟାସର ଏକ କ୍ରମବର୍ଦ୍ଧିଷ୍ଣୁ ଅବନୀୟ ଦେଖା ଦେଇଥିଲା । ରାଜ୍ୟପାଳଙ୍କ ଏ ଭାଷଣ ଶୁଣି ଓ ପଢି ମୁଁ ରୀତିମତ ଆଶ୍ଚର୍ଯ୍ୟ ହୋଇଥିଲି। କାରଣ ରାଜ୍ୟପାଳ ରେଡ୍ଡି ଗତ ଦୁଇବର୍ଷ ହେବ ଓଡିଶାର ରାଜ୍ୟପାଳ ରୂପେ କାର୍ଯ୍ୟକରି ଆସୁଛନ୍ତି । ସେ ୧୯୯୩ ଜୁନ୍ ପହିଲାରେ ରାଜ୍ୟପାଳ ଦାୟିତ୍ୱ ନେଲେ ।୧୯୯୪ ଫେବୃଆରୀ ୨୩ ତାରିଖରେ ବିଧାନ ସଭା ବଜେଟ ଅଧିବେଶନ ଉଦ୍‌ଘାଟନ କରି ସେ ଜନତା ସରକାର ସମୟରେ ରାଜ୍ୟରେ ପ୍ରଭୂତ ଉନ୍ନତି ହୋଇଥିବା ଆଇନ ଶୃଙ୍ଖଳା ପରିସ୍ଥିତି ଶାନ୍ତିପୂର୍ଣ୍ଣ ଥିବାବେଳେ ସରକାରଙ୍କ ନୀତି ଓ ଯୋଜନା ସମୂହ ଦରିଦ୍ର ଓ ବଞ୍ଚିତ ସଂପ୍ରଦାୟଙ୍କ ଉନ୍ନତି ପାଇଁ ଉଦ୍ଦିଷ୍ଟ ବୋଲି ତାଙ୍କ ଭାଷଣରେ ପଢିଥିଲେ ।

ମୁଁ ରାଜ୍ୟପାଳଙ୍କ ଏହି ଭାଷଣ ମୋ ମୁକ୍ତ ବିଚାର (ସଂମ୍ବାଦ) ସ୍ତମ୍ଭରେ ତୀବ୍ର ସମାଲୋଚନା କରି ରାଜ୍ୟପାଳ ବର୍ଷକ ତଳେ ଯେଉଁ ସରକାରକୁ ଉଚ୍ଚ ପ୍ରଶଂସା କରିଥିଲେ ବର୍ଷକ ପରେ ସେଇ ସରକାରକୁ କିପରି ଏଭଳି ସମାଲୋଚନା କଲେ । ରାଜ୍ୟ ସରକାର ପ୍ରସ୍ତୁତ କରିଥିବା ତାଙ୍କ ଭାଷଣରୁ ବିଗତ ସରକାରଙ୍କ ବିରୁଦ୍ଧରେ ଥିବା ଅଂଶ

ଗୁଡ଼ିକୁ ସେ ବାଦ୍ ଦେବା ଉଚିତ୍ ଥିଲା । ଯେଉଁ ମୁହଁରେ ଅରୁଆ ସେଇ ମୁହଁରେ ଉଷୁନା କିପରି ହେବ ? ଏ ସଂପର୍କରେ ମୁଁ ୧୯୬୯ ଫେବୃଆରୀ ପଶ୍ଚିମ ବଂଗ ରାଜ୍ୟପାଳ ଧରମବୀରଙ୍କ ଉଦାହରଣ ଦେଇ ଲେଖିଥିଲି ପଶ୍ଚିମବଂଗ ବାମପନ୍ଥୀମିଳିତ ମନ୍ତ୍ରିମଣ୍ଡଳର ବଜେଟ ଅଧିବେଶନ ପାଇଁ ପ୍ରସ୍ତୁତ ହୋଇଥିବା ଭାଷଣରୁ ରାଜ୍ୟପାଳ ଧରମବୀର ପୂର୍ବ ସରକାର ବିରୁଦ୍ଧରେ ଥିବା କେତୋଟି ବାକ୍ୟକୁ ବାଦ୍ ଦେଇ ଅବଶିଷ୍ଟ ଅଂଶପାଠ କରିଥିଲେ । ଏଥିରେ ବାମପନ୍ଥୀ ସରକାର ତାଙ୍କ ବିରୁଦ୍ଧରେ ତୀବ୍ର ସମାଲୋଚନା କରିଥିଲେ ।୧୯୬୯ ମାର୍ଚ୍ଚ ୧୦ ତାରିଖରେ ଏହା ଲୋକ ସଭାରେ ଉଠିଥିଲା । ସ୍ୱରାଷ୍ଟ୍ର ମନ୍ତ୍ରୀ ୱାଇ.ଚ ଚୌହାନ ଉତ୍ତର ଦେଇ କହିଥିଲେ ଯେ ରାଜ୍ୟପାଳ ଭାଷଣରେ ସରକାରଙ୍କ ବର୍ତ୍ତମାନ ଓ ଭବିଷ୍ୟତର ରୂପରେଖ କେବଳ ରହିବା ଆବଶ୍ୟକ । ଏ ଘଟଣା ଆଟର୍ଣ୍ଣି ଜେନେରାଲଙ୍କ ମନ୍ତ୍ରିବଗ ପାଇଁ ପଠାଗଲା । ଆଟର୍ଣ୍ଣି ଜେନେରାଲ ମତ ଦେଇଥିଲେ –The governor's position cannot be utilised by the Council of ministers to Cast any reflection on or make an adverse Criticion of any act of the governor done by him as a Constitutional head of the stahe. ଏଠାରେ ସ୍ମରଣ କରାଯାଇ ପାରେ ଯେ ୧୯୬୯ରେ ବାମ ଫ୍ରଣ୍ଟ ମିଳିତ ସରକାର ଶାସନକୁ ଆସିବା ପୂର୍ବରୁ ପଶ୍ଚିମ ବଂଗରେ ରାଷ୍ଟ୍ରପତି ଶାସନ ଥିଲା । ଧର୍ମବୀର ରାଜ୍ୟର ମୁଖ୍ୟରୂପେ ଗ୍ରହଣ କରିଥିବା ନିଷ୍ପତ୍ତିରେ ବାମଫ୍ରଣ୍ଟ ଅସନ୍ତୁଷ୍ଟ ଥିଲେ । ତେଣୁ ସରକାରକୁ ଆସିବା ପରେ ସେମାନେ ତାଙ୍କରି ମୁହଁରେ ତାଙ୍କ ନିନ୍ଦା କରିବାକୁ ଉଦ୍ୟମ କରିଥିଲେ ।

ବିଂଶ ଶତାବ୍ଦିର ଶେଷ ଦଶକ ମୋ ଜୀବନର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ସମୟ ଥିଲା । ବ୍ୟକ୍ତିଗତ ଭାବେ ମୁଁ ମୋ ପେଶାଗତ ଜୀବନର ସର୍ବୋଚ୍ଚ ସ୍ଥାନକୁ ଆରୋହଣ କରିଥିଲି । ୧୯୯୦ ସେପ୍ଟେମ୍ବର ୧୩ ତାରିଖରେ ଉତ୍ତର ପ୍ରଦେଶର ହର ଦ୍ୱାରଠାରେ ମୁଁ ଜାତୀୟ ସାମ୍ବାଦିକ ୟୁନିୟନ (ଭାରତ) ବା ନ୍ୟାସନାଲ ୟୁନିୟନ ଅଫ ଜର୍ଣ୍ଣାଲିଷ୍ଟ (ଇଣ୍ଡିଆ)ର ସର୍ବଭାରତୀୟ ସଭାପତି ରୂପେ ନିର୍ଦ୍ୱନ୍ଦରେ ନିର୍ବାଚିତ ହୋଇଥିଲି । ଏହି ପଦପାଇଁ ଯଦିଓ ଇଣ୍ଡିଆନ ଏକ୍ସପେସର ମୁଖ୍ୟ ସଂପାଦକ ହିରଣ୍ମୟ କାର୍ଲେକାର ଏବଂ ନବଭାରତ ଟାଇମ୍ସର ଦିଲ୍ଲୀ ଆବାସିକ ସଂପାଦକ ଡଃ ନନ୍ଦକିଶୋର ତ୍ରିଖା ସେମାନଙ୍କ ନାମାଙ୍କନ ପତ୍ର ଦାଖଲ କରିଥିଲେ ମାତ୍ର ପ୍ରତ୍ୟାହାର ଦିବସର ଶେଷଦିନ ସେମାନେ ନିଜ ନିଜ ପ୍ରାର୍ଥୀ ପତ୍ର ପ୍ରତ୍ୟାହାର କରି ନେଇଥିଲେ । ତେଣୁ ମୁଁ ନିର୍ଦ୍ୱନ୍ଦରେ ନିର୍ବାଚିତ ହେଲି । ଏ ସଂପର୍କୀୟ ବିସ୍ତୃତ ତଥ୍ୟ ପୂର୍ବରୁ ପ୍ରକାଶ ପାଇଛି ।

ମୁଁ ଏଠାରେ କହି ରଖେ ସେହି ସମୟରେ ସୁପ୍ରିମ କୋର୍ଟର ପ୍ରଧାନ ବିଚାରପତି ରୂପେ ରଂଗନାଥ ମିଶ୍ର, ଲୋକସଭାର ବାଚସ୍ପତି ରୂପେ ରବି ରାୟ କାର୍ଯ୍ୟ କରୁଥିଲେ । ମୁଁ ଏନ୍.ୟୁ.ଜେ. (ଆଇ)ର ସଭାପତି ନିର୍ବାଚିତ ହେବା ପରେ ଅନେକ ଖବର କାଗଜ ମନ୍ତବ୍ୟ ଦେଇଥିଲେ ଏବେ ଦେଶର ତିନୋଟି ସ୍ତମ୍ଭ ପ୍ରଥମ ସ୍ତମ୍ଭ ସଂସଦଦ୍ୱିତୀୟ ସ୍ତମ୍ଭ ବିଚାର ବିଭାଗ ଓ ଚତୁର୍ଥ ସ୍ତମ୍ଭ ପ୍ରେସର ମୁଖ୍ୟ ରୂପେ ତିନିଜଣ ଓଡ଼ିଆ କାର୍ଯ୍ୟ କରୁଛନ୍ତି । ମୋର ସୌଭାଗ୍ୟ ଏହି ଯେ ଓଡିଶାର ମୁଁ ଏକମାତ୍ର ଓ ସାମ୍ବାଦିକ ଯିଏ ଗୋଟିଏ ସର୍ବଭାରତୀୟ ଅନୁଷ୍ଠାନର ସଭାପତି ରୂପେ ନିର୍ବାଚିତ ହୋଇପାରିଛି । ଆଜି ପର୍ଯ୍ୟନ୍ତ କୌଣସି ଦ୍ୱିତୀୟ ଓଡିଆ ସାମ୍ବାଦିକ ଏ ପ୍ରକାର କୃତିତ୍ୱର ଅଧିକାରୀ ହୋଇପାରି ନାହାନ୍ତି ।

ନବେ ଦଶକରେ ୧୯୯୧ ନଭେମ୍ବର ୧୪,୧୫,୧୬ ତାରିଖରେ ଦିଲ୍ଲୀ ଠାରେ ସାର୍କଦେଶ ସମୂହର ସାମ୍ବାଦିକ ମାନଙ୍କର ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଏହି ସମ୍ମିଳନୀରେ ତିନିଜଣିଆ ସଭାପତି ମଣ୍ଡଳୀର ମୁଁ ଭାରତୀୟ

ସଦସ୍ୟରୂପେ ମନୋନୀତ ହୋଇଥିଲି । ଅନ୍ୟ ଦୁଇଜଣ ସଦସ୍ୟ (ସଭାପତି ମଣ୍ଡଳୀର) ହେଲେ ଆନ୍ତର୍ଜାତିକ ସାମ୍ବାଦିକ ମହାସଂଘର ସେକ୍ରେଟାରୀ ଜେନେରାଲ ଡେନ ହ୍ୱାଇଟ ଓ ଜର୍ମାନ ସାମ୍ବାଦିକ ସଂଘ ସଭାପତି ଡି ନାଇଷ୍ଟେଲ। ସମ୍ମିଳନୀକୁ ଉଦ୍‌ଘାଟନ କରିଥିଲେ କେନ୍ଦ୍ର ବୈଦେଶିକ ରାଷ୍ଟ୍ରମନ୍ତ୍ରୀ ଏଡୁଆର୍ଡ ଫେଲେରିଓ । ଏହି ସମ୍ମିଳନୀରେ ଏବଂ ହରଦ୍ୱାର ଏନୟୁଜେ (ଆଇ) ଦ୍ୱିବାର୍ଷିକ ସମ୍ମିଳନୀର ଫଟୋ ମୋ ବୈଠକଖାନାରେ ରହିଛି । ଏହି ସମ୍ମିଳନୀରେ ଭାରତବର୍ଷର ଏନ୍‌ୟୁଜେ(ଆଇ)ର ଦଶଜଣ ଆଇଏଫ୍‌ଡବ୍ଲ୍ୟୁଜେର ୪ଜଣ, ଆଇଜେୟୁ-୪ଜଣ ଓ କ୍ୟାମେରାମ୍ୟାନ ଆସୋସିଏସନର ୨ଜଣ ଏହିପରି ୨୦ ଜଣ ଯୋଗ ଦେଇଥିଲେ । ଭାରତ ବ୍ୟତୀତ ପାକିସ୍ତାନର-୪ଜଣ, ଶ୍ରୀଲଙ୍କାର ୫ଜଣ, ବାଂଲାଦେଶର ୫ ଜଣ, ନେପାଳର ୫ ଜଣ ଏବଂ ଆନ୍ତର୍ଜାତୀୟ ସାମ୍ବାଦିକ ମହାସଂଘ, ଅଷ୍ଟ୍ରେଲିଆ ସାମ୍ବାଦିକ ୟୁନିୟନର ସଭାପତି ୱାଲଟିୟର ପିୟରସଙ୍କ, ୟୁନିସେଫ ଦକ୍ଷିଣ ଏସିଆ ନିର୍ଦ୍ଦେଶକ, ସିଙ୍ଗାପୁରସ୍ଥିତ ସୂଚନା ଓ ପ୍ରକଳ୍ପ ନିର୍ଦ୍ଦେଶକ କେ.କାନମୋଣଙ୍କ ସମେତ ୟୁନେସ୍କୋ, ରେଡକ୍ରସ, (ଏସିଆ ପ୍ରତିନିଧି), ଭାରତର ସାମ୍ବାଦିକ ଓ ସମ୍ବାଦିକତା ଏବଂ ଏହାର ସମସ୍ୟା ସଂପର୍କରେ ମୋତେ ପ୍ରତ୍ୟକ୍ଷ କହିବାକୁ ଦିଆଯାଇଥିଲା । ଏହା ଏକ ଅନ୍ତର୍ଜାତିକ ସମ୍ମିଳନୀ ହୋଇଥିବାରୁ ମୁଁ ଦୁଇଦିନ ପୂର୍ବରୁ ନିଜକୁ ପ୍ରସ୍ତୁତ କରିଥିଲି । ଏହି ସମ୍ମିଳନୀ ଦିଲ୍ଲୀର ସୌଜନ୍ୟ ସେରାସନ ହୋଟେଲରେ ଅନୁଷ୍ଠିତ ହୋଇଥିଲା ଏବଂ ଆମ ପାଞ୍ଚଦିନିଆ ରହଣି ମଧ୍ୟ ସେଇଠି ହୋଇଥିଲା । ଜର୍ମାନର ଏଫ୍ ଇ ଏସ୍ ସଂସ୍ଥା ସମସ୍ତ ଖର୍ଚ୍ଚ ବହନ କରିଥିଲେ ।

ମୋର ଏହି ସମ୍ମିଳନୀ ପାଇଁ ଆରମ୍ଭରୁ ଭୟ ଥିଲା । କାରଣ ସମସ୍ତ କାର୍ଯ୍ୟ କେବଳ ଇଂରେଜୀରେ ହେବ ତା ନୁହେଁ ମୁଁ ଭାରତ ପକ୍ଷରୁ ସଭାପତିତ୍ୱ କରୁଥିବାରୁ ପ୍ରଶ୍ନ ଉତ୍ତର ଠିକ୍ ଭାବେ ଦେଇ ପାରିବି କି ନାହିଁ ସେ ଦିଗରେ ଅସ୍ୱସ୍ତି ବୋଧ କରୁଥିଲି । ତେବେ ମୋର ରୁମ ମେଟ ଥିଲେ ମାଦ୍ରାଜର ସି.ଏସ୍.ଜୟରାମ । ସେ ହିନ୍ଦୁସ୍ଥାନ ଟାଇମ୍ସର ମାଦ୍ରାଜ ବ୍ୟୁରୋଚିଫ୍ ଥିଲେ । ଆମେ ସମସ୍ତେ ନଭେମ୍ବର ୧୨ ତାରିଖ ସଂଧ୍ୟାରେ ପହଞ୍ଚି ଥିଲୁ । ରାତିରେ ମୁଁ ଜୟରାମଙ୍କ ସାହାଯ୍ୟରେ ମୋର ବକ୍ତୃତା ପ୍ରସ୍ତୁତ କଲି । ରାଜେନ୍ଦ୍ର ପ୍ରଭୁଙ୍କ ସହ ମଧ୍ୟ ଆଲୋଚନା କରି ଆଉ କିଛି ବିଷୟ ଯୋଗ କଲି । ମୋଟା ମୋଟି ବେଶ୍ ଭଲ ଡ୍ରାଫ୍ଟ ହେଲା । ସକାଳୁ ଏନ୍.ୟୁ.ଜେ ଅଫିସ ସେକ୍ରେଟାରୀ ଅଶୋକ ଭାରତୀଙ୍କୁ ତାହା ଟାଇପ୍ କରି ଏବଂ ଜେରକ୍ସ କରି ଶହେ କପି ପ୍ରସ୍ତୁତ କରିବାକୁ ଦେଲି । କାରଣ ସଭାପତି ଅଭିଭାଷଣ ସମସ୍ତଙ୍କୁ ବଣ୍ଟା ଯିବ । ଭାଷଣ ପ୍ରସ୍ତୁତ ପରେ ମନଟା ବେଶ୍ ହାଲୁକା ହୋଇଗଲା । ସେଇ ଭାଷଣକୁ ପରବର୍ଷ ଜୁନ୍‌ମାସରେ ଆନ୍ତର୍ଜାତିକ ସାଂବାଦିକ ମହାସଂଘର ବ୍ରସେଲ୍ସ (ବେଲଜିୟମ) ଠାରେ ଅନୁଷ୍ଠିତ ସେମିନାରରେ ମଧ୍ୟ ପାଠ କଲି । ବ୍ରସେଲ୍ସ ହେଉଛି ଆନ୍ତର୍ଜାତିକ ସାମ୍ବାଦିକ ମହାସଂଘର ହେଡ କ୍ୱାର୍ଟର ଭାରତ ବର୍ଷରୁ ଏନୟୁଜେର ଏକ ପାଞ୍ଚଜଣିଆ ଦଳ ମୋ ନେତୃତ୍ୱରେ ଏଥିରେ ଯୋଗ ଦେଇଥିଲେ । ୧୯୯୨ ଜୁନ ୫ ତାରିଖ ପର୍ଯ୍ୟନ୍ତ ଏହା ଅନୁଷ୍ଠିତ ହୋଇଥିଲା । ଏହି ସେମିନାରରେ କୋଡିଏଟି ଗଣତାନ୍ତ୍ରିକ ରାଷ୍ଟ୍ରର ସାମ୍ବାଦିକ ପ୍ରତିନିଧିମାନେ ଯୋଗ ଦେଇଥିଲେ ।

ଜୀବନରେ ଏଭଳି ଆନ୍ତର୍ଜାତିକ ସମ୍ମିଳନୀ ମାନଙ୍କରେ ମୁଁ ଯୋଗ ଦେଇ ଭାଷଣ ଦେବି ତା ମୋ କଳ୍ପନାର ବାହାରେ ଥିଲା । ମୁଁ ଏକ ନିମ୍ନ ମଧ୍ୟବିତ୍ତ ପରିବାରରୁ ଆସିଛି । ମୋର ଶିକ୍ଷା -ଦୀକ୍ଷା ମଧ୍ୟ ସେଭଳି ଆଖିଦୃଶିଆ ନୁହେଁମାତ୍ର ମୁଁ ସାମ୍ବାଦିକତା ଆରମ୍ଭ ପରେ ବିଭିନ୍ନ କ୍ଷେତ୍ରରେ କଠୋର ପରିଶ୍ରମ କରିଛି । ଇଂରାଜୀ ଖବର କାଗଜ ବିଶେଷ କରି ଷାଠିଏ ଦଶକ-ସତୁରୀ ଦଶକରେ ଓଡିଶାରେ ଷ୍ଟେଟସ ମ୍ୟାନ ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ଖବର କାଗଜ ଥିଲା । ଷ୍ଟେଟସମ୍ୟାନର ସଂପାଦକୀୟ ପୃଷ୍ଠାରେ ସେତେବେଳର ବିଖ୍ୟାତ ସାମ୍ବାଦିକମାନେ ସ୍ତମ୍ଭ ଲେଖୁଥିଲେ । ମୋର

ଏବେ ବି ମନେ ଅଛି କୁଲଦୀପ ନାୟାର, ଇନ୍ଦର ମାଲହୋତ୍ରା, ଏସ. ନିହାଲ ସିଂହ, ପ୍ରାଣ୍ ଚୋପ୍ରାଙ୍କ ଭଳି ବିଖ୍ୟାତ ସାମ୍ବାଦିକ ମାନେ ସ୍ତମ୍ଭ ଲେଖୁଥିଲେ । ମୁଁ ମନଯୋଗ ଦେଇ ପ୍ରତିଦିନ ଷ୍ଟେଟସମ୍ୟାନ ପଢ଼େ । ଅନେକ ଶବ୍ଦ ବୁଝି ନ ପାରିଲେ ଡିକସନାରୀ ଦେଖେ । କ୍ରମେ ପ୍ରତିଦିନ ସକାଳୁ ଷ୍ଟେଟସମ୍ୟାନ ପଢ଼ିବା ମୋର ଏକ ନିଶାରେ ପରିଣତ ହୋଇଗଲା । ଭୁବନେଶ୍ୱରରେ ରହିବା ପରେ ଟାଇମ୍ସ ଅଫ୍ ଇଣ୍ଡିଆ ଏବଂ ହିନ୍ଦୁ ମଗାଇ ପଢୁଥିଲି । ତାହା ହିଁ ମୋତେ ଇଂରାଜୀ ଲେଖିବା ଓ କହିବାରେ ସାହାଯ୍ୟ କରିଥିଲା । ଏବେ ଯେତେବେଳେ ସେଇ ପୁରୁଣା କଥା ମନକୁ ଆସେ ଠାକୁରଙ୍କୁ ଏବଂ ମୋର ବାପା ମା'ଙ୍କ ଉଦ୍ଦେଶ୍ୟରେ ମୁଁ ପ୍ରଣାମ କରେ । କାରଣ ଠାକୁରଙ୍କର ଓ ବାପା-ମା'ଙ୍କର ଆଶୀର୍ବାଦନଥିଲେ  ମୋ ଭଳି ଜଣେ ସାଧାରଣ ବ୍ୟକ୍ତି ସେ ସ୍ତରକୁ ଯିବା ସମ୍ଭବ ନୁହେଁ ।

ସାର୍କ ସାମ୍ବାଦିକ ସମ୍ମିଳନୀରର ଶେଷ ଦିନ କେନ୍ଦ୍ର ତଥ୍ୟ ଓ ବେତାର ମନ୍ତ୍ରୀ ଅଜିତ କୁମାର ପାଞ୍ଜା ମୁଖ୍ୟ ଅତିଥି ରୂପେ ଯୋଗ ଦେଇଥିଲେ । ଅଜିତ ବାବୁଙ୍କ ସହ ମୋର ପୂର୍ବରୁ ପରିଚିତ ଥିଲା ମୋତେ ସେଠି ଦେଖି ବେଶ୍ ଖୁସି ହୋଇ କହିଲେ  ଆରେ ବରେନ୍ ବାବୁ ଆପ୍‌ନି କି ଏଖନ ଏନୟୁଜେ ପ୍ରେସିଡେଣ୍ଟ ? ମୁଁ ହଁ କହିଲି । ସେ କରମର୍ଦ୍ଦନ କରି ସମ୍ମିଳନୀର କୋଅର୍ଡିନେଟର ବିଶିଷ୍ଟ ସାମ୍ବାଦିକ ଓ ଇକୋନୋମିକ ଟାଇମ୍ସର ଦିଲ୍ଲୀ ଆବାସିକ ସଂପାଦକ କେଏନ ଗୁପ୍ତାଙ୍କୁ କହିଲେ ଗୁପ୍ତାଜୀ- ଧଲ ସାହେବ ମେରା ଫ୍ରେଣ୍ଡ ହୈ । ମୈ ଜାନତୀ ନାହିଁ ଓ ଅଭି ଏନ୍‌ୟୁଜେ କା ପ୍ରେସିଡେଣ୍ଟ ହୈ । ଗୁପ୍ତାଜୀ ମୋତେ  ଭାରି ଶ୍ରଦ୍ଧା କରୁଥିଲେ ଏବଂ ମୋର ଘନିଷ୍ଠ ବନ୍ଧୁ ଥିଲେ । ସେ କହିଲେ ଧଲ ସାହେବ ଅଭି ହମାରୀ ନେତା ହୈ । ହସ ଖୁସିରେ ସାର୍କ ସାମ୍ବାଦିକ ସମ୍ମିଳନୀ ଶେଷ ହେଲା ।

ମୋ ଜୀବନରେ ଆଉ ଏକ ସୌଭାଗ୍ୟ ହେଲା ଯେତେବେଳେ ପାର୍ଲାମେଣ୍ଟର କନ୍‌ଷ୍ଟ୍ୟୁଏଣ୍ଟ ହଲରେ ଏକ ସେମିନାରରେ ଅଂଶଗ୍ରହଣ କରିବା । ଯେଉଁମାନଙ୍କ ଇଂରାଜୀ ଲେଖା ମୁଁ ମୋର ଇଂରାଜୀ ଜ୍ଞାନ ବୃଦ୍ଧି କରିଥିଲି ଏବଂ ଯେଉଁମାନଙ୍କ ସ୍ତମ୍ଭ ଯେତେବେଳ ପର୍ଯ୍ୟନ୍ତ ମୋର ପ୍ରିୟ ଥିଲା ସେଇ ସେମିନାରରେ ସେମାନଙ୍କ ସହ ମୁଁ ଏକା ମଞ୍ଚରେ ବସିଲି । କୁଲଦୀପ ନାୟାର  ଇନ୍ଦ୍ରର ମାଲହୋତ୍ରା । ଏସ.ନିହାଲ ସିଂହଙ୍କ ସମେତ  ମୁଁ, ରଜେନ୍ଦ୍ର ପ୍ରଭୁ ଏବଂ ଦୈନିକ ହିନ୍ଦୁସ୍ଥାନରର ସଂପାଦକ ରାଜେନ୍ଦ୍ର ଚୌଧୁରୀ ମଞ୍ଚାସୀନ ଥିଲୁ ।  ୧୯୯୧ ଡିସେମ୍ବର ୫ ତାରିଖ, ବିଷୟ ବସ୍ତୁ ଥିଲା ନ୍ୟାସନାଲ ଡେଲି ଏଣ୍ଡ ଡେଭଲପମେଣ୍ଟ ଅଫ୍ ରିଜିଓନାଲ ଡେଲି । ମୁଁ ଏବଂ ରାଜେନ୍ଦ୍ର ଚୌଧୁରୀ ଆଞ୍ଚଳିକ ସମ୍ବାଦପତ୍ର ସପକ୍ଷବାଦୀ ଏବଂ ଅନ୍ୟମାନେ ଜାତୀୟ ସମ୍ବାଦପତ୍ରର ସପକ୍ଷବାଦୀ । ମୋ ଭାଷଣ ଆରମ୍ଭ କରି ମୁଁ ପ୍ରଥମେ ଇଂରାଜୀ ଭାଷା କାଗଜକୁ ନ୍ୟାସନାଲ ଡେଲି କୁହାଯିବା ଉଚିତ ନୁହେଁ ବୋଲି କହି ଭାରତର ଜାତୀୟ ଭାଷା ହିନ୍ଦୀ ହୋଇଥିଲାବେଳେ ଇଂରାଜୀ ସମ୍ବାଦପତ୍ରକୁ ନ୍ୟାସନାଲ ଡେଲି କହବା ଅତ୍ୟନ୍ତ ଅଯୌକ୍ତିକ ବୋଲି ମତ ଦେଇଥିଲି । ଶ୍ରେତାମାନଙ୍କ ମଧ୍ୟରେ ଅନେକ ରାଜନୀତିକ ନେତା ଓ ସାମ୍ବାଦିକ ଥିଲେ । ମୋ ଯୁକ୍ତି ସେମାନଙ୍କ ମନକୁ ପାଇଥିଲା । କରତାଳି ଧ୍ୱନିରେ ସେମାନେ ମୋ ମତକୁ ସ୍ୱାଗତ କରିଥିଲେ ।

## -ପୁସ୍ତକ ଉପହାର-

ମୋତେ ଶ୍ରଦ୍ଧା ସହ ଯେଉଁମାନେ ସେମାନଙ୍କ ରଚିତ ଓ ସଂକଳିତ ପୁସ୍ତକ ଉପହାର ଦେଇଥିଲେ ମୁଁ ତାହା ସ୍ମରଣ କରିବାବେଳେ ପ୍ରଫେସର ଯତୀନ୍ଦ୍ର ମୋହନ ମହାନ୍ତି ମୋତେ ତାଙ୍କର ଅନେକ ଉପାଦେୟ ପୁସ୍ତକ ଉପହାର ଦେଇଥିବା ଉଲ୍ଲେଖ କରିନଥିଲି । ଓଡ଼ିଶାରେ ପ୍ରଫେସର ମହାନ୍ତି ସମ୍ଭବତଃ ଏକମାତ୍ର ବ୍ୟକ୍ତି ଯେ ଓଡ଼ିଶା ସାହିତ୍ୟର ପ୍ରାଚୀନ ଓ ଆଧୁନିକ ସମସ୍ତ ବିଭାଗର ସଂକଳନ କରିଛନ୍ତି । ହଜାରେ/ଦୁଇ ହଜାର ପୃଷ୍ଠା ବିଶିଷ୍ଟ ଏହି ଗ୍ରନ୍ଥଗୁଡ଼ିକ ଓଡ଼ିଆ ସାହିତ୍ୟର ଅମୂଲ୍ୟ ସମ୍ପଦ । ସେ ଓଡ଼ିଆ ସାହିତ୍ୟର ଏହି ଯେଉଁ କୋଣାର୍କ ଗଢ଼ିଗଲେ ତାହା ତାଙ୍କୁ ନିଶ୍ଚିତ ଭାବେ ଅମର କରି ରଖିବ । ତାଙ୍କ ରଚିତ ହିଷ୍ଟୋରୀ ଅଫ୍ ଓଡ଼ିଆ ଲିଟରେଚର ଓଡ଼ିଆ ସାହିତ୍ୟ ସମ୍ପର୍କରେ ଓଡ଼ିଶା ବାହାରେ ଏକ ସ୍ୱଷ୍ଟ ଧାରଣା ଦେବ । ମୋର ସୌଭାଗ୍ୟ ପ୍ରଫେସର ମହାନ୍ତି ମୋର ଗଳ୍ପ ରଚନା ଓ ସ୍ତମ୍ଭ ରଚନାକୁ ସ୍ୱତନ୍ତ୍ର ଭାବେ ସ୍ଥାନ ଦେଇଛନ୍ତି । ମୁଁ ପ୍ରଫେସର ମହାନ୍ତିଙ୍କ ନିକଟରେ ବ୍ୟକ୍ତିଗତ ଭାବେ କୃତଜ୍ଞ । ତାଙ୍କ ସଂକଳିତ ବିରାଟ ବିରାଟ ଗ୍ରନ୍ଥ ମଧ୍ୟରୁ (୧) ଓଡ଼ିଆ କାବ୍ୟ ସମ୍ଭାର, (୨) ଆଧୁନିକ ଓଡ଼ିଆ କବିତା ସମ୍ଭାର, (୩) ପ୍ରାଚୀନ ଓଡ଼ିଆ ନାଟକ, (୪) ପ୍ରାଚୀନ ଓଡ଼ିଆ ସାହିତ୍ୟ, (୫) ସାରଳା ଦାସ ରଚନା ସମ୍ଭାର, (୬) ସହସ୍ରାଂଶୁ ଅନ୍ୟତମ । ଏହି ବିରାଟ ବିରାଟ ଗ୍ରନ୍ଥ ସଂକଳନ କରିବା ଯେକୌଣସି ବ୍ୟକ୍ତି ପକ୍ଷରେ ଅସାଧ ବ୍ୟାପାର । ଏହାବ୍ୟତୀତ ତାଙ୍କ ରଚିତ ଉପନ୍ୟାସ ସୂର୍ଯ୍ୟସ୍ନାତ ଅନ୍ୟତମ ସୁଖପାଠ୍ୟ ପୁସ୍ତକ । ସେ ଓଡ଼ିଆ ସାହିତ୍ୟ ପାଇଁ ଅସାଧ ସାଧନ କରିପାରିଛନ୍ତି । ଏ ସମସ୍ତ ପୁସ୍ତକ ସେ ମୋତେ ଉପହାର ଦେଇ ନିଶ୍ଚିତ ଭାବେ ଅନୁଗୃହୀତ କରିଛନ୍ତି । ତାଙ୍କୁ ମୋର କୃତଜ୍ଞତା ଜଣାଉଛି ।

ପ୍ରଫେସର ମହାନ୍ତିଙ୍କ ବ୍ୟତୀତ ବନ୍ଧୁ ଦୁଃଖିଶ୍ୟାମ ବେହେରା ତାଙ୍କ ଗବେଷଣାତ୍ମକ ପୁସ୍ତକ ଶ୍ରୀକ୍ଷେତ୍ର ଜିଜ୍ଞାସା ଭଳି ଏକ ବିରାଟ ଗ୍ରନ୍ଥ ଉପହାର ଦେଇ ମୋର ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ସମ୍ପର୍କରେ ଅନେକ ଜିଜ୍ଞାସାର ଅନ୍ତ ଘଟାଇଛନ୍ତି । ଶ୍ରୀଯୁକ୍ତ ଫକୀର ହରିଚନ୍ଦନ ତାଙ୍କ 'ଖୋର୍ଦ୍ଧା ଇତିହାସର ଅନ୍ତରାଳେ' ଅଜେୟ ରାଉତ ଏକବିଂଶ ଶତାବ୍ଦୀର ଓଡ଼ିଶା ଏବଂ କଟକର ବନ୍ଧୁ ଇଂଜିନିୟର ପ୍ରଭାକର ସ୍ୱାଇଁ ସାରଳା ମହାଭାରତର ସମସ୍ତ ଅଠର ଖଣ୍ଡ ଶୁଦ୍ଧ ମହାଭାରତ ଉପହାର ଦେଇ ଅନୁଗୃହିତ କରିଛନ୍ତି । ସେ ଅବସରପ୍ରାପ୍ତ ଓଡ଼ିଆ ସାହିତ୍ୟର ପ୍ରଫେସର ଡକ୍ଟର ବାଉରୀବନ୍ଧୁ କର ତାଙ୍କର ଓଡ଼ିଆ ସାହିତ୍ୟର ଇତିହାସ ଏବଂ ଅନ୍ୟ ଅନେକ ଗବେଷଣାଲବ୍ଧ ପୁସ୍ତକ ମୋତେ ଉପହାର ଦେଇଥାନ୍ତି । ବାଉରୀବନ୍ଧୁ ତାଙ୍କର ଡି.ଲିଟ୍ ଗବେଷଣା ପୁସ୍ତକ, 'ଆଧୁନିକ ଓଡ଼ିଆ ସାହିତ୍ୟକୁ କାମପାଳ ମିଶ୍ରଙ୍କ ଦାନ' ମୋତେ ଉତ୍ସର୍ଗ କରିଛନ୍ତି । କେବଳ ସେତିକି ନୁହେଁ ଓଡ଼ିଆ ସାହିତ୍ୟର ଇତିହାସ ପୁସ୍ତକରେ ମୋର ସାହିତ୍ୟ ସମ୍ପର୍କରେ ଆଲୋଚନା କରି ମୋତେ ବାଧିତ କରିଛନ୍ତି ବନ୍ଧୁ ଡାକ୍ତର ଉପେନ୍ଦ୍ର ନାୟକ । ଓଡ଼ିଆ ଭାଷା-ସାହିତ୍ୟର ଅନ୍ୟତମ ପୁରୁଣା ସାହିତ୍ୟ ପତ୍ରିକା ଶତଦ୍ରୁର ସମ୍ପାଦକ ଏବଂ ବହୁ ପୁସ୍ତକର ଲେଖକ ଉପେନ୍ଦ୍ର ମୋର ଅନୁଜ ପ୍ରତିମ । ତାଙ୍କ ଶତଦ୍ରୁ ରଜତ ଜୟନ୍ତୀ ଉତ୍ସବରେ ମୋତେ ସମ୍ବର୍ଦ୍ଧିତ କରିବା ସାଙ୍ଗେ ସାଙ୍ଗେ ତାଙ୍କର ଯେତେବେଳେ ଯେଉଁ ପୁସ୍ତକ ପ୍ରକାଶ ପାଏ ତାକୁ ମୋତେ ନିଶ୍ଚିତ ଭାବେ ଉପହାର ଦେଇଯା'ନ୍ତି । ଶ୍ରୀମତୀ ମନୋରମା ବିଶ୍ୱାଳ ମହାପାତ୍ର ଓଡ଼ିଆ କବିତା କ୍ଷେତ୍ରରେ ଏକ ଅତି ପରିଚିତ ନାମ ଅଧ୍ୟାପିକା ରୂପେ କାର୍ଯ୍ୟ କରି ଅବସର ନେବା ପରେ ସେ ତାଙ୍କ କବିତା ରାଜ୍ୟରେ ନିଜକୁ ବ୍ୟାପୃତ କରି ରଖିଛନ୍ତି । ତାଙ୍କ କବିତା ପୁସ୍ତକ, ସିଡି ମୋତେ ପ୍ରାୟ ଉପହାର ଦେଇଯା'ନ୍ତି । ଏ ସମସ୍ତ ବନ୍ଧୁମାନଙ୍କ ନିକଟରେ ମୁଁ କୃତଜ୍ଞ ।

## -କଲିକତା ସହ ସଂପର୍କ-

ଓଡ଼ିଶା-ଓଡ଼ିଶା ବାହାରେ ବହୁ ଅନୁଷ୍ଠାନ ମୋତେ ସମ୍ବର୍ଦ୍ଧିତ କରିଛନ୍ତି । ସମ୍ମାନ ଦେଇଛନ୍ତି । ସେଥିମଧ୍ୟରୁ ଚଣ୍ଡିଗଡ଼ର ପ୍ରସିଦ୍ଧ ନୃତ୍ୟ ସଙ୍ଗୀତ ବିଶ୍ୱବିଦ୍ୟାଳୟ ୧୯୯୨ ଜାନୁଆରୀ ୧୦ ତାରିଖରେ କଲିକତା ରବୀନ୍ଦ୍ର ଭାରତୀ ବିଶ୍ୱବିଦ୍ୟାଳୟ ସଭା ମଞ୍ଚରେ ତାଙ୍କ ସମାବର୍ତ୍ତନ ଉତ୍ସବରେ ମୋତେ ମୁଖ୍ୟ ଅତିଥି ରୂପେ ନିମନ୍ତ୍ରିତ କରିବା ସଙ୍ଗେସଙ୍ଗେ ଦେଶର ଶ୍ରେଷ୍ଠ ସାମ୍ବାଦିକ ରୂପେ ମାନପତ୍ର ଓ ଦଶହଜାର ଟଙ୍କା ପୁରସ୍କାର ପ୍ରଦାନ କରିଥିଲେ । ଏହି ସମାବର୍ତ୍ତନ ଉତ୍ସବରେ ଦେଶର ବିଭିନ୍ନ ରାଜ୍ୟର ପ୍ରାୟ ପାଞ୍ଚଶହରୁ ଅଧିକ ଛାତ୍ର ଛାତ୍ରୀ ଡିଗ୍ରୀ ପାଇଥିଲେ । ଏହାର ଦୁଇଟି ଫଟୋ ଏଠାରେ ଦେଲୁ । ଓଡ଼ିଶାର ପ୍ରାୟ ତିରିଶ/ପଇଁତିରିଶ ଜଣ ଛାତ୍ରଛାତ୍ରୀ ନୃତ୍ୟ ସଙ୍ଗୀତରେ ବିଭିନ୍ନ ଉପାଧି ପାଇଥିଲେ । ମୁଁ ସେମାନଙ୍କ ମଧ୍ୟରୁ ଅନେକଙ୍କୁ ଜାଣିଥିଲି । ସେତେବେଳେ ମୁଁ ଓ ଗଙ୍ଗାଧର ପ୍ରଧାନଙ୍କ ଦ୍ୱାରା ପ୍ରତିଷ୍ଠିତ ଓଡ଼ିଶା ତାନ୍ତ୍ର ଏକାଡେମୀର ସଭାପତି ଥିଲି । ତାନ୍ତ୍ର ଏକାଡେମୀର ମଧ୍ୟ କିଛି ଛାତ୍ର ଛାତ୍ରୀ ଉପାଧି ଲାଭ କରିଥିଲେ । ଏଠାରେ ମୁଁ ଡିଗ୍ରୀ ପ୍ରଦାନ କରୁଥିବାର ଏକ ଛବି ଦେଲି ।

କଲିକତା ସହ ମୋର ସମ୍ପର୍କ ୧୯୮୪ ମସିହାରୁ । ସେହିବର୍ଷ ମୁଁ 'ଆଜ୍‌କାଲ୍' ଦୈନିକ ବଙ୍ଗଳା ସମ୍ବାଦପତ୍ରର ଭୁବନେଶ୍ୱର ପ୍ରତିନିଧି ରୂପେ ନିଯୁକ୍ତି ପାଇଲି । ସେତେବେଳେ ମୁଁ ଯଦିଓ ମାତୃଭୂମିର ଭୁବନେଶ୍ୱର ପ୍ରତିନିଧି ଥିଲି ତେବେ ଅନୁମତି ନେଇ ମୁଁ ଏହାର ପ୍ରତିନିଧି ରହିଛି । ମୋତେ ସେତେବେଳେ ମାସିକ ଦୁଇହଜାର ଟଙ୍କା ପାରିଶ୍ରମିକ ମିଳୁଥିଲା । ସେଇ ସୂତ୍ରରେ ମୁଁ କଲିକତାରେ ଅମୃତ ବଜାର ପତ୍ରିକାର ବାର୍ତ୍ତା ସମ୍ପାଦକ ପ୍ରଦ୍ୟୋତ ଭଦ୍ରଙ୍କ ସହ ପରିଚିତ ହେଲି । ସେ ମୋତେ ଅନେକ ପ୍ରଖ୍ୟାତ ଲୋକଙ୍କ ସହ ପରିଚିତ କରାଇଦେଲେ । ସେମାନଙ୍କ ମଧ୍ୟରେ ଚୌରଙ୍ଗି ୱାଟରଲୁ ଷ୍ଟ୍ରିଟ୍‌ର ତିନି ନମ୍ବର ବଙ୍ଗଳାର ବାସିନ୍ଦା ବିଖ୍ୟାତ ଦନ୍ତ ଚିକିତ୍ସକ ଡାକ୍ତର ବାରୀନ ରାୟ ଏବଂ ଚୌରଙ୍ଗିର ବିଖ୍ୟାତ ରସଗୋଲା କେ.ସି. ଦାସ କମ୍ପାନି ମାଲିକ ବାରିଷ୍ଟର ରବୀନ୍ଦ୍ର ନାଥ ଦାସ । ଏ ଦୁଇ ବ୍ୟକ୍ତିଙ୍କ ଘର ସେତେବେଳେ କଲିକତାର ବିଖ୍ୟାତ ବ୍ୟକ୍ତିମାନଙ୍କର ଯିବା ଆସିବା ଥାଏ । ଏହା ଗୋଟିଏ ଗୋଟିଏ ସଂସ୍କୃତି କେନ୍ଦ୍ର କହିଲେ ଅତ୍ୟୁକ୍ତି ହେବନାହିଁ । କେ.ସି. ଦାସ ରସଗୋଲା କମ୍ପାନୀଙ୍କ ନିଜ ଘର ବାଗ୍ ବଜାରରେ । ପାଞ୍ଚମହଲା କୋଠା । ଏହା ଏକ ଯୌଥ ପରିବାର । ଏହି ଦୁଇ ପରିବାରଙ୍କ ସହ ପରିଚୟ ପରେ ବଙ୍ଗଳାର ବିଖ୍ୟାତ ସାହିତ୍ୟିକ ସମରେଶ ବସୁ, ସମରେଶ ମଜୁମଦାର, ବୁଦ୍ଧଦେବ ଗୁହ, ସଞ୍ଜୀବ ଚଟ୍ଟୋପାଧ୍ୟାୟ, ବିଖ୍ୟାତ ଅଭିନେତା ରବି ଘୋଷ(ସତ୍ୟଜିତ୍ ରାୟଙ୍କ ଅଧିକାଂଶ ଚଳଚ୍ଚିତ୍ରର ହାସ୍ୟ ଅଭିନେତା)ଙ୍କ ଭଳି ବିଶିଷ୍ଟ ଲୋକଙ୍କ ସହ ପରିଚିତ ହୋଇଥିଲି । ଅନେକ ସମୟରେ ଏମାନଙ୍କ ମଧ୍ୟରୁ ସମରେଶ ବସୁ, ସମରେଶ ମଜୁମ୍‌ଦାର, ପ୍ରଦ୍ୟୋତ ଭଦ୍ର, ବିଖ୍ୟାତ ସାମ୍ବାଦିକ ଅମୀମ ମିତ୍ର ପ୍ରମୁଖ ମୁଁ ଥିବାବେଳେ ଉତ୍କଳ ଭବନକୁ ଆସନ୍ତି । କେବଳ ଅସୀମବାବୁଙ୍କୁ ଛାଡ଼ିଦେଲେ ଅନ୍ୟ ସମସ୍ତେ ପ୍ରାୟ ମଦ୍ୟପାନ ପ୍ରିୟ । ମଝିରେ ମଝିରେ ସମରେଶ ମଜୁମଦାର ଆସି ରାତି ଗୋଟାଏ ପର୍ଯ୍ୟନ୍ତ ବସି ମଦ୍ୟପାନ କରନ୍ତି । ମୁଁ ସମରେଶ ଓ ପ୍ରଦ୍ୟୋତ ପ୍ରାୟ ବିଳମ୍ବିତ ରାତ୍ରି ପର୍ଯ୍ୟନ୍ତ ବସୁଥିଲୁ । ଥରେ ଥରେ ସମରେଶ ତାଙ୍କର ଘଣ୍ଟା, ପର୍ସ ଇତ୍ୟାଦି ଛାଡ଼ି ଦେଇଯାନ୍ତି । ପରଦିନ ସକାଳୁ ଜଣେ ତାଙ୍କ ଠାରୁ ଏକ ପତ୍ର ଧରି ଆସେ ଏବଂ ସେ ସବୁ ନେଇଯାଏ । ସମରେଶ ମୋତେ ଧଲ୍ ଦା ବୋଲି ସମ୍ବୋଧନ କରନ୍ତି । ତାଙ୍କର ଏହିଭଳି ଏକ ପତ୍ର ଏଠାରେ ଦେଲି । ଏହା ୧୯୯୫ ଫେବୃଆରୀ ୫ ତାରିଖର । ମୁଁ କଲିକତା ଉତ୍କଳ ଭବନର ଭି.ଆଇ.ପି. ରୁମ୍‌ରେ ପ୍ରାୟ ରହୁଥିଲି ।

ସମରେଶ ତାଙ୍କର ବିଖ୍ୟାତ ଉପନ୍ୟାସ 'କାଲ୍‌ବେଲା' ମୋତେ ଉପହାର ଦେଇଥିଲେ । ଏହା ସାହିତ୍ୟ ଏକାଡେମୀ ପୁରସ୍କାରପ୍ରାପ୍ତ ।

କଲିକତାର ଆଉ ଜଣେ ବିଖ୍ୟାତ ସାହିତ୍ୟିକ ମୋର ଘନିଷ୍ଠ ବନ୍ଧୁ ଥିଲେ । ସେ ହେଉଛନ୍ତି ସନ୍ଦିପନ ଚଟ୍ଟୋପାଧ୍ୟାୟ । ସେ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାରପ୍ରାପ୍ତ ଲେଖକ । ତାଙ୍କର ଅନେକ ବହି ମୋତେ ଉପହାର ଦେଇଥିଲେ । 'ଆଜ୍‌କାଲ୍'ର ସମ୍ପାଦକ ଶ୍ରୀ ଅଶୋକ ଦାସଗୁପ୍ତ ସନ୍ଦିପନବାବୁଙ୍କ ସହ ମୋତେ ପରିଚୟ କରାଇ ଦେଇଥିଲେ । ମୁଁ ସନ୍ଦିପନବାବୁଙ୍କୁ ଦାଦା ବୋଲି ସମ୍ବୋଧନ କରୁଥିଲି ।

କଲିକତାର ଆଉଜଣେ ବନ୍ଧୁ ବୁଦ୍ଧଦେବ ଗୁହ । ବଙ୍ଗଳା ଔପନ୍ୟାସିକଙ୍କ ମଧ୍ୟରେ ତିନି/ଚାରିଜଣଙ୍କ ମଧ୍ୟରେ ସେ ଜଣେ । ପେଶାରେ ସେ ଜଣେ ଚାର୍ଟାର୍ଡ ଆକାଉଣ୍ଟାଣ୍ଟ । ମାତ୍ର ନିଶାରେ ଲେଖକ । ଓଡ଼ିଶାର ଜଙ୍ଗଲ ଉପରେ ତାଙ୍କର ଅନେକ ଉପନ୍ୟାସ ରହିଛି । ମୋ ସହ ତାଙ୍କର ସେଇ ୧୯୮୫/୮୬ ମସିହାରୁ ପରିଚୟ । ପରିଚୟ ପରେ ପରେ ତାଙ୍କ ସହ ବେଶ୍ ଘନିଷ୍ଠତା ହୋଇଥିଲା । କଲିକତା ଗଲେ ତାଙ୍କୁ ଟେଲିଫୋନ୍ କଲେ ସେ ଉତ୍କଳ ଭବନକୁ ବେଶ୍ ଦାମିକିଆ ସ୍କଚ୍ ପଠାଇ ଦିଅନ୍ତି । ମଝିରେ ମଝିରେ ସେ ମୋତେ ପତ୍ର ଦିଅନ୍ତି । ତାଙ୍କର ଏକ ପତ୍ର ଏଠାରେ ଦେଲି । ସେ ଜଙ୍ଗଲକୁ ଖୁବ୍ ଭଲ ପାଉଥିଲେ ତେଣୁ ତାଙ୍କ ଲେଟରହେଡ୍ ଉପରେ ଜଙ୍ଗଲ ଛବି ରଖୁଥିଲେ ।

ମୋର ଆଜ୍‌କାଲ୍‌ରେ ଏକ ଲେଖା ପଢ଼ି ତାଙ୍କୁ ପ୍ରଶଂସା କରି ୧୫/୦୫/୨୦୦୦ ତାରିଖରେ ଏକ ପତ୍ର ବଙ୍ଗଳାରେ ଲେଖିଥିଲେ । ସେ ବଙ୍ଗଳାରେ କେତେବେଳେ ଇଂରାଜୀରେ ମଧ୍ୟ ପତ୍ର ଦେଉଥିଲେ । ତାଙ୍କର ଇଂରେଜୀ ଭାଷାରେ ଲିଖିତ ଏକ ପତ୍ରର ନକଲ ମଧ୍ୟ ଦେଲି । ସେ ଓଡ଼ିଶା ଉପରେ ମୋଟ୍ ଷୋଳଟି ଉପନ୍ୟାସ ଲେଖିଛନ୍ତି । ସେ ଉପନ୍ୟାସଗୁଡ଼ିକୁ ମୋ ପାଖକୁ ପଠାଇଥିଲେ ।

## -ଦାୟିତ୍ୱ ଓ ପାଳନ-

ମୁଁ ବିଭିନ୍ନ ସମୟରେ ବିଭିନ୍ନ ପରୀକ୍ଷାର ସମ୍ମୁଖୀନ ହୋଇଛି । ଜଣେ ସାମ୍ବାଦିକ ରୂପେ, ଜଣେ ସାହିତ୍ୟିକ ରୂପେ, ଜଣେ ସଂଗଠକ ରୂପେ ସେ ସାମ୍ବାଦିକ ଟ୍ରେଡ ୟୁନିୟନ ହେଉ ବା ସାହିତ୍ୟ ସଂଗଠନର କାର୍ଯ୍ୟକର୍ତ୍ତା ହେଉ କିମ୍ବା ନାଟକ, ନୃତ୍ୟ, ସଂଗୀତ ଅନୁଷ୍ଠାନ ହେଉ ବିଭିନ୍ନ କ୍ଷେତ୍ରରେ ମୁଁ ପରିକ୍ଷିତ ହୋଇଛି । ତେବେ ମୋର ଜୀବନରେ ଏତିକି ସନ୍ତୋଷ ଯେ ମୁଁ ସବୁ କ୍ଷେତ୍ରରେ ନିଜ ବିଚାରରେ ସଫଳ ହୋଇଛି । ଜଣେ ପେଶାଦାର ସାମ୍ବାଦିକ ରୂପେ ମୁଁ ଯେତେବେଳେ ୧୯୯୦ ସେପ୍ଟେମ୍ବର ୧୩ ତାରିଖରେ ହରିଦ୍ୱାର ଠାରେ ନ୍ୟାସନାଲ ୟୁନିୟନ ଅଫ୍ ଜର୍ଣ୍ଣାଲିଷ୍ଟ(ଇଣ୍ଡିଆ)ର ସର୍ବଭାରତୀୟ ସଭାପତି ରୂପେ ନିର୍ଦ୍ୱନ୍ଦ୍ୱରେ ନିର୍ବାଚିତ ହେଲି ମୋର ମନେହେଲା ପ୍ରକୃତରେ ମୁଁ କ'ଣ ଏହି ପଦ ପାଇଁ ଯୋଗ୍ୟ ? ଏ ଦାୟିତ୍ୱ ମୁଁ ତୁଲାଇ ପାରିବି ତ ? ତା'ପରେ ୧୯୯୧ ନଭେମ୍ବର ୧୪ରୁ ୧୬ ତାରିଖ ପର୍ଯ୍ୟନ୍ତ ଦିଲ୍ଲୀ ଠାରେ ଅନୁଷ୍ଠିତ ଦକ୍ଷିଣ ଏସିଆର ପାଞ୍ଚୋଟି ରାଷ୍ଟ୍ର(ଭାରତ, ପାକିସ୍ଥାନ, ବାଲାଂଦେଶ, ନେପାଳ, ଶ୍ରୀଲଙ୍କା) ସହ ଆଇ.ଏଫ୍.ଡବ୍ଲ୍ୟୁ.ଜେ. ଓ ଆଇ.ଜେ.ୟୁ ଅନୁଷ୍ଠାନର ସାମ୍ବାଦିକମାନେ ଏବଂ ଆନ୍ତର୍ଜାତୀକ ସାମ୍ବାଦିକ ସଂଘର ସାଧାରଣ ସମ୍ପାଦକ ଏଡେନ ହ୍ୱାଇଟ୍ ଓ ଅଷ୍ଟ୍ରେଲିଆ ସାମ୍ବାଦିକ ସଂଘର ସମ୍ପାଦକ ୱାଲ୍ଟର ପିଅରସନ୍‌ଙ୍କ ମିଳିତ ସାମ୍ବାଦିକ ସମ୍ମିଳନୀରେ ତିନିଜଣିଆ ସଭାପତି ମଣ୍ଡଳୀରେ ସଦସ୍ୟ ରୂପେ ମୋର ନିର୍ବାଚନ ମୋତେ ଆଉ ଏକ ଗୁରୁ ଦାୟିତ୍ୱ ଦେଲା । ହରିଦ୍ୱାର ଦ୍ୱିବାର୍ଷିକ ସମ୍ମିଳନୀର ଫଟୋ ଏଥିସହ ଦେଲି । ଯେତେବେଳେ

ଯେଉଁ ଦାୟିତ୍ୱ ମୋ କାନ୍ଧରେ ପଡ଼ିଛି ଈଶ୍ୱରଙ୍କ କୃପାରୁ ମୁଁ ତାକୁ ମୋ ନିଜ କ୍ଷମତା ବଳୟ ମଧ୍ୟରେ ସନ୍ତୋଷର ସହ ତୁଲାଇଛି । ଏନ୍.ୟୁ.ଜେ.(ଆଇ)ର ସଭାପତି ରୂପେ ୧୯୯୩ ସେପ୍ଟେମ୍ବର ପର୍ଯ୍ୟନ୍ତ ମୁଁ କାର୍ଯ୍ୟ ଚଳାଇଥିଲି । ମୋର କାର୍ଯ୍ୟକାଳ ୧୯୯୨ ସେପ୍ଟେମ୍ବର ପର୍ଯ୍ୟନ୍ତ । ମାତ୍ର ୧୯୯୨ରେ ନିର୍ବାଚନ ହୋଇ ନପାରିବାରୁ ମୋର କାର୍ଯ୍ୟକାଳ ୧୯୯୩ ସେପ୍ଟେମ୍ବର ପର୍ଯ୍ୟନ୍ତ ଗଡ଼ିଗଲା । ୧୯୯୩ରେ ମୋ ପରେ 'ଦି ହିନ୍ଦୁ'ର ଦିଲ୍ଲୀ ବ୍ୟୁରୋ ମୁଖ୍ୟ ଶ୍ରୀ ନୀତିଶ ଚକ୍ରବର୍ତ୍ତିସଭାପତି ରୂପେ ନିର୍ବାଚିତ ହେଲେ । ଜୀବନରେ ଏହିସବୁ ପରୀକ୍ଷା ଦେଇଦେଇ ସଂଗ୍ରାମ ପାଇଁ ସବୁବେଳେ ମୁଁ ପ୍ରସ୍ତୁତ ହୋଇ ରହିଥାଏ ।

୧୯୯୧ରେ କଂଗ୍ରେସ ଦଳର ପ୍ରଚାର ପାଇଁ ରାଜେଶ ଖାନ୍ନା ଭୁବନେଶ୍ୱର ଆସିଥିଲେ । ଓବରାଏ ହୋଟେଲ୍‌ରେ ଅଳ୍ପ କିଛି ବନ୍ଧୁଙ୍କୁ ତାଙ୍କ ସହ ଲଞ୍ଚ ପାଇଁ ଡକା ହୋଇଥିଲା । ମୋତେ ମଧ ନିମନ୍ତ୍ରଣ ମିଳିଥିଲା । ମୋତେ ରାଜେଶ ଖାନ୍ନାଙ୍କ ସହ ପରିଚୟ କରାଇ ଦେଲେ ସୁରେଶ ରାଉତରାୟ । ସୁର ତା'ର ଚିରାଚରିତ ବଡ଼ ପାଟିରେ କହିଲେ ରାଜେଶ ଜୀ- ଇୟେ ବଡ଼ାଭାୟା ଧଳ ସାହେବ । ଓଡ଼ିଶାକା ବଡ଼ା ଜର୍ଣ୍ଣାଲିଷ୍ଟ । ମୁଁ ତା'ପରେ ଏନ୍.ୟୁ.ଜେ.ର ସଭାପତି ଥିବାକଥା କହିଲି । ସେ ମୋ ସହ କରମର୍ଦ୍ଦନ କରି ଓଡ଼ିଶା କଥା ପଚାରିଲେ । ଓଡ଼ିଶାରେ ଲୋକସଭା ନିର୍ବାଚନରେ କଂଗ୍ରେସର ସ୍ଥିତି ସମ୍ପର୍କରେ ମଧ ଚୁପ୍‌ଚୁପ୍ ପଚାରିଲେ । ମୁଁ ଭଲ ଅଛି ବୋଲି କହିଥିଲି । ସେ ହସି କରମର୍ଦ୍ଦନ କଲେ । ଲଞ୍ଚ ପରେ ଆମେ ସାଙ୍ଗହୋଇ ଫେରିଲୁ । ରାଜେଶ ଖାନ୍ନାଙ୍କ ସହ ମୋର ଫଟୋ ଏଠାରେ ଦେଲି । ରାଜେଶ ଖାନ୍ନାଙ୍କ ଅଭିନୟ କ୍ୟାରିଅରରେ ସେତେବେଳେ ଭଟ୍ଟା ପଡ଼ି ଆସୁଥାଏ । ତେବେ ସେ ଦିଲ୍ଲୀରୁ ଲୋକସଭାକୁ ନିର୍ବାଚିତ ହୋଇଥିଲେ । ସଂପ୍ରତି ସେ ଇହଧାମ ତ୍ୟାଗ କରିଛନ୍ତି । ମୋର ସେ ପୁରୁଣା କଥା ମନେପଡ଼ିଲା । ପୁରୁଣା ଫାଇଲ୍ ଖୋଳୁ ଖୋଳୁ ତାଙ୍କ ସହ ଉଠିଥିବା ଫଟୋଟି ମିଳିଲା । ଭାରତବର୍ଷର ଏହି ପ୍ରଥମ ସୁପରଷ୍ଟାରଙ୍କ ସହ କେତୋଟି ମୁହୂର୍ତ୍ତ କଟାଇଥିବାରୁ ଆଜି ତାହା ସ୍ମରଣ କରି ଆତ୍ମସନ୍ତୋଷ ମିଳିଛି ।

୧୯୯୩ରେ ମୁଁ କେନ୍ଦ୍ର ସାହିତ୍ୟ ଏକାଡେମୀ ପକ୍ଷରୁ ଅନୁବାଦ ପାଇଁ ପୁରସ୍କାର ପାଇଲି । ଏହି ପୁରସ୍କାର ପାଇବା ପରେ ମୋତେ ଅନେକ ବନ୍ଧୁ ଅନେକ ଅନୁଷ୍ଠାନ ସମ୍ବର୍ଦ୍ଧନା ଜଣାଇଥିଲେ । ମାସାଧିକକାଳ ଏ ସମ୍ବର୍ଦ୍ଧନା ପର୍ବ ଚାଲିଥିଲା । ୧୯୯୩ ପୁରସ୍କାର ଅବଶ୍ୟ ୧୯୯୪ ଜାନୁଆରୀରେ ଘୋଷଣା ହେଲା । ଏଥିପାଇଁ ମୁଁ ଯେଉଁମାନଙ୍କ ନିକଟରୁ ପତ୍ର ପାଇଥିଲି ସେମାନଙ୍କ ମଧରେ ଓଡ଼ିଶା ମଞ୍ଚ-ଚଳଚ୍ଚିତ୍ର ଜଗତର ଅନନ୍ୟ ସାଧାରଣ ବ୍ୟକ୍ତିତ୍ୱ ହେମନ୍ତ ଦାସ ଅନ୍ୟତମ । ହେମନ୍ତ ଦାସ ଆମ ବାଙ୍କୀର । ପିଲାଦିନୁ ସେ ମୋତେ ଖୁବ୍ ଶ୍ରଦ୍ଧା କରୁଥିଲେ । ମୁଁ ତାଙ୍କୁ ଭାଇ ବୋଲି ଡାକୁଥିଲି । ସେ ଏବେ ଆଉ ନାହାନ୍ତି । ଦୀର୍ଘଦିନ ରୋଗ ଭୋଗ କରି ପରଲୋକ ଗମନ କରିଛନ୍ତି । ସେ ମୋତେ ମୋର ପୁରସ୍କାର ଲାଭରେ ଖୁସି ହୋଇ ରୋଗଶଯ୍ୟାରୁ ମୋ ପାଖକୁ ଏକ ପତ୍ର ଦେଇଥିଲେ । ହେମନ୍ତ ଭାଇ ମୋତେ 'ବରି'(ମୋ ଗାଁରେ ମୋ ଡାକନାମ)ବୋଲି ଡାକୁଥିଲେ । ତାଙ୍କ ଆତ୍ମା ସ୍ୱର୍ଗରେ ଶାନ୍ତି ଲାଭ କରୁ ଆଜି ଏହା ହିଁ ପ୍ରାର୍ଥନା ।

ଜୀବନରେ ଅନେକ ଅଭୁଲା ସ୍ମୃତି ରହିଛି । ପଛକୁ ଚାହିଁଦେଲେ ଅନେକ ଘଟଣା ଆଖି ଆଗରେ ନାଚିଯାଉଛି । ହଠାତ୍ ୧୯୯୪ ମସିହା ଫେବୃଆରୀ ମାସରେ କେନ୍ଦ୍ର ସରକାରଙ୍କ ତଥ୍ୟ ଓ ବେତାର ମନ୍ତ୍ରଣାଳୟରୁ ଏକ ପତ୍ର ପାଇଲି ଯେ ମୋର ନାମ ସେଣ୍ଟ୍ରାଲ ବୋର୍ଡ଼ ଅଫ୍ ଫିଲ୍ମ ସାର୍ଟିଫିକେସନ ପୂର୍ବାଞ୍ଚଳ କମିଟି ପାଇଁ ସୁପାରିଶ ହୋଇଛି । ଏହି ପତ୍ରରେ ମୋର ବାଇଓଡାଟା ସେମାନେ ମାଗି ପଠାଇଥିଲେ । ମୁଁ ଯଥା ସମୟରେ ପଠାଇଥିଲି । ୧୯୯୫ ଜାନୁଆରୀ

ପହିଲାରେ ମୋତେ ଏବଂ ଆଉ କେତେକ ବିଶିଷ୍ଟ ବ୍ୟକ୍ତିଙ୍କୁ ଆଞ୍ଚଳିକ ଚଳଚ୍ଚିତ୍ର ସେନ୍ସର ବୋର୍ଡ଼ରେ ନିଯୁକ୍ତି ଦିଆଗଲା । ଆମେ ଦୁଇବର୍ଷ ପାଇଁ ଏହି ସେନ୍ସର ବୋର୍ଡ଼ର ସଦସ୍ୟ ଥିଲୁ । ଏହି ବୋର୍ଡ଼କୁ ଓଡ଼ିଆ, ବଙ୍ଗଳା ଓ ଭୋଜପୁରୀ ଭାଷାର ଚଳଚ୍ଚିତ୍ର ସେନ୍ସର ପାଇଁ ଆସୁଥିଲା । ମୋର ମନେଅଛି ୧୯୯୫ ଡିସେମ୍ବର ୩୦ ତାରିଖରେ ସେନ୍ସର ବୋର୍ଡ଼ ଡକାଗଲା । ସେତେବେଳେ ପ୍ରତିଥର ଚାରିଜଣ ଲେଖାଏଁ ସଦସ୍ୟ ଏହି ବୋର୍ଡ଼ରେ ବସୁଥିଲେ । ସେଦିନ ମୁଁ ଡାକ୍ତର ରାଜେଶ୍ୱରୀ ଶ୍ରୀନିବାସନ, ମନସ୍ୱିନୀ ରାୟ ଓ ଅରୁଣ ପଣ୍ଡା ବୋର୍ଡ଼ରେ ଥିଲୁ । ବିଖ୍ୟାତ ଅଭିନେତ୍ରୀ ଓ ବଙ୍ଗଳା ଚଳଚ୍ଚିତ୍ର ପ୍ରଯୋଜିକା ଅପର୍ଣ୍ଣା ସେନଙ୍କର ଏକ ବଙ୍ଗଳା ଛବି ସେନ୍ସର ପାଇଁ ଆସିଥିଲା । ସେଦିନ ସେ ଛବି ସେନ୍ସର ହେଲେ ୧୯୯୬ ଜାନୁଆରୀରେ ଆନ୍ତର୍ଜାତିକ ଚଳଚ୍ଚିତ୍ର ଉତ୍ସବ ପାଇଁ କାର୍ଲୋଭିଭାରି ଯିବ । ମାତ୍ର ସେ ଚଳଚ୍ଚିତ୍ରରେ ପୁରୀ ସମୁଦ୍ର କୂଳରେ ତେଲେଙ୍ଗା ନୋଳିଆଙ୍କ ମୁହଁରେ ଶୁଦ୍ଧ ଓଡ଼ିଆ ଭାଷା ଦିଆଯାଇ ଓଡ଼ିଆମାନଙ୍କୁ ବ୍ୟଙ୍ଗ କଲାଭଳି ହୋଇଥିଲା । ତା' ଛଡ଼ା ଚଳଚ୍ଚିତ୍ରର କାହାଣୀରେ ପୁରୀ ସମୁଦ୍ର କୂଳର କୌଣସି ସ୍ଥିତି ନଥିଲା । ମୁଁ ଏହାକୁ ବିରୋଧ କଲି । ଅପର୍ଣ୍ଣା ସେନ୍ ହାତଯୋଡ଼ି ଫିଲ୍ମକୁ ପାଶ୍ କରିଦେବା ପାଇଁ ଯେତେ ଅନୁରୋଧ କଲେ ମଧ୍ୟ ମୁଁ ସେଥିରେ ରାଜି ହେଲିନାହିଁ । ନିୟମ ଅନୁସାରେ ଜଣେ ସଦସ୍ୟ ଯଦି ବିରୋଧ କରେ ତେବେ ଫିଲ୍ମ ସେନ୍ସର ହେବନାହିଁ । ଅପର୍ଣ୍ଣା ସେନ୍‌ଙ୍କୁ ସେ ଦୃଶ୍ୟକୁ କାଟିଦେବାକୁ କୁହାଗଲା । ସେ ରାଜି ହୋଇ ଲେଖିଦେବା ପରେ ସର୍ତ୍ତ ସହ ଫିଲ୍ମ ସେନ୍ସର ହେଲା ।

## -ଓଡିଆ ଚଳଚ୍ଚିତ୍ରର ସୁବର୍ଣ୍ଣ ଜୟନ୍ତୀ-

ସେତେବେଳେ ମୁଁ ଚଳଚ୍ଚିତ୍ର ଉପରେ ଅନେକ ଲେଖା ଲେଖୁଥିଲି । ମୋର ସ୍ତମ୍ଭ ମୁକ୍ତ ବିଚାର(ସମ୍ବାଦ ଖବରକାଗଜ)ରେ ଏବଂ ପ୍ରଜାତନ୍ତ୍ରର ରୂପ ରସ ଛନ୍ଦରେ ଓଡ଼ିଆ ଚଳଚ୍ଚିତ୍ର ଉପରେ ଅନେକ ପ୍ରବନ୍ଧ ଲେଖିଥିଲି । ୧୯୮୪ରେ ସୂଚନା ଭବନରେ ଓଡ଼ିଆ ଚଳଚ୍ଚିତ୍ରର ସୁବର୍ଣ୍ଣ ଜୟନ୍ତୀ ପାଳନ କରାଯାଇଥିଲା । ଏ ଉପଲକ୍ଷେ ଗଠିତ କମିଟିର ମୁଁ ଚେୟାରମ୍ୟାନ ଥିଲି । ସିନେକ୍ରିଟିକ୍ ଆୱାର୍ଡ଼ ଓଡ଼ିଆ ଚଳଚ୍ଚିତ୍ରର ପ୍ରାୟ ଶତାଧିକ କଳାକାର, ନିର୍ଦ୍ଦେଶକ ଓ ପ୍ରଯୋଜକଙ୍କୁ ଦିଆଯାଇଥିଲା । ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ମୁଖ୍ୟ ଅତିଥି ଓ ଅର୍ଥମନ୍ତ୍ରୀ ରଘୁନାଥ ପଟ୍ଟନାୟକ ସମ୍ମାନିତ ଅତିଥି ଏବଂ ମୁଁ ଏଥିରେ ସଭାପତିତ୍ୱ କରିଥିଲି ।

ଓଡ଼ିଆ ଚଳଚ୍ଚିତ୍ରର ସୁବର୍ଣ୍ଣ ଜୟନ୍ତୀ ଉତ୍ସବ ଏବଂ ଓଡ଼ିଶା ସିନେକ୍ରିଟିକ୍ ଆୱାର୍ଡ଼ ୧୯୮୪ ଏପ୍ରିଲ ୨୪ ତାରିଖରେ ସୂଚନା ଭବନରେ ଅନୁଷ୍ଠିତ ହେଲା । ଏହି ଉତ୍ସବରେ ଓଡ଼ିଆ ଚଳଚ୍ଚିତ୍ର ସହ ସମ୍ପୃକ୍ତ ଶହେ ଦଶଜଣ କଳାକାରଙ୍କୁ ସମ୍ମାନିତ କରିବା ପାଇଁ ବ୍ୟବସ୍ଥା କରାଗଲା । 'ଆଖି' ନାମରେ ଏକ ସାପ୍ତାହିକ ପତ୍ରିକାର ସମ୍ପାଦକ ପ୍ରଶାନ୍ତ ପଟ୍ଟନାୟକ ଏବଂ ସଂସ୍କୃତି ଅନୁଷ୍ଠାନର ମିଳିତ ଉଦ୍ୟୋଗରେ ଏହି ଅନୁଷ୍ଠାନ କରାଯିବା ପାଇଁ ସ୍ଥିର ହେଲା । ଏଥିପାଇଁ ଫିଲ୍ମ ଫେୟାର ପୁରସ୍କାର ଢାଞ୍ଚାରେ ଏକ କାଠମୂର୍ତ୍ତିଦେବାପାଇଁ ବ୍ୟବସ୍ଥା ହେଲା । ତେବେ ଏତେ ସଂଖ୍ୟକ ମୂର୍ତ୍ତିଓଡ଼ିଶାରେ ପାଇବା ସମ୍ଭବ ନୁହେଁ । ଏହି ସମଗ୍ର ଆୟୋଜନର ମୁଁ ସଭାପତି ଥିଲି । ସଂସ୍କୃତି ଅନୁଷ୍ଠାନରେ ଷାଠିଏରୁ ଊର୍ଦ୍ଧ୍ୱ ସଦସ୍ୟ ଥିଲେ । ମୁଁ ସଂସ୍କୃତିର ମୂଳ ସଭାପତି ଥିଲି । ୧୯୮୦ ମସିହାରେ ଏହା ଗଢ଼ା ହୋଇଥିଲା । ସଂସ୍କୃତିର ଦୁଇଜଣ ସଦସ୍ୟଙ୍କୁ କଲିକତା ପଠାଗଲା । ସେମାନେ ସେ ଧରଣର ମୂର୍ତ୍ତିଦୁଇଶହ ଟଙ୍କା ପଡ଼ିବ ବୋଲି ଟେଲିଫୋନ୍‌ରେ କହିଲେ । ମୁଁ ଟଙ୍କା ଯୋଗାଡ଼ରେ ଲାଗିଗଲି । ମୋର ମନେ ଅଛି ଏଥିପାଇଁ ବିଭିନ୍ନ ମନ୍ତ୍ରୀ, ମାର୍କେଟ

ବିଲ୍‌ଡିଂର କିଛି କିଛି ବଡ଼ ବ୍ୟବସାୟୀ ଏବଂ ଆମ ଭିତରେ ଶହେ ଶହେ ଟଙ୍କା ଚାନ୍ଦା କରି ଏହି ଟଙ୍କା ଉଠାଇଲୁ । ସୂଚନା ଭବନର ଉପର ମହଲାରେ ବନ୍ଧୁ ମିଳନ ଓ ଚା' ପର୍ବ ହୋଇଥିଲା । ଏହି ଚା' ପାନ ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ପକ୍ଷରୁ ଦିଆଯାଇଥିଲା । ଏହି ଉତ୍ସବରେ ଓଡ଼ିଆ ଚଳଚ୍ଚିତ୍ର ଜଗତର ପ୍ରାୟ ସମସ୍ତ କଳାକାର ଯୋଗ ଦେଇଥିଲ । ମୁଁ ବ୍ୟକ୍ତିଗତ ଭାବେ ସମସ୍ତଙ୍କୁ ଟେଲିଫୋନ୍ ଯୋଗେ ଅନୁରୋଧ କରିଥିଲି । ସେତେବେଳେ ଓଡ଼ିଆ ଚଳଚ୍ଚିତ୍ରର ହିଟ୍ ଯୋଡ଼ି ଥିଲେ ପ୍ରଶାନ୍ତ ନନ୍ଦ ଓ ମହାଶ୍ୱେତା ରାୟ । ଏ ଦୁହିଁଙ୍କ ବ୍ୟତୀତ ଶ୍ରୀରାମ ପଣ୍ଡା, ଉତ୍ତମ ମହାନ୍ତି, ଝରଣା ଦାସ, ଅପରାଜିତା, ଜୟା ସ୍ୱାମୀ, ଅଜିତ୍ ଦାସ, ଅନୀତା ଦାସ, ଧୀର ବିଶ୍ୱାଳ, ଗୋବିନ୍ଦ ତେଜ, ଶରତ ପୂଜାରୀ, ମହମ୍ମଦ ମୋହସିନ୍, ଗୌର ପ୍ରସାଦ ଘୋଷ, ଚନ୍ଦନା ଘୋଷ, ସଙ୍ଗୀତ ନିର୍ଦ୍ଦେଶକ ଓ ଗାୟକ ବାଳକୃଷ୍ଣ ଦାଶ, ଅକ୍ଷୟ ମହାନ୍ତି, ପ୍ରଫୁଲ୍ଲ କର, ସିକନ୍ଦର ଆଲାମ୍, ଚିତ୍ତ ଜେନା, ବିଖ୍ୟାତ ଅଭିନେତା ସାମୁଏଲ ସାହୁ(ବାବି), ହେମନ୍ତ ଦାସ, ପ୍ରିୟନାଥ ମିଶ୍ର(ପୀର), ଅକ୍ଷୟ ମହାନ୍ତି(କାଶ୍ୟପ)ଙ୍କ ପର୍ଯ୍ୟନ୍ତ କିଏ ଯେ ଆସିନଥିଲେ କହିହେଉନି । ଓଡ଼ିଶାରେ ଏହି ପ୍ରଥମଥର ପାଇଁ ଏତେ ସଂଖ୍ୟକ ସିନେ କଳାକାର, ପ୍ରଯୋଜକ, ନିର୍ଦ୍ଦେଶକ ଏକତ୍ରିତ ହୋଇଥିଲେ । ଏହି ଉତ୍ସବ ପରେ ଅନେକ ଦିନ ପର୍ଯ୍ୟନ୍ତ ମୋତେ ବହୁ ବନ୍ଧୁ ଅଭିନନ୍ଦନ ଜଣାଇଥିଲେ । ସମ୍ଭବତଃ ଏତେ ସଂଖ୍ୟକ ଚଳଚ୍ଚିତ୍ର ବ୍ୟକ୍ତିତ୍ୱଙ୍କୁ ଏକାଠି କରିବା ଓ ସମ୍ବର୍ଦ୍ଧନା ଦେବା ଆଜିସୁଦ୍ଧା ଏକ ରେକର୍ଡ଼ ।

ଜୀବନର ବିଭିନ୍ନ ସ୍ତରରେ ମୁଁ କାର୍ଯ୍ୟ କରିଛି । ଓଡ଼ିଆ ଚଳଚ୍ଚିତ୍ରର ସୁବର୍ଣ୍ଣ ଜୟନ୍ତୀ ଆମେ ୧୯୮୪ ଏପ୍ରିଲ ମାସ ୨୪ ତାରିଖରେ କରିବା ପରେ ଜୁନ୍ ମାସରେ ଓଡ଼ିଶା ଚଳଚ୍ଚିତ ନିଗମ ପକ୍ଷରୁ ସୁବର୍ଣ୍ଣ ଜୟନ୍ତୀ ଉତ୍ସବ ପାଳନ ହେଲା । ତଥ୍ୟ ଅନୁସାରେ ୧୯୩୪ ଏପ୍ରିଲ ୨୮ ତାରିଖରେ ଓଡ଼ିଶାର ପ୍ରଥମ ଓଡ଼ିଆ ଚଳଚ୍ଚିତ୍ର ସୀତା ବିବାହ(ମୋହନ ସୁନ୍ଦର ଦେବ ଗୋସ୍ୱାମୀ ପ୍ରଯୋଜନା) ପୁରୀ ଲକ୍ଷ୍ମୀ ସିନେମା ହଲ୍‌ରେ ପ୍ରଥମେ ମୁକ୍ତିଲାଭ କରିଥିଲା । ଏହି ଚଳଚ୍ଚିତ୍ରରେ ସେତେବେଳେ ମୋଟ୍ ତିରିଶ ହଜାର ଟଙ୍କା ବ୍ୟୟ ହୋଇଥିଲା । ମୁଁ ଏହା ଉପରେ ଦୁଇଟି ନିବନ୍ଧ ମଧ୍ୟ ରଚନା କରିଥିଲି । ଓଡ଼ିଶା ଚଳଚ୍ଚିତ୍ର ନିଗମ ଦ୍ୱାରା ୧୯୮୪ ଜୁନ୍ ମାସରେ ଏକ ସ୍ମରଣିକା ମଧ୍ୟ ପ୍ରକାଶ ପାଇଥିଲା । ସେଥିରେ ମଧ୍ୟ ମୋର ନିବନ୍ଧ ରହିଥିଲା । ଏହାପରେ ୧୯୯୬ ମସିହାରେ ଓଡ଼ିଆ ଚଳଚ୍ଚିତ୍ରର ହୀରକ ଜୁବୁଲି ପାଳନ ହେଲା । ହଠାତ୍ ମୂଳ ତାରିଖର ଦୁଇବର୍ଷ ପରେ ଏ ପ୍ରକାର ଉତ୍ସବ(୧୯୯୪ରେ ହେବାକଥା) ପାଳନ ଦେଖି ବହୁ ବିବାଦ ଆରମ୍ଭ ହୋଇଥିଲା । ସେତେବେଳେ ସମ୍ବାଦ ଖବର କାଗଜରେ ମୁଁ ଏହାକୁ ବିରୋଧ କରି ଦୁଇଟି ନିବନ୍ଧ ମୋର ମୁକ୍ତବିଚାର ସ୍ତମ୍ଭରେ ଲେଖିଥିଲି । ତାକୁ ଖଣ୍ଡନ କରି ମହେନ୍ଦ୍ର ମିଶ୍ର ଗୋଟିଏ ଲେଖା ଦେଲାବେଳେ ମୋତେ ସମର୍ଥନ କରି ଶରତ ପୂଜାରୀ, ସାମ୍ବାଦିକ ହରିହର ପ୍ରସାଦ ମାହାଲିକ ଓ ରଣଧୀର ଦାସ ଦୁଇଟି କଡ଼ା ପ୍ରବନ୍ଧ ଲେଖି ୧୯୩୪ ଏପ୍ରିଲ ୨୮ ତାରିଖ ହିଁ ସୀତାବିବାହ ଚଳଚ୍ଚିତ୍ରର ପ୍ରଥମ ମୁକ୍ତିଲାଭର ଦିନ ବୋଲି ବ୍ୟକ୍ତ କରିଥିଲେ । ଏ ସମ୍ପର୍କରେ ପ୍ରଖ୍ୟାତ ଅଭିନେତା ଶରତ ପୂଜାରୀଙ୍କର ଏକ ପତ୍ର ଏଠାରେ ଦେଲି ।

ମୋର ଗୋଟିଏ ସାନ୍ତ୍ୱନା ଏହିଯେ ଅନେକ କ୍ଷେତ୍ରରେ ମୋର କେତେକ ନିବନ୍ଧ ବିବଦମାନ ପରିସ୍ଥିତି ସୃଷ୍ଟି କରିଛି । ସାରଳା ପୁରସ୍କାର ସମ୍ପର୍କୀୟ ଲେଖା ହେଉ ଓଡ଼ିଆ ଚଳଚ୍ଚିତ୍ର ସୁବର୍ଣ୍ଣ ଜୟନ୍ତୀ ଓ ହୀରକ ଜୟନ୍ତୀ ହେଉ କିମ୍ବା ମୁଖ୍ୟମନ୍ତ୍ରୀଙ୍କ ସଚିବ ଓ ପ୍ରଶାସନର ବିଷବୃକ୍ଷ(ନନ୍ଦିନୀ ଶତପଥୀଙ୍କ ସଚିବ ରମାକାନ୍ତ ରଥଙ୍କୁ କେନ୍ଦ୍ରକରି) ହେଉ ଏବଂ ଆଉ କିଛି ନିବନ୍ଧ ଓଡ଼ିଶାର ବିଶିଷ୍ଟ ସମାଲୋଚକମାନଙ୍କ ମଧ୍ୟରେ ସପକ୍ଷ ଓ ବିରୋଧ ଭାବ ସୃଷ୍ଟି କରିବାରେ ସମର୍ଥ ହୋଇଛି । ତାହା ହିଁ ଜଣେ ଲେଖକ ପାଇଁ ସବୁଠାରୁ ବଡ଼ ଆତ୍ମସନ୍ତୋଷ ।

୧୯୮୦ ଫେବୃଆରୀ ମାସରେ ମୁଁ ଦୁଇ ନମ୍ବର ୟୁନିଟ୍ ମାର୍କେଟ ବିଲ୍‌ଡିଂର ଦ୍ୱିତୀୟ ଧାଡ଼ି ଟାଇପ୍ ଫୋର୍ ଘରୁ ସେଇ ଦୁଇ ନମ୍ବର ୟୁନିଟ୍‌ର ଏକ ଟାଇପ୍-୫ ଘରକୁ (ନମ୍ବର ୧୧/୪) ଆସିଲି । ସେ ଘରଟି ରାଜମହଲ ଛକ ପାଖାପାଖି । ସେତେବେଳେ ଭୁବନେଶ୍ୱରରେ ସିଙ୍ଗଲ୍ ରୋଡ଼ ଥିଲା । ମୁଁ ରହୁଥିବା କ୍ୱାର୍ଟର ସମ୍ମୁଖରେ ବିସ୍ତିର୍ଣ୍ଣ ପଡ଼ିଆ ଏବଂ ବଡ଼ ବଡ଼ ଡିମ୍ବିରି ଓ ଉଇକାଳି ପଟାସ ଗଛସବୁ ଥିଲା । ଚମତ୍କାର ପରିବେଶ । ୟୁନିଟ୍-୨ର ପିଲାମାନେ ମୋ ଘର ସାମ୍ନା ପଡ଼ିଆରେ ଗଣେଶ ପୂଜା, ସରସ୍ୱତୀ ପୂଜା କରୁଥିଲେ । ଏ କ୍ୱାର୍ଟରରେ ବଡ଼ ବାରଣ୍ଡା ସହ ଚାରୋଟି ରୁମ୍ ଓ ରୋଷେଇ ଘର, ଷ୍ଟୋର୍ ରୁମ୍ ଥିଲା । ଯାହାହେଉ ମୋର ଲେଖାଲେଖି ପାଇଁ ସୁବିଧା ହେଲା । ପୂର୍ବରୁ କହିଛି ୧୯୭୯ ମସିହାରେ ମୋର ପ୍ରଥମ ଗଳ୍ପ ସଂକଳନ 'ପାଣିଗାର' ପ୍ରକାଶ ପାଇଥିଲା । ଏହି ଘର ସାମ୍ନାରେ ପ୍ରଖ୍ୟାତ ସାହିତ୍ୟିକ ପ୍ରଫେସର ଦୁର୍ଗା ଚରଣ କୁଅଁର ରହୁଥିଲେ । ସେ ସେତେବେଳେ ଓଡ଼ିଆ ସାହିତ୍ୟର ଅନ୍ୟତମ ବିଖ୍ୟାତ ପତ୍ରିକା 'ପଞ୍ଚଜନ୍ୟ' ସମ୍ପାଦନା କରୁଥିଲେ । ପଞ୍ଚଜନ୍ୟ ତ୍ରୈମାସିକ ପତ୍ରିକା ଥିଲା । ମୋର କୁଅଁରବାବୁଙ୍କ ସହ ପୂର୍ବରୁ ପରିଚୟ ଥିଲା । ଏହି ଘରକୁ ଆସିବା ପରେ ମୁଁ ପ୍ରଥମ କ୍ରୀଡ଼ାଭିତ୍ତିକ ଗଳ୍ପ ଅନେଶତ ରନ୍ ଲେଖି ତାଙ୍କୁ ଦେଲି । ସେ ଏ ଗଳ୍ପଟି ପଢ଼ି କହିଲେ ବରେନ୍ଦ୍ର ବାବୁ ଆପଣ କ୍ରୀଡ଼ାକୁ ଭିତ୍ତିକରି ଅଧିକ ଗଳ୍ପ ଲେଖନ୍ତୁ । କାରଣ ଏ ଗଳ୍ପ ଏତେ ମନୋଜ୍ଞ ହୋଇଛି ଯେ ବାରମ୍ବାର ପଢ଼ିବାକୁ ଜଣେ ଇଚ୍ଛାକରିବ । ତାଙ୍କରି ପ୍ରେରଣାରେ ମୁଁ ପଞ୍ଚଜନ୍ୟରେ ଛ'ଟି ଖଣ୍ଡେ କ୍ରୀଡ଼ାଭିତ୍ତିକ ଗଳ୍ପ ଲେଖିଥିଲି । ଏହି ଗଳ୍ପଗୁଡ଼ିକ ବହୁ ବିଶିଷ୍ଟ ସାହିତ୍ୟିକଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । ସେମାନଙ୍କ ମଧ୍ୟରୁ ଅଖିଳ ମୋହନ ପଟ୍ଟନାୟକ ଏବଂ ଚନ୍ଦ୍ରଶେଖର ରଥ ଅନ୍ୟତମ । କ୍ରୀଡ଼ା ଗଳ୍ପ ଲେଖା ଚାଲିଲା, ସବୁ ଗଳ୍ପଗୁଡ଼ିକ ଆଦୃତ ହେଲା । ୧୯୮୩ ମସିହାରେ ନଅଟି ଗଳ୍ପକୁ ନେଇ ମୋର ସମ୍ପୂର୍ଣ୍ଣ କ୍ରୀଡ଼ାଭିତ୍ତିକ କ୍ଷୁଦ୍ରଗଳ୍ପ ସଂକଳନ ଅନେଶତ ରନ୍ ପୁସ୍ତକ ପ୍ରକାଶ ପାଇଲା। କଟକର ଫ୍ରେଣ୍ଡସ୍ ପବ୍ଲିଶର୍ସ ଏହାର ପ୍ରକାଶକ । ଏହି ବହିର ମୁଖବନ୍ଧ ଲେଖିଥିଲେ ପ୍ରଖ୍ୟାତ ସାହିତ୍ୟିକ ଶ୍ରୀ ଚନ୍ଦ୍ରଶେଖର ରଥ । ତାଙ୍କ ମୁଖବନ୍ଧ ମୋର ଏ ବହିର ଗୁଣାଗୁଣକୁ ଆହୁରି ଅଧିକ ଆଗେଇ ନେଇଥିଲା । ଓଡ଼ିଆ ଭାଷାରେ ଏହା ହେଉଛି ପ୍ରଥମ କ୍ରୀଡ଼ାଭିତ୍ତିକ ଗଳ୍ପ ସଂକଳନ । ଏହି ବହି ପରେ ମୁଁ କ୍ରିକେଟ୍‌କୁ କେନ୍ଦ୍ରକରି 'ନିଷିଦ୍ଧ ପ୍ରେମ' ନାମରେ ଏକ ଉପନ୍ୟାସ ଲେଖିଲି । ଏ ବହିଟି ପ୍ରଥମ ସଂସ୍କରଣ ଶେଷ ହେବା ପରେ ଏ ବହିର ପବ୍ଲିଶର ଫ୍ରେଣ୍ଡସ୍ ପବ୍ଲିଶର୍ସ ମାଲିକ କହିଲେ ବରେନ୍ଦ୍ର ବାବୁ ଏ ବହି ନାମ ବଦଳେଇ ଦେବା । କାରଣ ଅନେକ ଏହାର ନାମ ଶୁଣି ଏହା ଏକ ଅବୈଧ ପ୍ରେମ ବହି ବୋଲି ବିଚାର କରି ନେବାକୁ ଦ୍ୱିଧା କରୁଛନ୍ତି । ମୁଁ ତାଙ୍କ କଥା ଶୁଣି ମୋର ସମ୍ମତି ଦେଲି । ତା' ପରେ ଏ ବହିର ନାମକରଣ ହେଲା ଅଜ୍ଞାତବାସ । ୧୨୦ ପୃଷ୍ଠା ବିଶିଷ୍ଟ ଏହି ବହିଟି ନୂତନ ନାମକରଣ ନେଇ ୨୦୦୧ରେ ପ୍ରକାଶ ପାଇଲା । ଅବଶ୍ୟ ନିଷିଦ୍ଧ ପ୍ରେମ ୧୯୯୫ରେ ପ୍ରକାଶ ପାଇ ୧୯୯୮ ସୁଦ୍ଧା ପ୍ରଥମ ସଂସ୍କରଣ ଶେଷ ହୋଇ ଯାଇଥିଲା ।

ମୋର ମୁକ୍ତ ବିଚାର- ଖୋଲା ବିଚାରରେ ପ୍ରକାଶ ପାଉଥିବା ନିବନ୍ଧଗୁଡ଼ିକ ବହୁ ବଡ଼ବଡ଼ ସରକାରୀ ହାକିମମାନଙ୍କର ଦୃଷ୍ଟିକୁ ଆସିଥାଏ । ତା'ର ପ୍ରମାଣ ମୁଁ ମଝିରେ ମଝିରେ ପାଇଥାଏ । ମୋର କେତେଗୁଡ଼ିଏ ନିବନ୍ଧ ଉପରେ ମନ୍ତ୍ରୀ ଏବଂ ବିଭାଗୀୟ ଅଧିକାରୀ ସେମାନଙ୍କ ପ୍ରତିକ୍ରିୟା ପ୍ରକାଶ କରି ମୋତେ ପତ୍ର ଦେଇଥା'ନ୍ତି । କେତେକ ବଡ଼ ବଡ଼ ହାକିମ କିଛି କିଛି ନିବନ୍ଧକୁ ଖୋଲାମନରେ ପ୍ରଶଂସା କରିଥାନ୍ତି । ମୋର କୃଷି ଓ ଭୂ-ସଂସ୍କାର ଉପରେ ଦୁଇଟି ନିବନ୍ଧ ପଢ଼ି ତ୍ୟାଗରାଜନ ସାହେବ(ଅଧୁନା ପୋଲିସ୍ ଡି.ଜି. ପାହ୍ୟା ଅଫିସର) ତା'ର ଉଚ୍ଚ ପ୍ରଶଂସା

କରିଥିଲେ । ମୋର ଓଡ଼ିଶା ବଜେଟ୍ ଉପରେ କେତେକ ନିବନ୍ଧକୁ ପଢ଼ି ତତ୍କାଳୀନ ଅର୍ଥମନ୍ତ୍ରୀ ରାମକୃଷ୍ଣ ପଟ୍ଟନାୟକ(୨୦୦୨ ମସିହାରେ) ସାମ୍ବାଦିକ ସମ୍ମିଳନୀରେ ତା'ର ତୀବ୍ର ସମାଲୋଚନା କରିଥିଲେ । ମୁଁ ସେ ସାମ୍ବାଦିକ ସମ୍ମିଳନୀରେ ଉପସ୍ଥିତ ନଥିଲି । ମାତ୍ର ତାଙ୍କ ସମାଲୋଚନା ଖବର କାଗଜରେ ପଢ଼ି ତା'ର ଉତ୍ତର ମୋର ପରବର୍ତ୍ତିଖୋଲା ବିଚାର ସ୍ତମ୍ଭରେ ଦେଇଥିଲି । ଏହାପରେ ଅବଶ୍ୟ ତାଙ୍କର ଆଉ ପ୍ରତିବାଦ ଶୁଣିନଥିଲି । ବରଂ ସେ କଥାଟା ଚଳେଇ ନେବା ପାଇଁ ଦେଖାହେଲାବେଳେ କହିଥିଲେ ।

## -ନିର୍ବାଚନ ଓ ସରକାର-

୧୯୯୫ ନିର୍ବାଚନରେ ଜି.ଟିଭି ଚାନେଲ ପକ୍ଷରୁ ମୋତେ ଓଡ଼ିଶା ନିର୍ବାଚନ ସମ୍ପର୍କରେ ସମୀକ୍ଷା କରିବା ଦାୟିତ୍ୱ ଦିଆଯାଇଥିଲା । କେଉଁ ଦଳ ନିର୍ବାଚନରେ କେତେ ସମ୍ଭାବ୍ୟ ସ୍ଥାନ ଲାଭ କରିବ ତା'ର ଏକ ବିବରଣୀ ନିର୍ବାଚନ ମଣ୍ଡଳୀ ଓ୍ୱାରି କରିବା ପାଇଁ ଦାୟିତ୍ୱ ମିଳିଥିଲା । ପୂର୍ବରୁ 'ଆଜ୍‌କାଲ୍'ରେ ନିଉଜ ଏଡିଟର ଥିବା ନାଜେଶ ଆଫରୋଜଙ୍କୁ ଜି.ଟିଭି ପୂର୍ବାଞ୍ଚଳ ଦାୟିତ୍ୱ ଦେଇଥିଲେ । ନାଜେଶ ମୋତେ ଓଡ଼ିଶା ଦାୟିତ୍ୱ ଦେଇଥିଲେ । ଏଥିପାଇଁ ମୋତେ ପଚାଶ ହଜାର ଟଙ୍କା ପାରିଶ୍ରମିକ ମିଳିଥିଲା । ସେତେବେଳେ ମୁଁ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କ କଂଗ୍ରେସ ନେତା ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ସମେତ ଅନ୍ୟାନ୍ୟ ଦଳ ନେତାମାନଙ୍କର ସାକ୍ଷାତକାର ନେଇଥିଲି ଓ ତାହା ଜି.ଟିଭିରେ ପ୍ରସାରିତ ହୋଇଥିଲା ।

୧୯୯୫ରେ ବିଜୁବାବୁଙ୍କ ଜନତା ଦଳ ଆଉଥରେ ଶାସନକୁ ଆସିବ ବୋଲି କେତେକ ମତ ଦେଇଥିଲେ । ମାତ୍ର ମୁଁ ଜି.ଟିଭିରେ ଏହାର ବିପରିତ ମତ ଦେଇଥିଲି । ତା'ର କାରଣ ହେଲା ବିଜୁବାବୁଙ୍କ ହାମ୍‌ବଡ଼ା ନୀତି । ୧୯୯୦ରେ ବିଜୁବାବୁଙ୍କ ଜନତା ଦଳ ସି.ପି.ଆଇ. ଓ ସି.ପି.ଏମ୍. ଦଳ ସହ ନିର୍ବାଚନ ମେଣ୍ଟ କରିଥିଲେ । କଂଗ୍ରେସ ଦଳ ୧୯୮୦ ଓ ୧୯୮୫ରେ ଜନତା ଦଳର ଅନ୍ତର୍ଦ୍ୱନ୍ଦ୍ୱ ଓ ଇନ୍ଦିରା ଗାନ୍ଧୀଙ୍କ ମୃତ୍ୟୁ ପାଇଁ ବିପୁଳ ସଂଖ୍ୟା ଗରିଷ୍ଠତା ଲାଭ କରିଥିଲା । ମାତ୍ର ୧୯୯୦ ନିର୍ବାଚନ ବେଳକୁ କଂଗ୍ରେସ ବହୁ ବଦନାମର ସମ୍ମୁଖୀନ ହୋଇଥିଲା । ତା'ଛଡ଼ା ଜାନକୀବାବୁ ମଧ୍ୟ ସାଧାରଣରେ ଦୁର୍ନୀତି ଓ ଅପାରଗତା ଦୋଷରେ ଦୋଷୀ ହୋଇଥିଲେ । ସାଧାରଣରେ ତାଙ୍କର ଭାବମୂର୍ତ୍ତିଭଲ ନଥିଲା । ଅନ୍ୟପକ୍ଷରେ ବିଜୁବାବୁ ନିଜେ ଚାରିଆଡ଼େ ଯାଇ ନିର୍ବାଚନ ପ୍ରଚାର କରୁଥିଲେ । ଫଳ ଏପରି ହେଲା ଯେ ବିଜୁବାବୁଙ୍କ ଜନତା ଦଳ ବିଧାନସଭାର ୧୪୭ଟି ସ୍ଥାନ ମଧ୍ୟରୁ ୧୨୩ଟି ସ୍ଥାନ ପାଇଥିବାବେଳେ କଂଗ୍ରେସ ମାତ୍ର ୧୦ଟି ସ୍ଥାନ ପାଇଥିଲା । ଏପରିକି କଂଗ୍ରେସ ବିରୋଧୀ ଦଳ ନେତା ପଦ ପାଇଁ ମଧ୍ୟ ଅଯୋଗ୍ୟ ଥିଲା । କାରଣ ବିଧାନସଭାର ମୋଟ ସଭ୍ୟସଂଖ୍ୟାର ଅନ୍ୟୁନ ଦଶଭାଗ ବା ପନ୍ଦର ଜଣ ସଦସ୍ୟ ନଥିଲେ ସ୍ୱୀକୃତ ବିରୋଧୀ ଦଳ ରୂପେ ଗଣାହୋଇ ପାରିବ ନାହିଁ । ବିଧାନସଭାରେ କଂଗ୍ରେସର ସେଇ ଦଶଜଣିଆ ଦଳର ନେତା ରୂପେ ହାଇକମାଣ୍ଡ ବସନ୍ତ ବିଶ୍ୱାଳଙ୍କୁ ମନୋନୀତ କରିଥିଲେ । ଶ୍ରୀ ବିଶ୍ୱାଳ କଂଗ୍ରେସ ବିଧାୟକ ଦଳ ନେତା ପଦବୀ ପାଇଁ ଏତେ ଖୁସି ହୋଇଯାଇଥିଲେ ଯେ ସ୍ୱସ୍ତି ହୋଟେଲ୍‌ରେ ସାମ୍ବାଦିକମାନଙ୍କୁ ମଧ୍ୟାହ୍ନ ଭୋଜନରେ ଆପ୍ୟାୟିତ କରିଥିଲେ । ଏହି ଦିନଟି ଥିଲା ୧୯୯୦ ସେପ୍ଟେମ୍ବର ୪ ତାରିଖ । ଏ ଦିନଟି ମୋର ଏଇଥିପାଇଁ ମନେରହିଛି ଯେ ସେଦିନ ମୁଁ ନ୍ୟାସନାଲ ୟୁନିୟନ ଅଫ୍ ଜର୍ଣ୍ଣାଲିଷ୍ଟ(ଇଣ୍ଡିଆ)ର ସର୍ବ ଭାରତୀୟ ସଭାପତି ରୂପେ ନିର୍ଦ୍ୱନ୍ଦ୍ୱରେ ନିର୍ବାଚିତ ହୋଇଥିଲି । ସେ ଦିନ ଥିଲା ଏନ୍.ୟୁ.ଜେ.(ଆଇ) ସଭାପତି ନିର୍ବାଚନର ପ୍ରାର୍ଥୀପତ୍ର ପ୍ରତ୍ୟାହାରର ଶେଷ ଦିବସ । ମୋ ସମେତ ଇଣ୍ଡିଆନ୍ ଏକ୍ସପ୍ରେସର ମୁଖ୍ୟ ସମ୍ପାଦକ ହୀରନ୍ମୟ କାର୍ଲେକାର, ନବଭାରତ ଟାଇମ୍ସର ଦିଲ୍ଲୀ ଆବାସିକ ସମ୍ପାଦକ ଡଃ

ନନ୍ଦକିଶୋର ତ୍ରିଖା ଏବଂ ବମ୍ବେ ଟାଇମ୍ସ ଅଫ୍ ଇଣ୍ଡିଆର ବାର୍ତ୍ତା ସମ୍ପାଦକ ସଦାନନ୍ଦ କାଲେ ନିର୍ବାଚନରେ ପ୍ରତିଦ୍ୱନ୍ଦିତା କରୁଥିଲେ । ସଦାନନ୍ଦ କାଲେ ପୂର୍ବରୁ ତାଙ୍କ ପ୍ରାର୍ଥୀପତ୍ର ପ୍ରତ୍ୟାହାର କରି ନେଇଥିଲେ । ଅନ୍ୟ ଦୁଇଜଣ କାର୍ଲେକାର ଓ ତ୍ରିଖା ଶେଷଦିନ ଅର୍ଥାତ୍ ସେପ୍ଟେମ୍ବର ୪ ତାରିଖରେ ପ୍ରାର୍ଥୀପତ୍ର ପ୍ରତ୍ୟାହାର କରିନେଲେ । ଦିନ ପ୍ରାୟ ଗୋଟାଏ ବେଳକୁ ରିଟର୍ଣ୍ଣିଂ ଅଫିସର ନିତିଶ ଚକ୍ରବର୍ତ୍ତିସ୍ୱସ୍ତି ହୋଟେଲକୁ ଟେଲିଫୋନ୍ କରି ଏ ସମ୍ବାଦ ମୋତେ ଦେଲେ । ଜୀବନରେ ଏତେ ବଡ଼ ଘଟଣା କ୍ୱଚିତ ଆସେ । ମୋ ଭଳି ଜଣେ ସାଧାରଣ ଲୋକ ଆମ ପେଶାର ସର୍ବୋଚ୍ଚ ସ୍ଥାନକୁ ନିର୍ବାଚିତ ହେବା କେବଳ ଈଶ୍ୱରଙ୍କ ଆଶୀର୍ବାଦ ଛଡ଼ା ଆଉକିଛି ନୁହେଁ । ପୂର୍ବରୁ କହିଛି ମୁଁ ସର୍ବଭାରତୀୟ ସଭାପତି ପଦରେ ନିର୍ଦ୍ୱନ୍ଦ୍ୱରେ ନିର୍ବାଚିତ ହୋଇଥିବା ଶୁଣି ଉପସ୍ଥିତ ସାମ୍ବାଦିକ ବନ୍ଧୁମାନେ ମୋତେ ଅଭିନନ୍ଦନ ଜଣାଇଥିଲେ । ସ୍ୱସ୍ତି ହୋଟେଲ ସତ୍ତ୍ୱାଧିକାରୀ ବନ୍ଧୁ ଜେ.କେ. ମହାନ୍ତି ଯାହାଙ୍କୁ ମୁଁ କାବୁଲି(ତା' ଡାକନାମ)ବୋଲି ଡାକେ ସେ ସାଙ୍ଗେ ସାଙ୍ଗେ ଶହେଜଣଙ୍କୁ ଡିନର ଦେବାପାଇଁ ଘୋଷଣା କରିଦେଲେ । ପରଦିନ ମୋତେ ସମ୍ବର୍ଦ୍ଧନା ଜଣାଇବା ପାଇଁ ବନ୍ଧୁ ସୁଭାଷ ପଟ୍ଟନାୟକ, ରତିକାନ୍ତ ମହାନ୍ତି ପ୍ରମୁଖ ଲାଗିପଡ଼ିଲେ । ଏହି ସମ୍ବର୍ଦ୍ଧନା ସଭାରେ ସମାଜ ପରିଚାଳନା ସମ୍ପାଦକ ମନୋରମା ମହାପାତ୍ର, ପ୍ରଜାତନ୍ତ୍ର ସମ୍ପାଦକ ଭର୍ତ୍ତୃହରୀ ମହତାବ, ପ୍ରଗତୀବାଦୀ ସମ୍ପାଦକ ପ୍ରଦ୍ୟୁମ୍ନ ବଳ ଏବଂ ସମ୍ବାଦ ସମ୍ପାଦକ ସୌମ୍ୟରଞ୍ଜନ ପଟ୍ଟନାୟକଙ୍କ ସମେତ କଟକ-ଭୁବନେଶ୍ୱରର ଶତାଧିକ ସାମ୍ବାଦିକ ଯୋଗ ଦେଇଥିଲେ।

ମୂଳ ବକ୍ତବ୍ୟରୁ ମୁଁ ଅନ୍ୟଆଡ଼େ ଚାଲିଗଲି । ୧୯୯୫ ନିର୍ବାଚନରେ ବିଜୁବାବୁ ସି.ପି.ଆଇ., ସି.ପି.ଏମ୍. କାହାରିକୁ ସାଙ୍ଗରେ ନେଲେନାହିଁ । ଫଳରେ ଜନତା ଦଳ ୪୮ଟି ସ୍ଥାନ ପାଇବା ବେଳେ କଂଗ୍ରେସ ଦଳ ୮୦ଟି ସ୍ଥାନ ପାଇଥିଲା । ଜନତା ଦଳର ୩୫ଜଣ ପ୍ରତିଦ୍ୱନ୍ଦ୍ୱି ହଜାରେରୁ ଅଢ଼େଇ ହଜାର ଭୋଟ୍‌ରେ ହାରିଲେ । ଏ ସମସ୍ତ ଅଞ୍ଚଳରେ ସି.ପି.ଆଇ./ସି.ପି.ଏମ୍. ଥିବାରୁ ବିଜୁବାବୁଙ୍କ ନିର୍ବାଚନ ଅଙ୍କକଷାରେ ଭୁଲ୍ ପାଇଁ ତାଙ୍କ ଦଳ ଶାସନକୁ ଆସିପାରିଲା ନାହିଁ। ବିଜୁବାବୁ ୧୯୯୫ରେ ପୁଣିଥରେ ଆସିବେ ବୋଲି ମନରେ ଆଶା ବାନ୍ଧିଥିଲେ । ଜି.ଟିଭିକୁ ଯେଉଁ ସାକ୍ଷାତକାର ଦେଇଥିଲେ ସେଥିରେ ସେ ଏକଥାକୁ ଦୃଢ଼ଭାବରେ କହିଥିଲେ । ମାତ୍ର ନିର୍ବାଚନ ପରେ ସରକାର ଗଢ଼ି ନପାରି ତାଙ୍କ ମନ ଭାଙ୍ଗି ଯାଇଥିଲା । ସେଇ ନିରାଶା ଶେଷରେ ତାଙ୍କୁ ଟାଣି ନେଇଥିଲା ମୃତ୍ୟୁର ଶିତଳ ବକ୍ଷକୁ।

ମୋର ପେଶାଗତ କାର୍ଯ୍ୟ ମଧ୍ୟରେ ମୋର ପାରିବାରିକ କାର୍ଯ୍ୟକ୍ରମ ସମାନ ଗତିରେ ଚାଲିଥିଲା । ମୋ ବଡ଼ଝିଅ ରୁପଲୁ ୧୯୯୬ରେ ଇଂରାଜୀ ସାହିତ୍ୟରେ ଏମ୍.ଏ. ପାଶ୍‌କରି ଚୌଦ୍ୱାର ମହିଳା କଲେଜରେ ଅଧ୍ୟାପିକା ଥିଲା । ୧୯୯୮ରେ ତା'ର ବିବାହ ହେଲା ପ୍ରଫେସର ତାପସ ଚକ୍ରବର୍ତ୍ତିଙ୍କ ବଡ଼ ପୁଅ ତୀର୍ଥଙ୍କର ସହ । ତୀର୍ଥଙ୍କର ଭାରତୀୟ ସୈନ୍ୟବାହିନୀରେ କ୍ୟାପ୍‌ଟେନ ରୂପେ କାର୍ଯ୍ୟରତ ଥିଲେ । ୨୦୦୧ରେ ସେ ଫିରୋଜପୁରରେ କାର୍ଯ୍ୟରତ ଥିଲାବେଳେ ମୁଁ-ମୋ ପତ୍ନୀ ଫିରୋଜପୁର ଯାଇଥିଲୁ । ସେଇଠୁ ଆମେ ଭାରତ-ପାକିସ୍ଥାନ ସୀମା ୱାଘା ବର୍ଡ଼ର ଦେଖିବାକୁ ଯାଇଥିଲୁ । ସନ୍ଧ୍ୟାବେଳେ ଏହି ବର୍ଡ଼ର ଗେଟ୍ ଖୋଲାଯିବା ଓ ବନ୍ଦ ହେବାର ଦୃଶ୍ୟ ଅତି ମନୋରମ ଥିଲା । ଏହି ଦୁଇ ଦୃଶ୍ୟ କ୍ୟାମେରାରେ ମୁଁ ବାନ୍ଧି ରଖିଥିଲି । ଅନେକ ବନ୍ଧୁ ଯେଉଁମାନେ ୱାଘା ବର୍ଡ଼ର ଦେଖିନାହାନ୍ତି ସେମାନେ ଏଥିରୁ ଆନନ୍ଦ ପାଇବେ ବୋଲି ଆଶା ।

ପୁରୁଣା କଥାକୁ ଯାଉନି । ସଦ୍ୟ ଘଟିଥିବା ଏକ ଘଟଣାର ବର୍ଣ୍ଣନା କରୁଛି । ୨୦୧୧ ମସିହା ଆଜକାଲ ପୂଜା ପତ୍ରିକାରେ ମୋର ଗୋଟିଏ ଗଳ୍ପ ବଙ୍ଗଳାରେ ଅନୁଦିତ ହୋଇ ପ୍ରକାଶ ପାଇଥିଲା । ଗଳ୍ପଟି ଅନୁବାଦ କରିଥିଲେ

ପଶ୍ଚିମବଙ୍ଗ ହାଓଡ଼ା ସାନ୍ତାରାଗାଛିରେ ରହୁଥିବା ଶ୍ରୀମତୀ ଭାରତୀ ନନ୍ଦୀ । ଗଳ୍ପର ନାଁ ଥିଲା ସେଇ 'ସ୍ନେହମୟୀ ମହିଳାର ସ୍ମୃତିରେ' । ଏହି ଗଳ୍ପଟି ପଢ଼ି ଆସାମ ଗୌହାଟି ଜସବନ୍ତ ରୋଡ଼ରେ ରହୁଥିବା ଶ୍ରୀ ଶୁଭ୍ରଶଙ୍କର ରାୟ ଚୌଧୁରୀ ମୋତେ ଟେଲିଫୋନ୍ କରି ଗଳ୍ପର ଉଚ୍ଚ ପ୍ରଶଂସା କରିଥିଲେ । ସେ ମୋତେ ଅନୁରୋଧ କରିଥିଲେ ଗଳ୍ପଟିକୁ ସେ ଇଂରାଜୀ ଭାଷାରେ ଅନୁବାଦ କରିବାକୁ ଚାହୁଁଛନ୍ତି, ସେଥିପାଇଁ ଅନୁମତି ଦେବାକୁ । ମୁଁ ଆନନ୍ଦରେ ତାଙ୍କୁ ମୋର ସମ୍ମତି ଜଣାଇଥିଲି । ଏହା ୨୦୧୧ ମସିହା ଡିସେମ୍ବର ମାସ କଥା । ତା'ପରେ ତାଙ୍କ ଠାରୁ ଆଉକିଛି ଖବର ପାଇଲିନି । ମନେହେଲା ଭଦ୍ରଲୋକଙ୍କୁ ଗଳ୍ପଟି ଭଲ ଲାଗିଛି ସେଇଥିପାଇଁ ସେଇ ମୁହୂର୍ତ୍ତରେ ଅନୁବାଦ କରିବେ ବୋଲି ସମ୍ଭବତଃ କରିଦେଇଥିଲେ । ତା'ପରେ ଭୁଲି ଯାଇଛନ୍ତି । ମାତ୍ର ହଠାତ୍ ୨୦୧୨ ସେପ୍ଟେମ୍ବର ମାସ ୧୫ ତାରିଖରେ ତାଙ୍କ ଠାରୁ ଏକ ଟେଲିଫୋନ୍ ପାଇ ଖୁସିହେଲି । ରାୟ ଚୌଧୁରୀ ବାବୁ ମୋର ଇ-ମେଲ୍ ନମ୍ବର ପଚାରିଲେ ଏବଂ ମୋ ଗଳ୍ପର ଇଂରାଜୀ ଅନୁବାଦ ପଠାଇବେ ବୋଲି କହିଲେ । ୨୦୧୨ ସେପ୍ଟେମ୍ବର ୧୭ ତାରିଖରେ ମୁଁ ଗଳ୍ପର ଇଂରାଜୀ ଅନୁବାଦ ମୋ ଇ-ମେଲ୍‌ରେ ପାଇଲି । ସେ ତାଙ୍କ ପତ୍ରରେ ଗଳ୍ପର ଯେପରି ପ୍ରଶଂସା କରିଛନ୍ତି ମୋତେ ତାହା ଅଭିଭୂତ କରିଦେଲା । ସେ ଲେଖିଛନ୍ତି ଏହା ଏକ ଅଦ୍ଭୁତ ଗଳ୍ପ । ଅନେକ ବର୍ଷ ପରେ ମୁଁ ଅନୁଭବ କରୁଛି ମୁଁ ସାକି ଏବଂ ଓ ହେନେରିଙ୍କୁ ପଢ଼ୁଛି । ମୋ ଜୀବନରେ ଏହା ଏକ ବିରଳ ଘଟଣା । ମୋର ଓଡ଼ିଆ ଗଳ୍ପ ଅନୁବାଦ ହେଲା ବଙ୍ଗଳାରେ- ତାକୁ ପଢ଼ି ଆସାମ ନିବାସୀ ରାୟ ଚୌଧୁରୀ ବାବୁ ତାଙ୍କ ପକ୍ଷରୁ ଇଂରେଜୀ ଭାଷାରେ ଅନୁବାଦ କଲେ । ସେ କାହିଁକି ଇଂରାଜୀରେ ଅନୁବାଦ କଲେ ଏବଂ ତା'ର ବ୍ୟବହାର କେଉଁଠି କରିବେ ଏ ପ୍ରଶ୍ନର ଉତ୍ତର ସେ ଦେଇନାହାନ୍ତି । କେବଳ କହିଛନ୍ତି ଆପଣ ଏକ ସୁଖବର ପାଇଁ ଅପେକ୍ଷା କରନ୍ତୁ । ମୁଁ ଆଉ କିଛି ପଚାରିଲି ନାହିଁ । ତେବେ ମୋ ଓଡ଼ିଆ ଗଳ୍ପ ବଙ୍ଗଳାରେ ଅନୂଦିତ ହୋଇ ପ୍ରକାଶ ପାଇବା ଏବଂ ତାକୁ ପଢ଼ି ଅନ୍ୟ ଗୋଟିଏ ରାଜ୍ୟର ଜଣେ ପାଠକ ଇଂରାଜୀରେ ଅନୁବାଦ କରିବା ସମ୍ଭବତଃ ଓଡ଼ିଆ ସାହିତ୍ୟରେ ଏକ ନୂଆ ଘଟଣା । ଗତ ପନ୍ଦର/କୋଡ଼ିଏ ବର୍ଷ ଧରି 'ଆଜକାଲ' ପୂଜା ସଂଖ୍ୟାରେ ମୋର ଗଳ୍ପ ପ୍ରକାଶିତ ହୋଇଆସୁଛି । ଏବର୍ଷ ମଧ ମୋର ଗୋଟିଏ ଗଳ୍ପ ବଙ୍ଗଳାରେ ଅନୂଦିତ ହୋଇ ଆଜ୍‌କାଲ୍ ପୂଜା ସଂଖ୍ୟାରେ ପ୍ରକାଶ ପାଇଛି । ଗଳ୍ପଟିର ନାମ 'ନୀଳକଂଠ' । ମୋର ବିଶ୍ୱାସ ଏ ଗଳ୍ପଟି ମଧ ଅନେକଙ୍କ ଦୃଷ୍ଟି ଆକର୍ଷଣ କରିବ । ୨୦୧୨ ଆଜକାଲ ଶାରଦ ସଂଖ୍ୟାର ବିଜ୍ଞାପନ ଆଜକାଲରେ ଗତ ୪ ତାରିଖରେ ପ୍ରକାଶ ପାଇଛି । ସେଥିରେ ଅନୁବାଦ ଗଳ୍ପ ବିଭାଗରେ ମୋର ନାମ ଉଲ୍ଲେଖ ରହିଛି । ଯେଉଁ ଗଳ୍ପଟି ରାୟ ଚୌଧୁରୀ ଅନୁବାଦ କରିଛନ୍ତି ସେ ଗଳ୍ପ ସେଇ ସ୍ନେହମୟୀ ମହିଳାଙ୍କ ସ୍ମୃତିରେ ମୋର ମା' ଗଳ୍ପ ସଂକଳନରେ ପ୍ରକାଶ ପାଇଛି ।

ଜୀବନରେ ସାହିତ୍ୟ ଆଉ ସାମ୍ବାଦିକତା ଏବଂ ସଂଗଠନକୁ ନେଇ ଦୀର୍ଘବର୍ଷ ବିତିଗଲା । ଅନେକ ସମୟରେ ବହୁ ବିଶିଷ୍ଟ ସାହିତ୍ୟିକ ଓ ସାମ୍ବାଦିକଙ୍କ ସହ ହଠାତ୍ ଦେଖା ଆଉ ଆଲୋଚନା ମୋତେ ଆତ୍ମସନ୍ତୋଷ ଦେଇଛି । ପୁସ୍ତକମେଳା ହେଉ ବା ଓଡ଼ିଶା ବାହାରେ ଏନ୍.ୟୁ.ଜେ.ର ସଭାପତି ଥିବାବେଳେ ଅନେକ ବିଖ୍ୟାତ ଲୋକଙ୍କ ସହ ସାକ୍ଷାତ ହୋଇଛି । ୨୦୦୬ ଫେବୃୟାରୀ ମାସରେ ଭୁବନେଶ୍ୱର ପୁସ୍ତକ ମେଳାକୁ ମୁଖ୍ୟ ଅତିଥି ହୋଇ ଆସିଥିଲେ ଆନ୍ତର୍ଜାତିକ ଖ୍ୟାତି ସମ୍ପନ୍ନ ଲେଖିକା ତସଲିମା ନାସରିନ୍ । ତସଲିମାଙ୍କର କେତେଗୁଡ଼ିଏ ବହି ମୁଁ ପଢ଼ିଥିଲି । ତାଙ୍କର କିଛି କବିତା ଓ ଆତ୍ମଜୀବନୀର ଗୋଟିଏ ଅଂଶ ମୁଁ ଓଡ଼ିଆରେ ଅନୁବାଦ କରିଥିଲି । ମୋ ସାହିତ୍ୟ ସମାଲୋଚନା ପୁସ୍ତକ ଓଡ଼ିଆ ସାହିତ୍ୟର ଅପସଂସ୍କୃତି ପୁସ୍ତକରେ ତାହା ପ୍ରକାଶ ପାଇଛି । ତସଲିମାଙ୍କ ଭୁବନେଶ୍ୱର ରହଣି ସମୟରେ ତାଙ୍କ ସହ ଆଳାପ- ଆଲୋଚନା ହୋଇଥିଲା । ଓଡ଼ିଆ ସାହିତ୍ୟ ସମ୍ପର୍କରେ ସେ ଅନେକ କଥା ଜାଣିବାକୁ ଚାହିଁଥିଲେ ।

ତସଲିମାଙ୍କ ବିରୁଦ୍ଧରେ ସେତେବେଳେ ଅନେକ ମୁସଲମାନ ଗୁରୁ ତୀବ୍ର ଆକ୍ରମଣ କରୁଥିଲେ । ଭୁବନେଶ୍ୱରରେ ମୁଁ ତତ୍‌କାଳୀନ ପୋଲିସ୍ ଡି.ଜି.ଙ୍କ ସହ ଆଲୋଚନା କରି ତାଙ୍କର ନିଶ୍ଚିନ୍ତ ସୁରକ୍ଷା ବ୍ୟବସ୍ଥା କରିଥିଲି । ସେ ଏ ପ୍ରକାର ସୁରକ୍ଷା ବ୍ୟବସ୍ଥା ଦେଖି ଖୁସି ହୋଇ ମୋତେ କହିଥିଲେ ଧଲବାବୁ ଆପନି ଯଖନ ଡାକ୍‌ବେନ ଆମି ଆସ୍‌ବୋ । ତସଲିମାଙ୍କ ସହ ଫଟୋ ଏଠାରେ ଦେଲି । ପରବର୍ଷ ସେ ଅନ୍ୟ ଏକ ସଂସ୍ଥାର ନିମନ୍ତ୍ରଣରେ ଭୁବନେଶ୍ୱର ଆସିଥିଲେ । ମୋତେ ଫୋନ୍‌କରି ସାକ୍ଷାତ ପାଇଁ ଆମନ୍ତ୍ରଣ କରିଥିଲେ ।

ବିଭିନ୍ନ ସମୟରେ ମୋତେ ବିଭିନ୍ନ ଆଡ଼ୁ ଭାଷଣ ଦେବାପାଇଁ ଡାକରା ଆସିଯାଏ । ଆମେରିକା ଓଡ଼ିଆ ସମାଜ, ଦିଲ୍ଲୀ ଓଡ଼ିଆ ସମାଜ, ପଶ୍ଚିମବଙ୍ଗ ଓଡ଼ିଆ ସମିତି, ବିଶାଖାପାଟଣା ଓଡ଼ିଆ ସମାଜ ଆଦିର ନିମନ୍ତ୍ରଣ ପାଇ ମୁଁ ସେମାନଙ୍କ ସଭାରେ ଯୋଗଦେଇ ଉଦ୍‌ବୋଧନ ଦେଇଛି । ୨୦୦୪ ଏପ୍ରିଲ ପହିଲାରେ ମୋତେ ପଶ୍ଚିମବଙ୍ଗ ଉତ୍କଳ ଦିବସ ପାଳନ କମିଟି ପକ୍ଷରୁ ମୁଖ୍ୟବକ୍ତା ରୂପେ ଯୋଗଦେବା ପାଇଁ ନିମନ୍ତ୍ରଣ ମିଳିଥିଲା । ମୁଁ ଏହି ସଭାରେ ଯୋଗଦେଇଥିଲି । ଏହି ସଭାରେ କଲିକତା ମେୟର ସୁବ୍ରତ ମୁଖାର୍ଜୀ ମଧ୍ୟ ଯୋଗ ଦେଇଥିଲେ । ଏହି ସଭା ବହୁ ବଜାର ୟୁନିଭରସିଟି ଅଡିଟୋରିୟମ୍‌ରେ ଅନୁଷ୍ଠିତ ହୋଇଥିଲା । ସଭା ଚାଲିଥିବାବେଳେ ହଠାତ୍ ପଶ୍ଚିମବଙ୍ଗର କ୍ରୀଡ଼ା ଓ ସଂସ୍କୃତି ମନ୍ତ୍ରୀ ସୁଭାଷ ଚକ୍ରବର୍ତ୍ତିଆସି ପହଞ୍ଚିଲେ । ଶ୍ରୀ ଚକ୍ରବର୍ତ୍ତିଙ୍କ ନିର୍ବାଚନମଣ୍ଡଳୀରେ ବହୁ ଓଡ଼ିଆ ଭୋଟର ଥିବାରୁ ଖବର ପାଇ ସେ ଚାଲି ଆସିଥିଲେ । ତାଙ୍କୁ ସମସ୍ତେ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜଣାଇଥିଲେ । ଉଭୟ ସୁବ୍ରତ ମୁଖାର୍ଜୀ ଓ ଚକ୍ରବର୍ତ୍ତିଙ୍କୁ ସଭାରେ ପାଇ ମୁଁ କଲିକତାରେ ଉତ୍କଳ ଗୌରବ ମଧୁସୂଦନଙ୍କର ଏକ ପ୍ରତିମୂର୍ତ୍ତିପାଇଁ ସ୍ଥାନ ଯୋଗାଇ ଦେବାକୁ ଅନୁରୋଧ କରିଥିଲି । କଲିକତା ଉତ୍କଳ ଭବନ ସାମ୍‌ନାରେ ଗୋପବନ୍ଧୁଙ୍କ ପ୍ରତିମୂର୍ତ୍ତିରହିଛି । ମାତ୍ର ମଧୁବାବୁଙ୍କର କୌଣସି ପ୍ରତିମୂର୍ତ୍ତିନାହିଁ । ଉଭୟ ନେତା ଏକ ସ୍ୱରରେ ଏଥିପାଇଁ ସାହାଯ୍ୟ କରିବେ ବୋଲି ପ୍ରତିଶ୍ରୁତି ଦେଇଥିଲେ ।

ଜୀବନରେ ଅନେକ ଘଟଣାକୁ ନେଇ ମୁଁ ପରୀକ୍ଷା ନିରୀକ୍ଷା କରିଛି । ଯାହା ଓଡ଼ିଶାରେ କେବେ ଘଟିନଥିଲା ବା ସଂଗଠିତ ହୋଇନଥିଲା ମୁଁ ତାକୁ ନେଇ ପ୍ରଥମେ କାର୍ଯ୍ୟ କରିଛି । ଓଡ଼ିଆ ସାହିତ୍ୟିକମାନଙ୍କର ଏକ ମହାମିଳନ ମୁଁ ପ୍ରଥମେ ଆରମ୍ଭ କରିଥିଲି କୋରାପୁଟ ସୁନାବେଡ଼ାରେ । ଲେଖକ ସାମ୍ମୁଖ୍ୟ ପକ୍ଷରୁ ପ୍ରଥମ ସାହିତ୍ୟୋତ୍ସବ ଓଡ଼ିଶାର ପ୍ରାନ୍ତୀୟ ଅଞ୍ଚଳ କୋରାପୁଟରେ ଏଇଥିପାଇଁ ଆୟୋଜନ ହେଲା ଯେ ଏସବୁ ଅଞ୍ଚଳରେ ଓଡ଼ିଆ ଭାଷା ଧୀରେଧୀରେ ଲିଭିଯାଉଥିଲା । ତେଲୁଗୁ ଭାଷାର ଏସବୁ ଅଞ୍ଚଳରେ ପ୍ରାଧାନ୍ୟ ଥିଲା । ତେଣୁ ଏକ ବିରାଟ ଓଡ଼ିଆ ସାହିତ୍ୟିକ ସମ୍ମିଳନୀର ଆୟୋଜନ ହେଲା । ଅବଶ୍ୟ ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ସାହାଯ୍ୟ ଯୋଗୁଁ ହିଁ ଏହା ସମ୍ଭବ ହୋଇପାରିଥିଲା । ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ଛ'ଶହ ସାହିତ୍ୟିକ ଏ ଉତ୍ସବରେ ଯୋଗ ଦେଇଥିଲେ । ସୁରେନ୍ଦ୍ର ମହାନ୍ତି, ରାଧାମୋହନ ଗଡ଼ନାୟକଙ୍କ ସମେତ ଓଡ଼ିଶାର ସମସ୍ତ ସାହିତ୍ୟିକ ଏଠାରେ ଉପସ୍ଥିତ ଥିଲେ । ସେହିଦିନ ଠାରୁ ସାହିତ୍ୟ ଉତ୍ସବ ଚାଲିଛି । ବଞ୍ଚିଥିବା ପର୍ଯ୍ୟନ୍ତ ଚଳାଇ ରଖିବାର ଇଚ୍ଛା ଅଛି । ସବୁ ଈଶ୍ୱରଙ୍କ ଆଶୀର୍ବାଦ ଉପରେ ନିର୍ଭର କରେ ।

ଜୀବନରେ ମଝିରେ ମଝିରେ ଏଭଳି କିଛି ଘଟଣା ଘଟେ ଯାହା ସାରା ଜୀବନ ପାଇଁ ଅମୂଲ୍ୟ ସମ୍ପଦ ରୂପେ ବିବେଚିତ ହୁଏ । ମୋର ସାମ୍ବାଦିକ ଜୀବନରେ ଏହିଭଳି ଅନେକ ଘଟଣା ଘଟିଛି । ଯାହା ଏ ଦେଶର କ୍ୱଚିତ

ସାମ୍ବାଦିକଙ୍କ ଭାଗ୍ୟରେ ଘଟିଛି । ୧୯୬୪ ଜାନୁଆରୀ ୭ ତାରିଖରେ ଭୁବନେଶ୍ୱରରେ ଅଲ୍‌ଇଣ୍ଡିଆ କଂଗ୍ରେସ କମିଟି ସାଧାରଣ ଅଧିବେଶନ ବସିଲା । ଏହି ଅଧିବେଶନ ଭୁବନେଶ୍ୱରର ରାଜଭବନ ଓ ଶିରିପୁର ମଝିରେ ଥିବା ବିରାଟ ପଡ଼ିଆରେ ହେବାପାଇଁ ନିଷ୍ପତ୍ତି ହେଲା । ସେତେବେଳେ ଏବକାର ଗୋପବନ୍ଧୁ ଛକ ଠାରୁ ଡେଲ୍‌ଟା କଲୋନି ପର୍ଯ୍ୟନ୍ତ ଏହି ପଡ଼ିଆ ଯାଏ । ଡେଲ୍‌ଟା ଛକ ଏବଂ ଶିରିପୁର ମଧ୍ୟରେ ୨ଆର୍, ୪ଆର୍ କ୍ୱାଟର ତିଆରି ହେଉଥାଏ ସରକାରୀ କର୍ମଚାରୀଙ୍କ ରହିବା ପାଇଁ । ସେଇ କ୍ୱାର୍ଟରଗୁଡ଼ିକ କଂଗ୍ରେସ ଅଧିବେଶନରେ ଯୋଗ ଦେଉଥିବା ନେତା ଓ ପ୍ରତିନିଧିମାନଙ୍କ ରହିବା ପାଇଁ ବ୍ୟବସ୍ଥା ହୋଇଥାଏ । ସାମ୍ବାଦିକମାନଙ୍କୁ ସେହି ଘର ମଧ୍ୟରୁ ମଧ୍ୟ ଅଫିସ୍ ଓ ରହିବା ପାଇଁ କିଛି ଘର ଦିଆଯାଇଥାଏ । ମୁଁ ସେତେବେଳେ 'ମାତୃଭୂମି' ଖବର କାଗଜର କଟକ ଷ୍ଟାଫ୍ ରିପୋର୍ଟର ଥାଏ । ତେବେ ୧୯୬୩ରୁ ମୁଁ ବିଧାନସଭା ଅଧିବେଶନରେ ରିପୋର୍ଟିଂ ମଧ୍ୟ କରିବାକୁ ଯାଉଥାଏ । ଆମ କାଗଜର ସମ୍ପାଦକ ବିଚିତ୍ରାନନ୍ଦ କର ମୋତେ କଂଗ୍ରେସ ଅଧିବେଶନ ରିପୋର୍ଟ କରିବାକୁ ମଧ୍ୟ ପଠାଇଥିଲେ । ଏହି କ୍ରମରେ ୧୯୬୪ ମସିହା ଜାନୁଆରୀ ପାଞ୍ଚ ତାରିଖରେ ତାଳଚେର ତାପଜ ବିଦ୍ୟୁତ୍ କେନ୍ଦ୍ର ଓ ଟିକରପଡ଼ା ବନ୍ଧ ଯୋଜନାର ଶିଳାନ୍ୟାସ ପ୍ରଧାନ ମନ୍ତ୍ରୀ ପଣ୍ଡିତ ନେହେରୁ କରିବା ପାଇଁ ସ୍ଥିର ହେଲା । କଂଗ୍ରେସ ଅଧିବେଶନର ଆୟୋଜନ ତଦାରଖ କରିବା ପାଇଁ ଲାଲ୍‌ବାହାଦୂର ଶାସ୍ତ୍ରୀ, କାମରାଜ ନାଦର ପ୍ରମୁଖ ଜାନୁଆରୀ ୩ ତାରିଖରୁ ଏବଂ ପଣ୍ଡିତ ନେହେରୁ, ଇନ୍ଦିରା ଗାନ୍ଧି ପ୍ରମୁଖ ୪ ତାରିଖରୁ ଭୁବନେଶ୍ୱର ଆସିଥିଲେ । ମତେ ବିଚିବାବୁ କହିଥିଲେ ବରେନ୍ଦ୍ର ବାବୁ ବଡ଼ବଡ଼ ନେତାଙ୍କ ପଛେପଛେ ଯାଇ ସେମାନେ କ'ଣ ତଦାରଖ କରୁଛନ୍ତି କ'ଣ କହୁଛନ୍ତି ସେ ସବୁ ଦେଖିବେ ଏବଂ ସୁବିଧା ଦେଖି ସେମାନଙ୍କ ସହ ସାକ୍ଷାତ କରିବେ । ମୁଁ ୪ ତାରିଖରେ କଂଗ୍ରେସ ଅଧିବେଶନ ସ୍ଥଳରେ ପହଞ୍ଚି ଦେଖିଲି ଲାଲ୍‌ବାହାଦୂର ଶାସ୍ତ୍ରୀ ଅଧିବେଶନ ମଣ୍ଡପରେ ବୁଲି ଅଡ଼ିଟୋରିଅମ୍ ଦେଖୁଛନ୍ତି । ତାଙ୍କ ସହ ଓଡ଼ିଶା ଉପ ମୁଖ୍ୟମନ୍ତ୍ରୀ ନୀଳମଣି ରାଉତରାୟ, ଓଡ଼ିଶା ପ୍ରଦେଶ କଂଗ୍ରେସ ସଭାପତି ବିଜୟ ପାଣି, ଶିକ୍ଷା ଓ କୃଷି ମନ୍ତ୍ରୀ ସତ୍ୟପ୍ରିୟ ମହାନ୍ତି, ସ୍ୱାସ୍ଥ୍ୟମନ୍ତ୍ରୀ ଡଃ ପି.ଭି. ଜଗନ୍ନାଥ ରାଓ ମଧ୍ୟ ଅଛନ୍ତି । ମୁଁ ଏମାନଙ୍କୁ ଦେଖି ସିଧା ମଣ୍ଡପ ଉପରକୁ ଗଲି । ସେତେବେଳେ ନେତାମାନଙ୍କ ପାଇଁ ଏତେଟା କଡ଼ା ସୁରକ୍ଷା ବ୍ୟବସ୍ଥା ନଥିଲା । ତେଣୁ ଜଣାଶୁଣା ଲୋକ ବା ସାମ୍ବାଦିକ ମୁଖ୍ୟମନ୍ତ୍ରୀ, ପ୍ରଧାନମନ୍ତ୍ରୀଙ୍କ ପାଖ ପର୍ଯ୍ୟନ୍ତ ଯାଇପାରୁଥିଲେ । ମୁଁ ଶାସ୍ତ୍ରୀଜୀଙ୍କୁ ଏବଂ ନୀଳମଣିବାବୁଙ୍କୁ ନମସ୍କାର କଲି । ବିଜୟବାବୁ ମଧ୍ୟ ମୋତେ ଭଲଭାବେ ଜାଣିଥିଲେ । ଶାସ୍ତ୍ରୀଜୀଙ୍କ ଫଟୋ ଉଠା ଯାଉଥାଏ । ମୁଁ ମଧ୍ୟ ସେଠି ଥିଲି । ୧୯୬୪ ଜୁନ୍ ମାସ ୯ ତାରିଖରେ ଶାସ୍ତ୍ରୀଜୀ ଭାରତର ପ୍ରଧାନମନ୍ତ୍ରୀ ହେଲେ । ଶାସ୍ତ୍ରୀଜୀ ୧୯୬୪ କଂଗ୍ରେସ ଅଧିବେଶନ ପରେ ଆଉ ଓଡ଼ିଶା ଆସିନାହାନ୍ତି । ଏହି ଫଟୋଟି ମୋ ସାଙ୍ଗରେ କଟକରୁ ଯାଇଥିବା ମାତୃଭୂମି ଫଟୋଗ୍ରାଫର କମରୁଦ୍ଦିନ ଖାନ୍ ଉଠାଇଥିଲେ ।

ପରଦିନ ମୋତେ ବିଚିବାବୁ ଟିକରପଡ଼ା ଯାଇ ଟିକରପଡ଼ା ନଦୀବନ୍ଧ ଯୋଜନାର ଶିଳାନ୍ୟାସ ଉତ୍ସବ ରିପୋର୍ଟିଂ କରିବାକୁ କହିଲେ । ଭୁବନେଶ୍ୱରରେ ସେତେବେଳେ ମାତୃଭୂମି ପ୍ରତିନିଧି ରୂପେ ବାଳକୃଷ୍ଣ କାନୁନ୍‌ଗୋ କାର୍ଯ୍ୟ କରୁଥାନ୍ତି । ସବୁ ରିପୋର୍ଟରମାନଙ୍କୁ କଂଗ୍ରେସ ଦଳ ପକ୍ଷରୁ ଗୋଟିଏ ଗୋଟିଏ ଜିପ୍ ଯୋଗାଇ ଦିଆଯାଇଥାଏ । ମୋ ପାଇଁ ମଧ୍ୟ ଗୋଟିଏ ଜିପ୍ ରହିଥାଏ । ବିଚିବାବୁ କହିଲେ ବାଳକୃଷ୍ଣବାବୁ ତାଳଚେର ତାପଜ ବିଦ୍ୟୁତ୍‌କେନ୍ଦ୍ର ଶିଳାନ୍ୟାସ ଉତ୍ସବରେ ରହିବେ ବୋଲି କହିଲେ । ତେଣୁ ଆପଣ ଟିକରପଡ଼ା ଯା'ନ୍ତୁ । ପ୍ରଧାନମନ୍ତ୍ରୀ ନେହେରୁ ଅଧଘଣ୍ଟା ଅନ୍ତରରେ ଦୁଇଟିଯାକ ଉତ୍ସବରେ ଯୋଗଦେବେ । ତେଣୁ ଜଣେ ରିପୋର୍ଟର ଦୁଇଟିଯାକ ଉତ୍ସବ ରିପୋର୍ଟିଂ କରିପାରିବ ନାହିଁ । ମୁଁ

ମଧ୍ୟ ଟିକରପଡ଼ା ଯିବାପାଇଁ ସ୍ଥିର କଲି । ଟିକରପଡ଼ା ପାହାଡ଼ ଉପରେ ଏକ ସମତଳ ସ୍ଥାନକୁ ଆଉଟିକେ ବାଟୋଇ ହେଲିପ୍ୟାଡ଼ କରାଯାଇଥାଏ । ସେଠାରୁ ଶହେ ଫୁଟତଳେ ପାହାଡ଼ କାଟି ସଭାସ୍ଥଳ ହୋଇଥାଏ । ୪ ତାରିଖ ସନ୍ଧ୍ୟାରେ ଆମେ ସମସ୍ତେ ଅନୁଗୁଳ ସର୍କିଟ ହାଉସ୍‌ରେ ପହଞ୍ଚିଲୁ । ସେତେବେଳେ ଓଡ଼ିଶାରେ ୪ଟି ଖବରକାଗଜ ସମାଜ, ପ୍ରଜାତନ୍ତ୍ର, ମାତୃଭୂମି ଓ କଳିଙ୍ଗ ପ୍ରକାଶ ପାଉଥାଏ । ବାକି ପାଞ୍ଚୋଟି ଇଂରାଜୀ ଖବରକାଗଜ ଓ ପି.ଟି.ଆଇ. ନିୟୁଜ୍ ଏଜେନ୍ସିର ସାମ୍ବାଦିକ କାର୍ଯ୍ୟ କରୁଥିଲେ । କଂଗ୍ରେସ ଅଧିବେଶନ ପାଇଁ ବାହାର ରାଜ୍ୟର ସାମ୍ବାଦିକ ୬ ତାରିଖରେ ଆସିଲେ । ତେଣୁ ଅନୁଗୁଳ ଠାରେ ଆମେ ମୋଟ ୧୨/୧୪ ଜଣ ସାମ୍ବାଦିକ ଥିଲୁ । ରାତିରେ ଖାଇବା ସାଙ୍ଗକୁ ସ୍କଚ୍ ହୁଇସ୍କି ପିଇବା ପାଇଁ ବ୍ୟବସ୍ଥା ହୋଇଥିଲା । ସ୍କଚ୍ ହୁଇସ୍କି ଦେଖି ସମସ୍ତେ ବିଜୁବାବୁଙ୍କ ଜୟଗାନ କଲେ । ମୁଁ ସେତେବେଳେ ମଦ ଛୁଉଁ ନଥିଲି । ସେଇଠି କୁହାଗଲା ଟିକରପଡ଼ାରେ ବଉଦ ନେତା ହିମାଂଶୁ ପାଢ଼ୀ ହଜାର ହଜାର ଲୋକଙ୍କୁ ନେଇ ନଦୀବନ୍ଧ ଯୋଜନା ଶିଳାନ୍ୟାସକୁ ବିରୋଧ କରିବେ । ତେଣୁ ନେହେରୁ ସେଠାକୁ ଯିବେ ନାହିଁ । ମୁଁ ଏହା ଶୁଣି ଦ୍ୱନ୍ଦ୍ୱରେ ପଡ଼ିଲି । ଆମ ସାଙ୍ଗରେ କଟକ ଡି.ପି.ଆର୍.ଓ. ବିପିନ ପଟ୍ଟନାୟକ ଯାଇଥିଲେ । ମୁଁ ବିପିନବାବୁଙ୍କୁ ଚୁପ୍ କରି ଏକଥା ପଚାରିଲି । ସେ ମୋତେ ବାହାରକୁ ଟାଣି ନେଇ କହିଲେ ଆପଣ ଏମାନଙ୍କ କଥା ଶୁଣନ୍ତୁ ନାହିଁ । କାର୍ଯ୍ୟକ୍ରମ ଯେତେବେଳେ ହୋଇଛି ପ୍ରଧାନମନ୍ତ୍ରୀ ନିଶ୍ଚୟ ଯିବେ । ଯଦି ଶେଷ ମୁହୂର୍ତ୍ତରେ ଏହି ବିରୋଧ ପାଇଁ କାର୍ଯ୍ୟକ୍ରମ ବାତିଲ ହୁଏ ତେବେ ତା' ମଧ୍ୟ ବଡ଼ ଖବର ହେବ । ଆପଣ ଟିକରପଡ଼ା ଯା'ନ୍ତୁ । ଏମାନେ ରାତି ସାରା ମଦ ପିଇବେ । ଆପଣ ଖାଇ ଶୋଇ ଯା'ନ୍ତୁ । ମୁଁ ସେଇଆ କଲି । ସକାଳୁ ସକାଳୁ ଜିପ୍ ଛୁଟାଇଲି ଟିକରପଡ଼ାକୁ । ବିପିନବାବୁ ଯାହା କହୁଥିଲେ ସବୁ ସାମ୍ବାଦିକ ରାତି ସାଢ଼େ ୩ଟା ପର୍ଯ୍ୟନ୍ତ ମଦ ପିଇ ଶୋଇବାକୁ ଗଲେ । ସେମାନଙ୍କ ମଧ୍ୟରୁ ଯେଉଁ ତିନି/ଚାରିଜଣ ଟିକରପଡ଼ା ଆସିବା କଥା କେହି ଆସିଲେ ନାହିଁ । ଫଳରେ ଟିକରପଡ଼ାରେ ମୁଁ ଏକମାତ୍ର ସାମ୍ବାଦିକ ଥିଲି । ଦିନ ୧୧ଟା ପାଖାପାଖି ନେହେରୁଙ୍କ ହେଲିକେପ୍ଟର ଆସିଲା । ମୁଁ ହେଲିପ୍ୟାଡ଼ରେ ଥିଲି । ସେଠାକାର କିଛି କଂଗ୍ରେସ ନେତା ମଧ୍ୟ ହେଲିପ୍ୟାଡ୍‌ରେ ଥିଲେ । ହେଲିକେପ୍ଟର ରହିବାମାତ୍ରେ ମୁଁ ସେଠାକୁ ଗଲି । ରାଜ୍ୟପାଳ ଅଯୋଧ୍ୟା ନାଥ ଖୋସଲା, ବିଜୁ ପଟ୍ଟନାୟକ, ଉପ ମୁଖ୍ୟମନ୍ତ୍ରୀ ନୀଳମଣି ରାଉତରାୟ ସେଇ ହେଲିକେପ୍ଟରରେ ନେହେରୁଙ୍କ ସହ ଆସିଥିଲେ । ସମସ୍ତେ ଓହ୍ଲେଇଲେ । ମୁଁ ନେହେରୁଙ୍କୁ ଦେଖିବାପାଇଁ ହେଲିକେପ୍ଟର ଡୋର ପାଖରେ ଥିଲି । ସେଇ ସମୟର ଫଟୋ ଏଠାରେ ଦେଲି । ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ନେହେରୁ ଏବଂ ଦ୍ୱିତୀୟ ପ୍ରଧାନମନ୍ତ୍ରୀ ଲାଲ୍‌ବାହାଦୂର ଶାସ୍ତ୍ରୀଙ୍କ ସହ ମୋର ଏହି ଫଟୋ ମୋର ସାମ୍ବାଦିକ ଜୀବନର ମାଇଲଖୁଣ୍ଟ । ଜଣେ ସାମ୍ବାଦିକ ରୂପେ ମୁଁ ନେହେରୁଙ୍କ ଜୀବନର ଶେଷ ଜନସଭାର ଭାଷଣ ରିପୋର୍ଟିଂ କରିଥିଲି । ନେହେରୁ ଟିକରପଡ଼ା ଜନସଭାପରେ ଜାନୁଆରୀ ୭ ତାରିଖରେ କଂଗ୍ରେସ ଅଧିବେଶନରେ ଭାଷଣ ଦେବାକୁ ଉଠି ହଠାତ୍ ପଡ଼ିଯାଇଥିଲେ । ତାଙ୍କର ହୃଦ୍‌ଘାତ ହୋଇଥିଲା । ସେହିଠାରୁ ସେ ମେ' ୨୭ ତାରିଖରେ ମରିବା ପର୍ଯ୍ୟନ୍ତ ଆଉ ବିଛଣାରୁ ଉଠିନାହାନ୍ତି । ତେଣୁ ଜଣେ ସାମ୍ବାଦିକ ରୂପେ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀଙ୍କ ଜୀବନର ଶେଷ ଜନସଭାର ଭାଷଣ ରିପୋର୍ଟିଂ କରିବାର କୃତିତ୍ୱ କେବଳ ମୋର ।

ଲାଲ୍‌ବାହାଦୂର ଶାସ୍ତ୍ରୀ ୧୯୬୪ ଜୁନ୍ ୯ ତାରିଖରେ ପ୍ରଧାନମନ୍ତ୍ରୀ ହେଲେ । ୧୯୬୬ ଜାନୁଆରୀ ୧୧ ତାରିଖରେ ସୋଭିଏତ୍ ଋଷର ତାସକେଣ୍ଟ ଠାରେ ସେ ହୃଦ୍‌ଘାତରେ ପ୍ରାଣ ହରାଇବା ପର୍ଯ୍ୟନ୍ତ ଆଉ ଓଡ଼ିଶା ଆସିନଥିଲେ । ତେଣୁ ଶାସ୍ତ୍ରୀଜୀଙ୍କ ସହ ମୋର ଏ ଫଟୋଟି ମୋର ସାମ୍ବାଦିକ ଜୀବନର ଅନ୍ୟତମ ପ୍ରିୟବସ୍ତୁ । ଜଣେ ସାମ୍ବାଦିକ ଜୀବନରେ ଏହାଠାରୁ ବଡ଼କଥା ଆଉ କ'ଣ ଥାଇପାରେ ?

ଆଜି ରାଜଧାନୀ ଭୁବନେଶ୍ୱରରେ ସାମ୍ବାଦିକ କରିବାବେଳେ ଅନେକ ଚମକପ୍ରଦରାଜନୀତିକ ଘଟଣା ପ୍ରବାହର ସାକ୍ଷୀ ହେବାକୁ ପଡ଼େ । ମୁଁ ସାମ୍ବାଦିକ ରୂପେ ମୂଳରୁ ନିଜର ଏକ ପରିଚୟ ସୃଷ୍ଟି କରିପାରିଥିଲି । ମୁଁ ଯେଉଁ ଖବର କାଗଜରେ ରହେନା କାହିଁକି ବଡ଼ ବଡ଼ ନେତାମାନେ ମୁଖ୍ୟମନ୍ତ୍ରୀମାନଙ୍କ ସହ ମୋର ଘନିଷ୍ଠତା ଥିଲା । ୧୯୬୧ରେ ବିଜୁ ପଟ୍ଟନାୟକଙ୍କ ଠାରୁ ଆରମ୍ଭ କରି ୧୯୯୯ରେ ଗିରିଧର ଗମାଙ୍ଗ ଓ ହେମାନନ୍ଦ ବିଶ୍ୱାଳଙ୍କ ପର୍ଯ୍ୟନ୍ତ ମୋର ସମସ୍ତଙ୍କ ସହ ଅତ୍ୟନ୍ତ ଘନିଷ୍ଠ ପରିଚୟ ଥିଲା । ଅନେକ ସମୟରେ ମୁଁ ମୁଖ୍ୟମନ୍ତ୍ରୀମାନଙ୍କ ସହ ଟେଲିଫୋନ୍‌ରେ ସମ୍ବାଦପାଇବା ପାଇଁ କଥା ହୋଇଛି । ତେବେ ୨ହଜାର ମସିହା ଠାରୁ ଓଡ଼ିଶାରେ ନବୀନ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ହେବାପରେ ତାଙ୍କ ସହ ମୋର ସମ୍ପର୍କ ହୋଇନାହିଁ । କେବଳ ମୁଁ ନୁହେଁ, ଓଡ଼ିଶାର କୌଣସି ସାମ୍ବାଦିକ ତାଙ୍କ ସହ ଯେ ବ୍ୟକ୍ତିଗତ ଭାବେ ସମ୍ପର୍କ ରଖିଛନ୍ତି ସେ କଥା ମୋତେ ଜଣାନାହିଁ । ତା'ର କାରଣ ହେଲା ସେ ଓଡ଼ିଶା ସମ୍ପର୍କରେ କିଛି ଜାଣି ନାହାନ୍ତି । ତେଣୁ ସମ୍ବାଦପାଇବା ପାଇଁ ତାଙ୍କୁ ସାକ୍ଷାତ କରିବାର କୌଣସି ଅର୍ଥ ନାହିଁ । ଜାତୀୟ ଇଂରାଜୀ ଖବର କାଗଜର କେହି କେହି ତାଙ୍କ ସହ ପରିଚିତ ଥାଇପାରନ୍ତି । ମାତ୍ର ତାହା ଖବର ପାଇବା ପାଇଁ ନୁହେଁ ।

## -ପ୍ରତିହିଂସା ରାଜନୀତି-

ନବେ ଦଶକ ଓଡ଼ିଶା ରାଜନୀତିରେ ଏକ ପ୍ରତିହିଂସାପୂର୍ଣ୍ଣ ସମୟ । ୧୯୮୦ରୁ ୯୦ ମସିହା ପର୍ଯ୍ୟନ୍ତ ଜାନକୀ ବଲ୍ଲଭ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ରୂପେ ଓଡ଼ିଶା ଶାସନ କରିଥିଲେ । ତାଙ୍କ ସମୟରେ ଅନେକ ଧରଣର ଦୁର୍ନୀତି ହୋଇଥିବା ବିଷୟ ଅଭିଯୋଗ ହୋଇଥିଲା । ବିଜୁବାବୁ ଅନେକ ସମୟରେ ସାମ୍ବାଦିକମାନଙ୍କୁ ଡାକି ଜାନକୀବାବୁଙ୍କ ଦୁର୍ନୀତି ବିଷୟରେ ବିବୃତ୍ତି ଦେଉଥିଲେ । ଥରେ ମୁଁ ବିଜୁବାବୁଙ୍କୁ ପ୍ରଶ୍ନ କରିଥିଲି- ସାର୍, ଆପଣ ଶାସନକୁ ଆସିଲେ ଏମାନଙ୍କ ବିରୁଦ୍ଧରେ ତଦନ୍ତ କରିବାକୁ ନିର୍ଦ୍ଦେଶ ଦେବେ ? ବିଜୁବାବୁ ଉତ୍ତର ଦେଇଥିଲେ ମୁଁ ଆଗେ ଶାସନକୁ ଆସେ । ମୁଁ ପୁଣି ପ୍ରଶ୍ନ କରିଥିଲି- ସାର୍, ଆପଣ ନବେ ନିର୍ବାଚନରେ ଶାସନକୁ ଆସିବା ପାଇଁ କ'ଣ ଆଶା ରଖିନାହାନ୍ତି ? ବିଜୁବାବୁ କହିଲେ ଯଦି ଆସେ ତେବେ ଏ ଦୁର୍ନୀତିଗ୍ରସ୍ତ ଲୋକଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବି । ନବେ ନିର୍ବାଚନରେ ବିଜୁବାବୁ ବିପୁଳ ଭୋଟ୍‌ରେ ଶାସନ ଗାଦି ଦଖଲ କଲେ । ୧୪୭ଟି ଆସନ ମଧ୍ୟରୁ ୧୨୩ଟି ସ୍ଥାନ ଦଖଲ କରି ସେ ସର୍ବକାଳୀନ ରେକର୍ଡ଼ କଲେ । ମୁଖ୍ୟମନ୍ତ୍ରୀ ହେବାପରେ ପରେ ଏକ ସାମ୍ବାଦିକ ସମ୍ମିଳନୀରେ ମୁଁ ତାଙ୍କ ପୂର୍ବ ପ୍ରତିଶ୍ରୁତି ମନେ ପକାଇ ଦେବାରେ ସେ କହିଲେ ମୋର ସବୁ ମନେ ଅଛି ଏବଂ ଏମାନଙ୍କ ବିରୁଦ୍ଧରେ ସ୍ୱତନ୍ତ୍ର ଭିଜିଲାନ୍ସ କୋର୍ଟରେ ମୋକଦ୍ଦମା ଦାୟର କରାଯାଉଛି । ସାମ୍ବାଦିକ ସମ୍ମିଳନୀର ସାତଦିନ ପରେ ୧୯୮୦ରୁ ୯୦ ମସିହା ମଧ୍ୟରେ ମନ୍ତ୍ରୀ ଥିବା ଏଗାରଜଣଙ୍କ ବିରୁଦ୍ଧରେ ସ୍ୱତନ୍ତ୍ର କୋର୍ଟରେ ମୋକଦ୍ଦମା ଦାୟର ହେଲା । ଏହି ଏଗାର ଜଣଙ୍କ ମଧ୍ୟରେ ପାଂଜଣ ଦଶବର୍ଷ କାଳ ମନ୍ତ୍ରୀ ଥିଲେ । ଯେଉଁ ପାଞ୍ଚଜଣ ଦଶବର୍ଷିଆ ମନ୍ତ୍ରୀ ଥିଲେ ସେମାନେ ହେଲେ ସର୍ବଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ(ମୁଖ୍ୟମନ୍ତ୍ରୀ), ନିରଞ୍ଜନ ପଟ୍ଟନାୟକ, ହରିହର କରଣ, ଯୁଗଳ କିଶୋର ପଟ୍ଟନାୟକ ଓ ହବିବୁଲ୍ଲା ଖାଁ । ଯେଉଁ ଛ'ଜଣ ପାଞ୍ଚବର୍ଷିଆ ମନ୍ତ୍ରୀଥିଲେ ସେମାନେ ହେଲେ ସର୍ବଶ୍ରୀ ରାମଚନ୍ଦ୍ର ଉଲ୍ଲାକା, କିଶୋର ଚନ୍ଦ୍ର ପଟେଲ, ମୁଜାଫର ହୁସେନ ଖାଁ, ଶରତ ରାଉତ, ନାଗାର୍ଜ୍ଜୁନ ପ୍ରଧାନ ଓ ବଟକୃଷ୍ଣ ଜେନା । ଏହି ଘଟଣା ରାଜ୍ୟରେ ଚାଂଲ୍ୟ ସୃଷ୍ଟି କରିଥିଲା । ତେବେ ସବୁଠାରୁ ଆଶ୍ଚର୍ଯ୍ୟର ବିଷୟ ହେଲା କଂଗ୍ରେସ ଅମଳରେ ଯାହାଙ୍କ ବିରୁଦ୍ଧରେ ସବୁଠାରୁ ବେଶୀ ଦୁର୍ନୀତି ଅଭିଯୋଗ ବିଭିନ୍ନ ମହଲରେ ହୋଇଥିଲା ତାଙ୍କୁ ଏହି ମୋକଦ୍ଦମାରୁ ଅନ୍ତର୍ଭୁକ୍ତ

କରାଗଲା ନାହିଁ । ସେ ହେଲେ ବସନ୍ତ ବିଶ୍ୱାଳ । ସେତେବେଳେ ଅନେକ କ୍ଷେତ୍ରରେ ଏହି ଘଟଣା ଆଲୋଚନାର ଖୋରାକ୍ ଯୋଗାଇଥିଲା । କୁହାଗଲା ବିଜୟ ମହାପାତ୍ର ନଳୀନି ମହାନ୍ତି ଓ ଶରତ ଦେବ ବସନ୍ତ ବିଶ୍ୱାଳଙ୍କର ଅତ୍ୟନ୍ତ ଘନିଷ୍ଠ ଥିବାରୁ ବିଜୁବାବୁଙ୍କୁ କହି ତାଙ୍କ ନାମକୁ ବାଦ୍ ଦେଇଥିଲେ । ଅନ୍ୟ ଯେଉଁ ମନ୍ତ୍ରୀମାନେ ବିଜୁବାବୁଙ୍କ ଦୃଷ୍ଟିରେ ସଚ୍ଚୋଟ ମନ୍ତ୍ରୀ ଥିଲେ ସେମାନେ ହେଲେ ସର୍ବଶ୍ରୀ ଉପେନ୍ଦ୍ର ଦୀକ୍ଷିତ, ବାସୁଦେବ ମହାପାତ୍ର, ବସନ୍ତ ବିଶ୍ୱାଳ, ଦୟାନିଧି ନାୟକ, ରଘୁନାଥ ପଟ୍ଟନାୟକ, କୁଆଁରିଆ ମାଝି, ଭଜମନ ମେହେରା, ଗଙ୍ଗାଧର ମହାପାତ୍ର, ଯଦୁନାଥ ଦାଶ ମହାପାତ୍ର, ମତଲୁବ୍ ଅଲ୍ଲୀ, ରାସ ବିହାରୀ ବେହେରା, ଭୂପାଳ ଚନ୍ଦ୍ର ମହାପାତ୍ର, ଭୂପିନ୍ଦର ସିଂହ, ଡମ୍ବରୁଧର ଉଲାକା, ହେମାନନ୍ଦ ବିଶ୍ୱାଳ, ଶରତ ଚନ୍ଦ୍ର ପଣ୍ଡା ଓ ମୋହନ ନାଗ ।

ମୁଁ ଏହି ଘଟଣା ଉପରେ ସମ୍ବାଦଖବର କାଗଜରେ ମୋର ସ୍ତମ୍ଭ ମୁକ୍ତ ବିଚାରରେ ଆପେଟି ନିବନ୍ଧ ଲେଖିଥିଲି । ଏହି ସ୍ତମ୍ଭର ଶୀର୍ଷକ ଥିଲା 'ପାଣିରେ ମାଛ ରହିବ, ଶାସନରେ ଦୁର୍ନୀତି ରହିବ' ୨୪.୪.୯୫ରୁ ଏହାର ଆରମ୍ଭ ହୋଇ ୧୩.୬.୯୫ ପର୍ଯ୍ୟନ୍ତ ଚାଲିଥିଲା । ସମଗ୍ର ଶାସନ କଳରେ ଦୁର୍ନୀତିକୁ ନେଇ ମୁଁ ଛିନିଭିନି କରି ଲେଖିଥିଲି । କାରଣ ମୁଁ ବିଚାର କରିଥିଲି ଏହା ଓଡ଼ିଶା ରାଜନୀତି ଇତିହାସର ଏକ ଅଙ୍ଗ ହୋଇ ଭବିଷ୍ୟତର ପଥ ପ୍ରଦର୍ଶକ ହେବ । କାରଣ ଜଣେ ସାମ୍ବାଦିକ ରୂପେ ବିଶେଷ କରି ରାଜନୀତି ବିଶ୍ଳେଷକ ରୂପେ ମୁଁ ଓଡ଼ିଶା ରାଜନୀତିକୁ ବିଭିନ୍ନ ଦିଗରୁ ବିଶ୍ଳେଷଣ କରେ । ଏମାନଙ୍କ ବିରୁଦ୍ଧରେ ଦୀର୍ଘଦିନ ଧରି ଏ ମୋକଦ୍ଦମା ଚାଲିଥିଲା ।

ଏବେ ଆସନ୍ତୁ ଦେଖିବା ଜାନକୀ ବଲ୍ଲଭ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ହେବାପରେ ବିଜୁବାବୁ ଯେଉଁମାନଙ୍କ ପିଠିରେ ସଚ୍ଚୋଟ ମୋହର ଦେଇଥିଲେ ସେମାନଙ୍କ ମଧ୍ୟରୁ ଜାନକୀ ବାବୁ ବସନ୍ତ ବିଶ୍ୱାଳଙ୍କୁ ଉପ ମୁଖ୍ୟମନ୍ତ୍ରୀ ରୂପେ ନିଯୁକ୍ତି ଦେଲେ । ତେବେ ଯେଉଁମାନଙ୍କୁ ଦୁର୍ନୀତିଗ୍ରସ୍ତ ରୂପେ ବିଜୁବାବୁ ମୋହର ମାରିଥିଲେ ଜାନକୀବାବୁଙ୍କ ଦୃଷ୍ଟିରେ ସେମାନେ ଶୁଦ୍ଧ ସୁବର୍ଣ୍ଣ ହୋଇ କ୍ୟାବିନେଟ୍ ମନ୍ତ୍ରୀ ହୋଇଥିଲେ । ଏମାନଙ୍କ ମଧ୍ୟରେ ରାମଚନ୍ଦ୍ର ଉଲାକା, ନିରଞ୍ଜନ ପଟ୍ଟନାୟକ, ହବିବୁଲ୍ଲା ଖାନ୍, କିଶୋର ପଟେଲ ଓ ନାଗାର୍ଜ୍ଜୁନ ପ୍ରଧାନ ଅନ୍ତର୍ଭୁକ୍ତ । ମୁଁ ଏହି ଘଟଣାକୁ ନେଇ ମୋର ମୁକ୍ତ ବିଚାର ସ୍ତମ୍ଭରେ 'ଦୁର୍ନୀତିର ଅଗ୍ନିପରୀକ୍ଷାରେ ଉତ୍ତୀର୍ଣ୍ଣ ରାଜନୀତିକ ସୀତାମାନେ' ଶୀର୍ଷକରେ ଏକ ନିବନ୍ଧ ରଚନା କରିଥିଲି । ଏହା ସାଧାରଣ ପାଠକଙ୍କ ମଧ୍ୟରେ ବେଶ୍ ଆଦୃତ ହୋଇଥିଲା ।

ଜାନକୀବାବୁ ମୁଖ୍ୟମନ୍ତ୍ରୀ ହେବାପରେ ଯେସାକୁ ତେସା ନୀତିରେ ବିଜୁ ପଟ୍ଟନାୟକଙ୍କ ସମେତ ତାଙ୍କ ମନ୍ତ୍ରିମଣ୍ଡଳର ଛ'ଜଣଙ୍କ ବିରୁଦ୍ଧରେ ଦୁର୍ନୀତି ଅଭିଯୋଗ ଆଗତ କରି ଭିଜିଲାନ୍ସ ମୋକଦ୍ଦମା କରିଥିଲେ । ଏମାନେ ହେଲେ ସର୍ବଶ୍ରୀ ବିଜୁ ପଟ୍ଟନାୟକ, ସୁରେନ୍ଦ୍ର ନାୟକ(ରାଜସ୍ୱ ମନ୍ତ୍ରୀ), ବେଦପ୍ରକାଶ ଅଗ୍ରୱାଲ(ଅର୍ଥମନ୍ତ୍ରୀ), ବିଜୟ ମହାପାତ୍ର(ଜଳସମ୍ପଦମନ୍ତ୍ରୀ), ନଳିନୀ ମହାନ୍ତି(ପୂର୍ତ୍ତ ଓ ନଗର ଉନ୍ନୟନ) ଏବଂ ଦାମୋଦର ରାଉତ(ପଂାୟତରାଜ) । ଜାନକୀ ବଲ୍ଲଭ ପଟ୍ଟନାୟକ ଏମାନଙ୍କ ବିରୁଦ୍ଧରେ ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟି ତରଫରୁ ଏକ ଅଭିଯୋଗ ଫର୍ଦ୍ଦ ୧୯୯୫ ଜାନୁଆରୀ ୩୦ ତାରିଖରେ ସାମ୍ବାଦିକମାନଙ୍କୁ ଦେଇଥିଲେ । ମୁଁ ତାଙ୍କୁ ପ୍ରଶ୍ନ କରିଥିଲି ଆପଣ ରାଜ୍ୟ କଂଗ୍ରେସ ସଭାପତି ରୂପେ ଏହି ଅଭିଯୋଗ ଫର୍ଦ୍ଦ ଆଗତ କରୁଛନ୍ତି । ମାତ୍ର କଂଗ୍ରେସ ଦଳ ଯଦି କ୍ଷମତାକୁ ନଆସେ ଏହାର କ'ଣ ମୂଲ୍ୟ ରହିବ ? ସେ ଉତ୍ତର ଦେଇଥିଲେ ଗତ ପାଂବର୍ଷରେ ବିଜୁ ପଟ୍ଟନାୟକ ଓ ତାଙ୍କ ମନ୍ତ୍ରୀମାନଙ୍କର ବ୍ୟାପକ ଦୁର୍ନୀତି ଲୋକେ ଅଙ୍ଗେ ନିଭାଇଛନ୍ତି । ତେଣୁ ସେମାନେ କଂଗ୍ରେସକୁ ଭୋଟ୍ ଦେବେ ।

ଜାନକୀବାବୁଙ୍କୁ ପୁଣି ପ୍ରଶ୍ନ ହେଲା ବିଜୁବାବୁଙ୍କ ମନ୍ତ୍ରିମଣ୍ଡଳରେ ଅନ୍ୟ ମନ୍ତ୍ରୀ ବିଶେଷ କରି ହରିଶ୍ଚନ୍ଦ୍ର ବକ୍ସିପାତ୍ର, ଚୈତନ୍ୟ ମାଝି, ଅଦ୍ୱୈତ ପ୍ରସାଦସିଂହ, ଭାଗବତ ବେହେରା, ଦିଲ୍ଲୀପ ରାୟ, କାଳନ୍ଦୀ ବେହେରା, ମୁସ୍ତାଫିଜ୍ ମହମ୍ମଦପ୍ରମୁଖଙ୍କ ବିରୁଦ୍ଧରେ କ'ଣ କିଛି ନାହିଁ ? ସେ ଉତ୍ତର ଦେଲେ ଏମାନଙ୍କ ମଧ୍ୟରୁ ଅନେକ ବିଜୁ ପଟ୍ଟନାୟକଙ୍କୁ ବିରୋଧ କରୁଥିଲେ । ତେଣୁ ସେମାନଙ୍କୁ ଦୁର୍ନୀତିଗ୍ରସ୍ତ ବୋଲି ଆମେ ବିଚାର କରୁନାହୁଁ । ଜାନକୀବାବୁଙ୍କ ଏହି ଉତ୍ତର ସେତେବେଳେ ଜନତା ଦଳରେ ସ୍ୱାଗତ କରାଯାଇଥିଲା । ଜାନକୀବାବୁ ୧୫.୩.୯୫ ଦିନ ମୁଖ୍ୟମନ୍ତ୍ରୀ ଦାୟିତ୍ୱ ନେଲେ । ତେବେ ସେ ମୁଖ୍ୟମନ୍ତ୍ରୀ ଦାୟିତ୍ୱ ନେବାପରେ ଯେଉଁ ଅଭିଯୋଗ କଂଗ୍ରେସ ସଭାପତି ରୂପେ ଆଗତ କରିଥିଲେ ଭିଜିଲାନ୍ସ ତା' ଉପରେ ମୋକଦ୍ଦମା ଦାୟର କରିଥିଲେ ମଧ୍ୟ ବିଶେଷ କିଛି ଅଗ୍ରଗତି ହୋଇନଥିଲା । ୧୯୯୫ ନିର୍ବାଚନରେ ଦାମୋଦର ରାଉତ, ସୁରେନ୍ଦ୍ର ନାଥ ନାୟକ ଓ ବେଦପ୍ରକାଶ ଅଗ୍ରୱାଲ ପରାସ୍ତ ହୋଇଥିଲେ । ବିଜୁ ପଟ୍ଟନାୟକ ଭୁବନେଶ୍ୱରରୁ ବିଜୟ ମହାପାତ୍ର ପାଟକୁରାରୁ ଏବଂ ନଳିନୀ ମହାନ୍ତି ରାଜନଗରରୁ ଜିତି ବିଧାନସଭାକୁ ଆସିଥିଲେ । ମୁଁ ସେତେବେଳେ ମୋର ମୁକ୍ତ ବିଚାରରେ ଲେଖିଥିଲି ବସନ୍ତ ବିଶ୍ୱାଳଙ୍କ ଯୋଗୁ ଜାନକୀବାବୁ ଆଣିଥିବା ଅଭିଯୋଗ କୌଣସି କାମ ଦେଇନଥିଲା । କାରଣ ବସନ୍ତ ବିଶ୍ୱାଳ ତାଙ୍କ ଋଣ ପରିଶୋଧ କରିଥିଲେ ।

ସାମ୍ବାଦିକ ରୂପେ ଓଡ଼ିଶାର ରାଜନୀତିକ ସ୍ଥିତି ସମ୍ପର୍କରେ ମୁଁ ସ୍ୱାଭାବିକ ଭାବେ ଖବର ରଖେ ଏବଂ ମୋର ମୁକ୍ତ ବିଚାର ସ୍ତମ୍ଭ ହେଉ ବା ଖୋଲା ବିଚାର ସ୍ତମ୍ଭ ହେଉ ସେଥିରେ ତା'ର ଆଲୋଚନା କରେ । ମୋର ସୌଭାଗ୍ୟ ରାଜ୍ୟର ବିଭିନ୍ନ ସ୍ଥାନରେ ମୋର ସ୍ତମ୍ଭ ପାଠକମାନେ କେବଳ ପଢ଼ନ୍ତି ନାହିଁ ତା' ଉପରେ ଆଲୋଚନା କରନ୍ତି ଓ ମୋତେ ସେମାନଙ୍କ ମତାମତ ଜଣାଇ ପତ୍ର ଲେଖନ୍ତି । କେବଳ ଓଡ଼ିଶା ନୁହେଁ- ଭାରତ ଓ ବିଦେଶରୁ କେତେକ ବନ୍ଧୁ ଇଣ୍ଟରନେଟ୍‌ରେ ମୋ ନିବନ୍ଧ ପଢ଼ି ମୋ ଇ-ମେଲ୍‌ରେ ଚିଠି ଦିଅନ୍ତି । ସବୁ ପତ୍ର ମୁଁ ସାଇତି ରଖିପାରିନି- ତେବେ ଅନେକ ପତ୍ର ରଖିଛି । ବେଜିଂ ବିଶ୍ୱବିଦ୍ୟାଳୟର ଜଣେ ପ୍ରଫେସର ଅଶୋକ ଦାସ । ସେହିପରି ସେଇ ବେଜିଂରୁ ସୁଶାନ୍ତ ଦାଶ, ଦିଲ୍ଲୀ ସକେତରୁ ସତ୍ୟଜିତ ମହାପାତ୍ର, ଆମେରିକାରୁ ପ୍ରଫେସର ଚିତ୍ତ ବରାଳ, କେନ୍ଦ୍ରୀୟ ଶ୍ରମ ସେବାର ବରିଷ୍ଠ କମିଶନର(କଲିକତା) ଡଃ ପ୍ରଦୀପ ରଥ, ଆମେରିକାର ଟେକ୍ସାସ୍‌ରୁ ଅଜିତ ନାୟକ, ମେଲବୋର୍ଣ୍ଣରୁ ଅମିତାଭ ଦାସ ନିୟମିତ ମୋ ପାଖକୁ ଇ-ମେଲ୍‌ରେ ଚିଠି ପଠାନ୍ତି । ତେବେ ଏମାନଙ୍କ ବ୍ୟତୀତ ଓଡ଼ିଶାରୁ ମଧ୍ୟ ବହୁ ପାଠକ ବନ୍ଧୁ ନିୟମିତ ଇ-ମେଲ୍, ପୋଷ୍ଟକାର୍ଡ଼ ଓ ଟେଲିଫୋନ୍ କରନ୍ତି । ଏହାହିଁ ଜଣେ ଲେଖକ ପାଇଁ ସବୁଠାରୁ ବଡ଼ ପୁରସ୍କାର । ମୋର ଲୋକବଳ ନଥିବାରୁ ଏ ପତ୍ର ସବୁ ମୁଁ ଠିକ୍‌ଭାବେ ସଜାଡ଼ି ରଖିପାରି ନାହିଁ । ଏଥିସହ କେତୋଟି ପତ୍ର ଏଠାରେ ଦେଇଛି । କେତେକ ଗୃହିଣୀ ମଧ୍ୟ ମୋ ସ୍ତମ୍ଭ ପଢ଼ି ସେମାନଙ୍କୁ ଯାହା ଭଲ ଲାଗେ ତାହାକୁ ଲେଖନ୍ତି । ଅନେକ ପଦସ୍ଥ ସରକାରୀ ଅଫିସର, କେତେକ ବିଚାରପତି(ଜିଲ୍ଲାସ୍ତରୀୟ) ମଧ୍ୟ ମୋ ସ୍ତମ୍ଭର ନିୟମିତ ପାଠକ ।

କେତେକ ପାଠକ ଓଡ଼ିଶାର ଦୁର୍ନୀତି ସମ୍ପର୍କରେ ସେମାନଙ୍କ ମତାମତ ଦେବାକୁ ଯାଇ ଜାନକୀ ବଲ୍ଲଭ ପଟ୍ଟନାୟକ, ବିଜୁ ପଟ୍ଟନାୟକ, ନବୀନ ପଟ୍ଟନାୟକ, ପ୍ୟାରୀମୋହନ ମହାପାତ୍ର ଏବଂ ପ୍ରେମ ପଟ୍ଟନାୟକ(ନବୀନଙ୍କ ବଡ଼ଭାଇ)ଙ୍କ ନାମ ମଧ୍ୟ ଉଲ୍ଲେଖ କରନ୍ତି । ସେମାନଙ୍କର ଏହା ଅବଶ୍ୟ ବ୍ୟକ୍ତିଗତ ମତ । ମାତ୍ର ଏଇଥିରୁ ଏ ରାଜ୍ୟର ସାଧାରଣ ଲୋକଙ୍କ ବିଶେଷକରି ପାଠୁଆ ଲୋକଙ୍କ ମତାମତ ଜଣାପଡ଼େ । ମୋ ସମ୍ପର୍କରେ ଅନେକ ବନ୍ଧୁ ଅନେକ ବିଶେଷଣ ଦେଇ ପତ୍ର ଲେଖନ୍ତି । ମୁଁ ସେଥିପାଇଁ ଯୋଗ୍ୟ କି ନୁହେଁ ମୁଁ ଜାଣେନାହିଁ । ତେବେ ମନେହୁଏ ସାମ୍ବାଦିକତା

ସତ୍ୟନିଷ୍ଠତା, ନିରପେକ୍ଷତା ଏବଂ ପାଠକୀୟ ଉତ୍କଣ୍ଠାକୁ ଲକ୍ଷ୍ୟ କରି ଲେଖିଲେ ସବୁ କ୍ଷେତ୍ରରେ ସଫଳହେବ । ମୋର ବାଉନବର୍ଷ (୧୯୬୦ ଅକ୍ଟୋବରରେ ମୁଁ ସାମ୍ବାଦିକ ରୂପେ କାର୍ଯ୍ୟ ଆରମ୍ଭ କରିଥିଲି । ତତ୍‌କାଳୀନ ବିଖ୍ୟାତ ଦୈନିକ ସମ୍ବାଦପତ୍ର ମାତୃଭୂମିର କଟକ ଷ୍ଟାଫ୍ ରିପୋର୍ଟର ଓ ସ୍ପୋର୍ଟସ ରିପୋର୍ଟର ରୂପେ ମୁଁ ପ୍ରଥମେ କାର୍ଯ୍ୟ କରିଥିଲି ।)ର ସାମ୍ବାଦିକ ଜୀବନରେ ମୋର ସଚ୍ଚୋଟତା, ନିର୍ଭିକତା ଓ ନିରପେକ୍ଷତା ମୋତେ ଆତ୍ମ ସନ୍ତୋଷ ଦେଇଛି । ଭାରତବର୍ଷର ମୁଁ ଏକମାତ୍ର ସାମ୍ବାଦିକ ଯେ ତିନିଜଣ ପ୍ରଧାନମନ୍ତ୍ରୀଙ୍କ ଜୀବନର ଅନ୍ତିମ ଭାଷଣ ଓ ବକ୍ତବ୍ୟ ରିପୋର୍ଟ କରିଥିଲା । ସେ ତିନିଜଣ ପ୍ରଧାନମନ୍ତ୍ରୀ ହେଲେ ପଣ୍ଡିତ ଜବାହର ଲାଲ୍ ନେହେରୁ, ଇନ୍ଦିରା ଗାନ୍ଧୀ ଓ ରାଜୀବ ଗାନ୍ଧୀ । ନେହେରୁଙ୍କ ଜୀବନର ଅନ୍ତିମ ଜନସଭା ଟିକରପଡ଼ା ନଦୀବନ୍ଧ ଯୋଜନା(୧୯୬୪ ଜାନୁଆରୀ ୫ ତାରିଖ) ଟିକରପଡ଼ା ପାହାଡ଼ ଉପରେ । ଶିଳାନ୍ୟାସ ଉତ୍ସବ ଇନ୍ଦିରା ଗାନ୍ଧୀଙ୍କ ଅନ୍ତିମ ଜନସଭା ୧୯୮୪ ଅକ୍ଟୋବର ୨୯ ତାରିଖରେ ବଲାଙ୍ଗିର ସଇଁତଲା ଗୋଳାବାରୁଦ କାରଖାନା ଶିଳାନ୍ୟାସ ଉତ୍ସବ, ଦିନ ୧୨ଟାରେ, ସନ୍ଧ୍ୟାରେ ଗୋପାଳପୁର କ୍ୟାଣ୍ଟନମେଣ୍ଟ ଏବଂ ୩ ତାରିଖ ସନ୍ଧ୍ୟାରେ ଭୁବନେଶ୍ୱରରେ ଜନସଭା । ରାଜୀବ ଗାନ୍ଧୀ ୧୯୯୧ ମେ' ୨୦ ତାରିଖରେ ଭୁବନେଶ୍ୱର ନିର୍ବାଚନ ପ୍ରଚାର ପାଇଁ ଆସିଥିବାବେଳେ ସେହିଦିନ ରାତି ୧୧ଟାରୁ ୧୨ଟା ପର୍ଯ୍ୟନ୍ତ ରାଜ୍ୟ ଅତିଥିଭବନରେ ମୋ ସହ ଏକ ଖୋଲା ଆଲୋଚନା କରିଥିଲେ । ସେତେବେଳେ ମୁଁ ଭାରତୀୟ ନ୍ୟାସନାଲ ସାମ୍ବାଦିକ ୟୁନିୟନର ସର୍ବଭାରତୀୟ ସଭାପତି ଥିଲି । ମୋ ସହ ଭୁବନେଶ୍ୱର ସାମ୍ବାଦିକ ପ୍ରଦୋଷ ପଟ୍ଟନାୟକ ଥିଲେ । ଅନେକ ସମୟ ରାଜୀବ ଗାନ୍ଧୀଙ୍କ ସହ ଆଲୋଚନା । ଜୀବନରେ ଦେଶର ଜଣେ ପ୍ରାକ୍ତନ ପ୍ରଧାନମନ୍ତ୍ରୀଙ୍କ ସହ ଏତେ ଖୋଲା ଆଲୋଚନା ଜଣେ ସାମ୍ବାଦିକଙ୍କ ପକ୍ଷରେ ଏକ ଅମୂଲ୍ୟ ଅଭିଜ୍ଞତା । ପଣ୍ଡିତ ନେହେରୁ ଟିକରପଡ଼ା ବନ୍ଧ ଯୋଜନା ଶିଳାନ୍ୟାସ କରି ଭୁବନେଶ୍ୱର ଫେରି ଆସି ଜାନୁଆରୀ ୭ ତାରିଖରେ ଭୁବନେଶ୍ୱର ଗୋପବନ୍ଧୁ ନଗରରେ ଅନୁଷ୍ଠିତ କଂଗ୍ରେସ କମିଟି ସାଧାରଣ ଅଧିବେଶନରେ କହିବା ପାଇଁ ମାଇକ୍ ଧରିବାବେଳେ ହୃଦ୍‌ଘାତର ଶିକାର ହୋଇ ତଳକୁ ଖସିପଡ଼ିଲେ । ଇନ୍ଦିରା ଗାନ୍ଧୀ, ବିଜୁପଟ୍ଟନାୟକ ତାଙ୍କୁ ଧରି ରାଜଭବନକୁ ନେଇଗଲେ । ମୁଁ ସେଇ ମୁହୂର୍ତ୍ତରେ କଂଗ୍ରେସ ଅଧିବେଶନରେ ସାମ୍ବାଦିକ ରୂପେ ଉପସ୍ଥିତ ଥିଲି । ଅନ୍ୟ ସାମ୍ବାଦିକମାନେ ଅଧଘଣ୍ଟାଏ ପୂର୍ବରୁ ହୋଇଥିବା ତାଳଚେର ତାପଜ ବିଦ୍ୟୁତ୍ କେନ୍ଦ୍ର ଶିଳାନ୍ୟାସ ଉତ୍ସବରେ ରହିଗଲେ । ଇନ୍ଦିରା ଗାନ୍ଧୀ ଭୁବନେଶ୍ୱରରୁ ସେଇ ରାତିରେ ଦିଲ୍ଲୀ ଫେରିଯାଇ ୩୧ ତାରିଖ ସକାଳେ ଆତତାୟୀ ଗୁଳିରେ ପ୍ରାଣ ହରାଇଲେ । ରାଜୀବ ଗାନ୍ଧୀ ମେ' ୨୧ ତାରିଖରେ ଭୁବନେଶ୍ୱରରୁ ଚେନ୍ନାଇ ଯାଇ ପେରାମ୍ବୁର ଠାରେ ସାଧାରଣ ସଭାରେ ଭାଷଣ ଦେବା ପୂର୍ବରୁ ଜୀବନ ବୋମାର ଶିକାର ହୋଇ ମୃତ୍ୟୁବରଣ କଲେ । ମୋର ସାମ୍ବାଦିକ ଜୀବନରେ ଏହି ତିନି ପ୍ରଧାନମନ୍ତ୍ରୀଙ୍କ ଶେଷ ଭାଷଣ ରିପୋର୍ଟ କରିବା ଓ ମୁହାଁମୁହିଁ ଆଲୋଚନା ଏକ ଅପୂର୍ବ ସଂଯୋଗ ।

ସାମ୍ବାଦିକ ଜୀବନରେ ମୁଁ ଅନେକ ପ୍ରିୟ ଲୋକଙ୍କ ସମ୍ପର୍କରେ ଅପ୍ରିୟ ତଥ୍ୟ ପରିବେଷଣ କରିଛି । ମୋର ସ୍ତମ୍ଭମାନଙ୍କରେ ଏଭଳି କେତେକ ଉଚ୍ଚପଦସ୍ଥ ଆଇ.ଏ.ଏସ୍. ଅଫିସର, ମନ୍ତ୍ରୀମାନଙ୍କ କାର୍ଯ୍ୟ ସମ୍ପର୍କରେ ବିଶେଷ କରି ଦୁର୍ନୀତି ସମ୍ପର୍କରେ ଖୋଲାଖୋଲି ଆଲୋଚନା ସେମାନଙ୍କୁ ସାଧାରଣରେ ନିନ୍ଦିତ କରିଛି । କେବଳ ନିନ୍ଦିତ ନୁହେଁ ସି.ବି.ଆଇ. ଓ ଭିଜିଲାନ୍ସ ଏବଂ କୋର୍ଟ ମୋକଦ୍ଦମାର ମଧ୍ୟ ଭୟ ରହିଥାଏ । ଗୋଟିଏ ଉଦାହରଣ ଦେଲେ ଭଲ ହେବ । ମେସ୍କୋ ଇସ୍ପାତ କାରଖାନାର ମାଲିକ ରୀତା ସିଂହ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ମୁଖ୍ୟମନ୍ତ୍ରୀତ୍ୱ ବେଳେ ଷ୍ଟିଲ୍ ବଣ୍ଡରୁ ବେଆଇନ୍ ଭାବେ ଜାଲ୍ ମର୍ଟଗେଜରେ ସତରକୋଟି ଟଙ୍କା ଋଣ ନେଲେ । ପରେ ଯେତେବେଳେ ଜଣାପଡ଼ିଲା

ସେତେବେଳେ ମୁଁ ସବୁ କାଗଜପତ୍ର ଯୋଗାଡ଼ କରି ଧରିତ୍ରୀରେ ମୋର ଖୋଲା ବିଚାର ସ୍ତମ୍ଭରେ ଲେଖିଲି । ଦୁଇଟି ନିବନ୍ଧ ପରେ ସମ୍ପାଦକ ତଥାଗତ ଶତପଥୀ ମୋତେ ଖବର ପଠାଇଲେ ଆଉ ଏହା ଉପରେ ଲେଖନ୍ତୁ ନାହିଁ । ପୂର୍ବତନ ଚିଫ୍ ସେକ୍ରେଟାରୀ ମିଶ୍ରବାବୁ ବାରମ୍ବାର ଆସି ଏହା ବନ୍ଦ କରିବାକୁ କାକୁତି ମିନତି କରୁଛନ୍ତି । ମେଷ୍କୋ ଦୁର୍ନୀତି ସି.ବି.ଆଇ. ତଦନ୍ତ କରୁଥିଲା । ଏଥିରେ ସମ୍ପୃକ୍ତ ଜଣେ ବରିଷ୍ଠ ଆଇ.ଏ.ଏସ୍. ଗୁପ୍ତା ପରସୋନେଲ ଡିପାର୍ଟମେଣ୍ଟର ସଚିବ ହେବା ପରେ ଏ ତଦନ୍ତ ବନ୍ଦ କରାଇ ଦେଲେ । ଏଥିସହ ସଂପୃକ୍ତ ଆଇ.ଏ.ଏସ୍.ମାନେ ମୋ ଉପରେ ଖଡ୍ଗହସ୍ତ ହୋଇଥିଲେ । ମାତ୍ର ମୁଁ କାହାରିକୁ ଏବଂ କୌଣସି କଥାକୁ ଭ୍ରୂକ୍ଷେପ ନକରି ମୋ ସମ୍ବାଦିକ କର୍ତ୍ତବ୍ୟ କରି ଚାଲିଥାଏ । ଏଥିସହ କିଛି ବିଶିଷ୍ଟ ଶିକ୍ଷାବିତ୍‌ଙ୍କ ପତ୍ର ଓ ଜଣେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ୯୦ ବର୍ଷ ବୟସ୍କ କ୍ଷେତ୍ରବାସୀ ପରିଡ଼ାଙ୍କ ପତ୍ର ଦେଲି । ପ୍ରଫେସର ଶ୍ରୀନିବାସ ମିଶ୍ର ଓ ପ୍ରଫେସର ଭାଗବତ ଶୁକ୍ଳ । ଏଇମାନଙ୍କୁ ମୁଁ ସମାଜର ଦିଗ୍‌ଦର୍ଶକ ଓ ବୁଦ୍ଧିଜୀବୀ ବୋଲି ବିଚାର କରେ । ଏଇମାନଙ୍କ ପ୍ରେରଣା ମୋର ଜୀବନର ପାଥେୟ ।

ବିଭିନ୍ନ ସମୟରେ ଜୀବନକୁ ନେଇ ମୁଁ ଅନେକ ପରୀକ୍ଷା ନିରୀକ୍ଷାର ସମ୍ମୁଖୀନ ହୋଇଛି । ଜଣେ ସାମ୍ବାଦିକ ରୂପେ, ଜଣେ ସାହିତ୍ୟିକ ରୂପେ, ଜଣେ ସାହିତ୍ୟକର୍ମୀ ରୂପେ, ସାମ୍ବାଦିକ ସଂଗଠନର କର୍ମୀ ରୂପେ ଏବଂ ସର୍ବୋପରି ଜଣେ ସାମାଜିକ କ୍ଷେତ୍ରରେ କାର୍ଯ୍ୟ କରୁଥିବା ବ୍ୟକ୍ତି ରୂପେ ମୁଁ ନିଜ ପରିଧି ମଧ୍ୟରେ ନିଜକୁ ସର୍ବଦା ରଖିଥାଏ । ତେବେ ମୁଁ କାର୍ଯ୍ୟ କରୁଥିବା ଯେକୌଣସି କ୍ଷେତ୍ରରେ ଅନ୍ୟାୟ ଓ ଅନୀତି ଦେଖିଲେ ତା'ର ପ୍ରତିବାଦ କରେ । ସେ ଯେତେବଡ଼ ଲୋକ ହେଉଥାଉ ନା କାହିଁକି ମୁଁ ସେସବୁକୁ ଭ୍ରୂକ୍ଷେପ କରେନାହିଁ । ଏଭଳି କେତେକ ଘଟଣା ଘଟିଛି ଯେତେବେଳେ ସମ୍ପୃକ୍ତ ଅନୁଷ୍ଠାନର କିଛି ପଦସ୍ଥ ବ୍ୟକ୍ତି ମୋ ବିରୁଦ୍ଧରେ ନାନା ପ୍ରକାର କୁତ୍ସା ରଚନା କରିଛନ୍ତି । ମାତ୍ର ମୁଁ କୌଣସି କେଳେଙ୍କାରୀରେ ନଥିବା ଯୋଗୁ ତାକୁ କେବଳ ସମ୍ମୁଖୀନ ହୋଇନାହିଁ- ସେମାନଙ୍କୁ ମାନହାନି ମୋକଦ୍ଦମାରେ କୋର୍ଟକୁ ଟାଣିବା ପାଇଁ ଓକିଲ ନୋଟିସ୍ ପଠାଇଛି । ଏହାପରେ ସେମାନଙ୍କ ମଧ୍ୟରୁ କେତେକ ଆସି କ୍ଷମା ମାଗିଛନ୍ତି ଏବଂ କେତେକ ନିଜ ଅପଚେଷ୍ଟାରୁ କ୍ଷାନ୍ତ ରହିଛନ୍ତି ।

ସାମ୍ବାଦିକ ରୂପେ ମୁଁ ନିଜ କାମ କରିବା ସଙ୍ଗେସଙ୍ଗେ ସାହିତ୍ୟ କ୍ଷେତ୍ରରେ ନିଜକୁ ସବୁବେଳେ ମଧ୍ୟ ଜଡ଼ିତ କରି ରଖିଥାଏ । ପ୍ରତିବର୍ଷ ନହେଲେ ମଧ୍ୟ ବର୍ଷେ ଦି'ବର୍ଷରେ ମୋର କ୍ଷୁଦ୍ରଗଳ୍ପ ସଂକଳନ ହେଉ ବା ଉପନ୍ୟାସ ହେଉ ବା ମୋର ସ୍ତମ୍ଭକୁ ନେଇ ପୁସ୍ତକ ପ୍ରକାଶ ପାଏ । ୧୯୯୪ ମସିହାରେ ମୋର 'ମୁକ୍ତ ବିଚାର' ସ୍ତମ୍ଭକୁ ନେଇ ପ୍ରଥମ ପୁସ୍ତକ ପ୍ରକାଶ ପାଇଲା । ମୁଁ ସେତେବେଳେ 'ସମ୍ବାଦ' ଖବର କାଗଜରେ ପ୍ରତି ମଙ୍ଗଳବାର ଦିନ ମୋର 'ମୁକ୍ତ ବିଚାର' ଶୀର୍ଷକରେ ନିବନ୍ଧ ଲେଖୁଥାଏ । ମୋର ସୌଭାଗ୍ୟ ଏହି ନିବନ୍ଧଗୁଡ଼ିକ ରାଜ୍ୟର ବିଭିନ୍ନ ସ୍ଥାନରେ ବିଭିନ୍ନ କ୍ଷେତ୍ରର ବ୍ୟକ୍ତିମାନଙ୍କର ପ୍ରଶଂସାଲାଭ କରିଥିଲା । ଏହାପର ଠାରୁ ପ୍ରତିବର୍ଷ ମୋର ସ୍ତମ୍ଭ ଉପରେ ପୁସ୍ତକ ପ୍ରକାଶ ପାଉଛି । ମୋ ନିବନ୍ଧ ଉପରେ ମୁଁ ପ୍ରତିଦିନ ଖୁବ୍ କମ୍‌ରେ ୪/୫ଟି କରି ଚିଠି ପାଉଥିଲି । ଜଣେ ଲେଖକ ପକ୍ଷରେ ଏହାଠାରୁ ବଳି ଆଉ ବଡ଼ ପୁରସ୍କାର କ'ଣ ଥାଏ । ସ୍ତମ୍ଭ ରଚନା ସହ ମୋର ଗଳ୍ପ ରଚନା ମଧ୍ୟ ଠିକ୍ ତାଳ ଦେଇ ଚାଲିଥାଏ । ୧୯୯୫ ମସିହାରେ ମୋର ଗୋଟିଏ ଗଳ୍ପ 'ଗୁରୁ ଦକ୍ଷିଣା' ଇ-ଟିଭିରେ ସିରିଆଲ୍ ହୋଇ ଆତ୍ମପ୍ରକାଶ କଲା । ମୋତେ ଏଥିପାଇଁ ଦୁଇହଜାର ଟଙ୍କା ପାରିଶ୍ରମିକ ମିଳିଥିଲା । ଏହି ଗଳ୍ପଟି ମୋଟ ପାଞ୍ଚଟି ଅଧ୍ୟାୟରେ ପରିବେଶିତ ହୋଇଥିଲା । ସେହିଭଳି ୧୯୮୬ ମସିହାରେ 'ଗଳ୍ପ' ପତ୍ରିକାରେ ପ୍ରକାଶିତ ମୋର ଗୋଟିଏ ଗଳ୍ପ 'ଢୋଲିଆ'କୁ

ପ୍ରଖ୍ୟାତ ନିର୍ଦ୍ଦେଶକ ମନମୋହନ ମହାପାତ୍ର ଚଳଚ୍ଚିତ୍ରରେ ରୂପାୟିତ କରିଥିଲେ । ଏହି ଚଳଚ୍ଚିତ୍ରର ନାମକରଣ କରାଯାଇଥିଲା 'ମୁହୂର୍ତ୍ତ' । ଚଳଚ୍ଚିତ୍ରଟି ସେହି ବର୍ଷ ରାଜ୍ୟ ଚଳଚ୍ଚିତ୍ର ପ୍ରତିଯୋଗିତାରେ ପ୍ରଥମ ସ୍ଥାନ ଅଧିକାର କରିଥିଲା । ଏ ସମସ୍ତ ଘଟଣା ଜଣେ ଲେଖକ ପାଇଁ ଗଭୀର ଆତ୍ମସନ୍ତୋଷ ଆଣିଦିଏ । ସେହିବର୍ଷ ସମ୍ଭବତଃ ୧୯୯୮ରେ ଏହା ଆନ୍ତର୍ଜାତିକ ଚଳଚ୍ଚିତ୍ର ଉତ୍ସବରେ ଦିଲ୍ଲୀ ଠାରେ ପ୍ରଦର୍ଶିତ ହୋଇଥିଲା ।

ଓଡ଼ିଆ ଗଳ୍ପକୁ ନେଇ ବିଭିନ୍ନ ସଂସ୍ଥା ପକ୍ଷରୁ ଯେତେଗୁଡ଼ିଏ ସଂକଳନ ପ୍ରକାଶ ପାଇଛି ସେ ସମସ୍ତ ସଂକଳନରେ ମୋର ଗଳ୍ପ ରହିଛି । କେନ୍ଦ୍ର ସାହିତ୍ୟ ଏକାଡେମୀ, ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଓଡ଼ିଶା ସାହିତ୍ୟ ଏକାଡେମୀ ସମେତ କେତେକ ବିଶ୍ୱବିଦ୍ୟାଳୟ ପକ୍ଷରୁ ଗଳ୍ପ ଓ ପ୍ରବନ୍ଧ ସଂକଳନ ଆଦିରେ ମୋର ଗଳ୍ପ ଓ ପ୍ରବନ୍ଧ ସ୍ଥାନ ପାଇଛି । ପ୍ରତ୍ୟେକ କ୍ଷେତ୍ରରେ ମୋ ବିଚାରରେ ଯଦି ନିଷ୍ଠା ଥାଏ ତେବେ ଲୋକ ନିଶ୍ଚୟ ସଫଳତା ଲାଭ କରିବ ।

ପିଲାଦିନୁ ସ୍କୁଲରେ ପଢୁଥିବାବେଳୁ ମୁଁ ଗଳ୍ପ କବିତା ରଚନା କରୁଥିଲି । ସେତେବେଳେ ସେଗୁଡ଼ିକ ପ୍ରଜାତନ୍ତ୍ର ମୀନାବଜାରରେ ପ୍ରକାଶ ପାଉଥିଲା । ମଝିରେ ମଝିରେ ଆସନ୍ତାକାଲି କିଶୋର ବିଭାଗରେ ପ୍ରକାଶ ପାଉଥିଲା । ସାମ୍ବାଦିକତାକୁ ପେଶା ରୂପେ ଗ୍ରହଣ କରିବା ପରେ ମୁଁ ପ୍ରଥମେ ନାଟକ ଓ ଚଳଚ୍ଚିତ୍ର ଉପରେ ପ୍ରବନ୍ଧ ରଚନା କଲି । ମୁଁ ମାତୃଭୂମିର ସାମ୍ବାଦିକ ରୂପେ କାର୍ଯ୍ୟ କରୁଥିଲେ ମଧ ପ୍ରଜାତନ୍ତ୍ରର ଚଳଚ୍ଚିତ୍ର ବିଭାଗ ରୂପ ରସ ଛନ୍ଦରେ ସିନେମା ଉପରେ ନିୟମିତ ଲେଖୁଥିଲି । ଏଥିସହ ୧୯୭୧ ଜାନୁଆରୀ ୩୦ ତାରିଖରେ ପ୍ରକାଶିତ ଏକ ପ୍ରବନ୍ଧର ମୂଳ ଭାଗଟି ଦେଲି । ସେହିଭଳି ଉତ୍କଳ ପ୍ରସଙ୍ଗରେ ବିଭିନ୍ନ ବିଷୟ ଉପରେ କେତେଗୁଡ଼ିଏ ନିବନ୍ଧ ଲେଖୁଥିଲି । ସେତେବେଳେ ଉତ୍କଳ ପ୍ରସଙ୍ଗରେ ଗୋଟିଏ ଗୋଟିଏ ନିବନ୍ଧ ପାଇଁ ପଚାଶ ଟଙ୍କା ପାରିଶ୍ରମିକ ମିଳୁଥିଲା । ଏଥିସହ ୧୯୭୦ ଜୁନ୍‌ମାସ ଓ ଡିସେମ୍ବର ମାସରେ ପ୍ରକାଶିତ ଦୁଇଟି ନିବନ୍ଧର ମୂଳ ଶୀର୍ଷକର ନକଲ ଦେଲି । ଏଥିମଧ୍ୟରୁ ଗୋଟିଏ ହେଲା ଓଡ଼ିଶାରେ ଚଳଚ୍ଚିତ୍ର ଷ୍ଟୁଡିଓ ଏବଂ ଅନ୍ୟଟି ସାମୁଦ୍ରିକ ବାଣିଜ୍ୟ କ୍ଷେତ୍ରରେ ଓଡ଼ିଶାର ବିକାଶ । ଦ୍ୱିତୀୟ ନିବନ୍ଧଟି ୧୯୭୧ ଜୁନ୍ ମାସରେ ପାରାଦ୍ୱୀପ ବନ୍ଦର ପକ୍ଷରୁ ପ୍ରକାଶିତ ଏକ ସ୍ମରଣିକାରେ ସ୍ଥାନ ପାଇଥିଲା । ସେଥିପାଇଁ ମୋତେ ଏକଶତ ଟଙ୍କା ପାରିଶ୍ରମିକ ମଧ ମିଳିଥିଲା ।

କେବଳ ଓଡ଼ିଆ ଭାଷାରେ ନୁହେଁ, ବିଖ୍ୟାତ ବଙ୍ଗଳା ପତ୍ରିକା 'ଦେଶ'ରେ ମୋର ଅନେକ ଚିଠିପତ୍ର ଓ ଲେଖା ପ୍ରକାଶ ପାଇଥିଲା । 'ଦେଶ'ର ଅନେକ ସଂଖ୍ୟାରେ ଓଡ଼ିଆ ସାହିତ୍ୟ ଉପରେ ମୋର ସମ୍ପାଦକଙ୍କୁ ପତ୍ର ସ୍ତମ୍ଭରେ କେତେକ ପତ୍ର ପ୍ରକାଶ ପାଇଥିଲା । ଏଠାରେ 'ଗୋପୀନାଥ ଓ ପ୍ରତିବେଶୀ ସାହିତ୍ୟ ପ୍ରସଙ୍ଗ' ଶୀର୍ଷକ ଏକ ପତ୍ରର ନକଲ ଦେଲି । ଏହି ପତ୍ରଟି ପ୍ରକାଶ ପାଇଥିଲା ୧୯୮୮ ଅଗଷ୍ଟ ସଂଖ୍ୟାରେ । ଏହି ପତ୍ରରେ ମୁଁ ଗୋପୀନାଥ ମହାନ୍ତିଙ୍କ ଜ୍ଞାନପୀଠ ପୁରସ୍କାର କେଉଁ ବହି ପାଇଁ ପାଇଥିଲେ ତାହା ଉଲ୍ଲେଖ କରିବା ସଙ୍ଗେ ସଙ୍ଗେ ୧୯୮୮ ଜୁନ୍ ସଂଖ୍ୟାରେ ଗୋପୀବାବୁଙ୍କର 'ପରଜା' ପୁସ୍ତକର ଇଂରାଜୀ ଅନୁବାଦ ଉପରେ ପ୍ରଖ୍ୟାତ ସମାଲୋଚକ ବିପ୍ଲବ ଚକ୍ରବର୍ତ୍ତୀଙ୍କ ଆଲୋଚନା ସମ୍ପର୍କରେ ମୋର ମତାମତ ରଖିଥିଲି । ମୋର ସମ୍ପୂର୍ଣ୍ଣ ପତ୍ରଟି 'ଦେଶ'ରେ ପ୍ରକାଶ ପାଇଥିଲା ।

୧୯୮୮ ଫେବୃଆରୀ ୨୬ ତାରିଖରେ ଭୁବନେଶ୍ୱର ପୁସ୍ତକ ମେଳାରେ ମୁଖ୍ୟ ଅତିଥି ରୂପେ ଯୋଗ ଦେବାପାଇଁ ବିଖ୍ୟାତ ବଙ୍ଗଳା ଔପନ୍ୟାସିକ ସମରେଶ ବସୁ ଭୁବନେଶ୍ୱର ଆସିଥିଲେ । ସମରେଶ ବସୁ କାଳକୂଟ ନାମରେ ଲେଖିଥିବା ଏକ ଉପନ୍ୟାସ 'ଶାମ୍ବ'କୁ ମୁଁ ଓଡ଼ିଆରେ ଅନୁବାଦ କରିଥିଲି । ୧୯୮୮ ଭୁବନେଶ୍ୱର ପୁସ୍ତକମେଳାରେ

ମୋର ଦୁଇଟି ପୁସ୍ତକ ପ୍ରକାଶ ପାଇଥିଲା । ଗୋଟିଏ ହେଲା କଟକର ବୁକ୍ସ ଏଣ୍ଡ ବୁକ୍ସ ପ୍ରକାଶକଙ୍କ ଦ୍ୱାରା ପ୍ରକାଶିତ ଗଳ୍ପ ସଂକଳନ କ୍ଲାନ୍ତ ନକ୍ଷତ୍ର ଏବଂ ଅନ୍ୟଟି ହେଲା 'ଶାମ୍ବ'ର ଓଡ଼ିଆ ଅନୁବାଦ । ପ୍ରକାଶ କରିଥିଲେ ଭୁବନେଶ୍ୱରର ବୁକ୍‌ଲ୍ୟାଣ୍ଡ ଇଣ୍ଟରନ୍ୟାସନାଲ । ଭୁବନେଶ୍ୱର ପୁସ୍ତକମେଳାରୁ କଲିକତା ଫେରିଯିବାର ଦଶଦିନ ପରେ ସମରେଶ ବସୁଙ୍କର ତିରୋଧାନ ହୋଇଗଲା ।

'ଦେଶ' ପତ୍ରିକା ସମରେଶ ବସୁଙ୍କ ସମ୍ମାନାର୍ଥେ ଏକ ସମରେଶ ବସୁ ସ୍ମରଣ ସଂଖ୍ୟା ପ୍ରକାଶ କରିବାକୁ ନିଷ୍ପତ୍ତି କଲେ । ହଠାତ୍ ଦିନେ ପ୍ରସିଦ୍ଧ ସାହିତ୍ୟିକ ସୁନିଲ ଗଙ୍ଗୋପାଧ୍ୟାୟ ମୋତେ ଟେଲିଫୋନ୍ କରି କହିଲେ ବରେନ୍‌ବାବୁ- ସମରେଶ ବସୁଙ୍କ ପାଇଁ ଦେଶ ପତ୍ରିକା ଏକ ସ୍ମରଣ ସଂଖ୍ୟା ପ୍ରକାଶ କରୁଛି । ସମରେଶ ବାବୁ ଜୀବନର ଶେଷସଭା ହେଉଛି ଭୁବନେଶ୍ୱର ପୁସ୍ତକମେଳା । ଆପଣ ତାଙ୍କ ସଭାର ଏକ ଛବି ସହ ଗୋଟିଏ ଲେଖା ପଠାନ୍ତୁ । ମୁଁ ସେ ଲେଖା ଓ ଛବି ପଠାଇଥିଲି । ତାହା ଦେଶର ୧୯୮୮ ମେ' ମାସ ୧୪ ତାରିଖ ସ୍ମରଣ ସଂଖ୍ୟାରେ ପ୍ରକାଶ ପାଇଥିଲା । ତା'ର ଏକ ନକଲ ଏଠାରେ ଦେଲି ।

ଜୀବନରେ ସାମ୍ବାଦିକତା ଓ ସାହିତ୍ୟକୁ ମୁଁ ସମାନ ଭାବେ ଚଳାଇ ନେଇ ଆସିଛି । ତେବେ ଓଡ଼ିଶା ବାହାରେ ମୁଁ ସାହିତ୍ୟିକ ଅପେକ୍ଷା ସାମ୍ବାଦିକ ଭାବେ ଅଧିକ ଜଣାଶୁଣା । ତା'ର କାରଣ ହେଲା ମୁଁ ନ୍ୟାସନାଲ୍ ୟୁନିୟନ ଅଫ୍ ଜର୍ଣ୍ଣାଲିଷ୍ଟ(ଇଣ୍ଡିଆ)ର ସର୍ବ ଭାରତୀୟ ସଭାପତି ଏବଂ ଭାରତରେ ହୋଇଥିବା ସାର୍କ ଜର୍ଣ୍ଣାଲିଷ୍ଟ କନ୍‌ଫରେନ୍ସର ତିନିଜଣିଆ ସଭାପତି ମଣ୍ଡଳୀର ସଦସ୍ୟ ରୂପେ ସମ୍ମିଳନୀ ପରିଚାଳନା କରିଥିଲି । ୧୯୯୦ରୁ ୯୩ ପର୍ଯ୍ୟନ୍ତ ଏନ୍‌ୟୁଜେ ସଭାପତି ଏବଂ ୧୯୯୧ ନଭେମ୍ବର ୧୪ରୁ ୧୬ ତାରିଖ ପର୍ଯ୍ୟନ୍ତ ସାର୍କ ସମ୍ମିଳନୀରେ ସଭାପତିତ୍ୱ କରିଥିଲି । ଏହାପରେ ବାଂଲାଦେଶର ଢାକା ସାର୍କ ସମ୍ମିଳନୀରେ ମଧ ସଭାପତି ମଣ୍ଡଳୀ ସଦସ୍ୟ ଥିଲି । ପୂର୍ବରୁ ଏହି ସମ୍ମିଳନୀ ସମ୍ପର୍କରେ ଆଲୋଚନା କରିଛି । ଏ ସମସ୍ତ ଘଟଣା ଯୋଗୁ ଓଡ଼ିଶା ବାହାରେ କେତେକ ସାମ୍ବାଦିକ ବନ୍ଧୁ ମୋତେ ଜାଣିଥିଲେ ଓ ମୁଁ ମଧ କେତେକଙ୍କ ସହ ସମ୍ପର୍କ ରକ୍ଷା କରିଆସିଛି । ତେବେ ପଶ୍ଚିମବଙ୍ଗରେ କିଛି ବନ୍ଧୁ ମୋତେ ଓଡ଼ିଶାର ସାହିତ୍ୟିକ ବୋଲି ଜାଣନ୍ତି । ତା'ର କାରଣ ହେଲା ମୋର ଅନେକ ଗଳ୍ପ 'ଆଜକାଲ୍' ପୂଜା ସଂଖ୍ୟା 'ଷ୍ଟେଟ୍‌ସମ୍ୟାନ୍' ପୂଜା ସଂଖ୍ୟା ଏବଂ ଆଉ କେତେକ ବଙ୍ଗଳା ପତ୍ରିକାରେ ନିୟମିତ ପ୍ରକାଶ ପାଇଥାଏ । ତେଣୁ କଲିକତା ହେଉ ବା ପଶ୍ଚିମବଙ୍ଗର ଆଉ କେତେକ ଅଞ୍ଚଳରେ ମୋତେ ସାମ୍ବାଦିକ ଓ ସାହିତ୍ୟିକ ରୂପେ ଜାଣନ୍ତି । ସାମ୍ବାଦିକ ରୂପେ ମୋତେ ଜାଣନ୍ତି କାରଣ ଆଜ୍‌କାଲ୍ ବଙ୍ଗଳା ଦୈନିକର ମୁଁ ଓଡ଼ିଶା ପ୍ରତିନିଧି ଏବଂ ମୋର ସମ୍ବାଦଗୁଡ଼ିକ ମୋ ନାମରେ ପ୍ରକାଶ ପାଇଥାଏ । ତାହା ହିଁ ପଶ୍ଚିମବଙ୍ଗରେ ମୋତେ ଜଣେ ସାମ୍ବାଦିକର ପରିଚୟ ଦେଇଥାଏ । ମୋର ଜୀବନରେ ସାମ୍ବାଦିକତା କ୍ଷେତ୍ରରେ ଅନେକ ସମୟରେ ଅଯାଚିତ ସୁଯୋଗ ପାଇଛି । ଏଇ ଯେମିତି ହିନ୍ଦି ଦୈନିକ 'ସନ୍‌ମାର୍ଗ' ଖବର କାଗଜ ୧୯୮୮ ମସିହାରେ ମୋତେ ପତ୍ର ଲେଖି ଭୁବନେଶ୍ୱର ପ୍ରତିନିଧି ରୂପେ କାର୍ଯ୍ୟ କରିବା ପାଇଁ ଅନୁରୋଧ କରିଥିଲେ । ସେତେବେଳେ ମୁଁ ସ୍ୱରାଜ୍ୟ ଖବର କାଗଜର ସମ୍ପାଦକ ସହ ଆଜକାଲ୍ ବଙ୍ଗଳା ଦୈନିକର ଭୁବନେଶ୍ୱର ପ୍ରତିନିଧି ଥିଲି । 'ସନ୍‌ମାର୍ଗ' ଖବର କାଗଜ ମୋତେ ମାସକୁ ଦୁଇହଜାର ଟଙ୍କା ପାରିଶ୍ରମିକ ଦେବାପାଇଁ ତାଙ୍କ ପତ୍ରରେ ଉଲ୍ଲେଖ କରିଥିଲେ । ମୁଁ ଯଦିଓ ହିନ୍ଦି କହିପାରେ ଓ ପଢ଼ିପାରେ କିନ୍ତୁ ଲେଖିପାରେ ନାହିଁ । ତେଣୁ ସେମାନଙ୍କୁ ଇଂରାଜୀରେ ଲେଖି ପଠାଇବା ପାଇଁ ପ୍ରସ୍ତାବ ଦେଇଥିଲି । ସେମାନେ ରାଜି ହୋଇଥିଲେ, ମୁଁ କେତେକ ସ୍ୱତନ୍ତ୍ର ରିପୋର୍ଟ ଇଂରାଜୀରେ ଲେଖି ପଠାଉଥିଲି । ସେଗୁଡ଼ିକ ହିନ୍ଦିରେ ମୋ

ବାଇଲାଇନ୍‌ରେ ପ୍ରକାଶ ପାଉଥିଲା । ସନ୍‌ମାର୍ଗରେ ମୁଁ ଚାରିବର୍ଷ ପର୍ଯ୍ୟନ୍ତ କାର୍ଯ୍ୟ କରିଥିଲି । ତା'ପରେ ଅକ୍ଷମତା ପ୍ରକାଶ କରି ଛାଡ଼ି ଦେଇଥିଲି ।

ପୂର୍ବରୁ କହିଛି ମୁଁ ଇଂରାଜୀ ଦୈନିକ ନ୍ୟାସନାଲ୍ ହେରାଲ୍ଡରେ ପ୍ରାୟ ଆଠବର୍ଷ ପର୍ଯ୍ୟନ୍ତ (୧୯୭୨ରୁ ୧୯୮୦) କାର୍ଯ୍ୟ କରିଥିଲି । ମାତ୍ର ସେ କାଗଜ ଖବର ଅପେକ୍ଷା ବିଜ୍ଞାପନ ପାଇଁ ବେଶୀ ଚାପ ଦେଲେ । କେତେକ ବିଜ୍ଞାପନ ମୁଁ ମଧ୍ୟ ପଠାଇଥିଲି । ମାତ୍ର ମୋର କମିଶନ ବାବଦ ଟଙ୍କା ଦେବାରେ ସେମାନେ ନାନା ପ୍ରକାର ଫନ୍ଦିଫିକର କଲେ । ମୁଁ କାଗଜ ମୁଖ୍ୟ ପରିଚାଳକ ଯଶପାଲ ଜାଗୁରଙ୍କୁ ଏକ କଡ଼ା ଚିଠି ଲେଖି କାଗଜ ଛାଡ଼ିଦେଲି । ନ୍ୟାସନାଲ୍ ହେରାଲ୍ଡ ସହ ମୁଁ କରେଣ୍ଟ(ଇଂରାଜୀ ସାପ୍ତାହିକ)ରେ ମଧ୍ୟ ୧୯୭୨ରୁ ୮୨ ମସିହା ପର୍ଯ୍ୟନ୍ତ କାର୍ଯ୍ୟ କରିଥିଲି । ଏହି କାଗଜରେ ମୋର ନିୟମିତ ଲେଖା ପ୍ରକାଶ ପାଉଥିଲା । ଏ କାଗଜରେ ମଧ୍ୟ ମୁଁ ଦେଉଥିବା ସମସ୍ତ ଖବର ମୋ ନାମରେ ପ୍ରକାଶ ପାଉଥିଲା । ଏ କାଗଜର ସହକାରୀ ସମ୍ପାଦକ ବି.ଜି. କୋଶୀ ମୋ ସହ ସମ୍ବାଦ ପାଇଁ ନିୟମିତ ଯୋଗାଯୋଗ ରଖୁଥିଲେ ।

ଏ କାଗଜରେ କାମ କରିବା ମୋତେ ସାମ୍ବାଦିକତା ପେଶା କ୍ଷେତ୍ରରେ ସନ୍ତୁଷ୍ଟ କରିଥିଲା । କାରଣ କାଗଜ କ'ଣ ଚାହୁଁଛି କିଭଳି ଖବର ଚାହୁଁଛି ତାହା କାଗଜର ସମ୍ପାଦକ ବା ସମ୍ପାଦକୀୟ ବିଭାଗ ଦାୟିତ୍ୱରେ ଥିବା ଲୋକେ ଚିଠି ଲେଖି ଜଣାଇବାରେ ପ୍ରତିନିଧି ସେଇ ଅନୁସାରେ କାମ କରେ ।

ନ୍ୟାସନାଲ୍ ହେରାଲ୍ଡରେ ମୁଁ କାମ କରିବାବେଳେ ଜଣେ ଓଡ଼ିଆ ଯୁବକ ପ୍ରକାଶ ପାତ୍ର ଏଠାରେ ସହ ସମ୍ପାଦକ ରୂପେ ସାମ୍ବାଦିକତା ଆରମ୍ଭ କରିଥିଲେ । ସେଇଠି ଦିଲ୍ଲୀ ଅଫିସ୍‌ରେ ତାଙ୍କ ସହ ମୋର ପରିଚୟ ହେଲା । ଦିଲ୍ଲୀ ଗଲେ କାଗଜ ଅଫିସ୍‌ରେ ତାଙ୍କ ସହ ପ୍ରାୟ ଦେଖାହୁଏ । ତେବେ ଦି'ବର୍ଷ ପରେ ସେ ନ୍ୟାସନାଲ୍ ହେରାଲ୍ଡ ଛାଡ଼ି ପାଟ୍ରିୟଟ୍‌ରେ ଯୋଗଦେଲେ ଏବଂ ସେଠାରୁ ହିନ୍ଦୁସ୍ଥାନ ଟାଇମ୍‌ସକୁ ଗଲେ । ହିନ୍ଦୁସ୍ଥାନ ଟାଇମ୍‌ସରେ ସେ ସମ୍ପାଦକ ଭଳି ମର୍ଯ୍ୟାଦାବନ୍ତ ପଦବୀକୁ ପଦୋନ୍ନତି ପାଇଥିଲେ । ସେ ନ୍ୟାସନାଲ୍ ପ୍ରେସ୍‌କ୍ଲବ୍‌ର ଦୁଇଥର ସଭାପତି ରୂପେ ନିର୍ବାଚିତ ହୋଇଥିଲେ । ଜଣେ ଓଡ଼ିଆ ସାମ୍ବାଦିକ ଦିଲ୍ଲୀରେ ଏତେ ଉଚ୍ଚତାକୁ ଉଠିବା ବାସ୍ତବରେ ଓଡ଼ିଶା ପାଇଁ ଗର୍ବର ବିଷୟ । ସେ ଏବେ ଟେଲିଗ୍ରାଫ୍ ଇଂରାଜୀ ଦୈନିକର ଭୁବନେଶ୍ୱରରେ ଆବାସିକ ସମ୍ପାଦକ । ପ୍ରକାଶ ଏବେ ମଧ୍ୟ ସେଇ ପୂର୍ବ ସମ୍ପର୍କ ଓ ସମ୍ମାନ ମୋତେ ଦିଅନ୍ତି ।

ସାମ୍ବାଦିକତା ପାଇଁ ମୁଁ ଓଡ଼ିଶା ଓ ଓଡ଼ିଶା ବାହାରେ ବହୁ ଅନୁଷ୍ଠାନ ଦ୍ୱାରା ସମ୍ମାନିତ ହୋଇଛି । ଏଥିମଧ୍ୟରେ ଜଷ୍ଟିସ୍ ରାଜକିଶୋର ଦାସ ସ୍ମୃତି ପୁରସ୍କାର ଅନ୍ୟତମ । ଏହି ପୁରସ୍କାର ବାବଦରେ ମୋତେ ପଚିଶ ହଜାର ଟଙ୍କା, ମାନପତ୍ର ଓ ଶାଲ୍ ଉପହାର ଦିଆଯାଇଥିଲା । ଓଡ଼ିଶାରେ ସାମ୍ବାଦିକତା କ୍ଷେତ୍ରରେ ଏହା ସର୍ବୋଚ୍ଚ ପୁରସ୍କାର । ଏହି ପୁରସ୍କାର ଭଳି ମୁଁ ମୋର ସାମ୍ବାଦିକତା ପେଶା ଶତାଧିକ ସମ୍ମାନ ଓ ପୁରସ୍କାର ଲାଭ କରିଛି । ଏଥିମଧ୍ୟରୁ ଚଣ୍ଡିଗଡ଼ର ବିଖ୍ୟାତ ସଂସ୍କୃତି ବିଶ୍ୱବିଦ୍ୟାଳୟ ପ୍ରାଚୀନ କଳା କେନ୍ଦ୍ର ପକ୍ଷରୁ ଶ୍ରେଷ୍ଠ ସାମ୍ବାଦିକ ସମ୍ମାନ ରୂପେ କୋଡ଼ିଏ ହଜାର ଟଙ୍କା, ରୌପ୍ୟ ଫଳକ ଓ ଶାଲ୍, ଟ୍ରାନ୍ସପରେନ୍ସି ଇଣ୍ଟର ନ୍ୟାସନାଲ୍ ପକ୍ଷରୁ ଦୁର୍ନୀତି ବିରୁଦ୍ଧରେ ଶ୍ରେଷ୍ଠ ଇନ୍‌ଭେଷ୍ଟିଗେଟିଭ୍ ଜର୍ଣ୍ଣାଲିଜମ୍ ପାଇଁ, ଉତ୍କଳ ସାହିତ୍ୟ ସମାଜ ପକ୍ଷରୁ ଉଦୟନାଥ ଷଡ଼ଙ୍ଗୀ ଶ୍ରେଷ୍ଠ ସାମ୍ବାଦିକ ପୁରସ୍କାର, ହରିଦ୍ୱାର ଗୁରୁକୁଳ ବିଶ୍ୱବିଦ୍ୟାଳୟ ପକ୍ଷରୁ ଜାତୀୟ ସାମ୍ବାଦିକ ସମ୍ମାନ(ଜାତୀୟ ପତ୍ରକାରିତା ସମ୍ମାନ) ସ୍ୱରୂପ ମାନପତ୍ର, ଶାଲ୍ ଓ ଗଙ୍ଗାଜଳ ପୂର୍ଣ୍ଣ କମଣ୍ଡଳୁ ଦେଇ ସମ୍ବର୍ଦ୍ଧନା କରିଥିଲେ ।

ବୟସର ଅପରାହ୍ନରେ ପହଞ୍ଚିଥିଲେ ମଧ୍ୟ ସାମ୍ବାଦିକତା ମତେ ଛାଡ଼ି ନାହିଁ କି ମୁଁ ସାମ୍ବାଦିକତାକୁ ଛାଡ଼ିନାହିଁ । ବଞ୍ଚିଥିବା ଯାଏ ଲେଖୁଥିବି ଏବଂ ଲେଖୁଥିବା ଯାଏ ବଞ୍ଚିଥିବି ଏହି ଆଦର୍ଶରେ ମୁଁ କାମ କରୁଛି । ହଠାତ୍ ୨୦୦୭ ଅକ୍ଟୋବର ମାସରେ କୌମୀ ପତ୍ରିକା ଗ୍ରୁପ୍‌ର ଜେନେରାଲ୍ ମ୍ୟାନେଜର ନରେଶ ମାଲ୍‌ହୋତ୍ରା ଏକ ପତ୍ର ଲେଖି ତାଙ୍କ ପତ୍ରିକା ଗୋଷ୍ଠିର ରେସିଡେଣ୍ଟ ରିପ୍ରେଜେଣ୍ଟେଟିଭ୍ ରୂପେ ଭୁବନେଶ୍ୱରରେ କାର୍ଯ୍ୟକରିବା ପାଇଁ ଅନୁରୋଧ କରି ଏକ ପତ୍ର ଲେଖିଥିଲେ । ମୁଁ ତା'ର କୌଣସି ଉତ୍ତର ଦେଇନଥିଲି । ପରେ ୨୦୦୮ ଜାନୁଆରୀ ୨୩ ତାରିଖରେ ଆଉ ଏକ ପତ୍ର ଲେଖି ମୋର ମତାମତ ଚାହିଁଲେ ଏବଂ ମୋର କାମ କରିବାର ସର୍ତ୍ତ କ'ଣ ଲେଖିବା ପାଇଁ ଅନୁରୋଧ କଲେ । ମୁଁ ମୋର ଅସୁବିଧା ଜଣାଇ ତାଙ୍କ ଖବର କାଗଜଗୁଡ଼ିକ ପାଇଁ କାମ କରିବାର ଅକ୍ଷମତା ଜଣାଇ ପତ୍ର ଦେଲି । ସାମ୍ବାଦିକତା ପାଇଁ ସମ୍ମାନ ଓ କାର୍ଯ୍ୟ କରିବା ପାଇଁ ପ୍ରସ୍ତାବ ଜଣେ ସାମ୍ବାଦିକ ପକ୍ଷରେ ଏହାଠାରୁ ବଳି ଆଉ ବଡ଼ କଥା କ'ଣ ଥାଇପାରେ ?

ଅନେକ ସମୟରେ ଅତୀତକୁ ମନେ ପକାଇବାବେଳେ ପୁରୁଣା ଦିନର ବନ୍ଧୁମାନେ ମନେପଡ଼ନ୍ତି । ସେମାନଙ୍କ ଫଟୋ ଦେଖିଲାବେଳେ ସେମାନଙ୍କ ସମ୍ପର୍କରେ ଅନେକ କଥା ମନକୁ ଆସେ । ପୁରୁଣା ଆଲବମ୍ ଖୋଲୁ ଖୋଲୁ ହଠାତ୍ ୧୯୬୮ ମସିହାର ଏକ ସାମ୍ବାଦିକ ସମ୍ମିଳନୀର ଫଟୋ ମିଳିଲା । ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ମହାରାଜ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ସାମ୍ବାଦିକ ସମ୍ମିଳନୀ । ଏହି ସମ୍ମିଳନୀରେ ସେତେବେଳର ଝାନୁ ସାମ୍ବାଦିପ ଏନ୍.ଆର୍. ସ୍ୱାମୀ(ହିନ୍ଦୁ), ଗୋପାଳ ମିଶ୍ର(ଅମୃତ ବଜାର ପତ୍ରିକା), ବାଳକୃଷ୍ଣ କାନୁନ୍‌ଗୋ(ପ୍ରଜାତନ୍ତ୍ର), ଆର୍.ପି. ଶାସ୍ତ୍ରୀ(ଓଡ଼ିଶା ଟାଇମ୍ସ), ବିଜୟ ଦୀକ୍ଷିତ(ଇଣ୍ଡିଆନ୍ ଏକ୍ସପ୍ରେସ୍), ନିଖିଳ ଭଟ୍ଟାଚାର୍ଯ୍ୟ(ୟୁ.ଏନ୍.ଆଇ.), ପ୍ରଭାକର ମିଶ୍ର(ଅଲ୍ ଇଣ୍ଡିଆ ରେଡିଓ), ସଚ୍ଚି ଦାସ(ବ୍ଲିଜ୍) ଓ ମୁଁ ଏବଂ ସ୍ୱରାଷ୍ଟ୍ର ସଚିବ ବିପିନ ବିହାରୀ ରଥ ଏବଂ ପବ୍ଲିକ୍ ରିଲେସନ୍, ସଂସ୍କୃତି ସଚିବ ହେରମ୍ବ ନାରାୟଣ ଦାସ ମହାପାତ୍ର(ଆଇ.ଏ.ଏସ୍.) ପ୍ରମୁଖ ଉପସ୍ଥିତ ଥିଲେ । ଏମାନଙ୍କ ମଧ୍ୟରେ ମୁଁ ଥିଲି ସର୍ବକନିଷ୍ଠ । ସେତେବେଳେ ମୋ ବୟସ ମାତ୍ର ୨୮ ବର୍ଷ । ଏମାନଙ୍କ ମଧ୍ୟରୁ ଏବେ ଅନେକ ପରଲୋକଗତ । ନିଖିଳ ଭଟ୍ଟାଚାର୍ଯ୍ୟ ଦିଲ୍ଲୀରେ ଅଛନ୍ତି । ପ୍ରଭାକର ମିଶ୍ର ଦିଲ୍ଲୀରେ ଥିଲେ ବୋଲି ଶୁଣିଥିଲି । ବାକି ଅନ୍ୟମାନେ ପରଲୋକଗତ । ମୁଖ୍ୟମନ୍ତ୍ରୀ ସିଂହଦେଓ ମଧ୍ୟ ପରଲୋକଗତ । ଏମାନଙ୍କ ନିକଟରୁ ମୁଁ ସାମ୍ବାଦିକତାର ଅନେକ ଗୁଢ଼ ତତ୍ତ୍ୱ ଶିଖିଛି । ବିଶେଷକରି ଗୋପାଳବାବୁଙ୍କର ବିଧାନସଭା ବିବରଣୀ ଉପରେ ରିପୋର୍ଟିଂ ମତେ ଅନେକ ସାହାଯ୍ୟ କରିଛି । ସେତେବେଳେ ମାତ୍ର ଚାରୋଟି ଓଡ଼ିଆ ଖବରକାଗଜ ପ୍ରକାଶ ପାଉଥିଲା । ସମାଜ, ପ୍ରଜାତନ୍ତ୍ର, ମାତୃଭୂମି ଏବଂ ସ୍ୱରାଜ୍ୟ । ପୂର୍ବରୁ ଗଣତନ୍ତ୍ର ପରିଷଦର ମୁଖପତ୍ର ରୂପେ ଗଣତନ୍ତ୍ର ନାମରେ ଏକ ଖବରକାଗଜ ପ୍ରକାଶ ପାଉଥିଲା । ମାତ୍ର ୧୯୬୦ରେ ଏହା ବନ୍ଦ ହୋଇଗଲା । ପରେ ଗଣତନ୍ତ୍ର ପରିଷଦ ରାଜ ଗୋପାଳଚାରୀଙ୍କର ସ୍ୱତନ୍ତ୍ର ଦଳରେ ମିଶିଯିବା ପରେ ୧୯୬୬ରେ ଗଣତନ୍ତ୍ର ଖବରକାଗଜ ରାଜାଜୀଙ୍କର ସ୍ୱରାଜ୍ୟ କାଗଜ ଅନୁକରଣରେ ସ୍ୱରାଜ୍ୟ ନାମରେ ପ୍ରକାଶ ପାଇଲା । ପରେ ଏହି ସ୍ୱରାଜ୍ୟ ଖବରକାଗଜର ମୁଁ ସମ୍ପାଦକ ରୂପେ ୧୯୮୫ରୁ ୧୯୯୩ ପର୍ଯ୍ୟନ୍ତ କାର୍ଯ୍ୟ କରିଥିଲି । ବିଜୁ ପଟ୍ଟନାୟକଙ୍କ କଳିଙ୍ଗ ଖବରକାଗଜ ପ୍ରାୟ ବନ୍ଦ ହୋଇଯାଇଥିଲା ।

ମୁଁ ବର୍ତ୍ତମାନ ଓଡ଼ିଶାର ଏକମାତ୍ର ସାମ୍ବାଦିକ ଯେ ୧୯୬୪ ମସିହାରୁ ରାଜ୍ୟସ୍ତରୀୟ ସାମ୍ବାଦିକ ରୂପେ ସ୍ୱୀକୃତିପ୍ରାପ୍ତ ହୋଇଛି । ୧୯୬୪ ମସିହାରେ ମାତୃଭୂମି କର୍ତ୍ତୃପକ୍ଷ ମୋତେ ଭୁବନେଶ୍ୱର ଠାରେ ଅବସ୍ଥାପିତ କଲେ । ସେତେବେଳେ

ବାଳକୃଷ୍ଣ କାନୁନ୍‌ଗୋ ମାତୃଭୂମିର ଭୁବନେଶ୍ୱର ପ୍ରତିନିଧି ଥିଲେ । ୧୯୬୩ ମସିହା ଅକ୍ଟୋବର ୨ ତାରିଖରୁ ବୀରେନ୍ ମିତ୍ର ଓଡ଼ିଶାରେ ମୁଖ୍ୟମନ୍ତ୍ରୀ ହେଲେ । ବାଳକୃଷ୍ଣବାବୁ ତାଙ୍କର ଅତ୍ୟନ୍ତ ପ୍ରିୟ ଥିଲେ । ଅନେକ ସମୟରେ ବୀରେନ୍ ମିତ୍ରଙ୍କ ବିରୁଦ୍ଧରେ ସମାଜ-ପ୍ରଜାତନ୍ତ୍ରରେ ଯେଉଁ ଖବର ବାହାରେ ବାଳକୃଷ୍ଣବାବୁ ମାତୃଭୂମିକୁ ତାହା ଦେଉନଥିଲେ । ମାତୃଭୂମି ସ୍ୱାଧୀନ ଓ ନିରପେକ୍ଷ ଖବର କାଗଜ ଥିଲା । ଫଳରେ ବୀରେନ୍ ମିତ୍ରଙ୍କ ବିରୋଧୀ କୌଣସି ଖବର ପ୍ରକାଶ ନପାଇବାରୁ ଏହା ବୀରେନ୍ ମିତ୍ରଙ୍କ ଗୋଡ଼ାଣିଆ କାଗଜ ବୋଲି ପ୍ରଚାର ହେଲା । ତା'ର ଫଳ ସ୍ୱରୂପ ବାଳକୃଷ୍ଣବାବୁଙ୍କୁ କଟକ ବଦଳି କରି ମୋତେ ଭୁବନେଶ୍ୱର ବଦଳି କରାଗଲା । ସେତେବେଳେ ଭୁବନେଶ୍ୱରରେ ସାମଜର ପ୍ରତିନିଧି ଥା'ନ୍ତି ନାରାୟଣ ରଥ ଏବଂ ପ୍ରଜାତନ୍ତ୍ରର ପ୍ରତିନିଧି ଥା'ନ୍ତି ରମେଶ ଧଳ । ମୋତେ ଭୁବନେଶ୍ୱର ପ୍ରତିନିଧି ରୂପେ ସ୍ୱୀକୃତି ଦେବାପାଇଁ ମାତୃଭୂମି ପକ୍ଷରୁ ସୂଚନା ଓ ଲୋକସମ୍ପର୍କ ବିଭାଗକୁ ଲେଖାଗଲା ଓ ମୁଁ ସ୍ୱୀକୃତିପ୍ରାପ୍ତ ହେଲି । ପୁରୁଣା ଫଟୋକୁ ଦେଖି ସେ ସମୟର ଘଟଣା ମନକୁ ଆଚ୍ଛାଦିତ କରେ । ସେ ସମୟରେ ଯେଉଁମାନେ ମନ୍ତ୍ରୀ ଥିଲେ, ଯେଉଁମାନେ ଆଇ.ଏ.ଏସ୍. ଥିଲେ ବର୍ତ୍ତମାନ ମନ୍ତ୍ରୀ ଓ ଆଇ.ଏ.ଏସ୍.ଙ୍କ ସହ ତୁଳନା କରିବା ଯଥାର୍ଥ ହେବ ନାହିଁ ।

୧୯୬୭ ଫେବୃଆରୀ ମାସରେ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ନିର୍ବାଚନ ପ୍ରଚାର କରିବା ପାଇଁ ଓଡ଼ିଶା ଆସିଥିଲେ । ସେ ଚୌଦ୍ୱାର, ବାଙ୍କୀ, ଖୋରଧା ଓ ଭୁବନେଶ୍ୱରରେ ଚାରୋଟି ଜନସଭାରେ ଉଦ୍‌ବୋଧନ ଦେଇଥିଲେ । ମୁଁ ସାମ୍ବାଦିକ ଭାବେ କେବଳ ଚୌଦ୍ୱାରକୁ ଛାଡ଼ିଦେଲେ ଅନ୍ୟ ତିନୋଟି ସଭାରେ ଉପସ୍ଥିତ ରହି ରିପୋର୍ଟିଂ କରିଥିଲି । ମୋର ରିପୋର୍ଟରେ ଏ ତିନୋଟି ସ୍ଥାନରେ କଂଗ୍ରେସ ପରାସ୍ତ ହେବ ବୋଲି ମୁଁ ଲେଖିଥିଲି । ଚୌଦ୍ୱାରରେ ମଧ୍ୟ କଂଗ୍ରେସ ପରାସ୍ତ ହେଲା । ବାଙ୍କୀରେ ଡାକ୍ତର ଯୋଗେନ୍ଦ୍ର ଚନ୍ଦ୍ର ରାଉତ, ଖୋରଧାରେ ଗଜପତି ବୀରକିଶୋର ଦେବ, ଭୁବନେଶ୍ୱରରେ ଡକ୍ଟର ହରେକୃଷ୍ଣ ମହତାବ ଏବଂ ଚୌଦ୍ୱାରରେ ପ୍ରଜା ସୋସାଲିଷ୍ଟ ଆକୁଳାନନ୍ଦ ବେହେରା ବିଜୟୀ ହୋଇଥିଲେ । ଯୋଗେଶ ଚନ୍ଦ୍ର ରାଉତ ସ୍ୱାଧୀନ ଏବଂ ଅନ୍ୟ ଦୁଇଜଣ ଜନ କଂଗ୍ରେସ ପ୍ରାର୍ଥୀ ରୂପେ ବିଜୟ ଲାଭ କରିଥିଲେ । ମୋର ସାମ୍ବାଦିକ ଜୀବନରେ ଏହା ଥିଲା ପ୍ରଥମ ନିର୍ବାଚନ ସମୀକ୍ଷା ।

ଶ୍ରୀମତୀ ଗାନ୍ଧୀଙ୍କ ଶେଷ ନିର୍ବାଚନ ସଭା ଥିଲା ଭୁବନେଶ୍ୱର ପ୍ୟାରେଡ୍ ପଡ଼ିଆ । ଏହି ପଡ଼ିଆ ଶ୍ରୀମତୀ ଗାନ୍ଧୀଙ୍କ ମୃତ୍ୟୁ ପରେ ୧୯୮୫ ମସିହାରେ ଇନ୍ଦିରା ଗାନ୍ଧୀ ପାର୍କରେ ପରିଣତ ହୋଇଛି । ଭୁବନେଶ୍ୱରରେ ସେ ବର୍ଷ କଂଗ୍ରେସ ପକ୍ଷରୁ ସତ୍ୟପ୍ରିୟ ମହାନ୍ତି ନିର୍ବାଚନ ଲଢୁଥିଲେ । ତାଙ୍କ ବିପକ୍ଷରେ ଥିଲେ ଜନ କଂଗ୍ରେସର ଡକ୍ଟର ହରେକୃଷ୍ଣ ମହତାବ । ସନ୍ଧ୍ୟା ପାଞ୍ଚଟା-ସାଢ଼େ ପାଞ୍ଚଟା ବେଳକୁ ସଭା ଆରମ୍ଭ ହେଲା । ମଞ୍ଚରେ ଥିଲେ ଶ୍ରୀମତୀ ଗାନ୍ଧୀ, ବିଜୁ ପଟ୍ଟନାୟକ ଓ ସତ୍ୟପ୍ରିୟ ମହାନ୍ତି । ସଭା ଆରମ୍ଭ ହେବାପରେ ପରେ ଟେକା ବୃଷ୍ଟି ହେଲା । ଶ୍ରୀମତୀ ଗାନ୍ଧୀ ଟେକାକୁ ଖାତିର ନକରି କହିବା ପାଇଁ ଠିଆ ହେବା ମାତ୍ରେ ଏକ ବଡ଼ ଟେକା ତାଙ୍କ ନାକରେ ମାଡ଼ ହେଲା । ସେ ବସିପଡ଼ିଲେ । ପରେ ପରେ ବିଜୁ ପଟ୍ଟନାୟକ ତାଙ୍କୁ ଧରି ଧରି ତଳକୁ ଆଣିବାବେଳେ ସେ ବିଜୁବାବୁଙ୍କ ହାତ ଛିଞ୍ଚାଡ଼ି ଦେଇ ତଳେ ପହଞ୍ଚି ବରଫ ମାଗିଲେ । ମୁଁ ସେଇଠି ଥିଲି । ଶ୍ରୀମତୀ ଗାନ୍ଧୀଙ୍କ ନାକରୁ ରକ୍ତ ବୋହି ତାଙ୍କ ଶାଢ଼ୀ ରକ୍ତାକ୍ତ ହୋଇଗଲା । ସେ ତାଙ୍କ ଶାଢ଼ୀ କାନିକୁ ନାକରେ ଚାପି ଧରିଥା'ନ୍ତି । ମୁଁ ଏକଥା ଦେଖିଲି । ମୋର ସାମ୍ବାଦିକତା ମୋତେ ଚଳଚଞ୍ଚଳ କଲା । ମୋ କ୍ୱାର୍ଟର ଅଳ୍ପ ଦୂରରେ । ମୁଁ ଖୁବ୍ ଜୋର୍‌ରେ ଦୌଡ଼ି ଦୌଡ଼ି ଘରକୁ ଆସିଲି । ସେତେବେଳକୁ ସନ୍ଧ୍ୟା ୬ଟା ବାଜିବାକୁ ଯାଉଛି । ମୁଁ ଟେଲିଫୋନ୍ ଉଠାଇ ସାଙ୍ଗେ ସାଙ୍ଗେ କଟକ ମାତୃଭୂମିକୁ ଫୋନ୍ କଲି । ସେପଟୁ ବିଚିତ୍ରାନନ୍ଦ କର ଧରିଲେ । ମୁଁ ତାଙ୍କୁ ଟେକାମାଡ଼ରେ ଶ୍ରୀମତୀ ଗାନ୍ଧୀଙ୍କ ନାକ ଫାଟିଲା ଏବଂ କ୍ୟାପିଟାଲ୍ ହସ୍‌ପିଟାଲ୍‌ରେ ଚିକିତ୍ସିତ

ବୋଲି ତାକି ଘଟଣା ସମ୍ପର୍କରେ କହି ସେହିଦିନ ମାତୃଭୂମିରେ ଦେବାପାଇଁ କହିଲି । ସେତେବେଳେ ସବୁ ଖବର କାଗଜ ସନ୍ଧ୍ୟାରେ ପ୍ରକାଶ ପାଉଥିଲା । ମାତୃଭୂମି ସେତେବେଳକୁ ବାହାରିବା ଉପରେ । ବିଚିବାବୁ କାଗଜ ଛାପା ବନ୍ଦ କରି ପ୍ରଥମ ପୃଷ୍ଠାରେ ଦୁଇଟି ଖବର କାଢ଼ି ସେ ସ୍ଥାନରେ 'ଭୁବନେଶ୍ୱର ଠାରେ ଟେକାମାଡ଼ରେ ଶ୍ରୀମତୀ ଗାନ୍ଧୀ ଗୁରୁତର ଆହତ' ଶିରୋନାମାରେ ପାଞ୍ଚକଲମ ହେଡ୍ ଲାଇନ୍‌ରେ ଖବର ପ୍ରକାଶ ପାଇଲା । ଖବର ତଳେ ଆମ ପ୍ରତିନିଧି ବରେନ୍ଦ୍ର କୃଷ୍ଣ ଧଳଙ୍କ ଠାରୁ ବୋଲି ମଧ ଲେଖାଥିଲା । ସେଦିନ ସନ୍ଧ୍ୟା ଓ ପରଦିନ ସକାଳେ ଚାରିଆଡ଼େ ମାତୃଭୂମିର ଅସମ୍ଭବ ଚାହିଦା । ଜଣେ ସାମ୍ବାଦିକ ପକ୍ଷରେ ଏହାଠାରୁ ବଳି ଆଉ ବଡ଼ ପୁରସ୍କାର କ'ଣ ଥାଇପାରେ । ସେ ଦିନ ସନ୍ଧ୍ୟାରେ ମୋର ଉପସ୍ଥିତ ବୁଦ୍ଧି ମୋତେ ଓ ମୋ କାଗଜ ପାଇଁ ଏକ କୃତିତ୍ୱ ଆଣିଦେଲା । ସେତେବେଳେ ଟି.ଭି. ନଥିଲା । ରେଡ଼ିଓରେ ସନ୍ଧ୍ୟା ସାଢ଼େ ସାତଟା ଖବରରେ ଏହା କହିଲା । ସେତେବେଳକୁ 'ମାତୃଭୂମି' ବଜାରରେ ଛାଇ ହୋଇଯାଇଛି ।

୧୯୬୭ ନିର୍ବାଚନ ଅନେକଙ୍କ ଭେଳା ବୁଡ଼ାଇ ଦେଇଥିଲା । ବିଜୁ ପଟ୍ଟନାୟକ, ନୀଳମଣି ରାଉତରାୟ, ସତ୍ୟପ୍ରିୟ ମହାନ୍ତି ସମସ୍ତେ ପରାଜିତ ହୋଇଥିଲେ । ବିଜୁ ପଟ୍ଟନାୟକ ପାଟକୁରାରୁ ଚକ୍ରଧର ଶତପଥୀ ନାମରେ ଜଣେ ସ୍କୁଲ ଶିକ୍ଷକଙ୍କ ଠାରୁ ପରାସ୍ତ ହୋଇଥିଲେ । ମହତାବ ବାସୁଦେବ ପୁରରୁ ନୀଳମଣି ରାଉତରାୟଙ୍କୁ ଏବଂ ଭୁବନେଶ୍ୱରରେ ସତ୍ୟପ୍ରିୟ ମହାନ୍ତିଙ୍କୁ ପରାସ୍ତ କରିଥିଲେ । ଭୁବନେଶ୍ୱର ଆସନରୁ ଇସ୍ତଫା ଦେବାପରେ ସେଠାରେ ତାଙ୍କ ପତ୍ନୀ ଶ୍ରୀମତୀ ସୁଭଦ୍ରା ମହତାବ ବିଜୟିନୀ ହୋଇଥିଲେ । ପବିତ୍ର ମୋହନ ପ୍ରଧାନ ଉଭୟ ଆଠଗଡ଼ ଓ ପାଲଲହଡ଼ାରୁ ବିଜୟୀ ହୋଇ ଆଠଗଡ଼ରୁ ଇସ୍ତଫା ଦେଇଥିଲେ । ତାଙ୍କ ସ୍ଥାନରେ ରାଧାନାଥ ରଥ ଆଠଗଡ଼ରୁ ଉପ ନିର୍ବାଚନରେ ବିଜୟୀ ହୋଇ ବିଧାନସଭାକୁ ଆସିଥିଲେ । ସାମ୍ବାଦିକ ଜୀବନରେ ଏହିସବୁ ରିପୋର୍ଟିଂ କରିବାବେଳେ ଇତିହାସକୁ ଅନେକ ସମୟରେ ଲୋକଲୋଚନକୁ ଆଣିବାକୁ ଭଲଲାଗେ । ୧୯୬୭ ନିର୍ବାଚନରେ ସ୍ୱତନ୍ତ୍ର ଜନକଂଗ୍ରେସ ସରକାର ଗଢ଼ିବାବେଳେ ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓ ମୁଖ୍ୟମନ୍ତ୍ରୀ ଏବଂ ପବିତ୍ର ମୋହନ ପ୍ରଧାନ ଉପ ମୁଖ୍ୟମନ୍ତ୍ରୀ ହୋଇଥିଲେ । ସଦାଶିବ ତ୍ରିପାଠୀ ନବରଙ୍ଗପୁରରୁ ବିଜୟଲାଭ କରି ବିରୋଧୀ ଦଳ ନେତା ଦାୟିତ୍ୱ ନେଇଥିଲେ । ମୋର ଏ ସମସ୍ତ ନେତାମାନଙ୍କ ସହ ଘନିଷ୍ଠତା ଥିଲା । ମହତାବ, ସିଂହଦେଓ, ପବିତ୍ରବାବୁ ଏବଂ ସଦାଶିବବାବୁ ସମସ୍ତଙ୍କର ମୁଁ ଶ୍ରଦ୍ଧା ଲାଭ କରିଥିଲି । ଏମାନଙ୍କର ଅନେକ ସ୍ୱତନ୍ତ୍ର ସାକ୍ଷାତକାର ମଧ ମୁଁ ନେଇଛି ।

ଶେଷରେ ପବିତ୍ରବାବୁଙ୍କୁ ବ୍ରିଟେନ ହାଇକମିଶନର ଭୁବନେଶ୍ୱର ଆସିଥିବାବେଳେ ସୌଜନ୍ୟମୂଳକ ସାକ୍ଷାତ କରିଥିଲେ । ହାଇକମିଶନର ପଚାରିଲେ- 'ହ୍ୱାଟ୍ ଇଜ୍ ଦି ମିନିଂ ଅଫ୍ ପବିତ୍ର ମୋହନ ପ୍ରଧାନ ?' ପବିତ୍ରବାବୁ ସାଙ୍ଗେସାଙ୍ଗେ କହିଲେ ଇଟ୍‌ଇଜ୍ ପିୟୋର ଚାର୍ମିଂ ଜେନେରାଲ । ସାହେବ ଯିବା ପରେପରେ ମୁଁ ଏବଂ ହିନ୍ଦୁସ୍ଥାନ ଷ୍ଟାଣ୍ଡାର୍ଡର ସାମ୍ବାଦିକ ନୀତିଶ ଚକ୍ରବର୍ତ୍ତିପବିତ୍ରବାବୁଙ୍କ ଘରେ ପହଞ୍ଚିଲୁ । ସାହେବଙ୍କ ସହ କ'ଣ କଥାହେଲେ ବୋଲି ପଚାରିବାରେ ସେ କହିଲେ ସାହେବ ମୋର ଇଂରେଜୀ ନାମ କ'ଣ ବୋଲି ପଚାରୁଥିଲା । ମୁଁ କହିଲି ପିଓରମାନେ ପବିତ୍ର, ଚାର୍ମିଂମାନେ ମୋହନ ଏବଂ ଜେନେରାଲମାନେ ପ୍ରଧାନ । ଆମେ ପବିତ୍ର ବାବୁଙ୍କ ବୁଦ୍ଧିକୁ ତାରିଫ କଲୁ ।

ଅନେକ ସମୟରେ ଜୀବନ ଏଭଳି କିଛି ପରୀକ୍ଷାର ସମ୍ମୁଖୀନ ହୁଏ ଯାହା ପୂର୍ବରୁ କଳ୍ପନା କରାଯାଇ ନଥାଏ । ମୋ ଜୀବନରେ ମୁଁ ଦୁଇ ଦୁଇଥର ଏଭଳି ପରୀକ୍ଷାର ସମ୍ମୁଖୀନ ହୋଇଛି । ଯେତେବେଳେ ଈଶ୍ୱରଙ୍କ ଦୟା ହିଁ ମୋତେ

ବଞ୍ଚାଇ ରଖିଛି । ଏହା ମୋର ଈଶ୍ୱର ବିଶ୍ୱାସ ପାଇଁ ହେଉ ବା ଡାକ୍ତରମାନଙ୍କର ନିପୁଣତା ପାଇଁ ହେଉ ମୁଁ ବଞ୍ଚିଛି । ମୋର ୧୯୮୭ ଡିସେମ୍ବର ୩ ତାରିଖରେ ହାର୍ଣ୍ଣିଆ ଅପରେସନ ହୋଇଥିଲା । ଅପରେସନ୍‌କୁ ମୋର ଖୁବ୍ ଡର । କ୍ୟାପିଟାଲ ହସପିଟାଲ୍‌ରେ ଅପରେସନ ପାଇଁ ଆଡ଼ମିଟ୍ ହୋଇ ମୁଁ ଦି'ଦିଥର ଘରକୁ ପଳାଇ ଆସିଥିଲି । ମାତ୍ର ହାର୍ଣ୍ଣିଆ ମଝିରେ କଷ୍ଟ ହେବାରୁ ବାଧ ହୋଇ ଅପରେସନ୍ ହେବାପାଇଁ ନିଷ୍ପତ୍ତି ନେଲି । ମୋର କେମିତି କେଜାଣି ଡାକ୍ତର ଅଜୟ ମିଶ୍ରଙ୍କ ଉପରେ ବିଶ୍ୱାସ ଥାଏ । ସେତେବେଳେ ଅଜୟ ମିଶ୍ର ଭୁବନେଶ୍ୱର ମୁନିସିପାଲଟି ହସପିଟାଲ୍‌ର ସୁପରିଟେଣ୍ଡେଣ୍ଟ ଥିଲେ । ମୁଁ ସ୍କୁଟର ଧରି ପୁରୁଣା ଭୁବନେଶ୍ୱର ମୁନିସିପାଲଟି ହସପିଟାଲ୍‌କୁ ଗଲି । ସେଠି ଅଜୟ ମିଶ୍ରଙ୍କୁ ଦେଖାକରି ମୋ ଅଭିପ୍ରାୟ ଜଣାଇଲି । ସିଏ ହସିହସି କହିଲେ ସକାଳୁ ସକାଳୁ ଜୋକ୍ କରିବା ପାଇଁ କେହି ମିଳିଲେ ନାହିଁ ? ଆପଣ ଯଦି ଅପରେସନ ହେବେ ତେବେ ତ ଡାକ୍ତରଖାନାର ଭାଗ୍ୟ ଖୋଲିବ । ଆପଣ ଆଜି ଆଡ଼ମିସନ୍ ହୋଇଯା'ନ୍ତୁ- କାଲି ମୁଁ ଆସିଲାବେଳକୁ ଉଠି ସ୍କୁଟର ଧରି ପଳାଇବେ । ମୁଁ ହସିହସି କହିଲି ନା-ଅଜୟବାବୁ ମୁଁ ସିରିୟସ୍ । ବହୁତ କଷ୍ଟ ହେଉଛି । ଆଜି ଆଡ଼ମିସନ୍ କରିଦିଅନ୍ତୁ । ସେ କହିଲେ ସତକଥା କହୁଛନ୍ତି ? ମୁଁ ତାଙ୍କୁ ପ୍ରତିଶ୍ରୁତି ଦେଲି ଅପରେସନ ପରେ ମୁଁ ଆପଣଙ୍କ ଡାକ୍ତରଖାନା ଛାଡ଼ିବି । ଅଜୟବାବୁ କ'ଣ ଭାବିଲେ- ମୋ ମୁହଁକୁ ଚାହିଁଲେ । ସେତେବେଳେ ମୁନିସିପାଲଟି ଡାକ୍ତରଖାନାର ଉପର ମହଲା ନର୍ସିଂହୋମ୍ ନୂଆକରି ତିଆରି ହୋଇଥାଏ । ତାରି ଭିତରେ ସବୁଠୁ ବଡ଼ ତିନି ନମ୍ବର ରୁମ୍‌କୁ ମୋତେ ଆଲଟ୍ କଲେ । ତାଙ୍କ ଷ୍ଟାଫ୍‌କୁ ଡାକି ରୁମ୍ ପରିଷ୍କାର କରି ସଫା ବେଡ଼ସିଟ୍, ସଫା ତକିଆ ଖୋଳ ଉଭୟ ରୋଗୀ ଓ ତା' ଆଟେଣ୍ଡାଣ୍ଟଙ୍କ ପାଇଁ ପକାଇବାକୁ କହିଲେ । ମୁଁ ଘରକୁ ଫୋନ୍ କରି ମୋ ପତ୍ନୀଙ୍କୁ ମୋର ଲୁଙ୍ଗି ତଉଲିଆ ଦି' ଦି ସେଟ୍ ଆଣିବାକୁ କହିଲି । ସେ ସବୁ ଶୁଣି ଆଶ୍ଚର୍ଯ୍ୟ ହୋଇ କହିଲେ କ'ଣ ପିଲାଖେଳ ଭଳି ଏମିତି କହୁଛ ? ମୁଁ ତାଙ୍କୁ ବୁଝେଇ ଘରେ ପିଲାଙ୍କୁ ମୋ ଶଳା ଏବଂ ଶାଳିମାନଙ୍କ ଦାୟିତ୍ୱରେ ରଖି ଡାକ୍ତରଖାନା ଆସିବାକୁ କହିଲି । ସେ ଆସିଲେ । ଡିସେମ୍ବର ୩ ତାରିଖରେ ମୁନିସିପାଲିଟି ଡାକ୍ତରଖାନାରେ ମୋର ହାର୍ଣ୍ଣିଆ ଅପରେସନ ହେଲା । ଦିନ ପ୍ରାୟ ଚାରିଟା ବେଳକୁ ମୁଁ ବେଡ଼୍‌କୁ ଆସିଲି । ସେଦିନ ମୁଁ ଶୋଇଗଲି । ପରଦିନ ମୋ ଅପରେସନ ସ୍ଥାନରୁ ଠୋପେ ଠୋପେ ରକ୍ତ ପଡ଼ିବା ମୋ ସ୍ତ୍ରୀ ଲକ୍ଷ୍ୟକଲେ । ସେ ମୋତେ ଏକଥା କହିଲେ ଏବଂ ଅଜୟବାବୁଙ୍କୁ ଡାକି ଜଣାଇଲେ । ଅଜୟବାବୁ ପ୍ରଥମେ କେଉଁଠି କିଛି ଭିଡ଼ିମୋଡ଼ି ହୋଇ ରକ୍ତ ବାହାରୁଥିବା କହିଲେ । ମାତ୍ର ରକ୍ତ ବନ୍ଦ ହେଲାନାହିଁ । ମୋର ଅପରେସନ ହୋବା ଶୁଣି ବହୁ ସାମ୍ବାଦିକ ବନ୍ଧୁ, ମୋର ଆଉ କେତେକ ବନ୍ଧୁ, କିଛି ମନ୍ତ୍ରୀ ଓ ରାଜନୀତିକ ନେତାମାନେ ଡାକ୍ତରଖାନାରେ ଭିଡ଼ ଜମାଇଲେ । ତେବେ ମୋର ପରିସ୍ଥିତି କ୍ରମେ ଖରାପ ଆଡ଼କୁ ଗଲା । ରାତି ଦଶଟା/ ଏଗାରଟା ବେଳକୁ ମୋତେ ପୁଣି ଅପରେସନ ଥିଏଟରକୁ ନିଆଗଲା । ତା' ସାଙ୍ଗେ ସାଙ୍ଗେ ଦରକାର ପଡ଼ିଲେ କଟକ ମେଡ଼ିକାଲକୁ ପଠାଇବା ପାଇଁ ଆମ୍ବୁଲାନ୍ସ ବ୍ୟବସ୍ଥା କରାଗଲା । ମୁଁ ପରେ ଯାହା ଶୁଣିଲି ସ୍ୱାସ୍ଥ୍ୟମନ୍ତ୍ରୀ ନିରଞ୍ଜନ ପଟ୍ଟନାୟକ କଟକ ମେଡ଼ିକାଲ୍ ସର୍ଜିକାଲ ପ୍ରଫେସରଙ୍କୁ ଫୋନ୍ କରି ମୋର ଅପରେସନ୍ ପାଇଁ ଦରକାର ପଡ଼ିଲେ ଆସିବାକୁ ମଧ ନିର୍ଦ୍ଦେଶ ଦେଇଥିଲେ । ନିରଞ୍ଜନ ମୋର ବାଲ୍ୟବନ୍ଧୁ । ସେ ମୋ ଅପରେସନ କଥା ଶୁଣି ମୁନ୍‌ସିପାଲଟି ଡାକ୍ତରଖାନାକୁ ମଧ ଆସିଥିଲେ ।

ସେ ଦିନ ରାତି ପ୍ରାୟ ତିନିଟା ପର୍ଯ୍ୟନ୍ତ ଏହି ଅପରେସନ ଚାଲିଲା । ତା'ପରେ ମୋତେ ମୋ ରୁମ୍‌କୁ ଅଣାଗଲା । ଡକ୍ଟର ଅଜୟ ମିଶ୍ର, ଡକ୍ଟର ଜଗଦିଶ ଆଚାର୍ଯ୍ୟ ଏବଂ ଅନ୍ୟମାନେ ମୋର କ୍ଷତସ୍ଥାନକୁ ସମ୍ପୂର୍ଣ୍ଣ ବ୍ୟାଣ୍ଡେଜ୍ କରିଥିଲେ ।

ମୁଁ ପରଦିନ କେତେବେଳେ ଉଠିଲି ମୋର ମନେନାହିଁ । ତେବେ ଦିନ ଚାରିଟାବେଳେ ଅଜୟବାବୁ, ଜଗଦିଶବାବୁ ମୋ ରୁମ୍‌କୁ ଆସି ମୋର ଅପରେସନ ସ୍ଥାନ ପରୀକ୍ଷା କଲେ । ଅଜୟବାବୁ କହିଲେ ରିଷ୍କ କଟିଗଲା ।

ସେ ସମୟରେ ମୁଁ ପୁରା ଚେନ୍ ସ୍ମୋକର୍ ଥିଲି । ଦିନକୁ ପାଖାପାଖି ତିନି ପ୍ୟାକେଟ୍ ଇଣ୍ଡିଆ କିଙ୍ଗ୍‌ସ ସିଗାରେଟ ଟାଣୁଥିଲି । ମୋର ଯେଉଁଦିନ ଅପରେସନ ହେବ ସେଦିନ ପାରାଦ୍ୱୀପରୁ ଡକ୍ଟର ରବି ଦାସ ନାମରେ ଜଣେ ବନ୍ଧୁ ଏବଂ ଆମ କାଗଜ('ସ୍ୱରାଜ୍ୟ'ର ମୁଁ ସେତେବେଳେ ସମ୍ପାଦକ ଥିଲି)ର ପାରାଦ୍ୱୀପ ପ୍ରତିନିଧି ମୋ ପାଖକୁ ଭୁବନେଶ୍ୱର ଆସିଥିଲେ । ମୁଁ ମୁନ୍‌ସିପାଲଟି ଡାକ୍ତରଖାନାରେ ଥିବା କଥା ଶୁଣି ଦୁହେଁ ମୋ ପାଖକୁ ଆସିଲେ । ମୁଁ ସେଇଦିନ ଆଡ୍‌ମିସନ ନେଇଥାଏ । ଡକ୍ଟର ଦାସ ବିଖ୍ୟାତ ଜାହାଜ କମ୍ପାନି ଚୋଗ୍‌ଲେ ବ୍ରଦର୍ସର ପାରାଦ୍ୱୀପର ମୁଖ୍ୟ । ସେ ଆସିବାବେଳେ ମୋ ପାଇଁ ଦାମୀ ବିଦେଶୀ ସିଗାରେଟ୍ ହେଉ ବା ସ୍କଚ୍ ହେଉ ପ୍ରାୟ ଆଣନ୍ତି । ସେଦିନ ସେ ଗୋଟିଏ କାର୍ଟୁନ(ଦଶ ପ୍ୟାକେଟ୍) ଷ୍ଟେଟ୍ ଏକ୍ସପ୍ରେସ୍ ୫୫୫ ସିଗାରେଟ୍ ଆଣିଥିଲେ । ମୋ ସହ କଥାବାର୍ତ୍ତା ହୋଇ ଦୁହେଁ ବିଦାୟ ନେଲେ । ମୁଁ ସିଗାରେଟ୍ କାର୍ଟୁନ୍‌ରୁ ଗୋଟେ ପ୍ୟାକେଟ୍ କାଢ଼ି ସେଥିରୁ ଗୋଟେ ସିଗାରେଟ୍ ମୁହଁରେ ଲଗାଇଲି । ମୁଁ ସିଗାରେଟ୍ ଟାଣୁଥିବାବେଳେ ଅଜୟବାବୁ ଆଉ ମୋର ବନ୍ଧୁ ଡାକ୍ତର ଜଗନ୍ନାଥ ମହାପାତ୍ର ରୁମ୍ ଭିତରକୁ ପଶିଆସିଲେ । ମୁଁ ସିଗାରେଟ୍ ଟାଣୁଥିବା ଦେଖି ଅଜୟବାବୁ କହିଲେ, ବରେନ୍ଦ୍ରବାବୁ- ଆପଣଙ୍କୁ ମୋର ଅନୁରୋଧ ଅନ୍ତତଃ ପନ୍ଦରଦିନ ପାଇଁ ସିଗାରେଟ୍ ଛାଡ଼ିଦିଅନ୍ତୁ । ତା' ନହେଲେ କାଶ ହେଲେ ଷ୍ଟିଚ୍ ଛିଡ଼ିଗଲେ ଆପଣ-ମୁଁ ଦୁହେଁ ହଇରାଣ ହେବା । ପ୍ଲିଜ୍ ମୋ କଥା ମାନନ୍ତୁ । ଜଗନ୍ନାଥ ମୋର ବେଡ୍‌ରେ ଷ୍ଟେଟ୍ ଏକ୍ସପ୍ରେସ୍ କାର୍ଟୁନ ଦେଖି କହିଲା ଏ ସିଗାରେଟ୍ ଏଇନେ ବ୍ରାହ୍ମଣମାନଙ୍କୁ ଦାନ କରିଦେ । ମୁଁ ହସି ହସି ତାକୁ ଦି' ପ୍ୟାକେଟ୍ ଏବଂ ଅଜୟବାବୁଙ୍କୁ ଦି' ପ୍ୟାକେଟ୍ ସିଗାରେଟ୍ ଦେଲି । ପରେ ଆଉ କିଛି ବନ୍ଧୁ ଯେଉଁମାନେ ମୋତେ ଦେଖିବାକୁ ଆସିଲେ ସେମାନଙ୍କ ମଧ୍ୟରୁ ଯେଉଁମାନେ ଧୂମପାୟୀ ସେମାନଙ୍କୁ ସେସବୁ ବାଣ୍ଟିଦେଲି । ମୋର ମନେଅଛି ୧୯୮୭ ଡିସେମ୍ବର ୨ ତାରିଖରେ ମୋ ଜୀବନର ମୁଁ ଶେଷ ସିଗାରେଟ୍ ଟାଣିଥିଲି । ତା'ପରେ ମୁଁ ଆଉ ସିଗାରେଟ୍ ଛୁଇଁନି । ପରେ ଯେଉଁମାନେ ଏକଥା ଦେଖିଲେ ସେମାନେ ଆଶ୍ଚର୍ଯ୍ୟ ହୋଇ ମୋତେ ପଚାରିଲେ ଆପଣ କ'ଣ ପ୍ରକୃତରେ ସିଗାରେଟ୍ ଛାଡ଼ି ଦେଇଛନ୍ତି ? ନା- ଲୁଚେଇ ଲୁଚେଇ ଘରେ ପିଉଛନ୍ତି ? ମୁଁ ହସେ- କହେ କାହାକୁ ଲୁଚେଇବି ? ମୋ ପଇସାରେ ମୁଁ ପିଉଥିଲି । ଲୁଚେଇବି କାହିଁକି ? ମୁଁ ନିଜେ ମଧ ଆଶ୍ଚର୍ଯ୍ୟ ହୁଏ । ପ୍ରକୃତରେ ସିଗାରେଟ ଟାଣିବାକୁ ଆଉ କେଜାଣି କାହିଁକି ମନ ଡାକେ ନାହିଁ ।

ପ୍ରତିବର୍ଷ ଡିସେମ୍ବର ୨୪ ତାରିଖ ଓ ୨୫ ତାରିଖ ଲେଖକ ସାମ୍ମୁଖ୍ୟ ପକ୍ଷରୁ ସାହିତ୍ୟୋତ୍ସବ ଅନୁଷ୍ଠିତ ହୁଏ । ୧୯୮୭ ଡିସେମ୍ବର ୩ ଓ ୪ ତାରିଖରେ ମୋର ଅପରେସନ ପାଇଁ ମୁଁ ସେବର୍ଷ ସମ୍ବଲପୁର ସାହିତ୍ୟୋତ୍ସବକୁ ଯିବା ସମ୍ଭବ ହେଲାନାହିଁ । ଡାକ୍ତରଖାନାରେ ମୁଁ ସାତ/ଆଠଦିନ ରହିଥିଲି । ସାହିତ୍ୟୋତ୍ସବ କିପରି ହେବ ଏବଂ କିଏ ଦାୟିତ୍ୱ ନେବ ସେ ସମ୍ପର୍କରେ ମୁଁ ସେଇଠି ରହି ବିଭିନ୍ନ ଲୋକଙ୍କୁ ଡାକି ଆଲୋଚନା କରିଥିଲି । ଜାନକୀ ବଲ୍ଲଭ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ଥିଲେ । କିଶୋର ପଟେଲଙ୍କୁ ସମ୍ବଲପୁର ସାହିତ୍ୟୋତ୍ସବ ଦାୟିତ୍ୱ ଦିଆଯାଇଥିଲା । ସୁଧାଂଶୁ ମୋହନ ରାଉତରାୟ ମଧ ସାହିତ୍ୟିକ ପ୍ରତିନିଧିମାନଙ୍କର ରହିବା ବ୍ୟବସ୍ଥା ଦେଖୁଥିଲେ । ସମ୍ବଲପୁରରେ ନାନା ଅବ୍ୟବସ୍ଥା ହୋଇଥିଲା । ପ୍ରତି ଡେଲିଗେଟ୍‌ମାନଙ୍କ ପାଇଁ ସମ୍ବଲପୁରୀ ବ୍ୟାଗ୍ ଓ ଖାତା ପେନସିଲ୍‌କୁ ଲେଖକ ସାମ୍ମୁଖ୍ୟର ଜଣେ ସଭ୍ୟ ଆଣି ବଜାରରେ ବିକ୍ରି କରିଦେଇଥିବା ଜଣାପଡ଼ିଥିଲା । ତା'ପରେ ତାଙ୍କୁ ସାମ୍ମୁଖ୍ୟରୁ ବାହାର କରି

ଦିଆଯାଇଥିଲା । ମୁଁ ପ୍ରାୟ ମାସକ ପରେ ପୁରା ଆରୋଗ୍ୟଲାଭ କରିଥିଲି । ଆରୋଗ୍ୟ ହେବାପରେ ପୁଣି ନିଜର କାମରେ ଲାଗିଗଲି । ସେତେବେଳେ ୧୯୮୫ରୁ ପୁସ୍ତକମେଳା ଆରମ୍ଭ ହୋଇଥିଲା । ପ୍ରତିବର୍ଷ ଫେବୃଆରୀ ୨୬ରୁ ମାର୍ଚ୍ଚ ୭ ତାରିଖ ପର୍ଯ୍ୟନ୍ତ ଏହି ପୁସ୍ତକମେଳା ସେତେବେଳେ ସୂଚନା ଭବନର ପଛପାଖ ପଡ଼ିଆରେ ଅନୁଷ୍ଠିତ ହେଉଥିଲା । ମୁଁ ସବୁ ବିଷୟ ବୁଝାବୁଝି କରୁଥିଲି । ୧୯୮୭ରେ ଆମର ମୁଖ୍ୟ ଅତିଥି ହୋଇ ଆସିବାର ଥିଲା ବିଖ୍ୟାତ ବଙ୍ଗଳା ଲେଖକ ସମରେଶ ବସୁ । ମାତ୍ର ଅସୁସ୍ଥତା ବଶତଃ ସେ ଆସିପାରିଲେ ନାହିଁ । ତାଙ୍କୁ ଆଣିବା ପାଇଁ ମୁଁ କଲିକତାରେ ମୋର ବନ୍ଧୁ ସାମ୍ବାଦିକ ପ୍ରଦ୍ୟୋତ ଭଦ୍ରଙ୍କୁ ଦାୟିତ୍ୱ ଦେଇଥିଲି । ସେ କିନ୍ତୁ ଆସିଥିଲେ । ତାଙ୍କୁଇ ମୁଁ ବିଶିଷ୍ଟ ଅତିଥି କରି ଉଦ୍‌ଘାଟନ ଉତ୍ସବରେ ମଧରେ ବସାଇଦେଇଥିଲି । ସେ ଅମୃତ ବଜାର ପତ୍ରିକାର ଚିଫ୍ ସବ୍ ଏଡିଟର ଥିଲେ ।

ଦ୍ୱାବିଂଶ ଭୁବନେଶ୍ୱର ପୁସ୍ତକମେଳାରେ ଯୋଗ ଦେଇଥିବା ଆନ୍ତର୍ଜାତିକ ଖ୍ୟାତି ସମ୍ପନ୍ନ ବାଲାଂଦେଶ ଲେଖିକା ତସଲିମା ନାସରିନ୍‌ଙ୍କ ସହ ରମାକାନ୍ତ ରଥ, ସାତକଡ଼ି ହୋତା ଓ ମୁଁ ଏକ ପୁସ୍ତକ ଉନ୍ମୋଚନ କରୁଛୁ ।

ଜୀବନରେ ମୋର ଦ୍ୱିତୀୟ ବିପତ୍ତି- ଯାହା ପ୍ରଥମ ବିପତ୍ତି ଅପେକ୍ଷା ଅଧିକ ଭୟାନକ ତା’ ହେଲା ମୋର ସ୍ୱର ପେଟିକାରେ କର୍କଟ ରୋଗର ପରିପ୍ରକାଶ । ମୋର ନିଜର ଅବହେଳା ଯୋଗୁ ଏହି ଭୟାନକ ରୋଗରେ ମୁଁ ଆକ୍ରାନ୍ତ ହେଲି । ମୁଁ ଏକ ସମୟରେ ପ୍ରବଳ ଧୂମପାୟୀ ଥିଲି । ପ୍ରତିଦିନ ପାଖାପାଖି ଷାଠିଏରୁ ସତୁରିଟି ସିଗାରେଟ ଟାଣୁଥିଲି । ମୁଁ ସେତେବେଳେ ସବୁଠାରୁ ଦୁର୍ମୂଲ୍ୟ ସିଗାରେଟ୍ ‘ଇଣ୍ଡିଆ କିଙ୍ଗ୍‌ସ’ ଟାଣୁଥିଲି । ଏକଥା ମୋ ସହ ମିଶୁଥିବା ବନ୍ଧୁମାନେ ସମସ୍ତେ ଜାଣନ୍ତି । ଯେଉଁମାନେ ମୋତେ ଜାଣିନଥିଲେ ସେମାନେ ଆଶ୍ଚର୍ଯ୍ୟ ହେଉଥିଲେ ମୁଁ ଏତେ ଦୁର୍ମୂଲ୍ୟ ସିଗାରେଟ୍ ପାଇଁ କେଉଁଠୁ ଟଙ୍କା ପାଉଛି ? ମୋର ହାର୍ଣ୍ଣିଆ ଅପରେସନ ଦିନ(ଡିସେମ୍ବର ୩, ୧୯୮୭ ମସିହା) ଠାରୁ ମୁଁ ସିଗାରେଟ ଟାଣିବା ବନ୍ଦ କରିଦେଇଥିଲି । ଗତ ସଂଖ୍ୟାରେ ମୁଁ ମୋର ହାର୍ଣ୍ଣିଆ ଅପରେସନ ବିଷୟ ଲେଖିଥିଲି । ରାତିରେ ଯେତେବେଳେ ମୋର ଦ୍ୱିତୀୟଥର ପାଇଁ ଅପରେସନ ହେଲା ସେତେବେଳେ ମୋର ଅନେକ ସାମ୍ବାଦିକ ବନ୍ଧୁ ସେଠାରେ ଉପସ୍ଥିତ ଥିଲେ । ସାମ୍ବାଦିକ ଲଳିତ ପାଟଯୋଶୀ, ଆଳୟ ମହାନ୍ତି, ରତିକାନ୍ତ ମହାନ୍ତି, ରାମ ଦାଶ ପ୍ରମୁଖ । ରାତି ତିନିଟା ପର୍ଯ୍ୟନ୍ତ ମୋର ଅପରେସନବେଳେ ଉପସ୍ଥିତ ଥିଲେ । ଏକଥା ପରଦିନ ମୋର ଜ୍ଞାନ ଫେରିବା ପରେ ମୋ ପତ୍ନୀ ମୋତେ କହିଥିଲେ । ମୋର ସାନ ମଝିଆ ଶଳା ବିବେକ ଜେନା(ସଚ୍ଚି) ସେତେବେଳେ ସ୍ୱରାଜ୍ୟର ଷ୍ଟାଫ୍ ରିପୋର୍ଟର ଭାବେ କାମ କରୁଥିଲା । ସେ ମଧ ରାତିରେ ସେଠି ଉପସ୍ଥିତ ଥିଲା । ପରଦିନ ମୋତେ ଦେଖିବା ପାଇଁ ଅନେକ ବନ୍ଧୁ ହସ୍‌ପିଟାଲ୍‌କୁ ଯାଇଥିଲେ । ସମସ୍ତଙ୍କ ନାମ ଏଠାରେ ଦେଇପାରୁ ନାହିଁ ଏଇଥିପାଇଁ ଯେ କାହା ନାମ ଛାଡ଼ିଗଲେ ତାଙ୍କ ପ୍ରତି ଅନ୍ୟାୟ କରିବି ।

ମୋର ଧୂମପାନ ସମୟ ମୋଟ ତେଇଶ ବର୍ଷ । ୧୯୬୪ରୁ ୧୯୮୭ । ମୁଁ ଧୂମପାନ ଛାଡ଼ି ଦେଇଥିଲେ ମଧ ତା’ର କୁପ୍ରଭାବ ମୋ ଶରୀରରେ ଥିଲା । ୧୯୯୪ ଅଗଷ୍ଟ ମାସ ପ୍ରଥମ ସପ୍ତାହରେ ମୁଁ ଅନୁବାଦ ପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ଆଣିବା ପାଇଁ ଦିଲ୍ଲୀ ଯାଇଥିଲି । ସେତେବେଳେ ମୋର ବନ୍ଧୁ ଡାକ୍ତର କୃପାସିନ୍ଧୁ ଭୋଇ କେନ୍ଦ୍ରରେ ସ୍ୱାସ୍ଥ୍ୟ ରାଷ୍ଟ୍ରମନ୍ତ୍ରୀ(ସ୍ୱାଧୀନ) ଦାୟିତ୍ୱରେ ଥିଲେ । ମୁଁ ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଥିବା ପରଦିନ ଖବରକାଗଜରେ ଫଟୋ ସହ ପ୍ରକାଶ ପାଇଥିଲା । ସେ ବର୍ଷ ମୋଟ ୧୭ଜଣ ଏହି ଅନୁବାଦ ପୁରସ୍କାର

ପାଇଥିଲେ । ସମସ୍ତଙ୍କର ଛୋଟ ଛୋଟ ଫଟୋ ହିନ୍ଦୁସ୍ଥାନ ଟାଇମ୍ସରେ ପ୍ରକାଶ ପାଇଥିଲା । ଦି ଷ୍ଟେଟ୍‌ସମ୍ୟାନ୍ ଓ ଇଣ୍ଡିଆନ୍ ଏକ୍ସପ୍ରେସ୍‌ରେ ମୋର ଦୁଇଟି ଛୋଟ ସାକ୍ଷାତକାର ମଧ୍ୟ ପ୍ରକାଶ ପାଇଥିଲା । ଦୂରଦର୍ଶନରେ ମଧ୍ୟ ମୋର ଏକ ସାକ୍ଷାତକାର ପ୍ରଚାର ହୋଇଥିଲା । ଏତେସବୁ ହୋଇଥିଲା ଏଇଥିପାଇଁ ଯେ ମୁଁ ୧୯୯୦ରୁ ୧୯୯୩ ପର୍ଯ୍ୟନ୍ତ ଜାତୀୟ ସାମ୍ବାଦିକ ୟୁନିୟନର ସର୍ବଭାରତୀୟ ସଭାପତି ଥିଲି । ଦିଲ୍ଲୀର ଅନେକ ସାମ୍ବାଦିକ ବନ୍ଧୁ ମୋ ପ୍ରତି ଶ୍ରଦ୍ଧାପୂର୍ବକ ଏହା କରିଥିଲେ । ସକାଳୁ ଏ ସମସ୍ତ ଖବରକାଗଜରେ ଫଟୋ ଓ ସାକ୍ଷାତକାର ଦେଖି ଡାକ୍ତର ଭୋଇ ମୋତେ ଟେଲିଫୋନ୍ କଲେ । ମୁଁ ଓଡ଼ିଶା ଭବନରେ ରହୁଥିଲି । ଟେଲିଫୋନ୍ ଧରିଲି । ସେପଟୁ ଡାକ୍ତର ଭୋଇ କହିଲେ ବାଃ- ବନ୍ଧୁ- ଦିଲ୍ଲୀ ଆସି ଏତେ ବଡ଼ ପୁରସ୍କାର ହାସଲ କରି ଖବରକାଗଜରେ ସାକ୍ଷାତକାର ଦେଲ । ଅଥଚ ତମର ଏ ପୁରୁଣା ବନ୍ଧୁ କଥା ମନେପଡ଼ିଲାନି । ମୁଁ ଗାଡ଼ି ପଠାଉଛି । ଆସ- ଏଇଠି ଲଞ୍ଚ୍ କରିବା । ମୁଁ କହିଲି ତମେ ତ ଗାଁକୁ ଯାଇଥିଲ ବୋଲି ତମ ଘରୁ କହିଲେ । କେବେ ଆସିଲ ? ସେ କହିଲେ- କାଲି ସନ୍ଧ୍ୟାରେ ପହଞ୍ଚିଲି । ଯାହାହେଉ ମୁଁ ଭାରି ଖୁସି । ସବୁଠୁ ବେଶୀ ଖୁସି ଆଜି ତମ ଫଟୋ ଆଉ ସାକ୍ଷାତକାର ଦେଖି । ମୁଁ କହିଲି ମୋ ପିଲାମାନେ ସମସ୍ତେ ଆସିଛନ୍ତି । ସେ କହିଲେ ସମସ୍ତେ ଆସିବ । ମୋର ଅନୁରୋଧ । ମୋ ଘରେ ଲଞ୍ଚ୍ ହେବ । ଅଧଘଣ୍ଟାକ ପରେ ଗାଡ଼ି ଆସିଲା । ଆମେ ସମସ୍ତେ ଗଲୁ । ଡକ୍ଟର ଭୋଇ ଓଡ଼ିଶାରେ ମନ୍ତ୍ରୀ ଥିବା ସମୟରେ(୧୯୭୨ରୁ ୧୯୭୬) ମୋର ଅତ୍ୟନ୍ତ ଘନିଷ୍ଠ ଥିଲେ । ପ୍ରାୟ ଅଧିକାଂଶ ଦିନ ସନ୍ଧ୍ୟାରେ ଆମର ଆଡ୍ଡା ଜମେ । ତାଙ୍କ ଘରେ ଜଳସେଚନ ମନ୍ତ୍ରୀ ଦିବ୍ୟଲୋଚନ ଶେଖର ଦେଓ ଜଙ୍ଗଲ ମନ୍ତ୍ରୀ ବ୍ରହ୍ମାନନ୍ଦ ବିଶ୍ୱାଳ, ମୁଁ ଏବଂ ମଝିରେ ମଝିରେ ହିନ୍ଦୁସ୍ଥାନ ଟାଇମ୍ସର ସାମ୍ବାଦିକ ବଙ୍କିମ୍ ଦାସ ଏହି ଆସରରେ ଯୋଗ ଦିଅନ୍ତି । ଡାକ୍ତର ଭୋଇଙ୍କ ଘରେ ପହଞ୍ଚିବା ପରେ କଥାବାର୍ତ୍ତାବେଳେ ମୋର କଣ୍ଠସ୍ୱରର ଅପ୍-ଡାଉନ୍ ମଝିରେ ମଝିରେ ଲକ୍ଷ୍ୟକରି ସେ କହିଲେ ତମ ସ୍ୱର ଏଭଳି କାହିଁକି ଶୁଣାଯାଉଛି ? ତମେ ଟିକେ ଏଠି ଏମ୍‌ସରେ ଇ.ଏନ୍.ଟି. ପ୍ରଫେସର ଡକ୍ଟର ଡେକାଙ୍କ ଦ୍ୱାରା ପରୀକ୍ଷା କରାଇ ନିଅ । ମୁଁ ତାଙ୍କୁ କହିଦେଉଛି । ସେତେବେଳେ ଡକ୍ଟର ଭୋଇ ଏମ୍‌ସର ଗଭର୍ଣ୍ଣିଂ ବଡ଼ି ଚେୟାରମ୍ୟାନ୍ ଥିଲେ । ସେ ଡକ୍ଟର ଡେକାଙ୍କୁ ଫୋନ୍ କରି ପରଦିନ ୧୧ଟା ବେଳକୁ ସାକ୍ଷାତକାର ଠିକ୍ କରିଦେଲେ । ଆମେ ସେଦିନ ଲଞ୍ଚ୍ ଖାଇ ଓଡ଼ିଶା ଭବନ ଫେରିଲୁ ।

ପରଦିନ ସାଢ଼େ ଦଶଟାବେଳେ ଭୋଇଙ୍କ କାର୍ ଓଡ଼ିଶା ଭବନ ଆସିଲା । ସେଥିରେ ତାଙ୍କ ପି.ଏ. ମଧ୍ୟ ଆସିଥିଲେ । ସେ ମୋତେ ନେଇ ଏମ୍‌ସ ଗଲେ । ସେଠି ପ୍ରଫେସର ଡେକାଙ୍କ ରୁମ୍‌କୁ ଯାଇ ମୋ ସହ ତାଙ୍କର ପରିଚୟ କରାଇଦେଲେ । ସେ ମୋତେ ପରୀକ୍ଷା କରିବା ପରେ କହିଲେ ଧଲ୍ ସାହେବ- ଟିକେ ଅପରେସନ ଥିଏଟର ଯାଇ ସେଠି ପରୀକ୍ଷା କରିବାକୁ ହେବ । ଅଗତ୍ୟା ମୁଁ ଗଲି । ସେସବୁ ଦେଖିବା ପରେ ମୋତେ ଇ.ଏନ୍.ଟି. ଡିପାର୍ଟମେଣ୍ଟ ଗେଷ୍ଟରୁମ୍‌ରେ ସେଦିନ ରହିବାକୁ ପରାମର୍ଶ ଦେଲେ ଏବଂ ପରଦିନ ଗୋଟିଏ ଛୋଟ ଲେଜର୍ ଅପରେସନ ପାଇଁ କହିଲେ । ମୁଁ ଡରିଗଲି । ଏଇମିତି ଅପରେସନ୍‌କୁ ମୋର ଭୟ । ତା'ଛଡ଼ା ଦିଲ୍ଲୀରେ । ମୁଁ ସେ ଗେଷ୍ଟରୁମ୍‌ରେ ନରହି ସିଧା ଓଡ଼ିଶାଭବନ ପଳାଇ ଆସିଲି । ତା'ପରେ ମନେ ହୋଇଥିଲା ସେଦିନ ମୁଁ ସେ ଅପରେସନ୍‌ଟି କରିଦେଇଥିଲେ ପରେ ଏ ମାରାତ୍ମକ ବ୍ୟାଧି ମୋ ଦେହରେ ପରିପ୍ରକାଶ ହୋଇନଥାନ୍ତା । କିନ୍ତୁ ଯାହା ଈଶ୍ୱରଙ୍କ ନିର୍ଦ୍ଦେଶ ତାହା ହିଁ ଘଟିବ । ସେଇ ଡାକ୍ତର ଡେକା ୨୦୦୪ ମସିହା ଅଗଷ୍ଟ ମାସରେ ମୋର କଣ୍ଠନାଳୀରେ ଅପରେସନ୍ କରିଥିଲେ ଏବଂ କଟକ ଆଚାର୍ଯ୍ୟ ହରିହର କର୍କଟରୋଗ ହସ୍‌ପିଟାଲ୍‌ରେ ମାସକ ପାଇଁ ରେଡିଓ ଥେରାପି କରିବାକୁ କହିଥିଲେ । ମୋର

ମନେହେଲା ରୋଗ ଭଲ ହୋଇଗଲା । ବର୍ଷକ ପର୍ଯ୍ୟନ୍ତ କିଛି ଅସୁବିଧା ହେଲାନାହିଁ । ଈଶ୍ୱରଙ୍କୁ ଡାକିଲି । ଭାବିଲି ସବୁ ଠିକ୍ ହୋଇଗଲା ।

## -କର୍କଟ ରୋଗରେ ଆକ୍ରାନ୍ତ-

କିନ୍ତୁ ଈଶ୍ୱରଙ୍କ ଉଦ୍ଦେଶ୍ୟ ଭିନ୍ନ । ଦେଢ଼ବର୍ଷ ପରେ ମୋ କଣ୍ଠନାଳୀରେ ତା'ର ପରିପ୍ରକାଶ ହେଲା । ମୁଁ ମଧ୍ୟପ୍ରଦେଶର ପଞ୍ଚାମାଢ଼ି ଯାଇଥିଲି ୨୦୦୫ ଅଗଷ୍ଟ ମାସରେ । ପଞ୍ଚମାଢ଼ି ପାହାଡ଼-ଜଙ୍ଗଲ ଘେରା ସ୍ୱାସ୍ଥ୍ୟନିବାସ । ସେଠାରେ ଭାରତ ସରକାରଙ୍କ ଏକ ମିଲିଟାରୀ ବେସ୍ ରହିଛି । ମୋ ବଡ଼ ଜ୍ୱାେଇଁ ସେଠାରେ ମେଜର ଥିଲେ । ଝିଅ-ଜ୍ୱାେଇଁଙ୍କ ଅନୁରୋଧରେ ମୁଁ ସେଠିକୁ ଯାଇଥିଲି । ସେଠି ସାହିତ୍ୟିକ ଅଧ୍ୟାପକ ପ୍ରଫୁଲ ତ୍ରିପାଠୀଙ୍କ ସହ ଦେଖାହେଲା । ତାଙ୍କ ପୁଅ ସେଠି କ୍ୟାପଟେନ୍ ଥିଲା । ଆମେ ସେଠି ରହିବା ସମୟରେ କଥାବାର୍ତ୍ତା ହେଉ । ହଠାତ୍ ଦିନେ ମୋର କଣ୍ଠ ପୁରା ପଡ଼ିଗଲା । ମୁଁ ଆଦୌ କଥାବାର୍ତ୍ତା କରିପାରିଲି ନାହିଁ । ଏହା ଘଟିବାର ଦୁଇଦିନ ପରେ ମୁଁ ଭୁବନେଶ୍ୱର ଫେରିଆସିଲି । ମୋର କଣ୍ଠନାଳୀ ଧୀରେଧୀରେ କର୍କଟ ରୋଗରେ ଆକ୍ରାନ୍ତ ହେଲା । ମୋର ମନେହେଲା ସମ୍ଭବତଃ ଶେଷ ସମୟ ଆସୁଛି । ମୋ ପୁଅ ସିଦ୍ଧାର୍ଥ(ଲକ୍କୁ) ସେତେବେଳେ କ୍ରିସ୍‌ଲ କମ୍ପାନୀ ଚାକିରି ଛାଡ଼ି ବମ୍ବେ-ଦିଲ୍ଲୀରୁ ଭୁବନେଶ୍ୱର ଫେରିଆସି ଏଠାରେ କାର୍ଭିକମ୍ପାନୀର ମ୍ୟାନେଜର ହୋଇ ଯୋଗ ଦେଇଥିଲା । ମୋର ଅବସ୍ଥା ଦେଖି ସେ ମୋତେ ବମ୍ବେ ଯିବାକୁ କହିଲା । ମୁଁ ବମ୍ବେ ଯାଇ ବିଖ୍ୟାତ କ୍ୟାନସର ଚିକିତ୍ସକ ଦୀପକ ପାରିଖ୍‌ଙ୍କୁ ଦେଖାକଲି । ଦୀପକ ପାରିଖ ଜଣେ ନାମକରା ଲେପ୍ରୋସ୍କୋପି ସର୍ଜନ । ସେ ମୋତେ ପରୀକ୍ଷା କରି ପୁରା କଣ୍ଠନାଳୀ କାଟି ଉଡ଼ାଇ ଦେବାପାଇଁ କହିଲେ । ସେ ସମୟରେ ବମ୍ବେରେ ଆଚାର୍ଯ୍ୟ ହରିହରର ଇ.ଏନ୍.ଟି. ବିଶେଷଜ୍ଞ ଡାକ୍ତର ସଞ୍ଜୟ ପଣ୍ଡା ମଧ୍ୟ ଥିଲେ । ଡକ୍ଟର ପାରିଖଙ୍କୁ ଅପରେସନ ପାଇଁ କେତେ ଖର୍ଚ୍ଚ ହେବ ପଚାରିବାରେ ସେ ସାଢ଼େ ଚାରିଲକ୍ଷ ଟଙ୍କା ଟୋଟାଲ୍ ପ୍ୟାକେଜ୍ ପଡ଼ିବ ବୋଲି କହିଲେ । ସଞ୍ଜୟ ପଣ୍ଡା ଏକଥା ଶୁଣି ମୋତେ କହିଲେ ବହୁତ ଏକ୍ସପେସିଭ୍ କରି କହୁଛନ୍ତି । ଆସନ୍ତୁ କଟକ ଯାଇ ଆଲୋଚନା କରି ସ୍ଥିର କରିବା । ଇଏ ଜାନୁଆରୀ ୨୪/୨୫ ତାରିଖ କଥା । ଫେବୃଆରୀ ୨୩ ତାରିଖରେ ମୋ ପୁଅର ବାହାଘର । ଫେବୃଆରୀ ୨୬ ତାରିଖ ଭୁବନେଶ୍ୱର ପୁସ୍ତକମେଳା । ଡକ୍ଟର ପାରିଖ ମୋତେ କହିଥିଲେ ସପ୍ତାହକ ମଧ୍ୟରେ ଯଦି ଅପରେସନ୍ ନହୁଏ ତେବେ ଆପଣଙ୍କ ବଞ୍ଚିବା ରିସ୍କ ହୋଇଯିବ । ମୁଁ ଭୁବନେଶ୍ୱର ଫେରିଆସି ଇ.ଏନ୍.ଟି. ବିଶେଷଜ୍ଞ ଡାକ୍ତର ରାଜେନ୍ଦ୍ର ଶତପଥୀଙ୍କୁ ପଚାରିଲି । ସେ କହିଲେ ଆପଣ ସବୁ ସାରନ୍ତୁ ମାର୍ଚ୍ଚ ଶେଷକୁ ଅପରେସନ କରିଦିଅନ୍ତୁ । ମୁଁ ଆଶ୍ୱସ୍ତ ହେଲି । ଫେବୃଆରୀ ୨୩ରେ ମୋ ପୁଅ ବାହାଘର, ୨୪ରେ ଭୋଜି ଏବଂ ଫେବୃଆରୀ ୨୬ରେ ପୁସ୍ତକମେଳା ଆରମ୍ଭ ହୋଇ ମାର୍ଚ୍ଚ ୭ ତାରିଖରେ ଶେଷ ହେଲା । ମାର୍ଚ୍ଚ ୨୧ ତାରିଖରେ ମୁଁ ହାଇଦ୍ରାବାଦ ଆପୋଲୋ ଡାକ୍ତରଖାନାକୁ ଗଲି । ଆପୋଲୋରେ ଭାରତର ଅନ୍ୟତମ ବିଖ୍ୟାତ ଇ.ଏନ୍.ଟି. ସର୍ଜନ ଡାକ୍ତର ଉମାନାଥ ନାୟକଙ୍କ ସହ ପରାମର୍ଶ କଲି । ତାଙ୍କୁ ପରାମର୍ଶ କରିବା ପୂର୍ବରୁ ସେଠାରେ ଅନ୍ୟତମ ପ୍ରସିଦ୍ଧ ହୃଦ୍‌ରୋଗ ବିଶେଷଜ୍ଞ ଡାକ୍ତର ପି.ସି. ରଥଙ୍କ ସହ ଆଲୋଚନା କଲି ଏବଂ ସେ ଡାକ୍ତର ଉମାନାଥ ନାୟକଙ୍କ ଦ୍ୱାରା ଅପରେସନ ପାଇଁ ପରାମର୍ଶ ଦେଲେ ।

ଡାକ୍ତର ନାୟକଙ୍କ ସହ କଥାବାର୍ତ୍ତା ବେଳେ ସେ ଆପୋଲୋରେ ଆଡ଼ମିସନ ନେବାପାଇଁ ପରାମର୍ଶ ଦେଲେ । ମାତ୍ର ମୁଁ ତାଙ୍କୁ ଅନୁରୋଧ କଲି ଭୁବନେଶ୍ୱର ଆସି ଅପରେସନ କରିବାକୁ । ସେ ଏ ସମ୍ପର୍କରେ ଓଡ଼ିଶାର ଜଣାଶୁଣା

କ୍ୟାନସର ବିଶେଷଜ୍ଞ ଡାକ୍ତର କୃପାସିନ୍ଧୁ ପଣ୍ଡାଙ୍କ ସହ ପରାମର୍ଶ କରିବାକୁ କହିଲେ । ସେ କହିଲେ ମାର୍ଚ୍ଚ ୩୦ ତାରିଖରେ କଲିକତା ଠାରେ ତାଙ୍କର ଏକ ଅପରେସନ କରିବାର ଅଛି । ସେଠାରୁ ସେ କଟକ ଆସି ଡକ୍ଟର ପଣ୍ଡାଙ୍କ କ୍ୟାନସର ହସ୍‌ପିଟାଲ୍‌ରେ ଅପରେସନ କରିପାରିବେ । ମୁଁ ରାଜି ହେଲି । ଭୁବନେଶ୍ୱର ଫେରି ଡାକ୍ତର କୃପାସିନ୍ଧୁ ପଣ୍ଡାଙ୍କ ସହ ଆଲୋଚନା କଲି ଏବଂ ଏପ୍ରିଲ ୧ ତାରିଖରେ ଅପରେସନ ପାଇଁ ସ୍ଥିର ହେଲା ।

ଡକ୍ଟର ପଣ୍ଡାଙ୍କ ସହ ମୁଁ କଟକ ଯାଇ ମୋ ଅପରେସନ ସମ୍ପର୍କରେ ଆଲୋଚନା କଲି । ସେ କହିଲେ ଆପଣ କିଛି ବ୍ୟସ୍ତ ହୁଅନ୍ତୁ ନାହିଁ । ଡାକ୍ତର ଉମାନାଥ ନାୟକ ମୋର ବ୍ୟକ୍ତିଗତ ବନ୍ଧୁ । ସେ କଟକ କି ଭୁବନେଶ୍ୱର ଆସିଲେ ମୋ ଘରେ ରୁହନ୍ତି । ତେଣୁ ଏଥର ମଧ ମୋ ଘରେ ରହିବେ ଏବଂ କଟକରେ ମୋ କ୍ୟାନସର ହସ୍‌ପିଟାଲରେ ଅପରେସନ ହେବ । ଏଠି କହିରଖେ ଡକ୍ଟର କୃପାସିନ୍ଧୁ ପଣ୍ଡା ନିଜେ ଜଣେ ବିଖ୍ୟାତ କ୍ୟାନସର ସର୍ଜନ । ତାଙ୍କର କଟକ କେଶରପୁର ଏବଂ କଟକ-ଭୁବନେଶ୍ୱର ରାସ୍ତାର ତେଲେଙ୍ଗାପେଣ୍ଠରେ ଦୁଇଟି କ୍ୟାନସର ହସ୍‌ପିଟାଲ୍ ଅଛି । କଟକ ହସ୍‌ପିଟାଲ ତାଙ୍କର ପୁରଣା ହସ୍‌ପିଟାଲ । ସେଇଠି ମୋର ଅପରେସନ ହେବା ଠିକ୍ ହେଲା । ମାର୍ଚ୍ଚ ୩୧ ତାରିଖ ସନ୍ଧ୍ୟାରେ ମୁଁ କଟକ କେଶରପୁର ହସ୍‌ପିଟାଲ୍‌ରେ ଆଡ୍‌ମିସନ ନେଲି । ମୋର କ୍ୟାନସର ହେବା କଥା ମୁଁ କାହାରିକୁ କହିନଥିଲି । କାରଣ ଏହା କହିବା ବିଷୟ ମଧ ନୁହେଁ । କିନ୍ତୁ କେଜାଣି କିପରି ଏକଥା ବ୍ୟାପିଗଲା । ଅନେକ ବିଶିଷ୍ଟ ଲୋକ ମୋ ବାସଭବନକୁ ଆସି ସେମାନଙ୍କ ସମବେଦନା ଜଣାଇଲେ । ମୁଁ ଆଶ୍ଚର୍ଯ୍ୟ ହୋଇ ପଚାରିଲି ଆପଣଙ୍କୁ ଏକଥା କିଏ କହିଲା ? ମାତ୍ର ସେମାନେ କାହାଠୁ ଶୁଣିଲେ ସେ କଥା କହିପାରିଲେ ନାହିଁ ।

୨୦୦୪ ମସିହା ଜୁନ୍ ମାସ ୩ ତାରିଖରେ ମୁଁ ଅଢ଼େଇମାସ ପାଇଁ ଆମେରିକା ଓ କାନାଡ଼ା ବୁଲିବାକୁ ଯାଇଥିଲି । ନ୍ୟୁୟର୍କର ଟାଇମ୍ ସ୍କୋୟାରରେ ବୁଲିବା ବେଳେ ସେଠି ରୟଟର ନ୍ୟୁଜ୍ ଏଜେନ୍ସି ଅଫିସ୍ ଦେଖିଲି । ଭାରତରେ ପି.ଟି.ଆଇ. ନ୍ୟୁଜ୍ ଏଜେନ୍ସି ଭଳି ରୟଟର ନ୍ୟୁଜ୍ ଏଜେନ୍ସି ପୃଥିବୀର ବିଖାତ ସମ୍ବାଦ ସଂସ୍ଥା । କୌତୁହଳ ବଶତଃ ମୁଁ ସେ ଅଫିସ୍‌କୁ ଗଲି । ରିସିପସନ୍‌ରେ ମୁଁ ଇଣ୍ଡିଆର ପ୍ରମୁଖ ସାମ୍ବାଦିକ ସଂଗଠନର ସଭାପତି ଓ ସାର୍କ ଜର୍ଣ୍ଣାଲିଷ୍ଟ କନ୍‌ଫରେନ୍ସର ତିନିଜଣିଆ ସଭାପତି ମଣ୍ଡଳୀ ସଦସ୍ୟ ବୋଲି ଉଲ୍ଲେଖ କରି ରୟଟର ଏଡିଟରଙ୍କ ସହ ସାକ୍ଷାତ କରିବାକୁ ଚାହିଁଲି । ରିସିପ୍‌ସନରେ ଥିବା ତରୁଣୀ ମୋ କାର୍ଡ଼ ଏବଂ ମୋ ଅଭିପ୍ରାୟ ଟାଇପ୍ କରି ଏଡିଟରଙ୍କ ନିକଟକୁ ପଠାଇଦେଲେ । ଏଡିଟରଙ୍କ ପାଖରୁ ଅଧଘଣ୍ଟାକ ପରେ ମାତ୍ର ୫ ମିନିଟ୍ ସାକ୍ଷାତ ପାଇଁ ଅନୁମତି ଆସିଲା । ମୁଁ ଗଲି । ବିରାଟ ରୁମ୍‌ରେ ଗୋଟିଏ କଣରେ ଏକ କାଚଘର ଭିତରେ ଏଡିଟର ବସିଥିଲେ । ମୁଁ ତାଙ୍କୁ କେବଳ ଦେଖିବା ପାଇଁ ଆଉ ଦୁଇ/ତିନି ମିନିଟ୍ କଥାହେବା ପାଇଁ କହିଲି । ମୁଁ ମୋର ସାମ୍ବାଦିକତା ସମ୍ପର୍କରେ ଏଇ ଇଣ୍ଡିଆ ବିଶେଷକରି ଓଡ଼ିଶାର ସାମ୍ବାଦିକତା ସମ୍ପର୍କରେ ତାଙ୍କର ପ୍ରଶ୍ନର ଉତ୍ତର ଦେଲି । ଶେଷ ବେଳକୁ ମୋର ସ୍ୱର ପଡ଼ିଗଲା ଭଳି ମନେହେଲା । ୫ ମିନିଟ୍ ହୋଇଗଲା । ମୁଁ ତାଙ୍କୁ ଧନ୍ୟବାଦ ଦେଇ ଫେରିଆସିଲି । ସେ ଠିଆହୋଇ ପଡ଼ି ମୋ ସହ କରମର୍ଦ୍ଦନ କରି କବାଟ ପର୍ଯ୍ୟନ୍ତ ବଳେଇଦେଲେ । ମୋ ଝିଅ-ଜୋଇଁ ମୋର ସ୍ୱର ପଡ଼ିଯିବା ଦେଖି କହିଲେ ବାପା-ଆପଣଙ୍କ ସ୍ୱରରେ କିଛି ଗୋଳମାଳ ଅଛି । ମୋ ଝିଅ ମାମା କହିଲା ମୁଁ ଯେଉଁ ମେଡ଼ିକାଲ୍‌ରେ ଅଛି ସେଠି ପରୀକ୍ଷା କରିନେବା । ଆମେ ପରଦିନ ବୋଷ୍ଟନ ଫେରିଆସିଲୁ । ଦିନକ ପରେ ମୋ ଝିଅ ମାମା ମୋତେ ଆଉ ମୋ ସ୍ତ୍ରୀଙ୍କୁ ନେଇ ତା' ମେଡ଼ିକାଲ୍‌କୁ ଗଲା । ବିରାଟ ମେଡ଼ିକାଲ୍ । ଗାଡ଼ି ରଖିବା ପାଇଁ ବାର/ଚୌଦ ମହଲା ଗ୍ୟାରେଜ୍ । ମୋତେ

ଭୋଜବାଜି ଭଳି ଲାଗୁଥାଏ । ତଳକୁ ଆସି ସେ ରିସିପସନ୍‌ରେ ଇ.ଏନ୍‌.ଟି. ପ୍ରଫେସରଙ୍କ ସହ ଆପଏଣ୍ଟମେଣ୍ଟ ନେଲା । ଅଧଘଣ୍ଟାଏ ପରେ ଆମକୁ ଇ.ଏନ୍‌.ଟି. ପ୍ରଫେସରଙ୍କ ରୁମ୍‌କୁ ଡାକରା ଆସିଲା । ସେଠାରେ ଜଣେ ତରୁଣୀ ଡାକ୍ତରାଣୀ ବସିଥିଲେ । ମୋ ଝିଅ ଆମେରିକାନ୍ ଇଂରାଜୀରେ ତାଙ୍କୁ ସବୁ ବୁଝାଇଦେଲା । ସେ ମୋ ନାକ ଭିତରେ ଏକ ତାର ଭିତରକୁ ପୁରାଇ ସାମ୍ନାରେ ଥିବା ଏକ ଟି.ଭି. ସୁଇଚ୍ ଅନ୍ କଲେ । ଟି.ଭି. ପର୍ଦ୍ଦାରେ ମୋର କଣ୍ଠନାଳୀର ପରିଷ୍କାର ଛବି ଫୁଟିଉଠିଲା । ମୋତେ ମୋ କଣ୍ଠନାଳୀକୁ ଦେଖାଇ ସେ ଆମେରିକାନ୍ ଇଂରାଜୀରେ କହିଲେ ମୋର ବାମପଟ ଭୋକାଲ୍ କର୍ଡ଼ ବା କଣ୍ଠନାଳୀ ପୁରା ଅକାମୀ ହୋଇଯାଇଛି । ଦକ୍ଷିଣପଟ କଣ୍ଠନାଳୀ ଧୀରେଧୀରେ ଖରାପ ହେବାକୁ ଯାଉଛି । ତେବେ ପ୍ରଫେସରଙ୍କୁ ଅପେକ୍ଷା କରନ୍ତୁ । ପନ୍ଦର ମିନିଟ୍/ କୋଡ଼ିଏ ମିନିଟ୍ ପରେ ପ୍ରଫେସର ଆସିଲେ । ସେ ମୋତେ ଚାହିଁଲେ । ଟି.ଭି. ପର୍ଦ୍ଦାକୁ ନଚାହିଁ ପଚାରିଲେ ଆପଣ କେଉଁଠୁ ଆସିଛନ୍ତି । ମୁଁ କହିଲି ଭାରତରୁ । ଭାରତର କେଉଁ ଅଞ୍ଚଳରୁ ? ମୁଁ ଆଶ୍ଚର୍ଯ୍ୟ ହୋଇ ପଚାରିଲି ଆପଣ ଭାରତ ଯାଇଛନ୍ତି ? ସେ କହିଲେ ଅନ୍ତତଃ ଅଧଡଜନ ଥର । ବମ୍ବେ, ଚଣ୍ଡିଗଡ଼, ଦିଲ୍ଲୀ ଏବଂ ବାଙ୍ଗାଲୋର । ମୁଁ କହିଲି ମୁଁ ଭାରତର ପୂର୍ବାଞ୍ଚଳରୁ ଆସିଛି । ମୋ ରାଜ୍ୟ ନାମ ଓଡ଼ିଶା । ଏହା ପ୍ରସିଦ୍ଧ ତୀର୍ଥକ୍ଷେତ୍ର ଓ ମନ୍ଦିର ପାଇଁ ବିଖ୍ୟାତ । ସେ ଶୁଣିଲେ । ହଠାତ୍ ପ୍ରଶ୍ନକଲେ ଆମେରିକା ପ୍ରେସିଡେଣ୍ଟ ନିର୍ବାଚନରେ କିଏ ଜିତିବ ? ମୁଁ ତାଙ୍କ କଥାରେ ଆଶ୍ଚର୍ଯ୍ୟ ହୋଇଗଲି । ମୁଁ ବୁଝିପାରିଲି ନାହିଁ, ଇୟେ ଡାକ୍ତର ମୋ ରୋଗ କଥା ନପଚାରି ଏସବୁ କାହିଁକି ପଚାରୁଛନ୍ତି ? ସେହିବର୍ଷ ସେପ୍ଟେମ୍ବର ପ୍ରଥମ ସପ୍ତାହରେ ଆମେରିକାର ପ୍ରେସିଡେଣ୍ଟ ନିର୍ବାଚନ । ଜର୍ଜ ବୁଶ୍ ଦ୍ୱିତୀୟଥର ପାଇଁ ଲଢୁଛନ୍ତି । ତାଙ୍କ ବିପକ୍ଷ ପ୍ରାର୍ଥୀ ଜନ୍ କେରି ହେଉଛନ୍ତି ବୋଷ୍ଟନ୍‌ର । ଯେଉଁଠି ମୋ ଝିଅ-ଜୋଇଁ ରହୁଥିଲେ । ମୁଁ ତାଙ୍କୁ କହିଲି ଏ ପ୍ରଶ୍ନ ଆପଣ ମୋତେ କାହିଁକି କରୁଛନ୍ତି ? ସେ କହିଲେ ଆପଣଙ୍କ ପରସୋନେଲ୍ ହିଷ୍ଟ୍ରିରେ ଆପଣ ସାମ୍ବାଦିକ ବୋଲି ଉଲ୍ଲେଖ ରହିଛି । ଏଠି ଅନେକ ଭାରତୀୟ ଅଛନ୍ତି । ଆପଣ ସେମାନଙ୍କୁ ଜାଣିଥିବେ । ସେମାନଙ୍କ ମତାମତ ମଧ୍ୟ ଜାଣିଥିବେ । ମୁଁ ଜଣେ ବିଶିଷ୍ଟ ଡାକ୍ତରଙ୍କ ପାଖରୁ ଏ ପ୍ରକାର ପ୍ରଶ୍ନ ଶୁଣି ଆଶ୍ଚର୍ଯ୍ୟ ହୋଇଥିଲି । ମୋ ରୋଗ ସମ୍ପର୍କରେ କଥା ନହୋଇ ଏ ଧରଣର କଥାର ତାତ୍ପର୍ଯ୍ୟ ମୁଁ ବୁଝିପାରିଲି ନାହିଁ । ତେବେ ତାଙ୍କ ପ୍ରଶ୍ନର ଉତ୍ତର ଦେଲି ସମ୍ଭବତଃ ବୁଶ୍ ଦ୍ୱିତୀୟ ଥର ପାଇଁ ବିଜୟ ଲାଭ କରିବେ । କାରଣ ପ୍ରଥମତଃ ତାଙ୍କ ବିରୁଦ୍ଧରେ ସେଭଳି କୌଣସି ଅଭିଯୋଗ ନାହିଁ । ଦ୍ୱିତୀୟରେ ୨୬/୯ ଘଟଣା ପରେ ଆମେରିକାବାସୀ ଅତ୍ୟନ୍ତ ଭୟଭିତ । ୱାର୍ଲ୍ଡ ଟ୍ରେଡ୍ ସେଣ୍ଟର ଧ୍ୱଂସ ହେବାପରେ ଆମେରିକାବାସୀ ମୁସଲମାନ ସନ୍ତ୍ରାସବାଦ ବିରୋଧୀ । ସେଇ ଅବସ୍ଥାରେ ବୁସ୍ ଇରାକ୍ ଆକ୍ରମଣ କରି ଅଧିକାର କରିବା ପରେ ଆମେରିକାବାସୀଙ୍କର ବିଶ୍ୱାସଭାଜନ ହୋଇଥିଲେ । ଏହିସବୁ କାରଣରୁ ସେ ଦ୍ୱିତୀୟଥର ବିଜୟୀ ହେବେ ବୋଲି ମୁଁ ମତ ଦେଇଥିଲି । ମୋ କଥା ଶୁଣି ଡାକ୍ତର କିଛି ମୁହୂର୍ତ୍ତ ପାଇଁ ମୋତେ ଚାହିଁଲେ । ତା'ପରେ ମୋ ସହ କରମର୍ଦ୍ଦନ କରି କହିଲେ ଏକ୍ସିଲେଣ୍ଟ । ମୁଁ ମୋ ରୋଗ କଥା ପଚାରିଲି । ସେ କହିଲେ ଆପଣଙ୍କ ବାମପଟ ଭୋକାଲ୍ କର୍ଡ଼ କାଟିଦେବାକୁ ପଡ଼ିବ । ଭଲହେବ ଯଦି ଉଭୟ ଭୋକାଲ୍ କର୍ଡ଼ କାଟିଦିଅନ୍ତି । ମୁଁ ବିସ୍ମିତ ହୋଇ ପଚାରିଲି କିନ୍ତୁ ଆପଣ ମୋ ଭୋକାଲ୍ କର୍ଡ଼ ଦେଖିଲେ କେତେବେଳେ ? ସେ ଟି.ଭି. ପର୍ଦ୍ଦାକୁ ଦେଖାଇ କହିଲେ ମୋ ରୁମ୍‌ରେ ଏହାର ସଂଯୋଗ ଅଛି । ସେଇଠି ମୁଁ ସବୁ ଦେଖିଛି । ଆପଣଙ୍କ ଭୋକାଲ୍ କର୍ଡ଼ ଟୋଟାଲି ରିମୁଭ୍ କରିବାକୁ ପଡ଼ିବ । ନଚେତ୍ ଏହା ଆପଣଙ୍କ ଦେହର ଅନ୍ୟାନ୍ୟ ଅଂଶକୁ ବ୍ୟାପିବ । କ'ଣ ବ୍ୟାପିବ ବୋଲି ମୁଁ ପଚାରିବାରେ ସେ କହିଲେ ମାଲିଗ୍‌ନାନ୍ସି । ମୁଁ କହିଲି ଏବେ କ'ଣ ଏହା ଆରମ୍ଭ ହୋଇଛି । ସେ କହିଲେ ନା- ତେବେ ଆରମ୍ଭ ହେବାକୁ ଯାଉଛି । ମୁଁ କିଛି ସମୟ ପାଇଁ ସ୍ତବ୍ଧ

ହୋଇଗଲି । ତା'ପରେ ସେ କହିଲେ ଟେକ୍ ଇଟ୍ ଇଜ୍ । ଡୋଣ୍ଟ ଆଫ୍ରେଡ୍, ଇଟ୍ ଉଇଲ୍ ବି କିଓରଡ୍ । ଆମେ ସେଠୁ ଫେରିଲୁ । ମୋ ଝିଅ-ଜ୍ୱାଇଁ କହିଲେ- ବାପା ଏଇଠି ଅପରେସନ କରିଦେବା । ତମେ ଘରକୁ ଫେରି ଅବହେଳା କରିବ । ମୁଁ କହିଲି ନାଁରେ ମା'- ସେଥିପାଇଁ ତୁ ବ୍ୟସ୍ତ ହନି । ଏଠି ଅପରେସନ୍ କଲେ ଯାହା ସେଠାରେ ଶୁଣିଲି ୫୦ଲକ୍ଷ ଟଙ୍କା ବ୍ୟୟ ହେବ । ମୁଁ ତୁମମାନଙ୍କ ଉପରେ ବୋଝ ହୋଇ ରହିବିନି । କିନ୍ତୁ ଦୁହେଁ ମୋତେ ଏକ ପ୍ରକାର ବାଧ କଲେ । ପରେ ପୁଣି ସେ ପ୍ରଫେସରଙ୍କ ପାଖକୁ ଗଲେ । ସେ ଦୁଇ/ତିନି ମାସ ଆମେରିକାରୁ ଅନୁପସ୍ଥିତ ରହିବେ ବୋଲି କହିବାରେ ମୋତେ ଦୁହେଁ ଅନ୍ୟ ଡାକ୍ତରଙ୍କ ପାଖକୁ ଯିବାକୁ କହିଲେ । ମାତ୍ର ମୁଁ ଗଲିନାହିଁ । ସେଠାରୁ ଆମେ ସମସ୍ତେ ପନ୍ଦର ଦିନ ପାଇଁ କାନାଡ଼ା ଗଲୁ । କାନାଡ଼ାରୁ ଫେରି ଆମେ(ମୁଁ ଓ ମୋ ସ୍ତ୍ରୀ) ସାତଦିନ ପରେ ଫ୍ରାନ୍ସ ଏୟାରୱେଜ୍‌ରେ ପ୍ୟାରିସ୍ ଦେଇ ଭାରତ ଫେରିଆସିଲୁ ।

ଗତ ସଂଖ୍ୟାରେ ଆମେରିକାରୁ ଫେରିବା ପରେ ଏମ୍‌ସରେ ମୋର କଣ୍ଠନାଳୀ ଅପରେସନ କଥା ଲେଖିଥିଲି । ତେବେ କଟକ ଠାରେ ହାଇଦ୍ରାବାଦ ଆପୋଲୋର ଡକ୍ଟର ଉମାନାଥ ନାୟକ ୨୦୦୬ ଏପ୍ରିଲ୍ ୧ ତାରିଖରେ ମୋର କଣ୍ଠନାଳୀ ଅପରେସନ୍ କରି ଦୁଇ ସ୍ୱରପେଟିକାକୁ କାଟି ବାହାର କରିଦେଲେ । ସ୍ୱର ପେଟିକା କାଟିଦେବାପରେ ମୁଁ ମୂକ ହୋଇଗଲି । ଆଉ କଥାବାର୍ତ୍ତା କରିପାରିଲି ନାହିଁ । ମାତ୍ର ବିଜ୍ଞାନର କରାମତି ଅନେକ । ମୋର କଣ୍ଠନାଳୀରେ ଯେଉଁଠି କଣା ହୋଇ ସ୍ୱରପେଟିକା କଟାଯାଇ ବାହାର କରାଯାଇଥିଲା ସେଠି ଏକ କ୍ଷୁଦ୍ର ଓ ଶକ୍ତଶାଳୀ ସ୍ୱରଯନ୍ତ୍ର ଲଗାଇ ଦିଆଗଲା । ଫଳରେ ବେକରେ ଟିପଦେଇ ମୁଁ କଥାବାର୍ତ୍ତା କରିବାକୁ ସକ୍ଷମ ହେଲି ।

ଅପରେସନ୍ ସମୟରେ କଟକ ଭୁବନେଶ୍ୱରର ବହୁ ବିଶିଷ୍ଟ ବ୍ୟକ୍ତି, ବହୁ ବନ୍ଧୁ କେଶରପୁର କ୍ୟାନ୍‌ସର ହସ୍‌ପିଟାଲରେ ଉପସ୍ଥିତ ଥିଲେ । ପ୍ରାୟ ସାତଘଣ୍ଟା ଧରି ଅପରେସନ ଚାଲିଲା । ସକାଳ ଦଶଟାରୁ ସନ୍ଧ୍ୟା ୫ଟା ସାଢ଼େ ୫ଟା ପର୍ଯ୍ୟନ୍ତ ଏକାଦିକ୍ରମେ ଅପରେସନ ଚାଲିଲା । ମୁଁ ପରେ ଯାହା ଶୁଣିଛି ଶତାଧିକ ବନ୍ଧୁ ଉଦ୍‌ବିଗ୍ନ ଚିତ୍ତରେ ଅପେକ୍ଷା କରିଥିଲେ । ଯେତେବେଳେ ଡାକ୍ତର ସଞ୍ଜୟ ପଣ୍ଡା ବାହାରକୁ ଆସି ଅପରେସନ ସକ୍‌ସେସ୍‌ଫୁଲ୍ ହୋଇଥିବାକଥା କହିଲେ ସମସ୍ତେ ମୋର ଆରୋଗ୍ୟ କାମନା କରି ଫେରିଲେ । ସେମାନଙ୍କୁ କୃତଜ୍ଞତା ଜଣାଇବାର ମୋର ଭାଷା ନାହିଁ ।

ଭଗବାନଙ୍କ ଦୟାରେ ମୁଁ ବଞ୍ଚିଛି । ଆଜି ସେଇ ମେସିନ୍ ମୋର ମୂକଭାବ ଦୂର କରିଛି । ପ୍ରଭୁଙ୍କର ଅଶେଷ ଦୟା ।

ମୋର କଣ୍ଠନାଳୀ ଅସ୍ତ୍ରୋପଚାର ପରେ ମୋର ମନରେ ପ୍ରଶ୍ନ ଉଠିଲା ଆଉ ପୁସ୍ତକମେଳା କରିପାରିବି ତ ? କେତେକ ବନ୍ଧୁ ମଧ୍ୟ ପୁସ୍ତକମେଳା ଭବିଷ୍ୟତ ନେଇ ସନ୍ଦେହ ପ୍ରକଟ କଲେ । ଅସ୍ତ୍ରୋପଚାର ପରେ ପରେ ମୁଁ ଚେଷ୍ଟା କରି ମଧ୍ୟ କଥାବାର୍ତ୍ତା କରିପାରିଲି ନାହିଁ । ବେକରେ କଣା ହୋଇଥିବା ସ୍ଥାନରେ ଦୁଇ ଆଙ୍ଗୁଠି ଚାପି କଥାବାର୍ତ୍ତା କରିବା ପାଇଁ ଉଦ୍ୟମ କରି ବିଫଳ ହେଲି । ସି.ଆର୍.ପି. ଛକଠାରୁ ଅଳ୍ପ ଦୂରରେ ଏକ ସ୍ପିଚ୍‌ଥେରାପି କେନ୍ଦ୍ରକୁ ଯିବାପାଇଁ କେତେକ ବନ୍ଧୁ ପରାମର୍ଶ ଦେଲେ । ପ୍ରାୟ ମାସେକାଳ ଗଲି । ମାତ୍ର ସେମାନେ ମଧ୍ୟ ବିଫଳ ହେଲେ । ପରେ ଜୁଲାଇ ମାସରେ ପୁଣି ହାଇଦ୍ରାବାଦ ଆପୋଲୋ ହସ୍ପିଟାଲ୍ ଗଲି । ମୋ ପୁଅ ଲକୁ(ସିଦ୍ଧାର୍ଥ) ସେତେବେଳେ ଭୁବନେଶ୍ୱରରେ କାର୍ଭିକମ୍ପାନିର ମ୍ୟାନେଜର ଥିଲା । ପ୍ଲେନ୍‌ରେ ଆମେ ହାଇଦ୍ରାବାଦ ଯାଇ ଆପୋଲୋ ହସ୍ପିଟାଲ ସାମ୍ନାରେ ଥିବା 'ବାଲାଜୀ' ହୋଟେଲ୍‌ରେ ରୁମ୍ ନେଲୁ । ଅସ୍ତ୍ରୋପଚାର ପୂର୍ବରୁ ଆମେ ତିନିଥର ଆପୋଲୋକୁ ଯାଇଥିଲୁ । ସେଇ

ବାଲାଜୀ ହୋଟେଲ୍‌ରେ ରହୁଥିଲୁ । ହୋଟେଲ୍‌ଟି ହସ୍ପିଟାଲ୍ ଗେଟ୍ ଠାରୁ ମାତ୍ର ଶହେ/ଦେଢ଼ଶହ ମିଟର ଦୂରରେ । ଦିନ ୧୨ଟାରେ ପହଞ୍ଚି ହୋଟେଲ୍‌ରେ ବ୍ୟାଗ୍ ରଖି ଡାକ୍ତରଖାନା ଗଲୁ । ଡକ୍ଟର ଉମାନାଥ ନାୟକ ତାଙ୍କ ରୁମ୍‌ରେ ଥିଲେ । ମୁଁ ତାଙ୍କ ପର୍ଦ୍ଦା ଆଡ଼େଇ ତାଙ୍କୁ ଚାହିଁବାରେ ସେ ପ୍ଲିଜ୍ କମ୍- ପ୍ଲିଜ୍ କମ୍ ବୋଲି କହି ଭିତରକୁ ଡାକିଲେ । ମୁଁ ଭିତରକୁ ଯାଇ ମୋ ନୋଟ୍‌ବହିରେ ମୁଁ କଥାବାର୍ତ୍ତା କହିପାରୁନାହିଁ ବୋଲି ଲେଖି ତାଙ୍କୁ ଦେଖାଇଲି । ସେ ଉଠିପଡ଼ି ମୋତେ ଠିଆହେବାକୁ କହିଲେ । ତା'ପରେ ମୋ ବୁଢ଼ା ଆଙ୍ଗୁଠିକୁ ବେକରେ ହୋଇଥିବା କଣାରେ ଚାପି କହିଲେ ନାଓ ସ୍ପିକ୍ । ମୋ ମୁହଁରୁ କଥା ବାହାରି ଆସିଲା । ମୁଁ ସେଇ ସମୟରେ ଏତେ ଆନନ୍ଦିତ ହୋଇଗଲି ତାହା ଏବେ ପ୍ରକାଶ କରିବା ସମ୍ଭବ ନୁହେଁ । ଭୁବନେଶ୍ୱରରେ ସମସ୍ତେ ମୁଁ କଥା ନକହିବା ଫଳରେ ଦୁଃଖ ପ୍ରକାଶକରି ପୁସ୍ତକମେଳା ବା ଲେଖକ ସାମ୍ମୁଖ୍ୟ ସାହିତ୍ୟୋତ୍ସବ ହୋଇପାରିବ ନାହିଁ ବୋଲି କହୁଥିଲେ । ମୁଁ ହୋଟେଲ୍‌କୁ ଫେରିଆସି ସେମାନଙ୍କ ମଧ୍ୟରୁ କେତେକଙ୍କୁ ଫୋନ୍ କରି କଥାହେଲି । ସମସ୍ତେ ଆଶ୍ଚର୍ଯ୍ୟ ହେବା ସଙ୍ଗେସଙ୍ଗେ ଆନନ୍ଦିତ ହେଲେ । ପରଦିନ ସକାଳ ବିମାନରେ ମୁଁ ଭୁବନେଶ୍ୱର ଫେରିଆସିଲି । ମୁଁ ଆସିବା ଶୁଣି କେତେକ ବନ୍ଧୁ ମୋ ଘରକୁ ଆସିଲେ । ମୋର କଥାବାର୍ତ୍ତା ଶୁଣିବା ପରେ ସେମାନେ କହିଲେ- କିନ୍ତୁ ଆପଣ ବେଶୀ ପରିଶ୍ରମ ନକରି ବିଶ୍ରାମ ନିଅନ୍ତୁ ।

## -ସାହିତ୍ୟୋତ୍ସବ-

ଅନେକ ବନ୍ଧୁ ପୁସ୍ତକମେଳା ଏବଂ ସାହିତ୍ୟୋତ୍ସବ ସମ୍ପର୍କରେ ସନ୍ଦିହାନ ହେଲେ । ମୁଁ କିନ୍ତୁ ନିଶ୍ଚିତ ଭାବେ ମୋ କାର୍ଯ୍ୟକ୍ରମରେ ଆଗେଇଲି । ୨୦୦୬ ଫେବୃଆରୀ ମାସ ୨୬ ତାରିଖରେ ଭୁବନେଶ୍ୱର ପୁସ୍ତକମେଳାକୁ ଉଦ୍‌ଘାଟନ କରିଥିଲେ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ଲେଖିକା ତସ୍‌ଲିମା ନାସରିନ୍ । ସେତେବେଳେ ମୁଁ ଆସ୍ତେ ଆସ୍ତେ କଥାବାର୍ତ୍ତା କରୁଥିଲି । ୨୦୦୬ରେ ମୋର ଅସ୍ତ୍ରୋପଚାର ପରେ ମୁଁ ଦୃଢ଼ ପ୍ରତିଜ୍ଞା ହେଲି ସାହିତ୍ୟୋତ୍ସବ ଆଉ ପୁସ୍ତକମେଳା ଯେପରି ହେଉଥିଲା ସେଭଳି କରିବା ପାଇଁ । ହଠାତ୍ ମୋ ମନକୁ ବାଙ୍କୀ କଥା ଆସିଲା । ମୁଁ ବାଙ୍କୀ ବିଧାୟକ ଦେବାଶୀଷ ପଟ୍ଟନାୟକଙ୍କୁ ଡାକିଲି । ଦେବାଶୀଷ ଆମ ଗାଁର ମୋର ଭଉଣୀ ସମ୍ପର୍କୀୟା ଶଶିଅପାର ପୁଅ । ମୋତେ ମାମୁଁ ମାମୁଁ ଡାକେ । ମୁଁ ତାକୁ ବାଙ୍କୀରେ ଲେଖକ ସାମ୍ମୁଖ୍ୟ ସାହିତ୍ୟୋତ୍ସବ କରିବା ପାଇଁ ପ୍ରସ୍ତାବ ଦେଲି । ସେ ଆନନ୍ଦରେ ରାଜିହେଲା । ବାଙ୍କୀ କଲେଜର ଅଡିଟୋରିଅମ୍‌ରେ ୨୦୦୬ ଡିସେମ୍ବର ମାସ ୨୬ ତାରିଖରେ ଅନୁଷ୍ଠିତ ହେଲା । ବିଭିନ୍ନ ସ୍ଥାନରୁ ଦୁଇଶହ ପର୍ଯ୍ୟନ୍ତ ସାହିତ୍ୟିକ ବନ୍ଧୁ ସେଠାକୁ ଯାଇଥିଲେ । ବେଶ୍ ଆଡ଼ମ୍ବର ସହକାରେ ଲେଖକ ସାମ୍ମୁଖ୍ୟ ସାହିତ୍ୟୋତ୍ସବ ଅନୁଷ୍ଠିତ ହେଲା । ୨୦୦୭ ଫେବୃଆରୀ ୨୬ ତାରିଖରେ ଭୁବନେଶ୍ୱର ପୁସ୍ତକମେଳା ଅନୁଷ୍ଠିତ ହେଲା । ସେବର୍ଷ ଉଦ୍‌ଘାଟନ ଉତ୍ସବ ପାଇଁ ଆସିଥିଲେ ଅନ୍ୟତମ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନା ଲେଖିକା ତଥା ଟାଇମ୍‌ସ ଅଫ୍ ଇଣ୍ଡିଆର ସ୍ତମ୍ଭକାର ଶ୍ରୀମତୀ ଶୋଭା ଦେ । ମୋର ଆତ୍ମବିଶ୍ୱାସ ଫେରିଆସିଲା । ମୋର ଦୁରାରୋଗ୍ୟ ଯୋଗୁ ଯେଉଁମାନେ ମୋର କାର୍ଯ୍ୟ କରିବାର ପଦ୍ଧତି ବାଧାପ୍ରାପ୍ତ ହେବ ବୋଲି ବିଚାର କରୁଥିଲେ ସେମାନେ ମୋ ପାଖକୁ ଆସି ମୋର କାର୍ଯ୍ୟ କୁଶଳତାକୁ ସ୍ୱୀକାର କଲେ । ବର୍ଷେ ପରେ ସାହିତ୍ୟୋତ୍ସବ କଟକ ଶ୍ରୀରାମଚନ୍ଦ୍ର ଭବନରେ, ତା' ପରବର୍ଷ ଭଦ୍ରକରେ, ପରେ ପରେ ଯାଜପୁରରେ ଅନୁଷ୍ଠିତ ହେଲା । ସମସ୍ତ ସ୍ଥାନରେ ମୋର ଉପସ୍ଥିତି ଓ ପ୍ରତ୍ୟେକ ବିଷୟ ଉପରେ ତଦାରଖ କରି ସାହିତ୍ୟୋତ୍ସବକୁ ସଫଳ ରୂପ ଦେଇଥିଲି । ଭଦ୍ରକରେ ସେ ଅଞ୍ଚଳର ପ୍ରାୟ ସମସ୍ତ ସାହିତ୍ୟିକ ଏଥିରେ ଯୋଗ ଦେଇଥିଲେ । ପୂର୍ବଭଳି ଦୁଇଦିନିଆ ନକରି ଆମେ ଦିନିକିଆରେ ସାହିତ୍ୟୋତ୍ସବକୁ ସୀମାବଦ୍ଧ କରିଥିଲୁ । କିନ୍ତୁ ସାହିତ୍ୟୋତ୍ସବ ବନ୍ଦ ହୋଇନଥିଲା । ଲେଖକ ସାମ୍ମୁଖ୍ୟ ସାହିତ୍ୟୋତ୍ସବର ଏକ ସ୍ୱତନ୍ତ୍ର

ପରିଚୟ ରହିଛି । ଲେଖକମାନେ ସେ ପ୍ରବୀଣ ହୁଅନ୍ତୁ ବା ନବୀନ ହୁଅନ୍ତୁ ଲେଖକ ସାମ୍ମୁଖ୍ୟରେ ଯୋଗଦେବା ପାଇଁ ନିଶ୍ଚିତ ଭାବେ ଅପେକ୍ଷା କରିଥାନ୍ତି । ୧୯୮୧ ମସିହାରେ ଯେତେବେଳେ ମୁଁ ଏହି ସାହିତ୍ୟୋତ୍ସବର ପରିକଳ୍ପନା କଲି ସେତେବେଳେ ଜାନକୀ ବଲ୍ଲଭ ପଟ୍ଟନାୟକ ଥିଲେ ଓଡ଼ିଶାର ମୁଖ୍ୟମନ୍ତ୍ରୀ । ମୁଁ ଏ ସମ୍ପର୍କରେ ତାଙ୍କ ସହ ଆଲୋଚନା କଲି । ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ସାହିତ୍ୟିକମାନଙ୍କୁ ଗୋଟିଏ ମଞ୍ଚରେ ଏକତ୍ରିତ କରି ଓଡ଼ିଆ ଭାଷା, ସାହିତ୍ୟର ବିଭିନ୍ନ ବିଭାଗ ଉପରେ ଆଲୋଚନା କରିବା ସାହିତ୍ୟୋତ୍ସବର ଲକ୍ଷ୍ୟ । ମୋ କଥା ଶୁଣି ଜାନକୀବାବୁ ଆଗ୍ରହ ପ୍ରକାଶ କଲେ ଏବଂ କହିଲେ ଓଡ଼ିଶାର ବିଭିନ୍ନ ପ୍ରାନ୍ତରେ ଏହାକୁ କରିପାରିଲେ ଭଲ ହେବ । ଜାନକୀବାବୁଙ୍କ ପ୍ରସ୍ତାବ ଅନୁସାରେ ଆମର ପ୍ରଥମ ସାହିତ୍ୟୋତ୍ସବ କୋରାପୁଟ ସୁନାବେଡ଼ା ମିଗ୍ କାରଖାନା ଆନୁକୂଲ୍ୟରେ ହେବାପାଇଁ ସ୍ଥିର ହେଲା । ସେତେବେଳେ ଓଡ଼ିଶାର ସଂସ୍କୃତି ଓ ପର୍ଯ୍ୟଟନ ସଚିବ ଥିଲେ ଏ.ଏନ୍. ତିୱାରୀ । ସେ ପୂର୍ବରୁ ଡେପୁଟେସନରେ ମିଗ୍ କାରଖାନାର ମୁଖ୍ୟ ପ୍ରଶାସନିକ ଅଫିସର ଥିଲେ । ତାଙ୍କୁ ଆୟୋଜନ ସମ୍ପର୍କରେ ଦେଖାଶୁଣା କରିବା ପାଇଁ ଆମେ ଅନୁରୋଧ କଲୁ । ଡିସେମ୍ବର ୨୪, ୨୫ ଓ ୨୬ ତାରିଖରେ ଏହି ସାହିତ୍ୟୋତ୍ସବ କରିବା ପାଇଁ ସ୍ଥିର ହେଲା । ଜାନକୀବାବୁ ଉଦ୍‌ଘାଟକ ଓ ପ୍ରଖ୍ୟାତ ସାହିତ୍ୟିକ ସୁରେନ୍ଦ୍ର ମହାନ୍ତି ମୁଖ୍ୟ ବକ୍ତା ରୂପେ ଯୋଗଦେବା ପାଇଁ ସ୍ଥିର ହେଲା ।

ସାହିତ୍ୟୋତ୍ସବ ପୂର୍ବରୁ ମୁଁ, ତିୱାରୀ ସାହେବ ଏବଂ ଆଉଜଣେ ବନ୍ଧୁ ସୁନାବେଡ଼ା ଯାଇ କିକି ବ୍ୟବସ୍ଥା ହେବ ସବୁ ତଦାରଖ କରିଥିଲୁ । ସୁନାବେଡ଼ାରେ ରାଜ୍ୟର ପ୍ରତ୍ୟେକ ଅଞ୍ଚଳରୁ ସାହିତ୍ୟିକମାନେ ଯୋଗ ଦେଇଥିଲେ । ପାଖାପାଖି ଛ'ଶହ ସାହିତ୍ୟିକ ସାତୋଟି ବସ୍‌ରେ ଆସିଥିଲେ । ସୁନାବେଡ଼ାର ଅଭୂତପୂର୍ବ ସଫଳତା ସାହିତ୍ୟିକମାନଙ୍କ ମଧ୍ୟରେ ଉତ୍ସାହ ସୃଷ୍ଟି କରିଥିଲା ।

ସୁନାବେଡ଼ା ପରେ ୧୯୮୨ରେ ସାହିତ୍ୟୋତ୍ସବ ଆୟୋଜନ ହେଲା ରାଉରକେଲାରେ । ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଏଠାରେ ଉଦ୍‌ଘାଟକ ଏବଂ ବିଶିଷ୍ଟ ସାହିତ୍ୟିକ ରାଜକିଶୋର ରାୟ ମୁଖ୍ୟବକ୍ତା ରୂପେ ଯୋଗଦେଲେ । ରାଉରକେଲାରେ ଡିସେମ୍ବର ୨୫, ୨୬ ଓ ୨୭ ତାରିଖ ତିନିଦିନ ଧରି ଏହି ଉତ୍ସବ ଅନୁଷ୍ଠିତ ହେଲା । ରାଉରକେଲା ସାହିତ୍ୟୋତ୍ସବ ପୂର୍ବରୁ ମୁଁ ଦୁଇଥର ରାଉରକେଲା ଯାଇ କ'ଣ ହେବ କେଉଁଠି ହେବ ସବୁ ତଦାରଖ କରିଥିଲି । ରାଉରକେଲା ସାହିତ୍ୟୋତ୍ସବର ଦୁଇଟି ଛବି ଦେଲି । ଉଦ୍‌ଘାଟନ ଉତ୍ସବରେ ମୋର ସ୍ୱାଗତ ଅଭିଭାଷଣ ଏବଂ ଦ୍ୱିତୀୟ ଦିନର ଏକ ଆଲୋଚନାଚକ୍ରରେ ମୁଖ୍ୟବକ୍ତା ରୂପେ ମୁଁ ମୋର ଭାଷଣ ଦେଉଛି । ଉଦ୍‌ଘାଟନ ଉତ୍ସବରେ ଲେଖକ ସାମ୍ମୁଖ୍ୟ ସଭାପତି ଡଃ. କୃଷ୍ଣପ୍ରସାଦ ମିଶ୍ର, ମୁଖ୍ୟମନ୍ତ୍ରୀ ଜାନକୀବାବୁ, ଶିକ୍ଷମନ୍ତ୍ରୀ କିଶୋର ପଟେଲ ଓ ରାଉରକେଲାର ତତ୍‌କାଳୀନ ବିଧାୟକ ଗୁରୁପ୍ରସାଦ ନନ୍ଦ । ଅନ୍ୟଛବିରେ ମୁଁ ଅଭିଭାଷଣ ଦେବା ବେଳେ ମଞ୍ଚରେ ଅଛନ୍ତି ଡକ୍ଟର କୃଷ୍ଣପ୍ରସାଦ ମିଶ୍ର, ଉତ୍କଳ ସାହିତ୍ୟ ସମାଜ ସଭାପତି ତଥା ମାତୃଭୂମି ସମ୍ପାଦକ ବିଚିତ୍ରାନନ୍ଦ କର ଓ ଗୁରୁପ୍ରସାଦ ନନ୍ଦ ।

## -ଭୁବନେଶ୍ୱର ପୁସ୍ତକ ମେଳା-

ଭୁବନେଶ୍ୱର ପୁସ୍ତକମେଳା ସାହିତ୍ୟୋତ୍ସବ ସହ ପାଦରଖି ଚାଲିଲା । ୨୦୦୮ରେ ଅନୁଷ୍ଠିତ ହେଲା ରଜତ ଜୁବୁଲି ଉତ୍ସବ । ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଉଦ୍‌ଘାଟକ ରୂପେ ଯୋଗଦେଲେ । ଗୋଟିଏ ଅନୁଷ୍ଠାନର ରଜତ ଜୁବୁଲି ସେ ଅନୁଷ୍ଠାନର କାର୍ଯ୍ୟଦକ୍ଷତାର ପରିଚୟ ଦିଏ । ରଜତ ଜୁବୁଲି ଉତ୍ସବର ଏକ ଛବି ଏଠାରେ ଦେଲି ।

ମୁଖ୍ୟମନ୍ତ୍ରୀ ଏଥିରେ ସମ୍ବର୍ଦ୍ଧିତ କରୁଛନ୍ତି ଓଡ଼ିଶା ପ୍ରଖ୍ୟାତ ସାହିତ୍ୟିକ ଅଚ୍ୟୁତାନନ୍ଦ ପତିଙ୍କୁ।

ମୋର ଆତ୍ମବିଶ୍ୱାସ ଫେରିଆସିଲା । ଦେହ ଅସୁସ୍ଥତା ସତ୍ତ୍ୱେ ପ୍ରତିବର୍ଷ ଭୁବନେଶ୍ୱର ପୁସ୍ତକମେଳା ବେଶ୍ ଜାକ୍‌ଜମକରେ ଚାଲିଲା । ଲେଖକ ସାମ୍ମୁଖ୍ୟ ସାହିତ୍ୟୋତ୍ସବ ପ୍ରତିବର୍ଷ ଦିନିକିଆ ଉତ୍ସବରେ ସୀମାବଦ୍ଧ ହେଲା । ଲେଖକ ସାମ୍ମୁଖ୍ୟର ସାହିତ୍ୟୋତ୍ସବ ପାଇଁ ସବୁଠାରୁ ବଡ଼ ପ୍ରତିବନ୍ଧକ ହେଲା ଅର୍ଥ ଓ ପୃଷ୍ଠପୋଷକତା । ଏଠାରେ ମୋର କହିବାରେ ଦ୍ୱିରୁକ୍ତି ନାହିଁ ଯେ ଜାନକୀ ବଲ୍ଲଭ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ଥିବା ପର୍ଯ୍ୟନ୍ତ ସାହିତ୍ୟୋତ୍ସବ ଅତି ଆଡ଼ମ୍ବର ସହକାରେ କରାଯାଉଥିଲା । ୧୯୮୯ରେ ସେ ମୁଖ୍ୟମନ୍ତ୍ରୀତ୍ୱରୁ ବିଦାୟ ନେବାପରେ ୧୯୯୦ରେ ଆମେ ଭୁବନେଶ୍ୱର ସୂଚନା ଭବନରେ ଦୁଇଦିନ ପାଇଁ ଅନୁଷ୍ଠାନ କରିଥିଲୁ ସାହିତ୍ୟୋତ୍ସବର ଦଶବର୍ଷର ଇତିହାସରେ ଏଇ ପ୍ରଥମଥର ପାଇଁ ଭୁବନେଶ୍ୱର ଠାରେ ଅନୁଷ୍ଠିତ ହେଲା । ଜାନକୀବଲ୍ଲଭ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ନଥିଲେ ମଧ ତାଙ୍କୁ ଆମେ ଅନୁଷ୍ଠାନ ଉଦ୍‌ଘାଟନ ପାଇଁ ନିମନ୍ତ୍ରଣ କରିଥିଲୁ । କେତେକ ବନ୍ଧୁ ଆମକୁ ରାଜନୀତିକ ଦୃଶ୍ୟପଟ୍ଟର ଉଦାହରଣ ଦେଇ ଜାନକୀବାବୁଙ୍କୁ ଡାକିଲେ ବିଜୁ ପଟ୍ଟନାୟକ ସାହିତ୍ୟୋତ୍ସବକୁ ବିରୋଧ କରିବେ ବୋଲି ମତ ଦେଇଥିଲେ । ମାତ୍ର ମୁଁ ସାହିତ୍ୟ ଆଉ ରାଜନୀତି ଭିନ୍ନ ବିଷୟ ବୋଲି ମତ ଦେଇ ଜାନକୀବାବୁଙ୍କ ଅବଦାନ ଏତେ ଶୀଘ୍ର ଭୁଲିଯିବା ଅତ୍ୟନ୍ତ ଅବିବେକିର କାମ ହେବ ବୋଲି ମତ ଦେଇ ଜାନକୀବାବୁଙ୍କୁ ଉଦ୍‌ଘାଟନ ପାଇଁ ଡାକିଥିଲି । ଜାନକୀବାବୁ ନିଜେ ମଧ ଆଶା କରିନଥିଲେ । ମୁଁ ଆଉ କେତେକ ବନ୍ଧୁ ତାଙ୍କୁ ଅନୁରୋଧ କରିବାରେ ସେ ଖୁବ୍ ଖୁସି ହୋଇଥିଲେ । ଆମ ନିମନ୍ତ୍ରଣ ରକ୍ଷା କରି ସେ ଆସିଥିଲେ ଏବଂ ପୁରୁଣା ସ୍ମୃତି ମନେ ପକାଇଥିଲେ ।

ବିଭିନ୍ନ ସାହିତ୍ୟୋତ୍ସବକୁ ଭାରତର ଯେତେ ବିଖ୍ୟାତ ସାହିତ୍ୟିକ ଆସିଥିଲେ ଓଡ଼ିଶାର ଅନ୍ୟ କୌଣସି ଅନୁଷ୍ଠାନକୁ ସେତେ ସାହିତ୍ୟିକ ଆସିଥିବା ମୋର ମନେହୁଏ ନାହିଁ । ଏମାନଙ୍କ ମଧ୍ୟରେ କେନ୍ଦ୍ର ସାହିତ୍ୟ ଏକାଡେମୀର ସଭାପତି ସୁନିଲ୍ ଗଙ୍ଗୋପାଧ୍ୟାୟ, ଶାନ୍ତି ନିକେତନର କୁଳପତି ଭାରତର ବିଖ୍ୟାତ ଐତିହାସିକ ନିମାଇ ସାଧନ ବସୁ, ଆସାମ ସାହିତ୍ୟ ସଭା ସଭାପତି ଦେବକାନ୍ତ ବରୁଆ, ପଦ୍ମବିଭୂଷଣ ବିଷ୍ଣୁ ପ୍ରଭାକର, ପ୍ରଫେସର ନବନୀତା ଦେବସେନ(ଅମର୍ତ୍ତ୍ୟ ସେନଙ୍କ ସହଧର୍ମିଣୀ), ବିମଳ ମିତ୍ର, ବିଖ୍ୟାତ ସାମ୍ବାଦିକ ମାଗାସେସ ଆୱାର୍ଡ଼ ବିଜେତା ସାହିତ୍ୟିକ ଗୌର କିଶୋର ଘୋଷ(ଗୌର ଘୋଷ, ମୁଁ ଏବଂ ଜାନକୀବାବୁଙ୍କ ଏକ ଛବି ଏଠାରେ ଦେଲି), ପ୍ରସିଦ୍ଧ ବଙ୍ଗଳା ଔପନ୍ୟାସିକ ଶଙ୍କର ପ୍ରମୁଖ ଅନେକ ପ୍ରସିଦ୍ଧ ବ୍ୟକ୍ତିତ୍ୱ ସାହିତ୍ୟୋତ୍ସବ ସଭା ମଣ୍ଡନ କରିଥିଲେ । ଏଭଳି ବ୍ୟକ୍ତିତ୍ୱମାନଙ୍କୁ ସାହିତ୍ୟୋତ୍ସବକୁ ଆଣିବା ପାଇଁ ମୋତେ ଅନେକ ସମୟରେ ସେମାନଙ୍କ ସହ ସିଧାସଳଖ କିମ୍ବା କାହା ଜରିଆରେ ସମ୍ପର୍କ ସ୍ଥାପନ କରିବାକୁ ପଡ଼ିଥାଏ ।

୧୯୮୮ରେ ବାରିପଦାରେ ଲେଖକ ସାମ୍ମୁଖ୍ୟ ସାହିତ୍ୟୋତ୍ସବ ଅନୁଷ୍ଠିତ ହେବାକୁ ସ୍ଥିର ହୋଇଥାଏ । ସେ ବର୍ଷ ବିଖ୍ୟାତ ହିନ୍ଦି ଲେଖକ ଶ୍ରୀକାନ୍ତ ବର୍ମା ଆସିବାର ସ୍ଥିର ହୋଇଥାଏ । ମାତ୍ର ଶେଷ ମୁହୂର୍ତ୍ତରେ ସେ ଅସୁସ୍ଥ ହୋଇ ପଡ଼ିବାରୁ ଆସିପାରିବେ ନାହିଁ ବୋଲି ଖବର ପଠାଇଲେ । ବଡ଼ ଅସୁବିଧାରେ ପଡ଼ିଲୁ । କ'ଣ କରିବି । ଏକମାତ୍ର କଲିକତା ସାହା-ଭରସା । ସମରେଶ ମଜୁମଦାର, ବୁଦ୍ଧଦେବ ଗୁହ, ଶୀର୍ଷେନ୍ଦୁ ମୁଖୋପାଧ୍ୟାୟଙ୍କୁ ଯୋଗାଯୋଗ କଲି । ମାତ୍ର ସେମାନେ ଫ୍ରି ନାହାନ୍ତି ବୋଲି କହିଲେ । ସନ୍ଧ୍ୟାରେ ମୋର ଅତ୍ୟନ୍ତ ଘନିଷ୍ଠ କଲିକତା ବିଖ୍ୟାତ ଡେଣ୍ଟାଲ ସର୍ଜନ ଡକ୍ଟର ବାରିନ୍ ରାୟଙ୍କୁ ଯୋଗାଯୋଗ କଲି । ବାରିନ୍ ରାୟଙ୍କୁ ମୁଁ ଦାଦା ବୋଲି ଡାକେ । ମୋତେ ସେ ଆଉ ତାଙ୍କ ପତ୍ନୀ

ଖୁବ୍ ଶ୍ରଦ୍ଧା କରନ୍ତି । କଲିକତାରେ ତାଙ୍କ ଘରେ ସନ୍ଧ୍ୟାରେ ବହୁ ବିଖ୍ୟାତ ସାହିତ୍ୟିକ ଆସନ୍ତି । ୧ କୁ ଟେଲିଫୋନ୍ କରି କହିଲି ଦାଦା, ବଡ଼ ଅସୁବିଧାରେ ପଡ଼ିଛି । ତିନିଦିନ ପରେ ବାରିପଦାରେ ସାହିତ୍ୟୋତ୍ସବ । ସବୁ ଖୋଲି କହିଲି । ସେ କହିଲେ ସଞ୍ଜିବ ଚଟ୍ଟୋପାଧ୍ୟାୟ ମୋ ପାଖରେ ବସିଛନ୍ତି । ମୁଁ ଟେଲିଫୋନ୍ ଦେଉଛି । ତାଙ୍କୁ ବାରିପଦା ପଠାଇବା ଦାୟିତ୍ୱ ମୋର । ତୁମେ ଅନୁରୋଧ କର । ସଞ୍ଜିବବାବୁଙ୍କୁ ମୁଁ ଜାଣିଥିଲି । କେବଳ ବିଖ୍ୟାତ ଲେଖକ ନୁହଁନ୍ତି । ପ୍ରସିଦ୍ଧ 'ଦେଶ' ପତ୍ରିକାର ସେ ଥିଲେ ସମ୍ପାଦକ । ଦେଶ ପତ୍ରିକାର ମୁଖ୍ୟ ସମ୍ପାଦକ ଥିଲେ ସାଗରମୟ ଘୋଷ । ସଞ୍ଜିବବାବୁ ଥିଲେ ସମ୍ପାଦକ । ମୁଁ ସଞ୍ଜିବବାବୁଙ୍କୁ ଅନୁରୋଧ କଲି । ସେ ବାଧ ବାଧକତାରେ ହଁ କଲେ । ବାରିନ୍ ଦା କହିଲେ ସଞ୍ଜିବ ସହ ଆଉଜଣେ ଆନନ୍ଦବଜାର ସାମ୍ବାଦିକ ମଧ ଯିବେ । ସେମାନଙ୍କୁ ଏଠୁ କାର୍‌ନେଇ ଡିସେମ୍ବର ୨୩ ତାରିଖ ରାତିରେ ବାରିପଦାରେ ପହଞ୍ଚିବ । ପରଦିନ ତମ ମିଟିଂ ଶେଷ ହେଲେ ତାଙ୍କୁ ସେଇ କାର୍‌ରେ ବିଦା କରିଦେବ । କାରଣ ତାଙ୍କର ଏକ୍ସମାସ ଏନ୍‌ଗେଜ୍‌ମେଣ୍ଟ ଅଛି । ମୁଁ ଖୁସି ହୋଇଗଲି । ଆମର ଡିସେମ୍ବର ୨୪ ତାରିଖରେ ଉଦ୍‌ଘାଟନ ଉତ୍ସବ । ଜାନକୀବାବୁ ଉଦ୍‌ଘାଟନ କରିବେ । ମୁଁ ବାରିପଦା ସର୍କିଟ୍ ହାଉସ୍‌ରେ ସଞ୍ଜିବବାବୁ ଆଉ ତାଙ୍କ ସାମ୍ବାଦିକ ବନ୍ଧୁଙ୍କ ପାଇଁ ଏକ ଭି.ଆଇ.ପି. ରୁମ୍ ରିଜର୍ଭ କରିଦେଲି । ଜାନକୀବାବୁଙ୍କୁ ସଞ୍ଜିବବାବୁଙ୍କ ପରିଚୟ ଦେଲି । ଯାହାହେଉ ବାରିପଦାରେ ସବୁ କାମ ଚମତ୍କାର ଭାବେ ଶେଷ ହେଲା । ବାରିପଦାକୁ ପାଖାପାଖି ପାଞ୍ଚଶହ ସାହିତ୍ୟିକ ଯାଇଥିଲେ । ଉଦ୍‌ଘାଟନ ଉତ୍ସବରେ ପ୍ରାୟ ତିନିହଜାର ଦର୍ଶକ ଥିଲେ । ମଞ୍ଚର ସାଜସଜ୍ଜା ଏବଂ ଲୋକଙ୍କୁ ଦେଖି ସଞ୍ଜିବବାବୁ ରୀତିମତ ଆଶ୍ଚର୍ଯ୍ୟ । ମୋତେ ପଚାରିଲେ ବରେନ୍‌ବାବୁ ପ୍ରତିବର୍ଷ ଆପଣଙ୍କର ଏହିଭଳି ହୁଏ ? ଯେ ତ ଅଦ୍ଭୁତ ସମ୍ମିଳନୀ । କେବଳ ଆସାମ ସାହିତ୍ୟ ସଭାକୁ ବାଦ୍‌ଦେଲେ ସମ୍ଭବତଃ ଏତେବଡ଼ ସାହିତ୍ୟ ସଭା ଭାରତବର୍ଷରେ ଆଉ କେଉଁଠି ହୁଏ ବୋଲି ମୋର ଧାରଣା ନାହିଁ । ଆପଣ ମୋତେ ଡାକି ପ୍ରକୃତରେ ବଡ଼ ସମ୍ମାନ ଦେଇଛନ୍ତି । ସଞ୍ଜିବବାବୁ ତାଙ୍କ ଭାଷଣ ଇଂରାଜୀରେ ଦେଲେ । ମୁଁ ଜାଣିନଥିଲି ସେ ଇଂରାଜୀ ସାହିତ୍ୟରେ କଲିକତା ବିଶ୍ୱବିଦ୍ୟାଳୟରେ ତାଙ୍କ ବର୍ଷ ଟପର ଥିଲେ । ଜାନକୀବାବୁ ମଧ ସଞ୍ଜିବବାବୁଙ୍କୁ ତାଙ୍କ ଭାଷଣ ପାଇଁ ଉଚ୍ଚପ୍ରଶଂସା କଲେ । ଲଞ୍ଚ୍ ଖାଇସାରି ସଞ୍ଜିବବାବୁ ଓ ତାଙ୍କ ବନ୍ଧୁ ବିଦାୟ ନେଲେ । ଗଲାବେଳେ ମୋତେ କହିଲେ ଏ ସମ୍ମାନ ଏ ସଭା ମୁଁ ଜୀବନସାରା ମନେରଖିବି । ସଞ୍ଜିବବାବୁଙ୍କୁ ଶାଲ ଓ ରୂପାର କୋଣାର୍କ ଚକ ଉପହାର ଦେଇଥିଲୁ । ପରେ କଲିକତାରେ ପୁସ୍ତକମେଳାବେଳେ ବାରିନ୍ ଦା'ଙ୍କ ଘରେ ସନ୍ଧ୍ୟା ଆସରରେ ସେ ସାହିତ୍ୟ ଉତ୍ସବର ଯେଭଳି ପ୍ରଶଂସା କଲେ ସମସ୍ତେ ତାକୁ ଉପଭୋଗ କଲେ ।

କଲିକତାରେ ମୋର ଅନେକ ସାହିତ୍ୟିକ ସାମ୍ବାଦିକ ଅତ୍ୟନ୍ତ ପରିଚିତ । ଏଇମିତି ମୁଁ 'ଦି ଷ୍ଟେଟ୍‌ସମ୍ୟାନ୍' ବିଖ୍ୟାତ ଇଂରାଜୀ କାଗଜ ଏବଂ ଆଜ୍‌କାଲ୍ ବଙ୍ଗଳା ଦୈନିକ ସହ ସଂପୃକ୍ତ । ଦି ଷ୍ଟେଟ୍‌ସମ୍ୟାନ୍ ଏବଂ ଆଜ୍‌କାଲ୍ ପୂଜା ସଂଖ୍ୟାରେ ମୋର ଗଳ୍ପ ଅନୁବାଦ ହୋଇ ନିୟମିତ ପ୍ରକାଶ ପାଏ । କଲିକତା ଗଲେ ଅନେକ ଓଡ଼ିଆ ବନ୍ଧୁ ଦେଖା ହୁଅନ୍ତି । କଲିକତାକୁ ମୁଁ ଅନେକ ଅନୁଷ୍ଠାନର ନିମନ୍ତ୍ରଣରେ ଭାଷଣ ଦେବାକୁ ଯାଏ । ଭାରତୀୟ ଭାଷା ପରିଷଦ, ହାଓଡ଼ା ଉତ୍କଳ ସମାଜ, କଲିକତା ଓଡ଼ିଆ ସାହିତ୍ୟ ସମ୍ମିଳନୀରେ ବିଭିନ୍ନ ସମୟରେ ଯୋଗଦେଇଛି । ଭାରତୀୟ ଭାଷା ପରିଷଦରେ ବିଖ୍ୟାତ ମନୀଷୀ ଅନ୍ନଦା ଶଙ୍କର ରାୟଙ୍କ ସହ ଗୋଟିଏ ମଞ୍ଚରେ ବସି ଭାଷଣ ଦେବାର ଅସାମାନ୍ୟ ସମ୍ମାନ ଲାଭ କରିଛି । ପୂର୍ବରୁ ୧୯୮୫ ମସିହାରେ ଶାନ୍ତିନିକେତନରେ ଅନ୍ନଦା ଶଙ୍କରଙ୍କ ସହ ଗୋଟିଏ ମଞ୍ଚରେ ବସିବାର ସୌଭାଗ୍ୟ ଲାଭ କରିଥିଲି । ସେଠାରେ ଅନ୍ନଦା ବାବୁ ତାଙ୍କ ଭାଷଣ ବଙ୍ଗଳାରେ ଦେବାରୁ ମୁଁ ତା'ର

ସମାଲୋଚନା ଛଳରେ କହିଥିଲି ଆମେ ଅନ୍ନଦାଶଙ୍କର ରାୟଙ୍କୁ ଓଡ଼ିଆ ସାହିତ୍ୟର ମହାରଥୀ ବୋଲି ମନେକରୁ । ମାତ୍ର ଆଜି ସେ ବଙ୍ଗଳାରେ ଭାଷଣ ଦେଇ ଆମକୁ ଦୁଃଖି କରିଛନ୍ତି । ଅନ୍ନଦାବାବୁ ମୋ ପଞ୍ଜାବୀ ଭିଡ଼ି କହିଲେ ମୁଁ ଓଡ଼ିଆ ଭାଷାରେ କହିବି । ପରବର୍ଷ ଭାଷା ପରିଷଦ ସଭାରେ ମୋତେ ଦେଖି କହିଲେ ବରେନ୍ଦ୍ର ମୁଁ ଆଜି ଓଡ଼ିଆରେ କହିବି ଏବଂ ସେ ପ୍ରାୟ ପଇଁଚାଳିଶ ମିନିଟ୍ ଶୁଦ୍ଧ ଓଡ଼ିଆରେ କହିଥିଲେ । କଲିକତାରେ ୟୁନିଭରସିଟି ଅଡିଟୋରିୟମ୍‌ରେ ୨୦୦୪ ମସିହା ଉତ୍କଳ ଦିବସ ମହା ସମାରୋହରେ ପାଳନ କରାଯାଇଥିଲା । ଏହି ଉତ୍ସବରେ ଓଡ଼ିଶାରୁ ମୁଁ, ପୂର୍ବତନ ଲୋକସଭା ବାଚସ୍ପତି ରବି ରାୟ ଯାଗ ଦେଇଥିଲୁ । ଏଥିରେ କଲିକତା ମେୟର ସୁବ୍ରତ ମୁଖାର୍ଜୀ ଓ ମନ୍ତ୍ରୀ ଯୋଗ ଦେଇଥିଲେ ।  ଜୀବନରେ ଅନେକ ସମ୍ମାନ ପାଇଛି । ସବୁ ଈଶ୍ୱରଙ୍କ ଦୟା । ମୁଁ ତ ଜଣେ ସାମାନ୍ୟ ଲୋକ ।

ଲେଖୁଲେଖୁ ଆଗକୁ ଆସିଗଲାବେଳେ ହଠାତ୍ ପୁରୁଣା ଫଟୋ ଦେଖି ପଛକୁ ଫେରିବାକୁ ପଡ଼େ । ଗତଥର ୨୦୦୪ ମସିହାରେ କଲିକତା ୟୁନିଭରସିଟି ଅଡିଟୋରିୟମ୍‌ରେ ଏପ୍ରିଲ୍ ପହିଲା ଦିବସ ପାଳନ ବିଷୟ ବର୍ଣ୍ଣନା କରିଥିଲି । ସେଇ ଅନୁଷ୍ଠାନରେ ମୁଁ ଭାଷଣ ଦେଉଥିବାର ଏକ ଫଟୋ ଦେଲି । ମଞ୍ଚରେ ବସିବା ଏବଂ ଭାଷଣ ଦେବାରେ ପାର୍ଥକ୍ୟ ଅଛି । କଲିକତାରେ ଅନେକ ସଭା ସମିତିରେ ଭାଷଣ ଦେଇଛି । କଲିକତା ପୁସ୍ତକ ମେଳା, କଲିକତା ପ୍ରେସ୍‌କ୍ଲବ୍, ଫାଇନ୍ ଆର୍ଟ ଗ୍ୟାଲେରୀ, ହାଓଡ଼ା ଉତ୍କଳ ସମାଜ ଏବଂ ଆଉ କେତେକ ସ୍ଥାନ ନାମ ହଠାତ୍ ମନକୁ ଆସୁନାହିଁ । ଅନେକ ସ୍ଥାନରେ ମୁଁ ଇଂରେଜୀରେ କହିବାବେଳେ ମଞ୍ଚରେ ଥିବା ବନ୍ଧୁମାନେ ଓଡ଼ିଆରେ କହିବାକୁ ଅନୁରୋଧ କରନ୍ତି । କଲିକତା ଗଲେ କଲିକତା କ୍ଲବ୍‌କୁ ମୁଁ ପ୍ରାୟ ଯାଉଥିଲି । କଲିକତାର ସବୁଠାରୁ ଏହା ଅଭିଜାତ କ୍ଲବ । କେବଳ କଲିକତା କାହିଁକି ଭାରତ ବର୍ଷରେ ଇଂରେଜମାନେ ପ୍ରତିଷ୍ଠା କରିଥିବା ଦୁଇ/ତିନୋଟି କ୍ଲବ ମଧ୍ୟରେ ଏହା ଅନ୍ୟତମ । ଏହି କ୍ଲବକୁ ଯିବାକୁ ହେଲେ କ୍ଲବ୍‌ର ଡ୍ରେସ୍‌କୋର୍ଡ଼ ମାନିବାକୁ ପଡ଼ିବ । ସୁଟ୍-ଟାଇ ସହ ଫୁଲ୍ ସୁ ପିନ୍ଧିପାର- ନଚେତ୍ ଧୋତି-ପଞ୍ଜାବୀ ହାପ୍ ସୁ- ମୋଜା ପିନ୍ଧି ଯାଇପାର । ମୋ ସାଙ୍ଗରେ କଲିକତା ପୁସ୍ତକ ମେଳାକୁ ଚାରି/ପାଞ୍ଚଜଣ ବନ୍ଧୁ ପ୍ରାୟ ପ୍ରତିବର୍ଷ ଯା'ନ୍ତି । ମାତ୍ର ଏହି ଡ୍ରେସ୍‌କୋର୍ଡ଼ ଯୋଗୁ ସେମାନଙ୍କ ମଧ୍ୟରୁ କାହାରିକୁ ନେଇପାରେ ନାହିଁ । କଲିକତାରେ ମୋର ଅନେକ ବନ୍ଧୁ କଲିକତା କ୍ଲବ, ବେଙ୍ଗଲ କ୍ଲବର ସଭ୍ୟ । ସେଇମାନଙ୍କ ଆମନ୍ତ୍ରଣରେ ମୁଁ ସେମାନଙ୍କ ସାଙ୍ଗରେ ଯାଏ । କଲିକତାର ସ୍ମୃତି ମୋର ଅନେକ । କଲିକତା କ୍ଲବକୁ ମୁଁ କେ.ସି. ଦାସ କମ୍ପାନିର ମାଲିକ ବାରିଷ୍ଟର ରବି ଦାସ କିମ୍ବା କଲିକତା ମେଡ଼ିକାଲ୍ କଲେଜ ପ୍ରଫେସର ଡାକ୍ତର ଅମିତ ରାୟ ଏବଂ ଥରେ ଥରେ ଇଣ୍ଡିଆ ଟୁଡେ ଜେନେରାଲ ମ୍ୟାନେଜର କୌସ୍ତୁଭ ଚାଟାର୍ଜୀଙ୍କ ସାଙ୍ଗରେ ସେମାନଙ୍କ ଗେଷ୍ଟ ହୋଇଯାଏ । ସେଠି ଅନେକ ସମୟରେ ବହୁ ବଡ଼ ବଡ଼ ଲୋକଙ୍କ ସହ ସାକ୍ଷାତ ପରିଚୟ ହୋଇଯାଏ । ଏଇ ଯେମିତି ଆଡ଼ଭୋକେଟ୍ ଜେନେରାଲ୍ ମିଃ ସୁଦୀପ ଚାଟାର୍ଜୀ, କିଛି ବଡ଼ ବଡ଼ ଡାକ୍ତର, ଥରେ ଥରେ କଲିକତା ହାଇକୋର୍ଟର ଜଣେ ଦି'ଜଣ ଜଜ୍‌ଙ୍କ ସହ ମଧ୍ୟ ରବି ଦା'(ବାରିଷ୍ଟର ରବି ଦାସ) ପରିଚୟ କରାଇ ଦେଇଥିଲେ । ଆଡ଼ଭୋକେଟ୍ ଜେନେରାଲ୍ ସୁଦୀପ ଚାଟାର୍ଜୀ ରବି ଦା'ଙ୍କ ସାନ ଭାଇ ନରେନ୍ ଦା'ଙ୍କ ସହ ସପରିବାରେ ଭୁବନେଶ୍ୱର ଆସି ମୋର ଅତିଥି ହୋଇଥିଲେ । ସେମାନଙ୍କୁ ରାଜ୍ୟ ଅତିଥି ଭବନରେ ତିନୋଟି ଭି.ଆଇ.ପି. ରୁମ୍‌ରେ ମୁଁ ରଖାଇଥିଲି । ଦୁହେଁ ଭାରି ଖୁସି ହୋଇ ତିନିଦିନ ରହିଥିଲେ । ତା'ପରେ କଲିକତା ମୁଁ ଯେତେବେଳେ ଗଲି ସେଠାରେ ସମସ୍ତଙ୍କ ଆଗରେ ମୋର ପ୍ରଶଂସାରେ ଶତମୁଖ ହୋଇଥିଲେ । ମୁଁ ନ୍ୟାସନାଲ୍ ୟୁନିୟନ୍ ଅଫ୍ ଜର୍ଣ୍ଣାଲିଷ୍ଟର ସର୍ବ ଭାରତୀୟ ସଭାପତି

ହେବା ପରେ( ୧୯୯୦ ସେପ୍ଟେମ୍ବର ) ଯେତେବେଳେ ପ୍ରଥମେ କଲିକତା ଗଲି ବାଗ୍‌ବଜାର କେ.ସି. ଦାସଙ୍କ ଘରେ ମୋର ସମ୍ବର୍ଦ୍ଧନା ଆୟୋଜନ ହୋଇଥିଲା । ମୋତେ ଦାମିକା ଶାଲ୍, ପାର୍କର ପେନ୍‌ସେଟ୍ ଏବଂ ଦାମୀୟ ସିଲ୍କର ବେଶ୍ ଦାମୀ ଧୋତି ପଞ୍ଜାବୀ ଉପହାର ଦେଇଥିଲେ । ଏଇ ସୌହାର୍ଦ୍ଦ୍ୟ ସବୁଠାରେ ମିଳେନାହିଁ ।

ମୁଁ କଲିକତାରେ ଦି ଷ୍ଟେଟ୍‌ସମ୍ୟାନ ଖବରକାଗଜ ସହ ସମ୍ପୃକ୍ତ ଥିଲି । ଷ୍ଟେଟ୍‌ସମ୍ୟାନ୍‌ର ଓଡ଼ିଶାର ଯିଏ ବିଜିନେସ୍ ରିପ୍ରେଜେଣ୍ଟେଟିଭ୍ ଥିଲେ ତାଙ୍କ ଅବହେଳାରୁ ସୂଚନା- ଲୋକସମ୍ପର୍କ ବିଭାଗରେ ପ୍ରାୟ ପଚାଶ ଲକ୍ଷରୁ ଊର୍ଦ୍ଧ୍ୱ ଟଙ୍କାର ବିଜ୍ଞାପନ ବିଲ୍ ବାକି ପଡ଼ିଥିଲା । ମୋତେ ସେ ଦାୟିତ୍ୱ ୧୯୮୫/୮୬ ମସିହାରେ ଦିଆଯାଇଥିଲା । ମୁଁ ମୋ ନାମରେ ତା' ନରଖି ମୋ ପତ୍ନୀଙ୍କ ନାମରେ ବିଜ୍‌ନେସ୍ ରିପ୍ରେଜେଣ୍ଟେଟିଭ୍ ଦାୟିତ୍ୱ ନେଇଥିଲି । ସ୍ଥିର ହୋଇଥିଲା ଓଡ଼ିଶାରୁ ଯେତେ ବିଲ୍ ଆଦାୟ ହେବ ତା'ର ଦଶ ଶତାଂଶ ମୁଁ କମିଶନ୍ ପାଇବି । ଷ୍ଟେଟ୍‌ସମ୍ୟାନ୍‌ର ଅତିରିକ୍ତ ଏମ୍.ଡି. ତଥା ଜେନେରାଲ୍ ମ୍ୟାନେଜର ଥିଲେ 'ବାସୁଦେବ ରେ' । ସେ ପ୍ରକୃତରେ ରାୟ । ମାତ୍ର ବ୍ରିଟିଶ୍ ଷ୍ଟାଇଲ୍‌ରେ ନିଜ ସାଙ୍ଗିଆକୁ ରାୟ ବଦଳରେ ରେ' ରଖିଥା'ନ୍ତି । ସେ ଷ୍ଟେଟ୍‌ସମ୍ୟାନ୍‌ର ଥିଲେ ସବୁଠାରୁ ପାୱାରଫୁଲ୍ । ମୁଁ କଲିକତା ଷ୍ଟେଟ୍‌ସମ୍ୟାନ୍ ଅଫିସ୍‌କୁ ଗଲେ ଭୁବନେଶ୍ୱରର ବିଜ୍ଞାପନ ବିଲ୍ ସମ୍ପର୍କରେ ମୋତେ ଡକାଇ ଅଧିକ ବିଜ୍ଞାପନ ଓ ବିଲ୍ କାହିଁକି ଆଦାୟ ହେଉନାହିଁ ବୋଲି ଏକ ପ୍ରକାର କୈଫିୟତ ମାଗନ୍ତି । ମାତ୍ର ମୁଁ ତାଙ୍କୁ ଓଡ଼ିଶାର ସ୍ଥିତି ସମ୍ପର୍କରେ ବୁଝାଇ ଏହାଠାରୁ ଅଧିକ ସମ୍ଭବ ନୁହେଁ ବୋଲି ଶୁଣାଇ ଦିଏ । ସେ ଥରେ ଅସନ୍ତୁଷ୍ଟ ହୋଇ ମୋତେ କ'ଣ କହିଆସୁଥିଲେ ହଠାତ୍ ସୁଦୀପ ଚାଟାର୍ଜୀ ରୁମ୍‌କୁ ପଶିଆସିଲେ । ସେତେବେଳେ ସୁଦୀପ୍‌ବାବୁ ଆଡ଼ଭୋକେଟ୍ ଜେନେରାଲ୍‌ରୁ ଗଲେଣି । ଦି ଷ୍ଟେଟ୍‌ସମ୍ୟାନ୍‌ର ଗୋଟିଏ ଗୁରୁତ୍ୱପୂର୍ଣ୍ଣ ମୋକଦ୍ଦମାରେ କନ୍‌ସଲ୍ଟ କରିବାକୁ ବାସୁଦେବ ରେ' ବା ବି.ରେ'ଙ୍କ ରୁମ୍‌କୁ ଆସିଥିଲେ । ମୋତେ ହଠାତ୍ ସେଠାରେ ଦେଖି ଆଶ୍ଚର୍ଯ୍ୟ ହୋଇ ପଚାରିଲେ ଆରେ ନରେନ୍‌ବାବୁ ଆପଣ ? ରେ' ସାହେବ ସୁଦୀପ୍‌ବାବୁଙ୍କୁ ଦେଖି ଠିଆହୋଇ ପଡ଼ି କରମର୍ଦ୍ଦନ କଲେ । ମୁଁ ରେ' ସାହେବଙ୍କୁ କହିଲି ମୁଁ ଆସୁଛି । ସୁଦୀପ୍‌ବାବୁ କହିଲେ ଆଜି ସନ୍ଧ୍ୟାରେ ବାଗ୍‌ବଜାରରେ ଦେଖାହେବ ? ମୁଁ ହସି କହିଲି ରବି ଦା' ତ ସକାଳୁ କହିଛନ୍ତି- ଯିବି । ମୁଁ ବାହାରି ଆସିଲି । ମିଃ ରେ' ଷ୍ଟେଟ୍‌ସମ୍ୟାନ୍‌ର ଆଇ.ଇ.ଏନ୍.ଏସ୍.(ଇଣ୍ଡିଆନ୍ ଇଷ୍ଟର୍ଣ୍ଣ ନିଉଜ୍ ପେପର୍ ସୋସାଇଟି)ରେ ସଦସ୍ୟ ଥିଲେ । ସେଇ ସୂତ୍ରରେ ସେ ସମ୍ବାଦପତ୍ର ସାମ୍ବାଦିକ-ଅଣ ସାମ୍ବାଦିକ ମଜୁରୀବୋର୍ଡ଼ରେ ସଦସ୍ୟ ଥିଲେ । ମୁଁ ଏନ୍.ୟୁ.ଜେ.ର ସଭାପତି ରୂପେ ଏଥିରେ ମଧ ସଦସ୍ୟ ଥିଲି । ଦିଲ୍ଲୀରେ ମଜୁରୀ ବୋର୍ଡ଼ର ଏକ ବୈଠକରେ ମୋର ମିଃ ରେଙ୍କ ସହ ଦେଖାହୋଇଗଲା । ମୁଁ ଏଭଳି ଏକ ଗୁରୁତ୍ୱପୂର୍ଣ୍ଣ ବୋର୍ଡ଼ରେ ସଭ୍ୟ ସେ କଥା ସେ କଳ୍ପନା କରିନଥିଲେ । ସେ ମୋତେ ଦେଖି ପଚାରିଲେ ମିଃ ଧଲ୍ ୟୁ ଆର୍ ହିୟର ? ମୁଁ କହିଲି ଆଇ ଆମ୍ ଏ ମେମ୍ବର, ବିକଜ୍ ଆଇ ଆମ୍ ପ୍ରେସିଡେଣ୍ଟ ଅଫ୍ ଏନ୍‌ୟୁଜେ । ସେ ଏତେଟା ଆଶା କରିନଥିଲେ । ଦି'ମାସ ପରେ ଯେତେବେଳେ ତାଙ୍କ ସହ ପୁଣି କଲିକତା ଷ୍ଟେଟ୍‌ସମ୍ୟାନ୍ ଅଫିସ୍‌ରେ ଦେଖାହେଲା ସେ ସମ୍ପୂର୍ଣ୍ଣ ବଦଳି ଯାଇଥିଲେ । ମୁଁ ତାଙ୍କୁ କାର୍ଡ଼ ଦେବା ସଙ୍ଗେ ସଙ୍ଗେ ମୋତେ ନିଜେ ଆସି ଡୋର୍ ପାଖରୁ କରମର୍ଦ୍ଦନ କରି ନେଇଗଲେ । ସେହି ବର୍ଷ ମୁଁ ଅନୁବାଦ ପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ମଧ ପାଇଯାଏ । ତା' ପର ଠାରୁ ମୁଁ ଯେତେବେଳେ ଷ୍ଟେଟ୍‌ସମ୍ୟାନ୍ ଯାଇଛି ବି. ରେ' ମୋତେ ବନ୍ଧୁ ରୂପେ ଗ୍ରହଣ କରିଛନ୍ତି । ମୁଁ ଏତେକଥା ବର୍ଣ୍ଣନା କରିବାର ଅର୍ଥ ହେଲା ତମେ କ'ଣ ତମେ ନିଜେ କହିବା ଆବଶ୍ୟକ ନାହିଁ । ତାହା ଆପେ ଆପେ ପଦାକୁ ଆସିବ ।

ଭୁବନେଶ୍ୱର ପୁସ୍ତକମେଳା ଆରମ୍ଭ ହେବା ପରେ ଦି ଷ୍ଟେଟ୍‌ସମ୍ୟାନ୍, ଦି ହିନ୍ଦୁ ଏବଂ ଟେଲିଗ୍ରାଫ୍ ଖବର କାଗଜ ଭଳି ବଡ଼ବଡ଼ ଇଂରାଜୀ କାଗଜ ଅଂଶଗ୍ରହଣ କରୁଥିଲେ । ମୁଁ ଏଥିପାଇଁ ଷ୍ଟେଟ୍‌ସମ୍ୟାନ୍ ଜେନେରାଲ୍ ମ୍ୟାନେଜରଙ୍କୁ ଅନୁରୋଧ କରିବାରେ ସେ ସାଙ୍ଗେସାଙ୍ଗେ ରାଜି ହୋଇଥିଲେ । ୧୯୮୫ରେ ଭୁବନେଶ୍ୱର ପୁସ୍ତକମେଳା ଆରମ୍ଭ ହେଲା । ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଫିତାକାଟି ଏହା ଶୁଭ ଉଦ୍‌ଘାଟନ କରିଥିଲେ । ଦି ଷ୍ଟେଟ୍‌ସମ୍ୟାନ୍ ଏଥିରେ ଅଂଶନେବାରୁ ହିନ୍ଦୁ ଓ ଟେଲିଗ୍ରାଫ୍ ଏବଂ ବର୍ଷକ ପରେ ହିନ୍ଦୁସ୍ଥାନ ଟାଇମ୍ସ ଅଂଶଗ୍ରହଣ କରିଥିଲେ । ଷ୍ଟେଟ୍‌ସମ୍ୟାନ୍ ଏ କ୍ଷେତ୍ରରେ ଆମ ସହ ଅନେକ ବର୍ଷ ଧରି ଯୋଗାଯୋଗ ରଖିଥିଲେ । ତା'ର କାରଣ ହେଲା ଷ୍ଟେଟ୍‌ସମ୍ୟାନ୍ କର୍ତ୍ତାଙ୍କ ସହ ମୋର ସମ୍ପର୍କ ।

ଜୀବନରେ ଅନେକ ଘଟଣା ଘଟିଛି । ସବୁ କିଛି ଲେଖିବା ସମ୍ଭବପର ନୁହେଁ । ଆଉ ଏକ ଘଟଣା ହେଲା ଅଶୀ ଦଶକରେ ଦୂରଦର୍ଶନରେ ରାମାୟଣ ଧାରାବାହିକୀ ଆରମ୍ଭ ହେଲା । ୧୯୮୪ ମସିହା ବେଳକୁ ପ୍ରତି ରବିବାର ୯ଟାରୁ ୧୦ଟା ପର୍ଯ୍ୟନ୍ତ ସଂପ୍ରସାରିତ ହେଉଥିଲା । ଏହାର ପ୍ରଯୋଜକ ଓ ନିର୍ଦ୍ଦେଶକ ଥିଲେ ରାମାନନ୍ଦ ସାଗର । ଏଥିରେ ହନୁମାନଙ୍କ ଭୂମିକାରେ ବିଖ୍ୟାତ ମଲ୍ଲବୀର ଦାରା ସିଂହଙ୍କ ଅଭିନୟ ସମସ୍ତଙ୍କୁ ମୁଗ୍ଧ କରିଥିଲା । ୧୯୮୬ ମସିହା ଏପ୍ରିଲ ଶେଷ ସପ୍ତାହରେ ରାମାନନ୍ଦ ସାଗର ଓ ଦାରା ସିଂହ ଭୁବନେଶ୍ୱର ଆସିଥିଲେ । ଓଡ଼ିଶାରେ କିଛି ଦୃଶ୍ୟ ସୁଟିଂ କରିବା ପାଇଁ ସ୍ଥାନ ନିରୂପଣ କରିବା ଉଦ୍ଦେଶ୍ୟରେ ସେମାନେ ଆସିଥିଲେ । ଜାନକୀବାବୁଙ୍କ ସହ ତାଙ୍କ ମୁଖ୍ୟମନ୍ତ୍ରୀ ବାସଭବନରେ ସେମାନଙ୍କର ସାକ୍ଷାତ ହେଲା । ମୁଁ ଏହି ସାକ୍ଷାତବେଳେ ଉପସ୍ଥିତ ଥିଲି । ବାହାରକୁ ବାହାରିବାବେଳେ ଅନେକ ଅଫିସର ଓ ଆମେ ଦୁଇଜଣ ସାମ୍ବାଦିକ ମୁଁ ଏବଂ ୟୁ.ଏନ୍.ଆଇ.ର ନିଖିଲ ଭଟ୍ଟାଚାର୍ଯ୍ୟ ଥିଲୁ । ପରେ ସେମାନଙ୍କ ସହ ଆମେ ସିମିଳିପାଳ ଯାଇଥିଲୁ । ରାମାନନ୍ଦ ସାଗର ସେଠାରେ କିଛି ସ୍ଥାନ ବିଶେଷ କରି ଜଳପ୍ରପାତ ଏବଂ କିଛି ଜଙ୍ଗଲ ଭିତର ସ୍ଥାନ ନିର୍ବାଚନ କରିଥିଲେ । ମାତ୍ର ପରେ ଶୁଣିଲୁ ସେମାନେ ସୁଟିଂ ପାଇଁ ଆଉ ଓଡ଼ିଶା ଆସିବେ ନାହିଁ ବୋଲି ସ୍ଥିର କଲେ । ରାମାନନ୍ଦ ସାଗର ଓ ଦାରା ସିଂହଙ୍କ ସହ ମୋର ଫଟୋଟି ଏଠାରେ ଦେଲି । ଏଥିରେ ବହୁ ବଡ଼ ଅଫିସର ମଧ ଅଛନ୍ତି ।

ପୁରୁଣା ଫଟୋ ଦେଖୁଦେଖୁ ୧୯୬୪ ମସିହା ମାର୍ଚ୍ଚ ମାସ ୨୭ ତାରିଖ ବିଷୟ ମନକୁ ଆସିଲା । କଟକରେ ଇଣ୍ଡୋ-ସୋଭିଏତ୍ ମୈତ୍ରୀ ସଂସଦର ଉତ୍ସବ । ମୁଁ ସେତେବେଳେ ମାତୃଭୂମି କଟକ ଷ୍ଟାଫ୍ ରିପୋର୍ଟର । ଏହି ଉତ୍ସବ ପାଇଁ ବିରାଟ ଆୟୋଜନ ହୋଇଥିଲା । ଏଥିପାଇଁ ଗଠିତ ପ୍ରଚାର କମିଟର ମୁଁ ଥିଲି ଆବାହକ । ବାରବାଟି ଷ୍ଟାଡିୟମ୍‌ରେ ଏହି ଉତ୍ସବ ଅନୁଷ୍ଠିତ ହୋଇଥିଲା । ଏହି ଉତ୍ସବରେ ଯୋଗ ଦେବାପାଇଁ ପୃଥିବୀର ପ୍ରଥମ ମହାକାଶଚାରୀ ୟୁରି ଗାଗାରିନ୍ ଏବଂ ପ୍ରଥମ ମହିଳା ମହାକାଶଚାରୀ ଭାଲେଣ୍ଟିନା ଟେରସ୍‌କୋଭା କଟକ ଆସିଥିଲେ । ୟୁରି ଗାଗାରିନ୍ ୧୯୬୧ ଏପ୍ରିଲ୍ ୧୨ ତାରିଖରେ ଭୋସ୍ତକ-୧ ମହାକାଶ ଯାନରେ ମହାକାଶ ଯାଇଥିଲେ । ଟେରେସ୍‌କୋଭା ୧୯୬୩ ଜୁନ୍ ୧୬ ତାରିଖରେ ଭୋସ୍ତକ-୬ ମହାକାଶ ଯାନରେ ମହାକାଶକୁ ଯାଇଥିଲେ । ସେତେବେଳେ ଏମାନଙ୍କୁ ଦେଖିବାପାଇଁ କେବଳ ଓଡ଼ିଶା ନୁହେଁ- ଭାରତର ଅନେକ ସ୍ଥାନରୁ ଲୋକ କଟକ ଆସିଥିଲେ । ବାରବାଟି ଷ୍ଟାଡିୟମ୍‌ରେ ଏହି ଉତ୍ସବ ଅନୁଷ୍ଠିତ ହୋଇଥିଲା । ମୁଁ ପ୍ରଚାର କମିଟିର ଆବାହକ ରୂପେ ଏହି ଉତ୍ସବରେ ଏକ ଭୂମିକା ନିର୍ବାହ କରିଥିଲି । ୟୁରି ଗାଗାରିନ୍ ଓ ଭାଲେଣ୍ଟିନା ରେରେସ୍‌କୋଭାଙ୍କ ନିକଟରେ ମୁଁ

ବସିବାର ସୁଯୋଗ ପାଇଥିଲି । ବାରବାଟି କୋଣାର୍କ ଘୋଡ଼ା ଗେଟ୍ ବାଟେ ଏହି ବିଶ୍ୱବିଖ୍ୟାତ ଦୁଇ ଅତିଥିଙ୍କ ସହ ସୋଭିଏତ୍ ୟୁନିୟନ୍‌ର ପ୍ରାୟ ପଚାଶ/ଷାଠିଏ ବିଖ୍ୟାତ ଲୋକ ଆସିଥିଲେ । ଭାରତର ବିଖ୍ୟାତ କମ୍ୟୁନିଷ୍ଟ ନେତା ଏସ୍.ଏ. ଡାଙ୍ଗେଙ୍କ ସମେତ କେନ୍ଦ୍ର ସରକାରଙ୍କ ବହୁ ମନ୍ତ୍ରୀ ମଧ୍ୟ ଉତ୍ସବରେ ଯୋଗ ଦେଇଥିଲେ । ବାରବାଟି ଷ୍ଟାଡିୟମ୍ ଗେଟ୍ ହାଉସ୍‌ରୁ ଏମାନେ ବାହାରିବା ସଙ୍ଗେ ସଙ୍ଗେ କଟକ କଳା ବିକାଶ କେନ୍ଦ୍ରର ବହୁ ବାଳିକା ଏମାନଙ୍କ ଦୁଇପାଖରେ ନାଚିନାଚି ବନ୍ଦାପନା କରିବା ସହ ପୁଷ୍ପ ବୃଷ୍ଟି କରି ମଞ୍ଚ ନିକଟକୁ ନେଇ ଯାଇଥିଲେ । ସେତେବେଳେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିଲେ ବୀରେନ୍ ମିତ୍ର । ଏହି ଉତ୍ସବରେ ବିଜୁ ପଟ୍ଟନାୟକ, ବୀରେନ୍ ମିତ୍ରଙ୍କ ସମେତ ଡଃ ମହତାବ, ନବକୃଷ୍ଣ ଚୌଧୁରୀ ପ୍ରମୁଖ ବହୁ ନେତା ଯୋଗ ଦେଇଥିଲେ । ମହାକାଶ ଅଭିଯାନ ପରେ ଏହା ସେମାନଙ୍କ ପ୍ରଥମ ବିଦେଶ ଗସ୍ତ ହୋଇଥିବାରୁ ଏହାର ଗୁରୁତ୍ୱ ବହୁତ ଥିଲା । ଏହି ଉତ୍ସବର ତିନୋଟି ଫଟୋ ଏଠାରେ ଦେଲି । ଏହା ଅତ୍ୟନ୍ତ ଅମୂଲ୍ୟ ଫଟୋ । ଗୋଟିଏ ୟୁରି ଗାଗାରିନ୍, ଅନ୍ୟଟି ମଞ୍ଚ ଉପରେ ଭାଲେଣ୍ଟିନା ଓ ଗାଗାରିନ୍ ଏବଂ ଆଉଗୋଟିଏ ଫଟୋରେ ବାରବାଟି ଷ୍ଟାଡିୟମ୍ ଗେଟ୍‌ହାଉସ୍ ସମ୍ମୁଖରୁ ଏହି ପ୍ରତିନିଧି ଦଳକୁ ବନ୍ଦାପନା ଓ ପୁଷ୍ପ ବୃଷ୍ଟି କରି ମଞ୍ଚ ନିକଟକୁ ନିଆଯାଉଛି । ମୋର ସାମ୍ବାଦିକ ଜୀବନରେ ଏହା ଏକ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ସଂଯୋଜନ । କାରଣ ପୃଥିବୀର ପ୍ରଥମ ମହାକାଶଚାରୀମାନଙ୍କ ଅଭିଜ୍ଞତା ରିପୋର୍ଟିଂ କରିବା ସୌଭାଗ୍ୟର ବିଷୟ । ଏହି ଦୁଇ ମହାକାଶଚାରୀ ସେମାନଙ୍କ ଅଭିଜ୍ଞତା ଋଷ ଭାଷାରେ କହିବାବେଳେ ତାକୁ ଦିଲ୍ଲୀରୁ ଆସିଥିବା ସୋଭିଏତ ଦୂତାବାସର ଜଣେ ଦୋଭାଷୀ ଇଣ୍ଟରପ୍ରିଟର ଇଂରାଜୀରେ ଅନୁବାଦ କରି କହୁଥିଲେ । ମୋର ମନେହୁଏ କଟକରେ ଏହା ସମ୍ଭବତଃ ପ୍ରଥମ ଓ ଶେଷ ଆନ୍ତର୍ଜାତିକ ଉତ୍ସବ । ଏହାର ଗୁରୁତ୍ୱ ସେତେବେଳେ ଅପର୍ଯ୍ୟାପ୍ତ । ଏହାକୁ ରିପୋର୍ଟିଂ ପାଇଁ ଭାରତର ବହୁ ବଡ଼ ବଡ଼ ଖବର କାଗଜର ରିପୋର୍ଟର ଦିଲ୍ଲୀ, କଲିକତା, ବମ୍ବେ ଓ ମାନ୍ଦ୍ରାଜରୁ ଆସିଥାନ୍ତି । ଏହି ମହାକାଶଚାରୀମାନେ ସେହିଦିନ ଅପରାହ୍ନରେ ସ୍ୱତନ୍ତ୍ର ବିମାନ ଯୋଗେ ଦିଲ୍ଲୀ ଫେରିଯାଇଥିଲେ । ଏକଥା ବର୍ଣ୍ଣନା କରିବାବେଳେ ସ୍ୱାଭାବିକ ଭାବେ ସେ ସମୟର ଦୃଶ୍ୟ ମନରେ ଉଙ୍କିମାରିଲା ବେଳେ ଅଦ୍ଭୁତ ଏକ ଶିହରଣ ମନଭିତରେ ଖେଳିଯାଏ । ମୋର ମନେହୁଏ ଓଡ଼ିଶା ପାଇଁ ଏହା ଏକ ଐତିହାସିକ ଘଟଣା । ଜଣେ ସାମ୍ବାଦିକ ଭାବେ ମୁଁ ଏହି ଘଟଣାକୁ ଲିପିବଦ୍ଧ କରିଥିଲି ମାତୃଭୂମିରେ । ସାମ୍ବାଦିକ ଜୀବନରେ ଏଭଳି ଘଟଣା କ୍ୱଚିତ୍ ଆସିଥାଏ ।

ଏବେ ମୋର ବୃତ୍ତିଗତ ଜୀବନକୁ ଆସିବି । ଓଡ଼ିଶାରେ ସାମ୍ବାଦିକମାନଙ୍କର ଏକମାତ୍ର ଅନୁଷ୍ଠାନ ଥିଲା ଉତ୍କଳ ସାମ୍ବାଦିକ ସଂଘ ବା ଉତ୍କଳ ଜର୍ଣ୍ଣାଲିଷ୍ଟ ୟୁନିୟନ । ଏହା ଜାତୀୟ ସ୍ତରରେ ଥିବା ଇଣ୍ଡିଆନ୍ ଫେଡେରେସନ୍ ଅଫ୍ ୱାର୍କିଂ ଜର୍ଣ୍ଣାଲିଷ୍ଟସ୍ (ଆଇ.ଏଫ୍.ଡବ୍ଲ୍ୟୁ.ଜେ.)ର ଅନୁବନ୍ଧିତ ଥିଲା । ମୁଁ ୧୯୬୦ରେ ମାତୃଭୂମିରେ କଟକ ଷ୍ଟାଫ୍ ରିପୋର୍ଟର ରୂପେ ଯୋଗ ଦେବା ପରେ ୧୯୬୨ରେ ପ୍ରଜାତନ୍ତ୍ରର ରାମପ୍ରସାଦ ମହାନ୍ତି(ଜହ୍ନୁରି ଭାଇ ନାମରେ ବିଖ୍ୟାତ) ମୋତେ ନେଇ ଏଥିରେ ସଭ୍ୟ ଶ୍ରେଣୀଭୁକ୍ତ କଲେ । ସେତେବେଳେ ଏହାର ସଭାପତି ଥିଲେ ଏନ୍. କୃଷ୍ଣସ୍ୱାମୀ । ସେ ଟାଇମ୍ସ ଅଫ୍ ଇଣ୍ଡିଆର ଓଡ଼ିଶା ପ୍ରତିନିଧି ଥିଲେ । ମୁଁ ପେଶା ପାଇଁ ଲଢ଼େଇକୁ ସମର୍ଥନ କରେ । ସଦାବେଳେ ମୁଁ ଲଢୁଆ ମନୋବୃତ୍ତି ରଖିଥାଏ । ଆଇ.ଏଫ୍.ଡବ୍ଲ୍ୟୁ.ଜେ.ର ହାଇଦ୍ରାବାଦ ଜାତୀୟ ସମ୍ମିଳନୀରେ ୧୯୬୪ରେ ଓଡ଼ିଶାରୁ ପ୍ରତିନିଧି ରୂପେ ଯୋଗ ଦେଇଥିଲି । ହାଇଦ୍ରାବାଦ ଗାନ୍ଧି ମେଡ଼ିକାଲ୍ କଲେଜ ନିକଟରେ ଆମେ ଏକ ହୋଟେଲ୍‌ରେ ରହିଥିଲୁ । ଓଡ଼ିଶାରୁ ଏହି ଅଧିବେଶନରେ ଆଠଜଣ ଯୋଗ ଦେଇଥିଲେ । ହାଇଦ୍ରାବାଦରୁ ଫେରି ମୁଁ ସଂଗଠନ କାମରେ ମନ ଦେଲି । ମୋର କେମିତି ମନେହେଲା ଉତ୍କଳ ସାମ୍ବାଦିକ ସଂଘର କର୍ମକର୍ତ୍ତା କେବଳ ଚାରି/ପାଞ୍ଚଜଣଙ୍କ

ମଧ୍ୟରେ ସୀମିତ ରହୁଥିଲା । ଏନ୍. କୃଷ୍ଣସ୍ୱାମୀ, ଗୋପାଳ ମିଶ୍ର, ରାମକୃଷ୍ଣ ବେହେରା, ବାଳକୃଷ୍ଣ କାନୁନ୍‌ଗୋ ଏବଂ ଆଉଜଣେ ଦି'ଜଣ । ଯେତେ ଟଙ୍କା ସ୍ମରଣିକା ପାଇଁ ହେଉ ବା ବାର୍ଷିକ ଅଧିବେଶନ ପାଇଁ ହେଉ ଆଦାୟ ହେଉଥିଲା ତା'ର ହିସାବ କେହି ଦିଅନ୍ତି ନାହିଁ । ମୁଁ ଏହାର ପ୍ରତିବାଦ କଲି । ପରେ ଦେଖିଲି ମୋତେ ଅନେକ ସମର୍ଥନ କଲେ । ମୁଁ ସ୍ଥିର କଲି ଏଥିରୁ ବାହାରି ନୂଆ ସଂଘ ଗଢ଼ିବା ପାଇଁ । ମୁଁ ଏ ସମ୍ପର୍କରେ ପ୍ରଥମେ ସମାଜ ପ୍ରତିନିଧି ନାରାୟଣ ରଥଙ୍କ ସହ ପରାମର୍ଶ କଲି । ସେ ମୋତେ କେବଳ ସମର୍ଥନ କଲେ ନାହିଁ ଏ ସମ୍ପର୍କରେ ଅନ୍ୟମାନଙ୍କ ସହ କଥା ହେଲେ । ଏହା ୧୯୭୦ ମସିହାର କଥା । ମୁଁ ସେତେବେଳେ ମାତୃଭୂମିର ଭୁବନେଶ୍ୱର ପ୍ରତିନିଧି । କଟକ-ଭୁବନେଶ୍ୱରର ତିରିଶ/ଚାଳିଶ ଜଣଙ୍କ ସହ ଆଲୋଚନା କଲି । ନାରଣବାବୁ, ନିତିଶ ଚକ୍ରବର୍ତ୍ତି, ଦେବେନ୍ଦ୍ର ମହାନ୍ତି, ସମାଜ କଟକର ଗଦାଧର ମିଶ୍ର ପ୍ରମୁଖଙ୍କ ପରାମର୍ଶ କ୍ରମେ ମୁଁ ଆବାହକ ହୋଇ ଏକ ବୈଠକ ଡାକିଲି । ଏହି ବୈଠକରେ ଚଉଦଜଣ ସାମ୍ବାଦିକ ଯୋଗ ଦେଇଥିଲେ । ହିନ୍ଦୁର ଓଡ଼ିଶା ପ୍ରତିନିଧି ବିଶିଷ୍ଟ ସାମ୍ବାଦିକ ଏନ୍.ରାମସ୍ୱାମୀଙ୍କୁ ପ୍ରଥମେ ସଭାପତି କରାଗଲା । ମାତ୍ର ପରେ ସେ ମନା କରିଦେଲେ । ତା'ପରେ ନାରାୟଣ ରଥଙ୍କୁ ସଭାପତି ଏବଂ ଦେବେନ୍ଦ୍ର ମହାନ୍ତିଙ୍କୁ ସାଧାରଣ ସମ୍ପାଦକ ପଦରେ ରଖାଗଲା । ମୁଁ ସମ୍ପାଦକ ତଥା କୋଷାଧ୍ୟକ୍ଷ ଦାୟିତ୍ୱରେ ରହିଲି । ଉଭୟ ନାରାୟଣ ରଥ ଓ ଦେବେନ୍ଦ୍ର ମହାନ୍ତି ବୟସ୍କ ବ୍ୟକ୍ତି ହୋଇଥିବାରୁ ସେମାନଙ୍କୁ ସଂଗଠନର ମୁଖ୍ୟ ରଖିଲୁ ।

ଏହାପରେ ମୁଁ ଦିଲ୍ଲୀ ଯାଇ ୧୯୭୨ରେ ନ୍ୟାସନାଲ ୟୁନିୟନ୍ ଅଫ୍ ଜର୍ଣ୍ଣାଲିଷ୍ଟ(ଇଣ୍ଡିଆ) ସହ ଓଡ଼ିଶା ୟୁନିୟନ ଅଫ୍ ଜର୍ଣ୍ଣାଲିଷ୍ଟକୁ ଅନୁବନ୍ଧିତ କଲି । ସେତେବେଳେ ଏହାର ସଭାପତି ଥିଲେ ମିନାକ୍ଷୀ ସୁନ୍ଦରମ୍(ସମ୍ପାଦକ ଦି ମେଲ୍-ମାନ୍ଦ୍ରାଜ) ଏବଂ ସାଧାରଣ ସମ୍ପାଦକ ଥିଲେ ବି.ଏନ୍. ରାଓ(ପାଟନା ସର୍ଚ୍ଚଲାଇଟ୍ ଖବର କାଗଜ ଗୋଷ୍ଠିର ମୁଖ୍ୟ ସମ୍ପାଦକ) ।

## -ଓଡିଶା ୟୁନିୟନ ଅଫ୍ ଜର୍ଣ୍ଣାଲିଷ୍ଟସ୍-

୧୯୭୩ରେ ଆମ ଅନୁଷ୍ଠାନ ଓଡ଼ିଶା ୟୁନିୟନ ଅଫ୍ ଜର୍ଣ୍ଣାଲିଷ୍ଟର ବିଧିବଦ୍ଧ ଭାବେ ଆନୁଷ୍ଠାନିକ ଉଦ୍‌ଘାଟନ ହେଲା । ରବିନ୍ଦ୍ର ମଣ୍ଡପରେ ଏଥିପାଇଁ ଏକ ସେମିନାରର ଆୟୋଜନ ହେଲା । ଏଥିରେ ବିଖ୍ୟାତ ସାମ୍ବାଦିକ କୁଲଦୀପ ନାୟାର, ମିନାକ୍ଷୀ ସୁନ୍ଦରମ୍, ପୃଥିଶ୍ ଚକ୍ରବର୍ତ୍ତି, ରାଜେନ୍ଦ୍ର ପ୍ରଭୁ, ବି.ଏମ୍. ରାଓ, କପିଳ ବର୍ମା ପ୍ରମୁଖ ଯୋଗ ଦେଇଥିଲେ । ଓଡ଼ିଶାରୁ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀ, ଡଃ ମହତାବ, ବିଜୁ ପଟ୍ଟନାୟକ, ରାମକୃଷ୍ଣ ପତି, ରବି ରାୟ ଓ ସୁରେନ୍ଦ୍ର ନାଥ ଦ୍ୱିବେଦୀ ପ୍ରମୁଖ ଯୋଗ ଦେଇଥିଲେ । ଏହି ଅଧିବେଶନରେ ମୁଁ ସ୍ୱାଗତ ଭାଷଣ ଦେଉଥିବାର ଛବି ଏଠାରେ ଦେଲି ।

ଅନେକ ସମୟରେ ଏଭଳି କିଛି ସ୍ମରଣୀୟ ଘଟଣାରେ ଜଡ଼ିତ ହୋଇଥିଲି ତାକୁ ଜୀବନର ଶେଷ ପର୍ଯ୍ୟନ୍ତ ମନେ ରଖିବାକୁ ହୁଏ । ଏହିଭଳି ଏକ ଘଟଣା ହେଲା ୧୯୬୯ ମସିହା ଏପ୍ରିଲ ମାସରେ ବାଙ୍କୀକୁ ତହସିଲ୍‌ରୁ ସବ୍‌ଡିଭିଜନ ସ୍ତରକୁ ଘୋଷଣା । ସେତେବେଳେ ସ୍ୱତନ୍ତ୍ର ଜନକଂଗ୍ରେସ ମନ୍ତ୍ରିମଣ୍ଡଳ । ରାଜେନ୍ଦ୍ର ନାରାୟଣ ସିଂହଦେଓ ଥିଲେ ମୁଖ୍ୟମନ୍ତ୍ରୀ । ସୁରେନ୍ଦ୍ର ନାଥ ପଟ୍ଟନାୟକ ଥିଲେ ରାଜସ୍ୱ ଓ ଜଳସେଚନ ଏବଂ ଶକ୍ତିମନ୍ତ୍ରୀ । ସେତେବେଳେ ବାଙ୍କୀର ବିଧାୟକ ଥିଲେ ଡାକ୍ତର ଯୋଗେଶ ଚନ୍ଦ୍ର ରାଉତ । ଯୋଗେଶବାବୁ ମତେ ଅତ୍ୟନ୍ତ ଶ୍ରଦ୍ଧା କରୁଥିଲେ । ସେ ମତେ ଥରେ କହିଲେ ବରି(ବାଙ୍କୀରେ ମୋ ଡାକ ନାମ) ବାଙ୍କୀକୁ କିପରି ସବ୍‌ଡିଭିଜନ କରିବା । ମୁଁ ଏଥିପାଇଁ ଦରଖାସ୍ତ ଦେଉଛି ।

ତୁ ମୁଖ୍ୟମନ୍ତ୍ରୀ ସିଂହଦେଓ, ଡଃ ମହତାବ ଆଉ ସୁରେନ୍ଦ୍ରବାବୁଙ୍କୁ ବାରମ୍ବାର ଏଥିପାଇଁ ଚାପ ଦେ । ତୁ ତ ସମସ୍ତଙ୍କ ସହ ଘନିଷ୍ଠ । ମୁଁ ଆସି ମଝିରେ ମଝିରେ ସମସ୍ତଙ୍କୁ କହିବି । ମୁଁ ଏ କଥାରେ ଲାଗିଗଲି । ବାଙ୍କୀ ହେଉଛି ମୋର ପ୍ରିୟ ଜନ୍ମଭୂମି । ପିଲାଦିନୁ ଆମେ ବାଙ୍କୀ ପାଇଁ ରାଣୀ ଶୁକଦେଇଙ୍କ ପାଇଁ ଆଉ ବାଙ୍କୀ ବରେନ୍ଦ୍ରକୃଷ୍ଣ ବିଦ୍ୟାପୀଠ ପାଇଁ ଗର୍ବିତ ।

ମୁଖ୍ୟମନ୍ତ୍ରୀ ସିଂହଦେଓ ଜଣେ ସ୍ଥିତପ୍ରଜ୍ଞ ବ୍ୟକ୍ତି । ଥରେ ସେ ଯାହାକୁ ବିଶ୍ୱାସ କରି ଶ୍ରଦ୍ଧା କରିବେ ତାକୁ କେବେ ହେୟ କରିବେ ନାହିଁ । ତାଙ୍କ ମନ୍ତ୍ରିମଣ୍ଡଳରେ ଜନକଂଗ୍ରେସର ପବିତ୍ର ମୋହନ ପ୍ରଧାନ ଥିଲେ ଉପ-ମୁଖ୍ୟମନ୍ତ୍ରୀ । ବନମାଳୀ ପଟ୍ଟନାୟକ ଥିଲେ ଶିକ୍ଷାମନ୍ତ୍ରୀ । ଉଭୟ ପବିତ୍ରବାବୁ ଆଉ ବନମାଳୀବାବୁ ମୋତେ ଶ୍ରଦ୍ଧା କରୁଥିଲେ । ଯୋଗେଶବାବୁ ଥିଲେ ସ୍ୱାଧୀନ ବିଧାୟକ । ଡଃ ମହତାବ ଯୋଗେଶବାବୁଙ୍କର ରାଜନୀତିକ ଗୁରୁ ଥିଲେ । ଡଃ ମହତାବ ମୋତେ ମଧ ଶ୍ରଦ୍ଧା କରୁଥିଲେ । ମୋତେ ଯେତେବେଳେ ଦେଖୁଥିଲେ କୌତୁକରେ କହୁଥିଲେ କିହୋ ବରେନ୍ଦ୍ର ଚନ୍ଦ୍ର ସେ ଯୋଗେଶଚନ୍ଦ୍ରଙ୍କୁ କାହିଁକି ହଇରାଣ କରୁଛ ? ମୁଁ ଡଃ ମହତାବଙ୍କୁ କହେ ସାର୍- ଯାହା ମୁଣ୍ଡରେ ଡଃ ମହତାବଙ୍କ ହାତ ଅଛି ତାଙ୍କୁ ଏ ରାଜ୍ୟରେ ହଇରାଣ କରିବାକୁ ସାହସ କରିବ କିଏ ? ଡଃ ମହତାବ ଏକ ପ୍ରାଣଖୋଲା ହସ ହସନ୍ତି ।

## -ବାଙ୍କୀ ସବ୍‌ଡିଭିଜନ-

ବାଙ୍କୀ ସବ୍‌ଡିଭିଜନ ହେବାପାଇଁ ଶେଷରେ ୧୯୬୯ ମସିହା ମାର୍ଚ୍ଚ ମାସରେ ବିଧାନସଭାରେ ପ୍ରସ୍ତାବ ଗୃହୀତ ହେଲା । ଏପ୍ରିଲ ୨ ତାରିଖରେ ବାଙ୍କୀ ପେଣ୍ଡାଲରେ ଏକ ବିରାଟ ଜନସଭା ଆୟୋଜିତ ହେଲା । ରାଜସ୍ୱ ମନ୍ତ୍ରୀ ସୁରେନ୍ଦ୍ର ନାଥ ପଟ୍ଟନାୟକ ମଞ୍ଚରେ ଉପସ୍ଥିତ ଥିଲେ । ମଞ୍ଚରେ ଡଃ ଯୋଗେଶ ରାଉତ, ଗୋକୁଳାନନ୍ଦ ପ୍ରହରାଜଙ୍କ ସହ ମୁଁ ଆସନ ଗ୍ରହଣ କରିଥିଲି । ମୁଁ ସ୍ୱାଗତ ଭାଷଣ ଦେଇ ମୁଖ୍ୟମନ୍ତ୍ରୀ ମହାରାଜା ସିଂହଦେଓ, ଡଃ ମହତାବ ଏବଂ ସବ୍‌ଡିଭିଜନ ବ୍ୟବସ୍ଥାର ମୂଳକର୍ତ୍ତା ସୁରେନ୍ଦ୍ର ପଟ୍ଟନାୟକ ଓ ଯୋଗେଶବାବୁଙ୍କ ଯୋଗୁ ହିଁ ଏହା ସମ୍ଭବ ହୋଇପାରିଲା ବୋଲି କହିଥିଲି । ସୁରେନ୍ଦ୍ର ପଟ୍ଟନାୟକ ତାଙ୍କ ଭାଷଣରେ ମୋତେ ମୋ ଜୀବନର ସବୁଠାରୁ ବଡ଼ ଗୌରବ ଦେଇଥିଲେ । ସେ କହିଲେ ଯୋଗେଶବାବୁ ତ ଏମ୍.ଏଲ୍.ଏ. । ବାଙ୍କୀ ପାଇଁ ଲାଗିବା ତାଙ୍କ କର୍ତ୍ତବ୍ୟ । କିନ୍ତୁ ବରେନ୍ଦ୍ର ଧଳ ଯେପରି ବାଙ୍କୀକୁ ସବ୍‌ଡିଭିଜନ କରିବା ପାଇଁ ଚିଙ୍କ ଭଳି ଲାଗିଗଲେ ତାହାହିଁ ବାଙ୍କୀ ଏତେଶୀଘ୍ର ସବ୍‌ଡିଭିଜନ ହେବା ସମ୍ଭବ ହେଲା । ସୁରେନ୍ଦ୍ରବାବୁଙ୍କ ଭାଷଣ ସେଦିନ ସେଠାରେ ବାଙ୍କୀର ଯେଉଁମାନେ ଉପସ୍ଥିତ ଥିଲେ ସମସ୍ତେ ଶୁଣି ମୋତେ ଅଭିନନ୍ଦନ ଜଣାଇଲେ । ବୁଢ଼ାଲୋକମାନେ ମୋତେ ଆଶୀର୍ବାଦ ଦେଇ କହିଲେ ବରିବାବୁ- ତମେ ବାଙ୍କୀର ସୁଯୋଗ୍ୟ ସନ୍ତାନ । ଜୀବନର କାର୍ଯ୍ୟକୁ ବିଚାର କରିବାବେଳେ ଏହା ମୋତେ ଅନେକ ସମୟରେ ପ୍ରେରଣା ଦେଇଥାଏ । ମୋ ଦଦେଇ(ବାପା) ସେ ସଭାରେ ଉପସ୍ଥିତ ଥିଲେ । ସେ ଘରେ ବୋଉକୁ ଯାଇ ଏକଥା କହି ସନ୍ତୋଷ ଲାଭ କରିଥିଲେ । ବାଙ୍କୀର ସୁଖ-ଦୁଃଖରେ ମୁଁ ସଦାବେଳେ ଭାଗିଦାର ଥାଏ । ଗୋଟିଏ କଥା ମନକୁ ଆସୁଛି । ୧୯୮୨ ମସିହା ଅଗଷ୍ଟ ଶେଷ ବେଳର କଥା । ଦିନେ ସକାଳୁ ମୁଁ ନିତ୍ୟକର୍ମ ଶେଷକରି ବାହାରକୁ ଆସିବାବେଳକୁ ଦେଖିଲି ମୋ ଗେଟ୍ ଆଉ ବାଡ଼ ଚାରିପଟେ ଶହେ-ଦେଢ଼ଶହ ଲୋକ । ମୁଁ ହଠାତ୍ ଘାବରେଇ ଗଲି । କିଛି ଗୋଳମାଳ ହେଲା କି ? ମୋ ଘରର ଗ୍ରିଲ୍ ତାଲା ଖୋଲି ବାହାରକୁ ଆସିବା ମାତ୍ରକେ ଦେଖିଲି ପାଥପୁର, କଇଁମୁଣ୍ଡି, ଗୟଳବାଙ୍କ ପଞ୍ଚାୟତର ସରପଞ୍ଚ ମୋ ଫାଟକ ଖୋଲି ମୋ ପାଖକୁ ଆସି ନମସ୍କାର କଲେ । ଏମାନଙ୍କ ଭିତରୁ ମୁଁ କଇଁମୁଣ୍ଡି

ପଞ୍ଚାୟତର ହଜାରୀ ରାଉତ ଆଉ ପାଥପୁରର ଭରତ ନାୟକଙ୍କୁ ଭଲଭାବେ ଜାଣିଥିଲି । ଏମାନେ ମୋ ପାଖକୁ ପ୍ରାୟ ଆସୁଥିଲେ । ମାତ୍ର ଗୟଳବାଙ୍କ ସରପଞ୍ଚ କେବଳ ମୁହଁଚିହ୍ନା । ସକାଳୁ ସକାଳୁ ଏତେଲୋକ ଦେଖି ମୁଁ ରୀତିମତ ଆଶ୍ଚର୍ଯ୍ୟ ହୋଇଗଲି । ହଜାରୀ ଆଉ ଭରତକୁ ପଚାରିଲି ଏତେ ସକାଳୁ ଏତେ ଲୋକ ଧରି କୁଆଡ଼େ ଆସିଛ ? ସେ କହିଲେ ବାବୁ ଆମେ ବୁଡ଼ିଗଲୁ । ଗତ ଚାରିଦିନ ହେଲା ଇଲେକ୍ଟ୍ରି ସପ୍ଲାଇ ବନ୍ଦ । ଉଠା ଜଳସେଚନ ପଏଣ୍ଟ ଅକାମୀ । ଆମେ ଚାରିଟା ପଞ୍ଚାୟତ ଅଢ଼େଇ ହଜାର ଏକର ଜମିରେ କୋବି, ବିଲାତି ବାଇଗଣ, ଆଳୁ, ପିଆଜ କରିଛୁ । ସବୁ ଉଜୁଡ଼ିଯିବାକୁ ବସିଲାଣି । କାହିଁକି ଇଲେକ୍ଟ୍ରି ସପ୍ଲାଇ ବନ୍ଦ ବୋଲି ପଚାରିବାରୁ ତାରଚୋରି ହୋଇଛି । ଇଲେକ୍ଟ୍ରି ବାବୁ କହୁଛନ୍ତି ତୁମେ ତାର ଆଉ ତାକୁ ଲଗାଇବା ଖର୍ଚ୍ଚ ଦେବ । ସିଏ କୋଡ଼ିଏ ହଜାରରୁ ଅଧିକ ଟଙ୍କା । ଆମେ ଏତେ ଟଙ୍କା କେଉଁଠୁ ଆଣିବୁ । ଯାହା ଥିଲା ସବୁ ସାର, ବିହନ ଖର୍ଚ୍ଚରେ ଶେଷ । ଏବେ ନିଜେ ନିଜେ ପାଣି ବୋହି ଦେଉଛୁ । କିନ୍ତୁ ଆଉ ପାଣି ନାହିଁ । ମୁଁ କହିଲି ଯୋଗେଶବାବୁ କି ଅକ୍ଷୟ ପଟ୍ଟନାୟକ ଏମ୍.ଏଲ୍.ଏ. ପାଖକୁ ଗଲନି । ଯାଇଥିଲୁ । ତାଙ୍କ କଥା କେହି ଶୁଣିଲେ ନାହିଁ । ଯୋଗେଶବାବୁ କହିଲେ ବରି ପାଖକୁ ଯାଅ । ସେ କ'ଣ ଉପାୟ ବାହାର କରିବ । ଅଗତ୍ୟା ମୁଁ ପ୍ୟାଣ୍ଟ ସାର୍ଟ ପିନ୍ଧି ନିରଞ୍ଜନ ପଟ୍ଟନାୟକଙ୍କ ପାଖକୁ ବାହାରିଲି । ନିରଞ୍ଜନ ରାଜ୍ୟର ଜଳସେଚନ ଓ ବିଦ୍ୟୁତ୍ ଶକ୍ତି ମନ୍ତ୍ରୀ ଥାଏ । ନିରଞ୍ଜନ ମୋର ବାଲ୍ୟବନ୍ଧୁ । ଆମେ ପରସ୍ପରକୁ ତୁ ତା' ସମ୍ବୋଧନ କରୁ । ସେ ତା'ର ଘର ଡ୍ରଇଁ ରୁମ୍‌ରେ ବସିଥିଲା । ମୋତେ ଦେଖି ଚା' ମଗାଇଲା । ମୁଁ, ହଜାରୀ, ଭରତ ଓ ଅନ୍ୟ ସରପଞ୍ଚଙ୍କୁ ଡାକି ସବୁ କହିଲି । ସେ ସାଙ୍ଗେ ସାଙ୍ଗେ ଫୋନ୍ କଲା । ସେପଟୁ କାହା ସାଙ୍ଗେ କଥା ହୋଇ କହିଲା ଦୁଇଥର ଚୋରି ହେଲେ ସରକାର ଦେବେ । ମାତ୍ର ତୃତୀୟଥର ଚୋରିହେଲେ ଲୋକେ ଦେବେ । ହଜାରୀ, ଭରତ କହିଲେ ସାର୍ ନିୟମ ଅଛି ବିଜୁଳି ତାର ଜଗିବା ପାଇଁ ପଞ୍ଚାୟତରୁ ଜଣକୁ ମାସିକ ପାଞ୍ଚଶହ ଟଙ୍କା ଦେବାକଥା । ମାତ୍ର ଗତ ଦଶବର୍ଷ ହେଲା ବୋର୍ଡ଼ ପଇସା ଦେଉନି । ଆମେ ଜଗୁଥିଲୁ । ମାତ୍ର ପଇସା ନମିଳିବାରୁ ଆଉ ଜଗିଲୁ ନାହିଁ । ନିରଞ୍ଜନ ଏକଥା ଶୁଣି ବୋର୍ଡ଼ ଚେୟାରମ୍ୟାନ୍‌ଙ୍କୁ ପଚାରିଲା । ସେ ପଟୁ ଯାହା ଶୁଣିଲେ ରାଗିଯାଇ ତୁରନ୍ତ ଏସ୍.ଡି.ଓ. କି ଜେ.ଇ.କୁ ସସ୍‌ପେଣ୍ଡ କରି ଦଶବର୍ଷ ମଧ୍ୟରେ ଏହି ଅର୍ଥ ଯିଏ ଆତ୍ମସାତ୍ କରିଛି ତା'ର ତଦନ୍ତ କରିବାକୁ କହିଲେ । ବାଙ୍କୀରେ ଆଜି ସନ୍ଧ୍ୟାସୁଦ୍ଧା ଯେପରି ଲିଫ୍ଟ ପଏଣ୍ଟ ଚାଲୁହୁଏ ସେ ତୁରନ୍ତ ପଦକ୍ଷେପ ନେବାକୁ କହିଲେ । ଲୋକେ ମନ୍ତ୍ରୀଙ୍କ ଜୟଧ୍ୱନି କରି ଫେରିଲେ । କହିବା ବାହୁଲ୍ୟ ସେହିଦିନ ସବୁ କାମ ହେଲା । ଲୋକେ ସ୍ୱସ୍ତିର ନିଶ୍ୱାସ ମାରିଲେ । ତା' ପରଦିନ ହଜାରୀ, ଭରତ, ଆଉ ଚାରିପାଞ୍ଚଜଣ ବସ୍ତାରେ ବସ୍ତେ ପରିବା ଧରି ମୋ ଘରେ ହାଜର । କହିଲେ ଆପଣ ଯାହା କଲେ ବଞ୍ଚିଗଲୁ । ମୁଁ ପରିବା ଦେଖି କହିଲି ଆରେ ଏ ଲାଞ୍ଚ ମତେ କାହିଁକି ଦେଉଛ ? ଏତେ ପରିବା କିଏ ଖାଇବ ? ସମସ୍ତେ କିନ୍ତୁ ପରିବା ବ୍ୟାଗ୍ ରଖି କହିଲେ ଆପଣଙ୍କୁ ଆମ ଗାଁକୁ ଯିବାକୁ ହେବ । ମୁଁ ସେମାନଙ୍କୁ ବୁଝେଇ ଶୁଝେଇ ବିଦାକଲି । ବାଙ୍କୀରେ ଯାହାର ଯାହା ଅସୁବିଧା ମୋ ପାଖକୁ ଚାଲି ଆସନ୍ତି । ମୋର ଯେତିକି ସାଧ ସେଇ ଅନୁସାରେ ସେମାନଙ୍କୁ ସନ୍ତୁଷ୍ଟ କରେ । ସାରା ବାଙ୍କୀରେ ଏକଥା ରାଷ୍ଟ୍ର ହୋଇଛି । ମୁଁ ପର ରବିବାର ଗାଁକୁ ଗଲାବେଳେ ଅନେକ ଏକଥା ମୋତେ କହିଲେ ।

ମୁଁ ପ୍ରାୟ ବାଙ୍କୀ ଯାଉଥିଲି । ଏବେ ଆଉ ଏତେ ଯାଇ ପାରୁନାହିଁ । ଅଶୀ/ନବେ ଦଶକରେ ବାଙ୍କୀ ପ୍ରାୟ ପ୍ରତି ମାସରେ ଥରେ/ ଦି'ଥର ଯାଉଥିଲି । ତାରିଖ ମନେ ପକାଇ ପାରୁନଥିଲେ ମଧ୍ୟ ଇଏ ସେଇ ୧୯୮୩/୮୪ ମସିହା କଥା । ଥରେ ସନ୍ଧ୍ୟାରେ ମୁଁ ମା' ଚର୍ଚ୍ଚିକାଙ୍କ ମଣ୍ଡପରେ ବସିଛି । ମୋ ସାଙ୍ଗରେ ସାତ/ଆଠଜଣ ସାଙ୍ଗ ମଧ୍ୟ ବସିଛନ୍ତି । ଏଣୁତେଣୁ କଥା ହେଲାବେଳେ ଜଣେ କହିଲା ବରିବାବୁ ମା'ଙ୍କ କୁମାର ପୂର୍ଣ୍ଣିମା ଯାତ୍ରା ଏବେ ବନ୍ଦ ହେବାକୁ

ବସିଲାଣି । ମୁଁ ପଚାରିଲି କାହିଁକି ? ସେ କହିଲା ଆଗରୁ ତମ ପିଲାଦିନେ ରାତିସାରା ଗହଳି ଲାଗିଥାଏ । ଯାତ୍ରାପାର୍ଟିମଧ୍ୟରେ ସାରା ରାତି କମ୍ପିଟିସନ୍ ଲାଗିଥାଏ । ଚର୍ଚ୍ଚିକା ଯାତ୍ରାପାର୍ଟି, ରଗଡ଼ି ଯାତ୍ରାପାର୍ଟିସବୁ ବନ୍ଦ ହୋଇଗଲା । ଭାଙ୍ଗିଗଲା । ଲୋକେ ଆଉ ଆସିବେ କାହିଁକି ? କ'ଣ ଗୋଟାଏ କର । ଅଫିମ/ଗଞ୍ଜେଇ ପଟାଦାର ମଦନ ପାଟରା ଘର ରମାକାନ୍ତ ସେଇଠି ବସିଥିଲେ । ସେ କହିଲେ ବରିବାବୁ ଜଗନ୍ନାଥଙ୍କ ରଥଯାତ୍ରା କୋଡ଼ିଏ ବର୍ଷ ହେଲା ବନ୍ଦ ହୋଇଗଲାଣି । ଠାକୁରେ ଆଉ ଯାଉ ନାହାନ୍ତି । ତମେ ତ ଏ ଗାଁର ପିଲା । ତମ ଉପରେ ସମସ୍ତଙ୍କ ଭରସା । କ'ଣ କିଛି ଗୋଟାଏ କର । ମୁଁ ଏତେ କଥା ଚିନ୍ତା କରିନଥିଲି । ରାମ ଭୁତ ଦୋକାନରେ କୁଳମଣି ମହାପାତ୍ର, ବାବାଜୀ ଭାଇନା, ବଇ, ରମା ପାଟରା ସହ ଆଉ ୪/୫ଜଣ ବସି ଆଲୋଚନା କଲୁ । ସେଇଠି ବସି ମୁଁ ଖୋରଧା ଡି.ଏଫ୍.ଏ.ଙ୍କୁ ଟେଲିଫୋନ୍ କଲି । ମୋ ସାଙ୍ଗରେ ତାଙ୍କର ଭଲ ପରିଚୟ ଥାଏ । ସେ ପ୍ରତିଶ୍ରୁତି ଦେଲେ ରଥପାଇଁ କାଠ ଯୋଗାଇ ଦେବେ । ଜଣେ କାହାକୁ ତାଙ୍କ ପାଖକୁ ପଠାଇବାକୁ କହିଲେ । ବଜାରରୁ ଚାନ୍ଦା ଆଦାୟ ହେଲା । ମୁଁ ନିଜେ ଏବଂ ମୋ ସାଙ୍ଗରେ ଦଶ/ବାରଜଣ ପ୍ରତି ଦୋକାନ ବୁଲି ଚାନ୍ଦା ଆଦାୟ କଲୁ । ଦୁଇଦିନ ମଧ୍ୟରେ ପାଖାପାଖି କୋଡ଼ିଏ ହଜାର ଟଙ୍କା ଆଦାୟ ହେଲା । ସମସ୍ତେ ଉତ୍ସାହରେ ଲାଗିପଡ଼ିଲେ । ସେହିବର୍ଷ ଜୁଲାଇରେ ଜଗନ୍ନାଥ-ସୁଭଦ୍ରା-ବଳଭଦ୍ର ରଥରେ ବିଜେକଲେ । କେବଳ ପ୍ରଭୁଙ୍କ ଇଚ୍ଛାରେ ଏ ସମସ୍ତ କାର୍ଯ୍ୟ ଅତି ସୁରୁଖୁରୁରେ ହୋଇଗଲା । ଆଉ ରଥ ବନ୍ଦ ହୋଇନାହିଁ । ଠାକୁର ରଥରେ ପ୍ରତିବର୍ଷ ବିଜେ ହେଉଛନ୍ତି ।

ଏବେ ରହିଲା କୁମାର ପୂର୍ଣ୍ଣମୀ । ମୁଁ ପ୍ରଫୁଲ୍ଲ କରଙ୍କୁ ଯୋଗାଯୋଗ କଲି । ସେ ଆନନ୍ଦରେ ରାଜି ହେଲେ । ତାଙ୍କ ମେଲୋଡ଼ି ଦଳବଳ ଧରି ସେ କୁମାର ପୂର୍ଣ୍ଣମୀରେ ବାଙ୍କୀ ଗଲେ । ଆରମ୍ଭ ହେଲା ମେଲୋଡ଼ି । ଚାରିଆଡ଼େ ପ୍ରଚାର ହେଲା । ଗାଁ ଗହଳରୁ ଲୋକେ ଛୁଟିଲେ । ରାତି ୨ଟା/୩ଟା ପର୍ଯ୍ୟନ୍ତ ଗୀତ ଚାଲିଲା । ମା'ଙ୍କର କୁମାରୋତ୍ସବ । ପ୍ରାୟ ଦଶ/ବାର ବର୍ଷ ଏପରି ଚାଲିଲା । ପରେ ସବୁ ପେଣ୍ଡାଲରେ ନାଚ-ଗୀତ ପ୍ରତିଯୋଗିତା । ୨୦୦୦ ମସିହାରୁ ପ୍ରଭାତ ତ୍ରିପାଠୀ ଏମ୍.ଏଲ୍.ଏ.ଙ୍କ ଉଦ୍ୟମରେ ଆରମ୍ଭ ହେଲା ବାଙ୍କୀ କୁମାରୋତ୍ସବ । ୨୦୦୫ ମସିହା କୁମାରୋତ୍ସବରେ ମୁଁ ଭାଷଣ ଦେଉଥିବାର ଦୁଇଟି ଫଟୋ ଦେଲି । କୁମାରୋତ୍ସବ ଚାଲିଛି ଏବେ ଖୁବ୍ ଜୋର୍‌ରେ ।

ଜଣେ ସାମ୍ବାଦିକ ରୂପେ ଓଡ଼ିଶାରେ ରାଜନୀତିକ ବ୍ୟକ୍ତିତ୍ୱମାନଙ୍କ ସହ ମୁଁ ଘନିଷ୍ଠ ଭାବେ ପରିଚିତ ଥିଲି । ସ୍ୱାଧୀନତା ପରେ ଓଡ଼ିଶାର ମୁଖ୍ୟମନ୍ତ୍ରୀମାନଙ୍କ ମଧ୍ୟରୁ ନବକୃଷ୍ଣ ଚୌଧୁରୀ ଏବଂ ୨୦୦୦ ମସିହା ପରେ ଆସିଥିବା ନବୀନ ପଟ୍ଟନାୟକଙ୍କୁ ବାଦ୍‌ଦେଲେ ଅନ୍ୟ ସମସ୍ତଙ୍କୁ ମୁଁ ଘନିଷ୍ଠ ଭାବେ ଜାଣିଥିଲି ଏବଂ ସେମାନେ ମଧ୍ୟ ମୋତେ ବ୍ୟକ୍ତିଗତ ଭାବେ ଜାଣିଥିଲେ । ନବକୃଷ୍ଣ ଚୌଧୁରୀଙ୍କୁ ମୁଁ ବିଶେଷ ଭାବେ ଜାଣିନଥିଲି । ମଝିରେ ମଝିରେ ସେ ଯେତେବେଳେ ଭୁବନେଶ୍ୱର ଆସୁଥିଲେ ମୁଁ ଯାଇ ତାଙ୍କୁ ଦେଖାକରିଛି । ସେ ମିତଭାଷୀ ଥିଲେ । ଭୁବନେଶ୍ୱର ଆସିଲେ ତାଙ୍କ ଭଣଜା ନିତ୍ୟାନନ୍ଦ ଦାସଙ୍କ ଟାଇପ୍-୫ ଘରେ ୟୁନିଟ-୨ରେ ରହନ୍ତି । ଏବଂ ନିତ୍ୟାନନ୍ଦବାବୁଙ୍କ ଅଫିସ୍‌କୁ(ଆଦିବାସୀ ମଙ୍ଗଳ ନିର୍ଦ୍ଦେଶାଳୟ) ଯାଇ ସେଠାରେ ଥିବା ଆଦିବାସୀମାନଙ୍କ ଉପରେ ଥିବା ବହି ପଢ଼ନ୍ତି । ନିତ୍ୟାନନ୍ଦବାବୁଙ୍କର ଜଣେ ପିଅନ ସାଇକେଲ୍ ପଛରେ ବସି ସେ ଆସନ୍ତି । ମଝିରେ ମଝିରେ ମୁଁ ସ୍କୁଟରରେ ଯାଉଥିବାବେଳେ ତାଙ୍କୁ ଦେଖି ସ୍କୁଟରରେ ନେଇଯିବା ପାଇଁ ଅନୁରୋଧ କରେ । ମାତ୍ର ସେ ସ୍ୱଚ୍ଛ ହସି କହନ୍ତି- ଆପଣ ଯା'ନ୍ତୁ । ମୁଁ ଏଇଥିରେ ଚାଲିଯିବି । କଳ୍ପନାଛକ ପରେ ରେଳବାଇ ଓଭରବ୍ରିଜ୍ ଉଠାଣିଆ ହୋଇଥିବାରୁ ସେ ସାଇକେଲ୍‌ରୁ ଓହ୍ଲାଇପଡ଼ି ବ୍ରିଜ୍ ପର୍ଯ୍ୟନ୍ତ ଚାଲିଚାଲି ଆସନ୍ତି । ଆଧୁନିକ ଭାରତବର୍ଷରେ ଗୋଟିଏ ରାଜ୍ୟର ସାତବର୍ଷ ମୁଖ୍ୟମନ୍ତ୍ରୀ ଥିବା ଏଭଳି ବିରଳ ବ୍ୟକ୍ତିତ୍ୱ କେବେ ଆଉ ମିଳିବେ ? ସେ ୧୯୫୦ ମେ' ୫

ତାରିଖରୁ ୧୯୫୬ ଅକ୍ଟୋବର ୧୯ ତାରିଖ ପର୍ଯ୍ୟନ୍ତ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିଲେ । ଏହି ବିରଳ ବ୍ୟକ୍ତିତ୍ୱଙ୍କ ସମ୍ପର୍କରେ ମୁଁ ଆସିଛି । ୧୯୦୧ ନଭେମ୍ବର ୨୩ ତାରିଖରୁ ୧୯୮୪ ଜୁନ୍ ୨୪ ତାରିଖ ତାଙ୍କର ଜୀବନକାଳ । ସେ ଓଡ଼ିଶାର ଏକମାତ୍ର ମୁଖ୍ୟମନ୍ତ୍ରୀ ଯାହାଙ୍କୁ ଦୁର୍ନୀତି ସ୍ପର୍ଶ କରିନଥିଲା । ସେ ଥିଲେ ପ୍ରକୃତ ପକ୍ଷରେ ଲୋକଙ୍କ ନେତା । ତାଙ୍କ ଜୀବନୀ ଥିଲା ଏକ ଖୋଲା ଖାତା । ଛନ୍ଦ-କପଟତା ତାଙ୍କୁ ସ୍ପର୍ଶ କରିନଥିଲା । ତାଙ୍କ ସରଳତା ଆଉ ସଚ୍ଚୋଟପଣିଆ ଯୋଗୁ ସେ ନେହେରୁଙ୍କ ପ୍ରିୟପାତ୍ର ଥିଲେ । ସେଇଥିପାଇଁ ପଶ୍ଚିମବଙ୍ଗର ମୁଖ୍ୟମନ୍ତ୍ରୀ ବିଧାନ ରାୟ ଏବଂ ମଧ୍ୟପ୍ରଦେଶ ମୁଖ୍ୟମନ୍ତ୍ରୀ ରବିଶଙ୍କର ଶୁକ୍ଳାଙ୍କ ଦାବି ସତ୍ତ୍ୱେ ରାଉରକେଲା ଇସ୍ପାତ କାରଖାନା ତାଙ୍କ ଯୋଗୁଁ ଓଡ଼ିଶାକୁ ଆସିଲା ।

ସ୍ୱାଧୀନତା ଆନ୍ଦୋଳନ ଓ ପରବର୍ତ୍ତୀ ସମୟରେ ଓଡ଼ିଶାର ପ୍ରକୃତ ନେତା ଥିଲେ ଡକ୍ଟର ହରେକୃଷ୍ଣ ମହତାବ । ସ୍ୱାଧୀନତା ପରର ପ୍ରଥମ ପ୍ରଧାନମନ୍ତ୍ରୀ ଓ ମୁଖ୍ୟମନ୍ତ୍ରୀ । ୧୯୩୮ କଂଗ୍ରେସ କାର୍ଯ୍ୟକାରୀ କମିଟିରେ ଗାନ୍ଧୀଙ୍କ ବିରୁଦ୍ଧରେ ନେତାଜୀଙ୍କୁ ସମର୍ଥନ କରି କାର୍ଯ୍ୟକାରୀ କମିଟି ସଦସ୍ୟ ହୋଇଥିଲେ । ସମ୍ଭବତଃ ସେ ଥିଲେ କଂଗ୍ରେସର ସର୍ବୋଚ୍ଚ କମିଟିର ସର୍ବକନିଷ୍ଠ ସଦସ୍ୟ । ମାତ୍ର ୩୯ ବର୍ଷ ବୟସରେ ସେ କଂଗ୍ରେସର କାର୍ଯ୍ୟକାରୀ କମିଟି ସଦସ୍ୟ ହେଲେ । (ଜନ୍ମ-୧୮୯୯ ନଭେମ୍ବର ୨୧, ତିରୋଧାନ- ୧୯୮୬ ଜାନୁଆରୀ ୨ ତାରିଖ) । ସାହିତ୍ୟ, ସଂସ୍କୃତି, ରାଜନୀତି, ସଂଗଠନ ପ୍ରତ୍ୟେକ କ୍ଷେତ୍ରରେ ଡଃ ମହତାବ ଥିଲେ ଓଡ଼ିଶାର ନେତା । ତାଙ୍କର ମୀନାବଜାର, ରବିବାର ପ୍ରଜାତନ୍ତ୍ର ଓ ଝଙ୍କାର ଥିଲା ଓଡ଼ିଆ ସାହିତ୍ୟିକଙ୍କ ପାବଛ୍ଛ ସଦୃଶ । ଜଣେ ଶିଶୁର ପ୍ରତିଭା ବିକାଶ- ମୀନାବଜାର, ଜଣେ କିଶୋର ବା ଯୁବକର ରବିବାର ପ୍ରଜାତନ୍ତ୍ର ଏବଂ ପାକଳ ହେଲେ ଝଙ୍କାର । ମୋର ସୌଭାଗ୍ୟ ମୁଁ ଏ ସମସ୍ତ ପାବଛ୍ଛ ଅତିକ୍ରମ କରିଛି । ବହୁ ଓଡ଼ିଆ ସାହିତ୍ୟିକଙ୍କର ସେ ଥିଲେ ବାସ୍ତବରେ ଆଦର୍ଶ । ତାଙ୍କରି ପ୍ରେରଣା ଅନେକଙ୍କୁ ଆଜି ଓଡ଼ିଆ ସାହିତ୍ୟର ବିରାଟ ବହିରୁହ କରିଛି । ସାହିତ୍ୟରେ ମୋର ଆଗ୍ରହ ପ୍ରଥମେ ସୃଷ୍ଟି ହୁଏ ମୀନାବଜାରରୁ । ବାଙ୍କୀରେ ମୁଁ ଗଢ଼ିଥିଲି ଚର୍ଚ୍ଚିକା ମୀନାମଣ୍ଡଳୀ । ମୁଁ ଥିଲି ତା'ର ନାୟକ । ଅଷ୍ଟମ ଶ୍ରେଣୀରେ ମୋର ପ୍ରଥମ କବିତା ପ୍ରକାଶ ପାଇଲା । ଜାନୁଆରୀ ୨୬ ତାରିଖ ଦିବସ ଉପଲକ୍ଷେ ମୋର କବିତା ଜାତୀୟ ପତକା ପ୍ରକାଶିତ ହେଲା ୧୯୫୪ ମସିହା ଜାନୁଆରୀ ୨୫ ତାରିଖ ଗୁରୁବାର । ପ୍ରତି ଗୁରୁବାର ମୀନାବଜାର କ୍ରୋଡ଼ପତ୍ର ପ୍ରଜାତନ୍ତ୍ରରେ ପ୍ରକାଶ ପାଉଥାଏ । ମାଟ୍ରିକ୍ ପାଶ୍ ପରେ ରବିବାର ପ୍ରଜାତନ୍ତ୍ର ସାହିତ୍ୟ ପୃଷ୍ଠାରେ ମୋର ଗଳ୍ପ କବିତା କ୍ରମାଗତ ଭାବେ ପ୍ରକାଶ ପାଇଲା ଏବଂ ୧୯୬୧ରେ ଝଙ୍କାରରେ ପ୍ରଥମ ଗଳ୍ପ 'ଉପାନା' ପ୍ରକାଶ ପାଏ । ମୋ ସାହିତ୍ୟ ଓ ସାମ୍ବାଦିକତା ଜୀବନରେ ଡଃ ମହତାବଙ୍କ ପ୍ରଜାତନ୍ତ୍ର ପ୍ରଥମ ପଥ ପ୍ରଦର୍ଶକ ଏହା ମୁଁ ମୁକ୍ତ କଣ୍ଠରେ ସ୍ୱୀକାର କରିବି । ଡଃ ମହତାବଙ୍କ ଓଡ଼ିଶାକୁ ଅବଦାନ ହୀରାକୁଦ ବନ୍ଧ । ଓଡ଼ିଶାରେ କୃଷି ଜଳସେଚନ କ୍ଷେତ୍ରରେ ଏହା ସଫଳତମ ପଦକ୍ଷେପ । ପୃଥିବୀରେ ଏହା ଅନ୍ୟତମ ଦୀର୍ଘତମ ବନ୍ଧ । ଏ ବନ୍ଧର ଲମ୍ବ ୨୫.୮ କିଲୋମିଟର ଏବଂ ଜଳଭଣ୍ଡାରର ଆକାର ୭୪୫ ବର୍ଗ କିଲୋମିଟର । ପ୍ରଥମ ଅବସ୍ଥାରେ ହୀରାକୁଦ ୨ଲକ୍ଷ ୭୧ ହଜାର ୯୫୦ ହେକ୍ଟର ଜମିରେ ଜଳସେଚନ ସୁବିଧା ଯୋଗାଇ ଦେବା ସଙ୍ଗେସଙ୍ଗେ ୨୩୨.୫୦୦ ମେଗାୱାଟ ବିଦ୍ୟୁତ୍ ଶକ୍ତି ଉତ୍ପାଦନ କଲା । ୧୯୫୭ ଜାନୁଆରୀ ୧୩ ତାରିଖରେ ପଣ୍ଡିତ ନେହେରୁ ଏହାକୁ ଉଦ୍‌ଘାଟନ କରିଥିଲେ । ଉଦ୍‌ଘାଟନ ଫଟୋ ଏଠାରେ ଦେଲି । ଏଥିରେ ପଣ୍ଡିତ ନେହେରୁ, ଡଃ ମହତାବ, କେନ୍ଦ୍ର ସ୍ୱରାଷ୍ଟ୍ର ଓ ଜଳସେଚନ ମନ୍ତ୍ରୀ ଗୁଲଜାରିଲାଲ୍ ନନ୍ଦା(ଗାନ୍ଧିଟୋପି ଶିକ୍ଷା) ଓ ରାଜ୍ୟପାଳ ଭୀମସେନ ସାଚାର(ଗାନ୍ଧିଟୋପି ପିନ୍ଧିଥିବା ଅଧା ଦେଖାଯାଉଥିବା ବ୍ୟକ୍ତି) ପ୍ରମୁଖ ଦେଖାଯାଉଛନ୍ତି । ଏହି ଫଟୋ ସମ୍ଭବତଃ ଓଡ଼ିଶାରେ ଆଉ କାହା ନିକଟରେ ଅଛି କି ନାହିଁ ମୋତେ ଜଣାନାହିଁ । ୧୯୬୦ ଅକ୍ଟୋବର ମାସରେ ମୁଁ କଟକରେ ମାତୃଭୂମି ଖବର କାଗଜରେ ସାମ୍ବାଦିକ ରୂପେ ଯୋଗଦେବା ପରେ ରବିବାର

ମାତୃଭୂମିରେ ହୀରାକୁଦ ବନ୍ଧ ଉପରେ ଏକ ପ୍ରବନ୍ଧ ଲେଖିବାବେଳେ ଏହି ଫଟୋଟି ପାଇଥିଲି । ସେହି ଦିନଠାରୁ ଏହା ମୋ ପାଖରେ ଅଛି । ଏହା ଏକ ଅମୂଲ୍ୟ ସମ୍ପଦ ବୋଲି ମୁଁ ମନେକରେ ।

ଡଃ ମହତାବ ମୋତେ ଜାଣିଥିଲେ ମୋ ସ୍କୁଲ ପଢ଼ିବାବେଳୁ । ମୁଁ ଦଶମ ଶ୍ରେଣୀରେ ପଢ଼ିବାବେଳେ ଜଟଣୀ କୁଦିଆରୀ ଠାରେ ଏକ ବିରାଟ ମୀନାମେଳା ଅନୁଷ୍ଠିତ ହୋଇଥିଲା । ତତ୍‌କାଳୀନ ଭାରତର ଅର୍ଥମନ୍ତ୍ରୀ ଚିନ୍ତାମନ ଦେଶମୁଖ ଓ ତାଙ୍କ ପତ୍ନୀ କେନ୍ଦ୍ର ସମାଜ ମଙ୍ଗଳ ବୋର୍ଡ଼ ଚେୟାରମ୍ୟାନ ଦୁର୍ଗାବାଈ ଦେଶମୁଖ ମୁଖ୍ୟ ଅତିଥି ରୂପେ ଯୋଗ ଦେଇଥିଲେ । ତିନିଦିନ ଧରି ଏହି ମେଳା ଅନୁଷ୍ଠିତ ହୋଇଥିଲା । ବିଭିନ୍ନ ପ୍ରତିଯୋଗିତାରେ ମୁଁ ଚାରୋଟି ପୁରସ୍କାର ଜିତି ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିଥିଲି ।

ପରବର୍ତ୍ତିସମୟରେ ମୁଁ ଡଃ ମହତାବଙ୍କ ଶ୍ରଦ୍ଧା ଲାଭ କରିଥିଲି । ମୋତେ ବ୍ୟକ୍ତିଗତ ଭାବେ ସେ କେବଳ ଚିହ୍ନିନଥିଲେ ମଝିରେ ମଝିରେ କେତେକ ଖବର ମଧ୍ୟ ପଚାରୁଥିଲେ । ମୋର ସୌଭାଗ୍ୟ ଏଭଳି ଜଣେ ବିଖ୍ୟାତ ବ୍ୟକ୍ତିତ୍ୱଙ୍କ ଘନିଷ୍ଠ ସାହଚର୍ଯ୍ୟ ଲାଭ କରିଥିଲି ।

ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓ ଥିଲେ ଜଣେ ସ୍ଥିତପ୍ରଜ୍ଞ ରାଜନୀତିଜ୍ଞ । ସେ ଥରେ ଯାହାକୁ ଦେଖୁଥିଲେ ତାକୁ ମନେ ରଖୁଥିଲେ । ମୁଁ ଏହାର ପ୍ରମାଣ ପାଇଥିଲି ଅନେକ ପରେ । ୧୯୫୯ ମସିହାରେ ମୁଁ ବାଙ୍କୀରେ ଏକ ଓଡ଼ିଆ ମୀନାବଜାର ମେଳା ଆରମ୍ଭ କରିଥିଲି । ଜଟଣୀ କୁଦିଆରୀକୁ ଅନୁକରଣ କରି ଏହା କରାଯାଇଥିଲା । ବିଭିନ୍ନ ସ୍ଥାନରୁ ପ୍ରାୟ ଶହେ ପିଲା ବାଙ୍କୀ ଆସିଥିଲେ । ଏହି ମେଳାକୁ ତତ୍‌କାଳୀନ ଉପ-ମୁଖ୍ୟମନ୍ତ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓ ଉଦ୍‌ଘାଟନ କରିଥିଲେ । କହିବା ବାହୁଲ୍ୟ ଡଃ ମହତାବଙ୍କ ପରାମର୍ଶକ୍ରମେ ଆମେ ସିଂହଦେଓଙ୍କୁ ଡାକିଥିଲୁ । ସେଇଠି ମଞ୍ଚରେ ଜହୁରୀ ଭାଇ ରାମପ୍ରସାଦ ମହାନ୍ତି ଏବଂ ମୁଁ ସିଂହଦେଓ ସହ ବସିଥିଲୁ । ଆମ ସହ ବାଙ୍କୀ ଏମ୍‌ଏଲ୍‌ଏ ଡାକ୍ତର ଯୋଗେଶ ଚନ୍ଦ୍ର ରାଉତ ମଧ୍ୟ ମଞ୍ଚରେ ଉପସ୍ଥିତ ଥିଲେ ।

ପରେ ୧୯୬୦ ମସିହାରେ ମୁଁ ମାତୃଭୂମି ଖବର କାଗଜର ସାମ୍ବାଦିକ ରୂପେ କାର୍ଯ୍ୟ କରିବା ପରେ ୧୯୬୪ରେ ଭୁବନେଶ୍ୱର ଠାରେ ସିଂହଦେଓଙ୍କ ସହ ଦେଖାସାକ୍ଷାତ ହେଲା । ସେ ଥିଲେ ବିରୋଧୀ ଦଳର ନେତା । ୧୯୬୫ରେ ବିଜୁ ପଟ୍ଟନାୟକ ଆଉ ବୀରେନ୍ ମିତ୍ରଙ୍କ ବିରୁଦ୍ଧରେ ଦୁର୍ନୀତି ଅଭିଯୋଗ ଆଣି ସେ କେନ୍ଦ୍ର ସରକାରଙ୍କ ନିକଟକୁ ତା'ର ତଦନ୍ତ ପାଇଁ ଦାବି କରିଥିଲେ । ମୁଁ ତାଙ୍କର ଏକ ସାକ୍ଷାତକାର ଆଣିବା ପାଇଁ ତାଙ୍କୁ ଅନୁରୋଧ କରିବାରେ ସେ ରାଜି ହୋଇଥିଲେ । ସାକ୍ଷାତକାର ବେଳେ ସେ ମୋତେ କହିଲେ ଆପଣଙ୍କ ଘର ବାଙ୍କୀ ତ ? ମୁଁ ହଁ କହିବାରେ ସେ ମୀନାବଜାର ମେଳାରେ ମୋତେ ଦେଖିଥିବା କଥା କହିଥିଲେ । ମୁଁ ଆଶ୍ଚର୍ଯ୍ୟ ହୋଇଥିଲି । ସେ ମୋତେ ମନେ ରଖିଛନ୍ତି ଏକଥା ମୁଁ କୃତଜ୍ଞତାର ସହ ତାଙ୍କୁ ଧନ୍ୟବାଦ ଜଣାଇଥିଲି । ଶ୍ରୀ ସିଂହଦେଓ ଥିଲେ ସ୍ୱତନ୍ତ୍ର ଜନକଂଗ୍ରେସ ମିଳିତ ସରକାରର ମୁଖ୍ୟମନ୍ତ୍ରୀ । ୧୯୬୭ ବିଧାନସଭା ନିର୍ବାଚନ ମାର୍ଚ୍ଚ ୫ ତାରିଖରେ ହୋଇ ସ୍ୱତନ୍ତ୍ର(୪୯ଟି ସ୍ଥାନ) ଜନକଂଗ୍ରେସ(୨୬ଟି ସ୍ଥାନ) ମିଳିତ ଭାବେ ୭୫ଟି ସ୍ଥାନ ଅଧିକାର କରି ସରକାର ଗଠନ କଲେ । ୧୯୬୧ ନିର୍ବାଚନରେ ବିଜୁ ପଟ୍ଟନାୟକଙ୍କ ନେତୃତ୍ୱରେ ବିଧାନସଭାର ୧୪୦ଟି ସ୍ଥାନ ମଧ୍ୟରୁ କଂଗ୍ରେସ ୮୨ଟି ସ୍ଥାନ ପାଇଥିବାବେଳେ ୧୯୬୭ରେ ମାତ୍ର ୩୧ଟି ସ୍ଥାନ ପାଇଥିଲା । ତେବେ ଜନକଂଗ୍ରେସ ଏବଂ ସ୍ୱତନ୍ତ୍ର ମଧ୍ୟରେ ସରକାର ଗଠନ ପରେ ପରସ୍ପର ସ୍ୱାର୍ଥଜନିତ ଘଟଣାକୁ ନେଇ ଅନେକ ସମୟରେ ମନୋମାଳିନ୍ୟ ଦେଖାଦେଲା । ପରିସ୍ଥିତି ଜଟିଳ ହେଲା ଯେତେବେଳେ ମୁଖ୍ୟମନ୍ତ୍ରୀ ସିଂହଦେଓ

ଓ ଡଃ ମହତାବଙ୍କ ବିରୁଦ୍ଧରେ ଦୁର୍ନୀତି ଅଭିଯୋଗ ଆଣି ତଦନ୍ତ କମିଶନ ବସାଇବାକୁ ସ୍ଥିର କଲେ । ମାହତାବ କମିଶନ ବସିବା ପୂର୍ବରୁ ସରକାର ଭାଙ୍ଗିଦେବା ପାଇଁ ନିଷ୍ପତ୍ତି ନେଲେ । ୧୯୭୧ ମାର୍ଚ୍ଚ ୬ ତାରିଖରେ ମନ୍ତ୍ରିମଣ୍ଡଳ ବୈଠକରେ ବସି ମହତାବଙ୍କ ବିରୁଦ୍ଧରେ ଜଣିକିଆ ସୁରଜ ପ୍ରସାଦ କମିଶନ ବସାଇବା ପାଇଁ ନିଷ୍ପତ୍ତି ହେଲା । ଜନକଂଗ୍ରେସ ଦଳ ସରକାରରୁ ସମର୍ଥନ ପ୍ରତ୍ୟାହାର କଲେ । ମାତ୍ର ସିଂହଦେଓ ଏ ସମ୍ପର୍କରେ ସରକାର ଘୋଷଣା ପ୍ରକାଶ କଲେ । ମାର୍ଚ୍ଚ ୭ ତାରିଖରେ ସରକାରରୁ ଜନକଂଗ୍ରେସ ମନ୍ତ୍ରୀମାନେ ଇସ୍ତଫା ଦେଲେ । ଆମେ ସାମ୍ବାଦିକମାନେ ଘଟଣାକୁ ଲକ୍ଷ୍ୟରଖି ପବିତ୍ରବାବୁଙ୍କୁ ଏବଂ ମୁଖ୍ୟମନ୍ତ୍ରୀଙ୍କୁ ସାକ୍ଷାତ କରୁଥାଉ । ଶୁଣାଗଲା ମାର୍ଚ୍ଚ ୯ ତାରିଖରେ ରାଜ୍ୟପାଳ ଏସ୍.ଏସ୍. ଆନ୍‌ସାରି ଦିଲ୍ଲୀ ଯିବେ । ସେ ଟ୍ରେନ୍‌ରେ ଯିବାକଥା ଶୁଣି ମୁଁ ଷ୍ଟେସନରେ ପହଞ୍ଚିଲି । ରାଜ୍ୟପାଳଙ୍କ ଜିନିଷପତ୍ର ଷ୍ଟେସନକୁ ଆସିଲା । ଷ୍ଟେସନରେ ମୁଁ ଏକମାତ୍ର ସାମ୍ବାଦିକ । ହଠାତ୍ ୯ଟା ବେଳକୁ ରାଜ୍ୟପାଳଙ୍କ ଜିନିଷପତ୍ର ପୁଣି ରାଜଭବନକୁ ଗାଡ଼ିରେ ବୁହାହୋଇ ଗଲା । ମୁଁ ଜିନିଷ ସହ ଆସିଥିବା କର୍ମଚାରୀଙ୍କୁ ପଚାରିବାରେ ସେ କହିଲେ ଲାଟ୍‌ସାହେବ ଦିଲ୍ଲୀ ଯିବେନାହିଁ । ମୁଁ ସନ୍ଦେହ କରି ସ୍କୁଟର ଛୁଟାଇଲି ପି.ଏମ୍.ଜି. ଛକ ମୁଖ୍ୟମନ୍ତ୍ରୀଙ୍କ ବାସଭବନକୁ । ଚାରିଆଡ଼ ଅନ୍ଧାର । ଲାଇନ୍ କଟିଯାଇଥାଏ । ମୁଁ ସ୍କୁଟର ରଖି ତଳ ମହଲା ଅଫିସ୍‌କୁ ଗଲି । ମହମବତୀ ଜାଳି ମୁଖ୍ୟମନ୍ତ୍ରୀଙ୍କ ପ୍ରାଇଭେଟ୍ ସେକ୍ରେଟାରୀ ଯୁଗଳ ମିଶ୍ର ବସିଥାନ୍ତି । ମୋତେ ଦେଖି କହିଲେ ମୁଖ୍ୟମନ୍ତ୍ରୀ ରାଜଭବନ ଯାଇଛନ୍ତି । ଠିକ୍ ଏହି ସମୟରେ ସିଂହଦେଓଙ୍କ ଗାଡ଼ି ପୋର୍ଟିକୋରେ ରହିଲା । ମୁଁ ନମସ୍କାର କଲି । ସେ ସାମାନ୍ୟ ହସି କହିଲେ ମୁଁ ଇସ୍ତଫା ଦେଇଛି । ତା'ପରେ ଯୁଗଳ ବାବୁଙ୍କୁ କହିଲେ- ମିଃ ଧଳଙ୍କୁ ଇସ୍ତଫା କବି ଦେଇଦିଅ । ଗୋଟିଏ ସରକାରର ଅନ୍ଧକାର ଭିତରେ ପତନ ହେଲା । ମୁଁ ସାମ୍ବାଦିକ ଭାବେ ଏହାର ସାକ୍ଷୀ ହେଲି । ଏହାସହ ସିଂହଦେଓଙ୍କ ସହ ଗୋଟିଏ ଫଟୋ ଏବଂ ଆଉଗୋଟିଏ ଫଟୋରେ ଭାରତର ବୈଦେଶିକ ମନ୍ତ୍ରୀ ରାଜା ଦୀନେଶ ସିଂହ ଓ ସିଂହଦେଓଙ୍କ ସହ ଆଉ ଏକ ଫଟୋ ଦେଲି । ୧୯୬୯ ମସିହା ଜାନୁଆରୀ ଓ ମାର୍ଚ୍ଚ ମାସର ।

୧୯୬୧ ଜୁନ୍ ୨୩ ତାରିଖରେ ବିଜୁ ପଟ୍ଟନାୟକ ଓଡ଼ିଶାର ମୁଖ୍ୟମନ୍ତ୍ରୀ ରୂପେ ଶପଥ ଗ୍ରହଣ କଲେ । ଓଡ଼ିଶା ବିଧାନସଭାର ୧୪୦ଟି ଆସନ ମଧ୍ୟରୁ ପ୍ରଥମ ଥର ପାଇଁ କଂଗ୍ରେସ ଦଳର ୮୨ଜଣ ବିଧାୟକଙ୍କୁ ସେ ଜିତାଇ ଆଣିଥିଲେ । ସ୍ୱାଧୀନତା ପରେ କଂଗ୍ରେସ ଦଳ ଏହି ପ୍ରଥମଥର ପାଇଁ ବିଧାନସଭା ନିର୍ବାଚନରେ ପୂର୍ଣ୍ଣ ସଂଖ୍ୟା ଗରିଷ୍ଠତା ଲାଭ କରିଥିଲା । ୧୯୫୨ ପ୍ରଥମ ନିର୍ବାଚନରେ କଂଗ୍ରେସ ଦଳ ୬୭ଟି ସ୍ଥାନ ଏବଂ ୧୯୫୭ରେ ୫୬ଟି ସ୍ଥାନ ଅଧିକାର କରିଥିଲା । ୧୯୫୨ରେ ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ ଥିଲେ ମଧ୍ୟ ଡଃ ମହତାବ ନିର୍ବାଚନର ସବୁ ଦାୟିତ୍ୱ ନେଇଥିଲେ । ଡଃ ମହତାବ ୧୯୫୦ରୁ ୫୨ ପର୍ଯ୍ୟନ୍ତ ନେହେରୁଙ୍କ କ୍ୟାବିନେଟ୍‌ରେ କ୍ୟାବିନେଟ୍ ମନ୍ତ୍ରୀ ଥିଲେ । ୧୯୫୨ରେ ନେହେରୁ ତାଙ୍କୁ ତାଙ୍କ ନୂଆ ମନ୍ତ୍ରିମଣ୍ଡଳରେ ନେଇନଥିଲେ । ମହତାବ ୧୯୫୨ ନିର୍ବାଚନରେ ଲୋକସଭାକୁ ନିର୍ବାଚିତ ହୋଇଥିଲେ ଏବଂ ୧୯୫୭ ପର୍ଯ୍ୟନ୍ତ ରାଜ୍ୟ ରାଜନୀତିରୁ ଦୂରରେ ରହିଥିଲେ । ୧୯୫୫ ଓ ୫୬ ମସିହାରେ ବମ୍ବେ ପ୍ରଦେଶର ରାଜ୍ୟପାଳ ହୋଇ ୧୯୫୭ ନିର୍ବାଚନ ପରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୋଇଥିଲେ ।

ବିଜୁ ପଟ୍ଟନାୟକ, ବୀରେନ ମିତ୍ର ଓ ନୀଳମଣି ରାଉତରାୟ ମହତାବଙ୍କ ପଟ୍ଟଶିଷ୍ୟ ଥିଲେ । ମାତ୍ର ଡଃ ମହତାବ ଏମାନଙ୍କୁ ରାଜନୀତିର ମୁଖ୍ୟସ୍ରୋତକୁ ଆଣିବାକୁ ଇଚ୍ଛୁକ ନଥିଲେ । ଏକ ସମୟରେ ବିଜୁବାବୁ ନବବାବୁଙ୍କୁ ତାଙ୍କ ମନ୍ତ୍ରିମଣ୍ଡଳରେ ତାଙ୍କୁ, ବୀରେନ ମିତ୍ର ଓ ନୀଳମଣି ରାଉତରାୟଙ୍କ ପାର୍ଲାମେଣ୍ଟାରୀ ସେକ୍ରେଟାରୀ ରୂପେ ନିଯୁକ୍ତି ଦେବାକୁ ଅନୁରୋଧ କରିଥିଲେ । ମାତ୍ର ମହତାବ ଏହାକୁ ବିରୋଧ କରିଥିଲେ । ଏ ବିଷୟ ନିଜେ ମହତାବ ୧୯୫୨ ଫେବୃଆରୀରେ ବିଜୁବାବୁଙ୍କୁ ଦେଇଥିବା ଏକ ପତ୍ରରେ ଉଲ୍ଲେଖ କରିଛନ୍ତି । ଏହି ପତ୍ରର ପ୍ରଥମ ପରିଚ୍ଛେଦ ଏଠାରେ

ଦେଲୁ । ୧୯୬୭ ମସିହାରେ ଡଃ ମହତାବ ଓଡ଼ିଶା ହାଇକୋର୍ଟରେ ଦାଖଲ କରିଥିବା ସତ୍ୟପାଠରେ ଏହି ପତ୍ର ଅନ୍ତର୍ଭୁକ୍ତ । କେବଳ ୧୯୫୨ ନୁହେଁ, ୧୯୫୯ ମସିହା ମେ' ମାସ ୨୦ ତାରିଖରେ ବିଜୁବାବୁ ମନ୍ତ୍ରୀ ନହୋଇ ପାର୍ଲାମେଣ୍ଟାରୀ ସେକ୍ରେଟାରୀ ରୂପେ କାମ କରିବା ପାଇଁ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କୁ ଅନୁରୋଧ କରିଥିଲେ । ସେ ସମ୍ପର୍କରେ ସେ ମହାରାଜା ସିଂହଦେଓଙ୍କୁ ଦେଇଥିବା ପତ୍ର ଏଠାରେ ଦେଲୁ । ସେ ସିଂହଦେଓଙ୍କୁ ପାଟ୍‌ନା ବୋଲି ଡାକୁଥିଲେ ।

ବିଜୁବାବୁ, ବୀରେନ୍ ମିତ୍ର ଏବଂ ନୀଳମଣି ରାଉତରାୟ ଏକ ସମୟରେ ଡଃ ମହତାବଙ୍କର ଅତ୍ୟନ୍ତ ଅନ୍ତରଙ୍ଗ ଥିଲେ । ମାତ୍ର ପରେ କେଜାଣି କାହିଁକି ଡଃ ମହତାବ ଏମାନଙ୍କର ଉତ୍‌ଥାନକୁ ସହ୍ୟ କରିପାରିଲେ ନାହିଁ । ସେଇଥିପାଇଁ ବିଜୁବାବୁ ୧୯୬୦ରେ ମହତାବଙ୍କ ଘୋର ବିରୋଧୀ ହୋଇଗଲେ । ୧୯୬୦ରେ ନିଜର ଲୋକପ୍ରିୟତାକୁ ଆଧାର କରି କଂଗ୍ରେସ ଦଳରେ ନିଜର ଆଧିପତ୍ୟ ବିସ୍ତାର କଲେ ଏବଂ କଂଗ୍ରେସ ସଭାପତି ହେଲେ । ନୂଆ ବିଧାନସଭା ଉଦ୍‌ଘାଟନ ପାଇଁ ସେ ମହତାବଙ୍କ ପ୍ରସ୍ତାବକୁ ଅଗ୍ରାହ୍ୟ କରି ୧୯୬୧ ନିର୍ବାଚନ ପରେ ନୂଆ ବିଧାନସଭା ଏବଂ ସଚିବାଳୟର ମୁଖ୍ୟମନ୍ତ୍ରୀ ଅଫିସ୍ ଏକ ସାଙ୍ଗରେ ଉଦ୍‌ଘାଟନ କଲେ । ଫଳରେ ଡଃ ମହତାବ ମୁଖ୍ୟମନ୍ତ୍ରୀ ରୂପେ ନୂଆ ବିଧାନସଭା କିମ୍ବା ସଚିବାଳୟ ତୃତୀୟ ମହଲା ମୁଖ୍ୟମନ୍ତ୍ରୀ ଅଫିସ୍‌ରେ ବସିପାରିଲେ ନାହିଁ ।

ବିଜୁବାବୁଙ୍କର ଆଉ ଡଃ ମହତାବଙ୍କ ପ୍ରତି ସମ୍ମାନ ରହିଲା ନାହିଁ । ଏକ ସମୟରେ ବିଜୁବାବୁ ମହତାବଙ୍କୁ ବ୍ଲଡ଼ି ଓଲ୍ଡ ହାଗାର୍ଡ ବୋଲି କହିବାର ମୁଁ ଶୁଣିଛି । ୧୯୬୧ ଜୁନ୍ ବିଧାନସଭା ନିର୍ବାଚନରେ ବିଜୁବାବୁ ଏକାକୀ କଂଗ୍ରେସ ପାଇଁ ୮୨ଟି ସ୍ଥାନ ଆଣି ନୂଆ ରେକର୍ଡ଼ କରିଥିଲେ । ସେହିଭଳି ୧୯୯୦ ନିର୍ବାଚନରେ ଜନତା ଦଳକୁ ନେତୃତ୍ୱ ଦେଇ ବିଧାନସଭାରେ ୧୨୩ଟି ସ୍ଥାନ ଆଣି ଆଉ ଏକ ରେକର୍ଡ଼ କରିଥିଲେ । ବିଜୁବାବୁଙ୍କ ସହ ମୋର ପରିଚୟ ୧୯୬୧ରେ ।

## -ବିଜୁବାବୁଙ୍କ ସହ ସଂପର୍କ-

ମୋର ଜଣେ ବନ୍ଧୁ ବାଙ୍କୀର ସୁବ୍ରତ ମହାପାତ୍ର ସମ୍ବଲପୁରରୁ ବି.ଏ. ପାଶ୍ କରି ପୁନା ଫିଲ୍ମ ଇନ୍‌ଷ୍ଟିଚ୍ୟୁଟ୍‌ରେ ଅଭିନୟ ଶିକ୍ଷା ପାଇଁ ମନୋନୀତ ହେଲେ । ତାଙ୍କ ବାପା ସମ୍ବଲପୁରରେ ସାନିଟାରି ଇନ୍ସପେକ୍ଟର । ପୁନାରେ ପଢ଼ିବା ପାଇଁ ସେ ଟଙ୍କା ଦେଇପାରିବେ ନାହିଁ । ସୁବ୍ରତ ମୋ ପାଖକୁ କଟକ ଆସିଲା । ସବୁ ଶୁଣିବା ପରେ ମୁଁ କହିଲି କ'ଣ କରିବା ? ସେ କହିଲା କେବଳ ବିଜୁବାବୁ ଚାହିଁଲେ ସବୁ ହୋଇପାରିବ । ବିଜୁବାବୁ ଚାରିମାସ ହେଲା ମୁଖ୍ୟମନ୍ତ୍ରୀ ହୋଇଥା'ନ୍ତି । ମୁଁ ସମାଜ ଷ୍ଟାଫ୍ ରିପୋର୍ଟର ଅଦ୍ୱୈତ ବଲ୍ଲଭ ରାୟଙ୍କୁ ସବୁ କହି ତାଙ୍କୁ ସାଙ୍ଗରେ ଧରି ବିଜୁବାବୁଙ୍କ ପାଖକୁ ଆନନ୍ଦ ଭବନ ଗଲି । ବିଜୁବାବୁ ସବୁ ଶୁଣିଲେ । ସୁବ୍ରତ ସମ୍ରାଟ ଆକବରଙ୍କ ଏକ ଅଭିନୟ କରି ବିଜୁବାବୁଙ୍କୁ ହସାଇ ଦେଲା । ବିଜୁବାବୁ ତା' ପାଇଁ ଏବଂ ତା' ସାଙ୍ଗରେ ସାଧୁ ମେହେର ପାଇଁ ମାସକୁ ଦୁଇଶହ ଟଙ୍କାର ସ୍କଲାରସିପ୍ ଦୁଇବର୍ଷ ପାଇଁ ମଞ୍ଜୁର କରିଦେଲେ । ମୋର ସେଇ ପ୍ରଥମ ପରିଚୟ । ତା'ପରେ ପରେ ମୁଁ ବିଜୁବାବୁଙ୍କ ପାଖକୁ ଅନେକ ଥର ଯାଇ ତାଙ୍କ ଶ୍ରଦ୍ଧା ଲାଭ କରିଥିଲି । ମୁଖ୍ୟମନ୍ତ୍ରୀ ଥିବା ସମୟରେ ତାଙ୍କ ଇଣ୍ଟରଭିଉ ମଧ ନେଇଛି ।

ପରେ ପରେ ମୁଁ ବିଜୁବାବୁଙ୍କର ଘନିଷ୍ଠ ହୋଇଥିଲି । ୧୯୭୧ ମସିହାରେ ବିଜୁବାବୁ ମୋତେ ବାଙ୍କୀରୁ ଉତ୍କଳ କଂଗ୍ରେସ ପ୍ରାର୍ଥୀ ରୂପେ ପ୍ରତିଦ୍ୱନ୍ଦ୍ୱିତା କରିବା ପାଇଁ ଏକ ପ୍ରକାର ନିର୍ଦ୍ଦେଶ ଦେଇଥିଲେ । ମୁଁ କିନ୍ତୁ ରାଜନୀତି ପାଇଁ ଆଗ୍ରହୀ

ନୁହେଁ ବୋଲି କହି ବିଜୁବାବୁଙ୍କୁ ବିନୟର ସହ କହିଥିଲି । କେବଳ ୧୯୭୧ ନୁହେଁ ୧୯୭୭ରେ ମଧ୍ୟ ସେ ମୋତେ ସେଇ ପ୍ରସ୍ତାବ ଦେଇଥିଲେ । କହିଥିଲେ ତୁ ଭୟ କାହିଁକି କରୁଛୁ । ଆଇ ଆମ୍ ଦେୟାର ଉଇଥ୍ ୟୁ । ମାତ୍ର ମୋର ରାଜନୀତି ପାଇଁ ଆଗ୍ରହ ନାହିଁ, ମୁଁ ସାମ୍ବାଦିକ ରୂପେ ରହିବାକୁ ଚାହେଁ ବୋଲି ତାଙ୍କୁ କହିଥିଲି । ମୋତେ ବିଜୁବାବୁଙ୍କ ପାଖରେ ବସିଥିବା ନୀଳମଣି ରାଉତରାୟ, ଶରତ କର, ମୀରା ଦାସ ମଧ୍ୟ ବିଜୁବାବୁଙ୍କ କଥା ମାନି ଜନତା ଦଳ ପ୍ରାର୍ଥୀ ରୂପେ ପ୍ରତିଦ୍ୱନ୍ଦ୍ୱିତା କରିବାକୁ ପ୍ରବର୍ତ୍ତାଇଥିଲେ । ମାତ୍ର ମୁଁ ନିଜ ସିଦ୍ଧାନ୍ତରେ ଅଟଳ ଥିଲି । ଯଦି ୧୯୭୧ରେ ପ୍ରତିଦ୍ୱନ୍ଦ୍ୱିତା କରି ମୁଁ ବିଜୟୀ ହୋଇଥା'ନ୍ତି ତେବେ ମୋର ଗତିପଥ ସମ୍ପୂର୍ଣ୍ଣ ଭିନ୍ନ ହୋଇଯାଇଥା'ନ୍ତା । ବିଜୁବାବୁଙ୍କ ସହ ତାଙ୍କ ମୃତ୍ୟୁ ପର୍ଯ୍ୟନ୍ତ ମୁଁ ଘନିଷ୍ଠ ଥିଲି । ଗୋଟିଏ କୌତୁହଳ ଘଟଣା ମନକୁ ଆସୁଛି । ୧୯୮୬ ମସିହା ଫେବୃଆରୀ ମାସରେ ବିଧାନସଭା ଅଧିବେଶନ ଆରମ୍ଭ ହେଲା । ଆରମ୍ଭ ହେବା ପରେ ୧୯୮୬-୮୭ ମସିହା ବଜେଟ୍ ମାର୍ଚ୍ଚ ୭ ତାରିଖରେ ଉପସ୍ଥାପିତ ହେଲା । ବିଜୁବାବୁ ସେତେବେଳେ ବିରୋଧୀଦଳ ନେତା । ବିଜୁବାବୁ ଚେନ୍ ସ୍ମୋକର୍ । ଇଣ୍ଡିଆ କିଙ୍ଗସ୍ ସିଗାରେଟ ତାଙ୍କର ପ୍ରିୟ ବ୍ରାଣ୍ଡ । ବିଧାନସଭା ଗୃହରେ ଅଧଘଣ୍ଟାଏ ବସି ସେ ଲବିକୁ ଚାଲିଆସନ୍ତି ସିଗାରେଟ ଟାଣିବା ପାଇଁ । ବିଧାନସଭା ଚାଲିଥିବାବେଳେ ଏହା ତାଙ୍କର ନିୟମିତ ଅଭ୍ୟାସ । ସେ ଦିନ ଠିକ୍ କେତେ ତାରିଖ ମୋର ମନେପଡୁନି । ସମ୍ଭବତଃ ମାର୍ଚ୍ଚ କୋଡ଼ିଏ କି ଏକୋଇଶ ତାରିଖ ହେବ । ବିଜୁବାବୁ ଲବିକୁ ଆସି ସିଗାରେଟ ପ୍ୟାକେଟ୍ ଖୋଲିଲାବେଳକୁ ସିଗାରେଟ ନାହିଁ । ସାଙ୍ଗେସାଙ୍ଗେ ଲୋକ ଖେଦିଗଲେ ସିଗାରେଟ୍ ଆଣିବା ପାଇଁ । କେଉଁଠି ସିଗାରେଟ୍ ନାହିଁ । ମାର୍ଚ୍ଚ ମାସରେ ଦାମୀ ସିଗାରେଟ ଦର ବଢୁଥିବାରୁ ସବୁ ଦାମୀ ସିଗାରେଟ୍ ଅଣ୍ଡରଗ୍ରାଉଣ୍ଡ ଚାଲିଯାଇଛି । ବିଜୁବାବୁ ସିଗାରେଟ୍ ନପାଇ ଭାରି ବିଗିଡ଼ି ଗଲେ । ଏହି ସମୟରେ ଜଣେ କହିଲା ବରେନ୍ଦ୍ରବାବୁଙ୍କ ପାଖରେ ସିଗାରେଟ ଥିବ । ବିଜୁବାବୁ ପଚାରିଲେ ବରେନ୍ଦ୍ରବାବୁ କିଏ ? ପାଖରେ ଥିବା ସାମ୍ବାଦିକ ରତିକାନ୍ତ ମହାନ୍ତି କହିଲା ସାର୍ ବରେନ୍ଦ୍ର ଧଳ । ଓଃ- ଧଳ ଇଣ୍ଡିଆନ୍ କିଙ୍ଗସ୍ ପିଏ ? ମୁଁ ଠିକ୍ ସେଇ ସମୟରେ ଲବିରେ ପ୍ରବେଶ କରିବାରେ ରତିକାନ୍ତ ଡାକ ପକାଇଲା- ଆଜ୍ଞା- ଆସନ୍ତୁ ସାର୍ ଡାକୁଛନ୍ତି । ମୁଁ ବିଜୁବାବୁଙ୍କ ପାଖରେ ପହଞ୍ଚିଲା ବେଳକୁ ସିଗାରେଟ୍ ନପାଇ ସେ ରୀତିମତ ବିରକ୍ତ । ମୁଁ ସଦାବେଳେ ଦୁଇ ପ୍ୟାକେଟ୍ ଇଣ୍ଡିଆ କିଙ୍ଗସ୍ ସିଗାରେଟ୍ ସାଙ୍ଗରେ ନେଇଥାଏ । ଗୋଟେ ପ୍ୟାକେଟ୍ ମୋ ପକେଟ୍‌ରେ ଥାଏ । ଆଉ ଗୋଟେ ନୂଆ ପ୍ୟାକେଟ୍ ମୋ ଛୋଟ ବ୍ୟାଗ୍‌ରେ ରଖିଥାଏ । ମୁଁ ସାଙ୍ଗେ ସାଙ୍ଗେ ନୂଆ ପ୍ୟାକେଟ୍‌ଟା କାଢ଼ି ବିଜୁବାବୁଙ୍କୁ ବଢ଼ାଇଦେଲି । ସେ ପଚାରିଲେ ହ୍ୱାଇ ଡୁ ୟୁ ସ୍ମୋକ୍ ସୋ ମଚ୍ ? ମୁଁ ହସିଲି, କିଛି କହିଲି ନାହିଁ । ସେ ପଚାରିଲେ ଓକେ, ଥ୍ୟାଙ୍କ୍ ୟୁ ।

ପରଦିନ ସକାଳ ୮ଟା ସାଢ଼େ ୮ଟା ହେବ । ମୋ ଘର କଲିଂବେଲ୍ ଶବ୍ଦ ହେଲା । ମୁଁ ବାହାରକୁ ଯାଇ ଦେଖିଲି ବିଜୁବାବୁଙ୍କ ଖାସ୍ ପିଅନ ବୀର ଠିଆ ହୋଇଛି । ମୁଁ ବୀରକୁ ଦେଖି ଆଶ୍ଚର୍ଯ୍ୟ । ପଚାରିଲି ବୀର ହଠାତ୍ ସକାଳୁ ? ବୁଢ଼ା ସିଗାରେଟ୍ ସରିଗଲାଣିକି ? ବୀର କହିଲା- ବାବୁ କାଲି ଆମ ସାର୍ ଆପଣଙ୍କ ପାଖରୁ କ'ଣ ସିଗାରେଟ୍ ନେଇଥିଲେ କି ? ମୁଁ କହିଲି କାହିଁକି କ'ଣ ହେଲା ? ସେ ଧରିଥିବା ଗୋଟିଏ ପ୍ୟାକେଟ୍ ମୋତେ ବଢ଼ାଇ ଦେଇ କହିଲା- ସାର୍ ପଠାଇଛନ୍ତି । କହିଲେ ଧଳକୁ ନେଇ ଦେଇ ଦେ । ମୁଁ ପ୍ୟାକେଟ୍ ଖୋଲି ପୁରାପୁରି ବୋକା । ପୁରା ପ୍ୟାକେଟ୍ ଇଣ୍ଡିଆ କିଙ୍ଗସ କାର୍ଟୁନ ମାନେ ଦଶପ୍ୟାକେଟ୍ ସିଗାରେଟ୍ । ମୁଁ କହିଲି କିରେ ବୀର- ବଜାରରେ ତ ସିଗାରେଟ୍ ନାହିଁ । ବୁଢ଼ା ପାଇଲା କେଉଁଠୁ ? ସେ କହିଲା ଘରକୁ ଫେରିବା ପରେ ପି.ଏ.ବାବୁ ସବୁଶୁଣି ସିଗାରେଟ୍ ଷ୍ଟକିଷ୍ଟକୁ ଡାକି ବୁଢ଼େ

ଶୋଧିଲେ । ସାଙ୍ଗେ ସାଙ୍ଗେ ଲାଲ୍‌ଚାନ୍ଦ ତିରିଶ କାର୍ଟୁନ ସିଗାରେଟ୍ ଧରି ପହଞ୍ଚିଲା । ମତେ କହିଲେ ଧଳକୁ ନେଇ ଗୋଟେ କାର୍ଟୁନ ଦେଇଦେ । ଇଏ ବିଜୁବାବୁଙ୍କର ଗୋଟିଏ ରୂପ । ଅନେକ ରୂପ ବିଜୁବାବୁଙ୍କର । ପରେ କହିବି ।

## -ମହତାବ - ବିଜୁ ମ୍ୟୁଜିକ ଚେୟାର-

ମୁଁ ସାମ୍ବାଦିକତା ଆରମ୍ଭ କରିବାବେଳେ ବିଧାନ ସଭା ରିପୋର୍ଟିଂ ଖୁବ୍ ଗୁରୁତ୍ୱପୂର୍ଣ୍ଣ ଥିଲା । ତା' ସାଙ୍ଗରେ ରିପୋର୍ଟିଂ ବିଶେଷକରି ଅନୁସନ୍ଧାନମୂଳକ ରିପୋର୍ଟିଂ ଗୁରୁତ୍ୱ ରଖୁଥିଲା । ସେତେବେଳେ ରାଜ୍ୟର ବିକାଶ ପାଇଁ କି କି ସରକାରୀ ପ୍ରକଳ୍ପ ଆରମ୍ଭ ହୋଇଛି ଏବଂ ତାହା କେତେଦୂର କାର୍ଯ୍ୟକାରୀ ହୋଇଛି ସେ ସମ୍ପର୍କରେ ଖବର କାଗଜରେ ବିଶେଷ କିଛି ପ୍ରକାଶ ପାଉନଥିଲା । ମାତୃଭୂମିରେ କୃଷ୍ଣପ୍ରସାଦ ପଟ୍ଟନାୟକ ନାମରେ ଜଣେ ସହକାରୀ ସମ୍ପାଦକ ଥିଲେ । ସେତେବେଳେ କୃଷ୍ଣବାବୁ ଓଡ଼ିଶାରେ ସାମ୍ବାଦିକମାନଙ୍କ ମଧ୍ୟରେ ସବୁଠାରୁ ଉଚ୍ଚଶିକ୍ଷିତ ଥିଲେ । ପାଟନା ବିଶ୍ୱବିଦ୍ୟାଳୟରୁ ଇତିହାସରେ ଏମ୍.ଏ.ରେ ପ୍ରଥମ ଶ୍ରେଣୀ ପାଇଁ ଅଧ୍ୟାପକ ହେବାକୁ ପ୍ରସ୍ତୁତ ହେଉଥିଲେ । ମାତ୍ର ସେ ବାମପନ୍ଥୀ ଭାବଧାରାର ହୋଇଥିବାରୁ ତାଙ୍କୁ ସରକାରୀ କଲେଜରେ ଚାକିରି ପାଇଲେ ନାହିଁ । ଅଳ୍ପ କିଛିବର୍ଷ ପାଇଁ ସେ ଖ୍ରୀଷ୍ଟ କଲେଜରେ ଅଧ୍ୟାପକ ଥିଲେ । ମାତ୍ର ଏକ ବାମପନ୍ଥୀ ଆନ୍ଦୋଳନରେ ଅଂଶଗ୍ରହଣ କରିବାରେ ସେ ଚାକିରି ମଧ୍ୟ ଗଲା । ପରେ ସେ ମାତୃଭୂମିରେ ସହକାରୀ ସମ୍ପାଦକ ରୂପେ କାର୍ଯ୍ୟକଲେ । କୃଷ୍ଣବାବୁଙ୍କ ଆପର୍ଷଣୀୟ ଚେହେରାସାଙ୍ଗକୁ ସଦାବେଳେ ଧୋବ ଫରଫର ପତଳା ଧୋତି ଓ ଧଳା ଗିଲ୍‌କରା ପଞ୍ଜାବୀ ପିନ୍ଧୁଥିଲେ । ଗୋରା ତକ୍‌ତକ୍ ଚେହେରା ସାଙ୍ଗକୁ ତାଙ୍କ ସମୟ ଜ୍ଞାନ ଦେଖିବାର କଥା । ସକାଳ ଆଠଟାରେ ସେ ଠିକ୍ ମାତୃଭୂମି ବାରଣ୍ଡାରେ ପାଦ ଦିଅନ୍ତି ଏବଂ ଠିକ୍ ସାଢ଼େ ବାରଟାରେ ସେଇ ବାରଣ୍ଡାରେ ପହଞ୍ଚି ରିକ୍ସା ଧରନ୍ତି । କୃଷ୍ଣବାବୁ ଥିଲେ ବାଙ୍କୀ ପଥୁରିପଡ଼ା ଗ୍ରାମର । ମୋତେ ସେ ଖୁବ୍ ଶ୍ରଦ୍ଧା କରୁଥିଲେ । ମୁଁ ମାତୃଭୂମିରେ ଷ୍ଟାଫ୍ ରିପୋର୍ଟର ଭାବେ ଯୋଗଦେବା ପରେ ସେ ହିଁ ମୋତେ କେବଳ ଥାନା ରିପୋର୍ଟିଂ ନକରି ବିକାଶମୂଳକ କାର୍ଯ୍ୟ ଏବଂ ଦୁର୍ନୀତି ସମ୍ପର୍କରେ ଅଧିକ ଷ୍ଟୋରି କରିବା ପାଇଁ ପରାମର୍ଶ ଦେଲେ । ସେତେବେଳେ( ୧୯୬୧ରୁ ୬୩) କଟକ କଲେକ୍ଟର ଥିଲେ ଜଣେ ପଞ୍ଜାବୀ ଆଇ.ଏ.ଏସ୍. ଜ୍ଞାନଚାନ୍ଦ । ଏବଂ ରେଭିନ୍ୟୁ ବୋର୍ଡ଼ର ସଭାପତି ଥିଲେ ରାମନାଥନ ଆଇ.ସି.ଏସ୍. । ଓଡ଼ିଶାରେ ସେତେବେଳେ ଦୁଇଜଣ ଆଇ.ସି.ଏସ୍.( ଇଣ୍ଡିଆନ୍ ସିଭିଲ୍ ସର୍ଭିସ୍) ହାକିମଥିଲେ । ଜଣେ ଭି. ରାମନାଥନ ଏବଂ ଆଉ ଜଣେ ବି. ଶିବରମଣ । ୧୯୬୧ରୁ ୧୯୬୫ ପର୍ଯ୍ୟନ୍ତ ଶିବରମଣ ଥିଲେ ଚିଫ୍ ସେକ୍ରେଟାରୀ । ଏହି ଦୁଇଜଣଙ୍କ ମଧ୍ୟରୁ ରାମନାଥନ ଡଃ ମହତାବଙ୍କ ଅତ୍ୟନ୍ତ ପ୍ରିୟ ଥିଲେ । ସେପଟେ ଶିବରମଣ ବିଜୁବାବୁଙ୍କର ଘନିଷ୍ଠ ବନ୍ଧୁ ଥିଲେ । ମୁଁ ଶୁଣିଛି ବିଜୁବାବୁ ଶିବରମଣଙ୍କୁ ଶିବୁ ବୋଲି ଡାକିବାବେଳେ ସେ ବିଜୁବାବୁଙ୍କୁ ବିଜୁ ବୋଲି ସମ୍ବୋଧନ କରନ୍ତି । ମହତାବବାବୁ ମୁଖ୍ୟ ମନ୍ତ୍ରୀ ଥିବା ସମୟରେ ରାମନାଥନ ଚିଫ୍ ସେକ୍ରେଟାରୀ ଏବଂ ବିଜୁବାବୁ ମୁଖ୍ୟମନ୍ତ୍ରୀ ଥିବାବେଳେ ଶିବରମଣ ଚିଫ୍ ସେକ୍ରେଟାରୀ ଥିଲେ । ୧୯୬୫ରେ ଶିବରମଣ କେନ୍ଦ୍ରକୁ ଗଲେ । ରାମନାଥନ ୧୯୬୧ରୁ ୧୯୭୦ ପର୍ଯ୍ୟନ୍ତ ରାଜସ୍ୱ ବୋର୍ଡ଼ ସଦସ୍ୟ ହୋଇ ଏହିଠାରେ ଅବସର ନେଲେ । ଏ ଦୁହିଁଙ୍କ ବିଷୟ ମୁଁ ଉଲ୍ଲେଖ କରିବାର କାରଣ ହେଲା ଦୁହିଁଙ୍କ ପାଖକୁ ମୁଁ ଯାଇ କିଛି କିଛି ସ୍ୱତନ୍ତ୍ର ସମ୍ବାଦ ଆଣୁଥିଲି । ରାମନାଥନଙ୍କ ଅଫିସ୍ କଟକରେ ଥିବାରୁ ମୁଁ ତାଙ୍କ ପାଖକୁ ପ୍ରଥମେ ଯେତେବେଳେ ଗଲି ସେ ମୋତେ ଚାହିଁ କ'ଣ ପାଇଁ ତାଙ୍କ ପାଖକୁ ମୁଁ ଆସିଛି ବୋଲି ପଚାରିଲେ । ମୁଁ କିଛି ସମ୍ବାଦ ସଂଗ୍ରହ କରିଥିଲି । ସେତେବେଳେ ଓଡ଼ିଶାରେ ସବ୍-ଡେପୁଟି କଲେକ୍ଟର

ଏବଂ ଡେପୁଟି କଲେକ୍ଟର ଓ.ଏ.ଏସ୍.ର ଦୁଇଟି ସର୍ବନିମ୍ନ ପାହ୍ୟା ଥିଲା । ସବ୍-ଡେପୁଟିମାନେ ବ୍ଲକ୍‌ରେ ଅତିରିକ୍ତ ବି.ଡି.ଓ. ଏବଂ ଅତିରିକ୍ତ ତହସିଲଦାର ଏବଂ ଡେପୁଟି କଲେକ୍ଟରମାନେ ତହସିଲଗୁଡ଼ିକରେ ତହସିଲଦାର ଭାବେ କାର୍ଯ୍ୟ କରୁଥିଲେ । ୧୯୬୩ ମସିହାରେ ଏହି ଦୁଇଟିଯାକ ପଦବୀ ମିଶ୍ରଣ ହେବ ବୋଲି ଖୁବ୍ ପ୍ରଚାର ହେଉଥିଲା । ତେଣୁ ଆମ ପ୍ରେସ୍‌କୁ ଅନେକ ଟେଲିଫୋନ୍ ଆସୁଥିଲା । ରାଜ୍ୟରେ ସେତେବେଳେ ଅନେକ ସବ୍-ଡେପୁଟି ପଦବୀ ଖାଲିଥିଲା । ମାତୃଭୂମି ସମ୍ପାଦକ ମୋତେ ଏ ସମ୍ପର୍କରେ ଅନୁସନ୍ଧାନ କରି ଏକ ଷ୍ଟୋରୀ ଦେବାକୁ କହିଲେ । ମୁଁ ପ୍ରଥମେ ରେଭିନ୍ୟୁ ବୋର୍ଡ଼ର ଡେପୁଟି ସେକ୍ରେଟାରୀଙ୍କୁ ଭେଟି କଥାବାର୍ତ୍ତା କଲି । ତାଙ୍କର ଜଣେ ଭାଇ ଆଉ ଜଣେ ବନ୍ଧୁ ସବ୍-ଡେପୁଟିରୁ ଡେପୁଟି ହେବାପାଇଁ ଚାହିଁ ବସିଥାନ୍ତି । କିଛି ଲୋକ ଇଣ୍ଟରଭ୍ୟୁ ଦେଇ କିରାଣିରୁ ସବ୍-ଡେପୁଟି ହେବାପାଇଁ ଅପେକ୍ଷା କରିଥାନ୍ତି । ମାତ୍ର ରାମନାଥନ ଆଇ.ସି.ଏସ୍.ଙ୍କୁ ପଚାରିବ କିଏ ? ଫାଇଲ୍ ତାଙ୍କ ପାଖରେ ଥାଏ । ସେତେବେଳେ ୮୧ଟି ସବ୍-ଡେପୁଟି ଏବଂ ୫୦ରୁ ଅଧିକ ଡେପୁଟି ପଦବୀ ଖାଲି ଥାଏ । ମୁଁ ରାମନାଥନଙ୍କୁ ମୋର ଆଇଡେଣ୍ଟିଟି କାର୍ଡ଼ ଦେଲି । ସେତେବେଳେ ଖୁବ୍ କମ୍‌ଲୋକ ଆଇଡେଣ୍ଟିଟି କାର୍ଡ଼ ବ୍ୟବହାର କରୁଥିଲେ । ମାତ୍ର କୃଷ୍ଣବାବୁଙ୍କ ପରାମର୍ଶରେ ମୁଁ ତିରିଶ ଟଙ୍କା ଖର୍ଚ୍ଚ କରି ଦୁଇଶହ କାର୍ଡ଼ ଛାପିଲି । ଆଇଡେଣ୍ଟିଟି କାର୍ଡ଼ ରାମନାଥଙ୍କୁ ବଢ଼ାଇ ଦେଇ କିଛି ଜାଣିବାର ଅଛି ବୋଲି ପଚାରିଲି । ସେ ଅନୁମତି ଦେବା ପରେ ଡେପୁଟି, ସବ୍-ଡେପୁଟି ସମ୍ପର୍କିୟ ପ୍ରଶ୍ନ କଲି । ମୋ ପ୍ରଶ୍ନ ଶୁଣି ସେ ବେଲ୍ ଟିପି ଜଣେ ଜଣେ ଅଫିସରଙ୍କୁ ଡାକିଲେ । ସେ ଆସିବା ପରେ ମୋତେ କହିଲେ ଏ ବାବୁ ଆପଣଙ୍କୁ ସବୁ କହିବେ । ମୁଁ ତାଙ୍କ ସାଙ୍ଗରେ ଗଲି । ସେ ଥିଲେ ଡେପୁଟି ସେକ୍ରେଟାରୀ । ତାଙ୍କ ରୁମ୍‌ରେ ବସି ମୁଁ ସବୁ ପ୍ରଶ୍ନ କରିବାରେ ସେ କହିଲେ ସବ୍-ଡେପୁଟି, ଡେପୁଟି ମିଶ୍ରଣ ଚିଫ୍ ମିନିଷ୍ଟରଙ୍କ ପାଖକୁ ଯାଇଛି । ମୋତେ ସେ ପଚାରିଲେ ବିଜୁବାବୁ ଆପଣଙ୍କୁ ଜାଣିଛନ୍ତି ? ମୁଁ ହଁ କରିବାରେ ସେ କହିଲେ ଆପଣ ଟିକେ ଚିଫ୍ ମିନିଷ୍ଟରଙ୍କୁ କହିଲେ ଅନେକ ଲୋକ ଉପକୃତ ହୁଅନ୍ତେ । ମୁଁ ମୋର ଜାଣିବା କଥା ସବୁ ବିସ୍ତୃତ ଭାବେ ବୁଝିଲି । ତାଙ୍କୁ କହିଲି ସୁବିଧା ଦେଖି ମୁଁ ମୁଖ୍ୟମନ୍ତ୍ରୀଙ୍କୁ କହିବି ।

ପରଦିନ ମୁଁ ଏ ସମସ୍ତ ଘଟଣାକୁ ବନେଇ ଚୁନେଇ ବଡ଼ ଷ୍ଟୋରି କରି ପ୍ରଥମ ପୃଷ୍ଠାରେ ଦେଲି । କିପରି ସଚିବାଳୟ ଓ ରେଭିନ୍ୟୁ ବୋର୍ଡ଼ ମଧ୍ୟରେ ଟଣାଓଟରା ଲାଗିଛି ସେ କଥା ଟିକିଏ ଟେଙ୍ଗିଦେଲି । ଏ ଖବର ପ୍ରକାଶ ପାଇବା ପରେ ଅନେକ ଟେଲିଫୋନ୍ କଲ୍ ଆମ ପ୍ରେସ୍‌କୁ ଆସିଲା । ରିପୋର୍ଟର ଭାବେ ଏହି ଖବର ମୋତେ ଆତ୍ମତୃପ୍ତି ଦେଇଥିଲା । ମୋର ଯାହା ମନେ ଅଛି ସବ୍-ଡେପୁଟି ଆଉ ଡେପୁଟି କଲେକ୍ଟର ଭାକାନ୍ସି ଛ' ମାସ/ ଆଠମାସ ମଧ୍ୟରେ ପୂରଣ ହେଲା । ନେବେ ଏ ଦୁଇ କ୍ୟାଡ଼ର ମିଶ୍ରଣ ୧୯୬୬/ ୧୯୬୭ ବେଳକୁ ହେଲା ବୋଲି ମୋର ମନେହୁଏ । ମଝିରେ ବିଜୁବାବୁଙ୍କ ସହ ୧୯୬୩ ଅଗଷ୍ଟ ବେଳକୁ ଦେଖାହେଲାବେଳେ ଏହି ମିଶ୍ରଣ ସମ୍ପର୍କରେ ପଚାରିଲି । ସେ ଏସବୁ କିଛି ଜାଣିନଥିଲେ । ମତେ ପଚାରିଲେ ହ୍ୱାଟ୍ ସବ୍-ଡେପୁଟି, ଡେପୁଟି ? ହ୍ୱାଇ ଡଣ୍ଟ୍ୟୁ ଆସ୍କ ଶିବରମନ୍ ? ବସ୍ତୁତ ବିଜୁବାବୁଙ୍କର ଏ ସବୁ ଅଫିସିଆଲ୍ ନିୟମ କାନୁନ୍ ସମ୍ପର୍କରେ କିଛି ଜ୍ଞାନ ନଥିଲା । ଅଫିସିଆଲ୍ କାମରେ ସେ ଶିବରମଣ ଓ ତାଙ୍କ ପି.ଏସ୍. ରାମଚନ୍ଦ୍ରନ୍‌ଙ୍କୁ ବିଶ୍ୱାସ କରୁଥିଲେ । ଏ ଦୁହେଁ ଫାଇଲ୍‌ରେ ଓ.କେ. କଲେ ସେ ଦସ୍ତଖତ କରୁଥିଲେ । ରାମଚନ୍ଦ୍ରନ ଏଭଳି ଜଣେ ପ୍ରାଇଭେଟ୍ ସେକ୍ରେଟାରୀ ଥିଲେ ଯିଏ ୧୯୫୦ରୁ ନବକୃଷ୍ଣ ଚୌଧୁରୀଙ୍କ ମୁଖ୍ୟମନ୍ତ୍ରୀତ୍ୱ ସମୟରୁ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ପର୍ଯ୍ୟନ୍ତ ମୁଖ୍ୟମନ୍ତ୍ରୀମାନଙ୍କର ପ୍ରାଇଭେଟ୍ ସେକ୍ରେଟାରୀ ରୂପେ କାର୍ଯ୍ୟ କରିଥିଲେ । ରାଜ୍ୟର ସମସ୍ତ ଗୋପନୀୟ ଫାଇଲ୍ ତାଙ୍କ ଜରିଆରେ ମୁଖ୍ୟମନ୍ତ୍ରୀଙ୍କ ପାଖକୁ ଯାଉଥିଲା ।

ଛଅ ଛଅଜଣ ମୁଖ୍ୟମନ୍ତ୍ରୀଙ୍କର ସମସ୍ତ ଗୋପନ କଥା ଜାଣିଥିଲେ ମଧ କାହାରିକୁ କିଛି କହୁ଼ନଥିଲେ । ମୁଁ ମଝିରେ ମଝିରେ ତାଙ୍କ ସହ କଥା ହୋଇ କିଛି ଖବର ଜାଣିବା ପାଇଁ ଚେଷ୍ଟା କରିଥିଲି । ମାତ୍ର ସେ କ଼ହୁଥିଲେ ଧଳବାବୁ- ମୋତେ କୌଣସି ଫାଇଲ୍ ସମ୍ପର୍କରେ କିଛି ପଚାରିବେ ନାହିଁ। ସିଧାସଳଖ ଉତ୍ତର।

ବିଜୁବାବୁ- ବୀରେନ୍ ମିତ୍ର ଶାସନର କିଛି ଧାର ଧାରନ୍ତି ନାହିଁ। ଥରେ ବୀରେନ୍ ଦା ଚିଫ୍ ସେକ୍ରେଟାରୀ ଦାୟିତ୍ୱରେ ଥିବା ଏ.କେ. ବ୍ୟାରେନ୍‌ଙ୍କୁ ତାଙ୍କ ସାଇ(କଟକ କାଠଗଡ଼ା ସାହି)ର ଜଣେ ଚୌଧୁରୀଙ୍କୁ ଚିଫ୍ ରିସେପ୍‌ନିଷ୍ଟ କରିବା ପାଇଁ ନିର୍ଦ୍ଦେଶ ଦେଲେ । ମାତ୍ର ବ୍ୟାରେନ୍ ସାହେବ ଏହା ସମ୍ଭବ ନୁହେଁ କାରଣ ରିସେପ୍‌ନିଷ୍ଟ କ୍ୟାଡ଼ରରୁ କେବଳ ସିନିୟର ମୋଷ୍ଟ ଏହି ପଦବୀ ପାଇବ ବୋଲି କହିଥିଲେ । ଚୌଧୁରୀ ଜଣେ ସାଧାରଣ କିରାଣି ହୋଇଥିବାରୁ ଏହି ପଦବୀ ପାଇପାରିବେ ନାହିଁ । ମାତ୍ର ବୀରେନ୍ ମିତ୍ର ଜିଦ୍ ଧରିଲେ । ଏ ଘଟଣାବେଳେ ମୁଁ ବୀରେନ୍ ମିତ୍ରଙ୍କ କୋଠରୀରେ ଥିଲି । ବ୍ୟାରେନ୍ ସାହେବ ତା'ପରେ କହିଲେ ତେବେ ଆପଣ ନିଜେ ଅର୍ଡ଼ର କରନ୍ତୁ କହି ଫାଇଲ୍ ବୀରେନ୍ ମିତ୍ରଙ୍କ ଟେବୁଲ୍‌ରେ ରଖି ପଳାଇଲେ । ବୀରେନ୍ ମିତ୍ର ମୁଖ୍ୟମନ୍ତ୍ରୀ ଭାବେ ଏହା ବେଆଇନ୍ ଜାଣି ମଧ ଦସ୍ତଖତ କଲେ ଏବଂ ଚୌଧୁରୀ ଚିଫ୍ ରିସେପ୍‌ନିଷ୍ଟ ହେଲେ । ଏହା ପରେପରେ ବୀରେନ୍ ମିତ୍ର ବିଭିନ୍ନ ଦୁର୍ନୀତି ଅଭିଯୋଗରେ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଲେ । ମୁଁ ଏହି ଘଟଣାର ପ୍ରତ୍ୟକ୍ଷଦର୍ଶୀ ହୋଇଥିବାରୁ ଆମ ସମ୍ପାଦକ ବିଚିତ୍ରାନନ୍ଦ କରଙ୍କୁ ପଚାରିଲି । ସେ ଏହାକୁ ଅନ୍ୟମାନେ ଦେଉଛନ୍ତି କି ନାହିଁ ଦେଖି ଦୁଇଦିନ ପରେ ଦେବାପାଇଁ କହିଲେ । ଚୌଧୁରୀ କରିତ୍‌କର୍ମା ଲୋକ । ମୁଁ ଘଟଣାବେଳେ ମୁଖ୍ୟମନ୍ତ୍ରୀ ଚ୍ୟାମ୍ବର୍‌ରେ ଉପସ୍ଥିତ ଥିବା ଜାଣି ମୋ ପାଖରେ ପହଞ୍ଚିଲେ ଏବଂ ଏହାକୁ ଖବର ଆକାରରେ ନଦେବା ପାଇଁ ଭାରି ଅନୁନୟ ବିନୟ ହେଲେ । ମୁଁ ପଠାଇ ଦେଇଛି ବୋଲି କହିବାରୁ ସେ ମନଦୁଃଖ କରିଗଲେ। ମାତ୍ର ତା' ପରଦିନ ବିଚିବାବୁ ଟେଲିଫୋନ୍ କଲେ ବରେନ୍ଦ୍ରବାବୁ ସେ ଖବର ଥାଉ। ଚୌଧୁରୀ ଆସି କନ୍ଦାକଟା କଲାଣି। ସେତେବେଳେ କିପରି ମର୍ଜିରେ ଶାସନ ଚାଲୁଥିଲା ଏହା ଏକ ଦୃଷ୍ଟାନ୍ତ।

୧୯୬୮ରେ ଭାରତର ବିଖ୍ୟାତ ଯାଦୁକର ପି.ସି. ସରକାର ଭୁବନେଶ୍ୱର ଆସିଥିଲେ । ସେ ପ୍ରାୟ ଏଠାରେ ସାତ/ଆଠ ଦିନ ଥିଲେ। ମୋ ସହିତ ତାଙ୍କର ବେଶ୍ ଘନିଷ୍ଠତା ହୋଇଗଲା। ମୁଁ ବଙ୍ଗଳା ଜାଣିଛି ବୋଲି କହିବାରେ ତାଙ୍କର ଦୁଇଟି ବହି ମୋତେ ଉପହାର ଦେଇ ସେଥିରୁ 'ଆପନା ଦେର ମ୍ୟାଜିକ୍' ନାମରେ ଏକ ବହି ଓଡ଼ିଆରେ ଅନୁବାଦ କରିବା ପାଇଁ ଅନୁରୋଧ କରି ତାଙ୍କ ଅନୁମତି ସେଇ ବହି ଉପରେ ଲେଖିଦେଲେ। ତାହା ଏଠାରେ ଦେଲି।

ଓଡ଼ିଶା ଶାସନରେ ୧୯୬୧ରୁ ୧୯୬୭ ତିନିଜଣ ମୁଖ୍ୟମନ୍ତ୍ରୀ ଶାସନ କରିଥିଲେ । ବିଜୁ ପଟ୍ଟନାୟକ ୨୩.୦୬.୧୯୬୧ରୁ ୦୨.୧୦.୧୯୬୩, ବୀରେନ ମିତ୍ର ୦୨.୧୦.୧୯୬୩ରୁ ୨୧.୦୨.୧୯୬୫ ଏବଂ ସଦାଶିବ ତ୍ରିପାଠୀ ୨୧.୦୨.୧୯୬୫ରୁ ୦୮.୦୩.୧୯୬୭ ପର୍ଯ୍ୟନ୍ତ ମୁଖ୍ୟମନ୍ତ୍ରୀ ଦାୟିତ୍ୱରେ ଥିଲେ । ବିଜୁବାବୁ ଏବଂ ବୀରେନ୍‌ବାବୁ ଦୁର୍ନୀତି ଅଭିଯୋଗରେ ପ୍ରଧାନମନ୍ତ୍ରୀ ଲାଲ୍‌ବାହାଦୂର ଶାସ୍ତ୍ରୀଙ୍କ ଦ୍ୱାରା ତଡ଼ା ଖାଇଲେ । ସେତେବେଳେ ସୁରେନ୍ଦ୍ର ନାଥ ଦ୍ୱିବେଦୀ ଲୋକସଭାରେ ବିଜୁବାବୁ ଆଉ ବୀରେନ୍‌ବାବୁଙ୍କ ବିରୋଧରେ ତୀବ୍ର ସମାଲୋଚନା କରୁଥିଲେ ଏବଂ ଦୁହେଁ ଚରମ ଦୁର୍ନୀତିଗ୍ରସ୍ତ ବୋଲି ପ୍ରମାଣ କରିଥିଲେ। ମତେ ଥରେ ଆମ ସମ୍ପାଦକ ବିଚିତ୍ରାନନ୍ଦ କର ସୁରେନ୍ଦ୍ର ଦ୍ୱିବେଦୀଙ୍କୁ ଇଣ୍ଟରଭ୍ୟୁ କରିବା ପାଇଁ ପଠାଇଲେ। ଇଏ ୧୯୬୫ ମସିହା ଜାନୁଆରୀ ମାସ

୨୪ ତାରିଖର ଘଟଣା । ମୁଁ ସେତେବେଳେ କଟକ-ଭୁବନେଶ୍ୱର ହୋଇ କାର୍ଯ୍ୟ କରୁଥାଏ । ଭୁବନେଶ୍ୱରରେ ଥିବା ମାତୃଭୂମି ପ୍ରତିନିଧି ବାଳକୃଷ୍ଣ କାନୁନ୍‌ଗୋ ବୀରେନ୍ ମିତ୍ରଙ୍କର ଖୁବ୍ ଘନିଷ୍ଠ ଥିଲେ । ତେଣୁ ଅନେକ ସମୟରେ ତାଙ୍କ ବିରୁଦ୍ଧରେ ହେଉଥିବା ସମାଲୋଚନା ବିଶେଷକରି ଦୁର୍ନୀତି ସମ୍ପର୍କୀୟ ଅଭିଯୋଗ ସେ ଏଡ଼ାଇ ଯାଉଥିଲେ । ମାତ୍ର ସମାଜର ସମ୍ପାଦକ ରାଧାନାଥ ରଥ ଓ ପ୍ରଜାତନ୍ତ୍ର ମାଲିକ ହରେକୃଷ୍ଣ ମହତାବ ବିଜୁବାବୁ ଏବଂ ବୀରେନ୍ ମିତ୍ରଙ୍କ ଘୋର ବିରୋଧୀ ଥିବାରୁ ସେମାନଙ୍କ କାଗଜରେ ଏହା ତୁହାକୁ ତୁହା ପ୍ରକାଶ କରୁଥିଲେ । ବିଶେଷକରି ସେତେବେଳେ ବୀରେନ୍ ମିତ୍ରଙ୍କ ପତ୍ନୀ ଈଶ୍ୱରାମ୍ମା ମିତ୍ରଙ୍କ ଓଡ଼ିଶା ଏଜେଣ୍ଟ ନାମରେ ଏକ କମ୍ପାନୀ କରି ସରକାରଙ୍କୁ ସବୁ ଜିନିଷ ଯୋଗାଇବାର ଅନୁମତି ପାଇ ଅଧିକ ଦରରେ ସବୁ ଯୋଗାଇ ଦେଇ ଟଙ୍କା ନେଉଥିଲେ ବୋଲି ଅଭିଯୋଗ ହୋଇଥିଲା । ଏହାକୁ ନେଇ ସୁରେନ୍ଦ୍ର ଦ୍ୱିବେଦୀ ଲୋକସଭାରେ ପ୍ରଧାନମନ୍ତ୍ରୀ ଲାଲ୍ ବାହାଦୂର ଶାସ୍ତ୍ରୀଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ମୁଁ ଦ୍ୱିବେଦୀଙ୍କ ସହ ଏ ସମ୍ପର୍କରେ ସାକ୍ଷାତକାରବେଳେ ସେ ପ୍ରଥମେ ଯାହା କହିବେ ସବୁ ପ୍ରକାଶ ହେବ ବୋଲି ମୋ ଠାରୁ ଏକ ପ୍ରକାର ଜବାବ ଚାହିଁଲେ । ମୁଁ ତାଙ୍କୁ କହିଲି ଆପଣ ବିଚିବାବୁଙ୍କୁ ଏକଥା କହିଦେଲେ ଭଲ ହେବ । ତା'ପରେ ତାଙ୍କ ଘର ଫୋନ୍‌ରୁ ବିଚିବାବୁଙ୍କୁ ଫୋନ୍ କରି ଫୋନ୍ ରିସିଭର ଦ୍ୱିବେଦୀଙ୍କୁ ଧରାଇ ଦେଲି । ଦ୍ୱିବେଦୀ ମୋତେ ଯାହା କହିଲେ ସେ କଥା ବିଚିବାବୁଙ୍କୁ କହିଲି । ଦ୍ୱିବେଦୀ ଆଉ ବିଚିବାବୁ ଏକା ଅଞ୍ଚଳର ଲୋକ- ଅର୍ଥାତ୍ ମାହାଙ୍ଗାର । ବିଚିବାବୁଙ୍କ ସହ କଥା ହୋଇ ମତେ କହିଲେ ବରେନ୍ଦ୍ର- ବିଚି ଭୟ କରୁଛି । ଏହା ୧୯୬୫ ମସିହା ଜାନୁଆରୀ ମାସର କଥା । ମୁଁ କହିଲି- ସାର୍ ଆପଣ କୁହନ୍ତୁ- ଛାପିବା ମୋ ଦାୟିତ୍ୱ । ମାତ୍ର ଆପଣ ଯାହା କହିବେ ତା'ର ପ୍ରମାଣ ଥିବା ଦରକାର । ତା'ନହେଲେ ଯଦି ମୋକଦ୍ଦମା ହୁଏ ଆମେ ଅସୁବିଧାରେ ପଡ଼ିବୁ । ସେ ରାଜି ହେଲେ ଏବଂ ପ୍ରଶ୍ନ ଉତ୍ତର ଚାଲିଲା । ପ୍ରାୟ ଦେଢ଼ଘଣ୍ଟା ପରେ ସାକ୍ଷାତକାର ଶେଷ ହେଲା । ଦ୍ୱିବେଦୀ ଲୋକସଭାରେ ଯାହା ଅଭିଯୋଗ କରିଥିଲେ ପାର୍ଲ୍ୟାମେଣ୍ଟ ଆଲୋଚନାର ଗୋଟିଏ ଗୋଟିଏ କପି ମୋତେ ଦେଲେ ଏବଂ ସାକ୍ଷାତକାର ପ୍ରକାଶ ପାଇବା ପରେ ତାକୁ ଫେରାଇ ଦେବାକୁ କହିଲେ । ସାକ୍ଷାତକାର ମୋର ଖୁବ୍ ମନପସନ୍ଦ ହେଲା । କଟକ ଫେରି ଆସି ବିଚିବାବୁଙ୍କୁ ସବୁ କହି ଲୋକସଭା କପି ଦେଖାଇଲି । ବିଚିବାବୁ ଖୁସିହୋଇ ମତେ ପ୍ରଶଂସା କଲେ- କହିଲେ ଆଜି ଲେଖି କାଲିକୁ ଆଣନ୍ତୁ । କାଲି ବସାଇଦେବା । ମୁଁ ମୋର ରାଜା ବଗିଚା ଲେବର କଲୋନି ଘରେ ବସି ସବୁ ସଜାଇ କରି ଲେଖିଲି । ରାତି ୧୧ଟା ପର୍ଯ୍ୟନ୍ତ ଲେଖା ଚାଲିଲା । ଖାଇବା ନେଇ ଯାଇଥିଲି । ମଝିରେ ଖାଇ ଦେଇ ଲେଖିଲି । ଆଠପୃଷ୍ଠା ଲେଖାହେଲା । ବିଭିନ୍ନ ସ୍ଥାନରେ ସବ୍‌ହେଡିଂ ଏବଂ ପାର୍ଲ୍ୟାମେଣ୍ଟର କପି ମଝିରେ ମଝିରେ ଉଲ୍ଲେଖ କଲି ।

## -ଡଃ ମହତାବ-

ତା' ପରଦିନ ସନ୍ଧ୍ୟାରେ ପ୍ରଥମ ପୃଷ୍ଠାରେ ଚାରି କଲମ ବଡ଼ ଅକ୍ଷର ହେଡିଂ 'ଓଡ଼ିଶା ଦୁର୍ନୀତିର ମହିରୁହ ବିଜୁ ଆଉ ବୀରେନ୍- ସୁରେନ୍ଦ୍ର ଦ୍ୱିବେଦୀ' ସାକ୍ଷାତକାର ଭୁବନେଶ୍ୱର ପ୍ରତିନିଧି ବରେନ୍ଦ୍ର ଧଳ । ସନ୍ଧ୍ୟାରେ ମାତୃଭୂମି ହୁ ହୁ ହୋଇ ବିକ୍ରି ହେଲା । କଟକ, ଭୁବନେଶ୍ୱରରେ ସେଦିନ ମାତୃଭୂମି ସବୁ ଓଡ଼ିଆ ଖବର କାଗଜ ଅପେକ୍ଷା ପାଖାପାଖି ଦି'ଗୁଣ ବିକ୍ରି ହେଲା । ପରଦିନ ସେକ୍ରେଟେରିଏଟ୍‌ରେ ଅନେକ ଅଫିସର, ନେତା ଯିଏ ମୋତେ ଦେଖିଲା ସେ ଅଭିନନ୍ଦନ ଜଣାଇଲା । ଧୀରେଧୀରେ ବିଜୁବାବୁ ଆଉ ବିରେନ୍ ମିତ୍ର ସେତେବେଳକୁ ବଦ୍‌ନାମ ହୋଇଗଲେଣି । ୧୯୬୫ ଫେବୃଆରୀ ୨୧ ତାରିଖରେ ସଦାଶିବ ତ୍ରିପାଠୀ ମୁଖ୍ୟମନ୍ତ୍ରୀ ହେଲେ । ମୋର ସବୁଠାରୁ ବଡ଼ ବିସ୍ମୟ ଅପେକ୍ଷା

କରିଥିଲା । ପରଦିନ ସକାଳୁ ପ୍ରଜାତନ୍ତ୍ର ସାମ୍ବାଦିକ ରମେଶ ଧଳ ମୋ ଭୁବନେଶ୍ୱର ୨ ନମ୍ବର ୟୁନିଟ୍ ମାର୍କେଟ ବିଲଡ଼ିଂ ପଛ ଲାଇନ୍ ଘରକୁ ଆସି କହିଲେ ବରେନ୍ଦ୍ର ବୁଢ଼ା ତମକୁ ଡାକିଛି । କାମ ସରିଲାଣି ଯଦି ଚାଲ ଯିବା । ମୁଁ ଅବଶ୍ୟ ମହତାବବାବୁଙ୍କ ପାଖକୁ ଅନେକ ସମୟରେ ଯାଏ । ସେତେବେଳେ ମୁଁ ମଟର ସାଇକେଲ୍, ସ୍କୁଟର ସବୁ ଚଲାଇ ଜାଣିଥାଏ । ରମେଶବାବୁଙ୍କର ଗୋଟେ ଲାମ୍ବ୍ରାଡା ସ୍କୁଟର ଥିଲା । ମୁଁ ସେ ସ୍କୁଟର ପ୍ରାୟ ଚଲାଏ । ରମେଶବାବୁଙ୍କ ସାଙ୍ଗରେ ମୁଁ ମହତାବବାବୁଙ୍କ ପାଖକୁ ସ୍କୁଟର ଚଲାଇ ଗଲି । ମହତାବବାବୁଙ୍କ ଦୁଆର ମୁହଁରେ ବସନ୍ତ ଦାସ(ମହତାବଙ୍କ ପି.ଏ.)ଙ୍କ ସହ ଦେଖାହେଲା । ସେ ମୋତେ ଦେଖି କହିଲେ ଆଜି ତ ପୁରା ବୋମା ଫୁଟାଇ ଦେଇଛ । ଭିତରକୁ ଯାଅ- ବାବୁ ଅଛନ୍ତି । ମୁଁ ଭିତରକୁ ପଶୁପଶୁ ମହତାବ ହସିହସି କହିଲେ କ'ଣ ବରେନ୍ଦ୍ର ଚନ୍ଦ୍ର ଠିକ୍ ଠାକ୍ ଅଛ ତ ? ମୁଁ ତାଙ୍କ ପାଦ ଛୁଇଁ କହିଲି- ଯେଉଁଠି ସାର୍‌ଙ୍କର ହାତ ମୋ ମୁଣ୍ଡରେ ରହିଛି ସେଠି ମୋ ପ୍ରତି ବିପଦ ଆସିବ କୁଆଡୁ ? ମହତାବବାବୁ ଖୁସି ହୋଇଗଲେ । ଆମେ ଦୁହେଁ ବସିବା ପରେ ସେ ରମେଶବାବୁଙ୍କୁ ଚାହିଁ କହିଲେ କିହୋ ରମେଶ ଚନ୍ଦ୍ର କ'ଣ ଖବର । ବରେନ୍ଦ୍ର ଚନ୍ଦ୍ର ମଝିରେ ମଝିରେ ଯେପରି ମାଡ଼ ଚଢ଼ାଉଛନ୍ତି ତମେ ସେଭଳି ଚଲା । ମୋର ସମସ୍ତ ସମର୍ଥନ ତୁମ ପଛରେ ଅଛି । ରମେଶବାବୁ କହିଲେ ସାର୍ ଯାହା ପାଖକୁ ଗଲେ ସମସ୍ତଙ୍କର ଆପଣଙ୍କୁ ଭୟ । ମୁଁ କିଛି କହିବାବେଳେ କହୁଛନ୍ତି ମହତାବବାବୁ ଜାଣିଛନ୍ତି ତ ? ମହତାବବାବୁ କହିଲେ- ତୁମେ ଏଥର କୁହ- ମୋତେ ବାବୁ ପଠାଇଛନ୍ତି ? ମୁଁ କହିଲି ସାର୍- ରମେଶବାବୁଙ୍କୁ କହିଲେ କ'ଣ ହେବ ? ଆପଣଙ୍କ ପାଖରେ ତ ସମସ୍ତଙ୍କ ପ୍ରବେଶ । ତେଣୁ କିଏ କେତେବେଳେ ଆସି ତାଙ୍କ ବିରୁଦ୍ଧରେ ଆପଣଙ୍କୁ କହିବେ କିଏ କହିପାରିବ ? ଏଣୁ ତେଣୁ କଥା ପରେ ମୋତେ କହିଲେ ଆଜି ମାତୃଭୂମିରେ ତମ ଷ୍ଟୋରୀ ଅନେକଙ୍କୁ ଭଲ ଲାଗିଛି । ସୁରେନ୍ଦ୍ର ତମକୁ ବିଶ୍ୱାସକୁ ନେଇ ଏତେ କଥା କହିଲା କିପରି ? ପାର୍ଲ୍ୟାମେଣ୍ଟ ପେପର୍ ସବୁକୁ ତୁମକୁ ଦେଲେ କିପରି ? ମୁଁ କହିଲି ସାର୍- ସେ ପେପର ନପାଇଥିଲେ ବିଜୁବାବୁ- ବୀରେନ୍‌ବାବୁ ଯଦି ମୋକଦ୍ଦମା କରିଥା'ନ୍ତେ ଆମେ ବୁଡ଼ି ଯାଇଥା'ନ୍ତୁ । ଏପରି ସମୟରେ ବନମାଳି ପଟ୍ଟନାୟକ ପ୍ରବେଶ କଲେ । ରୁମ୍‌ରେ ଆମକୁ ଦେଖି କହିଲେ ବରେନ୍ଦ୍ର ଆଜି ଗୋଟାଏ ବୋମା ଫୁଟାଇ ଦେଇଛି ସାର୍ । ମହତାବବାବୁ ହସିଲେ । ଆମେ ବିଦାୟ ନେଇ ଫେରିଲୁ । ପରେ ସୁରେନ୍ଦ୍ର ଦ୍ୱିବେଦୀଙ୍କ ଟେଲିଫୋନ୍ ପାଇଲି । ଭାରି ଖୁସି । କହିଲେ ବରେନ୍ଦ୍ର ଓଡ଼ିଆ କାଗଜ ନିଉଜ୍‌ରେ ଏଭଳି ପ୍ରତିକ୍ରିୟା ଥାଏ ଆଜି ମୁଁ ଅନୁଭବ କଲି । ତମକୁ ଧନ୍ୟବାଦ ।

ସାମ୍ବାଦିକ ଜୀବନରେ ଏଭଳି ମୁହୂର୍ତ୍ତ କ୍ୱଚିତ୍ ଆସେ । ଜଣେ ସାମ୍ବାଦିକ ବିଶେଷକରି ରିପୋର୍ଟର ରାଜନୀତିକ ବ୍ୟକ୍ତିମାନଙ୍କର ସଂସ୍ପର୍ଶରେ ଆସିବାକୁ ବାଧ । ସେତେବେଳେ ସେମାନଙ୍କର ଅନେକ ଦୁର୍ବଳ ମୁହୂର୍ତ୍ତ ସମ୍ପର୍କରେ ସେ ଜାଣିପାରେ । ରାଜନୀତିକ ବ୍ୟକ୍ତି ଦ୍ୱାରା ଅନେକ କ୍ଷେତ୍ରରେ ଜଣେ ସାମ୍ବାଦିକ ପ୍ରଲୋଭିତ ହୋଇଥାଏ । ମୁଁ ଜାଣେ କେବଳ ଓଡ଼ିଶା କାହିଁକି ଭାରତବର୍ଷର ଅନେକ ବଡ଼ ବଡ଼ ସାମ୍ବାଦିକ ରାଜନୀତିକ ନେତା ଏବଂ ବ୍ୟବସାୟୀମାନଙ୍କର ପଦଲେହନ କରନ୍ତି । ମୁଁ ନ୍ୟାସନାଲ୍ ୟୁନିୟନ ଅଫ୍ ଜର୍ଣ୍ଣାଲିଷ୍ଟର ସର୍ବଭାରତୀୟ ସଭାପତି ଥିବାବେଳେ ଦିଲ୍ଲୀର ତିନି ଚାରିଜଣ ସାମ୍ବାଦିକ ଲଣ୍ଡନ, ନ୍ୟୁୟର୍କ ଅନେକ ସମୟରେ ଯା'ନ୍ତି । ଥରେ ଏ ସମ୍ପର୍କରେ କୌତୁହଳୀ ହୋଇ ଆଉ ଜଣେ ସାମ୍ବାଦିକ ବନ୍ଧୁଙ୍କୁ ପଚାରିବାରେ ସେ କହିଲେ ଦଲାଲ୍ ହେଲେ ସବୁ ମିଳିବ ।

୧୯୬୭ରେ ଡଃ ହରେକୃଷ୍ଣ ମହତାବ ଓଡ଼ିଶା ହାଇକୋର୍ଟରେ ବିଜୁ ପଟ୍ଟନାୟକ, ବୀରେନ୍ ମିତ୍ର ଓ ନୀଳମଣି ରାଉତରାୟଙ୍କ ବିରୁଦ୍ଧରେ ଦୁର୍ନୀତି ମୋକଦ୍ଦମା ଦାୟର କରିଥିଲେ । ପରେ ସେହି ମୋକଦ୍ଦମାରେ ଏହି ଦୁର୍ନୀତି ତଦନ୍ତ

ପାଇଁ ଜଷ୍ଟିସ୍ ହଂସରାଜ ଖାନ୍ନାଙ୍କ ଅଧ୍ୟକ୍ଷତାରେ ଏକ କମିଶନ ଗଠନ କରାଯାଇଥିଲା । ଏହି ମୋକଦ୍ଦମାରେ ଡଃ ମହତାବ ବିଜୁ ପଟ୍ଟନାୟକଙ୍କ ସମ୍ପର୍କରେ କିଛି ବିଶିଷ୍ଟ ବ୍ୟକ୍ତିଙ୍କ ପତ୍ର ସତ୍ୟପାଠ ଜରିଆରେ ଉପସ୍ଥାପିତ କରିଥିଲେ । ୧୯୫୨ ମସିହାରେ ମହତାବ କେନ୍ଦ୍ର ମନ୍ତ୍ରୀ ଥିବା ସମୟରେ ପ୍ରଧାନମନ୍ତ୍ରୀ ନେହେରୁ ବିଜୁବାବୁଙ୍କ ସମ୍ପର୍କରେ ଏକ ପତ୍ର ଲେଖିଥିଲେ ତା'ର ନକଲ ଏଠାରେ ଦେଲି । ଏହି ପତ୍ରଟି ମୁଁ ହାଇକୋର୍ଟରୁ ଜଣେ ଆଡ଼ଭୋକେଟ୍‌ଙ୍କ ଜରିଆରେ ପାଇଥିଲି । ପରେ ଅବଶ୍ୟ ଡଃ ମହତାବ ଏହାର କପି ମୋତେ ଦେଇଥିଲେ ।

ମୁଁ ଏ ପତ୍ର ସମ୍ପର୍କରେ ଥରେ ବିଜୁବାବୁଙ୍କୁ ପଚାରିଥିଲି । ସେ ମହତାବଙ୍କୁ ଦାୟୀ କରିଥିଲେ । ମହତାବଙ୍କୁ ପଚାରିବାରେ ସେ କହିଲେ ନେହେରୁଙ୍କ ଦୃଷ୍ଟିରେ ବିଜୁ କ'ଣ ତାହା ଏ ପତ୍ର ପ୍ରମାଣ କରୁଛି ।

ଏକ ସମୟରେ ଓଡ଼ିଶା ରାଜନୀତିରେ ପରସ୍ପର ଗୋଛିକଟା ରାଜନୀତି ଆରମ୍ଭ ହୋଇଥିଲା । ଯିଏ ଯାହାକୁ ରାଜନୀତିର କ୍ଷମତା ଅଙ୍ଗନରେ ପ୍ରତିଷ୍ଠା କରିଥିଲା ସେ ହିଁ ତାକୁ ପ୍ରଥମେ ଖତମ କରିଥିଲା । ଏକ ସମୟରେ ବିଜୁ ପଟ୍ଟନାୟକ, ବିରେନ୍ ମିତ୍ର ଏବଂ ନୀଳମଣି ରାଉତରାୟ ଡଃ ମହତାବଙ୍କର ପ୍ରିୟଜନ ଥିଲେ । ଲୋକେ ସେତେବେଳେ କହୁଥିଲେ ମହତାବଙ୍କ ପ୍ରଜାତନ୍ତ୍ର ଖବରକାଗଜର ଜେନେରାଲ ମ୍ୟାନେଜର ଥିଲେ ବିଜୁ ପଟ୍ଟନାୟକ, ସର୍କୁଲେସନ ମ୍ୟାନେଜର ଥିଲେ ବିରେନ୍ ମିତ୍ର ଏବଂ ସମ୍ପାଦକ ଥିଲେ ନୀଳମଣି ରାଉତରାୟ । ମାତ୍ର ସମୟ ଏଭଳି ଆସିଲା ଯେତେବେଳେ ଏ ତିନିଜଣ ଯାକ ମହତାବଙ୍କ ଘୋର ଶତ୍ରୁ ହୋଇଗଲେ । ତା'ର କାରଣ ହେଲା ମହାତବ ଏ ତିନିଜଣଙ୍କ ବିରୁଦ୍ଧରେ ନବବାବୁ ଓ ନେହେରୁଙ୍କ ସହ ମନ୍ତ୍ରଣା କରି ଏମାନଙ୍କୁ ସରକାରରେ କୌଣସି ପଦପଦବୀ ଯେପରି ନମିଳେ ସେଥିପାଇଁ ଚେଷ୍ଟାକଲେ ଓ ସଫଳ ହେଲେ । ୧୯୬୭ ମସିହାରେ ଏମାନଙ୍କ ବିରୁଦ୍ଧରେ ଓଡ଼ିଶା ହାଇକୋର୍ଟରେ ହୋଇଥିବା ମୋକଦ୍ଦମାରେ ବିଜୁବାବୁ ଓ ମହତାବଙ୍କ ପକ୍ଷରୁ ଦାଖଲ ହୋଇଥିବା ପଇଁଚାଳିଶଟି ପତ୍ର ପଢ଼ିଲେ ରାଜନୀତି କେଉଁ ସ୍ତରକୁ ଯାଇପାରେ ତା'ର ପ୍ରମାଣ ମିଳିବ । ଗଛରେ ଚଢ଼ାଇ ଦେଇ ମୂଳରୁ ହାଇଦେବାଭଳି ଅନେକ ଘଟଣା ଏହି ପତ୍ରରୁ ଦେଖିବାକୁ ମିଳୁଛି । ୧୯୫୨ ମସିହାରେ ବିଜୁବାବୁ ବିରେନ୍‌ବାବୁ ନବବାବୁଙ୍କ ମନ୍ତ୍ରିମଣ୍ଡଳରେ ମନ୍ତ୍ରୀ ହେବାପାଇଁ ଗୋଡ଼ ଟେକି ବସିଥିଲେ । କିନ୍ତୁ ମହତାବବାବୁଙ୍କ ପଛରୁ ଛୁରିମାରିବା ଯୋଗୁଁ ବିଜୁ, ବିରେନ୍ ଓ ନୀଳମଣିଙ୍କ ସ୍ୱପ୍ନ ଭାଙ୍ଗିଯାଇଥିଲା । ଏ ସମସ୍ତ ଇତିହାସ ମୁଁ ଏ ଚିଠିରୁ ପଢ଼ି ଅନେକ ସମୟରେ ହତବାକ୍ ହୋଇପଡ଼େ । ଥରେ ମୁଁ ବିଜୁବାବୁଙ୍କୁ ଏ ସମ୍ପର୍କରେ ପ୍ରଶ୍ନ କରିବାରେ ସେ କହିଲେ ଏସବୁ ତୁ କେଉଁଠୁ ପାଇଲୁ ? ମୁଁ ହାଇକୋର୍ଟରେ ତାଙ୍କର ଓ ଡଃ ମହତାବଙ୍କ ସତ୍ୟପାଠ ସହ ଦେଇଥିବା ପତ୍ରରୁ ଜାଣିଥିଲି ବୋଲି କହିବାରେ ସେ କହିଥିଲେ ମହତାବ ଜଣେ ଅତି ଅସହିଷ୍ଣୁ ବ୍ୟକ୍ତି ଥିଲେ । ତାଙ୍କ ସହ କାମ କରୁଥିବା ଲୋକଙ୍କୁ ସେ ଉପରକୁ ଉଠିବାକୁ ଦେଇନଥିଲେ । ଫଳରେ ଜୀବନରେ ୧୯୬୦ ପରେ ସେ ରହିଗଲେ । ବିରେନ୍ ଆଉ ନୀଳମଣି ଆଉ ମୋ ସହ ଭଲ ସମ୍ପର୍କ ରଖିଥିଲେ । ୧୯୬୧ରେ ସେ ହିଁ ମୁଖ୍ୟମନ୍ତ୍ରୀ ହୋଇଥା'ନ୍ତେ । ମାତ୍ର ରାଜନୀତିରେ ପରଶ୍ରୀକାତରତା ଯୋଗୁ ତାଙ୍କ ଭଳି ନେତା ରହିଗଲେ । ୧୯୩୮ରେ ସେ କଂଗ୍ରେସ କାର୍ଯ୍ୟକାରୀ କମିଟିର ସଦସ୍ୟ ହୋଇଥିବାବେଳେ ଲାଲ୍‌ବାହାଦୂର ଶାସ୍ତ୍ରୀ, ମୋରାରଜୀ ଭାଇଙ୍କ ଭଳି ନେତା କେହି ସେ ସ୍ତରକୁ ଯାଇନଥିଲେ । ଅଥଚ ସେମାନେ କେଉଁ ସ୍ତରରେ ପହଞ୍ଚିଲେ ଆଉ ମହତାବ କେଉଁଠି ? ଏହାର ଏକମାତ୍ର କାରଣ ହେଲା ସେ ନିଜକୁ ଯଥାର୍ଥ ମାର୍ଗରେ ନେଇପାରିଲେ ନାହିଁ । ୧୯୬୨ରେ ଲୋକସଭାରେ ସେ ନେହେରୁଙ୍କ ମନ୍ତ୍ରିମଣ୍ଡଳରେ ସ୍ଥାନ ପାଇଲେ ନାହିଁ । ଅଥଚ ନେହେରୁଙ୍କ ମନୋନୀତ ପ୍ରତିନିଧି ସତ୍ୟନାରାୟଣ ସିହ୍ନାଙ୍କୁ ହରାଇ ଲୋକସଭାରେ କଂଗ୍ରେସ ଦଳର ଡେପୁଟି ଲିଡର

ପଦରେ ରହିଲେ । ମାତ୍ର ନେହେରୁଙ୍କ ସହ ସେ ସୁସମ୍ପର୍କ ରକ୍ଷା କରିଥିଲେ ଦେଶର ପରବର୍ତ୍ତିପ୍ରଧାନମନ୍ତ୍ରୀ ହୋଇଥା'ନ୍ତେ । ତାଙ୍କର ଆପଣାହସ୍ତେ ଜିହ୍ୱା ଛେଦି କେ ଅଛି ତା'ର ପ୍ରତିବାଦୀ ଭଳି ଅବସ୍ଥା ହୋଇଥିଲା । ବିଜୁବାବୁଙ୍କ ସହ ମୁଁ ଏ ବିଷୟ କଥା ହୋଇଥିଲି ୧୯୮୨ ମସିହାରେ । ସେ ସେତେବେଳେ ଲୋକସଭାରେ ସଦସ୍ୟ ଥିଲେ ।

କିଛିଦିନ ପରେ ମୁଁ ଯେତେବେଳେ ଡଃ ମହତାବଙ୍କ ଏକାମ୍ର ନିବାସରେ ଦେଖାକଲି ସେ ସେତେବେଳେ ରାଜନୀତିରୁ ସନ୍ୟାସ ନେଇଥିଲେ । ୧୯୭୪ ନିର୍ବାଚନରେ ସେ ଭୁବନେଶ୍ୱରରୁ ବିଧାନସଭାକୁ ନିର୍ବାଚିତ ହୋଇଥିଲେ । ତା'ପରେ ସେ ଆଉ ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କରିନାହାନ୍ତି । ଡଃ ମହତାବ ତାଙ୍କ ଜୀବଦ୍ଦଶାରେ କେବେ ନିର୍ବାଚନରେ ପରାସ୍ତ ହୋଇନାହାନ୍ତି । ସେ ଓଡ଼ିଶାର ବିଭିନ୍ନ ନିର୍ବାଚନମଣ୍ଡଳୀରୁ ପ୍ରତଦ୍ୱନ୍ଦ୍ୱିତା କରି ବିଜୟୀ ହୋଇଛନ୍ତି । ଓଡ଼ିଶାରେ ତାଙ୍କ ବ୍ୟତୀତ ଆଉଜଣେ ନେତା ଶ୍ରୀମତୀ ନନ୍ଦିନୀ ଶତପଥୀ କେବେ ଜୀବନରେ ପରାସ୍ତ ହୋଇନାହାନ୍ତି ।

ଡଃ ମହତାବଙ୍କ ସହ ତାଙ୍କ ଅଫିସ୍ ରୁମ୍‌ରେ ବସି ମୁଁ କଥାବାର୍ତ୍ତା ହେଉଥିଲି । କଥାବାର୍ତ୍ତା ଛଳରେ ବିଜୁବାବୁ ତାଙ୍କ ସମ୍ପର୍କରେ ଯାହା ମନ୍ତବ୍ର ଦେଇଥିଲେ ତାକୁ ବାଗେଇ ଚୁନେଇ କହିଥିଲି । ଡଃ ମହତାବ ଟିକେ ଗମ୍ଭିର ହୋଇଗଲେ । ତାଙ୍କ ମୁହଁରେ ବିରକ୍ତିର ଛାପ ଦେଖାଗଲା । ସେ ମୋତେ କହିଲେ ତମେ ମୋଠୁଁ କ'ଣ ଚାହୁଁଛ ? ମୁଁ କହିଲି ନା ସାର୍- ଆପଣଙ୍କ ସମ୍ପର୍କରେ ବିଜୁବାବୁ ଯେଉଁ ମନ୍ତବ୍ୟ ଦେଲେ ତା' କ'ଣ ଠିକ୍ ? ସେ କହିଲେ ବିଜୟ କ'ଣ କହିଲେ ନକହିଲେ ସେ କଥାକୁ ମୋର ଭ୍ରୂକ୍ଷେପ ନାହିଁ । ମୁଁ କ'ଣ ହୋଇଯା'ନ୍ତି ନହୋଇଯା'ନ୍ତି ସେ ପରାମର୍ଶ ବିଜୟଙ୍କ ଠାରୁ ମୁଁ କାହିଁକି ନେଇଥା'ନ୍ତି ? ବିଜୟ ୧୯୫୨ ମସିହାରେ ମନ୍ତ୍ରୀ ହେବାପାଇଁ ହମହମ ହେଉଥିଲେ । ସେ ବିରେନ୍ ଆଉ ନୀଳମଣି ସମସ୍ତେ ମନ୍ତ୍ରୀ ହେବାପାଇଁ ଅତିମାତ୍ରାରେ ଆଗ୍ରହୀ ହୋଇପଡ଼ିଥିଲେ । ମୁଁ ନବବାବୁଙ୍କୁ ଏଥିପାଇଁ ମନାକଲି । ତା'ର କାରଣ ହେଉଛି ମନ୍ତ୍ରୀ ହେବାମାନେ ଏମାନେ ଅନେକ ଭୁଲ୍ କରିଥାନ୍ତି । ସେଇଠି ସେମାନଙ୍କ ରାଜନୀତିକ ଭବିଷ୍ୟତ ଇତି ହୋଇଯାଇଥା'ନ୍ତା । କେବଳ ନବବ୍ାବୁଙ୍କୁ ନୁହେଁ ୧୯୫୯ ମେ' ୨୦ ତାରିଖରେ ମୋ ମନ୍ତ୍ରିମଣ୍ଡଳରେ ପାର୍ଲାମେଣ୍ଟାରୀ ସେକ୍ରେଟାରୀ ହୋଇ ରହିବା ପାଇଁ ଉପ- ମୁଖ୍ୟମନ୍ତ୍ରୀ ପାଟଣା ମହାରାଜାଙ୍କୁ ବିଜୟ ପତ୍ର ଲେଖିଥିଲେ । ମୁଁ ତାକୁ ନେଇନଥିଲି । ତା'ପରେ ତାଙ୍କ ଜନପ୍ରିୟତାରେ ସେ ଏକାକୀ କଂଗ୍ରେସ ଦଳକୁ ୧୪୦ଟି ସ୍ଥାନ ମନ୍ତରୁ ୮୨ଟି ସ୍ଥାନ ଦେଇପାରିଥିଲେ । ସେ ନିଜେ ମୁଖ୍ୟମନ୍ତ୍ରୀ ହେଲେ । ବିରେନ୍ ଉପ-ମୁଖ୍ୟମନ୍ତ୍ରୀ ଏବଂ ନୀଳମଣି ସ୍ୱରାଷ୍ଟ୍ର ବିଭାଗ ମନ୍ତ୍ରୀ ହେଲେ । ମାତ୍ର ତୁମେ ତ ଦେଖିଛ ଦି'ଟା ବର୍ଷ ନଯାଉଣୁ ଦୁର୍ନୀତି ଅଭିଯୋଗରେ ବିରେନ୍ ମୁଖ୍ୟମନ୍ତ୍ରୀ ପଦରୁ ବିଦା ହେଲେ । ଭାରତବର୍ଷରେ ଏଭଳି ଉଦାହରଣ ପ୍ରାୟ ନାହିଁ । ତମେ ମୋତେ ଏଭଳି ପ୍ରଶ୍ନ ପଚାରି ଖୁବ୍ ଭଲ କଲ । ମୁଁ କାହିଁକି ବିଜୟ ଓ ବିରେନ୍‌ଙ୍କୁ ମନ୍ତ୍ରିମଣ୍ଡଳରେ ନେବାପାଇଁ ମନା କରିଥିଲି ତାହା ୧୯୬୧ ବିଧାନସଭା ନିର୍ବାଚନ ପରେ ପ୍ରମାଣିତ ହୋଇଗଲା । ଡଃ ମହତାବ କହିଲେ ମୁଁ ଏ ତିନିଜଣଙ୍କୁ ରାଜନୀତିକୁ ଆଣିଥିଲି । ବିଜୟ ଶିଳ୍ପ ପ୍ରତିଷ୍ଠା କରି ସେ ଦିଗରେ ମନୋନିବେଶ କରିଥିଲେ ଆଜି ଟାଟା- ବିରଳା ସାଙ୍ଗେ ସମାନ ହୋଇଥା'ନ୍ତେ । ମାତ୍ର କ୍ଷମତା ଆଉ ଅର୍ଥ ପାଇଁ ତାଙ୍କର ଅତିମାତ୍ରାରେ ଆଗ୍ରହ ଯୋଗୁ ସେ ନିଜେ ତାଙ୍କ ପତନକୁ ଡାକି ଆଣିଲେ । ୧୯୬୭ ପରେ ଆଜି ୧୯୮୨ ମସିହା ମଧ୍ୟରେ ସେ କ୍ଷମତା ଲାଭରୁ ବଞ୍ଚିତ ହୋଇଛନ୍ତି । ଭବିଷ୍ୟତରେ ଆଉ କ୍ଷମତାକୁ ଫେରିବେ କି ନାହିଁ ସନ୍ଦେହ ।

ଡଃ ମହତାବ ତାଙ୍କର ଏବଂ ବିଜୁବାବୁଙ୍କର ଏହି ସାକ୍ଷାତକାରଟିକୁ ପ୍ରଜାତନ୍ତ୍ରରେ ଦେବାପାଇଁ ମୋତେ କହିଥିଲେ। ମାତ୍ର ବିଜୁବାବୁଙ୍କୁ ନପଚାରି ତାଙ୍କ ସାକ୍ଷାତକାର ଦେବାପାଇଁ ମୁଁ ଉଚିତ୍ ମନେକଲି ନାହିଁ। ତେବେ ମୁଁ ଦୁଇଜଣଙ୍କର ସାକ୍ଷାତକାର 'ମାତୃଭୂମି'ରେ ଦେଇଥିଲି। ମାତୃଭୂମି ସେତେବେଳେ ଏତେଟା ବଡ଼ କାଗଜ ହୋଇନଥିଲା। ମାତ୍ର ଏ ଦୁଇ ନେତାଙ୍କ ସାକ୍ଷାତକାର ପଢ଼ିବା ପାଇଁ ଖୁବ୍ ବିକ୍ରି ହେଲା। ଏପରି ହେଲା ଯେ ତା' ପରଦିନ ମଧ୍ୟ ଏ ସାକ୍ଷାତକାର ଦିଆଗଲା ଓ ପ୍ରାୟ ଦି'ଗୁଣ କାଗଜ ଛାପା ହୋଇଗଲା। ସାମ୍ବାଦିକତା ଜୀବନରେ ଏହିଭଳି ଗୋଟିଏ ଗୋଟିଏ ଘଟଣା ମହତ୍ୱପୂର୍ଣ୍ଣ ହୋଇଥାଏ।

ମୋର ସାମ୍ବାଦିକ ଜୀବନରେ ଆଉ ଏକ ଘଟଣା ହେଲା ଜାନକୀବାବୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେବାପରେ(୦୯.୦୬.୧୯୮୦) ଅଲ୍ ଇଣ୍ଡିଆ ରେଡିଓରେ ତାଙ୍କର ଏକ ସାକ୍ଷାତକାର ପ୍ରଚାର ପାଇଁ ରେଡିଓ କର୍ତ୍ତୃପକ୍ଷ ଇଚ୍ଛା କଲେ। ଏଥିପାଇଁ ତାଙ୍କୁ ଏ ସାକ୍ଷାତକାର ପାଇଁ ସେ କାହାକୁ ପ୍ରଶ୍ନକର୍ତ୍ତା ରୂପେ ଚାହୁଁଛନ୍ତି ବୋଲି ଜାଣିବାକୁ ଚାହିଁଥିଲେ। ତାଙ୍କ ଆଗରେ ପାଞ୍ଚଜଣ ସାମ୍ବାଦିକଙ୍କର ଏକ ତାଲିକା ରଖାଯାଇଥିଲା। ସେ ଏହି ତାଲିକାରୁ କାହାରିକୁ ନଚାହିଁ ମୋ ନାମ ପ୍ରସ୍ତାବ କରିଥିଲେ ଏବଂ ଭୁବନେଶ୍ୱର ଅକ୍‌ଜୁଲିଆରି ଷ୍ଟୁଡିଓରେ ଏହି ସାକ୍ଷାତକାର ନିଆଯାଇଥିଲା। ସେତେବେଳେ ଜାନକୀବାବୁ ମୁଖ୍ୟମନ୍ତ୍ରୀ ହେବା ପରେ ପରେ ହଜାର ଦିନରେ ହଜାରେ ଶିଳ୍ପ ହଜାରେ କୋଟି ଟଙ୍କାରେ କରିବା ପାଇଁ ଘୋଷଣା କରି ଏକ ଚମକ ସୃଷ୍ଟି କରିଥିଲେ। ମୁଁ ତାଙ୍କୁ ଅଧଘଣ୍ଟା ପର୍ଯ୍ୟନ୍ତ ସାକ୍ଷାତକାର କରିଥିଲି। ମୋର ପ୍ରଥମ ପ୍ରଶ୍ନ ଥିଲା ଓଡ଼ିଶା ବିଦ୍ୟୁତ୍ ଶକ୍ତି କ୍ଷେତ୍ରରେ ଅନେକ ପଛୁଆ ରାଜ୍ୟ। ଆପଣଙ୍କ ଏହି ଘୋଷଣା କାର୍ଯ୍ୟକାରୀ କରିବାରେ ସଫଳ ହେବେ କିପରି ? ଜାନକୀବାବୁଙ୍କ ଉତ୍ତର ଥିଲା ହଜାରେ ଶିଳ୍ପ ତ ଦିନକରେ ହେବନାହିଁ। ଆରମ୍ଭରୁ ବିଦ୍ୟୁତ୍ ଶକ୍ତି ଉତ୍ପାଦନ ପାଇଁ ଉଭୟ ଜଳ ବିଦ୍ୟୁତ୍ ଓ ତାପଜ ବିଦ୍ୟୁତ୍ କାରଖାନା ଆରମ୍ଭ ହୋଇ କ୍ରମେ ଅନ୍ୟ ଶିଳ୍ପ ପ୍ରତିଷ୍ଠା କରାଯିବ। ଜାନକୀବାବୁଙ୍କ ପ୍ରଥମ କ୍ଷମତାଲାଭ ସମୟରେ ହିଁ ବୃହତ୍ତ ଶିଳ୍ପ 'ନାଲ୍‌କୋ' ପ୍ରତିଷ୍ଠା ହେଲା।

ସାମ୍ବାଦିକ ଜୀବନରେ ଅନେକ ଘାତ-ପ୍ରତିଘାତ ମଧ୍ୟରେ ମୋର ଜୀବନ ଗତି କରିଛି। ତାହା ଏପର୍ଯ୍ୟନ୍ତ ଚାଲିଛି ଏବଂ ଜୀବନ ଥିବା ପର୍ଯ୍ୟନ୍ତ ଚାଲିଥିବ। ଯେକୌଣସି କାର୍ଯ୍ୟରେ ନିଷ୍ଠାପରତା ଥିଲେ ଜଣେ ସଫଳ ହେବ। ଜଣେ ସାମ୍ବାଦିକ, ଜଣେ ସାହିତ୍ୟିକ, ଜଣେ ସଂଗଠକ ଯେକୌଣସି କ୍ଷେତ୍ରରେ ମୁଁ ହାତ ଦେଇଛି ସେଥିରେ ସଫଳ ହୋଇଛି। ଏଥିସହ ୧୯୫୨ ଫେବୃଆରୀ ୨୭ ତାରିଖରେ ବିଜୁବାବୁ ମହତାବଙ୍କୁ ଦେଇଥିବା ଏକ ପତ୍ର ଦେଲି। ସେଥିରେ ସେ ତାଙ୍କର ମନ୍ତ୍ରୀ ହେବା କଥା ମହତାବଙ୍କୁ ଲେଖିଛନ୍ତି।

## -ପ୍ରେସ କ୍ଲବ-

ଦେଶର ବିଭିନ୍ନ ସହରରେ ବିଶେଷକରି ବଡ଼ ମେଟ୍ରୋପଲିରେ ପ୍ରାୟ ପ୍ରେସ୍ କ୍ଲବ ରହିଛି। ଦିଲ୍ଲୀରେ ଥିବା ପ୍ରେସ୍ କ୍ଲବ୍‌କୁ ନ୍ୟାସନାଲ୍ ପ୍ରେସ୍ କ୍ଲବ୍ କୁହାଯାଏ। ଏହି ପ୍ରେସ୍‌କ୍ଲବ୍‌ରେ ଜଣେ ଓଡ଼ିଆ ସାମ୍ବାଦିକ ଦୁଇ ଦୁଇଥର ସଭାପତି ଆସନ ଅଳଙ୍କୃତ କରିଥିଲେ। ତାଙ୍କ ନାମ ପ୍ରକାଶ ପାତ୍ର। ସେ ଯେତେବେଳେ ହିନ୍ଦୁସ୍ଥାନ ଟାଇମ୍ସର ଆସୋସିଏଟ ଏଡିଟର ଥିଲେ। ସେତିକି ପ୍ରଭାବା ନଥିଲେ ଦିଲ୍ଲୀ ନ୍ୟାସନାଲ୍ ପ୍ରେସ୍ କ୍ଲବ୍‌ରେ ସଭାପତି ହେବା ଦୁଷ୍କର। ମୋର ପ୍ରକାଶଙ୍କ ସହ ପରିଚୟ ୧୯୭୪ ମସିହାରେ ସେତେବେଳେ ସେ ନ୍ୟାସନାଲ୍ ହେରାଲ୍ଡରେ ନୂଆ ହୋଇ ସବ୍-ଏଡିଟର ଭାବେ କାର୍ଯ୍ୟ କରୁଥା'ନ୍ତି। ମୁଁ ନ୍ୟାସନାଲ୍ ହେରାଲ୍ଡର ଭୁବନେଶ୍ୱର ପ୍ରତିନିଧି ରୂପେ କାର୍ଯ୍ୟ କରୁଥିଲି।

କଂଗ୍ରେସ ନେତା ଏ.ଆଇ.ସି.ସି. ସାଧାରଣ ସମ୍ପାଦକ ଥିବା ଶ୍ୟାମସୁନ୍ଦର ମହାପାତ୍ର ମୋତେ ନ୍ୟାସନାଲ୍ ହେରାଲ୍ଡ ମ୍ୟାନେଜିଂ ଡିରେକ୍ଟର ଯଶପାଲ କାପୁରଙ୍କ ସହ ପରିଚୟ କରାଇଦେଇ ଭୁବନେଶ୍ୱର ପ୍ରତିନିଧି ରୂପେ ନିଯୁକ୍ତି ଦେଇଥିଲେ । ସେତିକିବେଳେ ଏହି ଖବର କାଗଜ ଅଫିସ୍‌ରେ ମୋର ପ୍ରକାଶଙ୍କ ସହ ପରିଚୟ ହୋଇଥିଲା । ମୁଁ ନ୍ୟାସନାଲ୍ ହେରାଲ୍ଡ ସହ 'ମାତୃଭୂମି'ର ଭୁବନେଶ୍ୱର ପ୍ରତିନିଧି ମଧ୍ୟ ଥିଲି । ମୁଁ ଦିଲ୍ଲୀ ଗଲେ ପ୍ରାୟ ପ୍ରେସ୍ କ୍ଲବ୍‌କୁ ଯାଏ । ମୋର ଅନେକ ବନ୍ଧୁ ଯେପରି ଇକୋନୋମିକ ଟାଇମ୍ସର ଆବାସିକ ସମ୍ପାଦକ କେ.ଏନ୍. ଗୁପ୍ତା, ହିନ୍ଦୁ ଦିଲ୍ଲୀ ବ୍ୟୁରୋ ଚିଫ୍ ନିତିଶ୍ ଚକ୍ରବର୍ତ୍ତି, ହିନ୍ଦୁସ୍ଥାନ ଟାଇମ୍ସ ଆସୋସିଏଟେଡ ଏଡିଟର ରାଜେନ୍ଦ୍ର ପ୍ରଭୁଙ୍କ ସମେତ ଇଣ୍ଡିଆନ୍ ଏକ୍ସପ୍ରେସ୍‌ର ମୁଖ୍ୟ ସମ୍ପାଦକ ହୀରନ୍ମୟ କାର୍ଲେକାରଙ୍କ ସମେତ ଅନେକ ବନ୍ଧୁ ମୋତେ ପ୍ରେସ୍‌କ୍ଲବ୍‌କୁ ନିମନ୍ତ୍ରଣ କରନ୍ତି । ଦେଶରେ ଆଉ ଏକ ସମ୍ଭ୍ରାନ୍ତ କ୍ଲବ୍ ହେଲା କାଲ୍‌କାଟା ପ୍ରେସ୍‌କ୍ଲବ । ମୁଁ 'ଆଜକାଲ୍' ବଙ୍ଗଳା ଦୈନିକ ଓ 'ଦି ଷ୍ଟେଟସ୍‌ମ୍ୟାନ୍' ସହ ସଂପୃକ୍ତ ଥିବାରୁ ଏବଂ ପ୍ରତିବର୍ଷ କଲିକତା ବହିମେଳା ପାଇଁ ପ୍ରାୟ ଅନେକ ଥର କଲିକତା ଯିବାକୁ ପଡ଼େ । ସେତେବେଳେ ସନ୍ଧ୍ୟାରେ ଅନେକ ସାମ୍ବାଦିକ ବନ୍ଧୁ ପ୍ରେସ୍ କ୍ଲବ୍‌କୁ ଡିନର ପାଇଁ ନିମନ୍ତ୍ରଣ କରିଥା'ନ୍ତି । ତେବେ କଲିକତାରେ ମୁଁ କାଲ୍‌କାଟା କ୍ଲବ୍ ଏବଂ ବେଙ୍ଗଲ୍ କ୍ଲବ୍‌କୁ ଯିବା ପାଇଁ ଅଧିକ ପସନ୍ଦ କରେ । କାରଣ ଏହିସବୁ କ୍ଲବ୍‌ମାନଙ୍କରେ କଲିକତାର ବହୁ ସମ୍ଭ୍ରାନ୍ତ ବ୍ୟକ୍ତି ଆସିଥା'ନ୍ତି । ମୁଁ କଲିକତାରେ ମୋର ବହୁ ବିଶିଷ୍ଟ ବନ୍ଧୁ ଡାକ୍ତର ବାରିନ୍ ରାୟ, ବାରିଷ୍ଟର ରବି ଦାସ, କଲିକତା ମେଡ଼ିକାଲ୍ ପ୍ରଫେସର ଅମିତ୍ ରାୟ, ବିଖ୍ୟାତ ଅଭିନେତା ରବି ଘୋଷ (ସତ୍ୟଜିତ୍ ରାୟଙ୍କ ସବୁ ଚଳଚ୍ଚିତ୍ରର କମେଡ଼ି ଅଭିନେତା), ବିଖ୍ୟାତ ଔପନ୍ୟାସିକ ବୁଦ୍ଧଦେବ ଗୁହ, ସମରେଶ ବସୁ, ସମରେଶ ମଜୁମଦାର, ଗୌର କିଶୋର ଘୋଷଙ୍କ ସହ ପ୍ରାୟ କାଲ୍‌କାଟା କ୍ଲବ କିମ୍ବା ବେଙ୍ଗଲ୍ କ୍ଲବ୍‌କୁ ଯାଏ । ତେବେ କାଲ୍‌କାଟା ପ୍ରେସ୍‌କ୍ଲବକୁ ସାମ୍ବାଦିକ ବନ୍ଧୁମାନଙ୍କ ନିମନ୍ତ୍ରଣ ପାଇ ଯାଇଥା ।

୧୯୯୩ ମସିହା ପୂଜା ପୂର୍ବରୁ ମୁଁ କଲିକତା ଯାଇ ତିନିଦିନ ରହିଥିଲି । ସେଥର କାଲ୍‌କାଟା ପ୍ରେସ୍‌କ୍ଲବ୍, କାଲକାଟା କ୍ଲବ୍ ଏବଂ ଆନନ୍ଦବଜାର ପତ୍ରିକା ଅଫିସ୍ ଆଜ୍‌କାଲ୍ ଅଫିସ୍ ମୁଁ ପ୍ରତିଥର ଭଳି ଯାଇଥିଲି । ସେଥର କିନ୍ତୁ ଗୋଟେ ବଡ଼ ପରିବର୍ତ୍ତନ ଲକ୍ଷ୍ୟକଲି । ଅଳ୍ପଦିନ ପୂର୍ବରୁ ଗ୍ୟାଙ୍ଗଟକ ଠାରେ ପ୍ରେସିଡେଣ୍ଟ ଗୋଲ୍ଡ କପ୍ ଫୁଟବଲ୍ ଟୁର୍ଣ୍ଣାମେଣ୍ଟରେ କଟକର ରାଇଜିଂଷ୍ଟାର ଫୁଟବଲ୍ ଟିମ୍ କଲିକତାର ମୋହନ ବାଗାନ୍, ମହମଡାନ ସ୍ପୋର୍ଟିଂ ଭଳି ପ୍ରସିଦ୍ଧ ଫୁଟବଲ୍ ଟିମ୍‌କୁ ହରାଇ ଗୋଲ୍ଡକପ୍ ଚାମ୍ପିୟନ୍ ହୋଇଥିଲା । କଲିକତା ଏଇମିତି ଖେଳ ପାଗଳା ନଗରୀ । ମୋହନ ବାଗାନ୍, ମହମଡାନ ସ୍ପୋର୍ଟିଂ, ଇଷ୍ଟବେଙ୍ଗଲ୍ ଦଳ ପ୍ରସିଦ୍ଧ ଫୁଟବଲ୍ ଦଳ । ସିକିମ୍‌ର ଗ୍ୟାଙ୍ଗଟକ୍ ଠାରେ ପ୍ରତିବର୍ଷ ଗୋଲ୍ଡ କପ୍ କଲିକତାର ଏହି ତିନି କ୍ଲବଙ୍କ ମଧ୍ୟରୁ କେହି ନା କେହି ଜିତି ଥା'ନ୍ତି । ମାତ୍ର ୧୯୯୩ରେ କଟକ କ୍ଲବ୍(ରାଇଜିଂଷ୍ଟାର ଗ୍ୟାଙ୍ଗଟକ୍ ଠାରେ ଏହି ନାମରେ ପରିଚିତ ଥିଲା) ଏ ସମସ୍ତଙ୍କୁ ଉଡ଼େଇ ଦେଇ ଗୋଲ୍ଡ କପ୍ ହାତେଇ ନେବାରେ କଲିକତାରେ ସବୁଠି ଚର୍ଚ୍ଚା ଚାଲିଥାଏ । କଲିକତାର ସମସ୍ତ କାଗଜ ସେମାନଙ୍କ ଖେଳ ପ୍ରତିନିଧିମାନଙ୍କ ଗୋଲ୍ଡ କପ୍ ଟୁର୍ଣ୍ଣାମେଣ୍ଟ କଭର କରିବା ପାଇଁ ପ୍ରାୟ ପଠାଇଥା'ନ୍ତି । ସେଥର କାଲ୍‌କାଟା ପ୍ରେସ୍ କ୍ଲବ୍‌ରେ ବସିଥିବାବେଳେ ଟେଲିଗ୍ରାଫ୍‌ର ଅରୂପ ଚାଟାର୍ଜିଆଉ ଆଜ୍‌କାଲ୍‌ର ରଜତ ଚକ୍ରବର୍ତ୍ତୀ ମୋତେ ଦେଖି ରାଇଜିଂଷ୍ଟାର କ୍ଲବର ପ୍ରଶଂସାରେ ଶତମୁଖ ହେଲେ । କଲିକତା ଖବର କାଗଜରେ ରାଇଜିଂଷ୍ଟାର ଯେତେ ପ୍ରଶସ୍ତି କରାଯାଇଛି କୌଣସି ଓଡ଼ିଆ କାଗଜରେ ତାହା ନଥିଲା । ସେତେବେଳେ କଟକର କଳିଙ୍ଗ ଫୁଟବଲ୍ ପ୍ରତିଯୋଗିତାକୁ ବଙ୍ଗାଳିମାନେ ଆଇ.ଏଫ୍.ଏ. ଫୁଟବଲ୍ ଟୁର୍ଣ୍ଣାମେଣ୍ଟ ସହ ପ୍ରାୟ ସମାନ ଦେଖନ୍ତି । କାରଣ କଲିକତାର ସମସ୍ତ ନାମୀ-ଦାମୀ କ୍ଲବ କଳିଙ୍ଗ ଫୁଟବଲ୍ ଟୁର୍ଣ୍ଣାମେଣ୍ଟକୁ କଟକ ଆସିଥା'ନ୍ତି ।

କଟକ ଫୁଟବଲ୍‌ର ପ୍ରଶଂସା ମୋତେ ଖୁବ୍ ଭଲ ଲାଗିଲା । ଲାଗିବା ସ୍ୱାଭାବିକ ମଧ୍ୟ । ଆନନ୍ଦ ବଜାର ଆଉ ଆଜକାଲ୍ ଅଫିସ୍‌କୁ ଗଲାବେଳେ ସେଇ ଆଲୋଚନା । ମୁଁ ଭୁବନେଶ୍ୱର ଫେରିଆସି ଏହା ଉପରେ ଏକ ନିବନ୍ଧ ଲେଖି ପ୍ରଜାତନ୍ତ୍ରକୁ ଦେଲି । ସେତେବେଳେ ପ୍ରଜାତନ୍ତ୍ର ବେଶ୍ ବଡ଼ ଖବରକାଗଜ । ନିବନ୍ଧର ନାଁ ଦେଲି କଲିକତା ସାରା କଟକ ଚର୍ଚ୍ଚା । ଏହି ନିବନ୍ଧରେ ରାଇଜିଂଷ୍ଟାର ଦଳ ଏବଂ ତା'ର ଖେଳାଳିମାନଙ୍କ ସମ୍ପର୍କରେ ଆଲୋଚନା କରିଥିଲି । କଲିକତାରେ ଏମାନଙ୍କୁ ନେଇ ଯେପରି ଆଲୋଚନା ହୋଇଥିଲା ବିସ୍ତାରିତ ଭାବେ ଲେଖିଥିଲି । ବିଶେଷକରି ଫାଇନାଲ୍ ଖେଳରେ ବାଲାଂଦେଶର ମର୍ଯ୍ୟାଦା ସମ୍ପନ୍ନ ଭିକ୍ଟୋରିଆ ସ୍ପୋର୍ଟିଂ ବିରୁଦ୍ଧରେ କଟକର ରାଇଜିଂଷ୍ଟାର ଦଳର ଖେଳ ଦେଖିବା ପାଇଁ ଗ୍ୟାଙ୍ଗଟକ୍‌ର ପାଲ୍‌ଜୋର୍ ଷ୍ଟାଡିୟମ୍‌ରେ ବିପୁଳ ଦର୍ଶକ ମଣ୍ଡଳୀରୁ ଅନେକ ରାଇଜିଂଷ୍ଟାର କ୍ଲବର ପତାକା ଧରି ଉଡ଼ାଇବାର ଦୃଶ୍ୟ ଦିଲ୍ଲୀ ଦୂରଦର୍ଶନରେ ଯେଭଳି ପ୍ରଦର୍ଶୀତ ହୋଇଥିଲା ଯେକୌଣସି ଓଡ଼ିଆ ନିଜକୁ ଓଡ଼ିଆ ବୋଲି ଗର୍ବ କରିବ ମୋ ନିବନ୍ଧରେ ଏ ସମସ୍ତ ବିଷୟ ଥିଲା । ଏହା ୧୯୯୩ ନଭେମ୍ବର ୬ ତାରିଖରେ ପ୍ରକାଶ ପାଇଥିଲା । ଯାହା ଶୁଣିଲି ସେଦିନ କଟକରେ ପ୍ରଜାତନ୍ତ୍ରର ଚାହିଦା ଅସମ୍ଭବ ଭାବେ ବଢ଼ିଯାଇଥିଲା । ମୁଁ ସେତେବେଳେ ସ୍ୱରାଜ୍ୟର ସମ୍ପାଦକ ଥିଲି ।

ଏହି ନିବନ୍ଧ ପ୍ରକାଶ ପାଇବାର ଦୁଇଦିନ ପରେ ମୁଁ କଟକ ଯାଇଥିଲି । କଟକ ଗଲେ ମୁଁ ପ୍ରାୟ ଫ୍ରେଣ୍ଡସ୍ ପବ୍ଲିଶର୍ସ ବହି ଦୋକାନରେ ବସେ । ଫ୍ରେଣ୍ଡସ୍‌ର ସତ୍ତ୍ୱାଧିକାରୀ ସହଦେବ ପ୍ରଧାନ ମୋର ଜଣେ ଭଲ ବନ୍ଧୁ । ମୁଁ ପହଞ୍ଚି କଥାବାର୍ତ୍ତା ହେଉଛି ଏହି ସମୟରେ ରାଇଜିଂଷ୍ଟାର୍‌ର ସେକ୍ରେଟାରୀ ପୁନା ଦାସ ଓରଫ୍ ପୂର୍ଣ୍ଣଚନ୍ଦ୍ର ଦାସ ଏବଂ ପନ୍ଦର/କୋଡ଼ିଏ ଜଣ ଯୁବକ ହାଜର । ଜଣେ ଯୁବକ ଏକ ବଡ଼ ହାଣ୍ଡି ରସଗୋଲା ଆଣି ଦୋକାନ ଭିତରେ ମୋ ମୁହଁ ସାମ୍ନାରେ ଧରିଲେ । ମୁଁ ଆଶ୍ଚର୍ଯ୍ୟ ହୋଇ ପୁନା ମୁହଁକୁ ଚାହିଁଲି । ସେ କହିଲା ବାବୁ- ଆଗ ଗୋଟେ ପାଟିକୁ ନିଅନ୍ତୁ । ଏ କ'ଣ ବୋଲି ପଚାରିବାରେ ପୁନା କହିଲେ ବାବୁ, ଯାହା ଲେଖିଦେଇଛ ନା ତା' ଠାରୁ ଆଉ ବଡ଼ କିଛି ନାହିଁ । ତମ ଲେଖା ସାରା ଓଡ଼ିଶାରେ ଆମ ଇଜ୍ଜତକୁ କେତେ ଉପରକୁ ନେଇଯାଇଛି ତା' ତମେ ଜାଣିପାରିବ ନାହିଁ । ମୋ ହାତ ଧରି ସେ ବାହାରକୁ ଆସିବାବେଳେ ତାଙ୍କ ସହ ଆସିଥିବା ତାଙ୍କ ଦଳର ଖେଳାଳିମାନେ ମୋତେ ଗୋଟେ ମାଳ ପିନ୍ଧାଇଦେଲେ । ସେତେବେଳକୁ ଫ୍ରେଣ୍ଡସ୍ ଦୋକାନ ଆଗରେ ଶହ ଶହ ଲୋକ । ସମସ୍ତେ ରାଇଜିଂଷ୍ଟାରର ସମର୍ଥକ । ମୁଁ ଅଭିଭୂତ ହୋଇଗଲି । ଗୋଟିଏ ନିବନ୍ଧ । ମାତ୍ର ଗୋଟିଏ ନିବନ୍ଧ । ତାହା ହିଁ ମୋତେ ଏତେ ଆନନ୍ଦ, ଆତ୍ମତୃପ୍ତି ଦେବ ମୁଁ କଳ୍ପନା କରିପାରି ନଥିଲି । ସେଇ ମିଠା ହାଣ୍ଡି ରସଗୋଲାକୁ ସମସ୍ତଙ୍କ ଭିତରେ ବାଣ୍ଟି ଦିଆଗଲା । ସବୁ ସାରି ନ'ଟା ବେଳକୁ ଭୁବନେଶ୍ୱର ବାହାରିବା ବେଳକୁ ପଛ ସିଟ୍‌ରେ ଏକ ହାଣ୍ଡି ମୁହଁ ବନ୍ଧା ହୋଇ ଥୁଆହୋଇଛି । ଡ୍ରାଇଭରକୁ ପଚାରିଲି ଇଏ କ'ଣ କିରେ ? ସେ କହିଲା ସେଇ ବାବୁ ଆଣି ଏଠି ରଖିଛନ୍ତି । କହିଛନ୍ତି ବାବୁଙ୍କ ଘରେ ଦେଇଦେବୁ ।

ସେତେବେଳେ ମୋର ନିଜର କାର୍ ନଥାଏ । ଟାକ୍ସି ନେଇ ଯାଇଥାଏ । ଡ୍ରାଇଭର ପଚାରିଲା ବାବୁ ଆପଣଙ୍କୁ ଏମାନେ କାହିଁକି ଫୁଲମାଳ ଦେଲେ ? ଆପଣ କ'ଣ ଲେଖିଛନ୍ତି କି ? ମୁଁ କହିଲି ସେ ଅନେକ କଥା । ଚାଲ୍ ଘରକୁ ଯିବା । ଘରକୁ ଫେରି ସମସ୍ତଙ୍କୁ କଟକ ରସଗୋଲା ଖାଇବାକୁ କହିଲି । ଶ୍ରୀମତୀ ପଚାରିଲେ ଏତେ ରସଗୋଲା କାହିଁକି ଆଣିଛ ? ମୁଁ କହିଲି ଇଯେ ହେଉଛି କଲିକତା ସାରା କଟକ ଚର୍ଚ୍ଚାର କରାମତି । ନମଚଉଡ଼ି ବଙ୍ଗାଳି ମିଠା ଦୋକାନର ରସଗୋଲା । ରାତିରେ ରାତ୍ରିଭୋଜନ ସାଙ୍ଗରେ ରସଗୋଲା ବେଶ୍ ଜମିଲା ।

ଭୁବନେଶ୍ୱରରେ ୧୯୮୬ ମସିହା ପର୍ଯ୍ୟନ୍ତ ପ୍ରେସ୍ କ୍ଲବ୍ ବୋଲି କିଛି ନଥିଲା । ମୁଁ ୟୁନିୟନ କାମରେ ଦିଲ୍ଲୀ, କଲିକତା, ଗୌହାଟି, ଜୟପୁର ଏବଂ ସିମ୍ଲା ଓ ବମ୍ବେ ଆଦି ଅନେକ ସ୍ଥାନ ଯାଏ । ବିଭିନ୍ନ ସ୍ଥାନରେ ଆମକୁ ପ୍ରେସ୍‌କ୍ଲବ୍ ପକ୍ଷରୁ ନିମନ୍ତ୍ରଣ ମିଳେ । ଏଇମିତି ଦିଲ୍ଲୀ, କଲିକତାକୁ ଅନେକ ଥର ମୋର ଯିବା ହୋଇଛି । କିନ୍ତୁ ଅନ୍ୟ ସ୍ଥାନକୁ କାର୍ଯ୍ୟ ନିର୍ବାହୀ ବୈଠକ ହେଲେ ଯିବାକୁ ପଡ଼େ । ଚଣ୍ଡୀଗଡ଼ରେ ବେଶ୍ ଭଲ ପ୍ରେସ୍ କ୍ଲବ । ଏସବୁ ଦେଖି ଭୁବନେଶ୍ୱରରେ ଏକ ପ୍ରେସ୍‌କ୍ଲବ କରିବା ପାଇଁ ମୋ ମନରେ ଚିନ୍ତା ଆସିଲା । ମୋ ମନ କଥା ଭୁବନେଶ୍ୱରରେ ସମଭାବାପନ୍ନ ୪/୫ ଜଣ ସାମ୍ବାଦିକ ବନ୍ଧୁଙ୍କୁ କହିଲି । ସମସ୍ତେ ରାଜି ହେଲେ ଏବଂ ଚଟାପଟ୍ ଆରମ୍ଭ କରିବା ପାଇଁ କହିଲେ । ଇଏ ସମ୍ଭବତଃ ୧୯୮୭ ମସିହା ଫେବୃଆରୀ ମାସ କଥା । ସଚିବାଳୟ ପ୍ରେସ୍ ରୁମ୍‌ରେ ଏକ ବୈଠକ ଡକାଗଲା । ଭୁବନେଶ୍ୱରରେ ରହୁଥିବା ପ୍ରାୟ ସମସ୍ତ ସାମ୍ବାଦିକ ଆସିଥିଲେ । କାଁ ଭାଁ ଦି/ତିନିଜଣଙ୍କୁ ଛାଡ଼ିଦେଲେ ବାକି ସମସ୍ତେ ଉପସ୍ଥିତ ଥିଲେ । ପ୍ରେସ୍ କ୍ଲବ ସମ୍ପର୍କରେ ଆଲୋଚନା ହେଲା । ମୁଁ କଲିକତା ପ୍ରେସ୍ କ୍ଲବ୍, ଦିଲ୍ଲୀ ପ୍ରେସ୍ କ୍ଲବ୍ ଏବଂ ଦେଶର ଆଉ କେତେକ ପ୍ରେସ୍‌କ୍ଲବ୍ ସମ୍ପର୍କରେ ମତ ଦେଲି । ଅନ୍ୟ ବନ୍ଧୁମାନେ ନିଜ ନିଜର ମତ ଦେଲେ । ତା'ପରେ କେଉଁଠି ହେବ ଏବଂ ଅର୍ଥ କେଉଁଠୁ ଆସିବ ସେ ସମ୍ପର୍କରେ ଆଲୋଚନା ହେଲା । ଓଡ଼ିଶାରେ ଥିବା କର୍ପୋରେଟ୍ ହାଉସ୍‌ମାନଙ୍କ ନିକଟରୁ ସାହାଯ୍ୟ ଆଣିବା ପାଇଁ ସ୍ଥିର ହେଲା । ପ୍ରେସ୍‌କ୍ଲବ୍‌ରେ ଏକ ବାର୍, ବିଭିନ୍ନ ପ୍ରକାର ଖେଳ ଏବଂ ସାମ୍ବାଦିକ ସମ୍ମିଳନୀ ପାଇଁ ଏକ ହଲ୍ ଆଦି ବ୍ୟବସ୍ଥା କରିବା ପାଇଁ ମଧ୍ୟ ଆଲୋଚନା ହେଲା । ଏଥିପାଇଁ ଏକ ଟାଇପ୍ ସିକ୍ସ ଘର ପାଇଁ ସରକାରଙ୍କୁ ଆବେଦନ କରିବା ପାଇଁ ସ୍ଥିର ହେଲା ।

ଆଲୋଚନା ପରେ କିଏ କର୍ମକର୍ତ୍ତା ରହିବେ ସେ ମତାମତ ନିଆଗଲା । ସଭାପତି ପଦ ପାଇଁ ମୋ ନାମ ଅନେକ ବନ୍ଧୁ ପ୍ରସ୍ତାବ କଲେ । ମୋତେ ସର୍ବସମ୍ମତକ୍ରମେ ସଭାପତି ରୂପେ ମନୋନୀତ କରାଗଲା । ସେହି କ୍ରମରେ ଉପ-ସଭାପତି, ସାଧାରଣ ସମ୍ପାଦକ, କୋଷାଧ୍ୟକ୍ଷ ଆଦି ପଦ ପାଇଁ ନାମ ପ୍ରସ୍ତାବ କରାଗଲା । ମୁଁ ସେତେବେଳେ ସ୍ୱରାଜ୍ୟର ସମ୍ପାଦକ ଥିଲି । ସମ୍ପାଦକ ପଦ ପାଇଁ ଧରିତ୍ରୀର ଚିଫ୍ ରିପୋର୍ଟର ଅଜିତ୍ ମହାନ୍ତିଙ୍କ ନାମ ପ୍ରସ୍ତାବିତ ହୋଇ ମନୋନୀତ ହେଲା । ଅନ୍ୟାନ୍ୟ ପଦ ପାଇଁ ମଧ୍ୟ ବିଭିନ୍ନ ସାମ୍ବାଦିକ ବନ୍ଧୁଙ୍କ ନାମ ମନୋନୀତ ହେଲା ।

ପ୍ରଥମେ ପ୍ରେସ୍‌କ୍ଲବ ପାଇଁ ଏକ ବାଇଲ୍ ବା ନିୟମାବଳୀ ପ୍ରସ୍ତୁତ କରି ତାକୁ ରେଜିଷ୍ଟ୍ରି କରିବା ପାଇଁ ନିଷ୍ପତ୍ତି ନିଆଗଲା । ପ୍ରେସ୍‌କ୍ଲବର ପ୍ୟାଡ୍ ଛପା ଏବଂ ପରେ ଏକ ସରକାରୀ ଘର ପାଇଁ ଆବେଦନ କରିବାକୁ ସ୍ଥିର ହେଲା । ସେତେବେଳେ ଜାନକୀ ବଲ୍ଲଭ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ଥିଲେ ।

ଆମେ ପ୍ରେସ୍‌କ୍ଲବ୍ ପ୍ୟାଡ୍ ଛାପିଲୁ । ଭୁବନେଶ୍ୱରରେ ତାହା ହିଁ ପ୍ରଥମ ପ୍ରେସ୍ କ୍ଲବ୍ । ପ୍ୟାଡ୍ ଛପା ସରିବା ପରେ ପ୍ରେସ୍‌କ୍ଲବ୍ ବାଇଲ ବା ନିୟମାବଳୀ ଆଦି ପ୍ରସ୍ତୁତ କରି ରେଜିଷ୍ଟ୍ରେସନ ପାଇଁ ଆବେଦନ କଲୁ । ପ୍ରଥମେ ମୋ ଘର ଠିକଣା ଦିଆଯାଇଥିଲା । ପ୍ରେସ୍‌କ୍ଲବ୍ ପାଇଁ ଏକ ଘର ପାଇବାକୁ ଆମେ ମୁଖ୍ୟମନ୍ତ୍ରୀ ଜାନକୀବାବୁଙ୍କୁ ଦେଖାକଲୁ । ସେ ଭୁବନେଶ୍ୱରରେ ପ୍ରେସ୍‌କ୍ଲବ୍ ହେଉଥିବା ଶୁଣି ଖୁସିହେଲେ ଏବଂ ମୁଁ ଏହାର ସଭାପତି ନିର୍ବାଚିତ ହୋଇଥିବା ଜାଣି ମୋତେ ଅଭିନନ୍ଦନ ଜଣାଇଲେ । ତା'ପରେ ଆମ ଦରଖାସ୍ତ ଉପରେ ଏକ ଟାଇପ୍-୬ ଘର ଦେବା ସକାଶେ ଇଷ୍ଟେଟ୍ ଡାଇରେକ୍ଟରଙ୍କୁ ନିର୍ଦ୍ଦେଶ ଦେଲେ । ଆମେ ଫେରି ଆସି ଦି'ଦିନ ପରେ ଡାଇରେକ୍ଟର ଇଷ୍ଟେଟ୍‌ଙ୍କୁ ସାକ୍ଷାତ କଲୁ । ସେ ଆମକୁ କହି ଚୌଧୁରୀ ମାର୍କେଟ ସାମ୍ନାରେ ଥିବା ଏକ ଘର କଥା କହିଲେ । ସେ ଘରଟି ସାଇଡ୍ ଘର ଏବଂ ଆମ

ଉଦ୍ଦେଶ୍ୟ ପାଇଁ ଭଲ ହେବ ବୋଲି ପରାମର୍ଶ ଦେଲେ । ଆମେ ଆନନ୍ଦରେ ରାଜି ହେଲୁ । ସେ ପ୍ରେସ୍‌କ୍ଲବ୍ ନାମରେ ଘର ଆଲଟମେଣ୍ଟ କରିଦେଲେ । ଏତେଶୀଘ୍ର ସବୁ କାମ ହୋଇଯିବ ମୋର ଧାରଣା ନଥିଲା ।

ଭୁବନେଶ୍ୱରରେ ପ୍ରେସ୍‌କ୍ଲବ୍‌କୁ ଏକ ଜାତୀୟସ୍ତରର ପ୍ରେସ୍‌କ୍ଲବ କରିବା ମୋର ଲକ୍ଷ୍ୟ ଥିଲା । କଲିକତା ପ୍ରେସ୍‌କ୍ଲବ୍ ଯେପରି ଚୌରଙ୍ଗି ଅଞ୍ଚଳ କି ଦିଲ୍ଲୀ ପ୍ରେସ୍‌କ୍ଲବ ଯେପରି ପାର୍ଲ୍ୟାମେଣ୍ଟ ଷ୍ଟିଟ୍ ଅଞ୍ଚଳରେ ରହିଛି ଆମେ ସେଇଭଳି ରାଜଧାନୀର ମଧ୍ୟସ୍ଥଳରେ ଏକ ସ୍ଥାନ ନେଇ ନିଜସ୍ୱ ପ୍ରେସ୍‌କ୍ଲବ୍ ନିର୍ମାଣ କରିଥା'ନ୍ତୁ ଏବଂ ସବୁ ଦୃଷ୍ଟିରୁ ଏହାକୁ ଏକ ଆଦର୍ଶ କ୍ଲବ୍‌ରେ ପରିଣତ କରିଥା'ନ୍ତୁ । ମାତ୍ର ମ୍ୟାନ୍ ପରପୋଜେସ୍ ବଟ୍ ଗଡ୍ ଡିସ୍‌ପୋଜେସ୍ ଭଳି ଆମର ସମସ୍ତ କଳ୍ପନା ଶୂନ୍ୟରେ ମିଳାଇଗଲା । ଘର ପାଇବା ପରେ ଆମେ ସେଠାରେ ବସାଉଠା କରିବା ପାଇଁ କିଛି ଚେୟାର ଟେବୁଲ୍ ପକାଇଥିଲୁ । ବସାଉଠା ମଧ୍ୟ ଆରମ୍ଭ ହୋଇଥିଲା । ମୋର ଯାହା ମନେ ଅଛି ଘର ଅଗଷ୍ଟ ବେଳକୁ ଆମେ ପାଇଥିଲୁ ।

ପ୍ରେସ୍‌କ୍ଲବ୍‌ର ଏକ ସାଇନ୍‌ବୋର୍ଡ଼ ମଧ୍ୟ ସାମ୍‌ନାରେ ବାଉଁଶ ପୋତି ଟଙ୍ଗା ହୋଇଥିଲା । ନିୟମିତ ପ୍ରେସ୍‌କ୍ଲବ୍ ସିନା ହୋଇଗଲା । ମାତ୍ର କିଛି ବନ୍ଧୁ ଇର୍ଷାନ୍ୱିତ ହୋଇପଡ଼ିଲେ । କେତେକ ମୋ ପ୍ରତି ଇର୍ଷୁକ ହେବାବେଳେ କିଛି ଲୋକ ଅଜିତ୍ ମହାନ୍ତି ପ୍ରତି ହୋଇପଡ଼ିଲେ । ମୁଁ ଶୁଣିଲି ପ୍ରେସ୍‌ରୁମ୍‌ରେ ଜଣେ ଦି'ଜଣ ଆସି କହିଲେ ସୌମ୍ୟ ପଟ୍ଟନାୟକଙ୍କୁ ପ୍ରେସିଡେଣ୍ଟ କଲେ ଭଲ ହୋଇଥା'ନ୍ତା । ମାତ୍ର ଆଉ କେତେକ ତାଙ୍କୁ ବିରୋଧ କଲେ । ତେବେ ଶେଷରେ କେତେକ ବନ୍ଧୁ ତାଙ୍କ ନେତୃତ୍ୱରେ ଆଉ ଏକ ପ୍ରେସ୍ କ୍ଲବ୍ କରିବା ପାଇଁ ସ୍ଥିର କଲେ । ଆମେ କିନ୍ତୁ ଘରର ଭଡ଼ା ମାସକୁ ମାସ ରେଣ୍ଟ ସେକ୍‌ସନରେ ଦେଇ ଦେଉଥାଉ । ଇତି ମଧ୍ୟରେ ମୁଁ ଇମ୍ପା ଏବଂ ବାଦଲ ସେନ୍(ବଲାରପୁର କାଗଜ ମିଲ୍)ଙ୍କ ସହ ଯୋଗାଯୋଗ କରି ପ୍ରେସ୍‌କ୍ଲବ ପାଇଁ ଆସବାବ୍- ଆଲମିରା ଏବଂ ଅନ୍ୟାନ୍ୟ ଉପକରଣ ଯୋଗାଇବା ପାଇଁ ଅନୁରୋଧ କରିଥାଏ । ଟାଟା କମ୍ପାନି ଓଡ଼ିଶା ଡାଇରେକ୍ଟର ନନ୍ଦ ପଟ୍ଟନାୟକଙ୍କୁ ମଧ୍ୟ ଏଥିପାଇଁ ଅନୁରୋଧ କରିଥାଉ । ସବୁ ଠିକ୍‌ଠାକ୍ ହେବାବେଳକୁ ମୋର ଅସୁସ୍ଥତା ହେଲା । ମୋର ହାର୍‌ନିଆ ରୋଗ ବାହାରିବାରୁ ମୁଁ ଅପରେସନ ପାଇଁ ଡିସେମ୍ବର ତିନି ତାରିଖରେ ଏନ୍.ଏ.ସି. ହସ୍‌ପିଟାଲରେ ଭର୍ତ୍ତିହେଲି । ଏନ୍.ଏ.ସି. ହସ୍‌ପିଟାଲ୍‌ରେ ଡାକ୍ତର ଅଜୟ ମିଶ୍ର ସୁପରିଟେଣ୍ଡେଣ୍ଟ ଥିଲେ । ସର୍ଜନ ହିସାବରେ ମୋର ତାଙ୍କ ଉପରେ ବିଶ୍ୱାସ ଥିଲା । ତାଙ୍କ ସାଙ୍ଗରେ ସେତେବେଳେ ମୋ କ୍ୱାର୍ଟର ନିକଟରେ ରହୁଥିବା ଡାକ୍ତର ଜଗଦିଶ ଆଚାର୍ଯ୍ୟ ମଧ୍ୟ ଥିଲେ । ଡଃ ଆଚାର୍ଯ୍ୟ ମଧ୍ୟ ଜଣେ ଭଲ ସର୍ଜନ । ସେଇଥିପାଇଁ ମୁଁ ଏନ୍.ଏ.ସି. ହସ୍‌ପିଟାଲ୍‌ରେ ଅପରେସନ ହେବାପାଇଁ ସ୍ଥିର କଲି । ଅପରେସନ ହେଲା । କିନ୍ତୁ ଅପରେସନ ସ୍ଥାନରୁ ଠୋପାଠୋପା ହୋଇ ମଝିରେ ମଝିରେ ରକ୍ତ ପଡୁଥିବା ମୋ ପତ୍ନୀ ସ୍ନେହ ଦେଖି ମୋତେ କହିଲେ ଏବଂ ମୋତେ ଦେଖିବାକୁ ଆସିଥିବା ଅଜୟବାବୁଙ୍କୁ କହିଲେ । ସେ ପରୀକ୍ଷା କଲେ ଏବଂ କହିଲେ କେଉଁଠି ଷ୍ଟିଚ୍ ଖୋଲିଯାଇଛି ବୋଧେ । ରକ୍ତ ପଡ଼ିବା ବନ୍ଦ ହେଲାନାହିଁ । ବିପଦର ଗନ୍ଧ ବାରି ମୋତେ କଟକ ବଡ଼ ମେଡ଼ିକାଲ୍‌କୁ ରାତିରେ ପଠାଇବା ପାଇଁ ଆମ୍ବୁଲାନ୍ସ ପ୍ରସ୍ତୁତ ହେଲା । ତେବେ ଶେଷ ଚେଷ୍ଟା କରିବା ପାଇଁ ରାତି ୨ଟାରେ ମୋତେ ପୁଣି ଅପରେସନ ଥିଏଟରକୁ ନେଲେ । ଭଗବାନଙ୍କ ଦୟାରୁ ଦ୍ୱିତୀୟ ଅପରେସନରେ ସବୁ ଠିକ୍‌ଠାକ୍ ହୋଇଗଲା । ରାତିରେ ଡାକ୍ତରଖାନାରେ ସାମ୍ବାଦିକ ବନ୍ଧୁ ଲଳିତ ପାଟଯୋଶୀ, ଅଜୟ ମହାନ୍ତି ରହିଥିଲେ । ତିନିଘଣ୍ଟା ପରେ ମୋତେ ମୋ ରୁମ୍‌କୁ ଅଣାଗଲା । ଚାରି/ପାଞ୍ଚଦିନ ପରେ ସବୁ ଠିକ୍ ହୋଇଗଲା ଏବଂ ଘରକୁ ଫେରିଲି ।

ଘରକୁ ଫେରି କାମରେ ଲାଗିଗଲି । ସେ ବର୍ଷ ଲେଖକ ସାମ୍ମୁଖ୍ୟ ସାହିତ୍ୟୋତ୍ସବ ଡିସେମ୍ବର ୨୪ ଓ ୨୫

ତାରିଖରେ ସମ୍ବଲପୁର ହେଉଥିଲା । ମାତ୍ର ମୁଁ ଯାଇ ପାରିଲି ନାହିଁ । ତେବେ ଘରେ ବସି କିଏ କେଉଁ ଲଞ୍ଚ ଓ ଡିନର ଦେବ ସେ ବିଷୟ ସ୍ଥିର କରି ଫୋନ୍ କରୁଥାଏ । ସମ୍ବଲପୁରରେ ଦାୟିତ୍ୱ ନେଇଥିବା ବନ୍ଧୁମାନଙ୍କୁ ରହିବା ଓ ଖାଇବା ବ୍ୟବସ୍ଥା କିପରି ହେବ ସେ ସମ୍ପର୍କରେ ଆଲୋଚନା କରୁଥିଲି । ଭଲରେ ଭଲରେ ହୋଇଗଲା । ତେବେ ଆସିବା ବେଳକୁ ଆମର ଜଣେ ବନ୍ଧୁ ସମ୍ବଲପୁର ଅଭ୍ୟର୍ଥନା କମିଟି ଆମର ସବୁ ସଦସ୍ୟଙ୍କ ପାଇଁ ଦେଇଥିବା ପ୍ରାୟ ଦୁଇଶହ ବ୍ୟାଗ୍ ନିଜେ ଆଣି କାହାକୁ ନଦେଇ ରଖିଦେଲେ । ପରେ ମୁଁ ଶୁଣିଲି ସେ ରେଲ୍‌ଷ୍ଟେସନ୍‌ରେ ସେ ସବୁ ବ୍ୟାଗ୍ ବିକ୍ରି କରିଦେଇଛନ୍ତି । ଏକଥା ଶୁଣି ତାଙ୍କୁ ଲେଖକ ସାମ୍ମୁଖ୍ୟରୁ ବିଦା କରି ଦିଆଗଲା । ସେ ଏବେ ଆଉ ଇହଜଗତରେ ନାହାନ୍ତି ।

ଏବେ ପ୍ରେସ୍‌କ୍ଲବ କଥାକୁ ଆସିବା । ଭୁବନେଶ୍ୱର ପ୍ରେସ୍‌କ୍ଲବ ବନ୍ଦ କରିଦେବା ପାଇଁ କିଛି ବନ୍ଧୁ ରୀତିମତ ଚକ୍ରାନ୍ତ କଲେ । ହଠାତ୍ ଶୁଣିଲୁ ଉତ୍କଳ ସାମ୍ବାଦିକ ସଂଘର କିଛି ବନ୍ଧୁ ଏକ ନୂଆ ପ୍ରେସ୍‌କ୍ଲବ ଗଠନ କଲେ । ତା'ର ନାମ ରଖିଲେ ପ୍ରେସ୍‌କ୍ଲବ ଅଫ୍ ଭୁବନେଶ୍ୱର । ତା'ର ସଭାପତି ହେଲେ ଗୋପାଳ ମିଶ୍ର ଏବଂ ସମ୍ପାଦକ ହେଲେ ବସନ୍ତ ଦାସ ।

ମୁଁ ଏନ୍.ଏ.ସି. ହସ୍‌ପିଟାଲ୍‌ରେ ଅପରେସନ ହେବା ପୂର୍ବରୁ ସେ ମାସର ଭଡ଼ା ରତିକାନ୍ତ ମହାନ୍ତିଙ୍କୁ ଦେଇ ରେଣ୍ଟ ସେକ୍ସନରେ ଦେବାକୁ କହିଥିଲି । ସେ ଭଡ଼ା ଦେଇ ମୋତେ ରସିଦ୍ ଆଣି ଦେଇଥିଲା ।

ମାସକ ପରେ ଶୁଣିଲି ଭୁବନେଶ୍ୱରରେ ଆଉ ଏକ ପ୍ରେସ୍‌କ୍ଲବ୍ ହେବାର ଉପକ୍ରମ ହେଉଛି । ଶେଷରେ ସବୁଠୁ ଉଲ୍ଲେଖନୀୟ ଘଟଣାଟି ହେଲା ସରକାର ଭୁବନେଶ୍ୱର ପ୍ରେସ୍‌କ୍ଲବ୍‌କୁ ଦେଇଥିବା ଘରଟି ବାତିଲ୍ କରି ତିବତ ଔଷଧାଳୟ ଖୋଲିବା ପାଇଁ ଦେଲେ । ଏହାପରେ ଯେତେ ପ୍ରେସ୍‌କ୍ଲବ୍ ମୁଣ୍ଡ ଟେକିଥିଲା ସବୁ ବନ୍ଦ ହୋଇଗଲା । ଜଣେ ସାମ୍ବାଦିକ ବନ୍ଧୁ କହିଲେ ଯାହାହେଉ ଏ ଫାର୍ଶ ଭୁବନେଶ୍ୱରର ଅନେକ ସାମ୍ବାଦିକମାନଙ୍କର ମୁଖା ଖୋଲିଦେଇଛି ।

ଏବେ କେତେକ ଖବରକାଗଜ ମାଲିକ ଏକ ପ୍ରେସ୍‌କ୍ଲବ୍ ଗଠନ କରିଥିବା ଖବର ପଢ଼ିଲି ଏବଂ ଟେଲିଭିଜନ୍‌ରେ ଦେଖିଲି । ମୋତେ ଏହି ବୈଠକରେ ଯୋଗଦେବା ପାଇଁ ସମ୍ବାଦ ସମ୍ପାଦକ ବାବୁ ସୌମ୍ୟରଞ୍ଜନ ପଟ୍ଟନାୟକ ଥରେ ଟେଲିଫୋନ୍‌ରେ କହିଥିଲେ । ମାତ୍ର ଶୁଣିଲି ସେ ଥର ଏ ବୈଠକ ହେଲାନାହିଁ । ପରେ ଶ୍ରୀ ମଧୁ ମହାନ୍ତି ( ମୋର ପରିଚୟ ନାହିଁ ) ମୋ ଟେଲିଫୋନ୍‌ରେ ପ୍ରେସ୍‌କ୍ଲବ୍ ବୈଠକରେ ଯୋଗଦେବା ପାଇଁ ଏକ ବାର୍ତ୍ତା ଦେଲେ । କିନ୍ତୁ କେଉଁଠି ହେବ ତା'ର କିଛି ଉଲ୍ଲେଖ ନଥିଲା । ପରେ ଟେଲିଭିଜନରେ ଦେଖିଲି ଏହାର ଉଦ୍‌ଘାଟନ ଉତ୍ସବ ।

ଏହାର ଉଦ୍‌ଘାଟନ ପରେ ଆଉ କେତେଜଣ ବନ୍ଧୁ ଏକ ପ୍ରେସ୍‌କ୍ଲବ୍ ଗଠନ ପାଇଁ ବୈଠକ ଡାକିଲେ । ମୋତେ ମଧ୍ୟ ନିମନ୍ତ୍ରଣ ମିଳିଥିଲା । ମାତ୍ର ମୁଁ ଯୋଗ ଦେଇନଥିଲି । ତେବେ ଏହି ପ୍ରେସ୍‌କ୍ଲବ୍ ପାଇଁ ଇତିମଧ୍ୟରେ ଆଉ ଦୁଇଥର ବୈଠକ ବସିଲାଣି । ଦେଖାଯାଉ ସାମ୍ବାଦିକ ବନ୍ଧୁମାନଙ୍କର ବୈଠକ କେତେଦୂର ସଫଳ ହେଉଛି ? ସମୟକୁ ଅପେକ୍ଷା କରିବା ହିଁ ସାର ହେବ । ଏହି କଥା ଶେଷ ହେବାବେଳକୁ ଟି.ଭି.( ନକ୍ଷତ୍ର ଟି.ଭି. )ରେ ଦେଖିଲି ଆଉ ଏକ ପ୍ରେସ୍‌କ୍ଲବ୍ ପ୍ରତିଷ୍ଠା ହୋଇଛି । ଏହାର ନାମ ଓଡ଼ିଶା ଷ୍ଟେଟ୍ ପ୍ରେସ୍‌କ୍ଲବ୍ । ଏହାର ପ୍ରତିଷ୍ଠାତା ନକ୍ଷତ୍ର ଟି.ଭି. ମାଲିକ ପ୍ରଭାତ ମଲ୍ଲିକ ଏବଂ ସଭାପତି ହେଉଛନ୍ତି ଶାରଦା ନନ୍ଦ । ଏହାପରେ ଆଉ ପ୍ରେସ୍‌କ୍ଲବ୍ ପୁଣି ଗଜୁରିବ କି ନାହିଁ ତାକୁ ଅପେକ୍ଷା କରାଯାଉ ।

ଭୁବନେଶ୍ୱର ପ୍ରେସ୍‌କ୍ଲବ କଥା ଲେଖିବି ବୋଲି ଭାବୁ ଭାବୁ ଅନ୍ୟ ଆଡ଼େ ଯାଇଁ ଚାଲିଗଲି । ଆରଥରକୁ ଭୁବନେଶ୍ୱର ପ୍ରେସ୍‌କ୍ଲବ ।



''ହରିଶ୍ଚନ୍ଦ୍ର ବକ୍ସିପାତ୍ର ସ୍ମାରକୀ ସମ୍ମାନ''ରେ ଶ୍ରୀଯୁକ୍ତ ବରେନ୍ଦ୍ର କୃଷ୍ଣ ଧଳଙ୍କୁ ସମ୍ମାନିତ କରାଯାଉଛି ।




୧୯୮୮ ଫେବୃଆରୀ ୨୬ ତାରିଖ ସୂଚନାଭବନରେ
ବିଖ୍ୟାତ ସାହିତ୍ୟିକ ସମରେଶ ବସୁଙ୍କ ସହ



ତସଲିମା ନାସରିନ୍‌ଙ୍କ ସହ



ବଂଧୁ ପ୍ରଫୁଲ କରଙ୍କ ସହ



ବିଖ୍ୟାତ ସାମ୍ବାଦିକ ମାଗାସେସ ପୁରସ୍କାର ପ୍ରାପ୍ତ ଗୌର କିଶୋର ଘୋଷ
ଓ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ସହ



ଓଡିଆ ଚଳଚିତ୍ର ସୁବର୍ଣ୍ଣ ଜୟନ୍ତୀ ଉତ୍ସବ ଅନୁଷ୍ଠାନର
ଅଧ୍ୟକ୍ଷ ବରେନ୍ଦ୍ର କୃଷ୍ଣ ଧଳଙ୍କ ଭାଷଣ ୧୯୮୪







ଦକ୍ଷିଣ ଏସିଆ ସମ୍ମିଳନୀରେ ସଭାପତି ମଣ୍ଡଳୀର ସଦସ୍ୟ ରୂପେ ଶ୍ରୀ ବରେନ୍ଦ୍ର କୃଷ୍ଣ ଧଳ ସଭା ପରିଚାଳନା କରୁଛନ୍ତି । ବାମରୁ - ଏଡେନ୍ ହ୍ୱାଇଟ୍, ଅଜିତ କୁମାର ପାଞ୍ଜା, କେ.ଏମ୍.ଗୁପ୍ତା, ବରେନ୍ଦ୍ର କୃଷ୍ଣ ଧଳ ଓ ଏଫ୍,ଇ.ଏସ୍ ପ୍ରତିନିଧି



୧୯୭୮ ମାର୍ଚ୍ଚ ୨ତାରିଖରେ ପତ୍ନୀ ସ୍ନେହଲତାଙ୍କ ସହ ତାଜମହଲ ସମ୍ମୁଖରେ



୧୯୭୮ ଏପ୍ରିଲ ୧୫ତାରିଖରେ ପ୍ରଧାନମନ୍ତ୍ରୀ ମୋରାରଜୀ ଦେଶାଇଙ୍କ ସହ
ବରେନ୍ଦ୍ରକୃଷ୍ଣ ଧଳ ପ୍ରଶ୍ନ-ଉତ୍ତର




ଭାରତରୁ ଜାତୀୟ ସାମ୍ବାଦିକ ୟୁନିୟନର ସର୍ବଭାରତୀୟ ସଭାପତି ରୂପେ ବରେନ୍ଦ୍ର କୃଷ୍ଣ ଧଳ ନିର୍ବାଚିତ ।
ହରିଦ୍ୱାରଠାରେ ଦ୍ୱିବାର୍ଷିକ ସମ୍ମିଳନୀରେ ଉତ୍ତର ପ୍ରଦେଶ ମୁଖ୍ୟମନ୍ତ୍ରୀ ମୁଲାୟମ ସିଂହ ଯାଦବ ଓ କେନ୍ଦ୍ର ସୂଚନା ମନ୍ତ୍ରୀ
ଶ୍ରୀ ପି.ଉପେନ୍ଦ୍ରଙ୍କ ସହ ବରେନ୍ଦ୍ର କୃଷ୍ଣ ଧଳ



୧୯୮୦ ଜାନୁଆରୀ ମାସରେ ଓଡିଶାରେ ନିର୍ବାଚନ ପ୍ରଚାର ପାଇଁ ଆସିଥିବା
ସୁପରଷ୍ଟାର ରାଜେଶ ଖାନ୍ନାଙ୍କ ସହ ଏକ ହୋଟେଲରେ



ଭୁବନେଶ୍ୱର ବିମାନ ଘାଟିରେ ୧୯୭୧ ମସିହା ଜାନୁଆରୀ ୩୧ତାରିଖରେ ଶ୍ରୀମତୀ ଇନ୍ଦିରା ଗାନ୍ଧିଙ୍କ ଭୁବନେଶ୍ୱର ପରଦର୍ଶନକ ବେଳେ ପାଖରେ ଓଡିଶା ମୁଖ୍ୟମନ୍ତ୍ରୀ ବିଶ୍ୱନାଥ ଦାସ ଓ ବରେନ୍ଦ୍ର କୃଷ୍ଣ ଧଳ



ଓଡିଶା ରାଜଭବନରେ ୧୯୭୨ ଫେବୃଆରୀ ୨୭ତାରିଖରେ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଗାନ୍ଧି, ରାଜ୍ୟପାଳ ସର୍ଦ୍ଦାର ଯୋଗିନ୍ଦର ସିଂହ, ମୁଖ୍ୟମନ୍ତ୍ରୀ ବିଶ୍ୱନାଥ ଦାସ୍ ଏବଂ ମନ୍ତ୍ରୀ ପ୍ରତାପ ଚନ୍ଦ୍ର ମହାନ୍ତିଙ୍କ ସହ ଏକ ସାମ୍ଭାଦିକ ସମ୍ମେଳନରେ ବରେନ୍ଦ୍ର କୃଷ୍ଣ ଧଳ



ରବିନ୍ଦ୍ର ମଣ୍ଡପରେ ୧୯୭୦ ଡିସେମ୍ବର ୧୪ତାରିଖରେ ଏକ ସାଂସ୍କୃତିକ ଉତ୍ସବରେ ମୁଖ୍ୟ ଅତିଥି
ମୁଖ୍ୟମନ୍ତ୍ରୀ ଆର.ଏନ୍. ସିଂହଦେଓ କେନ୍ଦ୍ର ବୈଦେଶିକ ମନ୍ତ୍ରୀ ରାଜା ଦୀନେଶ ସିଂହଙ୍କ ସହ
ବରେନ୍ଦ୍ର କୃଷ୍ଣ ଧଳ




ଏନ୍.ୟୁ.ଜେ ସର୍ବ ଭାରତୀୟ ସଭାପତି ନିର୍ବାଚିତ ହେବାପରେ ସିମଳା ଠାରେ ୧୯୯୦ ଡିସେମ୍ବର ୧୪ ଓ
୧୫ ତାରିଖରେ ପ୍ରଥମ କାର୍ଯ୍ୟ ନିର୍ବାହୀ କମିଟି ଅଧିବେଶନ ଉଦ୍‌ଘାଟନ । ହିମାଚଳ ପ୍ରଦେଶ ମୁଖ୍ୟମନ୍ତ୍ରୀ ଶାନ୍ତାକୁମାର
ଶ୍ରୀ ଧଳଙ୍କ ବାମ ପଟେ ।



ଜାନୁଆରି ୪ତାରିଖରେ ଭୁବନେଶ୍ୱର କଂଗ୍ରେସ ଅଧିବେଶନର ଆୟୋଜନ ବୁଲି ଦେଖୁଛନ୍ତି ଲାଲ ବାହାଦୁର ଶାସ୍ତ୍ରୀ ।
ତାଙ୍କ ସହ ଅଛନ୍ତି ଉପ ମୁଖ୍ୟ ମନ୍ତ୍ରୀ ନୀଳମଣି ରାଉତରାୟ, ମନ୍ତ୍ରୀ ସତ୍ୟପ୍ରିୟ ମହାନ୍ତି, ବିଜୟ ପାଣି,
ମନ୍ତ୍ରୀ ପି.ଭି. ଜଗନ୍ନାଥ ରାଓ ଓ ବରେନ୍ଦ୍ର କୃଷ୍ଣ ଧଳ



୧୯୮୭ ଏପ୍ରିଲମାସ ୭ତାରିଖରୁ ୧୧ ତାରିଖ ପର୍ଯ୍ୟନ୍ତ ଭୁବନେଶ୍ୱରଠାରେ ଶିଶୁ ଚଳଚ୍ଚିତ୍ର ଉତ୍ସବରେ ଚେୟାରମ୍ୟାନ ଅମୋଲ ପାଲେକରଙ୍କ ସହ ଆଲୋଚନା । ଶ୍ରୀ ଧଳ ଏହି ଚଳଚ୍ଚିତ୍ର ପ୍ରତିଯୋଗିତାରେ ଅନ୍ୟତମ ବିଚାରପତି ଥିଲେ ।



ରାଷ୍ଟ୍ରପତି ଏନ୍. ସଂଜୀବ ରେଡ୍ଡିଙ୍କ ଭୁବନେଶ୍ୱର ଆଗମନ ସମୟରେ ଭୁବନେଶ୍ୱର ବିମାନ ଘାଟିରେ । ପାଖରେ ଅଛନ୍ତି ମୁଖ୍ୟମନ୍ତ୍ରୀ ନୀଳମଣି ରାଉତ ରାୟ, ମଝିରେ ଅଛନ୍ତି ବରେନ୍ଦ୍ର କୃଷ୍ଣ ଧଳ ।



ଓଡିଶା ରାଜ ଭବନରେ ଭାରତର ରାଷ୍ଟ୍ରପତି ଭି.ଭି. ଗିରିଙ୍କ ସାମ୍ବାଦିକ ସମ୍ମେଳନରେ । ନିକଟରେ ଅଛନ୍ତି ରାଜ୍ୟପାଳ ସର୍ଦ୍ଦାର ଯୋଗିନ୍ଦର ସିଂହ ୧୯୭୨ ଜାନୁଆରୀ ୨୦ତାରିଖ




ହରିଦ୍ୱାର ଏନ୍.ୟୁ.ଜେ (ଆଇ) ସମ୍ମିଳନୀରେ ସଭାପତି ଅଭିଭାଷଣ । ୧୯୯୦ ସେପ୍ଟେମ୍ବର ୧୩ ତାରିଖ



ଓଡିଆ ମିଡିଆ ଏକାଡେମୀ ପକ୍ଷରୁ ଶ୍ରୀ ଧଳଙ୍କୁ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ସମ୍ବର୍ଦ୍ଧନା କରୁଛନ୍ତି ।




ଶ୍ରୀ ଧଳଙ୍କ ପରିବାର । ଦୁଇ କନ୍ୟା - ଜାମାତା, ପୁଅ - ବୋହୂ ସହ ପାଞ୍ଚ ନାତି ।



ଶ୍ରୀ ବରେନ୍ଦ୍ର କୃଷ୍ଣ ଧଳଙ୍କୁ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର (ଅନୁବାଦ ପାଇଁ) ଦେଉଛନ୍ତି ଏକାଡେମୀ ସଭାପତି ୟୁ ଆର ଅନନ୍ତ ମୂର୍ତ୍ତି । ୧୯୯୩ ବର୍ଷ ପାଇଁ ୧୯୯୪ ଅଗଷ୍ଟ ୨ ତାରିଖରେ ପ୍ରଦାନ କରୁଛନ୍ତି ।




ହରିଦ୍ୱାର ଭେଲ ଅଡିଟୋରିଓମ୍‌ଠାରେ ଜାତୀୟ ସାମ୍ବାଦିକ ୟୁନିୟନର ସର୍ବଭାରତୀୟ ସଭାପତି ନିର୍ବାଚିତ ହେବାପରେ ତମ୍ବାକମଣ୍ଡଳୁରେ ଗଙ୍ଗାଜଳ ଦେଇ ଶ୍ରୀ ଧଳଙ୍କୁ ସଂବର୍ଦ୍ଧନା କରାଯାଉଛି । ବାମପଟେ ଅଛନ୍ତି ଉତ୍ତର ପ୍ରଦେଶ ମୁଖ୍ୟମନ୍ତ୍ରୀ ଶ୍ରୀ ମୁଲାୟମ ସିଂହ ଯାଦବ




କଲିକତା ରବୀନ୍ଦ୍ର ଭାରତୀ ବିଶ୍ୱବିଦ୍ୟାଳୟ ଅଡିଟୋରିଓମ୍‌ରେ ଚଣ୍ଡିଗଡର ବିଖ୍ୟାତ ନୃତ୍ୟ ସଂଗୀତ ବିଶ୍ୱବିଦ୍ୟାଳୟ ପ୍ରାଚୀନ କଳାକେନ୍ଦ୍ରର ସମାବର୍ତ୍ତନ ଉତ୍ସବରେ ମୁଖ୍ୟ ଅତିଥି ରୂପେ ଶ୍ରୀ ଧଳ - ୧୯୯୪ ନଭେମ୍ବର ୧୦ତାରିଖରେ । ତାଙ୍କ ବିଖ୍ୟାତ ସାମ୍ବାଦିକ ଶ୍ରୀ ଅସୀମ ମିତ୍ର




ଓଡିଶା ରାଜ୍ୟ କରାଟେ ସଂଘର ବାର୍ଷିକ ଉତ୍ସବରେ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କ ସହ
କରାଟେ ସଂଘ ସଭାପତି ବରେନ୍ଦ୍ର କୃଷ୍ଣ ଧଳ



୧୯୬୪ ଜାନୁଆରୀ ୫ତାରିଖରେ ଟିକରପଡା ବନ୍ଧ ଯୋଜନାରେ ଭାରତବର୍ଷର
ପ୍ରଧାନମନ୍ତ୍ରୀ ନେହେରୁଙ୍କ ସହ ଟିକରପଡା ହେଲିପ୍ୟାଡରେ ରାଜ୍ୟପାଳ ଅଯୋଧ୍ୟା ନାଥ ଖୋସଲା,
ବିଜୁ ପଟ୍ଟନାୟକ, ନୀଳମଣି ରାଉତରାୟ ଓ ବରେନ୍ଦ୍ର କୃଷ୍ଣ ଧଳ



## ବରେନ୍ଦ୍ର କୃଷ୍ଣ ଧଳ

ଓଡ଼ିଆ ଭାଷା, ସାହିତ୍ୟକୁ ନେଇ ଯେଉଁମାନେ ଆଲୋଚନା କରନ୍ତି, ଅଧ୍ୟୟନ କରନ୍ତି, ଓଡ଼ିଆ ଗଳ୍ପର ଯେଉଁମାନେ ନିୟମିତ ପାଠକ ବରେନ୍ଦ୍ର କୃଷ୍ଣ ଧଳ ସେମାନଙ୍କ ନିକଟରେ ଏକ ଅତି ପରିଚିତ ନାମ । ଦୀର୍ଘ ଅର୍ଦ୍ଧ ଶତାବ୍ଦୀ ଧରି ସେ ଓଡିଆ ସାହିତ୍ୟ ସହ ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ମୁଖ୍ୟତଃ ଜଣେ ଗାଳ୍ପିକ ଭାବେ ତାଙ୍କର ପରିଚୟ ରହିଥିଲେ ମଧ୍ୟ ଉପନ୍ୟାସ, ଅନୁବାଦ, ସାହିତ୍ୟ ସମାଲୋଚନା ଓ ଶିଶୁ ସାହିତ୍ୟ କ୍ଷେତ୍ରରେ ସେ ଜଣେ ବିଚକ୍ଷଣ ସ୍ରଷ୍ଟା ।

ତାଙ୍କର ଏ ଯାବତ ଓଡିଆ ଭାଷାରେ ବାଇଶି ଖଣ୍ଡ ଗଳ୍ପ ସଂକଳନ ପ୍ରକାଶ ପାଇଛି । ଏହା ବ୍ୟତୀତ ବଂଗଳା ଭାଷାରେ ''ଅସମାପ୍ତ ଶତକ'' ନାମରେ ଏକ ଗଳ୍ପ ସଂକଳନ ଭେଷ୍ଟକ ପ୍ରକାଶନ ସଂସ୍ଥା ୧୯୯୩ ରେ ପ୍ରକାଶ କରିଥିଲେ । ବଂଗଳାର ବିଖ୍ୟାତ ସାହିତ୍ୟିକ, ସାମ୍ବାଦିକ ସ୍ୱର୍ଗତ ଗୌର କିଶୋର ଘୋଷ ଏହାର ମୁଖବନ୍ଧ ଲେଖିଥିଲେ । ଗଳ୍ପ ବ୍ୟତୀତ ଶ୍ରୀ ଧଳଙ୍କର ସାତୋଟି ମୌଳିକ ଓଡିଆ ଉପନ୍ୟାସ, ଛ'ଟି ଅନୁବାଦ ଉପନ୍ୟାସ (ବଂଗଳା ଓ ଇଂରାଜୀରୁ) ଅଠରଟି ରାଜନୀତିକ ଓ ସାହିତ୍ୟ ସମାଲୋଚନା ପୁସ୍ତକ ଓ ଦୁଇଟି ଶିଶୁ ସାହିତ୍ୟ ପୁସ୍ତକ ପ୍ରକାଶ ପାଇଛି ।

ତାଙ୍କ ଅନୁବାଦ ପୁସ୍ତକ ଶାମ୍ବ (ମୂଳ ବଂଗଳା ରଚନା କାଲକୂଟ) ପାଇଁ ସେ ୧୯୯୩ ମସିହାରେ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଥିଲେ । ତାଙ୍କର ସାହିତ୍ୟ କୃତି ପାଇଁ ସେ ଓଡିଶା ଓ ଓଡିଶା ବାହାରର ବହୁ ଅନୁଷ୍ଠାନ ଦ୍ୱାରା ପୁରସ୍କୃତ ଓ ସମ୍ବର୍ଦ୍ଧିତ ।

ସାମ୍ବାଦିକତା କ୍ଷେତ୍ରରେ ବରେନ୍ଦ୍ର କୃଷ୍ଣ ଧଳ ସମଗ୍ର ଦେଶରେ ନିଜ ଉତ୍କର୍ଷତା ପ୍ରତିପାଦନ କରିଛନ୍ତି । ପ୍ରଥମ ଓଡିଆ ସାମ୍ବାଦିକ ରୂପେ ସେ ନ୍ୟାସନାଲ ୟୁନିୟନ୍ ଅଫ୍ ଜର୍ଣ୍ଣାଲିଷ୍ଟ୍ (ଇଣ୍ଡିଆ)ର ସର୍ବ ଭାରତୀୟ ସଭାପତି (୧୯୯୦-୯୨) ରୂପେ ନିର୍ବାଚିତ ହୋଇ କାର୍ଯ୍ୟ କରିଥିଲେ । ଦକ୍ଷିଣ-ଏସିଆ ସାମ୍ବାଦିକ ସମ୍ମିଳନୀ ଦିଲ୍ଲୀ ଅଧିବେଶନ (୧୯୯୧ ନଭେମ୍ବର ୧୪,୧୫,୧୬ ତାରିଖ)ରେ ସେ ତିନିଜଣିଆ ସଭାପତି ମଣ୍ଡଳୀରେ ପ୍ରଥମ ଭାରତୀୟ ସଦସ୍ୟ ରୂପେ ନିର୍ବାଚିତ ହୋଇଥିଲେ ।

ଗତ ତିରିଶ ବର୍ଷ ଧରି ଅନୁଷ୍ଠିତ ହୋଇ ଆସୁଥିବା ଭୁବନେଶ୍ୱର ପୁସ୍ତକ ମେଳାର ସେ ପ୍ରତିଷ୍ଠାତା ଏବଂ ଲେଖକ ସାମ୍ମୁଖ୍ୟ ଏବଂ ସାହିତ୍ୟୋତ୍ସବର ସେ ପ୍ରବର୍ତ୍ତକ ।

ଓଡିଶାରେ ସାହିତ୍ୟ ଆନ୍ଦୋଳନ ଓ ପରିଚାଳନା କ୍ଷେତ୍ରରେ ଶ୍ରୀ ଧଳଙ୍କର ଅକ୍ଳାନ୍ତ ସେବା ପାଇଁ ଓଡିଆରେ ସେ ସମସ୍ତଙ୍କ ନିକଟରେ ପରିଚିତ ।

ପ୍ରକାଶକ